ପ୍ରଫେସର ଡକ୍ଟର ରାଧାନାଥ ରଥ

# ଗ୍ରନ୍ଥାବଳୀ

ପ୍ରଥମ ପର୍ବ

## ଆତ୍ମଜୀବନ ଚରିତ

ଅକ୍ଷର

# ଗ୍ରନ୍ଥାବଳୀ

ପ୍ରଥମପର୍ବ

ଲେଖକ : ପ୍ରଫେସର ଡକ୍ଟର ରାଧାନାଥ ରଥ □ ପ୍ରକାଶକ **ଅକ୍ଷର,** କଲ୍ୟାଣୀ ନଗର, କଟକ - ୧୩ □ ମୁଦ୍ରଣ : ଟେକ୍‌ନୋ ଆର୍ଟସ ଅଫ୍‌ସେଟ୍, କଲ୍ୟାଣୀନଗର, କଟକ-୧୩ □ ମୂଲ୍ୟ: ଟ. ୨୦୦/-

ପ୍ରଥମ ପ୍ରକାଶ ଅକ୍ଷୟ ତୃତୀୟା ୨୦୦୦

## GRANTHABALI

1st Vol.

Author : **Prof. Dr. Radhanath rath** □ Publisher : **AKSHARA**, Kalyani Nagar, Cuttack-753 013 □ Printed at Techno Arts Offset, Kalyani Nagar, Cuttack-13 □ Price : Rs.200/-

First Edition Aksl.aya Turtiya 2000

ବିଂଶ ଶତକର ସ୍ମରଣୀୟ ଓଡ଼ିଆ ସାହିତ୍ୟିକଙ୍କ ମଧ୍ୟରେ ଅନ୍ୟତମ ବରଣୀୟ ବ୍ୟକ୍ତିତ୍ୱ – ପ୍ରଫେସର ଡକ୍ଟର ରାଧାନାଥ ରଥ । ଅର୍ଦ୍ଧଶତାବ୍ଦୀର ଅତିକ୍ରାନ୍ତି ପରେ ସୁଦ୍ଧା ତାଙ୍କ ଅଙ୍ଗୀକାରବଦ୍ଧ ସାରସ୍ୱତ ସୃଜନୀଧାରା, ଅନାହତ ଓ ଅବ୍ୟାହତ ରହି ପାରିଛି ଅଦ୍ୟାବଧି । ଆଧୁନିକ ଓଡ଼ିଶାର ବୌଦ୍ଧିକ-ଚେତନାର ଚୌହଦିକୁ ବିସ୍ତୃତତର କରିବା ଦିଗରେ ତାଙ୍କ ଅବଦାନ ଅବିସମ୍ବାଦିତ ।

ତରୁଣ ବୟସରୁ ଯୁକ୍ତିବାଦୀ ଓ ବସ୍ତୁବାଦୀ ଦର୍ଶନର ପ୍ରଖର ପ୍ରଭାବରେ ବିବର୍ତ୍ତିତ ହୋଇ ଆସିଛି ତାଙ୍କର ଜୀବନଶୈଳୀ । ସେଥିପାଇଁ ଧର୍ମୀୟ ଧୂର୍ତ୍ତତା, ସାଂସ୍କୃତିକ ଶଠତା, ରାଜନୀତିକ ରୁଗ୍ଣତା ଓ ସ୍ଥାଣୁ ସାମାଜିକ ସ୍ଥିତାବସ୍ଥା ବିରୋଧରେ ଏବେ ବି ଯୁଦ୍ଧ ଜାରି ରହିଛି ତାଙ୍କର । ସୁବିଧାବାଦର ଶିବିରରେ ଶରଣାର୍ଥୀ ହେବାକୁ ଚାହି ନାହାନ୍ତି ସେ କେବେ, ନିଜ ବିବେକ ଓ ବିଚାରଶକ୍ତିକୁ ବନ୍ଧା ପକାଇ ନାହାନ୍ତି କେଉଁଠି ।

ଦର୍ଶନ ଓ ମନୋବିଜ୍ଞାନ – ଡକ୍ଟର ରଥଙ୍କ ଦୀର୍ଘ ବୌଦ୍ଧିକ ଅଭିଯାତ୍ରାର ଦୁଇ ଦିଗବାରେଣୀ । ତାଙ୍କର ଅନେକ ଛାତ୍ରଛାତ୍ରୀ ଆଜି ଦେଶବିଦେଶରେ ନିଜ ନିଜ କ୍ଷେତ୍ରରେ ସୁପରିଚିତ ଓ ସୁପ୍ରତିଷ୍ଠିତ ।

ମାର୍କ୍ସଙ୍କ 'କାରୁଣ୍ୟ'ରୁ ଆରମ୍ଭ ହୋଇଥିବା ଡକ୍ଟର ରଥଙ୍କ ଆତ୍ମିକ ଅନ୍ୱେଷଣର ଉତ୍ତପ୍ତ ଅତୃପ୍ତି, ପରବର୍ତ୍ତୀ ପର୍ଯ୍ୟାୟରେ ଆଶ୍ୱସ୍ତି ତଥା ଆଶ୍ୱାସନାର ଶୀତଳ ସ୍ପର୍ଶ ଲାଭ କରିପାରିଛି ବୁଦ୍ଧଙ୍କ 'କରୁଣା' ମଧ୍ୟରେ ।

ଏହି ପ୍ରବୁଦ୍ଧ ପୁରୁଷଙ୍କ ଜୀବନଗାଥା ହେଉଛି, ପ୍ରକୃତରେ, 'ନିଜ ଭାଗ୍ୟ ନିଜେ ଗଢ଼ିବା'ର ଅନନ୍ୟ ଆତ୍ମକଥା ! ଗଂଜାମର କେଉଁ ଅଖ୍ୟାତ ଗ୍ରାମର ସେଇ 'ଚକର ଛେଉଣ୍ଡ' ବା ଅନାଥ କିଶୋରଟି, ସହସ୍ର ସଂଘାତ ମଧ୍ୟରେ କିପରି ଶିର ଉନ୍ନତ କରି ବାଟ ଚାଲିବାର ବ୍ରତ ବରଣ କରି ନେଇଛି – ଅଜସ୍ର ଅନିଶ୍ଚିତତା ଓ ଅନିର୍ଦ୍ଦିଷ୍ଟତା ମଧ୍ୟରେ କିପରି କ୍ରମେ ଅର୍ଜନ କରିପାରିଛି ନିଜର ଏକ ସ୍ୱତନ୍ତ୍ର ପରିଚିତି – ଅତୁଳନୀୟ ମାନସିକ ଶକ୍ତି ଓ ଅଦମନୀୟ ସଂକଳ୍ପ ନେଇ ପରିକ୍ରମା କରିଛି ପୃଥିବୀର ପଥେପଥେ – ଭବଘୂରା ଜୀବନର ଶତ ସଂକଟ ଓ ସଂଘର୍ଷ ମଧ୍ୟରେ କିପରି ପୁଣି ଖୋଜି ପାଇଛି ନିର୍ଦ୍ଦିଷ୍ଟ ସ୍ୱପ୍ନର ଠିକଣା – ଏଇସବୁ ବିରଳ ଅନୁଭୂତିର ନିରୋଳ ଅଭିବ୍ୟକ୍ତି ହିଁ ହେଉଛି ଡକ୍ଟର ରଥଙ୍କ ନିଜସ୍ୱ ଜୀବନ-ଚରିତ ।

ସେଇ ଅନବଦ୍ୟ ଆତ୍ମଚରିତ 'ମୋ ସ୍ୱପ୍ନ ମୋ ଜୀବନ' ଓ 'ମୋ ଜୀବନ ମୋ ଦର୍ଶନ'କୁ ନେଇ ପ୍ରସ୍ତୁତ ହୋଇଛି ପ୍ରଫେସର ଡଃ ରାଧାନାଥ ରଥଙ୍କ ଗ୍ରନ୍ଥାବଳୀର ଏହି ପ୍ରଥମ ପର୍ବ । ଆଶା ଓ ବିଶ୍ୱାସ, ଆଧୁନିକ ଓଡ଼ିଶାର ସୁଧୀ ସମାଜ ଦ୍ୱାରା ଏହା ସମାଦୃତ ହେବ ନିଶ୍ଚୟ ।

ଅକ୍ଷର

# ଏଇ ଲେଖକଙ୍କର ଅନ୍ୟାନ୍ୟ ଉଲ୍ଲେଖନୀୟ କୃତି :

**ବିଶ୍ୱଭ୍ରମଣ ବୃତ୍ତାନ୍ତ**

**ନାନା ଦେଶ ନାନା କଥା** ଟ ୧୭୫.୦୦

**ଆତ୍ମଚରିତ**

**ମୋ ସ୍ୱପ୍ନ ମୋ ଜୀବନ**
(ଓଡ଼ିଶା ସାହିତ୍ୟ ଆକାଦେମୀ ପୁରସ୍କୃତ)
**ମୋ ଜୀବନ ମୋ ଦର୍ଶନ**
ଏକତ୍ର ମୂଲ୍ୟ ଟ ୨୦୦.୦୦

**କଥାସାହିତ୍ୟ**

**ଛାଇ କଥା କହେ** ଟ ୫୦.୦୦

**ଉପନ୍ୟାସ**

**ଭଲ ପାଇବାର ଆଦିକଥା**
(ଦ୍ୱିତୀୟ ସଂସ୍କରଣ) ଟ୪୦.୦୦
**ଶେଷକଥା** ଟ୪୦.୦୦
**ସାଗର ସେପାରେ**
(ଦ୍ୱିତୀୟ ସଂସ୍କରଣ) ଟ ୬୦.୦୦
**ପାଇ ନ ପାଇବା ସ୍ୱପ୍ନ**
(ଦ୍ୱିତୀୟ ସଂସ୍କରଣ) ଟ ୭୦.୦୦
**ଭବିଷ୍ୟତହୀନ ସଂପର୍କ** ଟ ୫୦.୦୦

**ନିବନ୍ଧ**

**ଅଗ୍ରଦୃଷ୍ଟି** ଟ ୪୫.୦୦

**ମନସ୍ତାତ୍ତ୍ୱିକ**

**ଆମେ : ଆମ ପିଲା**
(ଦ୍ୱିତୀୟ ସଂସ୍କରଣ) ଟ ୬୦.୦୦
**ଆମେ : ଆମ ମନ**
(ଦ୍ୱିତୀୟ.ସଂସ୍କରଣ) ଟ ୬୦.୦୦

ପ୍ରାପ୍ତିସ୍ଥାନ : **ଅକ୍ଷର,** କଲ୍ୟାଣୀନଗର, କଟକ-୭୫୩୦୧୩ ▫ ଦୂରଭାଷ : ୬୪୦୯୨୬

ଡକ୍ଟର ରାଧାନାଥ ରଥଙ୍କର ସାମଗ୍ରିକ ସୃଷ୍ଟିସମ୍ଭାର ସଂପ୍ରତି ଗ୍ରନ୍ଥାବଳୀ ଆକାରରେ ସୁଲଭ । ପ୍ରଥମ ପର୍ବ (ଆତ୍ମଜୀବନଚରିତ : ମୂଲ୍ୟ- ଟ୨୦୦.୦୦) ଓ ଦ୍ୱିତୀୟ ପର୍ବ (ବିଶ୍ୱଭ୍ରମଣ ବୃତ୍ତାନ୍ତ : ମୂଲ୍ୟ ଟ୨୦୦.୦୦) ସଦ୍ୟ ପ୍ରକାଶିତ । ଆଗ୍ରହୀ ପାଠକପାଠିକାମାନେ ଏ ସଂକ୍ରାନ୍ତରେ ଲେଖକଙ୍କ ସହିତ ମଧ୍ୟ ନିମ୍ନ ଠିକଣାରେ ଯୋଗାଯୋଗ କରିପାରନ୍ତି ।

ଯୋଗାଯୋଗ :
ଡକ୍ଟର ରାଧାନାଥ ରଥ, ସାଆନ୍ତ ସାହି, କଟକ-୭୫୩୦୦୧, ଦୂରଭାଷ : ୬୧୫୮୩୩

# ସୂଚୀ

## ମୋ ସ୍ୱପ୍ନ ମୋ ଜୀବନ

## ମୋ ଜୀବନ ମୋ ଦର୍ଶନ

# ମୋ ସ୍ୱପ୍ନ ମୋ ଜୀବନ

ଶ୍ରେଷ୍ଠ ଆତ୍ମଜୀବନଚରିତ ରୂପେ
୧୯୯୩ ମସିହାରେ ଓଡ଼ିଶା ସାହିତ୍ୟ ଆକାଦେମୀ
ପୁରସ୍କାର ପ୍ରାପ୍ତ

## ଉତ୍ସର୍ଗ :

ନନା-ବୋଉଙ୍କର ଆକସ୍ମିକ ଅକାଳ ମୃତ୍ୟୁ ପରେ ଯେଉଁ ନିରକ୍ଷରା ବାଳୁତ ବିଧବା, ଷାଠିଏ ବର୍ଷୀୟା **ବୁଢ଼ୀ ମା**'ଙ୍କର ସ୍ୱାର୍ଥତ୍ୟାଗ, ପାରଙ୍ଗମତା, ସଂଗ୍ରାମଶୀଳ ସାହସ, ଦମ୍ଭ ଓ ଅପରାଜେୟ ମାନସିକ ଶକ୍ତି ମୋ' ପରି ସାତ ବର୍ଷର ଚକର ଛେଉଣ୍ଡ ଏବଂ ମୋର ତିନି ଭାଇ ଓ ଦୁଇ ଭଉଣୀଙ୍କୁ ଅପରିସୀମ ସ୍ନେହ ଓ ଆବେଗିକ ନିରାପତ୍ତା ଯୋଗାଇବାରେ ସମର୍ଥ ହୋଇଛି –

ଏବଂ

ମୋର ବଡ଼ ଭାଇନା **ସ୍ୱର୍ଗୀୟ ଉଦୟନାଥ ରଥ**ଙ୍କର ଅପରିମେୟ ସ୍ନେହପ୍ରଯତ୍ନ ଯୋଗୁ ମୋର ବ୍ୟକ୍ତିତ୍ୱ ତଥା ସାମାଜିକ ପ୍ରତିଷ୍ଠା ସମ୍ଭବ ହୋଇଛି –

ସେମାନଙ୍କର ସ୍ମୃତିକୁ ଚିରଉଜ୍ଜୀବିତ ରଖିବା ଉଦ୍ଦେଶ୍ୟରେ ଗ୍ରନ୍ଥାବଳୀର ଏହି ପ୍ରଥମପର୍ବଟିକୁ ଉତ୍ସର୍ଗ କରୁଛି –

— ଲେଖକ

## ୧

# ଜୀବନର ଅପରାହ୍ଣ

ଅପରାହ୍ଣକୁ ବେଳେ ବେଳେ ଗୈରିକ, ଧୂସର ମ୍ଳାନ, କ୍ଳାନ୍ତ ପ୍ରଭୃତି ବିଶ୍ଳେଷଣ ଦ୍ୱାରା ବର୍ଣ୍ଣନା କରି ଜୀବନର ଅପରାହ୍ଣକୁ ଏକ ବେଦନାୟିତ ବିଷଣ୍ଣତାରେ ପରିଣତ କରିଦେବାର ଦେଖାଯାଏ । କିନ୍ତୁ ବୈଶାଖମାସର ପ୍ରଚଣ୍ଡ ରୌଦ୍ରତାପ ମଉଳି ଆସିବା ପରେ ଯେଉଁ ଅପରାହ୍ଣ ଦେଖାଦିଏ, ତାର ସ୍ନିଗ୍ଧ କୋମଳ ଅରୁଣିମା ଯେ ମନପ୍ରାଣକୁ ଅନୁରଂଜିତ କରିଦେଇପାରେ– ଏ ପ୍ରକାର ମଧୁର ସଂଭାବନାକୁ ସ୍ୱୀକାର କରିବାର ମନୋବୃତ୍ତିର ଆବଶ୍ୟକତା ରହିଛି । ମୋର ଅବସର ପର ଜୀବନରେ, ଗୈରିକ ବିଷଣ୍ଣତା ପରିବର୍ତ୍ତେ ଏକ ଅନ୍ୟ ଧରଣର ଉଦ୍‌ବେଳନ ଦେଖାଦେଇଛି । ଅତୀତ ଜୀବନ ପାଇଁ କୌଣସି ପ୍ରକାରର ଅନୁଶୋଚନା କିମ୍ୱା ଅନୁତାପର ବ୍ୟଥାତୁର କଳା ବାଦଲର ଛାଇ ପରିବର୍ତ୍ତେ ନୂତନ ସ୍ୱପ୍ନ, ନୂତନ ଆଶା, ଆକାଂକ୍ଷାର ଗୋଲାପୀ ଉତ୍ତରୀୟ ମୋ ଜୀବନର ଅପରାହ୍ଣରେ ନୂତନ ଦିଗ୍‌ବଳୟ ସୃଷ୍ଟି କରିପାରିଛି । ଆଗାମୀ ବଂଶଧରଙ୍କର ସ୍ୱପ୍ନ ମୋ ସ୍ୱପ୍ନରେ ରଂଜିତ ହୋଇଚାଲିଛି । ଆନନ୍ଦମୟ ଜୀବନର ଉପଲବ୍ଧି ଅନ୍ୟମାନଙ୍କ ମାଧ୍ୟମରେ ମୁଁ ଦେଖିପାରୁଛି । ବହୁ ନୂତନ ବଂଧୁ ମୋ ସହିତ ଜୀବନର ଏହି ନୂତନ ମହା ସମାରୋହରେ ସାମିଲ୍ ହୋଇଯାଇଛନ୍ତି ।

ଏପରି ଅପରାହ୍ଣରେ ପ୍ରଚଣ୍ଡ ଗ୍ରୀଷ୍ମତାପର ଚଳଚଂଚଳ ଆତୁରତା ସ୍ଥାନରେ ନୂତନ ଦ୍ୱନ୍ଦ୍ୱହୀନ ଆବେଗିକତା ମୋ ପାଇଁ ସ୍ୱାଗତଯୋଗ୍ୟ ହୋଇଯାଇଛି । ମଣିଷକୁ ଭଲ ପାଇବାର ଯୌବନା ଦୀପ୍ତ ଉଦ୍ଦାମତା ହ୍ରାସ ହେବା ପରିବର୍ତ୍ତେ ଏହା ନୂତନ ଏକ ମାନବୀୟ ସ୍ନିଗ୍ଧତାରେ ରୂପାନ୍ତରିତ ହୋଇଚାଲିଛି । ଦୈହିକ ଆବଶ୍ୟକତା ଅନୁସାରେ ମାନସିକ ଉଦ୍‌ବେଳନର ପରିସର ପ୍ରସାରିତ ହୋଇ ଚାଲିବା ସ୍ୱାଭାବିକ, କିନ୍ତୁ ବର୍ତ୍ତମାନ ଭିନ୍ନ ସ୍ୱାଦର ଗୁଣାତ୍ମକ ମାନସିକ ପରିସର ଭିତରେ ନୂତନ ଆତ୍ମିକ ଉପଲବ୍ଧି ମୋ ଅପରାହ୍ଣର ଆକାଂକ୍ଷାଂକୁ ପରିତୃପ୍ତିର ନୂତନ ସ୍ୱପ୍ନରେ ଅରୁଣାୟିତ କରିପାରୁଛି । ଏ ପ୍ରକାର ଶାନ୍ତ ଓ ଆନନ୍ଦଦାୟକ ମାନସିକ ପରିବେଶ ଭିତରେ ମୁଁ ବର୍ତ୍ତମାନ କାମ କରୁଛି ବୋଲି ମୋଠାରେ ଅପରିସୀମ ଆନନ୍ଦ ।

X X X X X X X

ବର୍ତ୍ତମାନ ଅଧିକାଂଶ ସକାଳ ସଂଧ୍ୟାର ନିରୋଳା ମୁହୂର୍ତ୍ତମାନଙ୍କରେ ମୋ ଘରକୁ ଘେରି ରହୁଥିବା ନାନା ଧରଣର ଗଛପତ୍ର ଲତାର ଘନ ସବୁଜିମା ମଧ୍ୟରେ ନାନା ବର୍ଣ୍ଣାଳୀର ପକ୍ଷୀମାନଙ୍କର କଳକାକଳିର ତନ୍ମୟତା ଭିତରେ ଅତୀତ ଜୀବନର ଟୁକୁରା ଟୁକୁରା ସ୍ମୃତିର ମେଘ ଜମିବାକୁ ଆରମ୍ଭ କରେ । ଭାସମାନ ମେଘମାଳା ଭିତରେ ରଂଗୀନ ସ୍ମୃତିମାନଙ୍କର ଶୋଭାଯାତ୍ରା ଜମିଉଠେ – ସୁଦୀର୍ଘ ଜୀବନ ପଥର ଅଭୁଲା ଅନୁଭୂତିମାନ ନାଚି ନାଚି ଭାସିଯାଏ । ଇଂଲଣ୍ଡ ହ୍ରଦାଞ୍ଚଳର ମନୋରମ ପରିବେଶ, ଲଣ୍ଡନର ପିକାଡିଲି ସର୍କସରେ ବିଶ୍ୱ ଜନତାର ପ୍ରତିନିଧିମାନଙ୍କର ଅବିଶ୍ରାନ୍ତ କଳରବ - ଟେମସ୍ ନଦୀ କୂଳରେ ଧୂସର ସାୟାହ୍ନମାନ, ଆମେରିକା, କାନାଡ଼ା, ସୁଇଡ଼େନ ପ୍ରାଗ୍, ସୁଇଜରଲ୍ୟାଣ୍ଡ, ଚୀନ୍, ହଂକଂ, ଜାପାନ, ହନୋଲୁଲୁ ପ୍ରଭୃତି ଦେଶର ସ୍ମୃତି ମଧୁର ମୁହୂର୍ତ୍ତ ମାନେ ମନଭିତରେ ଆସି ଭିଡ଼ ଜମାନ୍ତି । ସେହି ହଜିଗଲା ସ୍ମୃତିମାନଙ୍କର ବ୍ୟଥାବିଧୁର ବେଦନା ତଥା ଆନନ୍ଦ ଉଲ୍ଲାସର ସୀମାହୀନ ଆକାଶ କୋଳରେ ଘୂରି ବୁଲିବାରେ ମୋର ଆତ୍ମତୃପ୍ତିର ଅପରିସୀମ ସଂଭାବନା । ନାନା ସଂସ୍କୃତିର - ନାନା ଭାଷାର - ବିଭିନ୍ନ ଧରଣର ଲୋକଙ୍କ ସହିତ ସ୍ନେହ ଆଦର- ଭଲ ପାଇବାର ଦେବା ନେବାର ଆଦିମ ମାନବୀୟତାର ସାର୍ଥକ ପରିତୃପ୍ତି । ଏ ପ୍ରକାର ଆତ୍ମୋପଲବ୍ଧି ଯୋଗୁହିଁ ମୋ ଜୀବନର ଅପରାହ୍ନ ଏପରି ଭାବରେ ଉପଭୋଗ୍ୟ ହୋଇପାରିଛି । ଜୀବନର ମଧ୍ୟାହ୍ନରେ ବୃତ୍ତିଗତ ଘୋଡ଼ଦୌଡ଼ ଭିତରେ ଆଜି ଦିଲ୍ଲୀ, କାଲି ଲଣ୍ଡନ- ତାପରେ ନ୍ୟୁୟର୍କ, ସାନଫ୍ରାନ୍‌ସିସ୍କୋ, ଟୋକିଓ ପ୍ରଭୃତି ଦେଶରେ ବୁଲିବାର ଆବଶ୍ୟକତା ଭିତରେ ମୋ ଚତୁର୍ଦ୍ଦିଗରେ ଅହ ରହ ଚାଲିଥିବା ପକ୍ଷୀମାନଙ୍କର ମନୋରମ କାକଳି ଶୁଣିବା ପାଇଁ ସମୟ ନଥିଲା । ଅବଶ୍ୟ ବିଶ୍ୱର ନାନା ଦେଶରେ ଏପରି ଭବଘୂରେ ଜୀବନ କଟାଇ ପାରିଥିବାର ଅନୁଭୂତିହିଁ ବର୍ତ୍ତମାନର ମୁହୂର୍ତ୍ତମାନଙ୍କୁ ରସାୟିତ କରିପାରୁଛି ।

ଏ ପ୍ରକାର ଅସଂଖ୍ୟ ସ୍ମୃତି ହିଁ ମୋ ଉପନ୍ୟାସର ନାୟକ ଓ ନାୟିକାମାନଙ୍କୁ ସୃଷ୍ଟି କରିବାରେ ସାହାଯ୍ୟ କରିଛି । ସେମାନଙ୍କ ଭିତରୁ କିଏ ଇଂଲଣ୍ଡର ହ୍ରଦାଞ୍ଚଳର ମନୋରମ ପରିବେଶ ଭିତରେ ମୋ ସହିତ ଗୀତ ଗାଇ ଚାଲିଛି ତ ଆଉ କିଏ ଆମେରିକାର ନଭଶ୍ଚୁମ୍ବୀ ପ୍ରାସାଦର ମେଘମାଳା ଭିତରେ ଲୁଚି ରହିଥିବା ଭ୍ରାମ୍ୟମାଣ ରେସ୍ତୋରାଁରେ ମୋ ପାତ୍ରରେ ସାଂପେନ ପାନୀୟ ଢାଳୁଛି - କିଏ ମୋତେ ଆମେରିକାର ଜାତୀୟ ପାର୍କ ଭିତରେ କାଠ ତିଆରି ରେସ୍ତୋରାଁରେ ବଳାଇ ବଳାଇ ଖୁଆଉଛି ତ ଆଉ କିଏ ଦକ୍ଷିଣ ଆମେରିକାର ଆଣ୍ଡିଜ୍ ପର୍ବତମାଳାର ସୁରମ୍ୟ ଉପତ୍ୟକାରେ ଅଂଗୁର ତୋଳି ତୋଳି ଦେଉଛି । ଇଂଲଣ୍ଡର କେଉଁ ରମଣୀ ମୋତେ ତାଙ୍କର ପୁଅ କରି ନେଇଥିବା ଯୋଗୁ ଅଜସ୍ର ବାତ୍ସଲ୍ୟ ସ୍ନେହ ଅଜାଡୁଛନ୍ତି ତ ଆଉ କିଏ ପାଶ୍ଚାତ୍ୟ ସଂଗୀତର ବିଭୋରତା ଭିତରେ ମୋତେ ବୁଡ଼ାଇ ଦେଉଛି ।

ଇଟାଲୀ ଅଧିବାସୀ ଜୀବନର ପ୍ରତ୍ୟେକ ମୁହୂର୍ତ୍ତଟିକୁ ଉପଭୋଗ କରୁଥିବାର ଦୃଶ୍ୟ ସହିତ- ଅଧିକରୁ ଅଧିକ ଅର୍ଥ ଉପାର୍ଜ୍ଜନର ମୋହାବିଷ୍ଟ ଆମେରିକାନମାନଙ୍କର ସାମ୍ରାଜ୍ୟବାଦୀ ଔଦ୍ଧତ୍ୟ, ଜର୍ମାନୀର ଶକ୍ତି ସାମର୍ଥ୍ୟ ପ୍ରଦର୍ଶନର ଅନିୟନ୍ତ୍ରିତ ଇଚ୍ଛାଶକ୍ତି ସହିତ ରୁଷ ଓ ଚୀନର ସାମ୍ୟବାଦୀ ସ୍ୱପ୍ନର ରୂପାନ୍ତରୀକରଣ ପ୍ରକ୍ରିୟାର ପ୍ରତ୍ୟକ୍ଷୀଭୂତ ଅନୁଭୂତି ମୋ ଜୀବନକୁ

ଅଦ୍ଭୁତ ଭାବରେ ପରିମାର୍ଜିତ କରିପାରିଛି । ଏପରି ସ୍ମୃତିମଧୁର ଅନୁଭୂତିମାନ ମୋର ନିଃସଙ୍ଗତାର ମୁହୂର୍ତ୍ତମାନଙ୍କର ଚିରନ୍ତନ ବଂଧୁ ହିସାବରେ ଆସି ଦେଖା ଦିଅନ୍ତି । ଏମାନଙ୍କ ଭିତରୁ ମାତ୍ର କେତେଜଣ ନୀଟା, ନୀନା, ମାମି, ରିକି, ନିକି, ଅନିମେଷ, ସୌରଭ, ଛନ୍ଦା ମହ୍ଲାର, ରେଖା, ଅଭିଜିତ ପ୍ରଭୃତି ମୋ ଉପନ୍ୟାସର ନାୟକ ନାୟିକାମାନେ ମୋ ସହିତ ଅନବରତ ଭାବ ବିନିମୟ କରି ଚାଲିଛନ୍ତି । ମୋର ମନେହୁଏ, ଏହାହିଁ ମୋର ଭବଘୂର ଜୀବନର ପରିପୂର୍ଣ୍ଣତା-ବଂଚିବାର ସାର୍ଥକତା । ସେଥିଯୋଗୁ ଜୀବନର ଅପରାହ୍ନ ମୋ ପାଇଁ ଗୈରିକ ବିଷଣ୍ଣତା ନୁହେଁ- ଏହା ହେଉଛି ମୋ ଜୀବନ୍ତ ସ୍ରୋତସ୍ୱତୀର ପ୍ରବାହମାନ- ନୂଆ ନୂଆ ଭାବରେ ଉନ୍ମାଦନା ସୃଷ୍ଟି କରିପାରୁଥିବା ସଂଗୀତ ମୂର୍ଚ୍ଛନା- ଏହା ବ୍ୟର୍ଥତାର ବ୍ୟଥା ରାଗିଣୀ ନୁହେଁ - ଏହା ଆଗାମୀ ଯୁଗର ଛନ୍ଦାୟିତ ମେଘ ମଲ୍ଲାର

X X X X X X X

ଆଉ ଗୋଟିଏ ମନୋରମ ଅନୁଭୂତି ଏହି ଶାନ୍ତ ଶୀତଳ ଅପରାହ୍ନରେହିଁ ସଂଭବ ହୋଇପାରିଛି । ବୃତ୍ତିଗତ କାର୍ଯ୍ୟ ବ୍ୟସ୍ତ ଜୀବନର ଅବିଶ୍ରାନ୍ତ ଘୋଡ଼ଦୌଡ଼ ଭିତରେ ମୋ ଦ୍ୱାରା ସୃଷ୍ଟ ଏହି ରମଣୀୟ ପରିବେଶକୁ ମୁଁ ଉପଭୋଗ କରିବା ପାଇଁ ସମୟ ପାଉ ନଥିଲି । ସକାଳଠାରୁ ରାତି ପର୍ଯ୍ୟନ୍ତ କେବଳ ନାନା ଧରଣର କାମ- ବିଭିନ୍ନ ପ୍ରକାରର ସଭା ସମିତି, ବକ୍ତୃତା ପ୍ରଭୃତିରେ ସମୟ କଟେ । ରାତ୍ରିରେ ଶୋଇବା ବେଳେ ମଧ ଆସନ୍ତାକାଲିର କାର୍ଯ୍ୟକ୍ରମ ଉଙ୍କି ମାରୁଥାଏ । ମୋ ବଗିଚାର ଗଛପତ୍ର ପାଣିପବନ ଭିତରେ ଜ୍ୟୋସ୍ନାପ୍ଲାବିତ ରଜନୀକୁ ଉପଭୋଗ କରିବା ପାଇଁ ସମୟ ନଥାଏ ।

ଏପ୍ରକାର ଦୌଡ଼ ଯେ ସବୁବେଳେ ବିରକ୍ତି କର ଥିଲା- ତାହା ନୁହେଁ - ଏହା ହେଲା ମଧ୍ୟାହ୍ନ ଜୀବନର କୋଳାହଳମୟ ଫଳପ୍ରଦ ଗତିପଥ- କିନ୍ତୁ ବର୍ତ୍ତମାନ ଯେତେବେଳେ ସକାଳୁ ଉଠିଲା ବେଳକୁ ମୋର ଆସନ୍ତା ଦିନର କାର୍ଯ୍ୟକ୍ରମ ସଂପୂର୍ଣ୍ଣ ରୂପେ ମୋ ଇଚ୍ଛା ଉପରେ ନିର୍ଭର କରେ- ଆଗରେ ସେପରି ଧରାବନ୍ଧା କାର୍ଯ୍ୟ ନିର୍ଘଣ୍ଟ ନଥାଏ- ସେତେବେଳେ ହିଁ ନିରୋଳା ମୁହୂର୍ତ୍ତମାନ ଆସି ମୋ ପାଖରେ ଦେଖା ଦିଅନ୍ତି । ମୋ ବାରଣ୍ଡାରେ ବସି ମୋ ଗଛମାନଙ୍କରେ ବହୁଦିନରୁ ଆଶ୍ରୟ ନେଇଥିବା ନାନା ରଙ୍ଗର ପକ୍ଷୀମାନଙ୍କୁ ମୁଁ ଦେଖିପାରେ— ସେମାନଙ୍କର ବିଭିନ୍ନ ରଙ୍ଗ, ଭିନ୍ନ ଭିନ୍ନ କାକଳି, ଛନ୍ଦାୟିତ ଗତିପଥ— ପକ୍ଷୀ ଶାବକମାନଙ୍କର ଆବଦାର—ମାଆ ପକ୍ଷୀର ବାତ୍ସଲ୍ୟଗତ ଉଦ୍‌ବେଗ ।

ଦୁଇଟି ସାଥୀ ପକ୍ଷୀଙ୍କର ସ୍ନେହବୋଳା ଥଣ୍ଟ ଘଷାଘଷି,— କାହାର ପଛଟା ଲମ୍ବ ତ କାହାରି ଥଣ୍ଟଟି ଆଗକୁ ଲମ୍ବିଯାଇଛି । କାହାର ଦେହର ପକ୍ଷୀ ନାନାରଙ୍ଗର ଚିତ୍ରିତ ତ ପଛଟା କଳା ମଚମଚ- କାହାରି କଳା ମଚମଚ ପକ୍ଷୀ ପୁଚ୍ଛ ସହିତ ପଛ ପର ସବୁ ରଙ୍ଗିନ - କିଏ ଗଛ ଉପରେ ଗୋଲ ହୋଇ ବସିଥାଏ ତ ଆଉ କିଏ ଲମ୍ବା ଥଣ୍ଟ, ଲମ୍ବା ବେକ ଟେକି ଟେକି ଆହାର ଖୋଜି ବୁଲୁଛି- କାହାରି କାକଳି ମନୋମୁଗ୍ଧକର ତ ଆଉ କାହାରି କାନଫଟା ଟିଂ ଟିଂଆ ରାବ । ଅଧିକାଂଶ ଯୋଡ଼ି ଯୋଡ଼ି ହୋଇ ବୁଲନ୍ତି; ତଥାପି କେତେକଙ୍କଠାରେ ବହୁ କୁଟୁମ୍ବିଙ୍କ ସମାରୋହ । ବଣି, କପୋତୀ, ଶୁଆ, କୁମ୍ଭାଟିଆ, କୋଇଲି କଜଳପାତୀ ପରି କେତୋଟି ଚିହ୍ନା ପକ୍ଷୀ ସହିତ ଆହୁରି ଅନେକ ଅନାମଧେୟ ପକ୍ଷୀମାନଙ୍କର ସମାରୋହ ବହୁବର୍ଷ ଧରି ଚାଲିଥିଲା ବେଳେ ଏହି ଅପରାହ୍ନରେ ହିଁ ସେମାନଙ୍କ ସହିତ ମୋର ପ୍ରଥମ ପରିଚୟ ହେଲା

। ଗୁଣ୍ଡୁଚି ମୂଷାମାନଙ୍କର ଦୌଡ଼ାଦୌଡ଼ି, ନେଉଳମାନଙ୍କର ଆତଙ୍କିତ ଚାହାଣି ସହିତ ହଡ଼ବଡ଼ିଆ ପଳାୟନ ପ୍ରଭୃତି ଏକ୍ୟତାନୀ ଅର୍କେଷ୍ଟ୍ରା ଦେଖିବା ପାଇଁ ଅଫୁରନ୍ତ ସମୟ ମିଳୁଛି । ତା ସହିତ ବର୍ଷାରାତିର ମାଳତୀ ଫୁଲର ବର୍ଷାଭିଜା ସୁଗନ୍ଧି ରାତିସାରା ମୋ ଘର ଭିତରେ ସଂଚରି ଯିବାର ଅନୁଭୂତି - ଚଂପା, ରଜନୀଗନ୍ଧା, ମଧୁମାଳତୀ, ଗଙ୍ଗଶିଉଳି ପ୍ରଭୃତି ନାନା ଧରଣର ଫୁଲର ସୁରଭି ମୁଁ ବର୍ତ୍ତମାନ ହିଁ ଅନ୍ତରଂଗ ଭାବରେ ଉପଭୋଗ କରି ପାରୁଛି ।

ଆଗରୁ ମଧ୍ୟ ଏ ପ୍ରକାର କଳତାନ ଲାଗି ରହିଥିଲା, କିନ୍ତୁ ମୋତେ ଶୁଣା ଯାଉନଥିଲା । ମଧ୍ୟାହ୍ନର କୋଳାହଳ ଭିତରେ ଏହାର ସ୍ଥାନ ନଥିଲା । ସେହିପରି ସକାଳ, ସଂଧ୍ୟା ଓ ରାତ୍ରିର ବିଭିନ୍ନ ରୂପ, ଋତୁମାନଙ୍କର ବିଚିତ୍ର ଶୋଭା ବର୍ତ୍ତମାନ ଯେପରି ଭାବରେ ମନ ଭିତରେ ହଲଚଲ ସୃଷ୍ଟି କରିପାରୁଛି ତାହା ଆଗରୁ ସଂଭବ ହୋଇପାରୁନଥିଲା । ମୋର ପ୍ରିୟ ସଂଧ୍ୟାତାରାକୁ ମୁଁ ଅକସ୍ମାତ୍ ପୃଥିବୀର ବିଭିନ୍ନ ଆକାଶରେ ଦେଖୁଥିଲି ମାତ୍ର । ଏବେ ପ୍ରତି ସଂଧ୍ୟାରେ ତାକୁ ଦେଖିବାର ସୁଯୋଗ ମିଳିଲା । ଏପରି ରମଣୀୟ ପରିବେଶ ଭିତରେ ମନ୍ତ୍ରମୁଗ୍ଧ ହୋଇ ବସି ଚାହିଁ ରହିଥିଲା ବେଳେ ମୋର ମନେ ପଡ଼ିଗଲା ସାହାଜାହାନଙ୍କର କଳ୍ପନା ପ୍ରସୂତ କାବ୍ୟିକ ସ୍ଥାପତ୍ୟର ରୂପାନ୍ତରଣର ଦୃଶ୍ୟ ଦେଖି ତାଙ୍କ ହୃଦୟ ଭିତରୁ ଉଚ୍ଛ୍ୱସିତ ଉକ୍ତି–

''ଯଦି ସ୍ୱର୍ଗ କେଉଁଠି ଥାଏ ତାହା ଏହିଠାରେ, ଏହିଠାରେ'', ଏହିଠାରେ, ମୋର ସେହିପରି ଭାବରେ ମନେହେଲା– ନନ୍ଦନକାନନ ଯଦି କେଉଁ କଳ୍ପଲୋକରେ ଥାଏ ତାହାହେଲେ ମୋ ଦ୍ୱାରା କଳ୍ପିତ ଏହି ଉପବନରେ ହିଁ ରହିଛି । କିନ୍ତୁ ଏହା ତ ଏହିପରି ବହୁତ ଦିନଧରି ରହିଛି, କିନ୍ତୁ ମୁଁ କାହିଁକି ଦେଖିପାରୁ ନଥିଲି- କାରଣ 'ମନର ମୂଳେ ଏ ଜଗତ' ଏବଂ ଆଗରୁ ମୋର ମନ ସେଥିପାଇଁ ପ୍ରସ୍ତୁତ ନଥିଲା । ବର୍ତ୍ତମାନର ନିରୋଳା ଅପରାହ୍ଣରେ ହିଁ ଏହା ସଂଭବ ହେଲା ।

ବର୍ତ୍ତମାନ ହିଁ ସମୟ ହେଲା ମୋ ପିଲାଦିନର ସ୍ମୃତିମାନଙ୍କୁ ପୁନର୍ଜୀବିତ କରି ପଛକୁ ଫେରି ଚାହିଁବାର ଆନନ୍ଦଦାୟକ ଅନୁଭୂତି । ସେଥିଯୋଗୁ ମୋ ଜନ୍ମ ସ୍ଥାନ ଛାଡ଼ିବାର ଷାଠିଏ ବର୍ଷ ପରେ ପୁଣି ସେହି ସ୍ଥାନକୁ ଫେରି ଚାହିଁବାର ଅଦମ୍ୟ ଆଗ୍ରହ । ମୋ ଗାଁ'ର କୃଷ୍ଣଗିରି ପାହାଡ଼ ପାଖରେ ଗୋଟିଏ ବଖରାଘର ତିଆରି କରି ସେଠାରେ ବସି ମୋ ପିଲାଦିନର ଦୁଃଖସୁଖର ସ୍ମୃତିମାନଙ୍କୁ ଆଖି ଆଗରେ ମେଲାଇ ଧରିବାରେ ଅପରିସୀମ ଆନନ୍ଦ । ତାର ପାଣିପବନ, ଗଛଲତା, ଝାଡ଼େଶ୍ୱରର ପାଣି କୁଣ୍ଡ - ରାମଚଣ୍ଡୀ ମନ୍ଦିର - ଏଠାକାର ଆମ୍ବ ତୋଟା, ଜାମୁକୋଳି ଗଛ ଚାରିପାଖେ ପୁଣି ଥରେ ବୁଲିବାର ଅପୂର୍ବ ଅନୁଭୂତି । ଏହି ପାଣିପବନ ହିଁ ମୋତେ ଜୀବନ ଯାତ୍ରାର ଅନୁପମ ପଥର ଅଧିକାରୀ କରିପାରିଛି । ବିଶ୍ୱ ଭ୍ରମଣ ପଥରେ ମୋତେ ଉସାହିତ କରିଛି । ଏଠାରେ ବିଲୀନ ହୋଇଯାଇଥିବା ମୋ ନନା ବୋଉଙ୍କର ଅପରିମିତ ସ୍ନେହ ସଦିଚ୍ଛାକୁ ପୁଣି ଥରେ ମନେ ପକାଇବାରେ ମୋ ପ୍ରାଣ ଉଲ୍ଲସିତ ହୋଇଉଠିଛି ।

ଏ ପ୍ରକାରର ସଂଘର୍ଷହୀନ, ଗତିହୀନ ଶାନ୍ତ ଶିଥିଳ ମାନସିକତା କେବଳ ଏ ପ୍ରକାରର ଅପରାହ୍ଣରେ ହିଁ ସଂଭବ । ତେଣୁ ମୋ ଜୀବନରେ ଏହାର ମର୍ଯ୍ୟାଦା ବହୁତ ବେଶୀ ବୋଲି ମୋର ଧାରଣା ।

■ ■ ■

# ୨

# ଜୀବନୀ କାହିଁକି ?

ସଂଗ୍ରାମଶୀଳ ଜୀବନର ବହୁମୁଖୀ ଅନୁଭୂତି ଓ ଅବିଚ୍ଛିନ୍ନ ଘାତ ପ୍ରତିଘାତ ଉଦ୍‌ବେଳିତ ସମ୍ବେଦନର ଆବର୍ତ୍ତ ଭିତରୁ ଜୀବନ ଦର୍ଶନ ଗଢ଼ିଉଠେ । କେତେବେଳେ ଏବଂ କିପରି ଭାବରେ ଏହି ଜୀବନ ଦର୍ଶନ ବ୍ୟକ୍ତିଠାରେ ତାହାର ଭବିଷ୍ୟତ ଅନୁଭୂତିର ନିୟନ୍ତ୍ରକ ରୂପେ କାମ କରି ଚାଲିଥାଏ– ତାହା ନିର୍ଣ୍ଣୟ କରିବା କଷ୍ଟକର ବ୍ୟାପାର । ତଥାପି ପ୍ରତ୍ୟେକ ଲୋକଙ୍କର ବହୁବିଧ ଗଭୀର ଅନୁଭୂତିର ମନ୍ଥନ ଭିତରୁ ଜୀବନର ଦିଗ୍‌ଦର୍ଶନକୁ ଖୋଜି ବାହାର କରାଯାଇପାରେ । ମନୁଷ୍ୟର ଆଦର୍ଶ, ଲକ୍ଷ୍ୟ ଏବଂ ତା'ର ଦୈନନ୍ଦିନ ବ୍ୟାବହାରିକ ରୂପରେଖ ମଧ୍ୟ ଏହାର ପ୍ରତିଫଳନ ବୋଲି କୁହାଯାଇପାରେ । ଚାରିତ୍ରିକ ଦିଗ୍‌ଦର୍ଶନ ନଥାଇ ଲୋକ ଚଳିପାରିବ ନାହିଁ । ଏହା କେତେଦୂର ବଳିଷ୍ଠ ଓ ସୁଦୃଢ଼- ସଂଗଠିତ ବା ଅସଂଯତ- ପରିବର୍ତ୍ତନଶୀଳ ବା ଏକଦିଗଦର୍ଶୀ-ରକ୍ଷଣଶୀଳ ବା ବୈପ୍ଳବିକ– ତାହା ବ୍ୟକ୍ତିତ୍ୱର ବିଶ୍ଳେଷଣରୁ ଅନୁମାନ କରିହୁଏ ।

ଏହି ଅନ୍ୱେଷଣା ପାଇଁ ମୁଁ ପଛକୁ ଫେରିଯିବାକୁ ଚାହେଁ । ପଛକୁ ଫେରି ଚାହିଁବାରେ ଦୁଃଖ ଅଛି, ଆନନ୍ଦ ଅଛି-ଅନୁଶୋଚନା ଅଛି, ଆତ୍ମସନ୍ତୋଷ ମଧ୍ୟ ଅଛି । ଅନୁଶୋଚନା ଓ ବ୍ୟର୍ଥତାର ମାତ୍ରା ବଢ଼ିଯାଏ ଯଦି ଜୀବନର ଅପରାହ୍ଣରେ ପଛକୁ ଚାହିଁଲେ ଇଚ୍ଛା ହେବ ଯେ ଆଉଥରେ ଅନ୍ୟ ଭାବରେ ଜୀବନକୁ ଗଢ଼ିବା ପାଇଁ ସୁବିଧା ପାଇଲେ ଭଲ ହୁଅନ୍ତା–ଅନ୍ୟ ପ୍ରକାରରେ ଏହାର ଦିଗ୍‌ଦର୍ଶନ ଗଢ଼ି ଉଠି ପାରିଲେ ଜୀବନରେ ଅଧିକ ସାର୍ଥକତା ଭରିଉଠନ୍ତା । ଯାହା ପାଇନାହିଁ, ତାହା ପାଇବାରେ ଆଉ ଥରେ ଚେଷ୍ଟା କରିବା ପାଇଁ ବଳବତୀ ଇଚ୍ଛା ଯାହାଠାରେ ବାରମ୍ବାର ଉଙ୍କି ମାରୁଥାଏ, ସମୟର ଉଜାଣୀ ସ୍ରୋତରେ ଭାସି ଯିବାରେ ତାହାର ଆନନ୍ଦ ନାହିଁ–ଅଛି କେବଳ ଅନୁଶୋଚନା, ଦୁଃଖ, ବ୍ୟର୍ଥତା, ଦୀର୍ଘ ନିଃଶ୍ୱାସ–ନିଜ ଜୀବନ ଜୟଯାତ୍ରାର ତଥାକଥିତ ବାସ୍ତବ ଓ କାଳ୍ପନିକ ପ୍ରତିରୋଧକାରୀ ଶତ୍ରୁଙ୍କ ପ୍ରତି ନିନ୍ଦା ଓ ଘୃଣା ।

ନିଜ ପ୍ରତି ଅନୁକମ୍ପାରେ ଆଖିରେ ଲୁହ ଆସେ । ଏପରି ଲୋକେ ମୃତ୍ୟୁ ପର୍ଯ୍ୟନ୍ତ ସେହିପରି ଜୀବନର ଅସଫଳତାର ତୀବ୍ର ବ୍ୟର୍ଥତାରେ ଘାରି ହେଉଥାନ୍ତି । ସୌଭାଗ୍ୟବଶତଃ

ମୁଁ ଏମାନଙ୍କର ଦଳଭୁକ୍ତ ନୁହେଁ । ମୁଁ ପଛକୁ ଚାହିଁବାରେ ଆନନ୍ଦ ପାଏ- ଆଉଥରେ ଜୀବନ ଆରମ୍ଭ କଲେ ପୁଣି ଏହି ଜୀବନକୁ ବାଛିବା ପସନ୍ଦ କରେ । ତେଣୁ ସମୟର ସୁଅ ମୁହଁରେ ଭାସିଯିବାରେ ଯେପରି ମୋର ଜୀବନର ଆନନ୍ଦ, ପଛକୁ ଫେରି ଚାହିଁବାରେ ସେତିକି ଆନନ୍ଦ ଓ ଉତ୍ସାହ । ଦୁଃଖ ନଥାଇ ମନୁଷ୍ୟ ଜୀବନ ସମ୍ଭବ ନୁହେଁ । କିନ୍ତୁ ଦୁଃଖର ମଧ୍ୟ ସୌନ୍ଦର୍ଯ୍ୟ ଅଛି । ତାହା ସବୁବେଳେ କଦାକାର ନୁହେଁ । ତାହା ପ୍ରାଣକୁ ନମନୀୟ କରେ- ଦୁର୍ବାର ଆକାଂକ୍ଷାକୁ ପ୍ରଶମିତ କରେ- ସୁଖକର ଅନୁଭୂତିକୁ ଆହୁରି ବେଶୀ ରଙ୍ଗିନ୍ କରେ । ସୁଖ ଦୁଃଖ ଜୀବନ ବୀଥିକା ଉଭୟ ପାର୍ଶ୍ୱରେ ଥିବା ପତ୍ରପୁଷ୍ପ ଓ କଣ୍ଟକଯୁକ୍ତ ବୃକ୍ଷଲତାର ସମଷ୍ଟି ମାତ୍ର । କିନ୍ତୁ ଜୀବନରେ କେବଳ କଣ୍ଟାବଣରେ ପଡ଼ି ରକ୍ତାକ୍ତ ହେବାର ମାନସିକ ବେଦନା କେବଳ ଦୁର୍ବଳମନାର ଏକ ଦେଶଦର୍ଶୀ ଆତ୍ମବିଡ଼ମ୍ବନା ମାତ୍ର— ଆଗେଇଯିବାର ନିଷ୍ଠା, ସଂକଳ୍ପ ତଥା ଆତ୍ମଶକ୍ତିର ଅଭାବଗ୍ରସ୍ତ ବ୍ୟକ୍ତି ଏମାନେ । ଏ ପ୍ରକାର ପଥର ପଥିକ ମୁଁ ନୁହେଁ । ଜୀବନର ସବୁ ସ୍ପର୍ଶ ମୋ ପ୍ରତି ଆକର୍ଷଣୀୟ । ବ୍ୟଥାତୁର ବା ଆନନ୍ଦ ହିଲ୍ଲୋଳିତ ଅନୁଭୂତି ମୋର ସମପରିମାଣରେ ଆଦରଣୀୟ । ପ୍ରତ୍ୟେକ ଦିନ ଏବଂ ପ୍ରତ୍ୟେକ ଋତୁ ନାନା ଭଙ୍ଗୀରେ ନୃତ୍ୟରତା ପ୍ରକୃତି ପରି ଲୀଳାୟିତା । ଗୋଟିଏ ଅନ୍ୟଟିର ପରିପୂରକ । ଗୋଟିକ ଅଭାବରେ ଅନ୍ୟଟିର ବିକାଶ ସମ୍ଭବ ନୁହେଁ - ରୁଚିକର ମଧ୍ୟ ନୁହେଁ ।

ଜୀବନ ଯେତେ କୁଟିଳ ଓ ମିଥ୍ୟାର ମାୟାଜାଲ ବୋଲି ମୁନିଋଷିମାନେ କହିଲେ ମଧ୍ୟ ତାହା ମୋତେ ବହୁତ ଭଲ ଲାଗେ । ମୁଁ ଜୀବନ ସହିତ ଗଭୀର ପ୍ରେମରେ ଆବଦ୍ଧ— ଜୀବନ ଯାହା ଦେଇଛି, ସେଥିପାଇଁ ତାକୁ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରେ । ଯାହା ପାଇନାହିଁ ତାହାର ପରିସର ଅନନ୍ତ; କିନ୍ତୁ ମୋର ସୀମାବଦ୍ଧ ଜୀବନ ଭିତରେ ଅସୀମ ପରିବ୍ୟାପ୍ତ ଅଭାବ ଅସୁବିଧାର ଚିନ୍ତା ମନକୁ ବିଭ୍ରାନ୍ତ କରିବା ନିଶ୍ଚିତ ଭାବରେ ଅସମୀଚୀନ ବୋଲି ମୋର ମନେହୁଏ ।

ଅତୀତ ଜୀବନର ଦିଗ୍‌ବଳୟ ବ୍ୟାପୀ ସମୁଦ୍ରକୁ ଆଖି ଫେରାଇ ଦେଖିଲେ ଅସଂଖ୍ୟ ବରଫଖଣ୍ଡର ଅସ୍ପଷ୍ଟ ଉପରିଭାଗ ନୀଳ ଆକାଶରେ ଧଳାଧଳା ମେଘଖଣ୍ଡ ପରି ଆଖିକୁ ଦେଖାଯାଏ । ଏହି ପ୍ରତ୍ୟେକ ବରଫଖଣ୍ଡର ବିଶାଳଭାଗ ପାଣି ଭିତରେ ବୁଡ଼ି ରହିଥାଏ । ଏହାର ପ୍ରଶସ୍ତ ଭିତ୍ତି ହଠାତ୍ ଆଖିକୁ ଦେଖାଯାଏ ନାହିଁ । କିନ୍ତୁ ଏହାର ପରିସରକୁ ଆବିଷ୍କାର କରିବା ପାଇଁ ଚେଷ୍ଟା କଲେ ସୁଖ-ଦୁଃଖ, ଆଶା-ନୈରାଶ୍ୟ, ହଜିଲା ହଜିଲା ବିସ୍ମୃତିର ରଙ୍ଗିନ୍ କୁହେଳି ପରି ଏପରି ବିଚିତ୍ର ଭାବାବେଗର ଆଲୋଡ଼ନ ସୃଷ୍ଟି କରେ ଯେ, ମନପ୍ରାଣ ବହୁ ସମୟ ଧରି ବିହ୍ୱଳିତ ହୋଇଯାଏ । ଏହି ଗଭୀର ବିଭୋରତାହିଁ ମନୁଷ୍ୟକୁ ଜୀବନୀଶକ୍ତି ଯୋଗାଏ- ତାହାର ଆଦର୍ଶକୁ ବଳିଷ୍ଠ କରେ- ଭବିଷ୍ୟତକୁ ପରିମାର୍ଜିତ କରେ-ଜୀବନ ସ୍ରୋତକୁ ନାନା ରଙ୍ଗରେ ରଞ୍ଜିତ କରିଥାଏ । ତେଣୁ ଅତୀତର ସମୁଦ୍ର ମନ୍ଥନରୁ କେବଳ ହଳାହଳ ବିଷ ବାହାରେ ନାହିଁ- ଅମୃତ ମଧ୍ୟ ଉଦ୍‌ଭୂତ ହୁଏ । ଲାସ୍ୟମୟୀ ମହାଲକ୍ଷ୍ମୀଙ୍କର ସ୍ନିଗ୍‌ଧ ସ୍ମିତହାସ ପ୍ରାଣକୁ ଅପୂର୍ବ ପୁଲକରେ ପୁଲକିତ କରେ—ବ୍ୟକ୍ତିକୁ ମନ୍ତ୍ରମୁଗ୍‌ଧ—ମରଣଶୀଳ ଜୀବନକୁ ଚିରଞ୍ଜୀବୀ କରି ରଖେ । ତେଣୁ ଏହାର ମୂଲ୍ୟ ଜୀବନରେ ବହୁତ ବେଶୀ ।

X X X X X X

ଜୀବନର ଯେଉଁ ଭାବଗମ୍ଭୀର ମୁହୂର୍ତ୍ତଗୁଡ଼ିକ ଗଭୀର ଭାବରେ ମୋତେ ପ୍ରଭାବିତ କରିଥିଲା, କେବଳ ସେହି ବିଷୟରେହିଁ ଲେଖିବି । ସମୟର ସେହି ଆବର୍ତ୍ତ ଭିତରେ ଅନ୍ୟମାନେ ମୋତେ ଯେପରି ଦେଖାଯାଉଥିଲେ ତାହାର ଚିତ୍ର ମଧ୍ୟ ଦେବା ପାଇଁ ଇଚ୍ଛା କରିଛି । ଏହାଛଡ଼ା ସ୍ରୋତମୁଖୀ ଜୀବନର ଦୁଇ ପାର୍ଶ୍ୱରେ ଦେଖାଦେଇଥିବା ଅସଂଖ୍ୟ ବ୍ୟକ୍ତି ଓ ଅଗଣିତ ଅନୁଭୂତିର ଅଗ୍ନାଗ୍ନି ବନାନୀକୁ କଳନା କରିବା ସମ୍ଭବ ନୁହେଁ ।

ଜୀବନର ଦୂରବୀକ୍ଷଣ ଗୋଲକରେ ଯାହା ଭାସିଆସିବ ତାହାର ଲୁକ୍କାୟିତ, ବ୍ୟାପକ ତଥା ବହୁମୁଖୀ ପରିସର ଜୀବନକୁ ନାନା ଭାବରେ ପ୍ରଭାବିତ କରିଥିବ ନିଶ୍ଚୟ । ତା ନହେଲେ ପଛକୁ ଚାହିଁଲେ ଏତେ ଜୀବନ୍ତ ଭାବରେ ଏଗୁଡ଼ିକ ଆଖିକୁ ଦେଖାଯାଉଛି କିପରି ?

ପରିଚିତ ବନ୍ଧୁମାନଙ୍କ ଭିତରୁ କାହାକୁ ଆକ୍ଷେପ କରିବା ମୋର ଉଦ୍ଦେଶ୍ୟ ନୁହେଁ, କିନ୍ତୁ ସେମାନଙ୍କ ଯୋଗୁଁ ଯେଉଁ ମାନସିକ ପ୍ରତିକ୍ରିୟା ମୋଠାରେ ଗଭୀର ଭାବରେ ଦେଖାଯାଇଥିଲା ତାହାର ଶିକ୍ଷଣୀୟ ଦିଗ ଅନ୍ୟମାନଙ୍କ ପାଇଁ ରହିଛି ବୋଲି ଏହାକୁ ପ୍ରସାରିତ ତଥା ସ୍ୱଷ୍ଟ କେନ୍ଦ୍ରିକ କରିବାକୁ ଉଦ୍ୟମ କରିଛି । ଯେଉଁମାନଙ୍କ ବିଷୟରେ ଉଲ୍ଲେଖ କରାହୋଇଛି ତାହା ପଛରେ କୌଣସି ଦୁରଭିସନ୍ଧି ନାହିଁ କି ଅସୂୟା ସୂଚକ ଆକ୍ଷେପ ନାହିଁ । ଜୀବନରେ ଯାହା ଘଟିଥାଏ ତାହାର ଉଦାହରଣ ମାତ୍ର । ସେମାନେ ବ୍ୟକ୍ତି ବିଶେଷ ହେଲେ ମଧ୍ୟ ଗୋଟିଏ ଗୋଟିଏ ସାମାଜିକ ସଂସ୍କାର ପ୍ରତୀକ ପରି । ସେ ନଥିଲେ ତାଙ୍କ ପରି ଆଉ ଜଣେ ଆସିଥାନ୍ତେ ।

ମୁଁ ଗଭୀର ଭାବେ ଅନୁଭବ କରିପାରିଛି ଯେ ମୋର ବନ୍ଧୁମାନଙ୍କ ଅପେକ୍ଷା ମୋର ଅବନ୍ଧୁମାନେ (ଶତ୍ରୁ କହିବା ଠିକ୍ ହେବନାହିଁ, କାରଣ ଏହା ବହୁତ ବେଶୀ ଘୃଣାବାଚକ କଡ଼ା ଶବ୍ଦ) ମୋତେ ପରୋକ୍ଷରେ ବହୁତ ସାହାଯ୍ୟ କରିପାରିଛନ୍ତି । ମୋର ଯାହାକିଛି ସାଫଲ୍ୟ ଓ କୃତିତ୍ୱ ଏମାନଙ୍କ ଯୋଗୁଁ ବହୁ ପରିମାଣରେ ସମ୍ଭବ ହୋଇପାରିଛି । ଅବନ୍ଧୁମାନେ ଖୁବ୍ ବେଶୀ କୋଳାହଳ ଓ ଝଡ଼ଝଞ୍ଜାର ବାର୍ତ୍ତାବହ ବୋଲି ଏମାନଙ୍କୁ ସହଜରେ ଚିହ୍ନିହୁଏ—ବହୁ ସମୟ ଧରି ଏମାନେ ମନେ ରହନ୍ତି । କିନ୍ତୁ ମୋର ବିଶ୍ୱାସ ଯେ ଯେଉଁମାନେ ସମାଜର ଅନିଷ୍ଟକାରୀ ନୁହନ୍ତି ଓ ସାଧାରଣ ଭାବରେ ଭଲଲୋକ ବୋଲି ପରିଚିତ, ଅବନ୍ଧୁ ଅପେକ୍ଷା ସେହିପରି ବନ୍ଧୁମାନଙ୍କର ସଂଖ୍ୟା ଅନେକ ବେଶୀ । ବନ୍ଧୁମାନେ ନୀରବ ଶୁଭେଚ୍ଛୁ । ସେମାନଙ୍କର ଗଭୀର ସଦିଚ୍ଛା ଓ ସ୍ନେହ ହଠାତ୍ ଜଣାପଡ଼େନାହିଁ, କାରଣ ମନୁଷ୍ୟର ସବୁ ଭଲ ଗୁଣଗୁଡ଼ିକ ବଡ଼ ନରମ ଓ ନୀରବ-ପରନିନ୍ଦା ପରି କୋଳାହଳପୂର୍ଣ୍ଣ ନୁହନ୍ତି । କେବଳ ଉପଯୁକ୍ତ କ୍ଷେତ୍ରରେ ହିଁ ଏହା ପ୍ରକାଶ ପାଇଥାଏ - ଅନ୍ୟ ସମୟରେ ମନ ଭିତରେ ଲୁଚିଛପି ରହିଥାଏ । ସେଥିପାଇଁ କେତେଥର ମୁଁ କେତେକ ଲୋକଙ୍କର ଭଲକାମ ପାଇଁ ସେମାନଙ୍କୁ ବହୁତ ପ୍ରଶଂସା କରି ବେନାମୀ ଚିଠି ଲେଖିଛି । ସାଧାରଣତଃ ଅବନ୍ଧୁମାନେହିଁ ନିନ୍ଦାସୂଚକ ଚିଠି ଲେଖିଥାନ୍ତି । ଭଲଲୋକ ପାଖକୁ ତାଙ୍କର ସଦ୍‌ଗୁଣ ପାଇଁ ବେନାମୀ ଚିଠି ଲେଖାଗଲେ ସେମାନେ ଖୁସି ହେବେ ଏବଂ ଏହା ସେମାନଙ୍କୁ ଆହୁରି ବେଶୀ ଉତ୍ସାହିତ କରିବ । ନିଜ ନାମ ଲେଖିଦେଲେ ଖୋସାମତିଆ ପରି ଜଣାଯିବ-ବିଶ୍ୱାସ ମଧ୍ୟ ନ ହୋଇପାରେ ।

ଜୀବନରେ ଯାହା ଯାହା ଘଟିଯାଇଛି ତାହା କିପରି ଜୀବନକୁ ପ୍ରଭାବିତ କରେ- ଜୀବନ ଦର୍ଶନ ସୃଷ୍ଟି କରେ-ବ୍ୟକ୍ତିତ୍ୱକୁ ସଂଗଠିତ କରେ-ଦିଗ୍‌ଦର୍ଶନର ଲକ୍ଷ୍ୟ ଦୃଢ଼ କରେ, ସେସବୁ ବିଷୟରେ ସୂଚନା ଦିଆହୋଇଛି । ଯାହା କହିଛି ସତ କହିଛି, କିନ୍ତୁ ଅନେକ ଅକୁହା କଥା ରହିଯାଇଛି, ଯାହା ସବୁବେଳେ ଅକୁହାହିଁ ରହିଯିବ । କାରଣ କହିଲେ କାହାର କିଛି ଲାଭ ନାହିଁ, ବରଂ କେତେକଙ୍କର କ୍ଷତି ହେବାର ସମ୍ଭାବନା । ଏହି ଯୋଗୁହିଁ ବହୁ ଅକୁହା କଥା ଜୀବନ ସହିତ ଅନ୍ତରଙ୍ଗ ଭାବରେ ଜଡ଼ିତ ହୋଇ ରହିଥିଲେ ସୁଦ୍ଧା ଅନ୍ୟମାନଙ୍କର ଅଜ୍ଞାତରେ ମୃତ୍ୟୁ ସହିତ ଏହା ବିଲୀନ ହୋଇଯାଏ ।

X X X X X X

ନିଜର ଅନୁଭୂତି ବିଷୟରେ ଲେଖିଲାବେଳେ ହୁଏତ ବହୁ ଅପ୍ରାସଙ୍ଗିକ ବିଷୟ ଆସିଯାଏ । ଲେଖକ ଏହି ଧାବମାନ ଭାବୋଚ୍ଛ୍ୱାସକୁ ରୋକିପାରେ ନାହିଁ । ତେଣୁ ପାଠକ ପାଠିକାମାନଙ୍କୁ ଅନୁରୋଧ ଯାହା ସେମାନଙ୍କୁ ଅବାନ୍ତର ପ୍ରସାରଣ ବୋଲି ମନେହେବ ତାକୁ ବାଦ୍ ଦେବେ । ତା ସହିତ ନିଜ ଜୀବନ କାହାଣୀ ଲେଖିଲା ବେଳେ ନିଜର କେତେକ ତ୍ରୁଟି ବିଚ୍ୟୁତିକୁ ହାଲୁକା କରି ଦେଖିବା ଏବଂ ପ୍ରଶଂସନୀୟ ଗୁଣଗୁଡ଼ିକୁ ବଢ଼ାଇ ବର୍ଣ୍ଣନା କରିବାର ପକ୍ଷପାତିତା ଦୋଷ ରହିଯିବା ସ୍ୱାଭାବିକ । ପାଠକମାନେ ଏହାକୁ ମନେରଖିବେ ବୋଲି ବିନୀତ ଅନୁରୋଧ ।

ଅତି ଉଚ୍ଚକୁ ଉଠିଥିବା- ବ୍ୟକ୍ତିର ଜୀବନୀ ପଢ଼ିଲେ ବହୁତ ପ୍ରେରଣା ମିଳେ ଏବଂ ସେଥି ଭିତରୁ ସାମାନ୍ୟ କିଛି ଗ୍ରହଣ ମଧ୍ୟ କରିହୁଏ । କିନ୍ତୁ ସେମାନଙ୍କର ଅଧିକାଂଶ ଅସାଧାରଣ କୃତିତ୍ୱ ଲୋକମାନଙ୍କ ପକ୍ଷରେ ଆକାଶ କୁସୁମ ହୋଇ ରହିଯାଏ- ତାହା ଦେବୋପମ ବୋଲି ମନେହୁଏ । ତାକୁ ନାନା କ୍ଷେତ୍ରରେ ଉଲ୍ଲେଖ କରାଯାଏ- ତାର ଉଦାହରଣ ଦେଇହୁଏ, କିନ୍ତୁ ସହଜରେ ଅନୁକରଣ କରିହୁଏ ନାହିଁ । କିନ୍ତୁ ମୋ ପରି ସାଧାରଣ ଲୋକଙ୍କ ଜୀବନୀରେ ବହୁ ଉପାଦେୟ ଅନୁଭୂତି ଥାଏ ଯାହା ସାଧାରଣଙ୍କ ପାଇଁ କାମରେ ଆସିବ । ସେଥିପାଇଁ ଏହା ଲେଖିଲି । ମନୁଷ୍ୟଠାରେ ଜୀବନ ଧର୍ମ କିପରି ବିକଶିତ ହୁଏ, ତାର ଏହା ଉଦାହରଣ ମାତ୍ର ।

■ ■ ■

# ୩

# ଜନ୍ମରୁ

## ପ୍ରଥମ ଛଅ ବର୍ଷ

'ମୁଁ' ର ଜନ୍ମ- କେତେବଡ଼ ଏ 'ମୁଁ'— କେତେବଡ଼ ମୋର ଅହଂ । ପୃଥିବୀରେ ମୋର ଜନ୍ମ ନିଶ୍ଚୟ ଗୋଟିଏ ବଡ଼ ଶୁଭ ଘଟଣା । ମୁଁ ଜନ୍ମ ହୋଇନଥିଲେ କେତେ କାମ ବାକି ରହିଯାଇଥାନ୍ତା । ଏହି ମୁଁ ର ବିରାଟତ୍ୱ କ'ଣ ଆଉ କେହି ପ୍ରକାଶ କରିପାରିଥାଆନ୍ତା ? ଏହି ଅମର ଆତ୍ମାର ଆତ୍ମପ୍ରକାଶ ମାଧ୍ୟମରେ କ'ଣ ଆତ୍ମସିଦ୍ଧି ସମ୍ଭବ ହୋଇଥାନ୍ତା ? ଇତ୍ୟାଦି ବହୁତ ଦାର୍ଶନିକ ପ୍ରଶ୍ନ ମନୁଷ୍ୟର ଜନ୍ମ ନେଇ । ତେଣୁ ପ୍ରତ୍ୟେକ ଲୋକର ଜନ୍ମ ମୁହୂର୍ତ୍ତ ତା' ପାଇଁ ଗୋଟିଏ ବିରାଟ ତଥା ଶୁଭଙ୍କର ଘଟଣା ହୋଇ ରହେ । ବହୁବାର ଓ ବହୁ ପ୍ରକାରର ଆତ୍ମପ୍ରକାଶ ପରେ ଏ ଆତ୍ମା ପୁଣି ଥରେ ଆସି ପହଞ୍ଚିଛି— ତାହାର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରହିଛି— ତେଣୁ ଜନ୍ମ ଗୋଟିଏ ଦୈବୀ ଘଟଣା ରୂପେ ପରିଗଣିତ ହୋଇଆସିଅଛି । କିନ୍ତୁ ଏ ପ୍ରକାରର ବିଶ୍ୱାସ ମୋର ଆଜି ପର୍ଯ୍ୟନ୍ତ ହୋଇପାରିଲା ନାହିଁ । ମୋ ଜନ୍ମ ଗୋଟିଏ ଆକସ୍ମିକ ପ୍ରାକୃତିକ ଘଟଣା । ଏହାର କୌଣସି ମୂଲ୍ୟ ଅଛି ବୋଲି ମୋର ମନେ ହୁଏନା । ତେଣୁ ମୋର ଜନ୍ମ ଦିବସ ପାଳିବାରେ ମୁଁ ଆଦୌ ଆଗ୍ରହୀ ନୁହେଁ । ମୋର ଜନ୍ମଦିନ କେବଳ ମୁଁ ଜାଣେ, ଅନ୍ୟମାନଙ୍କ ପାଇଁ ଏହା ଗୁପ୍ତ । ଅନ୍ତତଃ ଗୋଟିଏ ଘଟଣା ମୋ ନିଜର ।

ପ୍ରତି ମୁହୂର୍ତ୍ତରେ ସମୟର ଫେନାୟିତ ସ୍ରୋତମୁଖରେ ଲକ୍ଷକୋଟି ଜୀବଜନ୍ତୁ, କୀଟ ପତଙ୍ଗ, ବୃକ୍ଷଲତା, ଜୀବାଣୁ ଓ ଭୂତାଣୁର ଆର୍ବିଭାବ ତଥା ବିଲୟ ସମୁଦ୍ରର ଆକଳନ ଜଳ ବୁଦ୍ ବୁଦ୍ ପରି ଚାଲିଆସିଛି । ଜଳରାଶି ନିତ୍ୟ, କିନ୍ତୁ ବୁଦ୍ ବୁଦ୍ କ୍ଷଣସ୍ଥାୟୀ ତଥା ଆକସ୍ମିକ । ମୋ ଜନ୍ମ ମଧ୍ୟ ସେହିପରି ଗୋଟିଏ ଆକସ୍ମିକ ଘଟଣା । ମୁଁ ଜନ୍ମ ହୋଇ ନଥିଲେ ଯେ ଏ ଦୁନିଆର କିଛି ଅଭାବ ରହିଯାଇଥାନ୍ତା ତା' ନୁହେଁ- ମୁଁ ଯାହା କରିଛି ଆଉ ଜଣେ କରିଥାନ୍ତା- କରିବା ରୀତିରେ ସାମାନ୍ୟ ଏପାଖସେପାଖ ହୋଇଥାନ୍ତା ମାତ୍ର । ନିଜର ସମ୍ଭାବନାକୁ ଦୈବଇଚ୍ଛା ନିୟନ୍ତ୍ରିତ ବୋଲି ଭାବି ନିଜର ଅଯଥା ଗୌରବ ବଢ଼ାଇବାର ଆକାଂକ୍ଷା ମୋର ନାହିଁ । ବାନର ଶିଶୁ ପକ୍ଷରେ ତଥାକଥିତ ଅମୃତ ସନ୍ତାନର ଏହି ଅଯଥା ପ୍ରୌଢ଼ୀ କେବଳ ନିଜର ସାନ୍ତ୍ୱନା ପାଇଁ ଉଦ୍ଦିଷ୍ଟ । ଏହା ଗୋଟିଏ ମୂଲ୍ୟହୀନ ଅନ୍ଧବିଶ୍ୱାସ ବୋଲି ମୋର ଦୃଢ଼ ଧାରଣା ।

ମୁଁ ସପ୍ତମ ଗର୍ଭର ସନ୍ତାନ। ମୋ ଉପରେ ଗୋଟିଏ ଭଉଣୀ ମରିଥାଏ। ତା' ଉପରେ ତିନିଝିଅ ଓ ଦୁଇପୁଅ। ତଥାପି ବୋଉ କୁଆଡ଼େ ନାନା ପୂଜା ଉପାସନା କରି ଦୂରଗ୍ରାମରେ ଥିବା, ଡାକିଲେ ହଁ କରିବା ପରି ପ୍ରତ୍ୟକ୍ଷ ମଙ୍ଗଳା ଠାକୁରାଣୀଙ୍କଠାରେ ଗୁହାରି ହୋଇ ମୋ ଆସିବାକୁ ଚାହିଁ ବସିଥିଲା। ମଙ୍ଗଳା ଠାକୁରାଣୀ କାଳସୀ ମାଧ୍ୟମରେ ମୋ ଆସିବାକୁ କୁଆଡ଼େ ବର ଦେଲେ ଯେ ମୁଁ ଜନ୍ମ ହେବି। ମୁଁ ବଡ଼ ହେଲା ପରେ ମୋ ହାତରୁ ଗୋଟିଏ ପଟ ଘଣ୍ଟ ପାଇବା ପାଇଁ ସେ ଇଚ୍ଛା ପ୍ରକାଶ କରିଥିଲେ। ସେତେବେଳେ ଠାକୁରମାନେ ମଧ୍ୟ ବହୁତ ନିର୍ଲୋଭ ଥିଲେ। ବହୁ ସମାରୋହରେ ମାଜଣା ପରିବର୍ତ୍ତେ କେବଳ ପଟିଏ ଘଣ୍ଟ ଚାହିଁଥିଲେ ତାଙ୍କର ଘଂଟଟି ବୋଧହୁଏ ପୁରୁଣା ହୋଇଯାଇଥିଲା। କିନ୍ତୁ ନନା ଯଦିଚ ଗଭୀର ଈଶ୍ୱର ବିଶ୍ୱାସୀ, ନିଷ୍ଠାପର ଶାକ୍ତ ଓ ରାମଚଣ୍ଡୀ ଉପାସକ– ସେ କିନ୍ତୁ ବୋଉ ଉପରେ ଏକଥା ନେଇ ବହୁତ ବିରକ୍ତ ହୋଇଥିଲେ, ତାଙ୍କ ଅଜ୍ଞାତରେ ମଙ୍ଗଳାଙ୍କ ସହିତ କାଳସୀ ମାଧ୍ୟମରେ ସାଧିତ ହୋଇଥିବା ଦେଣନେଣ ଚୁକ୍ତି ପାଇଁ। ଫଳରେ ମଙ୍ଗଳା ମୋ ହାତରୁ ଘଣ୍ଟଟିଏ ପାଇଲେ ନାହିଁ। ସେଥିଯୋଗୁଁ ମୁଁ କୁଆଡ଼େ ବହୁଦିନଯାଏ ଭାରି କାନ୍ଦୁରା ହୋଇଥିଲି। ସନ୍ଧ୍ୟା ହେଲେ କାଳସୀ ଲାଗିଲା ପରି ମୁଣ୍ଡ ବୁଲାଇ ଅଝଟ ହେଉଥିଲି। କିଛିଦିନ ପରେ ବୋଧହୁଏ ମଙ୍ଗଳା ଘଣ୍ଟ ନ ପାଇବାର ବ୍ୟର୍ଥତା ଭୁଲିଗଲେ। ମୁଁ ଆଉ ବେଶୀ କାନ୍ଦିଲି ନାହିଁ। ନନାଙ୍କ ପରି ସ୍ୱଳ୍ପ ବେତନହାରୀ ପ୍ରାଥମିକ ଶିକ୍ଷକ ଘରେ ବୋଉର ବାରମ୍ବାର ମାଆ ହେବାର ଅଯୌକ୍ତିକ ଅଭିଳାଷ ସିଦ୍ଧି ଛଡ଼ା ମୋର ଜନ୍ମର କୌଣସି ସାର୍ଥକତା କିମ୍ବା ଯୌକ୍ତିକତା ନଥିଲା। ଏହି ବହୁ କୁଟୁମ୍ବୀ ଗରିବ ଘରେ ମୋର ଜନ୍ମ ଯୋଗୁଁ ନିଶ୍ଚିତ ଭାବେ ଅନ୍ୟ ସମସ୍ତଙ୍କର ଦୈନନ୍ଦିନ ଅଭାବ ଅନଟନ ଆହୁରି ବେଶୀ ବଢ଼ି ଯାଇଥିବ।

ସାରୁପତ୍ର ତଳେ ବିସ୍ତାରିତ ବେଙ୍ଗ ପେଟ ପରି ମୋର ଏହି 'ମୁଁ'ଟା ବହୁତ ବିସ୍ତାରିତ ହୋଇ ମୋତେ ବଡ଼ ଦେଖାଯାଉଥିଲେ ମଧ୍ୟ ମୁଁ ଜନ୍ମ ନ ହୋଇଥିଲେ ମଧ୍ୟ ଏହି ବିରାଟ ପୃଥିବୀ ସେହିପରି ଚାଲିଥାନ୍ତା। ମୁଁ କଟକ ସହରରେ ଯେଉଁଠି ପ୍ରଥମ କରି ସାହସର ସହିତ ଜଙ୍ଗଲ କାଟି, ସାପ ମାରି ଘର କରିଛି ବୋଲି ମୋର ବହୁ ପ୍ରଶଂସା, ସେପରି କିମ୍ବା ତା'ଠାରୁ ଭିନ୍ନ ଆଉ ଗୋଟିଏ ଘର ନିଶ୍ଚିତ ସେଠି ଠିଆ ହୋଇଥାନ୍ତା ହୁଏତ ଆଉ ଟିକିଏ ଡେରିରେ। ଘରର ଆୟତନ, ଆକାର ଓ ରଙ୍ଗ ହୁଏତ ଅଲଗା ହୋଇଥାନ୍ତା-ବଟଲ୍ ପାମ୍ ଗଛ ପରିବର୍ତ୍ତେ ହୁଏତ ଆଉ କେତେଟା ନଡ଼ିଆ ଗଛ ଥାଆନ୍ତା, ପେଣ୍ଟା ପେଣ୍ଟା ମାଳତୀ ଫୁଲ ଜାଗାରେ ହଳଦିଆ ଜହ୍ନି କାକୁଡ଼ି ଫୁଲ ପବନରେ ଦୋହଲୁଥାନ୍ତା। ଫୁଲଗଛ ସ୍ଥାନରେ କେବଳ ଫୁଲକୋବି ହେଉଥାନ୍ତା। ଘର ଚାରି ପାଖରେ ଗଛ ପତ୍ର ନଥାଇ ଭଡ଼ାଘର ତିଆରି ହୋଇଥାନ୍ତା। ମୋ ମନସ୍ତତ୍ତ୍ୱ ବିଭାଗ ହୁଏତ ଏତେବଡ଼ ହୋଇନଥାନ୍ତା ଏତେ ଶୀଘ୍ର। କିନ୍ତୁ ଦିନେ ନା ଦିନେ ଏହି ବିଭାଗର ପ୍ରତିଷ୍ଠା ହୋଇଥାନ୍ତା। ୧୯୮୧ ମସିହାରେ ଏହି ବିରାଟ ମନସ୍ତତ୍ତ୍ୱ ବିଭାଗ ନଥିଲେ ବା ମୂଳରୁ ଏହାର ପ୍ରତିଷ୍ଠା ହୋଇ ନଥିଲେ ମଧ୍ୟ ଦେଶର ବିଶେଷ କିଛି କ୍ଷତି ହୋଇନଥାନ୍ତା। ସେହିପରି ବହୁ କଥା ନ ଘଟିଥିଲେ ମଧ୍ୟ ଜୀବନ ସ୍ରୋତ ସେହିପରି ଚାଲିଥାନ୍ତା। ତେଣୁ ମୋର ଜନ୍ମ ସବୁ ମନୁଷ୍ୟଙ୍କର ଜନ୍ମ ପରି

ଗୋଟିଏ ଆକସ୍ମିକ ଘଟଣା-ଜୀବନ ସ୍ରୋତର ଅସଂଖ୍ୟ ଜଳ ବୁଦ୍ ବୁଦ୍ ଭିତରୁ ଆଉ ଗୋଟିଏ ବୈଶିଷ୍ଟ୍ୟହୀନ କ୍ଷଣସ୍ଥାୟୀ ବୁଦ୍ ବୁଦ୍ ମାତ୍ର ।

ଜୀବନର ପ୍ରଥମ ଛଅ ବର୍ଷର ଘଟଣା ଭିତରୁ ଯେଉଁ କେତୋଟି ଅନୁଭୂତି ଉଚ୍ଚା ଉଚ୍ଚା ଢେଉ ପରି ମନ ଭିତରେ ଭାସି ଉଠୁଛି ତାର ଗୁରୁତ୍ୱ ଜୀବନରେ ବହୁତ ବେଶୀ । ନନା, ବୋଉ, ତିନି ନାନୀ, ଦୁଇ ଭାଇନା ଓ ବୁଢ଼ୀ ମା ମେଳରେ ସବା ସାନପୁଅ ହିସାବରେ ମୋର ବହୁତ ଆଦର ଥିଲା । ବୋଉର ଆଦର ବେଶୀ । କାରଣ ମୋ ଉପରେ ଗୋଟିଏ ଭଉଣୀକୁ ଉଲିବାଙ୍କି ମାଡ଼ିଯାଇ ସେ ମରି ଯାଇଥିଲା । ଆମ ଗ୍ରାମ ଦେବତୀଙ୍କର ସାତ ପୁଅ ଓ ସାତ ଝିଅ । ଏମାନେ ସମସ୍ତେ ବଡ଼ ପ୍ରତାପୀ । ସେଥି ଭିତରୁ ସବା ସାନ ଝିଅ ଉଲିବାଙ୍କି ଭାବରେ ପରିଚିତା । ମୋର ଉପର ଭଉଣୀ ଜନ୍ମ ପରେ ପରେ ଏହି ଉଲିବାଙ୍କିଙ୍କର କୁଆଡ଼େ ତା' ଉପରେ ଦୃଷ୍ଟି ପଡ଼ିଲା । ସେ ସ୍ୱାସ୍ଥ୍ୟବତୀ ହୋଇଥିଲେ ସୁଦ୍ଧା ବସିଲା ନାହିଁ, କଥା କହିଲା ନାହିଁ, ଖାଲି ହସି ପାରୁଥିଲା । ଦୁଇ ତିନିବର୍ଷ ପରେ ସେ ମରିଗଲା । ତେଣୁ ମୋର ଆଦର ବେଶୀ ହେବା କଥା । ବୋଉର ବହୁ ପୂଜାପୂଜି, ମାନସିକ ଓ ଗୁଣୀ ଗାରୁଡ଼ି ଫଳରେ ଗ୍ରାମଦେବତୀଙ୍କର ଦୁର୍ଦ୍ଧର୍ଷ ପୁଅ ଝିଅଙ୍କ କୋପ ଦୃଷ୍ଟିରୁ ମୁଁ ଦୂରରେ ରହିପାରିଥିଲି ।

ମୋର ମନେପଡୁଛି, ସନ୍ଧ୍ୟା ହେଲେ ମୁଁ ତଳେ ବସେନାହିଁ– ପ୍ରାୟ ଚାରି-ପାଞ୍ଚ ବର୍ଷ ହେଲା ଯାଏଁ । ତଳେ ଛାଡ଼ିଦେଲେ ଖାଲି କାନ୍ଦେ । ତେଣୁ ଜଣେ କିଏ ମୋତେ କାଖରେ ବୋହୁଥାଏ । ଏଡେ ବଡ଼ ପିଲାଟାକୁ ସନ୍ଧ୍ୟା ସାରା ବୋହିବା କି କଷ୍ଟ । ତଥାପି ସମସ୍ତେ ପାଳି କରି ବୁହନ୍ତି । କିଏ କିଏ ବିରକ୍ତ ହେଲେ ବୋଉ ବିଗିଡ଼େ । ସନ୍ଧ୍ୟା ବେଳେ ତଳେ ଛାଡ଼ିଦେଲେ ଡାହାଣୀ, ଚିରିଗୁଣୀ ବା ଦେବଦେବୀଙ୍କର କୁଦୃଷ୍ଟି କୁଆଡ଼େ ପିଲାଙ୍କ ଉପରେ ବେଶୀ ପଡ଼େ । ତେଣୁ କାହା କାଖରେ ପିଲା ରହିବା ଭଲ ବୋଲି ବୋଉ ଭାବେ ।

ବଡ଼ ହେଲା ପରେ ମୋର ପିଲାଦିନର ଏହି ଅନୁଭୂତିକୁ ବିଶ୍ଳେଷଣ କରିବାରେ ଜଣାଗଲା ଯେ ମୋତେ ଗୋଟିଏ କାଳିଆ ଡାହାଣୀକୁ ଦେଖିଲା ଭଳି ଲାଗୁଥିଲା । ଡରରେ ମୋ ଆଖି ବନ୍ଦ ହୋଇଯାଉଥିଲା । ମୁଁ କାହାର ହେଲେ ବେକକୁ ଟାଣି ଧରି ରଖୁଥିଲି । ଆମ ଗାଁ'ରେ ମୁକୁତା ବୋଲି ଗୋଟିଏ ପ୍ରୌଢ଼ା ସ୍ତ୍ରୀ ଲୋକ ଥିଲା । ସେ ଯେପରି ମୋଟା, ସେପରି କଳା । ତା ମୁଣ୍ଡରେ ଝୁମ୍ପୁରା ଝୁମ୍ପୁରା କଳା ବାଳ ବୋଝେ । ତେଲ ଅଭାବରୁ ବାଳସବୁ ଖାଲି ଫର ଫର ହୋଇ ଉଡୁଥାଏ । ତାର ପୁଣି ଧଳା ଧଳା ବଡ଼ ବଡ଼ ଦିପାଟି ଦାନ୍ତ । ତାକୁ ଗାଁ'ରେ ଥରେ ଥରେ କାଳସୀ ଲାଗେ । ଏପରି ବିକଟାଳ ସ୍ତ୍ରୀ ଲୋକଟିକୁ କାଳସୀ ଲାଗିବା ବୋଧହୁଏ ସ୍ୱାଭାବିକ । ଦୁର୍ଭାଗ୍ୟକୁ ସେ ମୋତେ ପ୍ରତିଦିନ ତେଲ ଲଗାଇ ଗାଧୋଇଦିଏ, କିନ୍ତୁ ସନ୍ଧ୍ୟା ପରେ ସେ ଯେତେବେଳେ ଘରକୁ ଆସେ, ତା ପୂର୍ବରୁ ବାଟଘର କବାଟକୁ ଟିକେ ଖୋଲିଦେଇ ଅଗଣା ପଟକୁ ପ୍ରଥମେ ଚାହେଁ । କାରଣ ବିଧବାମାନେ ଖାଉଥିଲା ବେଳେ ତାର ଆସିବା ମନା । ତାକୁ ଦେଖିଲେ କିମ୍ୱା ତାର ପାଟି ଶୁଣିଲେ ମଧ ବ୍ରାହ୍ମଣ ଘରର ବିଧବାମାନେ ଖାଆନ୍ତି ନାହିଁ । ତେଣୁ ସେ ପ୍ରଥମେ ମୁଣ୍ଡକୁ କବାଟ ଫାଙ୍କ ବାଟେ ବାହାର କରି ଦେଖେ । ତାର ସେହି କଳାହାଣ୍ଡି ପରି ବିରାଟ ମୁଣ୍ଡ, କଳା ଫୁରୁ ଫୁରୁ ବାଳ, କଳା ମୁହଁ ମଝିରେ ଧଳା ଧଳା ଦି'ପାଟି ଦାନ୍ତ–ଅନ୍ଧାର ଭିତରୁ କେବଳ ଦାନ୍ତ

ଦି'ଧାଡ଼ି ଦିଶୁଥାଏ ଆଉ ସବୁ ଅନ୍ଧାର ଭିତରେ ଲୁଚିଯାଏ । ଆଚ୍ଛା, ଛୋଟ ପିଲାଟିଏ ଏ ପ୍ରକାର ବିକଟାଳ ଦୃଶ୍ୟ ଦେଖିଲେ- ଯେଉଁ ଗାଁ' ଗଣ୍ଡା ଡାହାଣୀ ଭୂତଙ୍କର ବାସସ୍ଥଳୀ- ଗ୍ରାମ ଦେବତୀଙ୍କର ଦୁର୍ଦ୍ଧର୍ଷ ପୁଅ ଝିଅଙ୍କର କ୍ରୀଡ଼ାକ୍ଷେତ୍ର – ସେଠାରେ ସେ ଚିତ୍କାର କରି ଉଠିବା କ'ଣ ଅସ୍ୱାଭାବିକ ? ମୋର ତ ମନେହୁଏ, ବଡ଼ମାନେ ମଧ୍ୟ ଏପରି ପରିସ୍ଥିତିରେ ଚିତ୍କାର କରି ଉଠନ୍ତେ । ଏ ମୁହଁଟି ଏବେ ବି ମତେ ସ୍ପଷ୍ଟ ଦେଖାଯାଉଛି । ଏହି କାରଣରୁ ସନ୍ଧ୍ୟା ପରେ ମୁଁ ତଳେ ବସୁ ନଥିଲି ଏବଂ ବହୁତ ରାତିଯାଏ ଶୋଉ ନଥିଲି । ଏଥିରେ ମୋର ବା ଦୋଷ କ'ଣ ? ପିଲାଦିନର ଗାଁର ଅନୁଭୂତି ଯେପରି ସୁନ୍ଦର, ମନୋରମ, ଆନନ୍ଦଦାୟକ, ସେହିପରି ଭୟଙ୍କର ଏବଂ ଭୀତି ଉତ୍ପାଦକ ମଧ୍ୟ ।

ଆମ ଗାଁ ଗଞ୍ଜାମ ଜିଲ୍ଲାର ଖଲ୍ଲିକୋଟ ଗଡ଼ଠାରୁ ପ୍ରାୟ ଚଉଦ କିଲୋମିଟର ଦୂରରେ । ତଳରାମ ପଲ୍ଲୀ ଏହାର ନାମ । ସୁଦୀର୍ଘ, ନଭଶ୍ଚୁମ୍ବୀ କୃଷ୍ଣଗିରି ପର୍ବତମାଳା ତଳେ ଏହି ଗାଁ'ଟି ଅବସ୍ଥିତ । ଗାଁ'ରେ ନଡ଼ିଆଗଛ ବହୁତ । ଗାଁ' ଚାରିପଟେ ଧାନ ବିଲ ଖୁବ୍ ଉର୍ବର । କିନ୍ତୁ ଗାଁ'ର ଶୋଭା ତଥା ତା'ର ଆଧାତ୍ମିକ ମାହାତ୍ମ୍ୟ ବୃଦ୍ଧି କରୁଛି ତା'ର ଅଳ୍ପ ଦୂରରେ ଥିବା ଝାଡ଼େଶ୍ୱର । ଏଠାରେ ଚଉଦଟି ମନ୍ଦିର ଓ ତିନୋଟି ଝରଣା । ଏହି ଝରଣା ତିନୋଟି ପାହାଡ଼ ଭିତରୁ ବାରମାସ ଏକାଧାରରେ ବହି ଆସୁଛି । ଝାଡ଼େଶ୍ୱର ଶିବ ମନ୍ଦିର ଭିତରେ ଏହି ତିନୋଟି ଝରଣା ଏକତ୍ର ହୋଇ ଗୋଟିଏ ଧାରରେ ବାହାରକୁ ଆସି ଗୋଟିଏ ବଡ଼ କୁଣ୍ଡରେ ପଡୁଛି । ଏମାନଙ୍କର ବିଶ୍ୱାସ ଯେ ଗୋଟିଏ ଝରଣାର ପାଣି ମିଠା ତ, ଆଉ ଗୋଟିଏ ଈଷତ୍ ଖାରିଆ ଏବଂ ତୃତୀୟଟି ଟିକିଏ ଖଟାଳିଆ । ବିଶ୍ୱାସ କରୁଥିବା ଲୋକକୁ ତିନୋଟି ଝରଣାର ପାଣି ଏପରି ଲାଗେ....କିନ୍ତୁ ପ୍ରକୃତରେ ତାହା ନୁହେଁ । କିନ୍ତୁ ସାଧାରଣ ଲୋକେ ଏପରି ପ୍ରବାଦ ଶୁଣିଲା ପରେ ଅଲଗା ଅଲଗା ସ୍ୱାଦ ଅନୁଭବ କରନ୍ତି । ସେହି କୁଣ୍ଡରେ ଗାଧୋଇବା ଗୋଟିଏ ବଡ଼ ଆରାମଦାୟକ ଅନୁଭୂତି । ବହୁଲୋକ ପୂଜା ପରବ ଓ ଯାନିଯାତ୍ରା ବେଳେ ଏଠାରେ ରୁଣ୍ଡ ହୁଅନ୍ତି ଏବଂ ଏହି କୁଣ୍ଡରେ ବୁଡ଼ ପକାନ୍ତି ।

ଏହି କୁଣ୍ଡରେ ମୁଁ ପିଲାଦିନେ ପହଁରା ଶିଖିଥିଲି । କୁଣ୍ଡ ଚାରିପାଖରେ ଚଉଦଟି ଦେଉଳ । ରାମଚଣ୍ଡୀ ଠାକୁରାଣୀ ସେ ଅଞ୍ଚଳର ବଡ଼ ପ୍ରସିଦ୍ଧ ଦେବୀ । ରାମଚନ୍ଦ୍ର ବନବାସ ବେଳେ କୁଆଡ଼େ ଏଠାରେ ରାମଚଣ୍ଡୀଙ୍କୁ ସ୍ଥାପନ କରିଥିଲେ । ଚଉଦଟି ମନ୍ଦିର ଭିତରୁ ଗୋଟିଏ ମନ୍ଦିରରେ ପାଲି ଭାଷାରେ ଲେଖା ହୋଇଥିବା ଏକ ପ୍ରସ୍ତର ଫଳକ ରହିଛି । ବହୁ ପଣ୍ଡିତ ତାକୁ ପଢ଼ିବାକୁ ଆସନ୍ତି । କ'ଣ ଲେଖା ହୋଇଛି, ସେ ବିଷୟରେ ଆମେମାନେ ନ ଜାଣୁଥିଲେ ସୁଦ୍ଧା ପିଲାଦିନେ ଭାବୁଥିଲୁ ଯେ ଏହା ନିଶ୍ଚୟ ସେହି ରାମ ବନବାସ ସମୟର ଲେଖା । ସୁଦୂର ଅତୀତର ସ୍ୱାକ୍ଷର ଥିବା ପ୍ରସ୍ତରଖଣ୍ଡ ଏହି ସ୍ଥାନକୁ ଆହୁରି ବେଶୀ ରହସ୍ୟମୟ କରି ଦେଉଥିଲା ଏବଂ ମୋର କଳ୍ପନା ଶକ୍ତିକୁ ଏହା ବହୁତ ବେଶୀ ପ୍ରଭାବିତ କରିଥିଲା । ବନରାଜିନୀଳା କୃଷ୍ଣଗିରି ପର୍ବତ ପାଦ ଦେଶରେ ଝାଡ଼େଶ୍ୱର ବହୁତ ସୁରମ୍ୟ ସ୍ଥାନ । ଝରଣା, ଗାଧୋଇବା କୁଣ୍ଡ, ମନ୍ଦିର ଚାରିପଟେ ବଡ଼ ବଡ଼ ଚମ୍ପାଗଛ, ଆକାଶଛୁଆଁ ଆମ୍ବ ନଡ଼ିଆଗଛ । ଥଣ୍ଡାଳିଆ ସ୍ଥାନ ଯୋଗୁଁ ଗଛପତ୍ର ଗୁଡ଼ିକର ଐଶ୍ୱର୍ଯ୍ୟ ଫୁଟି ଉଠୁଥାଏ ।

କୃଷ୍ଣଗିରିର ଘନ ଅରଣ୍ୟ ଭିତରେ ନାନା ପ୍ରକାର ହିଂସ୍ର ଜନ୍ତୁ ଥାନ୍ତି । ବିଶେଷତଃ ଭାଲୁ ଓ କଲରା ପତରିଆ ବାଘ ବାହାରନ୍ତି । କିନ୍ତୁ ରାମଚଣ୍ଡୀଙ୍କ ଆଜ୍ଞାରେ କୁଆଡ଼େ

ସେମାନେ ମନୁଷ୍ୟର କ୍ଷତି କରନ୍ତି ନାହିଁ ବୋଲି ଶୁଣାଯାଏ । ନିରୁପାୟ ମଣିଷ ଏହିପରି ଭାବରେ ଅଦୃଶ୍ୟ ଦେବତାର କଳ୍ପନା କରି ନିଜକୁ ବହୁ ବିପଦ ଆପଦ ମଝିରେ ସମ୍ଭାଳି ରଖେ । ପ୍ରକୃତି ସହିତ ତା'ର ଏହି ଅଦ୍ଭୁତ ପ୍ରତିଯୋଜନ ଶକ୍ତି ହିଁ ତାକୁ ବଞ୍ଚେଇ ରଖିଛି ।

ସେତେବେଳେ ଚାରିଆଡ଼ର ଗଛ ଓ ଦେଉଳସବୁ ମତେ କେତେ କେତେ ଉଚ୍ଚା ଦେଖାଯାଉଥିଲା । କୃଷ୍ଣଗିରି ପାହାଡ଼ର ଆକାଶଛୁଆଁ ଶିଖରକୁ ଚାହିଁଲେ ମୁଣ୍ଡ ବୁଲାଇ ଦେଉଥିଲା । ଆମ ଗାଁ'ରୁ ଝାଡ଼େଶ୍ୱର ବେଶୀ ବାଟ ନ ହେଲେ ମଧ୍ୟ ପିଲା ଗୋଡ଼ରେ ଚାଲିବାକୁ ବହୁତ ସମୟ ଲାଗୁଥିଲା । ତେଣୁ ବହୁତ ବାଟ ବୋଲି ମୋର ସେତେବେଳେ ମନେ ହେଉଥିଲା । ପ୍ରାୟ ଦଶବର୍ଷର ବ୍ୟବଧାନ ପରେ ମୁଁ ଛଅଫୁଟିଆ ଯୁବକ ହୋଇଗଲା ପରେ ଯେତେବେଳେ ଝାଡ଼େଶ୍ୱର ଆସିଲି, ମନ୍ଦିରଗୁଡ଼ିକ ବହୁତ ଗେଡ଼ା ଗେଡ଼ା ଦେଖାଗଲା । କୁଣ୍ଡଟିକୁ ଯେପରି ମୁଁ ଏପାଖରୁ ସେପାଖ ଡେଇଁ ପଡ଼ିବି । ଗଛଗୁଡ଼ିକ ମଧ୍ୟ ସାଧାରଣ ଲମ୍ବ । କୃଷ୍ଣଗିରି ପାହାଡ଼ ଯେପରି ବୁଢ଼ା ହୋଇ ନଇଁ ପଡ଼ିଛି । ଗାଁ'ରୁ ଖୁବ୍ ଅଳ୍ପ ସମୟ ଭିତରେ ଲମ୍ବା ଲମ୍ବା ପାଦ ପକାଇ ସେଠାରେ ପହଞ୍ଚୁ ହେଉଛି । କେତେ କମ୍ ବାଟ ! ଅଦ୍ଭୁତ ଅନୁଭୂତି । ଛୋଟ ପିଲାର ଉଚ୍ଚତା ଅନୁସାରେ ତାକୁ ସବୁ ବଡ଼ ଦେଖାଯିବାର କଥା । କିନ୍ତୁ ଆମେ ଯଦି ସେଠାରେ ସବୁବେଳେ ରହୁ ଆମ ଦେହରେ ଉଚ୍ଚତା ବଢ଼ିବା ସଙ୍ଗେ ସଙ୍ଗେ ଆମେ ଦେଖୁଥିବା ଜିନିଷର ଉଚ୍ଚତା ଓ କଳେବର ସହିତ ଆମେ ଆସ୍ତେ ଆସ୍ତେ ପ୍ରତିଯୋଜନ ପରି ଚାଲୁ । ତେଣୁ ଏତେ ବେଶୀ ତଫାତ୍ ଜଣାଯାଏ ନାହିଁ । କିନ୍ତୁ ପିଲାଦିନୁ ଯଦି ଗୋଟିଏ ଜାଗା ଛାଡ଼ିଦେଇ ବହୁଦିନ ପରେ ପୂରା ବୟସ ହେଲାପରେ ସେଠାକୁ ଆସିବ ଏ ପ୍ରକାର ଅଦ୍ଭୁତ ଅନୁଭୂତି ହେବ । ବର୍ତ୍ତମାନ ସୁଦ୍ଧା ଝାଡ଼େଶ୍ୱରର ମନ୍ଦିର, କୃଷ୍ଣଗିରି ପାହାଡ଼ ଓ ଗଛଗୁଡ଼ିକର ପିଲାଦିନର ପ୍ରତିଛବି ମୋ ମନରେ ରହିଛି । ପର ଜୀବନର ଅନୁଭୂତିର ସ୍ୱଚ୍ଛତା ଯୋଗୁଁ ଆଗର ବଦ୍ଧମୂଳ ପ୍ରତିଛବି ବଦଳି ପାରୁନାହିଁ । ଏହି ଦୁଇଟି ଅନୁଭୂତିକୁ ତୁଳନା କରି ଦେଖିଲେ ବର୍ତ୍ତମାନ ବହୁତ ମଜା ଲାଗୁଛି ।

ଏ ପ୍ରକାରର ମନୋମୁଗ୍ଧକର ପରିବେଶ ଓ ପ୍ରସିଦ୍ଧ ଠାକୁରାଣୀ ରାମଚଣ୍ଡୀଙ୍କ ଆକର୍ଷଣରେ ନନା ପାରିକୁଦ-ମାଲୁଦରୁ ଆସି ଏଠାରେ ପ୍ରାଥମିକ ସ୍କୁଲରେ ଶିକ୍ଷକତା କରୁଥାନ୍ତି । ପ୍ରତିଦିନ ସ୍କୁଲ ପରେ ପ୍ରାୟ ଏଗାରଟା ବେଳକୁ ମୁଁ ନନାଙ୍କ ସାଙ୍ଗରେ ଯାଏ ଝାଡ଼େଶ୍ୱର । ସେଠାରେ ଗାଧୋଇ ପାଧୋଇ ମୁଁ ମନ୍ଦିର ପୂଜକର ପୁଅ ସାଥିରେ ମନ୍ଦିରର ଚାରିପାଖେ ଫୁଲଫଳ ଗଛ ଭିତରେ ବୁଲେ । ଏଠାରେ ସବୁ ସମୟରେ ସୁଲୁସୁଲିଆ ଥଣ୍ଡା ପବନ ବହୁଥାଏ । ଖରାଦିନେ ମଧ୍ୟ ଏହି ପବନ ଥଣ୍ଡା । ଚିଲିକା ଓ ସମୁଦ୍ର ଏଠାରୁ ସିଧାସଳଖ ପ୍ରାୟ ପନ୍ଦର କିଲୋମିଟର ହେବ । ସୁଦୀର୍ଘ ପାହାଡ଼ ଓ ଘନଜଙ୍ଗଲ ଦେହରେ ଧକ୍କା ଖାଇ ଏଠାରେ ପବନର ସ୍ରୋତ ପ୍ରଖର ବେଗରେ ଦେଖାଯାଇଥାଏ । ଗାଁ'ରେ ମଧ୍ୟ ଅପରାହ୍ଣଠାରୁ ରାତିସାରା ଏପରି ପବନ ହୁଏ । ନଡ଼ିଆଗଛ ବାହୁଙ୍ଗା ଅହରହ ଝିରିଝିରି କରି ଦୋହଲୁଥାଏ । ଜହ୍ନରାତିରେ ଜ୍ୟୋସ୍ନା କିରଣ ନଡ଼ିଆ ବାହୁଙ୍ଗା ଭିତର ଦେଇ ଦାଣ୍ଡରେ ଧାଁ ଦଉଡ଼ କରୁଥାଏ । ସେହି ଗଛ ତଳେ ବସି ଏହାକୁ ଘଣ୍ଟା ଘଣ୍ଟା ଧରି ଲକ୍ଷ୍ୟ କରିବାରେ ମୋତେ ବହୁତ ଆନନ୍ଦ ଲାଗେ ।

ନନା ରାମଚଣ୍ଡୀଙ୍କଠାରେ ପୂଜା ଅର୍ଚ୍ଚନା କରନ୍ତି । ଦିନେ ଦିନେ ଦୁଇତିନି ଘଣ୍ଟା ଯାଏଁ ଠାକୁରାଣୀଙ୍କ ପୂଜାରେ ନନା ଲାଗିଥାନ୍ତି । ଆମେମାନେ ଜଙ୍ଗଲରେ ବୁଲି ବୁଲି ଚମ୍ପା କେତକୀ ମାଳତୀ ଫୁଲ ତୋଳୁ, ଆମ୍ବ ଝଡ଼ାଉ, ପ୍ରଜାପତି ଧରୁ, ପଣସପତ୍ର ଡଙ୍ଗା କରି ପାଣିରେ ଭସାଉ । ଏ ମଧୁର ସ୍ମୃତି କେବେ ଭୁଲିବାର ନୁହେଁ । ସେଥିପାଇଁ ତପୋବନର ବର୍ଣ୍ଣନା ଋଷିବାଳକ ବାଳିକାମାନଙ୍କର ଫୁଲତୋଳା ପ୍ରଭୃତି ଗଳ୍ପ ଆଜି ସୁଦ୍ଧା ମୋତେ ଭାରି ଭଲ ଲାଗେ । ନନାଙ୍କର ପୂଜା ସରିଲା ପରେ ତାଙ୍କ ସାଙ୍ଗରେ ହବିଷ୍ୟ ଭାତ ଖାଇ ଗାଁ'କୁ ଫେରୁ । ହବିଷ୍ୟ ଭାତର ବାସ୍ନା ଓ ସ୍ୱାଦ ଭୁଲିବାର ନୁହେଁ - ବାସନା ଅରୂଆ ଭାରତ, ମେଞ୍ଚା ମେଞ୍ଚା ଗୁଆଘିଅ, ଡାଲମା, ଶାଗ ଓ ବାରିରେ ଫଳୁଥିବା ପରିବାପତ୍ରର ତରକାରୀ ।

ହବିଷ୍ୟ ଖିଆ ଛଡ଼ା ମଝିରେ ମଝିରେ ଠାକୁରାଣୀଙ୍କ ପାଖରେ ବଡ଼ ଧରଣର ଭୋଜି ହୁଏ । ଆଶ୍ୱିନ ମାସ ଅଷ୍ଟମୀଦିନ ଛେଳି ବୋଦା ପଡ଼େ । ଭୋଜି ଖାଇ ବହୁ ଲୋକ ଏକାସାଙ୍ଗରେ ମିଶି ରାତିରେ ନିଆଁ ହୁଳା ଧରି ଗ୍ରାମକୁ ଫେରନ୍ତି । ଥରେ ଗୋଟିଏ କଲରା ପତରିଆ ବାଘ ଗାଁ'ରେ ପଶିଯାଇଥିଲା । ଜଣେ ଯୁବକ ବାରିପଟ ଖଳାରେ ଗୋଡ଼ଦୁଇଟା ଫରଚା କରି ଧାନ ଉଡ଼ାଉଥିଲା । ଏହି ବାଘଟି ଭୋର୍ ସମୟରେ ଜଙ୍ଗଲ ଭିତରକୁ ନ ଯାଇପାରି ଦୌଡ଼ି ଦୌଡ଼ି ଆସି ତା' ଗୋଡ଼ ମଝିରେ ଗଳି ତାଙ୍କ ଘର ଭିତରେ ପଶିଗଲା । ଘର ଭିତର ଅଗଣାରେ ସ୍ତ୍ରୀ ଲୋକମାନେ ବସି କଂସାବାସନ ମାଜୁଥିଲେ । ତାଙ୍କ ମଝିରେ ଯାଇ ବାଘଟି କୁଦି ପଡ଼ିଲା । ତାପରେ ଗୋଟିଏ ଖୋଲା ଘର ଭିତରେ ପଶିଗଲା । ସ୍ତ୍ରୀ ଲୋକମାନେ ବାହାରୁ କବାଟ ବନ୍ଦ କରିଦେଲେ । ବାଘଟି ଘର ଭିତରେ ଥିବା ଗୋଟିଏ ଖାଲି ଡୋଲି ଉପରକୁ କୁଦି ପଡ଼ିଲା । ଖାଲି ଡୋଲିଟି ଓଲଟିଯାଇ ତା ଉପରେ ଘୋଡ଼େଇ ହୋଇଗଲା । ବାଘର କି ଚିତ୍କାର ! ଲୋକେ ଚାଳ କଣା କରି ବାଘକୁ ମାରିଲେ । କି ହଟଗୋଳ ଗାଁ'ରେ ! ଆମ ପରି ପିଲାଙ୍କର ଯେପରି ଆନନ୍ଦ, ସେପରି ଭୟ । ଆଁ କରି ବାଘଥିବା ଘରକୁ ଚାହିଁଥାଉ - ତା ଗର୍ଜନ ଶୁଣୁଥାଉ । ଛାତି ଧଡ଼୍ ଧଡ଼୍ ପଡୁଥାଏ ଉଠୁଥାଏ । ତାପରେ ବାଘକୁ ମାରି ଗାଁ'ବାଲା ଶଗଡ଼ରେ ପକାଇ ଖଲ୍ଲିକୋଟ ଗଡ଼କୁ ନେଲେ ଏବଂ ସେଠାରେ ରଜାଙ୍କ ଘରୁ ବକ୍‌ସିସ୍ ପାଇଲେ । ଲୋକେ ଖାଲି କୁହାକୁହି ହେଲେ ଯେ ଯେଉଁ ଯୁବକର ଦୁଇଗୋଡ଼ ମଝିରେ ବାଘ ଚାଲିଯାଇଛି ତା'ର ବହୁତ ଅମଙ୍ଗଳ ହେବ । ସତକୁ ସତ ଛଅମାସ ଭିତରେ ସେ ବିଚରାଟି ମରିଗଲା । ଅବଶ୍ୟ କିପରି ମଲା ମୋର ମନେନାହିଁ । ଏତେ ଲୋକ ଏକା ସାଙ୍ଗରେ ତା'ର ଅମଙ୍ଗଳ ହେବ ବୋଲି କହିଲା ପରେ ତାର ବୋଧହୁଏ ମୃତ୍ୟୁ ହୋଇଯିବା ସ୍ୱାଭାବିକ ।

ନନା ଗାଁ' ସ୍କୁଲରେ ଏକମାତ୍ର ପ୍ରାଥମିକ ଶିକ୍ଷକ । ସେ ପଞ୍ଚମ ଶ୍ରେଣୀ ଯାଏ ସବୁ ପିଲାଙ୍କୁ ପଢ଼ାନ୍ତି । ତା'ଛଡ଼ା ତାଙ୍କ ପଛପଟେ ପାଞ୍ଚ ଛଅଜଣ ଯୁବକ ଛାତ୍ର ପଢୁଥାନ୍ତି ନାନା କଥା-କିଏ ଜ୍ୟୋତିଷ, କିଏ କର୍ମ କର୍ମାଣୀ, କିଏ ସଂସ୍କୃତ ଅଭିଧାନ, ସାହିତ୍ୟ ଇତ୍ୟାଦି । ସେ ଗୋଟିଏ ଅଦ୍ଭୁତ ସ୍କୁଲ । ବଡ଼ମାନଙ୍କୁ ସନ୍ଥ ଦେଇଦେଲା ପରେ ସାନ ପିଲାମାନଙ୍କର ପଢ଼ିବା ପାଳି ପଡ଼େ । ନନାଙ୍କ ହାତରେ ଗୋଟିଏ ବେତ ଚିକ୍ ଚିକ୍ କରୁଥାଏ । ମୁଁ ଯେହେତୁ ଭଲ ପଢୁଥିଲି ମୋ ଦେହରେ ବେତ ଥରେ ହେଲେ ବି ବାଜି ନଥାଏ । କେତେକ ପିଲା ପାଠଚୋର । ସ୍କୁଲକୁ ଆସିବାକୁ ଲୁଚନ୍ତି । ତାଙ୍କ ବାପା ମା' ସେମାନଙ୍କୁ ସ୍କୁଲକୁ ପଠାନ୍ତି,

କିନ୍ତୁ ସେମାନେ କୁଆଡ଼େ  କୁଆଡ଼େ ଯାଇ ଲୁଚନ୍ତି । ନନା ସେମାନଙ୍କୁ ଗୋଡ଼େଇ ଗୋଡ଼େଇ ଧରି ଆଣନ୍ତି । ଥରେ ଗୋଟିଏ ପିଲାକୁ ବିଲମାଳରେ ଗୋଡ଼େଇ ଯାଉଥିଲା ବେଳେ ନନା ପଡ଼ିଯାଇଥିବାର ମୋର ମନେଅଛି । ସେ ବହୁତ ବେଶୀ ଛାତ୍ରବତ୍ସଳ ଥିଲେ । ବାପ ମା'ମାନେ ଓ ଗାଁ'ର ମୁଖିଆ ଲୋକେ ତାଙ୍କୁ ବହୁତ ସମ୍ମାନ କରୁଥିଲେ । ଗାଁ'ର କାର୍ଜି, କରଣ ଓ ମନ୍ଦିରଗୁଡ଼ିକର ପୂଜକ ପରିବାରର ବୟୋଜ୍ୟେଷ୍ଠ ବ୍ୟକ୍ତି ବଡ଼ପଣ୍ଡା-ଯାହାଙ୍କୁ ଖାଡ଼ଙ୍ଗା ବୋଲି କୁହାଯାଏ-ସେମାନଙ୍କ ସହ ନନାଙ୍କର ଆଲୋଚନା, ଯୁକ୍ତିତର୍କ ସଭା ପ୍ରତି ସନ୍ଧ୍ୟାରେ ବସେ । ଜଣଙ୍କର ବାରଣ୍ଡାରେ ବସି ଏମାନେ ଘଣ୍ଟା ଘଣ୍ଟା କଥାବାର୍ତ୍ତା କରିବାର ମୁଁ ଶୁଣିଛି । ମୁଁ ନନାଙ୍କ ପାଖେ ପାଖେ ଥାଏ ।

ନନାଙ୍କର କଥା ଭିତରୁ ଗୋଟିଏ କଥା ମୋର ମନେଅଛି । କଥାଟି ହେଉଛି-ବର୍ଷ ଶେଷରେ ସ୍କୁଲ ପିଲାମାନଙ୍କର କୃତିତ୍ୱ ପରୀକ୍ଷା କରିବାକୁ ଆସନ୍ତି ସ୍କୁଲ ପରିଦର୍ଶକ । ସେ ମହାଶୟ ପରୀକ୍ଷା ଫଳ ଉପରେ ନିର୍ଭର କରି ସ୍କୁଲକୁ ଗ୍ରାଣ୍ଟ୍ ଦିଅନ୍ତି । ନନା ବର୍ଷ ଶେଷରେ ପ୍ରାୟ ଦୁଇଶହ ଟଙ୍କାଯାଏ ଗ୍ରାଣ୍ଟ ପାଆନ୍ତି । ସେତେବେଳକାର ସମୟରେ ଦୁଇଶହ ଟଙ୍କାର ମୂଲ୍ୟ ବହୁତ ବେଶୀ । ଟଙ୍କାରେ କୋଡ଼ିଏ ପଚିଶ ସେର ଚାଉଳ । ଏହି ଅନୁପାତରେ ଆଉ ସବୁଜିନିଷ ଶସ୍ତା । ଏହି ଗ୍ରାଣ୍ଟ ଛଡ଼ା ପ୍ରତିଦିନ ଗୋଟିଏ ସ୍କୁଲ ପିଲା ତା'ଘରୁ ଗୋଟିଏ ବଡ଼ ଧରଣର ଛଞ୍ଚା ଆଣିଦିଏ—ଅରୁଆ ଚାଉଳ, ଡାଲି, ପନିପରିବା, ଗୁଆଘିଅ ଇତ୍ୟାଦି— ଘରେ ସମସ୍ତଙ୍କ ପାଇଁ ଏହା ଯଥେଷ୍ଟ ହୁଏ । ତେଣୁ ବର୍ଷ ଶେଷରେ ଏତେ ଟଙ୍କା ଦେଖି କାର୍ଜି ଓ ଖାଡ଼ଙ୍ଗା ଏହି ସନ୍ଧ୍ୟାକାଳୀନ ସଭାରେ ନନାଙ୍କୁ ଉପଦେଶ ଦିଅନ୍ତି ।

''ମାଷ୍ଟ୍ରେ, ଆପଣ ଶହେଟଙ୍କା ଦେଇ ଚାରିପାଞ୍ଚ ଆକ୍ରା ଜମି କିଣି ପକାନ୍ତୁ । ତାପରେ ଯାହା ଖର୍ଚ୍ଚ କରିବେ ।''

ନନା କହନ୍ତି-

''ନାହିଁ ଆଜ୍ଞା, ଜମି ମୋର କଣ ହେବ ? ମୋର ବଡ଼ପୁଅ ଉଦୟନାଥ ମୋର ସବୁ ଜମି । ତା' ପାଇଁ ଟଙ୍କା ପଠାଇଲେ ସେ ପାଠ ପଢ଼ିବ । ଜମିରଖି ମୁଁ କ'ଣ କରିବି ?''

ବଡ଼ଭାଇନା ଉଦୟନାଥ ରଥ ସେତେବେଳେ ଖୋର୍ଦ୍ଧା ସ୍କୁଲରେ ମାଟ୍ରିକ୍ ପଢୁଥାନ୍ତି । ସମ୍ପତ୍ତି ତୁଳନାରେ ବିଦ୍ୟା ଓ ପାଣ୍ଡିତ୍ୟ ପାଇଁ ଆମ ଦେଶରେ କି ପ୍ରକାର ଶ୍ରଦ୍ଧା ଥିଲା, ତାକୁ ପ୍ରତିପାଦିତ କରିବା ପାଇଁ ଏହି ଉଦାହରଣଟି ମୁଁ ବିଦେଶରେ ବହୁ ସ୍ଥାନରେ ମୋ ବକ୍ତୃତାରେ  କହିଛି । ଭାରତର ଐତିହ୍ୟ, ଶିକ୍ଷା ସଂସ୍କୃତିର ମର୍ଯ୍ୟାଦା ଏଥିରୁ ଜଣାପଡ଼େ । ଭାରତର ଉଚ୍ଚ କୋଟୀର ବ୍ରାହ୍ମଣମାନେ ବିଦ୍ୟାର ପୂଜାରୀ ଥିଲେ, ସମ୍ପତ୍ତିର ନୁହେଁ । ୟୁରୋପର ଚର୍ଚ୍ଚାଧିକାରୀଙ୍କ ପରି ଭାରତର ବ୍ରାହ୍ମଣମାନେ ଧନୀ ନଥିଲେ । ବିଦ୍ୟା ଓ ଜ୍ଞାନକୁ ସେମାନେ ଯୁଗ ଯୁଗ ଧରି ବଞ୍ଚାଇ ରଖିଥିଲେ । ତେଣୁ ରାଜାମାନେ ଗୁରୁମାନଙ୍କ ଆଶ୍ରମକୁ ଗଲେ ଧନୁଶର ତ୍ୟାଗ କରି ମୁକୁଟକୁ ତଳେ ରଖି ପ୍ରଣିପାତ କରୁଥିଲେ । ବ୍ରାହ୍ମଣ ହାତ ଟେକି ଆଶୀର୍ବାଦ କରୁଥିଲା । ଏ ପରମ୍ପରା ନିଶ୍ଚିତ ଭାବରେ ଗୋଟିଏ ବିରାଟ ଆଧ୍ୟାତ୍ମିକ ଓ ମାନବିକ ଐତିହ୍ୟରେ ପରିଣତ ହୋଇଯାଇଥିଲା ।

ଆମ ଘର ଭଲ ଚଳୁଥିଲା । ଗାଁ'ର ଯେତକ ଭଲ ଜିନିଷ ଆମ ଘରେ ଲୋକେ ଆଣି ଦେଇ ଯାଉଥିଲେ । ଆଖୁ ଦିନେ ଆଖୁ ମାଗଣାରେ ମିଳେ । ଦେଶୀ ଆଳୁ ଖୋଳା

ହେଲା ପରେ ଏତେ ଆଳୁ ମିଳେ ଯେ ଆମ ଘରେ ଖଣି ପକାଇ ତାକୁ ସାଇତା ହୁଏ। ଘରେ ଗାଈ ଥାଏ। ବାରିରେ ପରିବାପତ୍ର ହୁଏ।

ନନାଙ୍କର ଖୁଡ଼ି ନନାଙ୍କୁ ପୋଷ୍ୟପୁତ୍ର କରିଥିଲେ। ସେ ବାଲ୍ୟବିଧବା ଥିଲେ। ସେ ଘର ଚଳାନ୍ତି। ତାଙ୍କୁ ସମସ୍ତେ ଡରନ୍ତି। ପିଲାମାନଙ୍କୁ ସେ ବହୁତ ଗେହ୍ଲା କରି ରଖନ୍ତି। ସେ ଥିଲେ ଟିକିଏ କାଞ୍ଚୀ। ବେଶୀ ଖର୍ଚ୍ଚ କରିଦେବା ତାଙ୍କର ଅଭ୍ୟାସ ନଥିଲା। କିନ୍ତୁ ବୋଉ ଓ ବଡ଼ନାନୀ– ଯେ କି ଅଳ୍ପ ବୟସରେ ବିଧବା ହୋଇ ଆମ ଘରେ ରହୁଥିଲେ—ଭାରି ଖର୍ଚ୍ଚୀ। ସେମାନଙ୍କର ମୁହଁ ଯେପରି ବଡ଼, ହାତ ସେପରି ଖୋଲା। ବୁଢ଼ୀମା କିଛି ଜିନିଷ କିଣିଦେଲା ପରେ ଏମାନେ ଚାଉଳ ଦେଇ ଲୁଚେଇ ଆଉ ଅଧିକା ଜିନିଷ କିଣି ପକାନ୍ତି। ପିଠାପଣା ଦୁଇଗୁଣ ହୋଇ ହୁଏ। ବୁଢ଼ୀମା'ଙ୍କୁ ଲୁଚେଇ ଲୁଚେଇ ଆମକୁ ଅଧିକା ପିଠା ବହୁଦିନଯାଏ ଦିଆ ଚାଲିଥାଏ, ଘରେ ସୁବିଧା ନ ହେଲେ ନାନୀର ସଙ୍ଗାତ ଘରେ ଅଧିକ ପିଠାପଣା ତିଆରି ହୋଇଥାଏ। ଆମେ ସେଠାକୁ ଯାଇ ଖାଇଆସୁ। ଆମକୁ ବହୁତ ମଜା ଲାଗେ।

ମୁଁ ସାନପୁଅ ବୋଲି ନନା ମୋତେ ବହୁତ ଭଲ ପାଆନ୍ତି। ତା'ଛଡ଼ା ମୁଁ ବି ଭଲ ପଢୁଥିଲି। ମୁଁ ଏପରି ଗେଲବସର ହୋଇଗଲି ଯେ ଦେହ ଖରାପ ହେଲେ ନନା ସ୍କୁଲରୁ ଆସି ତାଙ୍କ ହାତରେ ମୋତେ ଔଷଧ ନ ଦେଲେ ମୁଁ ଖାଉ ନଥିଲି। ତାଙ୍କ ସାଙ୍ଗରେ ମୁଁ ସବୁବେଳେ ଝାଡ଼େଶ୍ୱର ଯାଏ। କେବେ ମାଡ଼ ଖାଇନାହିଁ। କିନ୍ତୁ ଥରେ ମନେଅଛି ମାଡ଼ ବିଷୟରେ। ମୁଁ ଥରେ ନନାଙ୍କ ସହିତ ଥଟ୍ଟାରେ ଲୁଚକାଳି ଖେଳୁଥିଲି। ଗାଁ'ର କାର୍ଜି ଏବଂ ଖାଡ଼ଙ୍ଗା ସେଠାରେ ବସିଥାନ୍ତି। ସେମାନେ ନନାଙ୍କୁ ବିଗିଡ଼େଇ ଦେଲେ। କହିଲେ-

''କ'ଣ ମାଷ୍ଟ୍ରେ, ପିଲାକୁ ପାଞ୍ଚବର୍ଷ ପୂରିଗଲାଣି; ସେ କଣ ଆପଣଙ୍କୁ ମାନୁନାହିଁ, ଆପଣଙ୍କ ସହିତ ଖେଳୁଛି ?''

ନନାଙ୍କୁ ବୋଧେ ଏଥିରେ ବହୁତ ଅପମାନ ଲାଗିଲା। ମୋତେ ହଠାତ୍ ବହୁତ ପିଟି ପକାଇଲେ ବେତରେ। ମୁଁ ଚିତ୍କାର କରୁଥାଏ। ଜୀବନର ପ୍ରଥମ ମାଡ଼, ସେ ପୁଣି ଅନ୍ୟମାନଙ୍କ ଆଗରେ, ଗାଁ' ଦାଣ୍ଡରେ। ମୁଁ କାନ୍ଦି କାନ୍ଦି ଘରକୁ ଫେରିଲି। ଏହି ଘଟଣାଟି ମୋତେ ଏତେ ବେଶୀ ମାନସିକ ଆଘାତ ଦେଲା ଯେ ନନା ରାତିରେ ଘରକୁ ଫେରିବା ବେଳକୁ ମୋତେ ଭୟଙ୍କର ଜ୍ୱର। ମୁଁ ଠକ୍ ଠକ୍ ହୋଇ ଥରୁଥାଏ। ଘରେ ସମସ୍ତେ ନନାଙ୍କ ଉପରେ ଗାଳି ବର୍ଷଣ କରୁଥାନ୍ତି। କି ଭୟଙ୍କର ହଟ୍ଟଗୋଳ ମୋ ପାଇଁ—କି ଅପମାନ, କି ଯନ୍ତ୍ରଣା ମୋର– ଯାହାଙ୍କ ହାତ ନ ବାଜିଲେ ମୁଁ ଔଷଧ ଖାଏନାହିଁ, ସେହି ନନା ମୋତେ ପୁଣି ମାରିଲେ, ଏ କଥା ମନେପଡ଼ିଲା କ୍ଷଣି ମୁଁ ପୁଣି ଥରେ କଇଁ କଇଁ ହୋଇ କାନ୍ଦେ। ତିନି ଚାରିଦିନ ଧରି ମୁଁ ଜ୍ୱର ଭୋଗିଲି- ବହୁତ କାନ୍ଦିଲି। ସେ କଥା ଭୁଲିବାର ନୁହେଁ। ଏ କ'ଣ ଖାଲି ମାଡ଼ର ଆଘାତ ଯୋଗୁଁ ମୋର କଷ୍ଟ ହେଲା ? ଅଭିମାନରେ ମୋର ଦେହ ଜଳି ଯାଉଥାଏ—ଅଭିଯୋଗରେ ମୋର ବୁକୁ ଫାଟି ଯାଉଥାଏ—ନନା ମାରିବେ, ଏହା ମୋର କଳ୍ପନାର ବାହାରେ। ତା'ପରେ ନନାଙ୍କଠାରୁ ଆଉ କେବେ ମାଡ଼ ଖାଇନାହିଁ।

ଗାଁ'ର ବରେଣ୍ୟ ମାଷ୍ଟ୍ରଙ୍କର ପୁଅ ହୋଇଥିବା ଯୋଗୁଁ ଗାଁ'ରେ ମୋର ବହୁତ ଆଦର ଥିଲା। ଗାଁ' ଭିତରେ ନନା ଥିଲେ ଏକମାତ୍ର କୁଳୀନ ବ୍ରାହ୍ମଣ। ଅନ୍ୟମାନେ ହେଲେ ଭଦ୍ରି

ବ୍ରାହ୍ମଣ ଓ ଚାଷୀ ଲୋକ । ଗାଁ' ବାହାରେ ବାଉରି, ହାଡ଼ି ସାହି । ଧୋବା ଭଣ୍ଡାରି ଗାଁ'ର ସେବା କରନ୍ତି । ଗାଁ'ର ଲୋକେ ବଡ଼ ସ୍ୱଚ୍ଛଳ ଥିଲେ । ଝାଡ଼େଶ୍ୱରର ଝରଣା ଗାଁ' ଲୋକଙ୍କ ଜମିରେ ହପ୍ତାରେ ତିନିଦିନ ମାଡୁଥିବାରୁ ଏମାନେ ବଡ଼ ଭଲରେ ଥାନ୍ତି । ଆଉ ଚାରିଦିନ ଝାଡ଼େଶ୍ୱର ପାଣି ପାଖ ଗାଁ' ଦାନପୁର ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ।

ଆଗରୁ କହିଛି, ଆମ ଗାଁ' ଓ ଝାଡ଼େଶ୍ୱର ଅଞ୍ଚଳ ଅତ୍ୟନ୍ତ ମନୋରମ । ତେଣୁ ମୋର ପ୍ରଥମ ବାଲ୍ୟ ଅନୁଭୂତି ଅତ୍ୟନ୍ତ ସବୁଜ । କିନ୍ତୁ ତା ସହିତ ଗାଁ'ର ବି ଆଉ ଗୋଟିଏ ଭୟଙ୍କର ରୂପ ଅଛି, ଯାହାକି ମନରୁ ପାଶୋରି ହେବନାହିଁ । ଗାଁ' ପାଖ ଆଖରେ ଡାକ୍ତରଖାନା ନଥିଲା । ଗାଁ'ରେ ସେପରି ଭଲ ବୈଦ୍ୟ ମଧ୍ୟ ନଥାନ୍ତି । ଲୋକମାନଙ୍କର ଦେହପା ଖରାପ ହେଲେ ପୂଜା ଅର୍ଚ୍ଚନା ଓ ମାନସିକ କରିବା ହେଉଛି ଏମାନଙ୍କର ଗୋଟିଏ ମୁଖ୍ୟ ଉଦ୍ୟମ । ତା'ଛଡ଼ା ବସନ୍ତ ହଇଜା ସମୟରେ ଗାଁ'ରେ ସନ୍ଧ୍ୟାବେଳୁ ତାଟିକବାଟ ବନ୍ଦ ହୋଇଯାଏ । କି ଭୟଙ୍କର ପରିସ୍ଥିତି ! ଗ୍ରାମ ଦେବତୀ ମଝିରେ ମଝିରେ ଗାଁ' ଲୋକଙ୍କ ଉପରେ ହଠାତ୍ ବିରକ୍ତ ହୋଇଉଠନ୍ତି- କେତେ ମୁଣ୍ଡ ନେବା ପାଇଁ ଗାଁ' କାଳସୀ ମାଧ୍ୟମରେ ଜଣାଇ ଦିଅନ୍ତି । ସେତେବେଳକୁ ବସନ୍ତ ଘରେ ଘରେ ଆରମ୍ଭ ହୋଇଯାଇଥାଏ । ଟୀକା ନେବା ପାଇଁ ସମସ୍ତେ ଡରନ୍ତି । କାରଣ ଟୀକା ସ୍ଥାନ ପାଚି ବହୁତ କଷ୍ଟ ଦିଏ ମାସ ମାସ ଧରି । ଟୀକାଦାର ମଧ୍ୟ ବହୁତ ବିରଳ । ତା'ଛଡ଼ା ଟୀକା ନେଲେ ଗ୍ରାମ ଦେବତୀ ବିଗିଡ଼ି ଯିବାର ବହୁତ ସମ୍ଭାବନା ବୋଲି ଲୋକେ ଭାବନ୍ତି । ବସନ୍ତ ହେଲେ ମୁଣ୍ଡ ପରେ ମୁଣ୍ଡ ଟଳେ । ବିଶେଷତଃ ପିଲା ମୁଣ୍ଡ ବେଶୀ ଟଳେ । ବସନ୍ତ ମହାମାରୀ ସମୟରେ ସନ୍ଧ୍ୟା ବେଳେ ସଂକୀର୍ତ୍ତନ ସାହି ସାହି ବୁଲେ । ଯେଉଁ ସଂକୀର୍ତ୍ତନର ଝାଞ୍ଜ ମୃଦଙ୍ଗ ଅନ୍ୟ ସମୟରେ ମୋତେ ଏତେ ଭଲ ଲାଗେ, ସେତେବେଳେ ତାହା ଅତି ଭୟଙ୍କର ଶୁଣାଯାଏ । ଲୋକଙ୍କର କାନ୍ଦଣା ଓ ରୋଗୀର ପ୍ରଳାପର ସ୍ୱର ଯେପରି ସେଥି ଭିତରୁ ବେଶୀ ଜୋର୍‌ରେ ଶୁଣାଯାଏ ! ସଂକୀର୍ତ୍ତନ ବାହାରିଲେ ମୋ ଦେହ ଥଣ୍ଡା ହୋଇଥାଏ । ମୁଁ କାହାରି ନା କାହାରି କୋଳରେ ଆଖି ବୁଜି ପଡ଼ିରହେ । ଏପରି ଭୟ ପିଲାଙ୍କର ଭବିଷ୍ୟତକୁ କିପରି ଦୁର୍ବଳ କରି ପକାଇବାର ସମ୍ଭାବନା, ବର୍ତ୍ତମାନ ତାହା ମୁଁ ବୁଝି ପାରୁଛି । ଥରେ ଥରେ ରାତିସାରା ମୋତେ ନିଦ ହୁଏନାହିଁ । ପଡ଼ିଶା ଘର ଝିଅର ବସନ୍ତ, ସେ ରାତିସାରା କୁନ୍ଥାଉଛି ଆଉ କହୁଛି–

''ମୋର ଯାଠି ବଡ଼ ଶରଧା । ମୁଁ ଗଛ ଡାଳରେ ଖେଳୁଥିଲି । ଯାକୁ ଦେଖି ଯା ଦେହକୁ ଆସିଛି, ମୁଁ ଯାକୁ ସାଙ୍ଗରେ ନେଇଯିବି ।''

ଇତ୍ୟାଦି ପ୍ରଳାପ କାନ୍ଥ ଭେଦି ଆମ ଘରକୁ ଶୁଣାଯାଏ । ମୁଁ କି ଆଉ ଶୋଇପାରେ ? ମାଆ ଦେହକୁ ଜାବୁଡ଼ି ଧରେ । କୋଉ ଗଛରୁ ପୁଣି ମୋ ପାଖକୁ ଗାଁ' ବୁଢ଼ୀ ଆସିଯିବ କିଏ କହିବ ? କାଲି ସକାଳେ ଯେ ସେ ଆସି ଯାଇପାରେ, ଇତ୍ୟାଦି ଭୟଙ୍କର ଆଶଙ୍କା । ତା ଭିତରେ ଗୋଟିଏ ପେଚା ବୋବାଇ ଦିଏ । ହୁଁ ହାଁ ଶବ୍ଦ ଶୁଣାଯାଏ । ମୋ ଅବସ୍ଥା ଆହୁରି ଖରାପ । ଅନ୍ଧାରରେ କିଏ ଯେପରି କୁନ୍ଥେଇ କୁନ୍ଥେଇ ଗାଁ ଦାଣ୍ଡରେ ଯିବାର ସମସ୍ତେ କହନ୍ତି । ତା'ର କୁନ୍ଥେଇବା ଶବ୍ଦ ମୋତେ ପେଚା ବୋବାଇଲା ବେଳେ ଶୁଣାଯାଏ । ଏହାକୁହିଁ ନାରକୀୟ ଭୟ କୁହାଯିବ ।

ଆନନ୍ଦର କଥା, ଆଜିକାଲି ପିଲାଙ୍କର ବିଶେଷକରି ଶିକ୍ଷିତ ଘରର ପିଲାଙ୍କର ଏ ପ୍ରକାର ଭୟଙ୍କର ଅନୁଭୂତି ହେବାର ଅବକାଶ ନାହିଁ । ହଇଜା ବସନ୍ତ ବନ୍ଦ ହୋଇଯିବା ପରେ ଗ୍ରାମ ଦେବତୀମାନଙ୍କ କୋକୁଆ ଭୟ ବହୁ ପରିମାଣରେ କମିଗଲାଣି । ନିଃସହାୟ ମଣିଷ କଣ କରିବ ? ସଂପୂର୍ଣ୍ଣ ରୂପେ ଅସହାୟ ହୋଇଗଲେ ଦେବାଦେବୀଙ୍କୁ ସୃଷ୍ଟି କରିବାକୁ ବାଧ ହୁଏ । ସେମାନେ ଯେତେ କ୍ରୁର ହେଲେ ମଧ ତାଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରେ । ମନେହୁଏ, ଭଗବଦ୍ ବିଶ୍ୱାସ ଭୟ ଯୋଗୁହିଁ ସୃଷ୍ଟି ହୋଇଥାଏ ଏବଂ ଭଗବାନଙ୍କୁ ଲୋକେ କେବଳ ଭୟ କରନ୍ତି, ଭଲ ପାଆନ୍ତି ନାହିଁ । ଆଜିଯାଏଁ ମଧ ଠାକୁରାଣୀଙ୍କ ପାଖରେ ଅନେକ ସ୍ଥାନରେ ବୋଦା ବଳୀ ଦିଆଯାଉଛି । ମଣିଷ ବଳୀ ବଂଦ ହୋଇଯାଇଛି ।

ଭାଗ୍ୟ ଭଲ ଆମ ଗାଁ'ରେ ମୋ ପିଲାଦିନେ ଥରଟିଏ ମଧ ହଇଜା ଲାଗିନାହିଁ । ଖାଲି ଶୁଣାଯାଏ ଯେ ଆଖପାଖ ଗାଁ'ରେ ହଇଜା ଲାଗି ବହୁ ଘର ପଦା ହୋଇଯାଇଛି । ଆଠଦଶ ଜଣ ପ୍ରାଣୀର କୁଟୁମ୍ବ ଭିତରୁ କେହି ବଞ୍ଚନ୍ତି ନାହିଁ । ସମସ୍ତଙ୍କୁ ଏକା ସାଙ୍ଗରେ ବାଡ଼ି ଠାକୁରାଣୀ ନେଇ ଯାଆନ୍ତି । ଆମ ଗାଁ'ର ପଶ୍ଚିମ ଦିଗରେ ଥିବା ଦାନପୁର ଗାଁ'ରେ ହଇଜା ଲାଗିବାର ମୁଁ ବହୁଥର ଶୁଣିଛି । ବୋଉ ବାରିପଟେ ଠିଆ ହୋଇ ପଶ୍ଚିମ ଦିଗକୁ ମୁହଁ କରି ବାରମ୍ବାର ପ୍ରଣାମ କରୁଥାଏ ।

''ହେ ଠାକୁରାଣୀ ହେ, ମା, ତୁ ଆଉ ଇଆଡ଼େ ବିଜେ ନ କର ।''

ମୁଁ ବୋଉର ମୁହଁକୁ ଦେଖୁଥାଏ, ପଶ୍ଚିମ ଆକାଶ ଆଡ଼କୁ ଚାହିଁଥାଏ । ସତେଅବା ବାଡ଼ି ଠାକୁରାଣୀଙ୍କୁ ଆଖି ଆଗରେ ଦେ ପାରିବି । ଶେଷ ସୂର୍ଯ୍ୟାଲୋକର ସ୍ପର୍ଶ ଯୋଗୁଁ କଳାନାଲି ମେଘସବୁ ମୋତେ ବିକଟାଳ ଦେଖାଯାଆନ୍ତି । ଏ ଦୃଶ୍ୟ ଦେଖିଲେ ମୋତେ ଖାଲି ବାଡ଼ି ଠାକୁରାଣୀର କଳା କଳା ଲୁଗାକାନି ଏବଂ ଲାଲ ଲାଲ ଆଙ୍ଗୁଠି ଓ ଜିଭ ଦେଖାଯାଏ । ସନ୍ଧ୍ୟା ପରେ ମୁଁ କେବେ ସେ ଆଡ଼କୁ ଚାହେଁ ନାହିଁ ।

ଜୀବିତ ପିଲାମାନଙ୍କ ମଧରେ ମୁଁ ଷଷ୍ଠ ହେଲେ କଣ ହେଲା, କୋଡ଼ପୋଛା ପୁଅ ହିସାବରେ ମୋର ଆଦର ବହୁତ ଥିଲା । ଛଅବର୍ଷ ପର୍ଯ୍ୟନ୍ତ ମୁଁ ବୋଉର ଛାତିରେ ମୁହଁ ଗୁଞ୍ଜି ଶୋଇବାର ମନେଅଛି । ସେ ଅନୁଭୂତି କେତେ ସୁଖଦାୟକ ଓ ନିରାପତ୍ତା ଭାବ ସମ୍ପନ୍ନ ତାହା ବର୍ତ୍ତମାନ ସୁଦ୍ଧା ମନ ଭିତରେ ଆଙ୍କି ହୋଇ ରହିଛି । ଥରେ ବୋଉ ଘରେ ଥାଏ । ମୁଁ ଓ ନାନୀମାନେ ମାମୁଁ ଘରକୁ ଯାଇଥିଲୁ ରାତି ଘଡ଼ିଏ ହେବ । ନାନୀ, ମାଇଁ ଓ ଅନ୍ୟାନ୍ୟ ପିଲାମାନଙ୍କ ସାଙ୍ଗରେ ଆମେମାନେ ତାଙ୍କ ଅଗଣା ଧାନ ବେଦୀ ଉପରେ ମଶିଣା ପକାଇ ଶୋଇଛୁ । ବହୁତ ଗପସପ ହସଖୁସି ଚାଲିଥାଏ । ମୁଁ କିନ୍ତୁ କିଛି କଥାବାର୍ତ୍ତା ନ କରି ସୁଦୂର ନୀଳ ଆକାଶର ତାରାମାନଙ୍କୁ ଚାହିଁଥାଏ । ମେଘମୁକ୍ତ ପରିଷ୍କାର ଆକାଶରେ ତାରାମାନେ ଚକ୍ ଚକ୍ କରୁଥାନ୍ତି । ଏତେ ବିସ୍ତୃତ ଓ ସୀମାହୀନ ନୀଳିମା ଭିତରେ ତାରାମାନଙ୍କୁ ଚାହୁଁ ଚାହୁଁ ମୋତେ ବହୁତ କାନ୍ଦ ଲାଗିଲା । ଖାଲି ବୋଉ କଥା ମନେପଡ଼ିଲା । ସେହି ବିରାଟ ଶୂନ୍ୟତା ଭିତରେ ମୋତେ ଭୟଙ୍କର ନିଃସହାୟ ମନେହେଲା । ବୋଉର ଉଷୁମ ଛାତିରେ ମୁଣ୍ଡଗୁଞ୍ଜି ରହିବାକୁ ଭାରି ଇଚ୍ଛା ହେଲା । ମୋତେ ଯେପରି ଏହି ଶୂନ୍ୟ ଭିତରକୁ କେହି ଟାଣି ନେଇ ଯାଉଛି ବୋଉଠାରୁ ବହୁତ ଦୂରକୁ ! ମୋର ନିଃସହାୟତାର ବୁକୁଫଟା କ୍ରନ୍ଦନ ଧ୍ୱନି ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ—ଡରିଗଲେ ମଧ । ଭାବିଲେ,

ମୋତେ ବୋଧହୁଏ ବହୁତ ଭୋକ ଓ ନି   ଲାଗିଲାଣି । ସେତେବେଳକୁ ମୋତେ ଛଅବର୍ଷ ହୋଇଥିଲା ।

ଏହା ମୋ ମନ ଭିତରେ ଏପରି ଗଭୀର ରେଖାପାତ କରିଥିଲା ଏବଂ ଏପରି ଗୋଟିଏ ମାନସିକ ଆଲୋଡ଼ନ ସୃଷ୍ଟି କରିଥିଲା ଯେ ଆଜିଯାଏ ବହୁତ ପରିଷ୍କାର ଭାବରେ ମୋ ମନରେ ଏହି ଅନୁଭୂତି ରହିଯାଇଛି । ତାପର ଜୀବନର ବହୁତ ଅନୁଭୂତି ଭିତରେ ଏହା ଶିହରଣ ସୃଷ୍ଟି କରିଛି । ଅନ୍ଧାର ରାତିରେ କାଠଯୋଡ଼ି ବାଲିରେ ଆକାଶକୁ ମୁହଁ କରି ଶୋଇଥିଲା ବେଳେ, ଆମେରିକାର ଯଶୋମିଟ୍ ପାର୍କରେ ରାତିରେ ମୁକ୍ତ ଆକାଶକୁ ଚାହିଁ ଘାସ ଉପରେ ପଡ଼ିଥିବା ବେଳେ, ବାଗ୍‌ଦାଦ୍‌ର ୟୁଫ୍ରେଟ୍ ନଦୀକୂଳରେ ବସି ଅନ୍ଧକାର ରାତିର ଦିଗ୍‌ବଳୟକୁ ଚାହିଁଥିବା ସମୟରେ, ହେଲିସିଙ୍କି ସହରର ଗୋଟିଏ ସୁରମ୍ୟ ଦ୍ୱୀପର ସମୁଦ୍ର କୂଳରେ ମଧ୍ୟରାତ୍ରି ସୂର୍ଯ୍ୟର ଅଳ୍ପସ୍ଥାୟୀ ଅସ୍ତ ଓ ଉଦୟର ବ୍ୟବଧାନ ଭିତରେ, ଅନନ୍ତ ନୀଳାଭ ଆକାଶର କମନୀୟ ଓ କୋମଳ ପ୍ରଭାତିକ ଆଲୋକର ପ୍ରାଣସ୍ପର୍ଶୀ ଆବେଗରେ ଆନ୍ଦୋଳିତ ହେଉଥିଲା ବେଳେ, ବେବୀଲୋନ୍‌ର ଇତିହାସ ପ୍ରସିଦ୍ଧ ଦୋଳାୟମାନ ସହରର ଭଗ୍ନ ସ୍ତୂପର କେନ୍ଦ୍ରୀୟ ମନ୍ଦିର ପ୍ରାଙ୍ଗଣରେ ସାନ୍ଧ୍ୟକାଳୀନ ପ୍ରଥମ ନକ୍ଷତ୍ରର ଅସ୍ପଷ୍ଟ ଆଲୋକରେ ହଜାର ହଜାର ବର୍ଷର ଅସଂଖ୍ୟ ଆତ୍ମାର ଅକଳନ ଆବେଗାତ୍ମକ ସ୍ମୃତି ସହିତ ଉଦ୍‌ବେଳିତ ହେବା ସମୟରେ...ହିମାଳୟର ଅସଂଖ୍ୟ ଗିରିଶୃଙ୍ଗ ଓ ଜାପାନର ଫୁଜୀ ପର୍ବତପୁଞ୍ଜର ବରଫାବୃତ ଶିଖର ଦେଶରୁ ବହି ଆସୁଥିବା ମୋଲାୟମ ଥଣ୍ଡା ପବନର ପ୍ରାଣମତାଣିଆ ଆନନ୍ଦ ଅନୁଭବ କରୁଥିବା ବେଳେ...ଭରା ଗଙ୍ଗାନଦୀ କୂଳରେ ବସି ଆକାଶର ନିର୍ଜନତାରେ ହଜି ଯାଇଥିବା ବେଳେ, ଜୀବନର ଅପରାହ୍ଣରେ ମୋ ଘର ବାରଣ୍ଡାରେ ନିର୍ଜନ ସଂଧ୍ୟାରେ ବସି ନିରୋଳା ଆକାଶକୁ ଦେଖୁଥିବା ବେଳେ ଏହି ଆଦି ଅନୁଭୂତିର ଉଷ୍ମତା ଅନୁଭୂତ ହୋଇଯାଏ ।

ଏହି ପରିପ୍ରେକ୍ଷୀରେ ଆଉ ଗୋଟିଏ ଅଦ୍ଭୁତ ଅନୁଭୂତି କଥା ମୋର ମନେ ପଡ଼ିଗଲା । ଏହାର ସତୁରୀ ବର୍ଷ ପରେ ଝାଡ଼େଶ୍ୱରଠାରେ ମୁଁ ସେତେବେଳକୁ ବର୍ଷରାଏ ଘର କରି ମଝି ମଝିରେ ଯାଇ ରହେ । ଦିନେ ଅପରାହ୍ଣରେ ହଠାତ୍ ଇଚ୍ଛା ହେଲା ମୋର ପ୍ରକୃତ ଜନ୍ମସ୍ଥାନ ମାମୁଁଘର ଗ୍ରାମ ବିଳାସପୁରକୁ ଯିବା ପାଇଁ । ଝାଡ଼େଶ୍ୱରଠାରୁ ବିଳାସପୁର ପ୍ରାୟ ଦଶ କିଲୋମିଟର ହେବ । ମୁଁ ବିଳାସପୁରକୁ ପ୍ରାୟ ସତୁରି ବର୍ଷ ତଳେ ଶେଷଥର ପାଇଁ ଯାଇଥିଲି- ତାପରେ ଯିବା ସଂଭବ ହୋଇନଥିଲା । ମାମୁଁ ମଧ୍ୟ ସେଠାରେ ରହୁ ନଥିଲେ- ଅନ୍ୟ ଗ୍ରାମକୁ ଚାଲିଯାଇଥିଲେ ।

ମୁଁ ସେଦିନ ଅପରାହ୍ଣରେ ବିଳାସପୁରରେ ଯାଇ ପହଞ୍ଚିଥିଲି । ସେଠାରେ ଥିଲା ମୋର ମାମୁଁ ଘର ଏବଂ ପିଉସୀ ନାନୀଘର । ଗାଁ'ଟି ଗୋଟିଏ ବ୍ରାହ୍ମଣ ଶାସନ । ଗାଁ'ଯାକ ବୁଲି ଦେଖିଲି- ଅଧିକାଂଶ ଚାଳଘର କୋଠାଘରରେ ପରିଣତ ହୋଇଯାଇଛି- ମୋତେ ତ କେହି ନ ଚିହ୍ନିବାର କଥା । ବହୁତ କଷ୍ଟରେ ମୋ ପିଉସୀନାନୀର ଗୋଟିଏ ପୁତୁରା ସାଙ୍ଗେ ଚିହ୍ନା ହେଲା । ସେ ଗାଁ'ର ଅଧିକାଂଶ ଲୋକ ସହରରେ ଚାକିରି କରି ସେଠାରେ ରହିଥାଆନ୍ତି । ଘରେ ବୁଢ଼ା-ବୁଢ଼ୀମାନେ ହିଁ ଥାଆନ୍ତି । ତାଙ୍କ ସହିତ ଆଉ ସାମାନ୍ୟ କେତେଜଣ ନାତି ନାତୁଣୀ । ଯାହାହେଉ, ଠିକ୍ ସେହିପରି ଘର ଦୁଇଧାଡ଼ି । ଖାଲି ମୋ ପିଉସୀ ନାନୀଙ୍କର

ବିରାଟ ବହୁ ବଖରାର ଘର ବାଣ୍ଟ ବାଣ୍ଟ ହୋଇ ଆଠ-ଦଶ ଫୁଟିଆ ଦାଣ୍ଡି ବଖରାରେ ପରିଣତ ହୋଇଯାଇଥିଲା । ଆଧୁନିକ ସମାଜର ବ୍ୟକ୍ତି କେନ୍ଦ୍ରିକ ଭାଗବଣ୍ଟା ମାନସିକତାର ଏହା ଗୋଟିଏ ଜ୍ୱଳନ୍ତ ନିଦର୍ଶନ ।

ଗାଁ'ଦାଣ୍ଡରେ ବୁଲୁ ବୁଲୁ ହଠାତ୍ ନଜର ପଡ଼ିଲା ପଶ୍ଚିମ ଆକାଶ ଆଡ଼େ । ସେଠାରେ ସଂଧ୍ୟା ତାରାର ମୋଲାଏମ୍ ଆଲୋକ ଚକ ଚକ କରୁଥିଲା ଠିକ୍ ମୁଁ ଜନ୍ମ ହୋଇଥିବା ଘରର ଅଗଣା ଉପରେ । ମୋର ହଠାତ୍ ମନେପଡ଼ିଲା ଯେ ମୋତେ ଯେତେବେଳେ ଛଅବର୍ଷ ବୟସ ଆମ ଗାଁ'ରେ ବୋଉକୁ ଛାଡ଼ି ନାନୀମାନଙ୍କ ସାଙ୍ଗରେ ମୁଁ ସେଠାକୁ ଯାଇଥିଲି । ମାମୁଁଙ୍କ ପ୍ରଶସ୍ତ ଅଗଣାରେ ଗୋଟିଏ ଧାନ ବେଦୀ ଉପରେ ସେହି ସଂଧ୍ୟାରେ ନାନୀମାନଙ୍କ ସାଙ୍ଗରେ ମୁଁ ସଂଧ୍ୟାବେଳେ ଗପୁଥିଲୁ । ହଠାତ୍ କେଜାଣି କାହିଁକି ବୋଉକୁ ଛାଡ଼ି ଆସିଥିବା ଯୋଗୁ ମୋ'ଠାରେ ଗୋଟିଏ ବୁକୁଫଟା କୋହ ଉଠିଥିଲା- ଠିକ୍ ସେହିପରି ଗୋଟିଏ ଅସ୍ପଷ୍ଟ ଆଲୋଡ଼ନ ସେଠାରେ ସଂଧ୍ୟାତାରାଟିକୁ ଦେଖି ମୋଠାରେ ଦେଖା ଦେଇଥିଲା । କି ଅଦ୍ଭୁତ ! ଏହି ଅନୁଭୂତି ଏତେ ବର୍ଷ ପରେ ଜୀବନର ପରିଣତ ବୟସରେ ମଧ୍ୟ ସତୁରୀ ବର୍ଷ ତଳର ସେହି ପିଲାଦିନର ଆବେଗିକ ଆଲୋଡ଼ନ ମୋତେ ପୁଣି ସେହି ସମୟକୁ ନେଇଗଲା । ସଂଧ୍ୟା ତାରା ସହିତ ଏପରି ଭାବରେ ଜଡ଼ିତ ହୋଇ ରହିଥିବା ଘଟଣାଟି ପୁର୍ନଜୀବିତ ହେବା ନିଶ୍ଚିତ ଭାବରେ ବିସ୍ମୟକର ଅନୁଭୂତି । ସେଠାରେ ମୁଁ ବହୁ ସମୟ ଧରି ସେହି ସଂଧ୍ୟା ତାରାକୁ ଚାହିଁ ରହିଲି । ମୋ ଦେହରେ ଅପୂର୍ବ ପୁଲକ ସୃଷ୍ଟି ହେଲା । ଏଥିଯୋଗୁ କଅଣ ଜୀବନ ସାରା ସଂଧ୍ୟା ତାରା ପ୍ରତି ମୋର ଏପରି ଅଦମ୍ୟ ଆକର୍ଷଣ ? ବୋଉକୁ ଛାଡ଼ି ରହିଥିଲା ବେଳେ ଏହି ସଂଧ୍ୟା ତାରାର ଦୃଶ୍ୟ କଅଣ ମୋତେ ଏପରି ଭାବରେ ଆନ୍ଦୋଳିତ କରିଥିଲା ? କିଏ ଜାଣେ ମୋର ଜନ୍ମ ହୋଇଥିବା ଗାଆଁର ସେହି ଶେଷ ଘର ଅଗଣାରେ ମୋ ଜନ୍ମ ସମୟରେ ମଧ୍ୟ ସଂଧ୍ୟା ତାରା ଏହିପରି ଚକ୍ ଚକ୍ କରୁଥିଲା । ସେଥିପାଇଁ କଅଣ, ବାଲ୍ୟାବସ୍ଥାରେ ପ୍ରାର୍ଥନା କରିବାର ଅଭିଳାଷ ପ୍ରତି ସଂଧ୍ୟାରେ ଆକାଶକୁ ଚାହିଁ ଚାହିଁ ରହିବାରେ ଚରିତାର୍ଥ ହେଉଥିଲା- ତାର ପର ଯୌବନ କାଳର ପ୍ରଥମ ଭଲ ପାଇବାର ସ୍ୱପ୍ନ ଏହି ସଂଧ୍ୟା ତାରା ରାଜ୍ୟରେ ହିଁ ରୂପାୟିତ ହୋଇଥିଲା ? ଜୀବନଯାକ ଏହି ସଂଧ୍ୟା ତାରାହିଁ ମୋର ନିରୋଳା ମୁହୂର୍ତ୍ତମାନଙ୍କର ଚିରନ୍ତନ ସାଥୀ ହୋଇ ରହିଗଲା । ଜୀବନର ଅପରାହ୍ଣରେ ଗୋଟିଏ ସଂଧ୍ୟା ମଧ୍ୟ ତାର ଦର୍ଶନ ଅଭାବରେ ଏହିପରି ଭାବରେ ବ୍ୟାଥାୟିତ ଅବ୍ୟକ୍ତ କ୍ରନ୍ଦନ ଜାଗିଉଠେ ।

ଅଦ୍ଭୁତ, ମନୁଷ୍ୟର ଏପ୍ରକାର ଅକଳନ ଐଶ୍ୱରିକ ବ୍ୟଥା– ଅଯୌକ୍ତିକ ମାନସିକ ଉଦ୍‌ବେଳନ । ଏହା ଯୁଗ ଯୁଗ ଧରି ରହସ୍ୟାବୃତ୍ତ ହୋଇ ହିଁ ରହିଯିବ ।

x x x x x x x x x

ବୋଉ ସାବନ ବର୍ଣ୍ଣର ସ୍ତ୍ରୀ ଲୋକ ହୋଇଥିବାରୁ ତା'ର ଚେହେରା ମୋର ସମ୍ପୂର୍ଣ୍ଣ ମନେ ନଥିଲେ ମଧ୍ୟ ସାବନ ବର୍ଣ୍ଣର ସ୍ତ୍ରୀମାନଙ୍କୁ ମତେ କାହିଁକି ବେଶୀ ଭଲ ଲାଗେ । ଏପରି ସ୍ତ୍ରୀମାନଙ୍କ ପ୍ରତି ସ୍ନେହ ସହାନୁଭୂତି ଅତୀତ ମାତୃ ସ୍ନେହର ଉଷ୍ମତାକୁ– ମୋ ଠାରେ ଉଦ୍‌ଜୀବିତ କରେ ମୋତେ ଉନ୍ମାଦନା ଦିଏ । ଏ ପ୍ରକାର ଆବେଗ ଭିତରେ ସାର୍ଥକତା ଭରିଦିଏ । ବହୁ ସମ୍ବେଦନକୁ ସମଷ୍ଟୀଭୂତ କରେ... ଅସମ୍ପୂର୍ଣ୍ଣ ମୁହୂର୍ତ୍ତଗୁଡ଼ିକୁ ଗୋଟିଏ ଛନ୍ଦରେ

ଛନ୍ଦୀଭୂତ କରେ । ଜୀବନର ପ୍ରଥମ ଅବସ୍ଥାରେ ବାପାମାଆଙ୍କର ପ୍ରଭାବ ଭବିଷ୍ୟତ ବ୍ୟକ୍ତିତ୍ୱ ଗଠନର ମୂଳଭିତ୍ତି ବୋଲି ଫ୍ରଏଡ୍ ଯାହା କହିଥିଲେ, ତାର ସତ୍ୟତା ବହୁ ପରିମାଣରେ ମୁଁ ହୃଦୟଙ୍ଗମ କରେ । ସେଥିପାଇଁ ବାପାମାଆମାନଙ୍କୁ ମୁଁ ଅନୁରୋଧ କରେ ଯେ ସେମାନଙ୍କର ପିଲାଙ୍କୁ ପ୍ରଥମ ଅବସ୍ଥାରେ ନିଜ ପାଖରେ ରଖିବାକୁ । ସେମାନଙ୍କର ଆବେଗାତ୍ମକ ଓ ନିରାପତ୍ତା ଭାବର ବଳିଷ୍ଠ ମୂଳ ଭିତ୍ତି ଏହି ସମୟରେ ସମ୍ଭବ ହୋଇଥାଏ । ପ୍ରଥମ ପନ୍ଦର ବର୍ଷ ପର୍ଯ୍ୟନ୍ତ ପିଲାମାନେ ବାପମାଆଙ୍କ ପାଖରେ ରହିବା ଉଚିତ । ଯେତେ ଭଲ ସ୍କୁଲ ଓ ହଷ୍ଟେଲ ହେଲେ ମଧ ଶିକ୍ଷକ ଶିକ୍ଷୟିତ୍ରୀମାନେ ଯେତେ ସ୍ନେହଶୀଳ ଓ ଯୋଗ୍ୟ ହେଲେ ସୁଦ୍ଧା ବାପମାଆଙ୍କର ବିକଳ୍ପ ସେମାନେ କଦାପି ହୋଇପାରିବେ ନାହିଁ । କିନ୍ତୁ ଦୁଃଖର ବିଷୟ, ବହୁ ବିତ୍ତବଶାଳୀ ବାପମାଆମାନେ ପିଲାମାନଙ୍କର ଝଞ୍ଜାଳରୁ ମୁକ୍ତ ରହିବା ପାଇଁ ଉଚ୍ଚଶିକ୍ଷା ଆଳରେ ଆବାସିକ ସ୍କୁଲରେ ପିଲାଦିନୁ ସେମାନଙ୍କୁ ନେଇ ଛାଡ଼ି ଆସୁଛନ୍ତି । ଏହାର ଭୟାବହ କୁଫଳ ବହୁ ଜୀବନରେ ଘଟିଥିବା କଥା ମୁଁ ଜାଣେ ।

ମୋର ପ୍ରାୟ ଛଅବର୍ଷ ବେଳକୁ ମୋର ସାନଭାଇ ଦେବେନ୍ଦ୍ର ଜନ୍ମ ହେଲା । ତାର ଜନ୍ମକଥା ମୋର ବିଶେଷ ମନେ ନାହିଁ । ତଳ ଭାଇ ଜନ୍ମ ଯୋଗୁଁ ଈର୍ଷା ହେବାର ବୟସ ମୋର ବୋଧହୁଏ ପାର ହୋଇଯାଇଥିଲା । ତା'ଛଡ଼ା ବାପମାଆଙ୍କର ସ୍ନେହ ଏତେ ବେଶୀ ପାଇଥିଲି ଯେ ଅନ୍ୟ ଗୋଟିଏ ପିଲା ଜନ୍ମ ଯୋଗୁଁ ମୋ ପ୍ରତି ସେମାନଙ୍କର ସ୍ନେହ କମିଯିବାର ଆଶଙ୍କା ମୋର ବୋଧହୁଏ ନଥିଲା । ଏତେ ବକଟେ ପିଲାର ଆବିର୍ଭାବ ଘଟଣାକୁ ମୁଁ ବୋଧହୁଏ ଅବଜ୍ଞାର ସହିତ ଉପେକ୍ଷା କରିଥିଲି । ତେଣୁ ଏ ବିଷୟରେ ମୋର ବିଶେଷ କିଛି ମନେପଡୁନାହିଁ ।

■ ■ ■

ବିରାଟ ବହୁ ବଖରାର ଘର ବାଣ୍ଟ ବାଣ୍ଟ ହୋଇ ଆଠ-ଦଶ ଫୁଟିଆ ଦାଣ୍ଡି ବଖରାରେ ପରିଣତ ହୋଇଯାଇଥିଲା । ଆଧୁନିକ ସମାଜର ବ୍ୟକ୍ତି କେନ୍ଦ୍ରିକ ଭାଗବଣ୍ଟା ମାନସିକତାର ଏହା ଗୋଟିଏ ଜ୍ୱଳନ୍ତ ନିଦର୍ଶନ ।

ଗାଁ'ଦାଣ୍ଡରେ ବୁଲୁ ବୁଲୁ ହଠାତ୍ ନଜର ପଡ଼ିଲା ପଶ୍ଚିମ ଆକାଶ ଆଡ଼େ । ସେଠାରେ ସଂଧ୍ୟା ତାରାର ମୋଲାଏମ୍ ଆଲୋକ ଚକ ଚକ କରୁଥିଲା ଠିକ୍ ମୁଁ ଜନ୍ମ ହୋଇଥିବା ଘରର ଅଗଣା ଉପରେ । ମୋର ହଠାତ୍ ମନେପଡ଼ିଲା ଯେ ମୋତେ ଯେତେବେଳେ ଛଅବର୍ଷ ବୟସ ଆମ ଗାଁ'ରେ ବୋଉକୁ ଛାଡ଼ି ନାନୀମାନଙ୍କ ସାଙ୍ଗରେ ମୁଁ ସେଠାକୁ ଯାଇଥିଲି । ମାମୁଁଙ୍କ ପ୍ରଶସ୍ତ ଅଗଣାରେ ଗୋଟିଏ ଧାନ ବେଦୀ ଉପରେ ସେହି ସଂଧ୍ୟାରେ ନାନୀମାନଙ୍କ ସାଙ୍ଗରେ ମୁଁ ସଂଧ୍ୟାବେଳେ ଗପୁଥିଲୁ । ହଠାତ୍ କେଜାଣି କାହିଁକି ବୋଉକୁ ଛାଡ଼ି ଆସିଥିବା ଯୋଗୁ ମୋ'ଠାରେ ଗୋଟିଏ ବୁକୁଫଟା କୋହ ଉଠିଥିଲା- ଠିକ୍ ସେହିପରି ଗୋଟିଏ ଅସ୍ପଷ୍ଟ ଆଲୋଡ଼ନ ସେଠାରେ ସଂଧ୍ୟାତାରାଟିକୁ ଦେଖି ମୋଠାରେ ଦେଖା ଦେଇଥିଲା । କି ଅଦ୍ଭୁତ ! ଏହି ଅନୁଭୂତି ଏତେ ବର୍ଷ ପରେ ଜୀବନର ପରିଣତ ବୟସରେ ମଧ୍ୟ ସତୁରୀ ବର୍ଷ ତଳର ସେହି ପିଲାଦିନର ଆବେଗିକ ଆଲୋଡ଼ନ ମୋତେ ପୁଣି ସେହି ସମୟକୁ ନେଇଗଲା । ସଂଧ୍ୟା ତାରା ସହିତ ଏପରି ଭାବରେ ଜଡ଼ିତ ହୋଇ ରହିଥିବା ଘଟଣାଟି ପୁର୍ନଜୀବିତ ହେବା ନିଶ୍ଚିତ ଭାବରେ ବିସ୍ମୟକର ଅନୁଭୂତି । ସେଠାରେ ମୁଁ ବହୁ ସମୟ ଧରି ସେହି ସଂଧ୍ୟା ତାରାକୁ ଚାହିଁ ରହିଲି । ମୋ ଦେହରେ ଅପୂର୍ବ ପୁଲକ ସୃଷ୍ଟି ହେଲା । ଏଥିଯୋଗୁ କଅଣ ଜୀବନ ସାରା ସଂଧ୍ୟା ତାରା ପ୍ରତି ମୋର ଏପରି ଅଦମ୍ୟ ଆକର୍ଷଣ ? ବୋଉକୁ ଛାଡ଼ି ରହିଥିଲା ବେଳେ ଏହି ସଂଧ୍ୟା ତାରାର ଦୃଶ୍ୟ କଅଣ ମୋତେ ଏପରି ଭାବରେ ଆନ୍ଦୋଳିତ କରିଥିଲା ? କିଏ ଜାଣେ ମୋର ଜନ୍ମ ହୋଇଥିବା ଗାଆଁର ସେହି ଶେଷ ଘର ଅଗଣାରେ ମୋ ଜନ୍ମ ସମୟରେ ମଧ୍ୟ ସଂଧ୍ୟା ତାରା ଏହିପରି ଚକ୍ ଚକ୍ କରୁଥିଲା । ସେଥିପାଇଁ କଅଣ, ବାଲ୍ୟାବସ୍ଥାରେ ପ୍ରାର୍ଥନା କରିବାର ଅଭିଳାଷ ପ୍ରତି ସଂଧ୍ୟାରେ ଆକାଶକୁ ଚାହିଁ ଚାହିଁ ରହିବାରେ ଚରିତାର୍ଥ ହେଉଥିଲା- ତାର ପର ଯୌବନ କାଳର ପ୍ରଥମ ଭଲ ପାଇବାର ସ୍ୱପ୍ନ ଏହି ସଂଧ୍ୟା ତାରା ରାଜ୍ୟରେ ହିଁ ରୂପାୟିତ ହୋଇଥିଲା ? ଜୀବନଯାକ ଏହି ସଂଧ୍ୟା ତାରାହିଁ ମୋର ନିରୋଳା ମୁହୂର୍ତ୍ତମାନଙ୍କର ଚିରନ୍ତନ ସାଥୀ ହୋଇ ରହିଗଲା । ଜୀବନର ଅପରାହ୍ନରେ ଗୋଟିଏ ସଂଧ୍ୟା ମଧ୍ୟ ତାର ଦର୍ଶନ ଅଭାବରେ ଏହିପରି ଭାବରେ ବ୍ୟାଥାୟିତ ଅବ୍ୟକ୍ତ କ୍ରନ୍ଦନ ଜାଗିଉଠେ ।

ଅଦ୍ଭୁତ, ମନୁଷ୍ୟର ଏପ୍ରକାର ଅକଳନ ଐଶ୍ୱରିକ ବ୍ୟଥା— ଅଯୌକ୍ତିକ ମାନସିକ ଉଦ୍‌ବେଳନ । ଏହା ଯୁଗ ଯୁଗ ଧରି ରହସ୍ୟାବୃତ୍ତ ହୋଇ ହିଁ ରହିଯିବ ।

x x x x x x x x x

ବୋଉ ସାବନ ବର୍ଣ୍ଣର ସ୍ତ୍ରୀ ଲୋକ ହୋଇଥିବାରୁ ତା'ର ଚେହେରା ମୋର ସମ୍ପୂର୍ଣ୍ଣ ମନେ ନଥିଲେ ମଧ୍ୟ ସାବନ ବର୍ଣ୍ଣର ସ୍ତ୍ରୀମାନଙ୍କୁ ମତେ କାହିଁକି ବେଶୀ ଭଲ ଲାଗେ । ଏପରି ସ୍ତ୍ରୀମାନଙ୍କ ପ୍ରତି ସ୍ନେହ ସହାନୁଭୂତି ଅତୀତ ମାତୃ ସ୍ନେହର ଉଷ୍ଣତାକୁ— ମୋ ଠାରେ ଉଦ୍‌ଜୀବିତ କରେ ମୋତେ ଉନ୍ମାଦନା ଦିଏ । ଏ ପ୍ରକାର ଆବେଗ ଭିତରେ ସାର୍ଥକତା ଭରିଦିଏ । ବହୁ ସମ୍ବେଦନକୁ ସମଷ୍ଟୀଭୂତ କରେ... ଅସମ୍ପୂର୍ଣ୍ଣ ମୁହୂର୍ତ୍ତଗୁଡ଼ିକୁ ଗୋଟିଏ ଛନ୍ଦରେ

# ୪

## ଶୋକର ଛେଦକ

ବୟସ ସାତ । ଏ ସମୟର ଦୁଇଟି ସନ୍ଧ୍ୟା ଜୀବନ ସାରା ଭୁଲିବାର ନୁହେଁ...ବଡ଼ କରୁଣ ଓ ଯନ୍ତ୍ରଣାଦାୟକ ଏହି ସନ୍ଧ୍ୟା ଦୁଇଟି । ପ୍ରଥମ ସନ୍ଧ୍ୟା-ଶ୍ରାବଣ ମାସ କୃଷ୍ଣ ଅଷ୍ଟମୀ ଅପରାହ୍ଣ ପାଞ୍ଚଟା ବେଳେ ମୋତେ ଆମଘରୁ କଥା ବାଆଁରେଇ ବାହାରକୁ ନେଇଯିବାର ସ୍ପଷ୍ଟ ଧାରଣା ମୋର ଅଛି । ନନାଙ୍କୁ ଜ୍ୱର ହେବାର ସେଦିନ ତେରଦିନ । ମଝିରେ ବୈଦ୍ୟମାନେ ଆସି ଦେଖୁଥିଲେ । ଘରେ ସମସ୍ତେ ତାଙ୍କ ପାଖରେ ବସୁଥିଲେ । ମୁଁ ସବୁବେଳେ ତାଙ୍କ ପାଖରେ ରହୁଥିଲି । ଜ୍ୱର ତ ଗାଁ'ରେ ବହୁତ ହୁଏ-ବଡ଼ ସାଧାରଣ କଥା । କିନ୍ତୁ ଠିକ୍ ତେରଦିନ ଅପରାହ୍ଣରେ ମୋତେ ଯେତେବେଳେ ଘରୁ ଅନ୍ୟଆଡ଼େ ନେଇଗଲେ, ମୋ ମନଟା କେମିତି କେମିତି ଲାଗିଲା । ଆସନ୍ନ ପାରିବାରିକ ଦୁର୍ବିପାକ ବିଷୟରେ ସନ୍ଦେହ କରିବାର ବୟସ ମୋର ହୋଇ ନଥିଲା । ତା'ପରେ ସନ୍ଧ୍ୟାରେ ଘରକୁ ଫେରିଲା ବେଳକୁ ନନା ଆଉ ଘରେ ଶୋଇ ନାହାନ୍ତି । ଶୋଇବା ଯାଗା ଖାଲି ପଡ଼ିଛି । ଲୋକମାନେ ସମସ୍ତେ କାନ୍ଦୁଛନ୍ତି । ଲୋକବାକ ଦୌଡ଼ାଦୌଡ଼ି କରୁଛନ୍ତି । ଗାଁ'ଦାଣ୍ଡ ଶେଷ ଭାଗରେ ଗୋଟିଏ ନିଆଁ ହୁଳା ମୋତେ ଦେଖା ଯାଉଥିଲା । କିଛି ଅଶୁଭଙ୍କରୀ କରୁଣ ସ୍ୱର ଶୁଣା ଯାଉଥିଲା । କ୍ରମେ ସବୁ ଅଦୃଶ୍ୟ ହୋଇଗଲା । ନନା ଆଉ ଫେରିଲେ ନାହିଁ । ମୋର ଖାଲି ଏତିକି ମନେହେଲା, ମୋତେ ଔଷଧ ଖୋଇଦେବା ପାଇଁ ନନା ଆଉ ଆସିବେ ନାହିଁ– ସ୍କୁଲକୁ ତାଙ୍କ ସାଙ୍ଗରେ ଆଉ ଯିବି ନାହିଁ...ଝାଡ଼େଶ୍ୱରରେ ତାଙ୍କ ସାଙ୍ଗରେ ହବିଷ ଭାତ ଖାଇବାର ସୁଯୋଗ ଆଉ କେବେ ମିଳିବ ନାହିଁ...ନନା ବୋଲି ଆଉ କେବେ ଡାକି ପାରିବି ନାହିଁ... ନନାଙ୍କ ବିଷୟ ସବୁ ଶେଷ ହୋଇଗଲା । କାହିଁକି ହଠାତ୍ ଏହା ହେଲା ସେ ବିଷୟରେ ପ୍ରଶ୍ନ ପଚାରିବାର ସାହସ ବା ଚେତନା ମୋର ନଥିଲା । ସମସ୍ତେ କାନ୍ଦୁଥିଲେ; କିନ୍ତୁ ମୁଁ କାନ୍ଦୁନଥିଲି । କେବଳ ନିର୍ବେଦ, ନିଶ୍ଚଳ ଆଖିରେ କ୍ରନ୍ଦନଶୀଳ ଅନ୍ୟମାନଙ୍କୁ ଚାହିଁ ରହିଥିବାର ମୋର ମନେଅଛି । ନନା ଆଉ ଫେରିବେ ନାହିଁ ଜାଣି ସୁଦ୍ଧା ନଜାଣିଲା ପରି ରହୁଥିଲି ସତ, କିନ୍ତୁ ମୋ ପେଟ ଭିତରଟା ମଝିରେ ମଝିରେ ଆଉଣ୍ଠି ହୋଇଯାଉଥିବା କଥା ମୋର ମନେଅଛି ।

ପରେ ଶୁଣିଲି, ନନା ରାମଚଣ୍ଡୀଙ୍କ ପାଖରେ ପୂଜା ଅର୍ଚ୍ଚନା କଲାବେଳେ କୁଆଡ଼େ ମଝିରୁ ଖଣ୍ଡିଆ କରି ଝାଡ଼ା ଗଲେ । ସେଠାରେ ତାଙ୍କୁ ଗୋଟିଏ ଡାକ ଶୁଣାଗଲା । ରାମଚଣ୍ଡୀ ତାଙ୍କୁ ନେଇଗଲେ । ଅବଶ୍ୟ ଏ କାହାଣୀ ଗାଁ'ର ବୈଦ୍ୟରାଜ ଖାଡ଼ଙ୍ଗା ପ୍ରଚାର କଲେ । ତାଙ୍କ ଔଷଧର ଗୁଣ କାଟୁ ନ କରିବା ସମ୍ପର୍କରେ ଏହା ଗୋଟିଏ ବଳିଷ୍ଠ କାରଣ ନିଶ୍ଚୟ । ମୋର ରାମଚଣ୍ଡୀଙ୍କ ଉପରେ ରାଗ ହେଲା, କିନ୍ତୁ ଚଣ୍ଡୀମାନେ ଏତେ ପ୍ରତାପୀ ଯେ ରାଗ ହେବା କଥା ପ୍ରକାଶ କରିବା ଭୟଙ୍କର ବିପଦ । ତେଣୁ ଭୟ ମୋର ରାଗକୁ ପ୍ରଶମିତ କରିଦେଉଥିଲା । ମୁଁ ନିର୍ବେଦ ଅବସ୍ଥାରେ ଖେଳୁଥାଏ, ବୁଲୁଥାଏ କିମ୍ୱା ଆମ ଘର ଆଗରେ ଥିବା ଗୋଟିଏ ବଡ଼ ସଜନା ଗଛକୁ ଚାହିଁ ବସିଥାଏ– କିନ୍ତୁ କାନ୍ଦୁ ନଥାଏ । ପିଲାଦିନେ ମୁଁ ଯାହା ପାଇଁ କାନ୍ଦେ ତାହା ମିଳିଯାଏ । ଏବେ ତ ଯେତେ କାନ୍ଦିଲେ ମଧ ନନା ଆଉ ମିଳିବେ ନାହିଁ । ତେଣୁ ବୋଧହୁଏ କାନ୍ଦୁ ନଥିଲି ।

ତାପରେ ସେହି ବର୍ଷ ପ୍ରାୟ ତିନିମାସ ପରେ କାର୍ତ୍ତିକ ପୂର୍ଣ୍ଣିମା ବାସି ଛାଡ଼ଖାଇ ଦିନ ସେହିପରି ଆଉ ଏକ କରୁଣ ସନ୍ଧ୍ୟାରେ ବୋଉ ଆଉ କଥା କହିଲା ନାହିଁ । ତା'ର ବହୁଦିନ ଧରି ଚାଲିଥିବା ବାଉଳାଚାଉଳା ବନ୍ଦ ହୋଇଗଲା । ମୁଁ ପାଖରେ ଥାଏ । ଦଶ ଏଗାର ବର୍ଷର ମୋର ଉପର ଭଉଣୀ ଓ ବୁଢ଼ୀମା ପାଖରେ ଥାନ୍ତି । କେତେ ବୈଦ୍ୟ ଆସୁଥିଲେ । କିନ୍ତୁ କିଛି ଔଷଧ କାଟୁ କଲାନାହିଁ । ଜର ହେବାର ସେହିପରି ତେରଦିନ ପରେ ସେ ନନାଙ୍କୁ ଝୁରି ଝୁରି ଆଖି ବୁଜିଲା । କାର୍ତ୍ତିକ ମାସର ଶେଷ ତେରଦିନ ଜର ଅବସ୍ଥାରେ ମୁଁ ଆଉ ସାନନାନୀବୋଉ ପାଖରେ ଯୋଡ଼ିଯୋଡ଼ି ହୋଇ ବସିଥାଉ । ସନ୍ଧ୍ୟା ପରେ ବୋଉ ବାଉଳି ହୁଏ । ନନାଙ୍କୁ ଆଗରେ ଦେଖୁଛି ବୋଲି କହେ । ତାଙ୍କ ସାଙ୍ଗରେ ଅନର୍ଗଳ ଭାବରେ କଥାବାର୍ତ୍ତା କରେ ।

''ତୁମେ ମତେ ନେଇଯାଅ, ମତେ ବଡ଼ ଖରାପ ଲାଗୁଛି । ହଁ, ଦେବକୁ (ମୋ ସାନଭାଇ) ଅନ୍ୟମାନେ ରଖିନେବେ ଯେ । ଏତେ ଟିକେଟେ ପିଲା ସେ କଣ ବୁଝିବ ? ହଁ ମୁଁ ଚାଲିଯିବି, ମତେ ନେଇଯାଅ । ଏଁ ! ତୁମେ ଚାଲି ଯାଉଛ କାହିଁକି ? ହଁ ମତେ ନେବ ଯେ କାର୍ତ୍ତିକ ମାସଟା ସରିଯାଉ, ଛାଡ଼ଖାଇ ଦିନ ନେଇ ଯିବ । ମୁଁ କାର୍ତ୍ତିକ ହବିଷଟା ପୂରା କରି ଦେଇଥିବି ।''

ଇତ୍ୟାଦି ଅନର୍ଗଳ ପ୍ରଳାପ ଚାଲିଥାଏ ସନ୍ଧ୍ୟା ପରେ ସନ୍ଧ୍ୟା । ଏ ପ୍ରକାର ବାଉଳି ଚାଉଳି ଶୁଣିଶୁଣି ମୁଁ ଓ ନାନୀ ଭୟ, ଉଦ୍‌ବେଗ ଓ ନିଃସହାୟ ଅବସ୍ଥାରେ ପରସ୍ପରକୁ ଜାବୁଡ଼ି ଧରି ଡିବିରର ମିଞ୍ଜି ମିଞ୍ଜି ଆଲୁଅରେ ବସିଥାଉ । ବୁଢ଼ୀମା ହବିଷ ରାନ୍ଧୁଥାଏ । ଘରେ ଆଉ କେହି କେହି ନଥାନ୍ତି । ବୁଢ଼ୀମାର ଅସହାୟତା, ବୋଉର ମରଣ ଶଯ୍ୟାର ବାଚାଳତା ମୋତେ ବେଶୀ ବେଶୀ ଭୟ ଆଶଙ୍କା ଓ ଦୁଃଖରେ ଅଭିଭୂତ କରି ପକାଉଥିଲା । ଏ ପ୍ରକାର ଭୟାବହ ବାତାବରଣରେ ପିଲାଙ୍କ ମନରେ କି କରୁଣ ଓ ବିଷାଦର ଅନୁଭୂତି ଜୀବନସାରା ଘାରୁ ନଥିବ, ସେ କଥା କହିବା ନିଷ୍ପ୍ରୟୋଜନ ।

ଠିକ୍ ଛାଡ଼ଖାଇ ଦିନ ସେହିପରି ଏକ କରୁଣ ସନ୍ଧ୍ୟାରେ ବୋଉ ଚାଲିଗଲା । ସମସ୍ତେ କହିଲେ, ନନା କୁଆଡ଼େ ଆସିଥିଲେ ବୋଉକୁ ନେବାକୁ ଛାଡ଼ଖାଇ ଦିନ । ତା'ପରଦିନଠାରୁ କୁଆଡ଼େ ରାତିରେ ତାଙ୍କର ଆଉ ଛାଇ ଦେଖାଗଲା ନାହିଁ । ପଡ଼ିଶାଘର ଲୋକେ କହିଲେ ।

ଦୁଇଟିଯାକ ସନ୍ଧ୍ୟା ଏକାପରି ଥିଲା । ଅଧା ଅଧା ମେଘ ଆକାଶରେ ଥାଏ । ସୂର୍ଯ୍ୟ ବୁଡ଼ି ଆସୁଥିବା ବେଳର ଅତି କରୁଣ ଓ ନରମ ଡାହାଣିଆ ଖରା ପଡ଼ିଥାଏ । ପଶ୍ଚିମ ଦିଗନ୍ତରେ ବହୁ ଚିତ୍ର ବିଚିତ୍ର ଗାଢ଼ରଙ୍ଗର ମେଘ ଭିତରେ ସୂର୍ଯ୍ୟ ଅସ୍ତ ହେଉଥାଏ । ସେହିପରି ରଙ୍ଗିନ୍ ମେଘ ସୂର୍ଯ୍ୟାସ୍ତ ଦେଖିଲେ ଆଜି ପର୍ଯ୍ୟନ୍ତ ମୋ ମନରେ ଗୋଟିଏ ଅନିର୍ଦ୍ଦିଷ୍ଟ ବିଷଣ୍ଣତା ଓ ନିଃସହାୟତା ଆସିଯାଏ । ଏହି ଦୁଇଟି କରୁଣ ସନ୍ଧ୍ୟା ଜୀବନର ଦୁଇଟି ବିଷାଦଭରା ଗୁରୁତ୍ୱପୂର୍ଣ୍ଣ ମାଇଲଖୁଣ୍ଟି । ସମୟର ପ୍ରତିଲୋମ ସ୍ରୋତରେ ଭାସିଗଲା ବେଳେ ସେଠାରେ ନିଶ୍ଚିତ ଭାବରେ ଅଟକି ଯିବାକୁ ହୁଏ ।

ନନା ମରିବାର କିଛିଦିନ ପରେ ତାଙ୍କର ଗୋଟିଏ ବାକ୍ସ ସଫା କରୁ କରୁ ସଂସ୍କୃତ ଓ ଓଡ଼ିଆରେ ଲେଖା ହୋଇଥିବା କେତୋଟି ପାଣ୍ଡୁଲିପି ଏବଂ ତା ଭିତରେ ଥିବା ଗୋଟିଏ ପାଞ୍ଚଟଙ୍କିଆ ନୋଟ୍ ମିଳିଥିଲା । ବୋଉ ପାଖରେ ବସିଥିଲା । କହିଲା–

"ପୁଅରେ, ଏହି ପାଞ୍ଚଟଙ୍କିଆ ନୋଟ୍‌ଟି ମତେ ଦେ । ମୁଁ ଥରେ ପୁରୀ ଯାଇ ଠାକୁର ଦର୍ଶନ କରି ଆସିବି । ନନା ତ ମୋତେ ନେଇପାରିଲେ ନାହିଁ, ମୁଁ କ'ଣ ଥରେ ବି ପୁରୀ ଯାଇପାରିବି ନାହିଁ ? ତୁ ଏକଥା କାହାକୁ କହିବୁ ନାହିଁ ।"

ବୋଉ ମଲା ପରେ ମୁଁ ସେହି ବାକ୍ସରୁ ପାଞ୍ଚଟଙ୍କାର ନୋଟ୍‌ଟି ବାହାର କରି ବୁଢ଼ୀମାକୁ ଦେଲି । ବୋଉର ପୁରୀ ଦେଖା ହୋଇପାରିଲା ନାହିଁ । ଦେଶ ବିଦେଶ ବୁଲିଲା ବେଳେ ମଝିରେ ମଝିରେ ବୋଉର ଏହି କରୁଣ ଆକାଂକ୍ଷାଟି ମନେପଡ଼ିଯାଏ ।

ନନା ବୋଉଙ୍କର ଶ୍ରାଦ୍ଧ ଭାଇନା ପ୍ରତିବର୍ଷ କରନ୍ତି । ମୁଁ ସୁବିଧା ଅନୁସାରେ ଶ୍ରାଦ୍ଧ ଦିବସ ଦିନ ତାଙ୍କ ଘରକୁ ଯାଏ । ମୁଁ ନିଜେ ଶ୍ରାଦ୍ଧରେ ବିଶ୍ୱାସ କରେ ନାହିଁ, କିନ୍ତୁ ସେମାନଙ୍କର ମୃତ୍ୟୁ ବାର୍ଷିକୀ ଦିନ ସେମାନଙ୍କର ସ୍ନେହ ମମତା ବିଷୟରେ କିଛି ସମୟ ଭାବେ । ଏ ପ୍ରକାର ଅନାବିଳ ସ୍ନେହ ମୁଁ ବାପ ହିସାବରେ କିପରି ମୋ ପିଲାମାନଙ୍କୁ ଦେଇପାରିବି ସେ ବିଷୟରେ ଚିନ୍ତା କଲେ ପ୍ରେରଣା ପାଏ । ସଂକଳ୍ପ- ଦୃଢ଼ୀଭୂତ ହୁଏ । ବାପମାଆଙ୍କର ଅନୁକରଣୀୟ ଅନୁଚ୍ଛାୟା ଏହିପରି ଭାବରେ ପିଲାମାନଙ୍କଠାରେ ଦିଗ୍‌ଦର୍ଶନ ରୂପେ ରୂପାୟିତ ହୁଏ । ଅନେକ ସମୟରେ ଅଜ୍ଞାତରେ ମଧ ମନୁଷ୍ୟର ମନ ଏପରି ଭାବରେ ସଂଗଠିତ ହୋଇଯାଏ ।

ବାପମା ଓ ପିଲାଙ୍କ ସମ୍ପର୍କରେ ମୋ ମନରେ ଗୋଟିଏ ଅଦ୍ଭୁତ ଧରଣର ସ୍ଥାୟୀ ଭାବୋଚ୍ଛ୍ୱାସ ରହିଯାଇଛି । ପିଲାଙ୍କର ଦୁଃଖ ଦେଖିଲେ, ସେମାନଙ୍କ ଆଖିରେ ଲୁହ ଦେଖିଲେ ମୋର ମନ ଦୁଃଖରେ ଉତ୍ପୀଡ଼ିତ ହୁଏ । ମୋତେ କାନ୍ଦ ଲାଗେ । ସେଥିଯୋଗୁଁ ମୋ ପିଲାଙ୍କୁ ମୁଁ କେବେ ହେଲେ ମାରିନାହିଁ କି କଡ଼ାକଥା କହି ପାରିନାହିଁ । ଖାଲି ସେତିକି ନୁହେଁ, ସିନେମା ଥିଏଟର୍‌ରେ କିମ୍ବା ବହିରେ କୌଣସି ପିଲାର ଦୁଃଖ ଦେଖିଲେ ଆଜିଯାଏ ମୋ ଆଖିରେ ଲୁହ ଦେଖାଦିଏ । ଯେତେ ଚେଷ୍ଟା କଲେ ବି ଲୁହକୁ ଅଟକାଇ ହୁଏ ନାହିଁ । ବାପମାଆଙ୍କ ସ୍ନେହ ବ୍ୟାହତ ହେଲେ କିମ୍ବା ସେମାନଙ୍କୁ ଅନ୍ୟ କେହି ମାରିଲେ ମୁଁ ଧୈର୍ଯ୍ୟ ଧରି ରହିପାରେ ନାହିଁ । ବାପାମାଆଙ୍କଠାରୁ ବିଚ୍ଛିନ୍ନ ପିଲାମାନଙ୍କର ପୁଣି ବାପାମାଙ୍କ ସହିତ ମିଳନ ହେଲେ ଆନନ୍ଦରେ ମୋ ଆଖି ଛଳଛଳ ହୋଇଯାଏ । ମୋ ପୁଅ, ଝିଅ, ନାତି, ନାତୁଣୀ, ବୋହୂ ଓ ଜୋଇଁମାନେ ଘରୁ ଚାଲିଗଲା ବେଳେ ମୋ ମନ ନରମିଯାଏ । ଆଖିରେ

ଲୁହ ଭରିଯାଏ । ମୋ ଭିତରେ ମୋ ପିଲାଦିନର ସେଇ କରୁଣ ଓ ନିଃସହାୟ ପିଲାଟିର ଛବି ବୋଧହୁଏ ମୋତେ ଏପରି ଭାବରେ ଦୁର୍ବଳ କରିପକାଏ । ଏହି ପ୍ରତିଚ୍ଛାୟାଟି ଯେପରି ମୋର ଭବିଷ୍ୟତ ଭାବାବେଗାତ୍ମକ ବ୍ୟକ୍ତିତ୍ୱର ଦିଗ୍‌ଦର୍ଶକ ହୋଇ ରହିଆସିଛି ।

ଏହି ଦୁଇଟି ସନ୍ଧ୍ୟା ପରେ ମୁଁ ହୋଇଗଲି ଗୋଟିଏ କକ୍ଷଚ୍ୟୁତ, ଅନିୟନ୍ତ୍ରିତ, ଅବହେଳିତ ବାପ ମା' ହୀନ ଚକର ଛେଉଣ୍ଡ । ମୋ ସାନଭାଇର ଅନୁଭୂତିର ବାହାରେ ଏହାସବୁ ଘଟିଥିଲା । ତା ପରେ ପରେ ମାମୁଁ ମାଇଁ ତାକୁ ତାଙ୍କ ଘରକୁ ନେଇଗଲେ । ସେମାନଙ୍କର ପିଲାପିଲି ନଥିଲେ । ତାକୁ ପୁଅ କରିବା ଆଶାରେ ସେମାନେ ତାକୁ ନେଲେ ଏବଂ ସେ ବହୁତ ଭଲରେ ରହିଲା । ମୋ ଉପର ନାନୀ ପାଖରେ ଥାଏ । ତା'ର ବାହାଘର ହୋଇ ନଥାଏ । ବଡ଼ ବିଧବା ନାନୀ ପାଖରେ ଥାଆନ୍ତି । ଆଉ ଜଣେ ନାନୀ ଶାଶୁଘରେ ମରିଯାଇଥିଲେ । ମୋର ତାଙ୍କ ବିଷୟରେ କିଛି ମନେନାହିଁ । ଆଉ ଜଣେ ଭାଇନା ପୋଷ୍ୟପୁତ୍ର ହୋଇ ପାରିକୁଦରେ ଯାଇ ରହିଲେ । ବଡ଼ଭାଇନା ଉଦୟନାଥ ରଥ ଖୋର୍ଦ୍ଧାରେ ମାଟ୍ରିକ୍ ଶ୍ରେଣୀରେ ପଢୁଥାନ୍ତି । ଦୁଇଥର ଗାଁ'କୁ ଆସିଲେ ଶୁଦ୍ଧି ହେବା ପାଇଁ । ନନା ବୋଉ ମରିବା ବେଳେ ସେ ପାଖରେ ନଥିଲେ । କାରଣ ନନା ବୋଉଙ୍କର କଡ଼ା ତାଗିଦା ଥିଲା ଯେ ତାଙ୍କର ପଢ଼ାପଢ଼ି ନଷ୍ଟ ହେବ ତେଣୁ ତାଙ୍କୁ ସେମାନଙ୍କର ଦେହ ଖରାପ କଥା ଜଣାଇବା ମନା । ବଡ଼ ଭାଇନାଙ୍କ ଜୀବନରେ ଏ ଦୁଇଟିଯାକ ଘଟଣା ଅତ୍ୟନ୍ତ ଦୁଃଖଦାୟକ । ମାଟ୍ରିକ୍ ଶେଷ ବର୍ଷରେ ଏହା ଘଟିବା ଦାରୁଣ ଅଭିଶାପ ପରି ମନେ ହେଉଥିବ । ତଥାପି ସେ ମାଟ୍ରିକ୍ ପରୀକ୍ଷାରେ ବିହାର-ଓଡ଼ିଶାରେ ସର୍ବପ୍ରଥମ ହୋଇ ବୃତ୍ତି ପାଇଲେ । ନନାଙ୍କର ସମସ୍ତ ସଂପତ୍ତି ଓ ଜମିବାଡ଼ିର ପୁଞ୍ଜୀଭୂତ ପ୍ରତୀକ ଭାଇନା ଥିଲେ । ସେ ମଧ୍ୟ ଜୀବନଯାକ ଗୋଟିଏ ବିରାଟ ଉତ୍ପାଦନଶୀଳ ଜମିଖଣ୍ଡ ପରି ଆମମାନଙ୍କୁ ଓ ଅନ୍ୟାନ୍ୟ ବହୁ ବନ୍ଧୁବାନ୍ଧବମାନଙ୍କୁ ଜୀବନ ପଥରେ ଆଗେଇ ନେଇପାରିଛନ୍ତି ।

ସାନ ନାନୀ ଶାଶୁଘରକୁ ଗଲାପରେ ବଡ଼ ନାନୀ ତାକୁ ଚଳାଇବା ପାଇଁ ବହୁଦିନ ଯାଇ ତାଙ୍କ ଘରେ ରହନ୍ତି । ଘରେ ରହିଲୁ କେବଳ ମୁଁ ଓ ବୁଢ଼ୀମା । ବୁଢ଼ୀମା ମୋର, ବୋଉ, ନନା, ପରିଚାଳିକା ସବୁକିଛି ହୋଇ ରହିଲେ । ତାଙ୍କର ସ୍ୱାର୍ଥତ୍ୟାଗ, ପାରଙ୍ଗମତା, ଅଦ୍ୟମ ପରିଶ୍ରମ ଓ ଅକାତର ସ୍ନେହ ଆମମାନଙ୍କୁ କିପରି ଭାବରେ ସାହାଯ୍ୟ କରିଛି— ତାହା ଅନୁଭବୀ ଛଡ଼ା ଅନ୍ୟ କାହା ପକ୍ଷରେ କଳ୍ପନା କରିପାରିବା ସମ୍ଭବ ନୁହେଁ । ଏହି ନିରକ୍ଷରା, ବାଲ୍ୟ ବିଧବା, କଳିଷଠା ଷାଠିଏ ବର୍ଷର ବୁଢ଼ୀଙ୍କର ସଂଗ୍ରାମଶୀଳ ସାହସ, ଦମ୍ଭ, ଅପରାଜେୟ ଶକ୍ତି ଆମଙ୍କୁ ସମସ୍ତ ପ୍ରକାର ନିରାପତ୍ତା ଯୋଗାଇବାରେ ସମର୍ଥ ହୋଇଥିଲା ।

ଗାଁ' ମାଷ୍ଟ୍ରଙ୍କର ଗେହ୍ଲା ଦୁହ୍ଲା ପୁଅ ଯେ କି ଗାଁ' ପିଲା ଓ ବଡ଼ମାନଙ୍କ ଭିତରେ ଗୋଟିଏ ଉଚ୍ଚ ଆସନର ଅଧିକାରୀ ହୋଇ ପ୍ରଜାପତି ପରି ମନ ଆନନ୍ଦରେ ବିଚରଣ କରୁଥିଲା, ହଠାତ୍ ସେ ହୋଇଗଲା ଗରିବ ଚକର ଛେଉଣ୍ଡ । ଏହି ସମୟରେ ହିଁ ଚକର ଛେଉଣ୍ଡ ଶବ୍ଦଟି ମୁଁ ଶିଖିଥିଲି ମୋର ଭୀଷଣ ମାନସିକ ଯନ୍ତ୍ରଣା ଭିତର ଦେଇ । ଥରେ ମୋର ବଡ଼ ନାନୀର କେତେଜଣ ବିଧବା ସ୍ତ୍ରୀ ସାଙ୍ଗ ଭାଗବତ ପଢୁଥିଲେ । ମୁଁ ସେଠାକୁ ଯାଇ ବହୁତ ଗୋଳମାଳ କଲି । ପିଲାଲୋକ ନିଜକୁ ଅବହେଳିତ ମନେକଲେ ଅନ୍ୟର

ଦୃଷ୍ଟି ଆକର୍ଷଣ କରିବା ପାଇଁ ବାରମ୍ବାର ଯେପରି ଗୋଳମାଳ କରେ । ସେମାନଙ୍କ ଭିତରୁ ଜଣେ ମୋତେ ଲକ୍ଷ୍ୟ କରି କହିଥିଲେ-

"ଚକର ଛେଉଣ୍ଡକୁ ନ କର ଦୟା । ଚକର ଛେଉଣ୍ଡର ଅନକୁଟି ମାୟା ।" ଏତକ ଶୁଣିଲା ପରେ ମୁଁ ସେ ସ୍ଥାନ ଛାଡ଼ି ଚାଲି ଯାଇଥିଲି । ଗୋଟିଏ ବାରଣ୍ଡା କୋଣରେ ଏକୁଟିଆ ବସି ବସି ବହୁତ ସମୟ କାନ୍ଦିଲି... କୋହ ପରେ କୋହ । ଆଖିରୁ ଅଜସ୍ର ଲୁହ ବହିଗଲା । ନନା ବୋଉଙ୍କ କଥା ଖାଲି ମନେପଡ଼ିଲା । ତାପରେ ଗାଁ' ବାହାରେ ଗୋଟିଏ ଆମ୍ବଗଛ ମୂଳେ ବସି ବଡ଼ପାଟି କରି 'ବୋଉ' 'ବୋଉ' ବୋଲି ଅନେକ ସମୟ କାନ୍ଦିଲି । ଗୋଧୂଳି ସମୟର ଘର ବାହୁଡ଼ା ପକ୍ଷୀଙ୍କର କାକଳି, ଗାଈଗୋରୁଙ୍କର ହମ୍ବାଳିଆ ରଡ଼ି ମୋତେ ଆହୁରି ବେଶୀ ବିଷାଦଗ୍ରସ୍ତ କରିଦେଲା । ସମସ୍ତେ ସେମାନଙ୍କର ନନା ବୋଉଙ୍କ ପାଖକୁ ଫେରୁଛନ୍ତି  ମୋର କିନ୍ତୁ କେହି ନାହାନ୍ତି ମୁଁ ଏକା ବସି କାନ୍ଦୁଛି । ଅନେକ ସମୟ ପରେ ସନ୍ଧ୍ୟାବେଳକୁ ଘରକୁ ଫେରିଲି । ସେଦିନ ଛୋଟଛୋଟ କଥାରେ କନ୍ଦାକଟା କରି ନଖାଇ ଶୋଇ ପଡ଼ିଥିଲି ।

ମୋର ସବୁବେଳେ ମନେହେଉଥିଲା ସମସ୍ତେ ଯେପରି ମୋତେ ଦୟା ଆଉ ଘୃଣା ଆଖିରେ ଦେଖୁଛନ୍ତି ଯେ ମୁଁ ଚକର ଛେଉଣ୍ଡ । ଚକର ଛେଉଣ୍ଡ ହୋଇଯିବା ଯେପରି ସ୍ୱୋପାର୍ଜିତ ଦୋଷ ! ସେଥିପାଇଁ ମୁଁ ଦୟା ଆଉ ଅବହେଳାର ପାତ୍ର । ଏ କଥାଟା ବାରମ୍ବାର ମୋତେ ଯେପରି ସମସ୍ତେ ମନେପକାଇ ଦେଉଥାନ୍ତି । ଘରକୁ କେହି ବୁଲି ଆସିଲେ ମୋତେ ଆହା କରନ୍ତି । ବୁଢ଼ୀମା ହଜାର ଥର କହିବାର ଶୁଣିଛି ଯେ—

'ବାବୁ ଗଲା ଅଧା ଚାନ୍ଦେ, ମାଆ ଗଲା ପୂରା ଚାନ୍ଦେ ।' ଆଉ କ'ଣ ସୁଖ ଅଛି ଏମାନଙ୍କର ?

ଏପରି କହିବାରେ ସେ ନିଜକୁ ବୋଧହୁଏ ସାନ୍ତ୍ୱନା ଦେଇ ଚାଲିଥିଲା । କିନ୍ତୁ ମୋ କଅଁଳ ମନରେ ଦୁଃଖର ଭାର ବଢ଼ି ବଢ଼ି ଚାଲିଥିଲା ।

ଗାଁ' ଲୋକେ ମୋତେ ପ୍ରଥମେ ପ୍ରଥମେ ଦୟା କଲେ । ପରେ ପରେ ଉପେକ୍ଷା କଲେ । ଦୁଷ୍ଟାମି ଦେଖିଲେ ବିରକ୍ତ ମଧ୍ୟ ହେଲେ । ସାଙ୍ଗସାଥୀ ପିଲାମାନେ ମୋତେ ପାସଙ୍ଗରେ ପକାଉଲେ ନାହିଁ । ମୋର ନିଜର ସ୍ଥିତି ମୋ ନନାଙ୍କ ଉପରେ ନିର୍ଭର କରୁଥିଲା । ତାପରେ ମୋର ନିଜସ୍ୱ ଆସିଲା କୁଆଡୁ ? ନିଜକୁ ପ୍ରତିଷ୍ଠା କରିବା ପାଇଁ ସମୟ ଦରକାର । ନିର୍ଦ୍ଦିଷ୍ଟ ସାମର୍ଥ୍ୟ ଓ ପାରଙ୍ଗମତା ଦରକାର । ସେମାନଙ୍କର ସାମର୍ଥ୍ୟ ତୁଳନାରେ ମୋର ସେପରି କିଛି ନଥିଲା । ମୁଁ ଖୁବ୍‌ଶୀଘ୍ର ଦୌଡ଼ି ପାରୁନଥିଲି । ମୋତେ ଘରେ ଆକଟରେ ରଖା ହୋଇଥାଏ କାଳେ ପଡ଼ିଯିବି ବୋଲି । ସେମାନେ ଗଛରେ ଚଢ଼ିଯାନ୍ତି, ମୁଁ ତଳେ ଠିଆ ହୋଇଥାଏ । ସେମାନେ ନିଜ ନିଜ ଗାଈ ପାଇଁ ବଡ଼ ଗଦାଏ ଘାସ କାଟି ପାରୁଥିବା ବେଳେ ମୁଁ ଖଣ୍ଡି ଖଣ୍ଡିଆ ଘାସ ମାତ୍ର ଗାଣ୍ଡୁଆଟିଏ କାଟେ । କାରଣ ମୁଁ ବିଡ଼ା ବାନ୍ଧିପାରେ ନାହିଁ । ସେମାନେ ବଡ଼ ବଡ଼ କାଠ ଗୋଛା କୃଷ୍ଣଗିରି ପାହାଡ଼ ଉପରୁ ଧରି ତଳକୁ ଖସି ଆସୁଥିଲା ବେଳେ ମୁଁ ଅଳ୍ପ କିଛି କାଠ ଧରି ମଧ୍ୟ ଓହ୍ଲାଇ ପାରୁ ନଥିଲି । ଫରେଷ୍ଟ ଗାର୍ଡ଼କୁ ଦେଖିଲେ ସେମାନେ କାଠ ଫୋପାଡ଼ି ଦୌଡ଼ି ପଳାନ୍ତି, ମୁଁ କିନ୍ତୁ ଧରା ପଡ଼ିଯାଏ । ସେମାନେ ନଈନାଳରେ ଶେଉଳ ଗଡ଼ିଶା ମାଛ ଫଟାଫଟ ଧରି ନିଅନ୍ତି, ମୋ ହାତରୁ ସବୁବେଳେ

ସେଗୁଡ଼ିକ ଖାଲି ଖସି ପଳାନ୍ତି । ମୁଁ କେବଳ ସେମାନଙ୍କ ପରି ପାଣିରେ ପହଁରି କଇଁଫୁଲ ତୋଳିପାରେ ।

ଥରେ କୃଷ୍ଣଗିରି ପାହାଡ଼ର ବହୁତ ଉପରକୁ ସାଙ୍ଗସାଥୀଙ୍କ ସହିତ ଚଢ଼ିଥିଲି କାଠ ଯୋଗାଡ଼ କରିବା ପାଇଁ । ସମସ୍ତେ କାଠ ଗୋଛା ଧରି ତଳକୁ ଖସିଲେ, କିନ୍ତୁ ମୁଁ କିଛି ବାଟ ଆସି ଏପରି କ୍ଲାନ୍ତ ହୋଇପଡ଼ିଲି ଯେ ବୋଝ ଧରି ତଳକୁ ଆଉ ଖସି ପାରିଲି ନାହିଁ । କାଠ ଗୋଛାକୁ ତଳେ ପକାଇଦେଇ ଗୋଟିଏ ବଡ଼ ଝଙ୍କାଳିଆ ବରଗଛ ମୂଳେ ଥକ୍କା ମାରି ବସିପଡ଼ିଲି । ବୈଶାଖ ମାସ ଖରାରେ ଦେହ ପୋଡ଼ି ଯାଉଥାଏ । ଚାରିଆଡ଼େ ଝଞ୍ଜାପବନର ସୁଅ ଛୁଟୁଛି । ମୋର ଆଉ ଚାଲିବାର ଶକ୍ତି ରହିଲା ନାହିଁ ।

ବରଗଛ ମୂଳେ ଝଡ଼ିପଡ଼ିଥିବା ବର ପତ୍ରର ଗଦା ଉପରେ ମୁଁ ଶୋଇ ପଡ଼ିଲି- ନରମ ପତ୍ର ଉପରେ ଆରାମ ଲାଗିଲା- ଚାରିଆଡ଼େ ନାନା ଧରଣର ପକ୍ଷୀମାନଙ୍କର ବିଚିତ୍ର କାକଳି ମୋତେ କାହିଁକି ଗଭୀର ଭାବରେ ପ୍ରଭାବିତ କରିଥିଲା- ଜଙ୍ଗଲର ଏହି ନିଭୃତ ସ୍ଥାନଟିରେ ମୁଁ ନିଘୋଡ଼ ନିଦରେ ଶୋଇପଡ଼ିଲି ।

ଅନେକ ସମୟ ଏପରି ଗଲା । ଅପରାହ୍ଣ ବେଳକୁ ମୋର ଜଣେ ସାଙ୍ଗ ତଳୁ ମୋତେ ଡାକି ଡାକି ସେଠାରେ ଆସି ପହଞ୍ଚିଲା । ବୁଢ଼ୀମା ମୋତେ ବହୁ ସମୟ ଧରି ନ ଦେଖି ବଡ଼ ବିକଳରେ ଘରଘର ବୁଲି ଅନୁରୋଧ କରୁଥିଲେ ମୋତେ ଖୋଜି ଆଣିବା ପାଇଁ । ତାଙ୍କର ଭୟ ଥିଲା କାଳେ ବାଘ ମୋତେ ଧରି ନେଇଛି- ତାଙ୍କର ଅବସ୍ଥା କି ଦୟନୀୟ ହୋଇଥିବ, ତାହା ସହଜରେ ଅନୁମେୟ । ଯେଉଁମାନେ ମୋ ସାଙ୍ଗରେ କାଠ ପାଇଁ ଯାଇଥିଲେ ସମସ୍ତେ ତ ଜଙ୍ଗଲ ଅଧିକାରୀ ଭୟରେ ତରତରରେ ଚାଲିଆସିଥିଲେ-ମୋ ଆଡ଼େ ଚାହିଁବାକୁ ସେମାନଙ୍କର ତର ନଥିଲା । ଯାହାହେଉ, ମୁଁ ତା ସହିତ ନିରାପଦରେ ଫେରିଲି । କିନ୍ତୁ ସେହି ଘନ ଜଙ୍ଗଲର ସେହି ନିଭୃତ ସ୍ଥାନର ପ୍ରାଣ ମତାଣିଆ ପ୍ରଶାନ୍ତିର ସ୍ମୃତି ବର୍ତ୍ତମାନ ସୁଦ୍ଧା ମୋ ମନରେ ଗୋଟିଏ ଅଦ୍ଭୁତ ପ୍ରକାରର ମନୋରମ ଅନୁଭୂତିର ଆଭାସ ଦିଏ । ସେତେବେଳେ ବାଘ ଭୟ କିପରି ମୋ ମନରେ ଆସିନଥିଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କୃଷ୍ଣଗିରି ଜଙ୍ଗଲରେ ସେ ସମୟରେ ବହୁତ ବାଘ, ଭାଲୁ ଦେଖା ଯାଉଥିଲେ ।

ପ୍ରତିମାସରେ ଦିନେ ଦୁଇଦିନ ଗାଁ'ର ଗାଈ ଚରାଉଥିବା ଗଉଡ଼ ସାଙ୍ଗରେ ଗାଈ ରଖିଥିବା ଘରର ଜଣେ ଜଣେ ଲୋକ ଯିବା ନିୟମ । ମୁଁ ଆମ ଗାଈ ପାଇଁ ଗଉଡ଼ ସାଙ୍ଗରେ ଯାଏ । କିନ୍ତୁ କାହିଁକି କେଜାଣି ଗାଈମାନେ ମୋକଥା ମାନନ୍ତି ନାହିଁ । ଗଉଡ଼ ଡାକିଦେଲେ ସେମାନେ ଫେରିଆସନ୍ତି, ମୁଁ ବାଡ଼ିରେ ବାଡ଼ଉଥିଲେ ମଧ୍ୟ ସେମାନେ ସେହିପରି ଭାବରେ ଅନ୍ୟ ବିଲର ଫସଲ ଖାଉଥାନ୍ତି । ଥରେ ଦୁର୍ଯୋଗକୁ ମୋ ଗୋଠରେ ଯିବାର ପାଳି ପଡ଼ିଥିବା ଦିନ ହିଁ ଆମ ଗାଈଟି କୁଆଡ଼େ ହଜିଗଲା । ଏତେ ଗାଈ ଏକାଠି ଫେରିଲେ, କିନ୍ତୁ ମୋ ଗାଈଟିକୁ ଦେଖି ହେଲାନାହିଁ । ଘରେ ପହଞ୍ଚିଲା ବେଳକୁ ଆମର ଗାଈ ନାହିଁ । ଦୁହାଁଳିଆ ଗାଈ । କୃଷ୍ଣଗିରିରେ ବାଘ ଥାନ୍ତି । ଗାଈ କ'ଣ ଆଉ ବଞ୍ଚିବ ? ବୁଢ଼ୀମା ମୋତେ ବହୁତ ଗାଳିଦେଲେ । ମୋର ମନେଅଛି, କୃଷ୍ଣଗିରି ପାହାଡ଼ରୁ ମୁଁ ବହୁତ ନରମ ନରମ ଭୃସଙ୍ଗ ପତ୍ର ତୋଳି ଆଣିଥିଲି ଚଟଣି କରିବା ପାଇଁ – ଜଙ୍ଗଲି ଶାଗ ତୋତରି ତୋଳିଆଣି

ଥିଲି ଖରଡ଼ିବା ପାଇଁ । ତାକୁ ସବୁ ଫୋପାଡ଼ି ଦେଲି, ନଖାଇ କାନ୍ଦି କାନ୍ଦି ଶୋଇଲି । ତାପରଦିନ ଭୋରରୁ ଏକା ଏକା କୃଷ୍ଣଗିରିର ଘନଜଙ୍ଗଲ ଭିତରେ 'ବୁଧି ବୁଧି' (ଗାଈର ନାମ) ବୋଲି ଡାକି ବୁଲିଲି । ଏତେ ବଡ଼ ବିପଦ ସମୟରେ ବାଘଭୟ ଛାଡ଼ି ଯାଇଥାଏ । ଯାହା ହେଉ, କିଛି ସମୟ ପରେ ବୁଧି ମୋ ପାଖରେ ଆସି ଠିଆହେଲା ! କି ଆଶ୍ୱସ୍ତି ! ବୁଧିକୁ କୁଣ୍ଢାଇ ବହୁତ ଗେଲ କରି କାନ୍ଦିଲି । ସେ ଯେପରି ମୋ ଦୁଃଖ ବୁଝିଲା, ମୋତେ ଚାଟିଲା, ମୋ ମୁହଁକୁ ଚାହିଁ ରହିଲା । ନନା ବୋଉଙ୍କର ଅତି ଗେହ୍ଲାଳିଆ ବୁଧିର ସ୍ନେହବୋଳା ଚାହାଁଣୀ ମୋର ହସ କାନ୍ଦର ଅଜସ୍ର ଲୁହ ଭିତର ଦେଇ ଭାସିଆସିଲା । ବୁଧି ମୋ ପଛେ ପଛେ ଅନୁତପ୍ତ ଶିଶୁଟି ପରି ଘରକୁ ଫେରିଲା ।

ମୋଟାମୋଟି ଗାଁ'ରେ ମୋର ସମବୟସ୍କ ପିଲାଏ ମୋତେ ଅସମର୍ଥ ଓ ଅପାରଗ ବୋଲି ଭାବନ୍ତି ଏବଂ ମୋ ଦ୍ୱାରା କୌଣସି କାର୍ଯ୍ୟ ହୋଇପାରିବ ବୋଲି ସେମାନଙ୍କର ଧାରଣା ନଥିଲା । ମୁଁ ଯେ ପ୍ରକୃତରେ ଅପାରଗ– ଏଥିରେ ମୋର ମଧ୍ୟ କୌଣସି ସନ୍ଦେହ ନଥିଲା । ଏଥିପାଇଁ ମୋ ଭିତରେ ନ୍ୟୂନମନୋଭାବ ଗଭୀର ଭାବରେ ଗଢ଼ିଉଠିଲା । ପିଲା ହେଉ, ବଡ଼ ହେଉ, ନ୍ୟୂନ ମନୋଭାବ ନେଇ ସବୁବେଳେ ଜଣେ ବଞ୍ଚିପାରିବ ନାହିଁ । ଏହି ମାନସିକ ଅଭାବର ପରିପୂରଣ ପାଇଁ ମୋର ଗୋଟିଏ ଧାରଣା ଥାଏ ଯେ ମୁଁ ଏମାନଙ୍କଠାରୁ ବହୁତ ଉପରେ । ମୁଁ କଣ ସବୁବେଳେ ଘାସ କାଟିବି, କାଠ ହାଣିବି, ଗାଈ ଚରାଇବି ? ଭାଇନାଙ୍କର ପଢ଼ା ସରିଲେ ମୁଁ ବି ବହୁତ ପଢ଼ିବି । ମୋର ମନଟା ସବୁବେଳେ ଆକାଶର ଭାସନ୍ତା ଧଳାଧଳା ମେଘ ଉପରେ ବୁଲୁଥାଏ । ଭିତରେ ଭିତରେ ଗୋଟିଏ ବିରାଟ ସ୍ୱପ୍ନ ଥିଲା ପରି ଜଣାଯାଏ । ସେ ସ୍ୱପ୍ନର କୌଣସି ନିର୍ଦ୍ଦିଷ୍ଟ ରୂପ ନଥିଲା । ଖାଲି ଅନିର୍ଦ୍ଦିଷ୍ଟ ଆଶା ଓ ଭବିଷ୍ୟତର ଅସ୍ପଷ୍ଟ ସ୍ୱପ୍ନ ଯେ ମୁଁ ସେମାନଙ୍କ ସହିତ ସମାନ ନୁହେଁ, ମୁଁ ଅଲଗା । ମୁଁ ନନାଙ୍କର ପଢୁଆ ପୁଅ । ମୁଁ ନିଶ୍ଚୟ ଭାଇନାଙ୍କ ପରି ବଡ଼ ବଡ଼ ଇଂରାଜୀ ବହିସବୁ ପଢ଼ିବି । ସେତେବେଳେ ଏମାନଙ୍କୁ ଦେଖାଇ ଦେବି ଯେ ମୁଁ ଏମାନଙ୍କଠାରୁ କେତେ ତଫାତ୍ ।

ମୁଁ ଗାଁ' ସ୍କୁଲରୁ ପଞ୍ଚମ ଶ୍ରେଣୀ ପାଶ୍ କରି ଖାଲି ବୁଲୁଥାଏ । ଭାଇନା ଇଂରାଜୀ ଶିଖିବାର ପ୍ରଥମ ବହିଟି (First Book) ମୋତେ ଦେଇଯାଇଥାନ୍ତି । ମୁଁ ଅକ୍ଷର ଶିଖିଥାଏ, କିନ୍ତୁ ଶବ୍ଦ କହିପାରୁ ନଥାଏ । ତଥାପି ମୋର ଆତ୍ମଗୌରବ ପ୍ରତିଷ୍ଠା କରିବା ପାଇଁ ମୋ ସାଙ୍ଗ ପିଲାମାନଙ୍କ ଆଗରେ ଗଡ଼ଗଡ଼ କରି ଇଂରାଜୀ ଅକ୍ଷର ଗୋଟି ଗୋଟି କରି ପଢ଼ିଦିଏ । ସେମାନେ ଭାବନ୍ତି ମୁଁ ସତରେ ଇଂରାଜୀ ପଢୁଛି । ମୋଠାରୁ ଅଧିକ ଦକ୍ଷ ବୋଲି ଗର୍ବ କରୁଥିବା ସାଙ୍ଗମାନେ ଆଶ୍ଚର୍ଯ୍ୟରେ ଆଖି ତରାଟି ମୋତେ ଚାହାନ୍ତି । ପ୍ରଶଂସା ନିଶ୍ଚୟ କରନ୍ତି ମନେ ମନେ । ମୋର ଆତ୍ମମର୍ଯ୍ୟାଦା ଅନ୍ତତଃ ମୋ ଆଗରେ ବହୁତ ବଢ଼ିଯାଏ । ମୁଁ ସେମାନଙ୍କଠାରୁ ବହୁତ ଉର୍ଦ୍ଧ୍ୱରେ ବୋଲି ଭାବିବାରେ ଆନନ୍ଦ ପାଏ । ଇଂରାଜୀ ଖବରକାଗଜର ଛିଣ୍ଡା ଅଂଶଟିଏ କୋଉଠୁ ପାଇଲେ ତାକୁ ଆଣି ପାଖରେ ରଖେ ଏବଂ ମୋର ବନ୍ଧୁମାନଙ୍କ ଆଗରେ ଅକ୍ଷରଗୁଡ଼ିକ ବଡ଼ପାଟି କରି ପଢ଼ିଦିଏ । ସେମାନେ ପ୍ରକୃତରେ ମୋ କୃତିତ୍ୱରେ ସ୍ତବ୍ଧ ହୋଇଯାନ୍ତି । ଏପରି ଯେ କେବଳ ପିଲାମାନଙ୍କ ସ୍ତରରେ ହୁଏ ତା ନୁହେଁ, ପର ଜୀବନରେ ବହୁତ ଉଚ୍ଚସ୍ତରରେ ମଧ୍ୟ ଥରେ ଥରେ ମଜା ଦେଖିବା ପାଇଁ ବଡ଼ ବଡ଼ ଅର୍ଥହୀନ କଥା କହି ତଥାକଥିତ ଉଚ୍ଚଶିକ୍ଷିତ ଲୋକଙ୍କୁ ଚୁପ୍ କରାଇ ଦେବାରେ ମୋର ଦୁଷ୍ଟ ବୁଦ୍ଧି

ଦେଖା ଦେଇଥିଲା । ନିରକ୍ଷର ଗ୍ରାମବାସୀଙ୍କ ଆଗରେ ଉଚ୍ଚଶିକ୍ଷିତ ଲୋକେ କାହିଁକି ବଡ଼ ବଡ଼ ଇଂରାଜୀ ଶବ୍ଦ କହନ୍ତି– ଗବେଷଣା କରି ନଥିବା ଲୋକେ ଗବେଷଣା ଫଳ କଥା କହି ଲୋକଙ୍କ ଆଗରେ ଅଯଥା ବାହାସ୍ଫୋଟ ମାରନ୍ତି– ଆମ ଦେଶରୁ ପୁଷ୍ପକ ବିମାନର ଧାରଣା ନେଇ ପାଶ୍ଚାତ୍ୟ ଦେଶର ଲୋକେ ଉଡ଼ାଜାହାଜ ଓ ଅନ୍ୟାନ୍ୟ ଆଧୁନିକ ଉଦ୍ଭାବନ କରିଥିବା କଥା ବହୁ ଶିକ୍ଷିତ ଲୋକ ଅଳ୍ପ ଶିକ୍ଷିତ ଲୋକଙ୍କ ଆଗରେ କହି ଏପରି ଭାବରେ ନିଜର ବଡ଼ିମା ପ୍ରତିଷ୍ଠା କରନ୍ତି– ଏସବୁ ପଛରେ ସେହି ପିଲା କାଳିଆ ନ୍ୟୂନ ମନୋଭାବର ପରିପୂରକ ମନୋବୃତ୍ତି ସେମାନଙ୍କଠାରେ ମଧ୍ୟ କାମ କରୁଛି ବୋଲି କୁହାଯାଇପାରେ ।

ଇଂରାଜୀ ପଢ଼ିବା ସହିତ ଭାଇନା କଟକରୁ ଆଣିଥିବା ଟେନିସ୍ ବଲ୍ ଓ ନୂଆ ତାସ୍ ମୁଠାଏ ମୋ ହାତରେ ଥିବା ଯୋଗୁଁ ମୋର ଗୌରବ ଆହୁରି ବଢ଼ିଯାଏ । ତାଛଡ଼ା ସାର୍ଟ ଦେଖି ନଥିବା ସେ ସମୟର ଗାଁ' ଲୋକଙ୍କ ଆଗରେ ଭାଇନା ଯେତେବେଳେ ଧୋବ ଫରଫର ଧୋତି ପଞ୍ଜାବୀ ପିନ୍ଧି କଟକରୁ ଫେରନ୍ତି ମୋର ଗର୍ବ ତଥା ମର୍ଯ୍ୟାଦାବୋଧ ବହୁତ ବଢ଼ିଯାଏ । ଏହିପରି ଭାବରେ ଅନ୍ୟମାନଙ୍କ ଦ୍ୱାରା ଉପେକ୍ଷିତ, ଅବହେଳିତ, ଅନ୍ୟମାନଙ୍କ ଦୃଷ୍ଟିରେ ଅପାରଗ, ଚକର ଛେଉଣ୍ଡ ନିଜର ଶ୍ରେଷ୍ଠତା ପ୍ରତିପାଦନ କରି ଚାଲିଥାଏ ।

ନାନା ରକମର ଅପାରଗତା ସହିତ ଆଉ ଗୋଟିଏ ଅକ୍ଷମତା ମୋର ଥିଲା ଯେ ଅନ୍ୟ ପିଲାଙ୍କ ପରି ମୁଁ ହଠାତ୍ କାହାରିକୁ ଖରାପ ଭାଷାରେ ଗାଳି ଦେଇପାରେ ନାହିଁ । ଅନ୍ୟମାନଙ୍କର ମା' ଭଉଣୀକୁ ନେଇ ଏବଂ ଗାଈ ଗୋରୁଙ୍କୁ ମଧ୍ୟ ଯେପରି ଅଶ୍ଳୀଳ ଭାଷାରେ ମୋ ସାଙ୍ଗମାନେ ଅନର୍ଗଳ ଗାଳି ଦେଇପାରନ୍ତି–ମୋ ପାଟିରେ ସେ ସବୁ ପଶେ ନାହିଁ । ସାଙ୍ଗମାନଙ୍କଠାରୁ ଅନେକ କଥା ଶିଖୁଥିଲେ ସୁଦ୍ଧା ଏପ୍ରକାର ଅଶ୍ଳୀଳ ଗାଳି ଦେବା ମୋ ପକ୍ଷରେ ଅସମ୍ଭବ ହୁଏ । ତେଣୁ ମୋ ସାଙ୍ଗମାନେ ମୋତେ ମାଇଚିଆ ଡରୁଆ ପିଲା ବୋଲି କହନ୍ତି । ଅଶ୍ଳୀଳ ଭାଷା ଶିଖି ନ ପାରିବାର ଅସାମର୍ଥ୍ୟ ପାରିବାରିକ ପରିବେଶ ଯୋଗୁ ହିଁ ସଂଭବ ହୋଇଥାଏ । ଘରେ ତ କେହି କେବେ ଏପରି କଥା କହିଥିବାର ମୁଁ ଶୁଣିନଥାଏ । ତେଣୁ ମୁଁ କହିପାରେ ନାହିଁ । ପିଲାର ଚାରିତ୍ରିକ ଗଠନରେ ପାରିବାରିକ ପ୍ରଭାବ କେତେ ବେଶି, ଏହା ବର୍ତ୍ତମାନ ମୁଁ ଅନୁଭବ କରୁଛି । ପରିବାରହିଁ ପିଲାଙ୍କର ଚରିତ୍ରର ମୂଳଦୁଆ ପକାଇଥାଏ ।

ଏହି ଅପାରଗତା ଯୋଗୁଁ ମୁଁ ଅବଶ୍ୟ ଗର୍ବ ଅନୁଭବ କରୁଥିଲି । ଏହା ସହିତ ଜଡ଼ିତ ହୋଇରହିଛି ଆଉ ଗୋଟିଏ ଅବିସ୍ମରଣୀୟ ଅନୁଭୂତି । ଅନ୍ୟ ପିଲାମାନଙ୍କର ଖରାପ ଭାଷା କହିବା ଗୋଟିଏ ସାଧାରଣ ସାମାଜିକ ରୀତିରେ ପରିଣତ ହୋଇଯିବା ସ୍ୱାଭାବିକ । ତଥାପି ମୋର ସମବୟସୀ ଝିଅମାନେ ମୋତେ ଏହି କାରଣରୁ ହିଁ ବେଶି ଭଲ ପାଉଥିଲେ । ମୋ ସହିତ ଖେଳିବାକୁ ସେମାନେ ଆଗଭର ହେଉଥିଲେ । ବୋହୂ ବୋହୂକା, ବୋହୂ ଚୋରି ଖେଳରେ ମୋତେ ବର କରି ଖେଳିବାରେ ବହୁ ଝିଅଙ୍କର ଆଗ୍ରହ । କିନ୍ତୁ ଥରକେ ତ ଜଣେ ଝିଅ ସହିତ ବର ହୋଇପାରେ – ଅନ୍ୟମାନେ ଅପେକ୍ଷା କରନ୍ତି ମୋର କନ୍ୟା ହେବା ପାଇଁ – ଝିଅମାନେ ମୋ ସହିତ ଜାକିଜୁକି ହୋଇ ବେଦୀରେ ବସନ୍ତି- ଲୁଚକାଳି ଖେଳ ଭିତରେ ଜଣେ ଝିଅ ମୋ ସାଙ୍ଗରେ ଘର କଣକୁ ଯାଇ ମୋତେ ଜାବୁଡ଼ି ଧରେ ।

ମୋର ଦେହ ଶିରି ଶିରେଇ ଉଠେ । ଏଥିରେ ମୋର ସବୁ ପ୍ରକାରର ଅପାରଗତାଗତ ନ୍ୟୂନ ଭାବ ଦୂର ହୋଇଯାଏ । ଏଥିପାଇଁ ମୁଁ ନିଜକୁ ଜଣେ ଅଦ୍ୱିତୀୟ ପୁରୁଷ ପିଲା ବୋଲି ଭାବେ- ନିଜକୁ ଗୌରବାନ୍ୱିତ ମନେ କରେ ।

ମୋ ତୁଳନାରେ ଅନ୍ୟ ପୁଅମାନେ ବେଶି ହୃଷ୍ଟପୁଷ୍ଟ - ଭଲ ପୋଷାକ ପିନ୍ଧନ୍ତି - କିଏ କାନରେ ଲୋଳି ତ କିଏ ହାତରେ ସୁନା ବଳା ଓ ଆଉ କିଏ ଯୋରିଷିଆ ସୁନାହାର ପିନ୍ଧିଥାଏ । ମୋର କିଛି ନାହିଁ । ଖାଲି ଏତିକି ଯେ ମୁଁ ଖରାପ ଭାଷା କହେ ନାହିଁ ଏବଂ ଏହା ସବୁ ପିଲାଙ୍କର ଅଭ୍ୟାସ । ତଥାପି ଏତେ କମ୍ ବୟସର ଝିଅମାନେ ମୋତେ ପସନ୍ଦ କାହିଁକି କରନ୍ତି ? ତାହା ଗୋଟିଏ ଅଦ୍ଭୁତ ଧରଣର ଅନୁଭୂତି । ଝିଅମାନଙ୍କର ବୋଧହୁଏ ଏହା ଗୋଟିଏ ସ୍ୱାଭାବିକ ଗୁଣ ଯେ ସେମାନେ ଅତି ଦୁର୍ଦ୍ଧର୍ଷ ଓ ଖରାପ କଥା କହୁଥିବା ପୁଅମାନଙ୍କୁ ପସନ୍ଦ କରନ୍ତି ନାହିଁ । ପର ଜୀବନରେ ମଧ୍ୟ ଏ ପ୍ରକାର ବହୁତ ଘଟଣା ମୋ ଦୃଷ୍ଟିକୁ ଆସିଛି । ସାଂସ୍କୃତିକ ଓ ନମନୀୟ ଭଦ୍ର ବ୍ୟବହାର ଝିଅମାନଙ୍କୁ ସହଜରେ ଆକର୍ଷଣ କରିଥାଏ । ଏହା ସେମାନଙ୍କର ସହଜାତ ବୈଶିଷ୍ଟ୍ୟ ବୋଲି ମୋର ମନେହୁଏ ।

ଅବହେଳିତ ପ୍ରଚଣ୍ଡ ହୀନମନ୍ୟତାପନ୍ନ ଚକର ଛେଉଣ୍ଡର ଭବିଷ୍ୟତ ବ୍ୟକ୍ତିତ୍ୱରେ ନିଶ୍ଚିତ ଭାବରେ ଏହାର ଗଭୀର ଛାପ ରହିଯିବା ସ୍ୱାଭାବିକ । ମୁଁ ଏଥିଯୋଗୁ ହିଁ ସାରା ଜୀବନ ଅତ୍ୟନ୍ତ ସ୍ପର୍ଶକାତର ଏବଂ ସାମାନ୍ୟ ଅପମାନଜନକ ଘଟଣାରେ ବିବ୍ରତ ହୋଇପଡ଼େ । ମୋ ପ୍ରତି କୌଣସି ଆକ୍ଷେପ ମୁଁ ସହଜରେ ଭୁଲିପାରେ ନାହିଁ । ନାନା ପରିସ୍ଥିତିରେ କିଛି କିଛି ଅପମାନଜନକ କଥା ଘଟିବା ସ୍ୱାଭାବିକ । କିନ୍ତୁ ସେଥିନେଇ ମୁଁ ବହୁ ସମୟଧରି ବିବ୍ରତ ହୋଇରହେ । ସେ କଥାଗୁଡ଼ିକ ଜୀବନ ସାରା ମୋର ମନେ ରହିଯାଏ ।

ଉଦାହରଣସ୍ୱରୂପ ମୋର ପ୍ରାୟ ଦଶବର୍ଷ ବୟସ ବେଳେ ମୁଁ ମୋର ପିଉସୀ ନାନୀ ଘରକୁ ଯାଇଥିଲି । ନାନୀ ମୋତେ ବହୁତ ଭଲ ପାଉଥିଲେ । ଦିନେ ମୁଁ ତାଙ୍କର ଛଅ ବୋହୂଙ୍କ- ଯେଉଁମାନେ ମୋର ଭାଉଜ ହୁଅନ୍ତି - ସାଙ୍ଗରେ ଥଟ୍ଟା ପରିହାସ ହେଉଥିଲି । ନାନୀ ଆସି ମୋତେ କହିଲେ ଯେ,

''ଏତେ ବଡ଼ ପୁଅ ପିଲାଟେ, ମାଇକିନାଙ୍କ ସଙ୍ଗରେ କଅଣ ଲାଗୁଛୁ - ଯା ଦାଣ୍ଡରେ ଖେଳିବୁ ।''

ଏହା ମୋ ପାଇଁ ଏତେ ଅପମାନଜନକ କଥା ହୋଇଗଲା ଯେ ମୁଁ ସେହିକ୍ଷଣି ଅଖିଆ, ଅପିଆ ତାଙ୍କ ଘର ଛାଡ଼ି ଏକାଏକା ଦଶ କିଲୋମିଟର ରାସ୍ତା ଚାଲି ଚାଲି ଆମ ଘରେ ଆସି ପହଞ୍ଚିଲି । ବୁଢ଼ୀମା ମୋତେ ଅବେଳରେ ଏପରି ଏକୁଟିଆ ଦେଖି ବ୍ୟସ୍ତ ହୋଇପଡ଼ିଲା । ତାପରେ ମୁଁ ଆଉ ଜୀବନରେ ପିଉସୀ ନାନୀ ଘରକୁ ଯାଇନାହିଁ ।

ଏହିପରି ପ୍ରତ୍ୟେକ ଅପମାନଜନକ ଘଟଣା ମୋ ମନରେ ସାରା ଜୀବନ ରହିଯାଏ । ସୌଭାଗ୍ୟବଶତଃ ମୋର ପୁଅଝିଅମାନେ ଆଜିଯାଏ ଏପରି କୌଣସି ଆଘାତ ଦେଇନାହାନ୍ତି ଯାହା ମୋର ମନେ ରହିବ । ପିଲାଦିନର ହୀନମନ୍ୟତା ଯୋଗୁ ଏପରି ତୀବ୍ର ଭାବରେ ମନରେ ଆଘାତ ଲାଗେ । ଅବଶ୍ୟ ହୀନମନ୍ୟତା ଯୋଗୁଁ ହିଁ ମୁଁ ପ୍ରତି କ୍ଷେତ୍ରରେ ସାଫଲ୍ୟ ଅର୍ଜନ କରିବା ପାଇଁ ପ୍ରେରଣା ପାଇ ଥାଏ । ସେଥିପାଇଁ ବହୁ ଅଧିକ ପରିଶ୍ରମ କରେ ।

ଇଂରାଜୀ ଅକ୍ଷର ଗଡ଼ଗଡ଼ କରି ପଢ଼ିଦେଇ ସିନା ପିଲାଙ୍କ ଆଗରେ ବାହାଦୁରୀ କରେ, କିନ୍ତୁ ଭାଇନା ଛୁଟିରେ ଆସିଲାବେଳେ ମୋତେ ଯେତେବେଳେ ଇଂରାଜୀ ପଢ଼େଇ ବସନ୍ତି, ମୋତେ ଶବ୍ଦ ଉଚ୍ଚାରଣ କରିଆସେ ନାହିଁ। ମୁଁ ବୁଝିପାରୁ ନଥିଲି ଯେ But ଏବଂ Put କାହିଁକି ଏପରି ଅଲଗା ଉଚ୍ଚାରଣ ହୁଏ। କି ଅଦ୍ଭୁତ ଭାଷା ! ଏହାର କ'ଣ କିଛି ନୀତି ନିୟମ ନାହିଁ; ଯାହା ଇଚ୍ଛା ତାହା ଉଚ୍ଚାରଣ କରାଯାଉଛି ? ମୋର ମନେ ରହେନାହିଁ। ଭାଇନାଙ୍କର ପଢ଼ାଇବାର ଧୈର୍ଯ୍ୟ ବହୁତ କମ। ସାଙ୍ଗେ ସାଙ୍ଗେ ମୋତେ ପିଟି ପକାନ୍ତି। ମୁଁ ଜୋର୍‌ରେ କାନ୍ଦେ, ବୁଢ଼ୀମା ନାନୀ ଆସି ମୋତେ ନେଇ ଯାଆନ୍ତି। ତେଣୁ ଭାଇନା ଆସିବା ପାଇଁ ମୁଁ ଯେପରି ଅପେକ୍ଷା କରୁଥିଲି, ସେତିକି ଭୟ ମଧ୍ୟ କରୁଥିଲି। ଆସିବା ନ ଆସିବା, ଭଲ ପାଇବା ଓ ଭୟ କରିବା ଭିତରେ ସବୁବେଳେ ଦ୍ୱନ୍ଦ୍ୱ ଲାଗିଥାଏ। ଭାଇନାଙ୍କର ଗାଁ'କୁ ଫେରିବା ସମୟ ହେଲେ ମୋର ଏହି ଦ୍ୱନ୍ଦ୍ୱ ବଢ଼ିଯାଏ, ଭୟରେ ଛାତି ଥରି ଉଠେ। ମୁଁ ବହିଟି ପଢ଼ିବାକୁ ଚେଷ୍ଟା କରେ, କିନ୍ତୁ ବିନା ସାହାଯ୍ୟରେ ପଢ଼ିବି କପରି ? ଫଳରେ ଇଂରାଜୀ ପଢ଼ିବାରେ ମଧ୍ୟ ସେହିପରି ଭୟ ଓ ଆଗ୍ରହ ମିଶ୍ରିତ ମନୋଭାବ କାମ କରୁଥାଏ। ମୁଁ ଯେତେ ଡରେ, ମୋର ପାଠ ସେତେ ପାଶୋରି ଯାଏ। ଭୟ ଓ ପାଠ ଯେ ଏକାଠି ସମ୍ଭବ ନୁହେଁ– ଏହି ବଦ୍ଧମୂଳ ଧାରଣା ମୋର ପ୍ରଥମରୁ ହୋଇଗଲା। ଭୟ ଯୋଗୁଁ ପାଠପଢ଼ାରେ ଅନନ୍ଦ ନଥାଏ। ପାଠକୁ ଉପଭୋଗ ନକରି ପାରିଲେ ପାଠ ଭଲ ହେବାର ସମ୍ଭାବନା ମଧ୍ୟ କମ୍।

ଥରେ ସେ ଗାଁ'କୁ ପ୍ରଥମଥର ପାଇଁ ସାଇକେଲ୍‌ଟିଏ କିଏ ଆଣିଥିଲା। ତାକୁ ଦେଖିବା ପାଇଁ ବଡ଼, ପିଲା ସମସ୍ତେ ଆସି ରୁଣ୍ଡ ହୋଇଥାନ୍ତି। ମୁଁ ଥାଏ ସେମାନଙ୍କ ଭିତରେ। କି ଅଦ୍ଭୁତ ଗାଡ଼ି ଇଏ ! ଏହା ସତରେ ଶୂନ୍ୟରେ ଚାଲେ ବୋଲି ତାକୁ ଶୂନ୍ୟଗାଡ଼ି କୁହାଯାଏ ! କେତେ ବେଗରେ ତାହା ସର ସର ହୋଇ ଚାଲି ଯାଉଥିବାର ଦେଖି ଆମେସବୁ ଅବାକ୍ ହୋଇ ଚାହିଁଥାଉ। ଶୂନ୍ୟଗାଡ଼ିଟି ଗଲା ପରେ ମୋର କଳ୍ପନା ରାଜ୍ୟରେ ମୁଁ ଶୂନ୍ୟଗାଡ଼ି ଚଳାଇଲି। ଭାଇନା ଯେ ନିଶ୍ଚୟ ଦିନେ ଶୂନ୍ୟଗାଡ଼ି ଚଢ଼ିବେ ଏବଂ ମୁଁ ମଧ୍ୟ ଚଢ଼ିବି, ଏଥିରେ ମୋର ତିଳେମାତ୍ର ସନ୍ଦେହ ନଥାଏ। ଏ ଶୂନ୍ୟଗାଡ଼ିଟିକୁ ଗାଁ'ରୁ ଝାଡ଼େଶ୍ୱର ଯାଏ କେଉଁ ରାସ୍ତାରେ ନେବାକୁ ହେବ ତାର କଳ୍ପନା କଳ୍ପନା ଚାଲିଲା। ବିଲ ହୁଡ଼ାକୁ ଛାଡ଼ି ଜଙ୍ଗଲିଆ ଅଞ୍ଚଳର ବଣବୁଦା ଭିତରେ ମଣିଷ ପାଦଚଲା ବାଟରେ ଶୂନ୍ୟଗାଡ଼ି ନିଶ୍ଚୟ ଯାଇପାରିବ। ସେହି ଭବିଷ୍ୟତ ଶୂନ୍ୟଗାଡ଼ି ଚାଲିବା ରାସ୍ତା ଅନ୍ୱେଷଣ କରି କରି ମୁଁ ଏକା ଆମ ଗାଁ'ରୁ ଝାଡ଼େଶ୍ୱର ବାହାରିଲି। ମୋ ସହିତ ଏସବୁ କାଳ୍ପନିକ କଥାରେ ଭାଗ ନେବାକୁ କୌଣସି ପିଲା ନଥାନ୍ତି। ସେମାନେ ଯେ ଶୂନ୍ୟଗାଡ଼ି ଚଢ଼ିବେ– ଏ ସ୍ୱପ୍ନ ସେମାନଙ୍କର ଦେଖିବାର ପ୍ରଶ୍ନ ନାହିଁ। ମୁଁ ଏକା ଶୂନ୍ୟଗାଡ଼ି ଚାଲି ପାରିବାର ରାଜପଥ ଖୋଜି ଚାଲୁଚାଲୁ ହଠାତ୍ ଦେଖିଲି ମୋ ଆଗରେ ଫଣା ଟେକି ଗୋଟିଏ ବିରାଟ ଗୋଖର ସାପ ! ଫଁ ଫଁ ଶବ୍ଦ କରୁଥାଏ। ମୁଁ ଆଉ ଗୋଟିଏ ମିନିଟ୍ ଅନ୍ୟମନସ୍କ ହୋଇଥିଲେ ମୋର ପ୍ରାଣ ନିଶ୍ଚୟ ଯାଇଥାନ୍ତା। ମୁଁ କୌଣସିମତେ କଣ୍ଟା ଝଣ୍ଟା ମାଡ଼ି ଦୌଡ଼ି ପଳାଇଗଲି। ସେ ଅଞ୍ଚଳରେ ସାପକାମୁଡ଼ାରେ ବହୁତ ଲୋକ ମରନ୍ତି।

ନିଃସଙ୍ଗ ଜୀବନରେ ଖାପଛଡ଼ା ସ୍ୱଭାବ ଆପେ ଆପେ ବଢ଼ିଯିବା ସ୍ୱାଭାବିକ । ଏକା ଏକା ଗାଧୋଇ ଯାଇ ପୋଖରୀର ଓଦା ବାଲିରେ ବସି ବଡ଼ବଡ଼ ବାଲିଘର ତିଆରି କରେ– ଶୋଇବା ଘର, ଖାଇବା ଘର ଇତ୍ୟାଦି । ଘରକୁ ଘର କବାଟ ରଖିବା ଲାଗି ବହୁତ ଥର ବାଲିଘର ଭାଙ୍ଗି ପୁଣି ଗଢ଼ିବାକୁ ହୁଏ । ସବୁ ଘର ପାଖରେ କିନ୍ତୁ କଇଁଫୁଲ ଫୁଟିଥିବା ପୋଖରୀ ଥାଏ । ସେଥିରେ ମୁଁ ଯେପରି ପହଁରି ପାରିବି । ପିଲାମାନଙ୍କର କାଳ୍ପନିକ ଖେଳଘର ତିଆରି ଗଭୀର ଆଗ୍ରହ ଓ ଜିଦ୍‌ର ସହ ଚାଲିଲେ ବୋଧହୁଏ ମନ ଭିତରେ ତାହା ଏକ ବଳିଷ୍ଠ ଇଚ୍ଛାଶକ୍ତିରେ କ୍ରମେ ପରିଣତ ହୁଏ । ଅନେକ ସମୟରେ ମନେହୁଏ, ମୋର ସେହି ବାଲି ଖେଳଘର ସହିତ ବର୍ତ୍ତମାନ ମୁଁ ତିଆରି କରିଥିବା ଘର, ବଗିଚା, ପୋଖରୀର ହୁଏତ ବହୁତ ସାମଞ୍ଜସ୍ୟ ରହିଛି ! ମନୁଷ୍ୟର ଇଚ୍ଛା ପ୍ରଥମେ କଳ୍ପନାରେ ଫୁଟେ, ତାପରେ କାର୍ଯ୍ୟକଳାପ ମାଧ୍ୟମରେ ଦେଖା ଦିଏ, ଶେଷରେ ବାସ୍ତବିକ ଘଟଣାରେ ପରିଣତ ହୁଏ । (Thoughts become things) କିନ୍ତୁ ଯେ କୌଣସି ସୁନା ପାହାଡ଼ ପରି ଅବାସ୍ତବ ଦିବାସ୍ୱପ୍ନର କୌଣସି ବାସ୍ତବ ମୂଲ୍ୟ ନାହିଁ ।

ଆମ ଅଗଣାରେ ମୁଁ ବସିବା ପାଇଁ କାଠ ପୋତି ପଟା ପକାଇ ଚଉକି କରିଥାଏ, ହାତ ଥିବା ହାତ ନଥିବା ଚଉକି । ସେଥିରେ ବସିଲେ ସିଂହାସନରେ ବସିଲା ପରି ମୋତେ ଲାଗେ । ଚକର ଛେଉଣ୍ଡ ଏଥିରେ ବସିଲା ବେଳେ କେତେ ଆତ୍ମସନ୍ତୋଷ ଲାଭ କରେ– ତାହା ସହଜରେ ଅନୁମେୟ ।

ମୋର ହୀନମନ୍ୟତା ନଥିଲେ ମୁଁ କେବେହେଲେ ବାଲିଘର, ବାଡ଼ି ବଗିଚା, ଚଉକି ସିଂହାସନର କଳ୍ପନା କରୁ ନଥାନ୍ତି । ଭସା ବାଦଲ ସାଙ୍ଗରେ ବୁଲୁ ନଥାନ୍ତି । ତେଣୁ ହୀନମନ୍ୟତା ସବୁବେଳେ କ୍ଷତିକାରକ ନୁହେଁ । ଜୀବନରେ ଏହାର ଅବଦାନ ରହିଛି ।

ଘାସକଟା, ଧାନକଟା ପ୍ରଭୃତି ଯେଉଁସବୁ କାମ ପାଇଁ ମୋର ହୀନମନ୍ୟତା ଥିଲା ସେସବୁ କାର୍ଯ୍ୟର ଆକର୍ଷଣ ଜୀବନର କେଉଁ ଅଜଣା ଯାଗାରେ ରହି ମଝିରେ ମଝିରେ ଉଙ୍କି ମାରେ । କଟକ-ଭୁବନେଶ୍ୱର ରାସ୍ତାରେ ପ୍ରତିଦିନ ମୁଁ ଯେତେବେଳେ ଗାଡ଼ି ଚଳାଇ ଯାଉଥାଏ, ପାଖ ବିଲର କଟା ଧାନଗଛର ସୁଗନ୍ଧ ମୋ ମନକୁ ଉଚ୍ଚାଟ କରେ । ମୋର ଇଚ୍ଛା ହୁଏ ଗାଡ଼ି ରଖି ଦେଇଯାଇ ଧାନ କାଟନ୍ତି । ପିଲାମାନେ କେନାଲ୍‌ରେ ପହଁରୁଥିବା ବେଳେ ମୋର ମଧ ଇଚ୍ଛା ହୁଏ, ସେମାନଙ୍କ ସାଥିରେ ଯାଇ ପହଁରନ୍ତି । ଅଧ୍ୟାପକ ହେଲେ ଏହା କରିବା ଅଯୌକ୍ତିକ ବୋଲି ମୋର ଧାରଣା ହୁଏନାହିଁ । ଜୀବନର ଯେତେ ଅପ୍ରୀତିକର ଅନୁଭୂତି ହେଲେ ମଧ ଅଦରକାରୀ ନୁହେଁ । ଖାଲି ତାକୁ ନୂତନ ରଙ୍ଗରେ ରଞ୍ଜିତ କରି ଜୀବନ ଭିତରେ ଉପଭୋଗ କରିପାରିବାରେ ବାହାଦୂରୀ ।

ଗାଁ'ରେ ବସନ୍ତ, ଠାକୁରାଣୀ, ଡାହାଣୀ ଓ ଭୂତ ପ୍ରତି ପ୍ରବଳ ଭୟ ସାଙ୍ଗକୁ ମୋର ହୀନମନ୍ୟତା ଯୋଗୁଁ ଅନେକ ରାତିରେ ମୋର ଭଲ ନିଦ ହୁଏନାହିଁ । ଆଖି ବୁଜି ମାଆ କାନିରେ ମୁହଁ ଘୋଡ଼ାଇ ପଡ଼ିରହେ । ଗାଁ'ର ରାତି ମୋ ପିଲାଦିନେ ଅତି ଭୟଙ୍କର ବୋଲି ମନେ ହେଉଥିଲା । ଅବଶ୍ୟ ଏପରି ଭୟ ଓ ଉଦ୍‌ବିଗ୍ନତା, ଅଭାବ ଅସୁବିଧା, ଦୁଃଖ ଦୈନ୍ୟ, ମାନସିକ ଅଶାନ୍ତି ଓ ଯନ୍ତ୍ରଣା ସହିତ ସେହି କେତେ ବର୍ଷର ଅନ୍ୟାନ୍ୟ ବହୁତ ରୋମାଞ୍ଚକର ମଧୁର ଅନୁଭୂତି ମଧ ମନେପଡ଼େ । କାର୍ତ୍ତିକ ପୂର୍ଣ୍ଣିମା ଦିନ ବଡ଼ିଭୋର୍‌ରୁ ଗାଁ'ର ଅଧିକାଂଶ

ସ୍ତ୍ରୀ ପୁରୁଷ, ପିଲାପିଲି ଝାଡ଼େଶ୍ୱର ଯାନ୍ତି ଗାଧୋଇ ବଡ଼ବଡ଼ିଆଙ୍କ ଉଦ୍ଦେଶ୍ୟରେ ଡଙ୍ଗା ଭସାଇବା ପାଇଁ। ମୁଁ ଯାଏ ସେମାନଙ୍କ ସାଙ୍ଗରେ। ପ୍ରାୟ ଏକ କିଲୋମିଟର ରାସ୍ତା ପାହାଡ଼ ତଳେ ତଳେ ଯିବାକୁ ହୁଏ। ପୂର୍ଣ୍ଣିମା ଚନ୍ଦ୍ରର ତନ୍ଦ୍ରାଭରା ପାହାନ୍ତି ଆଲୋକରେ ବଣବିଲ ଅଦ୍ଭୁତ ଦେଖା ଯାଉଥାଏ। କେଉଁ କଳ୍ପନା ରାଜ୍ୟର ଦୃଶ୍ୟ ଭଳି ମୁଁ ଏହାକୁ ଉପଭୋଗ କରେ। ସିଲିସିଲି ଥଣ୍ଡାଳିଆ ପବନ ସହିତ ଶୁଭ୍ରଶୀତଳ ଜ୍ୟୋତ୍ସ୍ନା ଲହରୀର ତାଳେ ତାଳେ ଧାଡ଼ି ଧାଡ଼ି ମଣିଷର ଲମ୍ବା ଲମ୍ବା ଛାଇ କୃଷ୍ଣଗିରି ପାହାଡ଼ର ଆଲୋକ ଓ ଛାଇ ଭିତରେ ମିଳେଇ ଯାଉଥାଏ। ଏ ଦୃଶ୍ୟ ମୋ ମନ ଭିତରେ ଅପୂର୍ବ ଶିହରଣ ସୃଷ୍ଟି କରେ। ଏହା ମୁଁ ଆଜିଯାଏ ଭୁଲି ପାରିନାହିଁ। ସେଥିଯୋଗୁ ଜୀବନର ଅପରାହ୍ଣରେ ଝାଡ଼େଶ୍ୱର ପାଖରେ ଘରଟିଏ କରି କାର୍ତ୍ତିକ ପୂର୍ଣ୍ଣିମାର ଏହି ଦୃଶ୍ୟ ଦେଖିବାକୁ ଯାଏ।

ସେଦିନ ଭୋର୍‌ରେ ଗାଧୋଇ ଡଙ୍ଗା ଭସାଇ ଅନ୍ୟମାନଙ୍କ ସହିତ ମୁଁ ସଂକୀର୍ତ୍ତନରେ ଯୋଗ ଦିଏ। ଅଳ୍ପ ଅଳ୍ପ ସକାଳୁଆ ଆଲୁଅରେ ଝାଡ଼େଶ୍ୱର ମନ୍ଦିର ଓ କୃଷ୍ଣଗିରି ପାହାଡ଼ରେ ସଙ୍ଗୀତ ସହିତ ମୃଦଙ୍ଗ ଓ ଗିନିର ଗୁରୁଗମ୍ଭୀର ଲହରୀ ଖେଳିବୁଲେ। ମୁଁ ଅତି ବେଶୀ ବିଭୋର ହୋଇପଡ଼େ। ଗୋଟିଏ ବଡ଼ଚମ୍ପା ଗଛ ମୂଳରେ ବସି ମୁଁ ରାମଚଣ୍ଡୀଙ୍କୁ ପ୍ରାର୍ଥନା କରେ। ବହୁ ସମୟ ଧରି ଏ ପ୍ରକାର ବିହ୍ୱଳିତ ଭାବ ମନପ୍ରାଣକୁ ପୁଲକିତ କରି ରଖେ। ଏବେ ମଧ୍ୟ ଏ ପ୍ରକାରର ମନୋରମ ପ୍ରତ୍ୟୁଷରେ ସେହି ପୁରୁଣା ଅନୁଭୂତି ନୂତନ ଚେତନା ସୃଷ୍ଟି କରେ। ଏ ପ୍ରକାର ବ୍ୟାପକ ଓ ଗଭୀର ଆବେଗାତ୍ମକ ସମ୍ବେଦନ ସାରା ପ୍ରାଣକୁ ଉଦ୍‌ବେଳିତ କରିପାରେ। କି ପିଲା କି ବଡ଼— ନିଃସଙ୍ଗ ହେଲେ ବୋଧହୁଏ ବେଶୀ ପରିମାଣରେ ଭାବପ୍ରବଣ ହୋଇପଡ଼ନ୍ତି। ତା ନହେଲେ ଜୀବନ ଦୁର୍ବିଷହ ହୋଇଉଠନ୍ତା।

ସେହିପରି ଚୈତ୍ରମାସର ସୁଲୁସୁଲିଆ ବସନ୍ତ ପବନ କୃଷ୍ଣଗିରିର ଫୁଲଫଳ, ବଣଜଙ୍ଗଲ ଦୋହଲାଇ ବହେ। କି ମଧୁର ଏ ମଳୟ। ଏପ୍ରକାର ଅନୁଭୂତି ସହରାଞ୍ଚଳରେ ସମ୍ଭବ ନୁହେଁ। ଚୈତ୍ର ଭୋରର ଏହି ମଧୁର ମଳୟ ମୋତେ ଖୁବ୍ ଶୀଘ୍ର ଉଠାଇ ଦିଏ। ମୁଁ ଜଲ୍‌ଦି ଜଲ୍‌ଦି ପ୍ରସ୍ତୁତ ହୋଇଯାଏ ଝାଡ଼େଶ୍ୱର ଯିବା ପାଇଁ। ଝାଡ଼େଶ୍ୱର ଯିବା ସମୟରେ ମୁଁ ଯେପରି ଏହି ପବନର ମୋଲାୟମ ହିଲ୍ଲୋଳରେ ଭାସି ଭାସି ଯାଏ। ଚୈତ୍ରମାସରେ ଏଠାରେ ଯାତ୍ରା ହୁଏ। ବହୁତ ଲୋକ ଆସନ୍ତି। ବଣଭୋଜି ହୁଏ। ବଣଭୋଜି ରନ୍ଧା ଖାଇବାକୁ ବହୁତ ଭଲ ଲାଗେ। ଏହିପରି ଭାବରେ ଚକର ଛେଉଣ୍ଡ ମନରେ ଦୁଃଖ ଥିଲେ କଣ ହେଲା ସେ ବେପରୁଆ ହୋଇ ବୁଲିବାରେ ଆନନ୍ଦ ପାଏ। ପାଠପଢ଼ା ନାହିଁ, କୌଣସି ପ୍ରକାର ବନ୍ଧନ ନାହିଁ। ଗଣ୍ଡେ ଖାଇଦେଇ ତାସ୍ ମୁଠାକ ଧରି ଖରାବେଳଯାକ ଖେଳ ଚାଲେ। ଦୋଳି ଖେଳା, ଆମ୍ବଗଛକୁ ଟେକା ଫୋପାଡ଼ି ଆମ୍ବ ତୋଳା, ଜାମୁକୋଳି ଗଛର ଶିଖର ଶାଖାରେ ବସି ପାଚିଲା ଜାମୁକୋଳି ଖାଇବା, ସଂକୀର୍ତ୍ତନ ଦଳ ସାଙ୍ଗରେ ତାଳ ଦେଇ ଦେଇ ବୁଲିବା ପ୍ରଭୃତି ବହୁ ମନମତାଣିଆ ଅନୁଭୂତି ମୋତେ ଭଲ ଲାଗୁଥିଲା। ମାମୁଁ ଓ ପିଉସୀନାନୀଙ୍କ ଘରକୁ ଯାଇ ମାସେ ପନ୍ଦରଦିନ ଆରାମରେ ରହେ। ମାମୁଁ ଘରେ ସାନଭାଇ ଥାଏ। ତା ସହିତ ଖେଳିବାରେ ଆନନ୍ଦ ମିଳେ। ଆଈ, ମାଇଁ ଓ ପିଉସୀଙ୍କର ଅତ୍ୟଧିକ ଆଦର ମୋ ମନକୁ ବହୁ ପରିମାଣରେ ହାଲୁକା କରିଦିଏ।

ସେମାନଙ୍କ ପାଖରେ ଅନେକ ଦିନ ରହିବାର ଇଚ୍ଛା କିନ୍ତୁ ବୁଢ଼ୀମା ଗାଁ'ରେ ଏକୁଟିଆ ଥାଏ ତେଣୁ ଗାଁ'କୁ ଫେରିଆସେ ।

ସେ ଯୁଗରେ ଗାଁ'ରେ ଆଉ ଗୋଟିଏ ଅନୁଷ୍ଠାନ ଥିଲା– ତାହା ହେଉଛି ପୁରାଣପଢ଼ା । ଖରାଦିନେ ଖରାବେଳଟାଯାକ ରାମାୟଣ, ମହାଭାରତ, ଭାଗବତ ଓ ଅନ୍ୟାନ୍ୟ ପୁରାଣ ଧାରାବାହିକ ଭାବରେ ବୋଲାଯାଏ । ମୁଁ ସବୁବେଳେ ବସି ପୁରାଣ ଶୁଣେ । ଶ୍ରୋତାମାନଙ୍କ ସହିତ ସୀତା ବନବାସ ସମୟରେ କାନ୍ଦେ ତ, ହନୁମାନର ଲଙ୍କାପୋଡ଼ି ବେଳେ ହସେ । ଏହି ସଭାମାନଙ୍କରେ ଶୁଣି ଶୁଣି ଏସବୁ ବିଷୟରେ ମୋର ସମସ୍ତ ଜ୍ଞାନ ହୋଇଛି । ବୁଢ଼ୀମା ମଧ ସନ୍ଧ୍ୟାରେ ବସି ବହୁ ପୁରାଣ ତାଙ୍କ ମନରୁ ଗାଇଯାଆନ୍ତି । ଯଦିଚ ସେ ନିରକ୍ଷରା ଥିଲେ ସେ ଶୁଣିଶୁଣି ବହୁପୁରାଣ ମୁଖସ୍ଥ କରି ରଖିଥିଲେ ଏବଂ ଘଣ୍ଟା ଘଣ୍ଟା ଏହାକୁ ନିଜ ମନରୁ ଗାଉଥାନ୍ତି । ତାଙ୍କଠାରୁ ମଧ ପୁରାଣ ବିଷୟରେ ବହୁତ କଥା ଶିଖିଛି ।

ଏ ସମ୍ପର୍କରେ ପର ଜୀବନରେ ଘଟିଥିବା ଗୋଟିଏ କଥା କହିବା ଉଚିତ ହେବ । ହାରଭାର୍ଡ଼ ବିଶ୍ୱବିଦ୍ୟାଳୟର ଗବେଷଣା କାମରେ ଓଡ଼ିଶା ଆସିଥିବା କୋରାଦୁବୟ ନାମକ ଜଣେ ଅଧ୍ୟାପିକା ମୋତେ ପଚାରିଥିଲେ ଯେ ଆମ ଦେଶର ନବ ସାକ୍ଷର ଲୋକେ ବଡ଼ ବଡ଼ କଠିନ ବହିସବୁ କିପରି ପଢୁଛନ୍ତି ? ସେତେବେଳକୁ 'ଆମର ଭୁଲ୍ କେଉଁଠି' ବୋଲି ମୋର ଗୋଟିଏ ବହି ବାହାରି ଥାଏ । ସମାଜରେ ମଧ ଧାରାବାହିକ ଏହା ପ୍ରକାଶ ପାଉଥିଲା । କୋରାଦୁବୟ ଭୁବନେଶ୍ୱର ଆଖପାଖ ଗାଁ'ର ନବସାକ୍ଷରମାନଙ୍କୁ ପ୍ରଶ୍ନ କରି ବୁଝିଥିଲେ ଯେ ସେମାନେ ବହୁ ସଂଖ୍ୟାରେ ମୋର ଏହି ବହିଟି ପଢ଼ିଛନ୍ତି । ସେ ମୋତେ ପଚାରିଲେ ଯେ ଏ ବହିଟି କି ପ୍ରକାରର ଗପବହି ? କାରଣ ତାଙ୍କର ଧାରଣା ନବସାକ୍ଷରମାନେ ଗପବହି ପଢ଼ନ୍ତି । ମୁଁ ତାଙ୍କୁ ବୁଝାଇଥିଲି ଯେ ଏହା ଗପ ବହି ନୁହେଁ, ଏଥିରେ ସମାଜର ବହୁ ଜଟିଳ ପ୍ରଶ୍ନ ଯଥା ଆଇନ୍ ଅନୁଷ୍ଠାନ, ଧନିକ ଲୋକଙ୍କୁ କିପରି ସାହାଯ୍ୟ କରୁଛି ଇତ୍ୟାଦି ବିଷୟରେ ଆଲୋଚନା ହୋଇଛି । ସେ ଶୁଣି ଆଶ୍ଚର୍ଯ୍ୟ ହେଲେ ଯେ ଓଡ଼ିଶାର ନବସାକ୍ଷରମାନେ ଏ ପ୍ରକାର ଜଟିଳ ବିଷୟବସ୍ତୁରେ ଆଗ୍ରହୀ ।

ମୁଁ ସେତେବେଳେ ତାଙ୍କୁ କହିଥିଲି ଯେ ମୋ ବୁଢ଼ୀମା ନିରକ୍ଷରା ଥିଲେ, କିନ୍ତୁ ମୁଁ ତାଙ୍କଠାରୁ ବହୁ ପୁରାଣ ଶୁଣି ଶୁଣି ଶିଖିଛି । ସେ ଯଦି ଅକ୍ଷର ଶିଖନ୍ତେ ତାହେଲେ ସାଙ୍ଗେ ସାଙ୍ଗେ ଭଗବତ୍ ଗୀତା ପଢ଼ନ୍ତେ । ଭାରତର ପୁରାତନ ସଂସ୍କୃତି ଓ ଐତିହ୍ୟ ଲୋକମାନଙ୍କୁ ଏପରି ଗଭୀର ଭାବରେ ପ୍ରଭାବିତ କରି ରଖିଛି ଯେ ନିରକ୍ଷର ହେଲେ ମଧ ଏମାନଙ୍କର ଜ୍ଞାନର ପରିସର ବହୁତ ବ୍ୟାପକ । ନିରକ୍ଷର ଅର୍ଥ ଅଶିକ୍ଷିତ ନୁହେଁ । ତାଙ୍କ ସହିତ ଏ ପ୍ରକାର ଆଲୋଚନା ବେଳେ ଭାରତୀୟ ଲୋକଙ୍କ ବିଷୟରେ ଏ ପ୍ରକାର ନିରାଟ ସତ୍ୟ କଥାଟି ବିଷୟରେ ମୁଁ ଉପଲବ୍ଧି କରିପାରିଥିଲି । ଏକଥା ସେ ତାଙ୍କର ଗୋଟିଏ ବହିରେ ଉଲ୍ଲେଖ କରିଛନ୍ତି ।

ଆମ ଗାଁ'ରେ ଆଉ ଗୋଟିଏ ଅଦ୍ଭୁତ ଉତ୍ସବ ହୁଏ । ତାକୁ କହନ୍ତି କୋଠିଶାଳ । ଆଶ୍ୱିନ ମାସରେ ଅବ୍ରାହ୍ମଣ ବାସିନ୍ଦାମାନେ ଏହି ଉତ୍ସବ ମାସାଧିକ କାଳ କରନ୍ତି । ଗୋଟିଏ ବଡ଼ କାନ୍ଥରେ ଗ୍ରାମ ଦେବତୀ ଓ ତାଙ୍କର ସାତ କି ଆଠ ପୁଅଝିଅ ସମସ୍ତଙ୍କର ବଡ଼ ବଡ଼ ଛବି ଚିତ୍ର କରାଯାଏ । ସନ୍ଧ୍ୟା ପରେ ଗାଁ'ର ଲୋକେ ସେଠାରେ ଏକତ୍ରିତ ହୁଅନ୍ତି । ଗୋଟିଏ

ବଡ଼ ହାଣ୍ଡି ମୁହଁରେ କୁଲାଟିଏ ଓଲଟାଇ ଘୋଡ଼ାଇ ଦିଆଯାଏ । ସେହି କୁଲା ଉପରେ ଗୋଟିଏ ଧନୁର ଏକ ଅଂଶ ଚାପି ରଖାଯାଏ । ଧନୁ ଉପରେ ଗୋଡ଼ ପକାଇ ଆଣ୍ଠୁରେ ତାକୁ ଜାବୁଡ଼ି ଧରାଯାଏ । ଏହି ଧନୁର ଗୋଟିଏ ପାଖ ଦନ୍ତୁରିତ କରା ହୋଇଥାଏ । ଗୋଟିଏ ଛୋଟ ବେତର ଦୁଇ ପାଖରେ ଘୁଙ୍ଗୁର ଲଗା ହୋଇଥାଏ ଏବଂ ଏହି ବେତଟି ଧନୁର ଦାନ୍ତ ଉପରେ ଘଷାଯାଏ । ଫଳରେ ଗୋଟିଏ ଗମ୍ଭୀର ମଧୁର ଧ୍ୱନି ସେଥିରୁ ନିର୍ଗତ ହୁଏ । ଦଳେ ଲୋକ ଝୁଣା ଧୂଆଁ କରି ଚାରିଆଡ଼େ ଝୁଣାବାସନାର ଗୋଟିଏ ବାତାବରଣ ସୃଷ୍ଟି କରନ୍ତି । ଧନୁର ବାଦକ ନାନା ପ୍ରକାର ଗୀତଗାଇ ଗ୍ରାମ ଦେବତୀର ପରିବାରବର୍ଗଙ୍କୁ ନିମନ୍ତ୍ରଣ କରେ । କିଛି ସମୟ ପରେ ହଠାତ୍ ଜଣେ ମୁଣ୍ଡକୁ ଜୋର୍‌ରେ ହଲାଇ ହଲାଇ ଡେଇଁ ପଡ଼େ । ତା ମୁହଁ ଆଗରେ ଆହୁରି ବେଶୀ ଝୁଣା ଧୂଆଁ ଦିଆହୁଏ । ଧନୁର ଶବ୍ଦ ଆହୁରି ଜୋର୍‌ରେ ବାଜି ଉଠେ । ଗୀତ ସେହି ଅନୁପାତରେ ବଢ଼ିଉଠେ । ଲୋକଟିକୁ କାଳସୀ ଲାଗେ ଏବଂ ସେ କହେ ଯେ ଗ୍ରାମଦେବତୀ ପରିବାରର ସେ କିଏ । ସେହି ଅନୁସାରେ ତାକୁ ପୂଜା କରାଯାଏ । ଅନେକ ସମୟରେ ଦଶ-ପନ୍ଦରଜଣ ଏକାଠି କାଳସୀ ଲାଗି ଡିଅଁନ୍ତି, ବୋଦା ମାଗନ୍ତି । ଜହ୍ନି କାକୁଡ଼ିକୁ ବୋଦା ଆକାରରେ ଦିଆଯାଏ । ମୁଁ ବୁଢ଼ୀମାଙ୍କୁ ପଚାରେ-

'ମା ମତେ କ'ଣ ଦିନେ ଏପରି ଦିଅଁ ଲାଗିଯିବ ?'

ବୁଢ଼ୀମାଆ ହସି କହନ୍ତି- 'ଆରେ ବ୍ରାହ୍ମଣଙ୍କୁ କାଳସୀ ଲାଗେନାହିଁ । ଗ୍ରାମଦେବତୀର ପୁଅଝିଅମାନେ ବ୍ରାହ୍ମଣଙ୍କ ପାଖକୁ ଆସନ୍ତି ନାହିଁ ।'

କିନ୍ତୁ ହଇଜା ବସନ୍ତରେ ସେମାନଙ୍କୁ ନେଇଯିବାରେ ତ ବାଧା ନଥାଏ ? ବୁଢ଼ୀମାଆଙ୍କୁ ଏକଥା କହିଲେ ମୋ ପାଟିକୁ ସେ ଚିପି ଧରନ୍ତି ଏବଂ ଏପରି କଥା କହନ୍ତି ନାହିଁ ବୋଲି ତାଗିଦ୍ କରନ୍ତି । ଯାହା ହେଉ ଏହି ଗୋଟିଏ ସୀମିତ କ୍ଷେତ୍ରରେ ଅନ୍ତତଃ ଅବ୍ରାହ୍ମଣଙ୍କର ପ୍ରାଧାନ୍ୟ ରହିଛି । ମାସେ ଯାଏ ମୁଁ ଏହାକୁ ବସି ଦେଖୁଥାଏ । ଯେତେ ରାତି ହେଲେ ମଧ ନିଦ ଲାଗେ ନାହିଁ । ଠାକୁର ଠାକୁରାଣୀଙ୍କର ଖେଳାବୁଲା, ନାଚଗୀତରେ କଳ୍ପନା ରାଜ୍ୟରେ ବୁଲିବାକୁ ବହୁତ ଭଲ ଲାଗେ ।

ଏହି ସମୟରେ ଆଉ ଗୋଟିଏ ଘଟଣା ଘଟିଲା ଯାହାକି ଜୀବନର ଗୋଟିଏ ମୁଖ୍ୟ ଦିଗ୍‌ଦର୍ଶନ ଭାବରେ ପ୍ରଭାବ ବିସ୍ତାର କରି ପାରିଥିଲା । ଦିନେ ସନ୍ଧ୍ୟାରେ ଆମ ଗାଁ'ରେ ଗୋଟିଏ ବାବାଜୀ ଜଣଙ୍କ ଘରେ ପୂଜା ପ୍ରାର୍ଥନା କରୁଥିଲେ । ବହୁ ଆଡ଼ମ୍ବରରେ ପୂଜା ବିଧିର ଆୟୋଜନ ହୋଇଥାଏ । ଅନେକ ଲୋକ ସମବେତ ହୋଇଥାନ୍ତି । ମୁଁ ସେ ଘର ଭିତରେ ବାବାଜୀ ପାଖେ ପାଖେ ବସି ଦେଖୁଥାଏ । ନନାଙ୍କର ପୂଜା ଅର୍ଚ୍ଚନାଠାରୁ ଏହା ବହୁତ ବେଶୀ ଆଡ଼ମ୍ବରପୂର୍ଣ୍ଣ ଥିଲା । ଏଥିରେ ମୋର ଆଗ୍ରହ ବଢ଼ି ବଢ଼ି ଚାଲିଥାଏ । ହଠାତ୍ ବାବାଜୀ ସମସ୍ତଙ୍କୁ ଘରୁ ବାହାରି ଯିବାକୁ କହିଲେ ଏବଂ ମୋତେ ବହୁ ତାଚ୍ଛଲ୍ୟ ସହିତ ସେ ଘରୁ ବାହାର କରିଦେଲେ । ମୋର ଭୟଙ୍କର ରାଗ ହେଲା । ପୁରାଣରେ ତ ଆଗରୁ ଶୁଣିଥାଏ କିପରି ଦାସିଆବାଉରୀ ମନ୍ଦିର ବାହାରେ ବାଲି ପିତୁଳା ଗଢ଼ି ପୂଜା କରିଥିଲା ଏବଂ ଠାକୁର ତା ପାଖରେ ଆସି ବିଜେ ହୋଇଥିଲେ । ମୁଁ ସେହିପରି ଗୋଟିଏ ଅନ୍ଧାର ଜାଗାକୁ ଯାଇ ଠାକୁରମାନଙ୍କର ନାମ ନେବାକୁ ଲାଗିଲି । ପ୍ରଥମେ ଶହେ ଆଠଥର

ରାମଚଣ୍ଡୀଙ୍କର ନାମ, ତାପରେ ଜଗନ୍ନାଥ, ରାମ କୃଷ୍ଣ ପ୍ରଭୃତିଙ୍କର ନାମ ଶହେ ଆଠଥର କରି ଜପିଲି । ଶେଷରେ ଗାଁ'ର ପ୍ରଧାନ ପରାକ୍ରମୀ ଗ୍ରାମଦେବତୀଙ୍କ ନାମ ନେବାକୁ ଭୁଲି ନଥିଲି । ତା'ପରେ ପ୍ରାୟ ଆଠ-ନଅ ବର୍ଷଧରି ବହୁ ଠାକୁରଙ୍କର ନାମ ଏପରି ଭାବରେ ଶହେ ଆଠଥର କରି ଜପ କରିବା ମୋର ଅଭ୍ୟାସରେ ପରିଣତ ହୋଇଗଲା । ଜପ ଶେଷରେ ଠାକୁରମାନଙ୍କୁ ମୁଣ୍ଡିଆ ମାରେ ଓ କହେ ଭାଇନାଙ୍କୁ ବିଦ୍ୟା ଓ ଚାକିରି ଦିଅ, ମୋତେ ବିଦ୍ୟା ଦିଅ, ଘରେ ସମସ୍ତଙ୍କ ଦେହ ଭଲ ରହୁ । ଏ ଅଭ୍ୟାସ ଆଇ.ଏ. ପଢ଼ିବା ପର୍ଯ୍ୟନ୍ତ ବଢ଼ି ବଢ଼ି ଚାଲିଥାଏ । ହାଇସ୍କୁଲ ଜୀବନରେ ମଧ୍ୟ ଘଣ୍ଟା ଘଣ୍ଟା ଧରି ଜପରେ କଟାଇ ଦେଉଥିଲି । ଆଇ.ଏ. ପଢ଼ିବା ସମୟରେ କ୍ରମେ ମନରେ ସନ୍ଦେହ ହେଲା ଯେ, ଏପରି ପୂଜା କରିବାର ମୂଲ୍ୟ କ'ଣ ? ସମସ୍ତେ କରୁଛନ୍ତି ବୋଲି ମୁଁ କରୁଛି ନା ପ୍ରକୃତରେ ଭଗବାନ ବୋଲି କେହି ଅଛନ୍ତି ? ଏହି ତତ୍ତ୍ୱକୁ ଜାଣିବା ଲାଗି ଏବଂ ଏହି ପ୍ରଶ୍ନର ସଠିକ୍ ଉତ୍ତର ପାଇବା ପାଇଁ ମୁଁ ବି.ଏ. ଏବଂ ଏମ୍.ଏ.ରେ ଦର୍ଶନ ପଢ଼ିଲି । ଏମ୍.ଏ. ଆରମ୍ଭ ବେଳକୁ ନାସ୍ତିକରେ ପରିଣତ-ହୋଇଗଲି । ଏବଂ ଆଜିଯାଏଁ ନାସ୍ତିକ ରହିଛି ।

ଏହିପରି ଭାବରେ ଦୁଇତିନି ବର୍ଷ ଗାଁ'ରେ ବିତିଗଲା । ଅଧିକ ପାଠପଢ଼ାର ସମ୍ଭାବନା ହେଲାନାହିଁ । ଥରେ ଆମ ଗାଁ'କୁ ଶ୍ରୀଯୁକ୍ତ ବୈଦ୍ୟନାଥ ରଥ (ବାଣପୁର) ସ୍କୁଲ ପରିଦର୍ଶକ ଭାବରେ ଆସିଥିଲେ । ପ୍ରତି ବର୍ଷ ସ୍କୁଲ ପରିଦର୍ଶକ ଆସିଲାବେଳେ ମୋତେ ସ୍କୁଲରେ ବସାଇ ଦିଆଯାଏ । କାରଣ ମୁଁ ସବୁ ପ୍ରଶ୍ନର ଉତ୍ତର ଭଲ ଭାବରେ ଦେଇପାରେ । ବୈଦ୍ୟନାଥ ବାବୁ ଭାଇନାଙ୍କୁ ଜାଣିଥିଲେ । ତାଙ୍କୁ ମଧ୍ୟ ସେ ପଢ଼ାରେ ସାହାଯ୍ୟ କରୁଥିଲେ । ମୋର ସବୁ ଉତ୍ତରରେ ସେ ବହୁତ ଖୁସି ହୋଇଗଲେ ଏବଂ ମୋତେ ତାଙ୍କ ପାଖରେ ରଖି ପଢ଼ାଇବାର ପ୍ରସ୍ତାବ ଦେଲେ । ଗଞ୍ଜାମ ଜିଲ୍ଲା ପୁରୁଷୋତ୍ତମପୁରରେ ତାଙ୍କ କାର୍ଯ୍ୟାଳୟ । ମୁଁ ବହୁତ ଖୁସି ହୋଇଗଲି । ବୈଦ୍ୟନାଥ ବାବୁ ବଡ଼ ଅମାୟିକ, ଉଚ୍ଚମନା ଓ ସ୍ନେହଶୀଳ ଲୋକ ଥିଲେ ।

ସେ ପ୍ରତିମାସରେ ୨୦ଦିନ ଗସ୍ତରେ ଯାନ୍ତି । ତାଙ୍କ ଅନୁପସ୍ଥିତିରେ ତାଙ୍କର ଗୋଟିଏ ପୁତୁରା ଯେ କି ମୋ ସହିତ ସ୍କୁଲରେ ପଢୁଥାଏ ତା ପାଇଁ ଓ ମୋ ପାଇଁ ମୋତେ ରାନ୍ଧିବାକୁ କହେ । ଘରେ ତାଙ୍କର ସ୍ତ୍ରୀ ନଥିଲେ କିଛି ମାସ । ମୋର ତ ରାନ୍ଧିବା ଅଭ୍ୟାସ ବିଲ୍‌କୁଲ ନଥିଲା । ତେଣୁ ବହୁତ ଡେରିହୁଏ । ମୁଁ ସବୁବେଳେ ଡେରିରେ ସ୍କୁଲକୁ ଯାଏ । ମୋତେ ଦେଖିଲାକ୍ଷଣି କ୍ଲାସ୍‌ର ମାଷ୍ଟ୍ର ଓ ପିଲାମାନେ ହୋ ହୋ କରି ହସିଉଠନ୍ତି । ମୋର ଦୁଃଖ ଓ ଲାଜର ସୀମା ରହେନାହିଁ । ମୁଁ ବହୁଦିନ ଉପସ୍ଥାନ ବେଳକୁ ପହଞ୍ଚିପାରେ ନାହିଁ । ତେଣୁ ପିଲାମାନେ କଣ କହି ଉପସ୍ଥାନ ବେଳେ ଉତ୍ତର ଦିଅନ୍ତି ମୁଁ କେବେ ଶୁଣିପାରିନଥାଏ । ଖାଲି ପ୍ରେଜେଣ୍ଟ୍ ସା ବୋଲି ମୋତେ ଶୁଣାଯାଏ । ତେଣୁ ଯେତେବେଳେ ଉପସ୍ଥିତ ହୁଏ ପ୍ରେଜେଣ୍ଟ୍ କହି କେତେବେଳେ 'ସା' କେତେବେଳେ 'ସନ' ଇତ୍ୟାଦି କହେ । ସାର୍ କଥାଟି ଜାଣି ନଥାଏ । ସମସ୍ତେ ହସି ଉଠନ୍ତି । ଫଳରେ ଚକର ଛେଉଣ୍ଡର ମଜ୍ଜାଗତ ହୀନମନ୍ୟତାର ମାତ୍ରା ଆହୁରି ବଢ଼ିଯାଏ । ମୁଁ ତଳକୁ ମୁହଁ ପୋତି କାନ୍ଦେ । ମୁଁ ଏ ସ୍କୁଲର ମାଷ୍ଟ୍ରମାନଙ୍କୁ ଅନ୍ତରର ସହ ଘୃଣା କଲି । ପାଠ ପଢ଼ାରେ ଆଗ୍ରହ ଭାଙ୍ଗିଗଲା । ଗାଁ' ପିଲା ଓ ମାଷ୍ଟ୍ରମାନେ ଏମାନଙ୍କଠାରୁ ବହୁତ ଭଲ ବୋଲି ମନେ ହେଲା ।

ଏ ସମୟର ଗୋଟିଏ ହୃଦୟସ୍ପର୍ଶୀ ଘଟଣା ଆଜିଯାଏ ମନେ ଅଛି । ମୋ ଗୋଡ଼ରେ ଘା' ହୋଇଥାଏ । ମୁଁ ଗୋଟିଏ ଗୋଡ଼କୁ ଟେକି ହାମୁଡ଼େଇ ଚାଲୁଥିଲି । ଏହିପରି ଅବସ୍ଥାରେ ମୁଁ ପଡ଼ିଶା ଘରର ଭଦ୍ର ମହିଳାଙ୍କୁ ଚାଉଳ ଧାର ମାଗିଗଲି । ଅତି ସୁନ୍ଦର ସ୍ତ୍ରୀ ଲୋକ ଜଣେ ମୋତେ ପଚାରିଲେ ମୋର କଣ ହୋଇଛି । ପୁଣି ପଚାରିଲେ ତୁମର କଣ କେହି ନାହାନ୍ତି । ତୁମେ ଏତେ କଷ୍ଟରେ ଏଠି ରହିଛ କାହିଁକି ? ଏତିକି ନରମ କଥା ଶୁଣିଲା ପରେ ମୋର କୋହ ଉଠିଲା । ମୁଁ ସମ୍ଭାଳି ନପାରି କାନ୍ଦି ଉଠିଲି । ସେ ମୋର ଲୁହ ପୋଛିଦେଲେ ଏବଂ ଚାଉଳ ଧରି ଆମ ରନ୍ଧାଘରେ ଆମ ପାଇଁ ରାନ୍ଧି ଦେଇଗଲେ । କି ସୁନ୍ଦର ଓ କି ଦୟାଳୁ ଭଦ୍ରମହିଳା ! ପୁରାଣରେ ଶୁଣିଥିବା ଲକ୍ଷ୍ମୀଙ୍କ ପରି ତାଙ୍କୁ ମୋର ମନେହେଲା । ତାଙ୍କୁ ଦେଖିବା ପାଇଁ ମୋର ବହୁତ ଇଚ୍ଛା ହୁଏ । ବୋଉ କଥା ମନେପଡ଼େ । ଭାବେ, ଇଏ ମତେ ପୁଅ କରନ୍ତେ କି ? ସେ ବାରିକି ଆସିଲେ ମୁଁ କବାଟ ଫାଙ୍କ ଦେଇ ଚାହୁଁଥାଏ, କିନ୍ତୁ ତାଙ୍କ ଘରକୁ ଯିବା ଲାଗି ମୋତେ ଲାଜ ଲାଗେ । ଜୀବନ ସାରା ତାଙ୍କର ଗୋରା ତକତକ ଚେହେରାଟି ମୋ ଆଖି ଆଗରେ ଆସି ଦେଖାଦିଏ । ତାଙ୍କ ପରି ଆଉ କେତେକ ସ୍ତ୍ରୀଲୋକ ମୋତେ ଜୀବନସାରା ଆନ୍ତରିକ ଭାବରେ ସାହାଯ୍ୟ କରିଛନ୍ତି ।

କିଛିଦିନ ପରେ ବୈଦ୍ୟନାଥ ବାବୁଙ୍କ ସ୍ତ୍ରୀ ଆସିଲେ । ସେ ଆସିବା ପରେ ମୋତେ ରନ୍ଧାକାର୍ଯ୍ୟ ଛାଡ଼ି ଚାକର କାମ କରିବାକୁ ପଡ଼ିଲା । ବିଚରା ବୈଦ୍ୟନାଥ ବାବୁ କିଛି ଜାଣି ପାରନ୍ତି ନାହିଁ । ମୁଁ ଦାଣ୍ଡ ବାରଣ୍ଡାରେ ଶୁଏ ଏବଂ ରାତିରେ କୁଆଡ଼େ ମା' ବୋଉ ବୋଲି ବାଉଳେଇ ହୁଏ । ଆଗ ଦୁଆରୀ ଜଣେ ଲୁଗା ବିକାଳି ମୋ ବାଉଳି ଶୁଣେ । ତାଛଡ଼ା ମୋର ମନେ ହେଉଛି ତାକୁ ମଧ ପଡ଼ିଶା ଘରର ସେ ଭଦ୍ର ମହିଳା ଜଣକ ମୋ ବୁଢ଼ୀମା ପାଖକୁ ଖବର ଦେବାକୁ କହିଥିଲେ । ମୁଁ ଘରକୁ କିଛି ଲେଖେ ନାହିଁ । କାରଣ ମୁଁ ଚାଲିଗଲେ ମୋ ପଢ଼ା ବନ୍ଦ ହୋଇଯିବ । ସେହି ଲୁଗା ବିକାଳି ଆମ ଗାଁ'କୁ ଆସେ । ସେ ବୁଢ଼ୀମାଙ୍କୁ ସବୁ କହିଲା । ବୁଢ଼ୀମା ଜିଦ୍‌ଧରି ବସିଲେ ମୋତେ ଆଉ ସେଠାକୁ ନଛାଡ଼ିବାକୁ । ଭାଇନା ମଧ ରାଜି ହୋଇଗଲେ । ତାଛଡ଼ା ବି ମୋର ପଢ଼ା ଆଗେଇଲା ନାହିଁ । ବର୍ଷେ ଅଧାରୁ ମୋତେ ପୁଣି ଗାଁ'କୁ ଫେରିବାକୁ ହେଲା । ଇଂରାଜୀ ସ୍କୁଲର ଚତୁର୍ଥ ଶ୍ରେଣୀ ପାଠ ସେତିକିରେ ରହିଲା । ମୁଁ ଗାଁ'ରେ ଅପର ପ୍ରାଇମେରୀ ଅର୍ଥାତ୍ ପଞ୍ଚମ ଶ୍ରେଣୀ ପାଶ୍ କରିଥିଲେ ସୁଦ୍ଧା ଇଂରାଜୀ ପଢ଼ିନଥିବାରୁ ଇଂରାଜୀ ସ୍କୁଲରେ ଚତୁର୍ଥ ଶ୍ରେଣୀରେ ପଢୁଥିଲି ।

ଗାଁ'କୁ ଫେରି ମୁଁ ଆଶ୍ୱସ୍ତିର ନିଃଶ୍ୱାସ ମାରିଲି । ପୁରୁଷୋତ୍ତମପୁରଟି ମୋ ପାଇଁ ଭୟଙ୍କର ଜାଗା ହୋଇ ରହିଗଲା । ସେହି ମାଆପରି ସ୍ତ୍ରୀ ଲୋକଟିକୁ ଛାଡ଼ିଦେଲେ ଆଉ ସମସ୍ତଙ୍କୁ ମୁଁ ଘୃଣା କରୁଥିଲି । ମୋର ମନେହେଲା, ମୋର ଜନ୍ମ ଯେପରି ମୋର ଇଚ୍ଛାଗତ ନଥିଲା । ସେହିପରି ଏହିସବୁ ଘଟଣା ମଧ ମୋ ଅଜ୍ଞାତସାରରେ ଅନ୍ୟମାନେ ମୋ ଉପରେ ଖାଲି ଲଦିଦେଇ ଯାଉଛନ୍ତି । ଚକର ଛେଉଣ୍ଡର ଅନ୍ତତଃ ସ୍ୱାଧୀନତା ଅଛି...ଗାଁ'ର ପ୍ରଜାପତିମାନଙ୍କ ସାଙ୍ଗରେ ବୁଲି ପାରୁଛି...ଯାହା ଇଚ୍ଛା ତାହା କରିପାରୁଛି । ପୁରୁଷୋତ୍ତମପୁର ପରିବେଶରେ ଘଟିଥିବା ଅପମାନଠାରୁ ଘାସକଟା, ନଡ଼ାକଟା ବେଳର ଅପମାନ ଅନେକ କମ୍ । ମୋର ମନ ଅନେକଦିନ ଧରି ବିଦ୍ରୋହୀ ହୋଇରହିଲା । କିନ୍ତୁ କ୍ରମେ ଝାଡ଼େଶ୍ୱରର ମୁକ୍ତ ବାୟୁମଣ୍ଡଳରେ ରାମଚଣ୍ଡୀଙ୍କ ସାନ୍ନିଧରେ ମୋର ବଞ୍ଚିରହିବାର ପୂର୍ବ ମାଦକତା

ଫେରିଆସିଲା । ପୁଣି ମୁଁ ଚାଲିଲି ଗିରି ନିର୍ଝରର ଝରଝର ଝରଣାପରି ସ୍ୱାଧୀନ । ମୋତେ ଅପମାନ ଦେବା ପାଇଁ ଓ ଚାକର କରି ରଖିବାର ଆଉ କାହାରି ଶକ୍ତି ନଥିଲା ।

ଭାଇନା ନିଜ ବୃତ୍ତି ଓ ଟିଉସନ ଟଙ୍କାରେ ନିଜେ ପଢ଼ନ୍ତି ଏବଂ ଆମକୁ କିଛି ଟଙ୍କା ପଠାନ୍ତି । ମାସକୁ ପାଞ୍ଚଟଙ୍କା ଦେଲେ ଆମେ ଚଳିଯାଉ । ୧୯୩୦ ମସିହାରେ ସେ ବି.ଏ. ପାଶ୍ କଲେ । ତାପରେ ତାଙ୍କର ବିବାହ ପ୍ରସ୍ତାବ ଆସିଲା । ଖଲ୍ଲିକୋଟ ରାଜାଙ୍କର ପ୍ରଧାନ ପୁରୋହିତଙ୍କର ଏକମାତ୍ର ଝିଅ ସହିତ ଭାଇନାଙ୍କର ବିବାହ ହେଲା । କେବଳ ମୋର ପଢ଼ାପଢ଼ିର ସୁବିଧା ଆଶାରେ ସେ ସେଠାରେ ବିବାହ କଲେ ।

ଏହି ବିବାହ ଆମ ଗାଁ'ରେ ଆମର ମର୍ଯ୍ୟାଦା ବଢ଼ାଇବାରେ ପୁଣି ଥରେ ସାହାଯ୍ୟ କଲା । ଭାଇନାଙ୍କର ଜଣେ ଶଳା ବୀରଭଦ୍ର ଆଚାର୍ଯ୍ୟ କୋଦଳାରେ ରେଭିନ୍ୟୁ ଇନ୍‌ସପେକ୍ଟର ଥିଲେ । ସେ ଯୁଗରେ ଏମାନେ ବଡ଼ ପ୍ରତାପଶାଳୀ ଥିଲେ । ସେ ଯେତେବେଳେ ଆମ ଗାଁ'ରେ ଆସି ପହଞ୍ଚିଗଲେ, ତାଙ୍କୁ ଦେଖିବା ପାଇଁ ସମସ୍ତେ ଭିଡ଼ ଜମାଇଲେ । ଗାଁ'ର ମୁଖିଆ କାର୍ଜି ଓ କରଣ ତାଙ୍କର ଅଧସ୍ତନ ଲୋକ । ଭାଇନା ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ବି.ଏ. ପାଶ୍ କରିଥାନ୍ତି । ରେଭିନ୍ୟୁ ଇନ୍ସପେକ୍ଟର ତାଙ୍କର ଶଳା ହେବେ । ସାମନ୍ତବାଦୀ ଦେଶରେ ଏହାଠାରୁ ବଡ଼ ମର୍ଯ୍ୟାଦା ଆଉ କଣ ହୋଇପାରେ । ସେ ପାଖାପାଖି ଅଞ୍ଚଳରୁ ସେ ସମୟରେ କେହି ବୋଧହୁଏ ବି.ଏ. ପାଶ୍ କରି ନଥିଲେ । ଆମ ଗାଁ'ରେ ଜଣେ ସୁଦ୍ଧା ମାଟ୍ରିକ୍ ନଥିଲେ । ତେଣୁ ଆମର ସାମାଜିକ ସ୍ଥିତି ହଠାତ୍ ବଢ଼ିଗଲା । ୧୯୩୦ ମସିହାରେ ମୁଁ ଖଲ୍ଲିକୋଟ ସ୍କୁଲରେ ପଞ୍ଚମ ଶ୍ରେଣୀରେ ଆସି ଯୋଗ ଦେଲି ।

ଏହି ବିବାହ ପରିପ୍ରେକ୍ଷୀରେ ଭାଇନାଙ୍କର ସେଠାରେ ବିବାହ ସମ୍ବନ୍ଧରେ ଗୋଟିଏ ଉଲ୍ଲେଖନୀୟ ଘଟଣା ବର୍ଣ୍ଣନା କରିବା ଉଚିତ । ଏ ସଂପର୍କରେ ଏ ଅଞ୍ଚଳରେ ଗୋଟିଏ ଜନଶ୍ରୁତି କିମ୍ବଦନ୍ତୀରେ ପରିଣତ ହୋଇଯାଇଛି । ନନା ଜଣେ ବିଖ୍ୟାତ ରାମଚଣ୍ଡୀ ସାଧକ ଥିଲେ । ସେ ବହୁ ସମୟ ଧରି ରାମଚଣ୍ଡୀଙ୍କ ଆଗରେ ନିଜ ରଚିତ ସଂସ୍କୃତ ଚଣ୍ଡୀ ଜଣାଣ ଆବୃତ୍ତି କରନ୍ତି । ସେତେବେଳେ ପାଖକୁ କେହି ଯାଆନ୍ତି ନାହିଁ । ରାମଚଣ୍ଡୀ କୁଆଡ଼େ ନନାଙ୍କର ଡାକରେ ପ୍ରସନ୍ନ ହୋଇ ଉତ୍ତର ଦିଅନ୍ତି ବୋଲି ଏ ଅଞ୍ଚଳରେ ଲୋକେ କହନ୍ତି ।

ଯାହାହେଉ, ଏ ପ୍ରକାର ସୁଖ୍ୟାତି ଯୋଗୁ ଖଲ୍ଲିକୋଟର ତତ୍କାଳୀନ ରାଜା ତାଙ୍କର ନିଜ ପରମଗୁରୁଙ୍କୁ ନନାଙ୍କ ପାଖକୁ ପଠାଇଲେ ତାଙ୍କୁ ଅନୁରୋଧ କରିବା ପାଇଁ ଯେ ନନା ରାଜାଙ୍କ ପାଇଁ ଚଣ୍ଡୀ ସାଧନା କରିବେ– ଯାହା ଫଳରେ ସେ ଗୋଟିଏ ବଡ଼ ବିବାଦୀୟ ଘଟଣାରେ ଆଇନ ଅଦାଲତରେ ଜୟଯୁକ୍ତ ହେବେ । ସେ ଆଉ ଜଣେ ଜମିଦାରଙ୍କ ବିରୁଦ୍ଧରେ ଅଦାଲତର ସାହାଯ୍ୟ ନେଇଥିଲେ ଏବଂ ତାଙ୍କୁ ଦେଶର ସେତେ ବେଳର ସର୍ବୋଚ୍ଚ ଅଦାଲତ ଇଂଲଣ୍ଡର ପ୍ରିଭି କାଉନସିଲ ପର୍ଯ୍ୟନ୍ତ ଯିବାକୁ ପଡୁଥାଏ । ରାଜା ପରମ ଗୁରୁଙ୍କ ଜରିଆରେ ନନାଙ୍କୁ ଜମି, ଘର, ଖଲ୍ଲିକୋଟ ଗଡ଼ରେ ମାଷ୍ଟ୍ର ଚାକିରି ଦେବା ପାଇଁ ପ୍ରଲୋଭନ ଦେଖାଇଥିଲେ । କିନ୍ତୁ ନନା ଏହି ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିଥିଲେ । କାରଣ ତାଙ୍କ ମତରେ ଚଣ୍ଡୀ ସାଧନା କାହାରି ଅପକାର ପାଇଁ କଦାପି କରାଯାଇପାରିବ ନାହିଁ । ରାଜାଙ୍କର ବାର୍ତ୍ତାବହ ପରମଗୁରୁ କୁଆଡ଼େ ଦୁଇଥର ନନାଙ୍କ ପାଖକୁ ଏ ସଂପର୍କରେ ଯାଇଥିଲେ ।

କିନ୍ତୁ ନନା କୌଣସିମତେ ରାଜି ହୋଇନଥିଲେ । ଏ ଘଟଣାରେ ପରମଗୁରୁ ଏତେ ଅଭିଭୂତ ହୋଇଯାଇଥିଲେ ଯେ ସେ ତାଙ୍କର ଝିଅ ସହିତ ଭାଇନାଙ୍କ ବିବାହ କଥା ଉଠାଇଥିଲେ । ସେତେବେଳକୁ ଭାଇନା ସ୍କୁଲରେ ପଢୁଥିଲେ । ନନା କଥାଟିକୁ ବିଶେଷ ଗୁରୁତ୍ୱ ଦେଇ ନଥିଲେ । କାଳକ୍ରମେ ପରମଗୁରୁ ଓ ମୋ ନନାଙ୍କର ଦେହାନ୍ତ ହୋଇଗଲା । ତଥାପି ବହୁଦିନ ପରେ ଭାଇନାଙ୍କର ବିବାହ ସେଠାରେହିଁ ହୋଇଥିଲା ! ଅନ୍ୟମାନଙ୍କ ମତରେ ଏଥିରେ ରାମଚଣ୍ଡୀଙ୍କର ଆଶୀର୍ବାଦ ରହିଥିଲା । ତାଛଡ଼ା ସେ ଅଞ୍ଚଳର ଲୋକେ ଆମମାନଙ୍କର ଭବିଷ୍ୟତ ଜୀବନରେ କୃତିତ୍ୱ କେବଳ ନନାଙ୍କର ସାଧନା ଯୋଗୁହିଁ ସଂଭବ ହୋଇଛି ବୋଲି କହନ୍ତି । ଆମମାନଙ୍କର କୁଆଡ଼େ ଏଥିରେ କୌଣସି ବ୍ୟକ୍ତିଗତ ସାଧନା ବା କୃତିତ୍ୱ ନାହିଁ ।

ଚଣ୍ଡୀ ସାଧନାର କିମ୍ବଦନ୍ତୀକୁ ପୁନର୍ଜୀବିତ କରିବା ପାଇଁ ଆଉ ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରାଯାଇପାରେ । ଅଳ୍ପଦିନ ତଳେ ଝାଡ଼େଶ୍ୱରଠାରେ ଚଣ୍ଡୀ ସାଧନାରେ ନିୟୋଜିତ ହୋଇଥିବା ଜଣେ ଭଦ୍ରଲୋକ ମୋ ସହିତ ଦେଖା କଲେ । ନିଜ ଚଣ୍ଡୀ ସାଧନାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ପାଇଁ ସେ ଗୋଟିଏ କପୋଳକଳ୍ପିତ ଘଟନା ମୋ ଆଗରେ ବର୍ଣ୍ଣନା କଲେ । ସେ କୁଆଡ଼େ ସାଧନା କରୁ କରୁ ଲକ୍ଷ୍ୟ କଲେ ଯେ ରାମଚଣ୍ଡୀଙ୍କର ମୁହଁଟା ଟିକିଏ ସାମାନ୍ୟ ବଂକା । ଚଣ୍ଡୀଙ୍କର ମୁହଁ ତ କଦାପି ବଙ୍କା ହୋଇପାରିବ ନାହିଁ । ଏହା କିପରି ହେଲା ବୋଲି ଭାବି ଭାବି ସେ ବିବ୍ରତ ହୋଇପଡ଼ିଲେ । ଦିନେ ରାତିରେ ରାମଚଣ୍ଡୀ କୁଆଡ଼େ ତାଙ୍କୁ ଦେଖା ଦେଇ କହିଲେ ଯେ ବହୁବର୍ଷ ତଳେ ସେଠାକାର ବିଖ୍ୟାତ ସାଧକ ପଣ୍ଡିତ ରଥ (ମୋ ନନା) ବିହ୍ୱଳିତ ହୋଇ ଚଣ୍ଡୀ ପାଠ କଲାବେଳେ ରାମଚଣ୍ଡୀ କୁଆଡ଼େ ଅନ୍ୟମନସ୍କ ହୋଇଗଲେ । ତେଣୁ ସାଧକ ରଥ କୁଆଡ଼େ ରାମଚଣ୍ଡୀଙ୍କୁ ଗୋଟିଏ ଚଟକଣା ବସାଇ ଦେଇଥିଲେ । ଭକ୍ତର ମାଡ଼ରେ ତାଙ୍କର ମୁହଁ ସେହିଦିନଠାରୁ ବଙ୍କା ରହିଯାଇଛି । ଅନ୍ୟମାନଙ୍କ ଆଗରେ ଏପରି ବର୍ଣ୍ଣନା କରି ନିଜର ସାଧନା ବଢ଼ାଇବା ଉଦ୍ଦେଶ୍ୟରେ ଏପରି କାଳ୍ପନିକ ଗପ ସୃଷ୍ଟି କରିବା କଥା ବଡ଼ ସ୍ପଷ୍ଟ ଭାବରେ ଜଣାଯାଉଥିଲା । କିନ୍ତୁ ନନାଙ୍କର ସାଧନା ବିଷୟରେ ପ୍ରଚଳିତ କିମ୍ବଦନ୍ତୀ ଉପରେ ନିର୍ଭର କରି ସେ ନିଜର ପାଣ୍ଡିତ୍ୟ ପ୍ରତିପାଦନ ଯେ କରୁଥିଲେ, ଏଥିରେ ସନ୍ଦେହ ନାହିଁ । ଆଜି ପର୍ଯ୍ୟନ୍ତ ନନାଙ୍କର ଚଣ୍ଡୀ ସାଧନା ବିଷୟରେ ଏହିପରି ବହୁତ କଥା ସେ ଅଞ୍ଚଳରେ ଶୁଣାଯାଏ ।

ଆଉ ଥରେ କୁଆଡ଼େ ଗୋଟିଏ ଗାଁ'ରେ ବହୁପିଲା ବସନ୍ତରେ ମରିଗଲେ । ଗ୍ରାମ'ବାସୀମାନେ ନିଜକୁ ଚଣ୍ଡୀଙ୍କ ପାଖରେ ସାଧନା କରି ସେମାନଙ୍କର ଅନ୍ୟ ପିଲାମାନଙ୍କୁ ବଂଚାଇବା ପାଇଁ ଅନୁରୋଧ କଲେ । ନନା ସେମାନଙ୍କୁ ଅଭୟବାଣୀ ଦେଇଥିଲେ ଯେ ଆଉ କେହି ପିଲା ବସନ୍ତରେ ମରିବେ ନାହିଁ । ଏକଥା ସତ ହେବାରୁ ଗ୍ରାମବାସୀମାନେ ନନାଙ୍କୁ ଗୋଟିଏ ଫଳନ୍ତି ଆମ୍ବତୋଟା ଦାନ କରିବାକୁ ଆସିଥିଲେ । କିନ୍ତୁ ନନା ଚଣ୍ଡୀ ସାଧନା ପାଇଁ କୌଣସି ଅବଦାନ ନେବାକୁ ମନା କରିଥିଲେ । ଏହା କୁଆଡ଼େ ତାଙ୍କର ନୀତି ବିରୁଦ୍ଧ ଥିଲା । ଲୋକଙ୍କର ଉପକାର ପାଇଁ ଚଣ୍ଡୀ ସାଧନା କରାଯାଏ । ସେଥିପାଇଁ କୌଣସି ପାରିଶ୍ରମିକ ଗ୍ରହଣ କରିବା ନୀତି ବିରୁଦ୍ଧ ବୋଲି ତାଙ୍କର ମତ ଥିଲା । ଚଣ୍ଡୀ ସାଧନା ତାନ୍ତ୍ରିକ ସାଧନାଠାରୁ ବହୁତ ଭିନ୍ନ ବୋଲି ତାଙ୍କର ମତ ଥିଲା । ଅନ୍ୟର ମଙ୍ଗଳ କାମନା କରି ପ୍ରତିଦିନ ଘଣ୍ଟା ଘଣ୍ଟା ଧରି ଚଣ୍ଡୀ ସାଧନା ପଛରେ କି ବିରାଟ ଭାରତୀୟ

ଆଧ୍ୟାତ୍ମିକ ମହାନୁଭବତା ରହିଛି, ତାହା ସହଜରେ ଅନୁମେୟ । ଆଜିକାଲି ତ ତାନ୍ତ୍ରିକମାନେ ବେଶୀ ପରାକ୍ରମଶାଳୀ ହୋଇଉଠୁଛନ୍ତି କେବଳ ପ୍ରଭାବଶାଳୀ ଲୋକଙ୍କୁ ନାନା ଭାବରେ ପ୍ରଲୋଭିତ କରି । ନିରାସକ୍ତ ଦେବୀ ସାଧନା ତନ୍ତ୍ର ସାଧନାଠାରୁ ବହୁତ ତଫାତ୍ ବୋଲି ମୋର ମନେହୁଏ ।

ମୋଟାମୋଟି ଭାବରେ କହିବାକୁ ଗଲେ ରାମଚଣ୍ଡୀ ଆମ ପରିବାରର ନାନା ଦୁଃଖ, ସୁଖର ମୂକ ସାକ୍ଷୀ । ମୋର ମନେଅଛି, ନନା ଥିଲାବେଳେ ରାମଚଣ୍ଡୀଙ୍କ ନାମରେ ହିଁ ଆମର ସବୁ କାମ ହୁଏ । ଆମ୍ବ କିଣା ହୋଇ ଆସିଲେ ପ୍ରଥମେ ରାମଚଣ୍ଡୀଙ୍କୁ ଭୋଗ ନ ଲଗେ ତାକୁ ଆମମାନଙ୍କର ଖାଇବାର ଉପାୟ ନାହିଁ । ଯାହା ଭଲ ଜିନିଷ ହେବ, ପ୍ରଥମେ ରାମଚଣ୍ଡୀଙ୍କୁ ସମର୍ପଣ କରାଯାଏ-ଦେହ ଖରାପ ହେଲେ ଔଷଧ ରାମଚଣ୍ଡୀଙ୍କ ନାମରେ ମନ୍ତ୍ରା ହୁଏ । ସଂଧ୍ୟାରେ ରାମଚଣ୍ଡୀଙ୍କ ନାମରେ ଦୀପ ବସେ । ଫଳରେ ମୋ ପିଲା ଦିନଯାଏ ରାମଚଣ୍ଡୀଙ୍କ ହେପାଜତରେ ହିଁ ଯେପରି ଆମେ ବଢ଼ିଛୁ । ତେଣୁ ଆମର ସମସ୍ତ କୃତିତ୍ୱ ରାମଚଣ୍ଡୀଙ୍କ ଯୋଗୁ ବୋଲି ଯେଉଁ ଜନଶ୍ରୁତି ରହିଛି ସେଥିରେ ତାହା ସ୍ୱାଭାବିକ ବୋଲି ମନେହୁଏ ।

ମୁଁ ନାସ୍ତିକ ହେବାର ବହୁ ବର୍ଷ ପରେ ଯେତେବେଳେ ଝାଡ଼େଶ୍ୱର ଗଲି, ରାମଚଣ୍ଡୀଙ୍କୁ ଗୋଟିଏ ନମସ୍କାର ନ କରି ରହିପାରିଲି ନାହିଁ । ଗୋଟିଏ ଠାକୁରାଣୀ ହିସାବରେ ନୁହେଁ, ଆମ ପରିବାରର ଜଣେ ମୂକ ସାକ୍ଷୀ ହିସାବରେ ମୋର କେବଳ ସମ୍ମାନ ଜଣାଇଲି ।

■ ■ ■

## ୪

# ଖଲ୍ଲିକୋଟଗଡ଼ : ମାନସିକ ବିକାଶର ଅଭିନବ ଅନୁଭୂତି

ନନା ବୋଉ ମରିବାର ପ୍ରାୟ ଛଅବର୍ଷ ପରେ ମୁଁ ଆଉ ଗୋଟିଏ ଜୀବନର ଆସ୍ୱାଦ ଖଲ୍ଲିକୋଟରେ ପାଇଲି । ଭାଇନାଙ୍କ ଶ୍ୱଶୂର ଘରେ ମୋର ବହୁତ ଆଦର ଯତ୍ନ ମିଳିଲା । ସାନ ଜ୍ୱାଇଁ ହିସାବରେ ମୋର ପଦ ମର୍ଯ୍ୟାଦା ବଢ଼ିଲା; ଅନ୍ୟାନ୍ୟ ସୁବିଧା ମଧ ସେହି ପରିମାଣରେ ମିଳିଲା । ମୋ ଖାଇବାରେ ସମସ୍ତେ ବହୁତ ଯତ୍ନ ନିଅନ୍ତି । ଘରେ ଭାଇନାଙ୍କର ଶାଶୁ, ଦୁଇଶଳା, ଜଣେ ଶଳାଭାଉଜ, ତାଙ୍କର ଦୁଇପିଲା ଓ ନବବିବାହିତା ମୋର ଭାଉଜ ଥାନ୍ତି । ବଡ଼ଭାଇ ବୀରଭଦ୍ର ଆଚାର୍ଯ୍ୟ ଛତ୍ରପୁରରେ ଥାନ୍ତି । ତାଙ୍କ ତଳଭାଇ ବାସୁଦେବ ଆଚାର୍ଯ୍ୟ ରଜାଘରେ ଚାକିରି କରନ୍ତି ଏବଂ ସାନ ଗୌରୀଶଙ୍କର ଆଚାର୍ଯ୍ୟ ଭାଇନାଙ୍କର ସମବୟସୀ । ସେ ସଂସ୍କୃତ ପଢୁଥାନ୍ତି । ପାଖଘରେ ସେମାନଙ୍କର ସବାବଡ଼ ଭାଇ ପରମଗୁରୁ ହରିହର ଆଚାର୍ଯ୍ୟ ତାଙ୍କ ପିଲାଙ୍କୁ ନେଇ ରହୁଥିଲେ । ତାଙ୍କର ଅନେକଗୁଡ଼ିଏ ପୁଅ । ସମସ୍ତେ ପଢୁଥିଲେ । ଏମାନଙ୍କ ଘରେ ପଢ଼ାପଢ଼ିର ବାତାବରଣ ଖୁବ୍ ଭଲ । ସମସ୍ତଙ୍କର ସ୍ନେହ ଆଦର ଓ ପଢ଼ାପଢ଼ିରେ ଉପଯୁକ୍ତ ସାହାଯ୍ୟ ଯୋଗୁଁ ମୁଁ ଭଲ ପଢ଼ିଲି ଏବଂ କ୍ଲାସ୍‌ରେ ପ୍ରଥମ ଦ୍ୱିତୀୟ ହେଲି ।

କ୍ରମେ ଭାଉଜଙ୍କ ଘରର ସ୍ନେହବୋଳା ପରିବେଶ ମୋତେ ବହୁତ ଭଲ ଲାଗିଲା । ଭାଉଜଙ୍କ ବୟସ ସେତେବେଳକୁ ପ୍ରାୟ ତେର । ସେ ମୋତେ ଦେଖା ଦିଅନ୍ତି ନାହିଁ । ଅନ୍ୟମାନେ ମୋତେ ସାନଜ୍ୱାଇଁ ବୋଲି ଡାକନ୍ତି । ପିଲାମାନେ ପିଉସା ବୋଲି କହନ୍ତି । ଭାଇନାଙ୍କ ଶାଶୁ ଭଲଭଲ ଖାଇବା ଜିନିଷ ମୋ ପାଇଁ ରଖିଥାନ୍ତି । ବାସୁଦେବ ଓ ଗୌରୀଶଙ୍କରଙ୍କ ସ୍ନେହଶ୍ରଦ୍ଧା ଭୁଲିବାର ନୁହେଁ । ସାଇପଡ଼ିଶାର ଲୋକେ ମଧ ମୋତେ ଖାତିରି କରନ୍ତି । ସେମାନଙ୍କ ସ୍ତ୍ରୀମାନେ ମୋର ଭାଉଜ ଲେଖା । ସମସ୍ତେ ମୋତେ ଥଟ୍ଟା କରନ୍ତି । ଏପରି ପରିବେଶ ଭିତରେ ନନା ବୋଉଙ୍କ ପରେ ଛଅ ବର୍ଷ ପର୍ଯ୍ୟନ୍ତ ଟକର ଛେଉଣ୍ଡ ହିସାବରେ ମୋର ଯେଉଁ ହୀନମନ୍ୟତା ଓ ଅବହେଳିତ ଭାବ ଥିଲା, ତାହା କ୍ରମେ ଶିଥିଳ ହୋଇ ଆସିଲା । ମୋର ପଦମର୍ଯ୍ୟାଦା ସହିତ ଆତ୍ମସମ୍ମାନ ଓ ଆତ୍ମବିଶ୍ୱାସ ବହୁତ ବଢ଼ିଗଲା । ସ୍କୁଲରେ ଭଲ ପଢ଼ିଲି ତେଣୁ ପଢ଼ା ପାଇଁ ଯେଉଁ ଆତୁରତା ତଥା ଆକାଂକ୍ଷା

ଥିଲା ତାହା ମଧ୍ୟ ପୂରଣ ହେବାକୁ ଲାଗିଲା । ଜୀବନର ଏହି ନୂତନ ଅଧ୍ୟାୟଟି ମୋ ପାଇଁ ଗୋଟିଏ ବିଶିଷ୍ଟ ପଥ ନିର୍ଦ୍ଦେଶକ ମାଇଲ ଖୁଣ୍ଟି ହିସାବରେ ରହିଗଲା । ମୁଁ ଯେତେବେଳେ ଯେଆଡ଼େ ଯାଏ, ଖଲ୍ଲିକୋଟ ଆଡ଼େ ନିଶ୍ଚିତ ଭାବରେ ବୁଲିଯାଏ । ଗାଁ'କୁ ମଧ୍ୟ ଯିବାର ମୋର ପ୍ରବଳ ଆଗ୍ରହ । ଖାଲି ରାସ୍ତାଘାଟ ସୁବିଧା ନଥିବାରୁ ଗାଁ'କୁ ସହଜରେ ଯାଇହୁଏ ନାହିଁ ।

ପାଠ ପଢ଼ିବା ଛଡ଼ା ଏଠାରେ ପ୍ରଥମ ସଭ୍ୟଜଗତର କିଞ୍ଚିତ୍ ଆଭାସ ମିଳିଲା । ସମାଜ ଖବର କାଗଜ ପଢ଼ିବାର ସୁବିଧା ପାଇଲି । ନାନା ରାଜନୈତିକ ଘଟଣା ବିଷୟରେ ଆଲୋଚନା ଚାଲିଥାଏ । ଖଲ୍ଲିକୋଟ ରାଜା ଦେଶ ମିଶ୍ରଣ ଆନ୍ଦୋଳନର ଅଗ୍ରଣୀ ଥିବାରୁ ସେ ସମ୍ବନ୍ଧରେ ଆଲୋଚନା ତଥା ସଭାସମିତି ହେଉଥାଏ । ମହାତ୍ମା ଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନର ବାର୍ତ୍ତା ସେଠାରେ ଜାଗରଣ ସୃଷ୍ଟି କରିଥାଏ । ଖଲ୍ଲିକୋଟ ରାଜପରିବାରର ଜଣେ ଶିକ୍ଷିତ ଭଦ୍ରଲୋକ ଗୌରୀଶଙ୍କର ସାମନ୍ତ କଂଗ୍ରେସରେ ଯୋଗ ଦେଇଥାନ୍ତି ବୋଲି ଚାରିଆଡ଼େ ଚହଳ ପଡ଼ିଯାଇଥାଏ । ସେ କଂଗ୍ରେସ ଆଶ୍ରମରେ ଯାଇ ବସନ୍ତି । ବହୁ କଂଗ୍ରେସ କର୍ମୀ ସେଠାରେ ସଭା ସମିତି କରନ୍ତି । ଜଣେ ଅଳ୍ପବୟସ୍କା ବିଧବା ହେମଲତା ଦେବୀ ସେତେବେଳେ କଂଗ୍ରେସରେ ଯୋଗ ଦେଇଥାନ୍ତି । ପରେ ଗୌରୀଶଙ୍କର ସାମନ୍ତଙ୍କର ତାଙ୍କ ସହିତ ବିବାହ ହୋଇଥିଲା । ଗୌରୀଶଙ୍କର ସାମନ୍ତ କମ୍ ବୟସରେ ମୃତ୍ୟୁମୁଖରେ ପଡ଼ିଥିଲେ । ସେ ଥିଲେ ଜଣେ ବଳିଷ୍ଠ ଆଦର୍ଶବାଦୀ । ତେଣୁ ତାଙ୍କୁ ସେ ଅଞ୍ଚଳରେ ଲୋକେ ବହୁତ ଭକ୍ତି କରୁଥିଲେ । ସେ ସେଠାକାର କଂଗ୍ରେସର ଜଣେ ବିଶିଷ୍ଟ ନେତା ଥିଲେ ।

ମୁଁ କଂଗ୍ରେସ ଆଶ୍ରମକୁ ନିୟମିତ ଯାଉଥିଲି । ରାଜନୀତିରେ ମୋର ବହୁତ ଆଗ୍ରହ ବଢ଼ିଗଲା । ଗୌରୀଶଙ୍କର ବାବୁ ଓ ହେମଲତା ଦେବୀ ମୋତେ ବହୁତ ଭଲ ପାଉଥିଲେ । ଚକର ଛେଉଣ୍ଡକୁ ଏପରି ଜଣେ ମିଷ୍ଟଭାଷୀ ଶିକ୍ଷିତ ଯୁବକ ଓ ଆଉ ଜଣେ ସ୍ନେହଶୀଳା ରମଣୀଙ୍କୁ ଅତ୍ୟନ୍ତ ଭଲ ଲାଗିବାର କଥା । ସେମାନଙ୍କ କଥା ମୁଁ ଯେପରି ପିଇ ଯାଉଥିଲି । ତାଙ୍କ ପାଖେ ପାଖେ ରହିବାକୁ ମୋତେ ବହୁତ ଭଲ ଲାଗୁଥିଲା । ପିଲାମାନଙ୍କର ବାନରସେନା ଶୋଭାଯାତ୍ରାରେ ମୁଁ ଯାଉଥିଲି । ଗୋଟିଏ ଗୀତ ଲେଖିଥିଲି । ଶୋଭାଯାତ୍ରାରେ ବୋଲିବା ପାଇଁ ତାର ପ୍ରଥମ ପଦଟି ମନେଅଛି । ''ଆସ ଆସ ଭାଇ, ଗାନ୍ଧୀ ସଙ୍ଗେ ମିଶିଯିବା ପାଇଁ ।'' ତାପରେ ଥିଲା ଛବିଶିଟି ତିନିଧାଡ଼ି ବିଶିଷ୍ଟ ପଦ । ଏହି ଗୀତ ଗାଇ ଆମେମାନେ କଂଗ୍ରେସ ପତାକା ଧରି ଚାଲୁଥିଲୁ । ଥରେ ଅଧେ ଅଫିମ ଦୋକାନ ଆଗରେ ପିକେଟିଂ କରି କିଛି ବେତ ମାଡ଼ ମଧ୍ୟ ଖାଇଛି । କିନ୍ତୁ ଗୌରୀଶଙ୍କର ବାବୁ ମୋତେ ସବୁବେଳେ ଉପଦେଶ ଦେଉଥିଲେ ଯେ ଗ୍ରାଜୁଏଟ୍ ହେବା ପୂର୍ବରୁ ରାଜନୀତିରେ ମୁଁ ଯେପରି ନ ମିଶେ । ବାରମ୍ବାର ସେ ମୋତେ ଏ ବିଷୟରେ ତାଗିଦ୍ କରୁଥିଲେ । କହୁଥିଲେ- ଦେଶ ସ୍ୱାଧୀନ ହେଲା ପରେ ଅଶିକ୍ଷିତ ହୋଇ ନେତା ହୋଇଥିବା ଲୋକମାନଙ୍କର କି ମୂଲ୍ୟ ରହିବ ? ସେ ନିଜେ ଗ୍ରାଜୁଏଟ୍ ଥିଲେ । ସେ ମୋତେ ଉପଦେଶ ଦେଇ ନଥିଲେ ମୁଁ ହୁଏତ ରାଜନୀତିରେ ପିଲାବେଳୁ ଆହୁରି ଦୂରକୁ ଚାଲି ଯାଇଥାନ୍ତି । ପାଠପଢ଼ାରେ ସେତିକିରେ ଡୋରି ବନ୍ଧା ହୋଇଥାନ୍ତା । ଅବଶ୍ୟ ପ୍ରଥମ ଜୀବନରେ ରାଜନୀତି ଓ ଦେଶ କାମ ପାଇଁ ଯେଉଁ ମୂଳଦୁଆ ପଡ଼ିଲା, ତାର ସୁଦୃଢ଼ ଭିତ୍ତି ଜୀବନଯାକ ରହିଯାଇଥିଲା । ପର ଜୀବନରେ

ନିଜକୁ ରାଜନୀତିର ଖରସ୍ରୋତ ବାହାରେ ରଖିବାକୁ ଯେତେ ଚେଷ୍ଟା କଲେ ମଧ୍ୟ ମଝିରେ ମଝିରେ ବାଜା ବାଜିଲେ ନାଚିଲାବାଲାଙ୍କ ଗୋଡ଼ ଉଠିଯିବା ପରି ମୁଁ ମଧ୍ୟ ଟାଣି ହୋଇ ମଝି ସ୍ରୋତକୁ ଚାଲି ଆସୁଥିଲି । ଯାହାହେଉ, ଶେଷ ପର୍ଯ୍ୟନ୍ତ ମୁଁ ଏଥିରେ ଟାଣି ହୋଇ ଯାଇନାହିଁ । ଏଥିପାଇଁ ମୁଁ ବର୍ତ୍ତମାନ ନିଜକୁ ଧନ୍ୟବାଦ ଦେଉଛି । କି ବୀଭତ୍ସ ଏଇ ରାଜନୀତିର ରୂପ ବର୍ତ୍ତମାନ ! ଡକାୟତମାନଙ୍କର ରାଜ୍ୟ ଶାସନ ଗଣତନ୍ତ୍ର ନାମରେ ଚାଲିଛି ! ସ୍ୱାର୍ଥତ୍ୟାଗୀ ନେତାମାନେ ସ୍ୱାର୍ଥଭୋଗୀ ହୋଇପଡ଼ିଛନ୍ତି । ଏପରିକି ଗାନ୍ଧୀ ନେହେରୁଙ୍କ ପରି ମହାନ ନେତାଙ୍କ ସ୍ଥାନରେ ଜଣେ ଅନଭିଜ୍ଞ ଏବଂ ସ୍କୁଲ ଛାତ୍ରୀ ପରି ଲିଖିତ ଲେଖାକୁ ସଭାରେ ଭୁଲଭାଲ କରି ପଢୁଥିବା ନକଲି ଗାନ୍ଧୀ ନାମ ଧରି ଇଟାଲୀୟ ଭଦ୍ରମହିଳା ସୋନିଆ ଗାନ୍ଧୀଙ୍କୁ ଭାରତର ପ୍ରଧାନ ମନ୍ତ୍ରୀ ହେବା ପାଇଁ କଂଗ୍ରେସଦଳ ବାଛିଲାଣି ।

ଗୌରୀଶଙ୍କର ସାମନ୍ତ ଓ ହେମଲତା ଦେବୀଙ୍କ ସାଙ୍ଗରେ ଦେଖାହୋଇ ନଥିଲେ ହୁଏତ ରାଜନୀତି ମୋର ଅନଭିଜ୍ଞ କୋମଳ ମନରେ ଏପରି ଭାବରେ ଗଭୀର ରେଖାପାତ କରି ପାରିନଥାନ୍ତା । ଆଦର୍ଶବାଦୀ ଲୋକଙ୍କର ପ୍ରେରଣାତ୍ମକ ଅନୁଚ୍ଛାୟା ପିଲାମାନଙ୍କଠାରେ ମନୋବୃତ୍ତିର ଉତ୍ପତ୍ତି ବିଷୟରେ ଏହା ହେଉଛି ଆଉ ଗୋଟିଏ ଉଦାହରଣ ।

ମନୁଷ୍ୟ ଆଦର୍ଶର ଯେ, ରୂପରେଖ ଓ ଦିଗ୍‌ଦର୍ଶନ ରହିଛି ଏହାର ପ୍ରଥମ ଅନୁଭୂତି ଏଠାରେ ଉପଲବ୍ଧି କଲି । ରାଜନୈତିକ ଓ ସାମାଜିକ ଚେତନା ବ୍ୟତୀତ ବ୍ୟକ୍ତିଗତ ଜୀବନର ଉତ୍କର୍ଷ ବିଷୟରେ ଭାବିବାକୁ ଏଠାରେ ସୁଯୋଗ ମିଳିଲା । ଗ୍ରାମରେ ସୀମିତ ପରିବେଶ ଓ ବାହାର ଦୁନିଆ ସହିତ ବ୍ୟାପକ ପରିଚୟର ଅଭାବ ଯୋଗୁଁ ଜୀବନରେ ଆଦର୍ଶଗତ ପ୍ରେରଣା ଓ ଉଚ୍ଚ ଜୀବନର ଅଭିନବ ମାନବୀୟ ସ୍ପର୍ଶର ସମ୍ଭାବନା କମ୍ । କେବଳ କେତୋଟି ଅନିର୍ଦ୍ଦିଷ୍ଟ ଆଶା ଆକାଙ୍କ୍ଷାର ଅସ୍ପଷ୍ଟ ସ୍ୱପ୍ନ ଛଡ଼ା ଗାଁ'ରେ ଆଉ କଣ ବା ସମ୍ଭବ ହୋଇପାରିଥାନ୍ତା ?

ଏଠାରେ ଗାଁ'ରେ ବଢ଼ିଉଠିଥିବା ମୋର ପୂଜା ଓ ଜପ ଆହୁରି ବଢ଼ିଗଲା । ଖଲିକୋଟର ଗୋଟିଏ ଦିଗରେ ଜଗନ୍ନାଥ ମନ୍ଦିର, ଅନ୍ୟ ଦିଗରେ ବାଲୁକେଶ୍ୱର ମହାଦେବଙ୍କ ମନ୍ଦିର । ପ୍ରତି ସନ୍ଧ୍ୟାରେ ସେଠାକୁ ଯାଇ ଈଶ୍ୱର ନାମ ନେଇ ଜପ କରେ ଏବଂ ମୋର ବିଦ୍ୟା, ସମସ୍ତଙ୍କର ସ୍ୱାସ୍ଥ୍ୟ ଏବଂ ଭାଇନାଙ୍କର ଚାକିରି ବିଷୟରେ ପ୍ରାର୍ଥନା କରେ । କାରଣ ଏହି ତିନୋଟି ହେଉଛି ମୋ ଉଦ୍‌ବିଗ୍ନତାର ମୂଳ ପିଣ୍ଡ । ତା'ଛଡ଼ା ତାଙ୍କ ଘରେ ମଧ୍ୟ ପୂଜାପୂଜିର ବିଶେଷ ଆୟୋଜନ ହୁଏ । ବିଶେଷତଃ ଦୁର୍ଗାପୂଜା ସମୟରେ ଗୌରୀଶଙ୍କର ଆଚାର୍ଯ୍ୟ ଯେପରି ପବିତ୍ର ବାତାବରଣ ଭିତରେ ଦେବୀ ପୂଜା କରନ୍ତି, ତାହା ମୋତେ ବହୁତ ଭଲ ଲାଗୁଥିଲା । ଆଳତି ବେଳେ ମୋ ଦେହରେ ଶିହରଣ ଦେଖା ଦେଉଥିଲା । ଧୂପ, ଦୀପ, ଆଳତିର ଗନ୍ଧ ମୋ ପ୍ରାଣକୁ ସ୍ପର୍ଶ କରୁଥିଲା । ମୁଁ ବିଭିନ୍ନ ସ୍ଥାନରୁ ଫୁଲ ତୋଳି ଆଣୁଥିଲି ପୂଜା ପାଇଁ । ଗଣେଶ ପୂଜା ବେଳକୁ ବହୁତ ମାଳତୀଫୁଲ ପାହାଡ଼ ଉପରେ ଫୁଟେ । ପାହାଡ଼ ଚଢ଼ି ଫୁଲ ତୋଳି ଆଣିବାରେ ମୋତେ ବହୁତ ଆନନ୍ଦ ମିଳେ, କାରଣ କୃଷ୍ଣଗିରି ପାହାଡ଼ର ସୁରମ୍ୟ ପାଦଦେଶରେ ମୋର ଜନ୍ମ । ପିଲାଦିନର ସୁଖଦୁଃଖର ବହୁତ ଅନୁଭୂତି ପାହାଡ଼ ସହିତ ଯେପରି ଲାଗିରହିଛି । ତେଣୁ ପର ଜୀବନରେ ମୋ ବଗିଚାରେ ମାଳତୀ ଲତାରେ ଫୁଲ ଭର୍ତ୍ତି ହୋଇଯାଏ ।

ଖଲ୍ଲିକୋଟର ତିନି ଦିଗରେ ପାହାଡ଼ ବଡ଼ ସୁନ୍ଦର ଦିଶେ । ଏହି ପାହାଡ଼ ଚଢ଼ିବା ଥିଲା ଆମ ଚିତ୍ତ ବିନୋଦନର ଗୋଟିଏ ପ୍ରଧାନ କାର୍ଯ୍ୟ । ଗୋଟିଏ ପାହାଡ଼ର ମଧ୍ୟଦେଶରେ ଠାକୁରାଣୀ ଥାଆନ୍ତି । ସେହି ସୁରମ୍ୟ ସ୍ଥାନରେ ଯାଇ ବଣଭୋଜି କରାଯାଏ । ଆଉ ଗୋଟିଏ ପାହାଡ଼ର ଶିଖରକୁ ଉଠି କଂଗ୍ରେସ ପତାକା ପୋତାଯାଏ । ମୋର କୃଷ୍ଣଗିରି ଓ ଝାଡ଼େଶ୍ୱର ଅଞ୍ଚଳର ପ୍ରାକୃତିକ ସୌନ୍ଦର୍ଯ୍ୟ ଅସ୍ଥି ମଜ୍ଜାଗତ ହୋଇଯାଇଥିଲା । ତେଣୁ ସେହି ମୂଳଭିତ୍ତି ଉପରେ ଏଠାକାର ବିଚିତ୍ର ପ୍ରାକୃତିକ ସୌନ୍ଦର୍ଯ୍ୟ ମୋ ମନରେ ଆହୁରି ବେଶୀ ପ୍ରଭାବ ବିସ୍ତାର କରିପାରିଥିଲା । ଜୀବନରେ ଏହା ଗୋଟିଏ ଗଭୀର ମାନସିକ ଉପଭୋଗ୍ୟ ମୂଳକ ଅନୁଭୂତି ହିସାବରେ ସାରା ଜୀବନକୁ ପ୍ରଭାବିତ କରିପାରିଛି ।

ମୁଁ ନାନାପ୍ରକାର ସୁଖକର ଅନୁଭୂତି, ବୃହତ୍ତର ଅଭିଜ୍ଞତା ଓ ଆଦର୍ଶଗତ ଆକର୍ଷଣ ଉପଭୋଗ କରୁଥିଲେ ସୁଦ୍ଧା ମୋ ଭିତରେ ଅନିର୍ଦ୍ଦିଷ୍ଟ ଭବିଷ୍ୟତ ସ୍ୱପ୍ନର ଭଲମନ୍ଦ, ଆଶା ଆଶଙ୍କାର ଦିଗ ପ୍ରାଣ ଓ ମନକୁ ମଝିରେ ମଝିରେ ଦୋହଲାଇ ଦେଇଯାଉଥାଏ । ବର୍ତ୍ତମାନ ମୁଁ ଭଲ ଅଛି, କିନ୍ତୁ କିଏ କହିବ କାଲି କ'ଣ ହେବ ? ସେହି ଗୋଟିଏ କଳ୍ପନା ଜଳ୍ପନା ମୁଁ ମୋ ସାନଭାଇ ପାଖରେ ବସି କହୁଥିଲି । ବୁଢ଼ୀମା ସାଙ୍ଗରେ ଏହି କଥା ନେଇ ନାନା ମନଗଢ଼ା ଗପ କରୁଥିଲି । ତା ସାଙ୍ଗରେ ମୁଁ ଖଲ୍ଲିକୋଟ ଗଡ଼କୁ ଯିବା ସଡ଼କ ପାଖରେ- ଖଲ୍ଲିକୋଟ ଉପକଣ୍ଠରେ ଗୋଟିଏ ଖପରଲି ଘର ଡାକବଙ୍ଗଳାକୁ ବୁଢ଼ୀମାକୁ ଦେଖାଇ କହୁଥିଲି-

"ବୁଝିଲୁ ଭାଇନା ଚାକିରି କଲେ ଏମିତି ଘର ଆମକୁ ମିଳିବ ।"

ସେ କିନ୍ତୁ ବିଶ୍ୱାସ କରିପାରୁ ନଥିଲା । ମୁଁ ତାକୁ ଟାଣିଟାଣି ସେ ଘର ବାରଣ୍ଡାକୁ ନେଇ ଯାଉଥିଲି । କଳା ଚକ୍‌ମକ୍ ପଥରବନ୍ଧା ଚଟାଣ ଦେଖାଉଥିଲି । ଝିଲିମିଲି ଝରକା ଟାଣି ଭିତର ଦେଖାଉଥିଲି । ସେ ଖାଲି କହୁଥାଏ-

"ମା ରାମଚଣ୍ଡୀ କ'ଣ କରୁଛନ୍ତି କେଜାଣି । ହେ ରାମଚଣ୍ଡୀ, ଯେଉଁମାନଙ୍କର ବାପ ମଲା ଅଧାଚାନ୍ଦେ, ମା ମଲା ପୂରାଚାନ୍ଦେ (ଏକଥା ସେ ପ୍ରତିଦିନ ଥରେ କହନ୍ତି) ସେମାନଙ୍କ ପ୍ରତି ଦୟାରଖିଥାଲୋ ମା । ମୋ ପୁଅ ତୋ ପାଖରେ କେତେ ପୂଜା ନ କରିଚି । ଶେଷରେ ତୁ ତାକୁ ଡାକି ନେଇଗଲୁ । ମୋ ପିଲାଙ୍କ ପ୍ରତି ଦୟା ରଖିଥିବୁ ଲୋ ମା" ଇତ୍ୟାଦି ।

ରାମଚଣ୍ଡୀ ଆମ ଘରର ଜଣେ ହୋଇ ଯାଇଥିଲେ । ନନାଙ୍କର ବହୁ ସମୟ ସେଠାରେ କଟୁଥିଲା । ମୁଁ ସେଠାରେ ହବିଷ ଖାଇ ରାମଚଣ୍ଡୀଙ୍କ ରାଜ୍ୟରେ ବୁଲୁଥିଲି । ମନେ କରୁଥିଲି, ତା ରାଜୁତିରେ ମୋର କୌଣସି ବିପଦ ନାହିଁ । ବୁଢ଼ୀମା ପ୍ରତି ମୁହୂର୍ତ୍ତରେ ରାମଚଣ୍ଡୀଙ୍କ କଥା କହନ୍ତି । ତେଣୁ ସେ ଯେପରି ଆମର ନିଜସ୍ୱ ଗୃହଦେବୀ । ସେଥିପାଇଁ ପୂର୍ବରୁ ଉଲ୍ଲେଖ କରିଛି ଯେ ବହୁବର୍ଷ ପରେ ମୁଁ ସମ୍ପୂର୍ଣ୍ଣ ରୂପେ ନାସ୍ତିକ ହୋଇଗଲା ପରେ ମଧ୍ୟ ଯେତେବେଳେ ଝାଡ଼େଶ୍ୱର ଗଲି ରାମଚଣ୍ଡୀଙ୍କ ପାଖରେ ଗୋଟିଏ ମୁଣ୍ଡିଆ ନମାରି ରହିପାରିଲି ନାହିଁ । କାରଣ ସେ ତ କେବଳ ପଥରର ମୂର୍ତ୍ତି ନୁହନ୍ତି– ଆମ ପରିବାରର ସବୁ ସ୍ୱପ୍ନ, ସବୁ ଆଶା ଭରସାର ସେ ହେଉଛନ୍ତି ପ୍ରତ୍ୟକ୍ଷ ସାକ୍ଷୀ, ଆମ ଘରେ ରାମଚଣ୍ଡୀ ନଜାଣି କିଛି ହେଉ ନଥିଲା । ନନା କଲମୀ ଆମ୍ବ କିଣି ଆଣିଥାନ୍ତି । ଆମର ବହୁତ ଇଚ୍ଛା ସାଙ୍ଗେ ସାଙ୍ଗେ ଖାଇଦେବାକୁ । କିନ୍ତୁ ନା । ପ୍ରଥମେ ରାମଚଣ୍ଡୀଙ୍କ ପାଖରେ ଭୋଗ ହେବ, ତାପରେ

ଆମେ ଖାଇବୁ । ଏପରି ଅନ୍ତରଙ୍ଗ ପାରିବାରିକ ଜଣେ ବନ୍ଧୁଙ୍କୁ ନମସ୍କାର ନ କରିବା ମୋ ପକ୍ଷରେ ଅକୃତଜ୍ଞତାର କାମ ହେବ ବୋଲି ମୁଁ ପ୍ରଣିପାତ କରିଥିଲି । ମୋତେ ଭଲ ଲାଗିଲା । ସେ ଯେପରି ମୋତେ ଚାହିଁ ହସୁଥିଲେ । ମନୁଷ୍ୟର ଭକ୍ତି ପୂଜା ଆରାଧନା ହିଁ ପଥରକୁ ଦେବତା କରିଛି । ତା ନହେଲେ ପଥରର କି ମୂଲ୍ୟ ? ଏହା ସ୍ନେହ, ପ୍ରେମ, ଭକ୍ତିର ଗୋଟିଏ ଆଧାର ମାତ୍ର—ମନୁଷ୍ୟ କୃତଜ୍ଞତାର ଅଭିବ୍ୟକ୍ତି ।

ରାମଚଣ୍ଡୀଙ୍କୁ ଏପରି ପ୍ରଣିପାତ କରିବାରେ ମୋର ଆଉ କୌଣସି ମାଗୁଣି ନଥିଲା, ହାରି ଗୁହାରି ନଥିଲା କି ଭବିଷ୍ୟତ ପାଇଁ କୌଣସି ପ୍ରତ୍ୟାଶା ନଥିଲା । ରାମଚଣ୍ଡୀଙ୍କର ଲାଲ ପଥର ଖଣ୍ଡି ମାଧ୍ୟମରେ ମୋର ସମଗ୍ର ଅତୀତର ପୁଞ୍ଜୀଭୂତ ଆଶା ନିରାଶାର ସ୍ମୃତିକୁହିଁ ସମ୍ମାନ ଦେଖାଉଥିଲି । ସ୍ନେହ, ପ୍ରେମ, ଶିବ, ସୁନ୍ଦରର ପ୍ରତୀକ ସେ । ଗ୍ରାମଦେବତୀଙ୍କ ପରି ଭୟ ଭ୍ରାନ୍ତିର ଆଧାର ସେ ନଥିଲେ । ଭବିଷ୍ୟତ ଜୀବନରେ ନାସ୍ତିକ ହେଲା ପରେ ମୁଁ ପ୍ରଥମେ ହିଁ ଗ୍ରାମ ଦେବତୀଙ୍କୁ ଅବଜ୍ଞା କରିଥିଲି । ଭୟ ଉଦ୍‌ବେଗକାରୀ ଲାଞ୍ଚଖୋର ଠାକୁର ଠାକୁରାଣୀଙ୍କ ଉପରେ ମୋର ପ୍ରଥମେ ବିଦ୍ରୋହ ଆରମ୍ଭ ହୋଇଥିଲା । ପ୍ରକୃତରେ ଦେଖିବାକୁ ଗଲେ ଅଧିକାଂଶ ତଥାକଥିତ ଧାର୍ମିକ ଲୋକେ ଦେବତାଙ୍କୁ ଭୟ କରି ପୂଜା କରନ୍ତି । ନାନା ପ୍ରତ୍ୟାଶା ନେଇ ଅର୍ଚ୍ଚନା କରନ୍ତି । ତାଙ୍କ ନିଜ ଅହଂଠାରୁ ଆଉ ଟିକିଏ ପ୍ରସାରିତ ଅହଂକୁ ଦେବତା କରି ମାନନ୍ତି ଫଳ ପାଇବା ଆଶାରେ । ସେଥିଯୋଗୁ ହିଁ ବିଭିନ୍ନ ଧର୍ମାବଲମ୍ବୀଙ୍କ ଭିତରେ ଏତେ କଳହ, ଏତେ ପ୍ରକାର ରକ୍ତାକ୍ତ ଯୁଦ୍ଧ ଲାଗି ରହିଛି । ଏମାନଙ୍କ ମତରେ ସ୍ୱର୍ଗରେ କେବଳ ସେ ନିଜେ ପୂଜା କରୁଥିବା ଦେବତା ଥାନ୍ତି । ଅନ୍ୟ ଦେବତାମାନେ ମିଥ୍ୟା । କାରଣ ସେମାନଙ୍କଠାରୁ ତ ସେ କିଛି ପାଇ ନାହାନ୍ତି, ତେଣୁ ଡାକିବେ କାହିଁକି ? ନ ପାଇବାର ଭୟ ହେବ ବା କାହିଁକି ?

ଏହିପରି ଭାବରେ କଳ୍ପନା ଜଳ୍ପନାରେ ବହୁ ସମୟ କଟୁଥିଲା । ଥରେ ଖଲ୍ଲିକୋଟ ଦେବାନଙ୍କର ପାଞ୍ଚବର୍ଷର ଗୋଟିଏ ପିଲା ଖେଳିବା ମଟର ଗାଡ଼ିରେ ବସି ରାସ୍ତାରେ ପେଡାଲ ମାରି ଚଲାଉଥାଏ । ତାକୁ ଦେଖି ମୋର ତୀବ୍ର ଈର୍ଷା ହେଲା । ତାକୁ ଚାହିଁ ରହିଲି । ମୁଁ କଳ୍ପନା କଲି– ମୋର ବି ଭବିଷ୍ୟତରେ ମଟରଗାଡ଼ି ହେବ, ଏହାଠାରୁ ବହୁତ ବଡ଼ । କଳ୍ପନାରେ ଭିଖାରି ରାଜସିଂହାସନରେ ବସିବାର ସ୍ୱପ୍ନ । ଶାସ୍ତ୍ରରେ ଅଛି, ଜଣେ ରଜା ଦିନଯାକ ସିଂହାସନରେ ବସେ, କିନ୍ତୁ ରାତିଯାକ ସ୍ୱପ୍ନ ଦେଖେ ଯେ ସେ ଭିଖାରି ହୋଇଯାଇଛି । ସେହିପରି ଭିକାରିଟିଏ ଦିନଯାକ ଭିକ ମାଗେ, କିନ୍ତୁ ରାତିରେ ସ୍ୱପ୍ନ ଦେଖେ ଯେ ସେ ରାଜ ସିଂହାସନରେ ବସିଛି । ମାୟାବାଦରେ ବିଶ୍ୱାସ କରୁଥିବା ଦାର୍ଶନିକମାନଙ୍କ ମତରେ ଦୁଇଟିଯାକ ଅବସ୍ଥାରେ କିଛି ଫରକ ନାହିଁ । ପିଲାଦିନେ ମୋର ବୋଧହୁଏ ଏପରି ବିଶ୍ୱାସ ପ୍ରଚ୍ଛନ୍ନ ଭାବରେ କାମ କରୁଥିଲା ।

ଏଠାରେ ଥିଲାବେଳେ ଆଉ ଗୋଟିଏ ବିଶେଷ ଘଟଣା ନୂତନ ଦିଗ୍‌ଦର୍ଶନର ରେଖାପାତ କରିଥିଲା । ଖଲ୍ଲିକୋଟ ରାଜାସାହେବ ରାମଚନ୍ଦ୍ର ମର୍ଦ୍ଦରାଜ ବହୁତ ସୌଖୀନ ଓ କୁକୁରପ୍ରିୟ ଥିଲେ । ସେ ତାଙ୍କର ରମ୍ଭା ନଅରରୁ ବାହାରି ଖଲ୍ଲିକୋଟ ବଙ୍ଗଳାକୁ ଘୋଡ଼ାରେ ବସି ଆସନ୍ତି । ଅନେକଗୁଡ଼ିଏ ଘୋଡ଼ା-ସବାର ତାଙ୍କ ସାଙ୍ଗରେ ଥାନ୍ତି । ତାଙ୍କର ଦୁଇକଡ଼ ରାସ୍ତାରେ ନାନା ରଙ୍ଗ, ନାନା ଜାତି ଓ ନାନା ଆକାରର ଅସଂଖ୍ୟ କୁକୁର ଦୌଡୁଥାନ୍ତି ।

ଅନ୍ତତଃ ଦୁଇଶହରୁ କମ୍ ହୋଇ ନଥିବେ । ସେ ଆସିବା ପୂର୍ବରୁ ରାସ୍ତାର ବୁଲାକୁକୁରଙ୍କୁ ମରାଯାଏ । ସେତିକିବେଳେ ଖଲ୍ଲିକୋଟଗଡ଼ ବଡ଼ ରାସ୍ତାରେ ପଦାକୁ କାହାରି ବାହାରିବା ମନା । କୁକୁରଙ୍କ ପାଇଁ ଛୋଟ ଛୋଟ ମୋଜାଇକ୍ ଘର, ପ୍ରତ୍ୟେକ ଘରେ ଗୋଟିଏ ଛୋଟିଆ ବିଜୁଳି ପଙ୍ଖା, ସେମାନଙ୍କ ପାଇଁ ଅଲଗା ରୋଷେଇବାସ ଚାଲିଥାଏ; ଅଥଚ ରାଜା ପ୍ରଜାମାନଙ୍କ ପ୍ରତି ଆଦୌ ସହାନୁଭୂତିଶୀଳ ନଥିଲେ । ତାଙ୍କ ବିରୁଦ୍ଧରେ ବିଶ୍ୱନାଥ ଦାଶ ପ୍ରଭୃତି କଂଗ୍ରେସ ନେତାମାନେ ବହୁତ ଲାଗିଥିଲେ । ପିଲାଦିନେ ଆମେ ଖେଳିଲା ବେଳେ କେହି ଯଦି କହେ ମୁଁ ଖଲ୍ଲିକୋଟ ରାଜା, ଆଉଜଣେ କହୁଥିଲା ମୁଁ ବିଶ୍ୱନାଥ ଦାଶ । ପିଲାଙ୍କ ଭିତରେ ମଧ ଏ ପ୍ରକାର ଚେତନା ରହିଥିଲା । ସେହି ସୌଖୀନ ତଥା ପ୍ରବଳ ପ୍ରତାପୀ ଅତ୍ୟାଚାରୀ ଓ ବ୍ରିଟିଶ୍ ଭକ୍ତ ଜମିଦାର କଂଗ୍ରେସ ସରକାରରେ ଜଣେ ମନ୍ତ୍ରୀ ମଧ ହୋଇଥିଲେ । ତଥାକଥିତ ସମାଜବାଦୀ ଭାରତୀୟ ଶାସନରେ କି ଅଦ୍ଭୁତ କଥା ଘଟିପାରେ ଏବଂ ଭାରତର ସ୍ୱାଧୀନତା ବିପ୍ଳବକୁ କିପରି ଭାବରେ ପ୍ରତାରିତ କରାଗଲା, ତାହା ଏହାର ଜ୍ୱଳନ୍ତ ନମୁନା । ଶେଷରେ ସାମନ୍ତବାଦୀ ପାରିବାରିକ ଶାସନ ଏପରି ବଳବତ୍ତର ହୋଇଚାଲିଲା ଯେ ତାଙ୍କର ଅଣ ଓଡ଼ିଆ ପୁତ୍ର ବଧୂ ସେ ଅଂଚଳରେ କୌଣସି କାମ ନ କରି ମଧ୍ୟ ଛ ଥର ବିଧାୟିକକା ହେଲେଣି ।

ଗରିବ ଖଟିଖିଆ ଓ ଭିକାରିମାନଙ୍କଠାରୁ ଶୋଷଣକାରୀ ଏପରି ମୁଷ୍ଟିମେୟ ଲୋକେ କିପରି ଅଯଥା ଆଡ଼ମ୍ବରରେ ରହିଛନ୍ତି ଏବଂ ସମାଜର ସେମାନେ ଏତେ ଗଣ୍ୟମାନ୍ୟ ବ୍ୟକ୍ତି ହୋଇ, ସମସ୍ତଙ୍କଠାରୁ ଗୋଲାମୀ ସଲାମ ମଧ ପାଉଛନ୍ତି– ଏହି କଥାଟି ମୋ ମନକୁ ସେତେବେଳେ ବହୁତ ବିବ୍ରତ କରିଥିଲା । ଲୋକଙ୍କୁ ଖାଇବାକୁ ମିଳୁ ନଥିଲା ବେଳେ ଏପରି ସାମନ୍ତବାଦୀ ଶୋଷକମାନଙ୍କର କର୍ତ୍ତୃତ୍ୱ ବଢ଼ି ବଢ଼ି ଚାଲିଛି ।

ମୋ ମନରେ ଆଉ ଗୋଟିଏ ଛବି ଫୁଟି ଉଠୁଥିଲା । ଭାଇନା ଶୋଇଲାବେଳେ ପଇସା ଅଭାବରୁ ତକିଆଟିଏ କିଣି ନ ପାରି ଇଟାରେ ମୁଣ୍ଡ ଦେଇ ଶୋଉଥିଲେ । ଟିଉସନ କରି ମାସକୁ ପାଞ୍ଚଟି ଟଙ୍କା ପାଇଲେ ଆମମାନଙ୍କ ପାଖକୁ ପଠାଉଥିଲେ । ଏପରି ଦୟନୀୟ ଭାବରେ ଯେଉଁ ଦେଶର ପ୍ରତିଭାବାନ୍ ଛାତ୍ରଛାତ୍ରୀ ଉଚ୍ଚଶିକ୍ଷା ପାଇବାକୁ ଅହରହ ଜୀବନ ସହିତ ସଂଗ୍ରାମ କରୁଛନ୍ତି, ସେଠାରେ କୁକୁରଙ୍କ ପାଇଁ ମାଂସ ପଲାଉର ମୋଜାଇକ୍ ଘର ଓ ବିଜୁଳି ପଙ୍ଖା । ଏହି ବିରାଟ ସାମାଜିକ ବିଭେଦ ଓ ଯୁକ୍ତିହୀନତା ମୋତେ ବହୁତ ବେଶୀ ବିବ୍ରତ କରିଥିଲା । ଗୋଟିଏ ପ୍ରକାରର ମୌଳିକ ଜୀବନ ଦର୍ଶନର ଅସ୍ପଷ୍ଟ ମୂଳଭିତ୍ତି ସେତେବେଳେ ମୋ ମନ ଭିତରେ ପଡ଼ିଥିବାର ସଙ୍କେତ ମୁଁ ପାଇଥିଲି । ପର ଜୀବନରେ ମୁଁ ଦେଖିଛି, ଗରିବ ଅବସ୍ଥାରୁ ଉଠିଥିବା ବହୁ ପ୍ରତିଷ୍ଠିତ ବ୍ୟକ୍ତି ଗରିବ ଲୋକଙ୍କୁ ଘୃଣା କରନ୍ତି । ସେମାନଙ୍କ ପ୍ରତି ସହାନୁଭୂତି ଦେଖାଇବା ପରିବର୍ତ୍ତେ ଅବଜ୍ଞା ପ୍ରଦର୍ଶନ କରନ୍ତି । ସେମାନେ ବୋଧହୁଏ ନିଜର ଦାରିଦ୍ର୍ୟକୁ ଘୃଣା କରିବା ସହିତ ସବୁ ଦରିଦ୍ର ଲୋକମାନଙ୍କ ପ୍ରତି ମଧ ଅବହେଳା ଦେଖାନ୍ତି । ଏହା ଗୋଟିଏ ଅଦ୍ଭୁତ ନକାରାତ୍ମକ ମନସ୍ତାତ୍ତ୍ୱିକ ପ୍ରକ୍ରିୟା । ଏ ବିଷୟରେ ମୁଁ ସବୁବେଳେ ସଚେତନ ଥିଲି ।

ଏହି ଘଟଣା ସହିତ ସମ୍ପୃକ୍ତ ଆଉ ଗୋଟିଏ ଅନୁଭୂତି ଉଲ୍ଲେଖଯୋଗ୍ୟ । ବହୁବର୍ଷ ପରେ ପ୍ରହ୍ଲାଦ ମଲ୍ଲିକ ମନ୍ତ୍ରୀ ଥାନ୍ତି । ମୋର ଜଣେ ବନ୍ଧୁ ଭାଗବତ ପ୍ରସାଦ ରଥ

ସୁମଣ୍ଡଳଠାରେ ଗୋଟିଏ ନୂଆ ଧରଣର ଉଚ୍ଚ ଇଂରାଜୀ ସ୍କୁଲ ଆରମ୍ଭ କରିଥାନ୍ତି ! ସେ ଏହାକୁ ନୂତନ ଆଦର୍ଶରେ ତିଆରି କରୁଥିଲେ । ନିଜର ପୁଅ ଓ ଅନ୍ୟ ପିଲାଙ୍କ ସହିତ ମିଶି ଭାଗବତ, ସ୍କୁଲର ମାଟିକାନ୍ଥ ତିଆରି କରନ୍ତି, ଘର ଛପର କରନ୍ତି, ପାଠ ପଢ଼ାନ୍ତି ଏବଂ ପିଲାମାନଙ୍କର ଓ ଗ୍ରାମବାସୀମାନଙ୍କର ସାଂସ୍କୃତିକ ବିକାଶ ଲାଗି ସ୍ୱରଚିତ ଗୀତ ନିଜେ ଗାଆନ୍ତି ଓ ସ୍ୱରଚିତ ନାଟକ ଅଭିନୟ କରନ୍ତି । ସେ ଆମମାନଙ୍କୁ ଡାକିଥିଲେ ତାଙ୍କ ସ୍କୁଲକୁ ଯିବା ପାଇଁ । ଆମ ସାଥିରେ ଭୂତପୂର୍ବ ବିଧାନସଭା ସଦସ୍ୟ ପଦ୍ମଚରଣ ନାୟକ ମଧ ଯାଇଥାନ୍ତି । ଏହି ତିନିଜଣଯାକ ମୋର ଅତିପ୍ରିୟ ଛାତ୍ର ଥିଲେ । ସେମାନଙ୍କୁ ଦେଶ ସେବା ଓ ରାଜନୀତିରେ ପଶିବାକୁ ମୁଁ ପ୍ରେରଣା ଦେଇଥିଲି ।

ଗାଁ' ମୁଣ୍ଡରେ ଭାଗବତ ଓ ପିଲାମାନେ ଗାମୁଛା ପିନ୍ଧି ଓ ଗାମୁଛା କାନ୍ଧରେ ପକାଇ ଆମମାନଙ୍କୁ ଅଭ୍ୟର୍ଥନା ଜଣାଇଲେ । ସେ ଦୃଶ୍ୟ ଆମମାନଙ୍କୁ ବହୁତ ଭଲ ଲାଗିଥିଲା । ତାପରେ ଆମେ ସମସ୍ତେ ବକ୍ତୃତା କଲୁ । ବକ୍ତୃତା ଶେଷରେ ଅନତି ଦୂରରେ ଗୋଟିଏ ଗଛକୁ ଆଉଜି ଆଶାବାଡ଼ି ଧରି ଜଣେ ଛୋଟା ଲୋକ ଠିଆ ହୋଇ ଆମକୁ ଡାକି କହିଲା -

''ହଇରେ ତୁ ମନ୍ତ୍ରୀ ହେଇଛୁ, ଶଳେ ଦେଶଟାକୁ ଖାଇଗଲ ।''

ତାହାର ଏକଥା ଶୁଣି ଆମର ବହୁତ କୌତୂହଳ ହେଲା । ସେ କିଏ ? ତାର ଉତ୍ତରରେ ସେ କହିଥିଲା ଯେ ସେ କଂଗ୍ରେସ ଆନ୍ଦୋଳନରେ ଝାସ ଦେଇ ଜେଲ୍ ଗଲା । ଖଲ୍ଲିକୋଟ ରାଜାର ଗୁଣ୍ଡାମାନେ ତା ଗୋଡ଼କୁ କାଟିଦେଲେ । ତା ସ୍ତ୍ରୀକୁ ନେଇଗଲେ । ସେ ଜେଲ୍‌ରୁ ଫେରିଲା ବେଳକୁ ତା ଘର ଭାଙ୍ଗିଯାଇଛି, ସ୍ତ୍ରୀ ନାହିଁ । ସେହିଦିନୁ ସେ ଏପରି ଗାଁ' ଗାଁ' ବୁଲେ, କିନ୍ତୁ ତାର ପେନସନ୍ କିମ୍ବା ଅନ୍ୟାନ୍ୟ ସାହାଯ୍ୟ ପାଇଁ ଦରଖାସ୍ତ କରିବାକୁ ଘୃଣା କରେ କାରଣ, ତା ଦରଖାସ୍ତ ସେହି ଖଲ୍ଲିକୋଟ ରାଜା ଯେ କି ଏମ୍.ଏଲ୍.ଏ. ଅଛନ୍ତି ତାଙ୍କ ଜରିଆରେ ଦେବାକୁ ହେବ ।

''ଛିଃ ମୁଁ ଏହା କେବେ କରି ପାରିବି !''

କହି ଗଦାଏ ଛେପ ପକାଇଲା, ପୁଣି ଥରେ ପ୍ରହ୍ଲାଦ ମଲ୍ଲିକଙ୍କୁ ବାରକଥା କହି ଗାଳିଦେଲା । ଆମେ ସମସ୍ତେ ଅବାକ୍ ହୋଇ ଠିଆ ହୋଇଥିଲୁ । ସେ ବିଷୟରେ ଅନେକ ରାତି ପର୍ଯ୍ୟନ୍ତ ଆମ ଭିତରେ ଆଲୋଚନା ହୋଇଥିଲା । ପ୍ରକୃତରେ ପରାଧୀନ ଭାରତର ଏତେବଡ଼ ସ୍ୱପ୍ନ, ରାଜାମହାରାଜା ଓ ସେମାନଙ୍କ ପରି ହଠାତ୍ ଧନୀ ହେବା ପାଇଁ ଲାଳାୟିତ ରାଜନୈତିକ ଲୋକଙ୍କ ଦ୍ୱାରା ନଷ୍ଟ ହୋଇଗଲା । ଏହି ଛୋଟାଟି ପରି ଅସଂଖ୍ୟ ଜନତା ଆଖିରେ ବିପ୍ଳବ ଯେ ଭୟଙ୍କର ଭାବରେ ପ୍ରବଞ୍ଚିତ ଓ ପ୍ରତାରିତ ହୋଇଗଲା, ଏଥିରେ ସନ୍ଦେହ ନାହିଁ ।

x x x x x x x x x

୧୯୩୨ ମସିହା ଫେବୃଆରୀରେ ଭାଇନା ଦିନେ ହଠାତ୍ ଖଲ୍ଲିକୋଟରେ ଆସି ପହଞ୍ଚିଗଲେ । ପ୍ରାୟ ସନ୍ଧ୍ୟା ହୋଇଆସୁଥାଏ । ସେ ଗୋଟିଏ ଦାମିକା ଗରମ ସୁଟ୍ ପିନ୍ଧିଥାନ୍ତି । ତାଙ୍କୁ ସୁଟ୍ ପିନ୍ଧିବା ଅବସ୍ଥାରେ ମୁଁ କେବେ ଦେଖିନଥିଲି । ସେ ଡେପୁଟୀ ମାଜିଷ୍ଟ୍ରେଟ୍ ଚାକିରି ପାଇଥାନ୍ତି । ଦରମା ମାସକୁ ଦୁଇଶହ ପଚାଶ ଟଙ୍କା । ମୁଁ କଳ୍ପନା କରି ପାରିଲିନାହିଁ ଏତେଗୁଡ଼େ ଟଙ୍କା । ଟିଉସନ୍ କରି ସେ ଯେଉଁ ପାଞ୍ଚଟଙ୍କା ମାସକୁ ମାସ ଆମ ପାଇଁ

ପଠାନ୍ତି ତାର କେତେ କେତେ ଗୁଣ ଏ ଦରମା, ଏହି କଥାଟି ମୋତେ ଅଭିଭୂତ କରି ପକାଉଥିଲା । ମୁଁ ଲୁଚିକରି ଅନ୍ଧାରଘରେ ସବୁ ଠାକୁରଙ୍କୁ ମୋ କୃତଜ୍ଞତା ଜଣାଇଲି, ବିଶେଷତଃ ରାମଚଣ୍ଡୀଙ୍କୁ । କି ପ୍ରତ୍ୟକ୍ଷ ଠାକୁରାଣୀ ଏ ରାମଚଣ୍ଡୀ ! ସେତେବେଳେ ଅବଶ୍ୟ ମୋର ମନେ ନଥିଲା, ଏହି ଚାକିରି ପାଇଁ ପାଠ ପଢ଼ିବାରେ କି ପରିଶ୍ରମ କି ସ୍ୱାର୍ଥତ୍ୟାଗ ଭାଇନାଙ୍କର ନଥିଲା । ନନା ବୋଉଙ୍କ କଥା ମନେପଡ଼ିଲା । ସେମାନେ ମରିଗଲେ ସିନା, ପାଠପଢ଼ାରେ ଭାଇନାଙ୍କର ବ୍ୟାଘାତ ହେବ ବୋଲି ତାଙ୍କର ଦେହ ଖରାପ ହେବା କଥା ଭାଇନାଙ୍କୁ ଜଣାଉ ନଥିଲେ ମଧ୍ୟ । ସେମାନଙ୍କର ସ୍ୱାର୍ଥତ୍ୟାଗ ଓ ସାଧନାର ପୁଞ୍ଜୀଭୂତ ଫଳ ହେଲେ ଭାଇନା ।

ଭାଇନା ଡେପୁଟୀ ହୋଇ ଏତେ ବଢ଼ିଆ ସୁଟ ପିନ୍ଧି ଖଲ୍ଲିକୋଟରେ ପହଞ୍ଚିବା ପରେ ଚାରିଆଡ଼େ ହାହଲ୍ଲା ପଡ଼ିଗଲା । ତାଙ୍କୁ ଗୋଟିଏ ଅଲଗା ଘରେ ନେଇ ରଖାଗଲା । ମୁଁ ତାଙ୍କର ପାଖେ ପାଖେ ଲାଗି ରହିଥାଏ । ମୋର ତାଙ୍କୁ ବହୁତ ଡର । କାରଣ ପାଠ ପଢ଼ାଇଲା ବେଳେ ସେ ମୋତେ ମାରୁଥିଲେ । ତଥାପି ସେ ମୁଁ ଏକାଠି ଯାଇ ଲଙ୍କାକାଲ ଗଛ କାଟିଆଣି ଆମ ଗାଁ'ଘର ବାଡ଼ ବୁଜୁଥିଲୁ । ତେଣୁ ଚରମ ଦାରିଦ୍ର୍ୟର ସହଯୋଗୀ ଆମ ଦୁଇଭାଇଙ୍କ ଭିତରେ ଲୁକ୍କାୟିତ ଅନ୍ତରଙ୍ଗତା ରହିଥାଏ । ତାପରେ ସ୍କୁଲରେ, ସାଇପଡ଼ିଶାରେ ମୋର ସମ୍ମାନ ବହୁତ ବଢ଼ିଗଲା । ସେ ସମୟର ସବୁଠୁ ବଡ଼ ଚାକିରି ଆଇ.ସି.ଏସ୍. । ତା ତଳକୁ ଡେପୁଟୀ ମାଜିଷ୍ଟ୍ରେଟ୍ । ଆଇ.ସି.ଏସ୍. ଓ ଡେପୁଟୀ ମାଜିଷ୍ଟ୍ରେଟଙ୍କ ସଂଖ୍ୟା ଏତେ କମ୍ ଯେ ବର୍ଷକୁ ସାରା ଓଡ଼ିଶାରେ ଜଣେ ମାତ୍ର ଡେପୁଟୀ ମାଜିଷ୍ଟ୍ରେଟ୍ ହୁଅନ୍ତି । ବିଶ୍ୱବିଦ୍ୟାଳୟରେ ପ୍ରଥମ ହୋଇଥିବା ପିଲା ଏହି ସମ୍ମାନର ଅଧିକାରୀ ହୁଏ । ଭାଇନାଙ୍କର ବୟସ ନଥିଲା ଆଇ.ସି.ଏସ୍. ପରୀକ୍ଷା ଦେବା ପାଇଁ ।

ଭାଇନା ଗାଁ'କୁ ଗଲେ ସମସ୍ତଙ୍କୁ ସାଙ୍ଗରେ ଧରି କଟକ ଯିବା ପାଇଁ । ରାମଚଣ୍ଡୀଙ୍କଠାରେ ଗୋଟିଏ ବଡ଼ ଭୋଜି ହେଲା । ଗାଁ'ର ସମସ୍ତ ଲୋକ ସେଥିରେ ଯୋଗ ଦେଲେ । ଦୁର୍ଭାଗ୍ୟବଶତଃ ସେତିକି ବେଳେ ମୋର ହାଡ଼ଫୁଟି ହେଲା । ମୁଁ ଜୀବନର ଏତେବଡ଼ ମଉଛବରେ ଯୋଗ ଦେଇ ପାରିଲି ନାହିଁ । ତା'ଛଡ଼ା ଭାଇନାଙ୍କ ଚାକିରି ପରେ ସେ ପ୍ରଥମ କରି ଗାଁ'କୁ ଯାଉଛନ୍ତି ; ମୁଁ ତାଙ୍କ ସାଙ୍ଗରେ ଗାଁ'କୁ ଯାଇଥିଲେ ମୋର ଗୌରବ କେତେ ବେଶୀ ବଢ଼ି ଯାଇଥାନ୍ତା ! ଗାଁ'ର ସାଙ୍ଗମାନେ ମୋ ପ୍ରତି ଯେପରି ତାଚ୍ଛଲ୍ୟ ଭାବ ଦେଖାଉ ଥିଲେ, ମୋତେ ଅପାରଗ, ନ୍ୟୂନ, ଅକ୍ଷମ, ଚକର ଛେଉଣ୍ଡ ବୋଲି ଭାବୁଥିଲେ, ସେମାନଙ୍କ ଆଗରେ ଆମର ମର୍ଯ୍ୟାଦା, ମାସକୁ ଅଢ଼େଇଶହଟଙ୍କିଆ ଚାକିରିର ପ୍ରୌଢ଼ି ଦେଖାଇ ନ ପାରିବାରେ ମୋର ବୋଧହୁଏ ସବୁଠାରୁ ବେଶୀ ଦୁଃଖ ରହିଗଲା । କଟକ ପରି ସହରରେ ଯେଉଁଠି ମୋତେ କେହି ଚିହ୍ନି ନାହାନ୍ତି, ମୋର ଅତୀତକୁ ଜାଣିନାହାନ୍ତି ସେମାନଙ୍କ ଆଗରେ ଡେପୁଟୀ ମାଜିଷ୍ଟ୍ରେଟଙ୍କ ଭାଇ ହିସାବରେ ମୋର ସ୍ଥିତିର ମୂଲ୍ୟ ବା କଣ ? ଏହି 'ମୁଁ'ର ପ୍ରସାରିତ ପରିସର ବୃଦ୍ଧି ଅନ୍ୟର ସଙ୍କୁଚିତ ଅବସ୍ଥିତି ଭିତରେ ସିନା ସବୁଠୁ ବେଶୀ ଗର୍ବ ଓ ଆନନ୍ଦ ଦିଏ । ଏହି କାରଣରୁ ହିଁ ନରକରେ ପ୍ରଭୁ ହେବ ସିନା ସ୍ୱର୍ଗରେ ଚାକର ହେବନାହିଁ ବୋଲି ଦର୍ଶନ ଗଢ଼ିଉଠିଛି ।

ତାପରେ ଭାଇନା ବୁଢ଼ୀମା, ନାନୀ, ମୋ ସାନଭାଇ ଦେବେନ୍ଦ୍ର ସମସ୍ତଙ୍କୁ ଧରି କଟକ ଗଲେ । ଆଉ ଦୁଇମାସ ପରେ ପରୀକ୍ଷା ସରିଲେ ମୋ କଟକ ଯିବା କଥା ହେଲା । ଏଥିରେ ମୋର କି ବ୍ୟର୍ଥତା, ତାହା ସହଜରେ ଅନୁମେୟ । ଏତେବଡ଼ ସ୍ୱପ୍ନ ସାର୍ଥକ ହେଲା, ଘରେ ସମସ୍ତେ ଭାଇନାଙ୍କ ସାଥିରେ କଟକ ସହରକୁ ଗଲେ ଅଥଚ ମୋତେ ରହିବାକୁ ପଡ଼ିଲା ପଛରେ । ସେହିଦିନଠାରୁ ପ୍ରତିଦିନ ସକାଳୁ ଉଠି ଦିନ ଗଣିଦିଏ ଆଉ କେତେଦିନ ରହିଲା । ପ୍ରତୀକ୍ଷା, ଯେତେ ରଙ୍ଗିନ୍ ହେଲେ ମଧ୍ୟ ଦୁଃଖଦାୟକ ।

ଖଲ୍ଲିକୋଟ ଛାଡ଼ି କଟକ ଅଭିମୁଖେ ଯାତ୍ରା କରିବା ପୂର୍ବରୁ ମୋର ପ୍ରବଳ ଇଚ୍ଛା ହେଲା ମୋର ଜନ୍ମଭୂମି ତଳରାମ ପଲ୍ଲୀ ଆଡ଼େ ଥରେ ବୁଲି ଆସିବା ଲାଗି । ଚକର ଛେଉଣ୍ଡର ଖେଳାଲୀଳା ଯେଉଁଠାରେ ସଂପାଦିତ ହୋଇଛି କିଶୋର ଜୀବନର ଅଗଣିତ ସବୁଜ ସ୍ୱପ୍ନ ଯେଉଁ ଗ୍ରାମ ଓ କୃଷ୍ଣଗିରି ପାହାଡ଼ର ସବୁଜିମା ସହିତ ଝାଡ଼େଶ୍ୱରର ସୁରମ୍ୟ ପରିବେଶ ମୋଠାରେ ଅପୂର୍ବ ଆଲୋଡ଼ନ ସୃଷ୍ଟି କରିଛି ଏବଂ ଯାହାର ପ୍ରତ୍ୟକ୍ଷ ସାକ୍ଷୀ ରାମଚଣ୍ଡୀ ଆମ ପରିବାରର ଆଧି ଭୌତିକ ପ୍ରେରଣା ହୋଇ ରହିଛନ୍ତି, ସେମାନଙ୍କଠାରୁ ବିଦାୟ ନେବା ପାଇଁ ପ୍ରାଣ ଉଚ୍ଛ୍ୱସିତ ହୋଇଉଠିଲା । ସେହି ଗ୍ରାମରେ ଆମର ଗୋଟିଏ ଚାଳ ଘର ଛଡ଼ା କୌଣସି ଜମିବାଡ଼ି ବା ସ୍ଥାୟୀ ଗଛବୃକ୍ଷ ନଥିଲା – ନନା ତାଙ୍କର ସମସ୍ତ ରୋଜଗାର ଭାଇନାଙ୍କର ପଢ଼ାରେ ଖର୍ଚ୍ଚ କରୁଥିଲେ । ତାଙ୍କର ଚରମ ସ୍ୱାର୍ଥତ୍ୟାଗ ଯୋଗୁ ଭାଇନାଙ୍କର ସାଧନାର ସିଦ୍ଧି ହେଲାପରେ ସେହି ଗ୍ରାମରେ ଆମର ସଂପର୍କ ତୁଟିଗଲା ।

ଭାଇନାଙ୍କଠାରୁ ଶୁଣିଥିଲି ଯେ ଜଣେ ପଡ଼ୋଶୀ ହାତରେ ଆମ ଘରଟିକୁ ସମର୍ପି ଦେଇ ସେ ସବୁଦିନ ପାଇଁ ଗ୍ରାମ ଛାଡ଼ି ଚାଲିଆସିଥିଲେ । ମୁଁ ମଧ୍ୟ ଅନୁଭବ କରିଥିଲି ଯେ ଥରେ କଟକ ଗଲା ପରେ ଆଉ ଗ୍ରାମକୁ ଆସିବାର କୌଣସି ସଂଭାବନା ନଥିଲା - ଯୁଗ ଯୁଗ ଧରି ଯେଉଁ ଲୋକେ ସହରକୁ ଯାଇଛନ୍ତି ସେମାନେ ଗ୍ରାମକୁ ଆଉ ଫେରିନାହାନ୍ତି । ଏହା ହେଲା ସଭ୍ୟତାର ଏକଦିଗଦର୍ଶୀ ଯାତ୍ରା ।

ତେଣୁ ଥରେ ଗାଆଁଆଡ଼େ ବୁଲି ଆସିବାକୁ ମନ ଛକପକ ହେଲା । ଗ୍ରାମରେ ପହଞ୍ଚିଲା ପରେ ମୋତେ ସମସ୍ତେ ଘେରିଗଲେ ।  ଅତି ଆଦରର ଅତିଥି ହିସାବରେ ମୋତେ ସମସ୍ତେ ଖାଇବା ପାଇଁ ନିମନ୍ତ୍ରଣ ଜଣାଇଲେ - ଏମାନଙ୍କ ଭିଡ଼ ଭିତରୁ ମୁଁ ଖସିଯାଇ ଆମ ଘରେ ପହଞ୍ଚିବା ପାଇଁ ବ୍ୟସ୍ତ ହେଉଥାଏ-ମୋର ଯେ ଆଉ ସେଠାରେ ଘରଟିଏ ନିଜର ନାହିଁ ଏକଥା ମୋର ମନେ ପଡୁନଥାଏ ।- ଘର ଆଗରେ ପହଞ୍ଚି ଦେଖିଲି କବାଟ ଭିତରୁ ବଂଦ, ବାହାର ବାରଣ୍ଡାରେ ଅଳିଆ ଭର୍ତ୍ତି - ଚାରିଆଡ଼େ ଅଳନ୍ଧୁ ଝୁଲୁଛି । ମାସ ଦି'ଟାରେ ଆମ ଘର ଏପରି ଦୟନୀୟ ଅବସ୍ଥାରେ ପହଞ୍ଚି ଯାଇଥିବ ବୋଲି ମୁଁ କଳ୍ପନା ସୁଦ୍ଧା କରିପାରିନଥିଲି । ପଡ଼ିଶାଘର ଦେଇ ବାରିପଟୁ ଆମ ଘର କବାଟ ଖୋଲିଲି - ଅଗଣା ଭିତରର ବାରଣ୍ଡା ମଧ୍ୟ ଧୂଳି ଧୂସର- ଉଡ଼ିଆସିଥିବା ଶୁଖିଲା ପତର ଓ କୁଟାରେ ଭର୍ତ୍ତି । ଯେଉଁ ଅଗଣାରେ ବସି ବୋଉ ମୋତେ ଭାତ ଖୁଆଇ ଦେଉଥିଲା-ଯେଉଁଠି ଆମେ ସମସ୍ତେ ଜହ୍ନରାତିରେ ଏକାଠି ବସି ହସ ଖୁସିରେ ସମୟ କଟାଉଥିଲୁ - ତାହା ଏପରି ଅଳିଆପୂର୍ଣ୍ଣ ଯେ ବସିବାକୁ ସ୍ଥାନ ନାହିଁ । ଯେଉଁଠାରେ ମୁଁ ଶୋଉଥିଲି- ସେ ଘରର ମଧ୍ୟ ସେହି ଅବସ୍ଥା । ମୋର ଇଚ୍ଛା ହେଲା ଘରଟିକୁ ସଫା କରି ସେଠାରେ କିଛି ସମୟ ବସିବି । ମୋର ପିଲାଦିନ

କଥା ମନେ ପକାଇବି । ନନା ବୋଉ ଯେଉଁ ଯାଗାରେ ମରିଥିଲେ ଅନ୍ତତଃ ସେତିକି ସ୍ଥାନ ସଫା କରି ଟିକିଏ ବସି ସେମାନଙ୍କ କଥା ଭାବିବି । ଘରଟିକୁ ଏପରି ଅବସ୍ଥାରେ ଦେଖି ମୋତେ କାନ୍ଦ ଲାଗିଲା- ମୁଁ ସେପରି ଅଳିଆ ଅସ୍ୱାର ଯାଗାରେ ଯାଇ କିଛି ସମୟ ଗୁମ୍‌ମାରି ବସିଗଲି । ହାତରେ ଅଳ୍ପ ସ୍ଥାନ ସଫା କରିଦେଲି- ଆଖିରୁ ଲୁହ ଝରିପଡୁଥାଏ । ଅତୀତର ଜମାଟ ବନ୍ଧା ସୁଖ ଦୁଃଖର ଭାବାବେଗର ଗଭୀର ଆଲୋଡ଼ନ ଜୀବନକୁ ଶୋକାଚ୍ଛନ୍ନ କରିପକାଇଲା ।

ଏପରି ଭାବରେ ଅନେକ ସମୟ ବସି ରହିଲା ପରେ ପଡ଼ିଶା ଘରର ମିଛି ନାନୀ ଆସି ମୋ ପାଖରେ ପହଞ୍ଚିଗଲା । ସେ ଆଶ୍ଚର୍ଯ୍ୟ ହୋଇ ମୋତେ କୁଆଡ଼େ ଦୂରରୁ ବହୁତ ସମୟ ହେଲା ଦେଖୁଥିଲା । ମୋ ପାଖକୁ ଆସି ମୋତେ କୁଣ୍ଢାଇ ପକାଇଲା— ତା ପଣତ କାନିରେ ମୋର ଲୁହ ପୋଛିଦେଲା । ସେ ମଧ୍ୟ ସେତେବେଳକୁ ଅଶ୍ରୁସିକ୍ତ ହୋଇପଡ଼ିଥିଲା - ଏପରି ପରିତ୍ୟକ୍ତ ଧୂଳି ଧୂସର ଘର ଭିତରେ ଏକୁଟିଆ ବସିଥିବା କଥା ତାକୁ ନିଶ୍ଚିତ ଭାବରେ ଭାବପ୍ରବଣ କରି ପକାଇଲା - ସେ ବେଶି କଥା ନ କହି ମୋତେ ତା ଛାତିରେ ଆଉଜାଇ ଧରିଲା ଏବଂ ଆଦରରେ ମୋ ମୁଣ୍ଡକୁ ଆଉଁସିବାରେ ଲାଗିଲା- କିଛି ସମୟ ପରେ ଆମେ ଦୁହେଁ ତା ଘରକୁ ଗଲୁ-ସେଠାରେ ମୁଁ ସେଓଳି ଖାଇଲି । ରାତିରେ ମୋର ବହୁତ ଇଚ୍ଛା ଥିଲା ଆମ ଘର ସଫା କରି ଶୋଇବା ଲାଗି କିନ୍ତୁ ସେ ଜିଦ୍ କଲା ଯେ ବିଛା, ସାପ, ମୂଷା ଭଣ ଭଣ ଘରେ ମୋତେ କଦାପି ଶୋଇବାକୁ ଦେବନାହିଁ । ସଂଧ୍ୟାରେ ଆମ ଦାଣ୍ଡ ବାରଣ୍ଡା ସଫା କରି ସେଠାରେ ଅନେକ ସମୟ ଧରି ବସି ରହିଲି । କାରଣ ଏହା ଥିଲା ମୋର ପିଲାଦିନର ଅଭ୍ୟାସ - ବାରଣ୍ଡାରେ ବସି ଆମର ଆଗ ଘର ବାରିର ବିରାଟ ସଜନା ଗଛର ଫଳ, ପତ୍ର, ଫୁଲକୁ ଚାହିଁ ରହିବାରେ ମୋର ଥିଲା ଅଦମ୍ୟଆଗ୍ରହ । ସେହି ଗଛ ଭିତର ଦେଇ ଜହ୍ନ କିରଣର ଛାଇ ଆଲୁଅ ଖେଳ ମୁଁ ବହୁ ସମୟ ଧରି ଚାହିଁ ରହିବା ଥିଲା ମୋର ପୁରୁଣା ଅଭ୍ୟାସ । ସେହି ବାରଣ୍ଡାରେ ବସି ନାନୀମାନଙ୍କର ମୁରୁଜ ପକା ଦେଖିବାରେ ଥିଲା ମୋର ଅସରନ୍ତି ଆନନ୍ଦ । ରାତିରେ ଏହି ବାରଣ୍ଡା କଡ଼ରେ ସଦ୍ୟମୃତ କୁଛା ପାଣ୍ଡିଆର କୁନ୍ଥେଇବା ଶବ୍ଦ ଶୁଣି ମା ଓ ନାନୀଙ୍କୁ କୁଣ୍ଢାଇ ଧରି ପଡ଼ି ରହିବାରେ ଯେଉଁ ଅପରିସୀମ ଭୟ ଓ ଉଦ୍ବେଗ ତାହା ମଧ୍ୟ ଏହି ପରିବେଶ ସହିତ ମିଳିମିଶି ରହିଥିଲା - ସେ ସବୁ ଅନୁଭବ କରିବା ପାଇଁ ଅନେକ ସମୟ ଧରି ବାରଣ୍ଡାରେ ବସିଲି ।

ଗ୍ରାମକୁ ଆସି କୃଷ୍ଣଗିରି ପାହାଡ଼ର ନିବିଡ଼ ସବୁଜିମା ଉପଭୋଗ କରିବା ଅତି ସ୍ୱାଭାବିକ ଅନୁଭୂତି । ଆମ ଘରର ସୁଖଦୁଃଖର ସାକ୍ଷୀ ରାମଚଣ୍ଡୀଙ୍କ ଆଗରେ ବସି ମୋର କୃତଜ୍ଞତା ପ୍ରକାଶ କରିବାରେ ମୋର ବହୁତ ଆତ୍ମସନ୍ତୋଷ ହେଲା । ରାମଚଣ୍ଡୀଙ୍କ ମୁହଁରେ ହସ ଝରିପଡୁଥିବା କଥା ମୁଁ ଅନୁଭବ କଲି । ଝାଡ଼େଶ୍ୱର ପ୍ରତ୍ୟେକ ମନ୍ଦିରର ଠାକୁରଙ୍କ ପାଖରେ ମୋର ଶେଷ ପ୍ରଣାମ ଜଣାଇଲି । ଝାଡ଼େଶ୍ୱରର ମୋର ପରିଚିତ ପ୍ରତ୍ୟେକ ଆମ୍ବ, ପଣସ, ଚମ୍ପା, ଟଭା, କରମଂଗା ପ୍ରଭୃତି ଗଛରେ ହାତ ବୁଲାଇ ସେମାନଙ୍କଠାରୁ ବିଦାୟ ମାଗିଲି - ଗ୍ରାମକୁ ଫେରିବା ରାସ୍ତାରେ ଥିବା ସବୁ ଗଛ ପାଖକୁ ଯାଇ ସେମାନଙ୍କର ସ୍ନେହ ସ୍ପର୍ଶ ପାଇ ଉଲ୍ଲସିତ ହେଲି । ଜାମୁକୋଳି ଗଛ ଶାଖାରେ ଘଣ୍ଟା ଘଣ୍ଟା ବସି କୋଳି

ଖାଉଥିବା ଯୋଗୁ ତାଠାରୁ ବିଦାୟ ଅତ୍ୟନ୍ତ କରୁଣ ମନେ ହେଲା- କେତୋଟି ପାଚିଲା ଜାମୁକୋଳି ମୋ ଉପରେ ଆସି ପଡ଼ିଲା - ଏହା ଥିଲା ତା'ର ଶେଷ ଉପହାର ।

ଏହିପରି ପ୍ରତ୍ୟେକ ଗଛଠାରୁ ବିଦାୟ ନେଇ ଆସିଲା ବେଳେ ପାଖରେ ଗାଈ ଗୋଠ ଦେଖି ମୋର ମନେ ପଡ଼ିଗଲା ଆମର ବୁଧି ଗାଈ କଥା । ତାକୁ କାହା ପାଖରେ ଭାଇନା ଦେଇଥିଲେ ମୁଁ ଜାଣିନଥିଲି - ସେ ବଂଚିଛିକି ନାହିଁ ତାହା ବି ମୋର ଜଣା ନଥିଲା । ସେ ଯେତେବେଳେ ହଜି ଯାଇଥିଲା ତାକୁ ଡାକି ଡାକି ଜଙ୍ଗଲରେ ତାକୁ ଖୋଜିବା କଥା ମୋର ମନେପଡ଼ି ମନଟା ଭାରି ଭାରି ହୋଇଉଠିଲା । ଗାଈ ଗୋଠ ଭିତରେ ସେ ଥାଇପାରେ ବୋଲି ଭାବିଲି । ମୁଁ ଗୋଠ ଭିତରେ ପଶି ବୁଧିକୁ ଖୋଜିବାକୁ ଲାଗିଲି-ପ୍ରତ୍ୟେକ ଗାଈର ମୁହଁକୁ ସିଙ୍ଘକୁ ଚାହିଁଲି– ସତରେ କଅଣ ବୁଧିକୁ ଦେଖିପାରିବି ? ଦେଖିଲେ ବୁଧି ମୋତେ ନିଶ୍ଚୟ ଚାଟି ପକାଇବ- ବୁଧିକୁ ଖୋଜି ଖୋଜି ଗାଈ ଗୋଠ ହେପାଜତରେ ଥିବା ବିକୁ ଗଉଡ଼କୁ ପଚାରିଲି ବୁଧି କଥା- ବିକୁ କହିଲା

''ତୁମ ଭାଇନା ବୁଧିକୁ ଆମକୁ ଦେଇ ଯାଇଥିଲେ କିନ୍ତୁ କେଜାଣି କାହିଁକି ଅଳ୍ପଦିନ ପରେ ସେ ମରିଗଲା-ଜାଣିଛ ଗାଈମାନେ ଖାଉନ୍ଦକୁ ଝୁରି ଝୁରି ଏପରି ମରିଯାଆନ୍ତି । ବିକୁ କହିଲା 'ଜାଣିଛ ବୁଧି ମଲାବେଳେ ତା ଆଖିରୁ ବହୁତ ଲୁହ ବୋହୁଥିଲା ।

ମୋ ଆଖିରୁ ଦୁଇଧାର ଲୁହ ଝରିପଡ଼ିଲା- ଏହା ମୋତେ ବହୁ ସମୟ ଧରି ଶୋକାକୁଳ କରି ପକାଇଥିଲା । ଗୋଠକ ଗାଈ ଯେପରି ସେମାନଙ୍କର କଳା ଡବ ଡବ ଆଖିରେ ମୋତେ ଚାହିଁ ରହିଥିଲେ । କୃଷ୍ଣ ଗୋପପୁର ଛାଡ଼ିଆସିଲା ବେଳକୁ ତାଙ୍କର ପ୍ରାଣପ୍ରିୟ ଗାଈ ବାଛୁରୀମାନେ ବୋଧହୁଏ ତାଙ୍କୁ ଏହିପରି କାତରେ ଆଖିରେ ଚାହିଁଥିବେ । ତଥାପି ସବୁଦିନ ପାଇଁ କୃଷ୍ଣ ଗୋପପୁର ଗ୍ରାମକୁ ଛାଡ଼ି ମଥୁରା ସହରକୁ ଚାଲିଯାଇଥିଲେ । ତାଙ୍କ ମାତା ଯେତେ ବିକଳ ହୋଇ କୃଷ୍ଣଙ୍କର ଫେରନ୍ତା ପଥକୁ ଚାହିଁ ରହିଥିଲେ ସୁଦ୍ଧା କୃଷ୍ଣ ଆଉ ଫେରି ନଥିଲେ । ସେହିଦିନୁ ସହରକୁ ଚାଲିଯାଉଥିବା ଲୋକେ ପଛରେ ରହିଯାଇଥିବା ଗ୍ରାମକୁ ଆଉ ଫେରିନାହାନ୍ତି । ବିନୁ ବାଞ୍ଛା, ଜେମି, ଗେହ୍ଲିମାନେ କିଛିଦିନ ଝୁରି ଝୁରି ଭୁଲିଯାଆନ୍ତି । କାରଣ ତାହାହିଁ ଜୀବନ, ପଛକୁ ଚାହିଁବା ପାଇଁ ତାର ବେଳ ନାହିଁ - ଆଗକୁ ଚାଲିବାହିଁ ତାର ଧର୍ମ । ଏହିପରି ପ୍ରତ୍ୟେକ ସାଙ୍ଗସାଥୀଙ୍କୁ ଭାବ ବିହ୍ୱଳ ବିଦାୟ ସଂଭାଷଣ ଜଣାଇଲି । ସମସ୍ତଙ୍କ ମନରେ ସେହି ଗୋଟିଏ ପ୍ରଶ୍ନ ଆଉ କେବେ ଆସିବ ଆମଆଡ଼େ । ବାଞ୍ଛା, ହରି, ଧ୍ରୁବ, ନିରଂଜନ, ରେଖି, ରାହାସ, ଜେମା ଗେହ୍ଲି, ଦୁଃଖୀ ନାନୀ, ମିଛି ନାନୀମାନଙ୍କର କରୁଣ ପ୍ରଶ୍ନ । ନିକଟ ଭବିଷ୍ୟତରେ ନ ଆସିବାର ସଂଭାବନାରେ ଆମେ ସମସ୍ତେ ଦୁଃଖିତ ହେଲେ ସୁଦ୍ଧା ମୋର କଟକ ଯାତ୍ରାର ଗୌରବ ଯୋଗୁ ମୁଁ ବେଶ୍ ଗର୍ବ ଅନୁଭବ କରୁଥିଲି । ସମସ୍ତଙ୍କର ଥଟ୍ଟା ପରିହାସର ପାତ୍ର ଚକର ଛେଉଣ୍ଡ ମଥୁରା ପୁରୀକୁ ଯାଉଥିବାର ଆନନ୍ଦ ଉଲ୍ଲାସ ମନ ଭିତରେ ଯେ କୁରୁଳି ଉଠୁ ନଥିଲା ତା ନୁହେଁ ।

ପ୍ରାୟ ଷାଠିଏ ବର୍ଷ ପରେ ଯେତେବେଳେ ମୁଁ ଝାଡ଼େଶ୍ୱରଠାରେ କୃଷ୍ଣଗିରି ପାହାଡ଼ ପାଦଦେଶରେ ନିର୍ମାଣ କରିଥିବା ଘର ବାରଣ୍ଡାରେ ବସି ସଂଧ୍ୟା ତାରାର କୋମଳ

ଆଲୋକରେ ଓ ଚନ୍ଦ୍ର ଆଲୁଅର ସ୍ନିଗ୍ଧ ଶୀତଳ ଆବରଣ ଭିତରେ ବୁଡ଼ିଯାଏ-ଅତୀତର ଏହି ଅକଳନ ସ୍ମୃତି ସବୁ ମନ ଭିତରେ ଭାସି ଆସେ - ପୃଥିବୀର ବିଭିନ୍ନ ଦେଶରେ ନାନା ଧରଣର କୋଳାହଳର ଶୋଭାଯାତ୍ରା ଭିତରେ ଆଜି ଜୀବନର ଅନୁଭୂତି ସୀମାହୀନ ଜୀବନାକାଶର ଦୂରନ୍ତ ନକ୍ଷତ୍ର ପୁଞ୍ଜପରି ଜୀବନ୍ତ ହୋଇ ଉଠନ୍ତି । ଏହାର ଆବେଗାତ୍ମକ ଉପଲବ୍ଧି ପାଇଁ ହିଁ ଲକ୍ଷାଧିକ ଟଙ୍କା ଖର୍ଚ୍ଚ କରି କୃଷ୍ଣଗିରି ପାହାଡ଼ ତଳେ ଗୋଟିଏ ନିରୋଳା ପ୍ରାନ୍ତରେ ମୁଁ ନିଭୃତ ନିଳୟଟିଏ ରଚନା କରି ଅତୀତର ବିଭିନ୍ନ ମନୋରମ ସ୍ମୃତିଚାରଣ କରି ପାରିବାରେ ମୋର ଚରମ ଆତ୍ମୋପଲବ୍ଧି ହୁଏ - ବିଷ୍ଣୁ କ୍ଷୀର ସାଗରରେ ଧ୍ୟାନ ମଗ୍ନ ହୋଇ ସୃଷ୍ଟିର ମାଧୁରିମା ଉପଭୋଗ କଲା ପରି ମୁଁ ଅତୀତ ଜୀବନର ସୁଖଦୁଃଖର ବର୍ଣ୍ଣାଳୀ ଭିତରେ କୃଷ୍ଣଗିରି ପାଦଦେଶରେ ବସି ସ୍ୱପ୍ନ ଦେଖି ଦେଖି ଏହି କ୍ଷୁଦ୍ର ଜୀବନକୁ ସ୍ୱପ୍ନିଳ ତରଙ୍ଗରେ ରୂପାୟିତ କରିବାରେ ଆନନ୍ଦ ପାଏ । ଅବଶ୍ୟ ବର୍ତ୍ତମାନ ପିଲାଦିନର ଧ୍ରୁବ, ହରି, ରେଖି, ଗେହ୍ଲିମାନେ ଆଉ ନାହାଁନ୍ତି । ସମୟ ସ୍ରୋତରେ ସେମାନେ ହଜିଗଲେଣି । କିଂତୁ ସେମାନଙ୍କର ସ୍ମୃତିକୁ ବାରମ୍ବାର ଆଉଡ଼ାଇ ଚାଲିବାରେ ମୋର ଅପାର ଆନନ୍ଦ ହୁଏ । ଏହାହିଁ ହେଉଛି ଜୀବନର ସ୍ୱପ୍ନିଳ କବିତା ।

■ ■ ■

# ୬

## କଟକ ଯାତ୍ରା : ନୂତନ ଅଭିମୁଖ୍ୟର ନବଦିଗନ୍ତ

ତିନି ଚାରିମାସ ଧରି କଟକର ସ୍ୱପ୍ନ ମୋତେ ବିଚଳିତ କରୁଥାଏ । କଟକ ବିଷୟରେ ଯେଉଁ ବହିରେ ଦେଖେ ତାକୁ ପଢ଼େ । ଗୋଟିଏ ଉପନ୍ୟାସରେ କଟକର ବଡ଼ ବୁରୁଜ ଓ ନରାଜ ପାହାଡ଼ ଆର ପାଖେ ସୂର୍ଯ୍ୟାସ୍ତ ବିଷୟରେ ବର୍ଣ୍ଣନା ପଢ଼ି ଏତେ ଭଲ ଲାଗିଲା ଯେ ଆଜିଯାଏ ମୋର ସେ କଥା ବିଶଦ ଭାବରେ ମନେଅଛି । ବୁଢ଼ୀମା କହେ, କଟକରେ ରାତି ନାହିଁ ପୁରୀରେ ଜାତି ନାହିଁ । ରାତିନଥିବା ସହର କେତେ ମନୋରମ ହୋଇଥିବ, ସେହି ବିଷୟରେ କଳ୍ପନା ଜଳ୍ପନା କରୁଥିଲି । ବାର୍ଷିକ ପରୀକ୍ଷା ପରେ ମଇ ମାସରେ ସ୍କୁଲରୁ ସ୍କୁଲ ବଦଳ ପତ୍ରଧରି କଟକ ଅଭିମୁଖେ ଜଣେ ଭଦ୍ରଲୋକଙ୍କ ସଙ୍ଗରେ ଯାତ୍ରା କଲି । ଖଲ୍ଲିକୋଟ ଷ୍ଟେସନଠାରୁ କଟକ ଷ୍ଟେସନ ପର୍ଯ୍ୟନ୍ତ ପ୍ରତ୍ୟେକ ଷ୍ଟେସନର ନାମ ଲେଖୁଥାଏ ଏବଂ ଆଉ କେତେ ଷ୍ଟେସନ ପରେ କଟକ ପଡ଼ିବ ପଚାରୁଥାଏ । ରେଳରେ ଚଢ଼ିବା ବି ଏହା ମୋର ପ୍ରଥମ ଅଭିଜ୍ଞତା । ତେଣୁ ଭାରି ଭଲ ଲାଗୁଥାଏ ।

ମୁଁ ଯେପରି ମୋର ଚିର ଈପ୍‌ସିତ କଳ୍ପନା ରାଜ୍ୟକୁ ରେଳରେ ଚଢ଼ି ଯାଉଛି । ମୋପାଇଁ ଭବିଷ୍ୟତ ଜୀବନର ଜୟଦ୍ରଥ ରଥ ଥିଲା ଏହି ରେଳଗାଡ଼ି । କଟକରେ ଦିନ ଗୋଟାଏ ବେଳେ ପହଞ୍ଚିଲି । ଷ୍ଟେସନରୁ ଗୋଟିଏ ଏକ ବଳଦିଆ ଗାଡ଼ିରେ ତେଲେଙ୍ଗା ବଜାରରେ ଥିବା ଭାଇନାଙ୍କ ଘରକୁ ଚାଲିଲୁ । ମଇମାସ ଖରାରେ କଟକର ନାଳି ପତଳା ଧୂଳି ଗରମ ପବନରେ ଉଡ଼ିଆସି ଦେହ ମୁହଁରେ ପାଉଡ଼ର ଭଳି ବୋଳି ହୋଇଯାଉଥାଏ । ଷ୍ଟେସନରୁ ଛତ୍ରବଜାର ରାସ୍ତା ଦେଇ ଆମ ଗାଡ଼ି କେଁ କଟର କେଁ କଟର କରି ଧକଡ଼ ଚକଡ଼ ହୋଇ ଚାଲିଥାଏ । ରାସ୍ତା ଅସରନ୍ତି ବୋଲି ମନେ ହେଉଥାଏ । ଘରେ ପହଞ୍ଚିବାକୁ ଯେ କେତେ ସମୟ ଲାଗିଲା ଭାବିହୁଏ ନା । କଟକ ସହିତ ଏପରି ଭାବରେ ପ୍ରଥମ ପରିଚୟ ମୋତେ ଆଦୌ ଭଲ ଲାଗିଲା ନାହିଁ । ପ୍ରଚଣ୍ଡ ଖରା, ନାଳି ଧୂଳିମିଶା ଗରମ ପବନ, ଖୋଲା ପାଇଖାନାର ଦୁର୍ଗନ୍ଧ, ସୋରିଷ ତେଲରେ ଭଜା ହେଉଥିବା ବରା ଗୁଲୁଗୁଲାର ତୀବ୍ର ଗନ୍ଧ, ଚିର ନିର୍ଯାତିତ ବୁଢ଼ାହଡ଼ା ବଳଦର ଆଗକୁ ଘୋଷାଡ଼ି ଘୋଷାଡ଼ି ହୋଇ ଚାଲିଥିବାର ବିଳମ୍ବିତ ପଦଧ୍ୱନି, ହଡ଼ାବଳଦ ପରି ଦିଶୁଥିବା ରୁଗ୍‌ଣ ଗାଡ଼ି ଚାଳକର

ଅର୍ଦ୍ଧସୁପ୍ତ ଅବସ୍ଥା ଯୋଗୁ ସୁଦୀର୍ଘ ସମୟରେ ମୋର ପ୍ରବଳ କ୍ଷୁଧା, କଟକ ଯାତ୍ରାକୁ ଆଦୌ ରୁଚିକର କରିପାରିଲା ନାହିଁ । ଏହି କଣ ମୋର ସ୍ୱପ୍ନର କଟକ ସହର– ଯେଉଁଠି ଗଳ୍ପ ଉପନ୍ୟାସର ନାୟକ ନାୟିକାମାନେ ଜୀବନ ଓ ପ୍ରକୃତିକୁ ଉପଭୋଗ କରୁଛନ୍ତି ? କେବଳ ବଡ଼ ଆଗ୍ରହ ଯେ ଭାଇନାଙ୍କର ନୂଆ ଘର ଦେଖିବି, ସମସ୍ତଙ୍କ ସହ ଦେଖା ହେବ । ପ୍ରାୟ ଦିନ ତିନିଟା ବେଳେ ଘରେ ପହଞ୍ଚିଲି । ସାଙ୍ଗେ ସାଙ୍ଗେ ଘର ଚାରିଆଡ଼ ବୁଲିଆସିଲି । ଛଅ ବଖରାର ଦୋତାଲା ଘର, ସିମେଣ୍ଟ ଅଗଣା ଗୋଟିଏ ଗହୀର ବାକ୍ସପରି ଦେଖାଯାଉଥାଏ । ଘରଟି ଛୋଟିଆ ହେଲେ ମଧ୍ୟ ଭାଇନାଙ୍କ ଚାକିରିର ପ୍ରଥମ ଘର-ଖଲ୍ଲିକୋଟର ଡାକବଙ୍ଗଳାଠାରୁ ନିଶ୍ଚିତ ଭାବେ ଭଲ ଥିଲା ।

ଆମ ପାଇଁ ବିଶେଷ ଭାବେ ରନ୍ଧାରନ୍ଧି ହୋଇଥିଲା । ଭାଇନା, ବୁଢ଼ୀମା, ନାନୀ, ସାନଭାଇ ଦେବେନ୍ଦ୍ର ସମସ୍ତେ ଏତେ ଦିନ ପରେ ଭାଇନାଙ୍କର ସ୍ୱପ୍ନିଳ ରାଜବାଟିରେ ଏକାଠି ହେଲୁ । ଏପରି ଆନନ୍ଦରେ ରାସ୍ତାର ଅପ୍ରୀତିକର ଅନୁଭୂତି କେଉଁଆଡ଼େ ଉଭେଇଗଲା । ଖାଇ ସାରିଲା ପରେ କଟକ ପୁଣି ଭଲ ଲାଗିଲା ।

ସେହିଦିନ ସନ୍ଧ୍ୟାରେ ମୋ ପାଇଁ ଯୋତା କିଣାହେଲା, ଧୋତି ସାର୍ଟ ନୂଆକରି ଆସିଲା । ପ୍ରଥମଥର ପାଇଁ ଯୋତା ପିନ୍ଧି ମୋର ଆତ୍ମ ସମ୍ମାନ ବହୁତ ବଢ଼ିଗଲା ପରି ମନେହେଲା । ମନେ ପଡ଼ିଲା ଖଲ୍ଲିକୋଟରେ ଥିଲାବେଳେ ଜଣଙ୍କର ଯୋତା ମାଗିଆଣି ପିନ୍ଧି ସ୍କାଉଟ ପୋଷାକ ଲଗେଇ ମାମୁଁ ଘର ଗାଁ ମଥୁରାକୁ ଯାଇଥିଲି । ସେ ଗାଁ ଭିତରେ ଯୋତା ମଚ୍‌ମଚ୍ କରି ପ୍ୟାଣ୍ଟ ସାର୍ଟ ପିନ୍ଧି ଚାଲିଗଲା ବେଳେ ଗାଁ'ର ସମସ୍ତେ ମୋତେ ପ୍ରଶଂସା ସୂଚକ ମୁହଁରେ ଚାହିଁ ରହିଥିଲେ । ପିଲାମାନେ ମେଳି ବାନ୍ଧି ମୋତେ ଘେରି ଯାଉଥିଲେ । ମୋତେ ନିଜକୁ ଦିଗ୍‌ବିଜୟୀ ନେପୋଲିୟନ୍ ପରି ମନେ ହେଉଥିଲା । ଗାଁ'ରେ ଥିଲାବେଳେ ଯେଉଁ ଗଭୀର ହୀନମନ୍ୟତା ମୋଠାରେ ଥିଲା, ତାହା ହଠାତ୍ ଅପସରି ଯାଇଥିଲା । ମୁଁ ଯେପରି ସମାଜର ଜଣେ ବିଭବଶାଳୀ ପିଲା ହୋଇଗଲି । ବର୍ତ୍ତମାନଠାରୁ ସବୁବେଳେ ଯୋତା ପିନ୍ଧିବା ସମ୍ଭାବନାରେ ମୋର ବହୁତ ଆନନ୍ଦ ହୋଇଥିଲା । କାରଣ ଗାଁ'ରେ ବହୁ ପରିଶ୍ରମରେ ନଡ଼ିଆ ବାହୁଙ୍ଗା କାଟି କାଠପଟା ଯୋଡ଼ି ଯୋତା ତିଆରି କରି ପିନ୍ଧିବାର ମୋର ସଉକି ଥିଲା । ଯୋତା କି ବିରାଟ ସୁଖକର ଆବିଷ୍କାର ! ଯୋତା ପିନ୍ଧି ଚାଲିଲେ ରାସ୍ତାରେ କଣ୍ଟା, ଝଣ୍ଟା, ଗୋଡ଼ି, ପଥର ପ୍ରତି ଭ୍ରୂକ୍ଷେପ କରିବାର ଆବଶ୍ୟକତା ନାହିଁ । କି ମୂଲ୍ୟବାନ ପଦାର୍ଥ ଥିଲା ଏହା ମୋ ଆଖିରେ । ପିଲାଦିନେ ଏହିପରି ଛୋଟ ଛୋଟ ଘଟଣା କିପରି ବ୍ୟକ୍ତିତ୍ୱକୁ ପ୍ରଭାବିତ ତଥା ପ୍ରସାରିତ କରେ ଭାବି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ।

ସେହିଦିନ ସନ୍ଧ୍ୟାରେ ହିଁ କାଠଯୋଡ଼ି ବଡ଼ ବୁରୁଜ ପାଖକୁ ବୁଲିଗଲି । ଭଲ ଲାଗିଲା । ଯେଉଁମାନେ ବୁଲୁଥିଲେ ବା ବସିଥିଲେ ସମସ୍ତେ ଉପନ୍ୟାସର ନାୟକ ବୋଲି ମନେହେଲା । ଜହ୍ନ ପଡ଼ି ଆସୁଥାଏ । ଦିଗନ୍ତ ବିସ୍ତାରୀ ଶୁଭ୍ର ବାଲୁକା ରାଶି ଧଳା ଜହ୍ନ ଆଲୁଅରେ ଚକ୍‌ଚକ୍ କରୁଥିଲା । ବଡ଼ ବୁରୁଜର ପ୍ରଥମ ସନ୍ଧ୍ୟାର ଦୃଶ୍ୟ ଯେ ବଡ଼ ଚିତ୍ତାକର୍ଷକ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । କ୍ରମେ କଟକ ସହରର ବହୁ ରମଣୀୟ ସ୍ଥାନ ଦେଖାହେଲା । ମହାନଦୀ, କାଠଯୋଡ଼ି, ନଦୀକୂଳ ଓ ମଝି ନଈ ବାଲି ସବୁଠୁ ବେଶି ଭଲ ଲାଗିଥିଲା । କାଠଯୋଡ଼ିକୁ ସକାଳୁ ଗାଧୋଇ ଆସିବା ଆହୁରି ଗୋଟିଏ ଅବିସ୍ମରଣୀୟ ଅନୁଭୂତି ।

ତା'ପରେ ଜୁଲାଇରେ କଲିଜିଏଟ୍ ସ୍କୁଲରେ ସପ୍ତମ ଶ୍ରେଣୀରେ ଭର୍ତ୍ତି ହେଲି । ଇଂରାଜୀ, ଅଙ୍କରେ ମୁଁ ଖୁବ୍ ଭଲ ଥିଲି । କିନ୍ତୁ ଗଞ୍ଜାମ ସ୍କୁଲରେ ଓଡ଼ିଆ ସାହିତ୍ୟ ପାଠର ମାନ ବହୁତ କମ୍ ଥିବାରୁ ସପ୍ତମ ଶ୍ରେଣୀରେ ଓଡ଼ିଆ ସାହିତ୍ୟରେ ଅସୁବିଧା ହେଲା । କିନ୍ତୁ ଡେପୁଟି ମାଜିଷ୍ଟ୍ରେଟଙ୍କ ଭାଇ ହିସାବରେ ମୁଁ ସ୍କୁଲରେ ଏତେ ବେଶି ସୁବିଧା ସୁଯୋଗ ପାଇଲି ଯେ ମୋର ପୂର୍ବ ହୀନମନ୍ୟତା ବହୁତ କମିଗଲା । ଭଲ ମଧ୍ୟ ପଢ଼ିଲି । ତେଣୁ ମୋତେ ଯେପରି ମୁଁ ପ୍ରଥମଥର ପାଇଁ ନୂଆ ରୂପରେ ଦେଖିପାରିଲି । ମୁଁ ଜଣେ ବିଶିଷ୍ଟ ସ୍କୁଲ ଛାତ୍ର । ଅନେକ ପିଲାଙ୍କ ଅପେକ୍ଷା ମୋ ସ୍ଥାନ ଉଚ୍ଚରେ– ଏହି ଧାରଣା ମୋର ହେଲା । ଶିକ୍ଷକମାନଙ୍କର ମୋ ପ୍ରତି ଆଦର ଯତ୍ନ ଓ ଖାତିରି ଏପରି ବ୍ୟକ୍ତି ଚେତନା ପାଇଁ ବହୁତ ସାହାଯ୍ୟ କଲା ।

ପୁରୁଷୋତ୍ତମପୁରରେ ପ୍ରଥମେ ପଢ଼ିବା ପାଇଁ ଯାଇଥିବା ବେଳର ମୋର ଅବହେଳିତ ହୀନମନ୍ୟତା ଦୂର ହୋଇଗଲା–କିନ୍ତୁ ମନରୁ ତାହା ଲିଭି ନଥିଲା । ପ୍ରକୃତରେ ଦେଖିବାକୁ ଗଲେ ଆମ ସାମନ୍ତବାଦୀ ସମାଜରେ ଆମର ପାରିବାରିକ ତଥା ବ୍ୟକ୍ତିଗତ ମର୍ଯ୍ୟାଦା ଅର୍ଥନୈତିକ ସ୍ଥିତି ଉପରେ ନିର୍ଭର କରୁଛି । ଏବେ ମଧ୍ୟ ଏହା କାର୍ଯ୍ୟ କରୁଛି । ଏହି ମର୍ଯ୍ୟାଦା ଓ ତାକୁ ନେଇ ଯେଉଁ ବାତାବରଣ ସୃଷ୍ଟି ହୁଏ, ତାହାହିଁ ପିଲାଙ୍କଠାରେ ବ୍ୟକ୍ତିତ୍ୱ ଗଠନରେ ସାହାଯ୍ୟ କରୁଛି । ଖଲ୍ଲିକୋଟରେ ଥିଲା ବେଳେ ମୋର ଯଦିଚ ବ୍ୟକ୍ତିଚେତନା ଜାଗ୍ରତ ହୋଇଥିଲା– କିନ୍ତୁ କଟକରେ ପ୍ରଥମ ବର୍ଷ ଭିତରେ ଏହା ବହୁ ପରିମାଣରେ ବଳିଷ୍ଠ ହୋଇପାରିଥିଲା । ଗଭୀର ଅଚେତନ ମନରେ ସେଯେ ନ୍ୟୂନଭାବ କାମ କରୁ ନଥିଲା ତା ନୁହେଁ, କିନ୍ତୁ କ୍ରମବର୍ଦ୍ଧିଷ୍ଣୁ ଚେତନା ଶକ୍ତି ତାକୁ ବହୁ ପରିମାଣରେ ଦବାଇ ରଖି ପାରୁଥିଲା । କିଛି ପରିମାଣରେ ନ୍ୟୂନ ମନୋଭାବ ମନୁଷ୍ୟକୁ ସାହାଯ୍ୟ କରିଥାଏ । ଖୁବ୍ ବେଶି ହୋଇଗଲେ ବ୍ୟକ୍ତିତ୍ୱ ଭାଙ୍ଗିପଡ଼େ ଓ ନାନା ପ୍ରକାରର ମାନସିକ ବିକାର ଦେଖାଦିଏ ।

ମୋର ଏହି ନବ ଉନ୍ମୀଳିତ ଚେତନା କେବଳ ପାଠପଢ଼ା ଭିତରେ ଆବଦ୍ଧ ହେବାକୁ ଚାହିଁଲା ନାହିଁ । ଯେଉଁମାନେ ସବୁବେଳେ ବସି ପାଠବହି ଘୋଷନ୍ତି, କ୍ଲାସ୍‌ରେ ଭଲ କରନ୍ତି, ସେମାନେ ମୋତେ କାହିଁକି ବିଶେଷ ଭାବରେ ପ୍ରେରଣା ଦେଇ ପାରିଲେନାହିଁ । ସେମାନଙ୍କର ମାନସିକ ପରିସର ମୋତେ ବହୁତ ସଂକୀର୍ଣ୍ଣ ମନେହେଲା । ଏଥିରେ କେବଳ ପରିଶ୍ରମ ବ୍ୟତୀତ ଦୈନନ୍ଦିନ ଜୀବନର ଆନନ୍ଦ ବା ଉନ୍ମାଦନା ଥିଲା ବୋଲି ମୋର ମନେହେଲା ନାହିଁ । ଏ ପ୍ରକାର ଜୀବନ ବଡ଼ ଏକଘେଯାଁ, ଯନ୍ତ୍ରଚାଳିତ ଓ ମାଦକତାଶୂନ୍ୟ । ଜୀବନର ବହୁତ ଅନୁଭୂତିର ବ୍ୟାପକ ପରିସର ବାହାରେ ଏମାନେ ଥିଲେ ବୋଲି ମୋର ଦୃଢ଼ ଧାରଣା ହେଲା । ଭାଇନା ସବୁ ସମୟରେ ପଢ଼ି ପଢ଼ି ବିଶ୍ୱବିଦ୍ୟାଳୟରେ ଭଲ କଲେ ବୋଲି ସିନା ଏତେ ଉଚ୍ଚପଦରେ ରହିଲେ । ଏ କଥାଟି ମୋର ବାରମ୍ବାର ମନରେ ଆସିଲେ ମଧ୍ୟ ଜୀବନରେ ଅନ୍ୟାନ୍ୟ ମାଦକତା ପ୍ରତି ମୋର ଆକର୍ଷଣ ରହିଲା । ତା ନହେଲେ ଜୀବନ ଅସମ୍ପୂର୍ଣ୍ଣ ବୋଲି ମୁଁ ଭାବିବାକୁ ଲାଗିଲି । ଦାରିଦ୍ର୍ୟରୁ ମୁକ୍ତି ପାଇଲା ପରେ ଦାରିଦ୍ର୍ୟର ଭୟ ଛାଡ଼ିଗଲା । ଜୀବନକୁ କେବଳ ପାଠ ପଢ଼ିବା ପାଇଁ ପାଣି ଛଡ଼ାଇ ଦେବା କଥାଟି ମୂର୍ଖତାର ପରିଚାୟକ ବୋଲି ମନେହେଲା । ଯାହା ହେଉ, କ୍ରମେ ସାହିତ୍ୟ, ରାଜନୀତି, ଧର୍ମଚର୍ଚ୍ଚା ପ୍ରଭୃତି ବହୁ କ୍ଷେତ୍ରରେ ମୋର ପ୍ରବଳ ଆଗ୍ରହ ବଢ଼ି ଉଠିଲା ।

## (କ) ସାହିତ୍ୟିକ ଆଗ୍ରହ

ଅଷ୍ଟମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବା ପରେ ପରେ ସାହିତ୍ୟ କ୍ଷେତ୍ରରେ ମୋର ଆଗ୍ରହ ବହୁତ ବଢ଼ି ଉଠିଲା । ଘରେ ଗୋଟିଏ ପୁସ୍ତକାଳୟ ଆରମ୍ଭ କରିଦେଲି । ବହି ଦାମ୍ କମ୍ ଥାଏ । ମୋ ହାତକୁ କିଛି ପଇସା ଆସୁଥିଲା । ଭାଇନା ବନ୍ୟା କାର୍ଯ୍ୟରେ ବେଶୀ ସମୟ ବାହାରେ ରହୁଥିଲେ । ମୁଁ ଘର ଚଳାଉଥିଲି । ଘର ଖର୍ଚ୍ଚ ପରେ ଆଉ କିଛି ଟଙ୍କାରେ ବହି କିଣାହୁଏ । ଏହା ଏପରି ଅଭ୍ୟାସରେ ପରିଣତ ହୋଇଗଲା ଯେ, ପ୍ରତି ମାସରେ ୧୫/୨୦ ଖଣ୍ଡ ବହି ନ କିଣିଲେ ମନ ଶାନ୍ତ ହୁଏନାହିଁ ! ଉପନ୍ୟାସ, କାବ୍ୟ, ପୁରାଣ ସହିତ ସବୁ ପ୍ରକାରର ବହି କିଣେ । ଆନନ୍ଦ ଲହରୀ ଉପନ୍ୟାସମାଳା ନିୟମିତ ଭାବେ ଆସେ । ଉପେନ୍ଦ୍ର ଭଞ୍ଜଙ୍କର ସମସ୍ତ ପ୍ରକାଶିତ ବହି ମୋ ପୁସ୍ତକାଳୟରେ ଥାଏ । ଏହି ବୟସ ଜହ୍ନ ତାରା ଦେଖିବା ବୟସ କି ନା ପୁସ୍ତକାଳୟର ନାମ ରହିଲା - 'ରଥ ଷ୍ଟାର ଲାଇବ୍ରେରୀ' । ଚାରିବର୍ଷ ସ୍କୁଲ କାଳ ଭିତରେ ପ୍ରାୟ ଏକହଜାର ଓଡ଼ିଆ ବହି ଏବଂ ଦୁଇଶହ ଯାଏ ବଙ୍ଗଳା ଓ ଇଂରାଜୀ ବହି ପୁସ୍ତକାଳୟରେ ଥାଏ । ଅନ୍ୟମାନଙ୍କଠୁ ମାଗିଯାଚି କିଛି ବହି ଯୋଗାଡ଼ କରେ । ବହି ମାଗି ଆଣିବା ଏପରି ଗୋଟିଏ ଅମଳ ହୋଇଗଲା ଯେ ଥରେ ଜଣେ ସାଙ୍ଗ ମୋତେ ସକାଳୁଆ ସ୍କୁଲ ପରେ ଦିନ ବାରଟା ବେଳେ ତା ଘରକୁ ଡାକିଲା ବହି ଦେବ ବୋଲି । ମୁଁ ଭୋକ ଶୋଷ ଭୁଲି ତା ସାଙ୍ଗରେ ଗଲି । ମୋତେ ବହୁତ ସମୟ ଅପେକ୍ଷା କରିବାକୁ ପଡ଼ିଲା । ଯେତେ ଡେରି ହେଲା ସେତେ ବେଶୀ ବହି ମିଳିବ ବୋଲି ମୁଁ ଆଶା କରି ବସିଥାଏ । ସେ ଭିତରକୁ ଗଲା । ଆରାମରେ ଗାଧୋଇ ଖାଇ ଘଣ୍ଟାଏ ପରେ ଗୋଟିଏ ଛୋଟିଆ ବହି ଆଣି ମୋ ହାତକୁ ବଢ଼ାଇଦେଲା । ସେତେବେଳେ ମୋ ମନରେ ଏତେ ଦୁଃଖ ଓ ରାଗ ଆସିଲା ଯେ ବହିଟି ତା ମୁହଁ ଉପରକୁ ଫୋପାଡ଼ି ଦେଇ ଚାଲି ଆସିଲି । କିନ୍ତୁ ମିନିଟିଏ ପରେ ଭାବିଲି—ଯାହା ହେଉ ପଛେ ଗୋଟିଏ ବହି ତ ମିଳିଛି । ଲାଇବ୍ରେରୀରେ ତ ଆଉ ଗୋଟିଏ ଅଧିକ ବହି ହେବ । ତେଣୁ ହଠାତ୍ ଫେରିଯାଇ ତଳେ ପଡ଼ିଥିବା ବହିଟି ଧରି ଆସିଲି । ରାସ୍ତାସାରା କାନ୍ଦ ଲାଗୁଥାଏ, ଭୋକରେ ଯେତିକି ନୁହେଁ— ତାଠୁ ବେଶୀ ଅପମାନରେ । ପରେ କିନ୍ତୁ ସେହି ବନ୍ଧୁ ଜଣକ ପ୍ରାୟ ପନ୍ଦରକୋଡ଼ିଏ ଖଣ୍ଡ ବହି ନେଇ ନିଜେ ଆମ ଘରକୁ ଆସି ଦେଇ ଯାଇଥିଲା । ସେ ପ୍ରଥମ ଦିନ ମୋତେ ମୋର ବହିନିଶା ପାଇଁ ଥଟ୍ଟା କରି ଏପରି କରିଥିଲା ବୋଲି କହିଲା ।

ବହି ଯେ କେବଳ ଲାଇବ୍ରେରୀରେ ରଖୁଥିଲି ତା ନୁହେଁ, ପ୍ରାୟ ସବୁ ବହି ପଢୁଥିଲି । ଆମେ କିଛିଦିନ ତେଲେଙ୍ଗାବଜାର ବସାରେ ରହିଲା ପରେ କାଳୀଗଳିରେ ଗୋଟିଏ ବଡ଼ଘର ଭଡ଼ା ନେଲୁ-ସେଠାରେ ପରିବା ଲଗାଇବା ପାଇଁ ବାରି- ବଡ଼ ଅଗଣା- ବେଡ୍‌ମିଣ୍ଟନ କୋର୍ଟ ସହିତ ଦଶବଖରା ଘର ।

ଘର ସାମନାରେ ପ୍ରାଣନାଥ ବାବୁ ବୋଲି ଜଣେ ଓକିଲ ମୋହରିର ରହୁଥିଲେ । ତାଙ୍କ ଘରେ ରାମପୁର-ମଦନପୁର ଜମିଦାର ପରିବାରର ଜଣେ ଯୁବକ ରହୁଥିଲେ । ତାଙ୍କର ପୈତୃକ ଜମିଦାରୀ ହାସଲ କରିବା ପାଇଁ ପ୍ରାଣନାଥବାବୁ କୋର୍ଟରେ ଲଢୁଥିଲେ । ସେ ତାଙ୍କ ଘରେ ପୁଅପରି ରହୁଥିଲେ । ତାଙ୍କର ସାହିତ୍ୟରେ ବହୁତ ଆଗ୍ରହ ଥିଲା । ଆମ ଘରେ ରହି ମୋ କକେଇପୁଅ ଭାଇ ପୁରୁଷୋତ୍ତମ ରଥ ମଧ୍ୟ ସେତେବେଳେ ପଢୁଥିଲେ ।

ସେ ବହୁତ ସୁନ୍ଦର କବିତା ଲେଖୁଥିଲେ । ମୁଁ ଗଦ୍ୟ ଲେଖେ । ମୋର କବିତା ଆଦୌ ହୁଏନାହିଁ । ଆମେ ସମସ୍ତେ ମିଶି 'ପଥିକ' ନାମରେ ଗୋଟିଏ ହାତଲେଖା ପତ୍ରିକା ବାହାର କଲୁ । ତା ପାଇଁ କି ଆଗ୍ରହ, କି ପରିଶ୍ରମ ସମସ୍ତଙ୍କର ! ଜମିଦାର ଯୁବକଙ୍କର ନାମ ବର୍ତ୍ତମାନ ମୋର ମନେନାହିଁ । ତାଙ୍କ ସହିତ କାଠଯୋଡ଼ି ପଥର ବନ୍ଧରେ, କାଠଯୋଡ଼ି ବାଲିରେ, ବାଲି ମଝିରେ ବୋହି ଯାଉଥିବା ପାଣିଧାର ନିକଟରେ ଆମେମାନେ ଘଣ୍ଟାଘଣ୍ଟା ବସୁ । ନରାଜ ପାହାଡ଼ ତଳେ ସୂର୍ଯ୍ୟାସ୍ତ, ଜହ୍ନ ଉଇଁ ଆସୁଥିବା ଛବି, ଶୁକ୍ର ନକ୍ଷତ୍ରର ଡଳଡଳ ଚାହାଣି ଆମକୁ ବହୁତ ମୁଗ୍ଧ କରେ । ଏପରି ବହୁତ କଳ୍ପନା ଜଳ୍ପନା ଭିତରେ ଆମେ ବୁଲୁଥିଲୁ । ସେ କହୁଥିଲେ ଯେ ତାଙ୍କର ଜମିଦାରୀ ଫେରି ପାଇଲା ପରେ ଗୋଟିଏ ବଡ଼ ଉଦ୍ୟାନ କରିବେ । ସେଥିରେ ବହୁ ଫୁଲଗଛ ଲଗାଇବେ— ତା ମଝିରେ ଘର, ପୋଖରୀରେ ଡଙ୍ଗା ଚାଲୁଥିବ, ହଂସ ପହଁରୁଥିବେ । ମୟୂର, ହରିଣ ଖେଳୁଥିବେ । ଆମେ ସେଠାରେ ବସି ସାହିତ୍ୟ ଆଲୋଚନା କରିବା ଇତ୍ୟାଦି ଇତ୍ୟାଦି ବହୁ ରଙ୍ଗିନ୍ ସ୍ୱପ୍ନ । ଏହି ସ୍ୱପ୍ନ ସାକାର ହେଲାନାହିଁ । ତଥାପି ତାହା କିଂଚିତ୍ ପରିମାଣରେ ମୋର କଟକ ଘରେ ସଂଭବ ହେଲା । ମୟୂର, ହରିଣ ବ୍ୟତୀତ ଆଉ ସବୁ ଉଣା ଅଧିକେ ହେଲା । ମୋର ବନ୍ଧୁତା ହେବାର ପ୍ରାୟ ଦୁଇ ତିନିବର୍ଷ ପରେ ସେ ହଠାତ୍ ମରିଗଲେ । ତାଙ୍କର ମୃତ୍ୟୁ ମୋତେ ଏପରି ଆଘାତ ଦେଲା ଏବଂ ତାଙ୍କ ସହିତ କଳ୍ପନା ରାଜ୍ୟରେ ମୋର ଏପରି ଘନିଷ୍ଠତା ଥିଲା ଯେ ବହୁଦିନ ଯାଏ ତାଙ୍କ ଡାକ ମୋତେ ରାତିରେ ଶୁଣାଯାଏ । କାଠଯୋଡ଼ି ବାଲିରେ ଏକୁଟିଆ ବସି ଜହ୍ନ ବା ଶୁକ୍ରତାର ଦେଖିଲା ବେଳେ ସେ ଯେପରି ପାଖରେ ଆସି ଠିଆ ହୋଇ ଯାଉଥିଲେ ।

ଆମ ଘରଟି ସାହିତ୍ୟିକ ବିଶ୍ୱନାଥ କରଙ୍କର କାଳୀଗଳି ଘରର ଠିକ୍ ପଡ଼ିଶା । ବିଶ୍ୱନାଥ କରଙ୍କ ପରିବାର ସହିତ ମୋର ଖୁବ୍ ଘନିଷ୍ଠତା ହୋଇଗଲା । ତାଙ୍କ ନାତି ରବୀନ୍ଦ୍ରନାଥ କର ମୋର ସମବୟସୀ । ତାଙ୍କ ସହିତ ମୋର ବନ୍ଧୁତା ବହୁତ ଗଭୀର ଥିଲା । ପ୍ରତିଭା କରଙ୍କୁ ମୁଁ ପଡନାନୀ ଓ ସୁପ୍ରଭା କରଙ୍କୁ ଚନ୍ଦନାନୀ ବୋଲି ଡାକୁଥିଲି । ଏମାନେ ସମସ୍ତେ ସାହିତ୍ୟିକା । ସମସ୍ତେ ଗଳ୍ପ କବିତା ଲେଖନ୍ତି । କବି ବୈକୁଣ୍ଠନାଥ ପଟ୍ଟନାୟକ ତାଙ୍କ ଘରକୁ ପ୍ରାୟ ସବୁଦିନେ ଆସୁଥାନ୍ତି । ସେ ଆମକୁ ସ୍କୁଲରେ ଇଂରାଜୀ ପଢ଼ାନ୍ତି । ବଡ଼ ସ୍ନେହଶୀଳ ଅମାୟିକ ଲୋକ ଥିଲେ ବୈକୁଣ୍ଠବାବୁ । ଆମର ହାତଲେଖା ମାସିକ ପତ୍ରିକାକୁ ସେ ବହୁତ ଉତ୍ସାହିତ କରିଥିଲେ । ତାଙ୍କର କବିତା, ପ୍ରବନ୍ଧ ଏଥିରେ ବାହାରିଥିଲା । ତା'ଛଡ଼ା ଉତ୍କଳ ସାହିତ୍ୟ, ସହକାର ପ୍ରଭୃତି ସ୍ୱନାମଧନ୍ୟ ପତ୍ରିକା ଆମ ସାହିତ୍ୟ ଚର୍ଚ୍ଚାରେ ବହୁତ ସାହାଯ୍ୟ କରୁଥିଲା । ମୋର ଯେତେଦୂର ମନେ ହେଉଛି ସହକାରରେ ମୋର ଗୋଟିଏ ଗଳ୍ପ ବାହାରିଥିଲା ।

କାବ୍ୟ, କବିତା, ଗଳ୍ପ, ଉପନ୍ୟାସ ଅଧ୍ୟୟନ ସାଙ୍ଗକୁ ପ୍ରକୃତିକୁ ଉପଭୋଗ କରିବାର ଅନୁଭୂତି ଏହି ସମୟରେ ମୋଠାରେ ଏପରି ଗଭୀର ରେଖାପାତ କରିଗଲା ଯେ ଭବିଷ୍ୟତରେ ମଧ୍ୟ ଏହାର ପ୍ରଭାବ କମିଲା ନାହିଁ । ଜୀବନକୁ ପ୍ରକୃତିର ରହସ୍ୟମୟ ଲୀଳା ମଧ୍ୟଦେଇ ଉପଭୋଗ କରିବାର ଦିଗ୍‌ଦର୍ଶନ ବଡ଼ ବଳିଷ୍ଠ ଭାବରେ ପ୍ରତିଷ୍ଠିତ ହୋଇଗଲା । ଘଣ୍ଟା ଘଣ୍ଟା ଧରି ଜହ୍ନ ରାତିରେ ବସିବା, ପ୍ରତି ସନ୍ଧ୍ୟାରେ କାଠଯୋଡ଼ି ବାଲିରେ କିମ୍ବା

ନଦୀ ଧାରେ ଧାରେ ବୁଲିବା, ମଳୟର ପ୍ରବାହରେ ଜୀବନର ଶିହରଣକୁ ମିଳାଇଦେବା, ମୋର ଅତି ପୁରୁଣା ବନ୍ଧୁ ଶୁକ୍ର ନକ୍ଷତ୍ରକୁ ଚାହିଁ ଚାହିଁ ଜୀବନର ଭବିଷ୍ୟତର ସୁଖ ସ୍ୱପ୍ନ ଦେଖିବା ପ୍ରଭୃତି କାଳ୍ପନିକ କାବ୍ୟିକ ଅନୁଭୂତି ସାହିତ୍ୟ ସୃଷ୍ଟି ଅପେକ୍ଷା ବେଶି ସନ୍ତୋଷଦାୟକ ହୋଇପଡ଼ିଲା ।

କାଠଯୋଡ଼ି ବାଲି, କାଠଯୋଡ଼ିର ସନ୍ଧ୍ୟା ସକାଳ ପ୍ରଭୃତିର ଗଭୀର ରୋମାଞ୍ଚକର ଅନୁଭୂତି ଜୀବନର ଚେତନଶୀଳତା, ସୌନ୍ଦର୍ଯ୍ୟବୋଧ ଓ ସମ୍ବେଦନଶୀଳତାକୁ ବହୁତ ବେଶି ପ୍ରସାରିତ କରିପାରିଛି । ବହୁ ସମୟଧରି ଶୁକ୍ର ନକ୍ଷତ୍ରକୁ ଦେଖିଲେ ଦେହର ରୋମସବୁ ଟାଙ୍କୁରି ଉଠେ । ବସନ୍ତକାଳୀନ ସକାଳ ସନ୍ଧ୍ୟାର ମଳୟ ଦେହ ଭିତରେ ଶିହରଣ ସୃଷ୍ଟି କରେ । ମନ ଭିତରଟାକୁ ଯେପରି କେହି ଆନନ୍ଦ ଉଲ୍ଲାସରେ କୁତୁତୁତୁ କରୁଛି । ମୋର ମନେ ହେଲା ଏପରି ବିରାଟ ମଧୁମୟ ଅନୁଭୂତି ତୁଳନାରେ ପୃଥିବୀରେ ଅନ୍ୟ କୌଣସି ପାର୍ଥିବ ଭୋଗବିଳାସର ମୂଲ୍ୟ ବହୁତ କମ୍ । ଏ ପ୍ରକାର କୋମଳ, ସୂକ୍ଷ୍ମ ଆବେଗ, ମନ, ପ୍ରାଣ ଓ ଜୀବନକୁ ପ୍ରାଣ ପ୍ରାଚୁର୍ଯ୍ୟର ପ୍ଲାବନ ଭିତରେ ବହୁ ସମୟ ଧରି ବିଲୀନ କରିଦେବାରେ ଯେଉଁ ଗଭୀର ଆଧ୍ୟାତ୍ମିକ ଆନନ୍ଦ ଦେଖାଦିଏ, ତାହା ଜୀବନଠାରୁ ବଡ଼...ବ୍ୟକ୍ତିଠାରୁ ବହୁ ଊର୍ଦ୍ଧ୍ୱରେ । ଏହାକୁ କୁହାଯାଇ ପାରିବ ଅତୀନ୍ଦ୍ରିୟ ଅନୁଭୂତିର ଚରମ ଆଧ୍ୟାତ୍ମିକତା । ଏହି ସମୟରେ ସାହିତ୍ୟିକ କୃତି ଅପେକ୍ଷା କାବ୍ୟିକ ଉତ୍‌ଫୁଲ୍ଲନ ହିଁ ଜୀବନ ଦର୍ଶନର ନୂତନ ଦିଗ୍‌ନିର୍ଦ୍ଦେଶକ ଭାବେ ଦେଖା ଦେଇଥିଲା । ଜୀବନ ସଂଗ୍ରାମରେ ମଣିଷ ଯେତେ ରକ୍ତାକ୍ତ ହୋଇ ପଡ଼ିଲେ ମଧ ଏହି ଆତ୍ମିକ ଉଦ୍‌ବେଳନ ହିଁ ଜୀବନର ଅସଂଖ୍ୟ କ୍ଷତ ଉପରେ କୋମଳ ପ୍ରଲେପ ଲେପି ଦେଇଯାଏ । ସୂର୍ଯ୍ୟାସ୍ତର ଅରୁଣିମାରେ ପ୍ରାଣ ପୁଣି ସବୁଜିମାରେ ଭରି ଉଠେ... ବୟସର ବିଷାଦ କାରୁଣ୍ୟ ଭିତରେ ସ୍ୱପ୍ନାୟିତ ତାରୁଣ୍ୟ ଆଣିଦିଏ । ଜୀବନ ପୁଣି ନୂତନ ବଳିଷ୍ଠ ଆଦର୍ଶରେ ରଞ୍ଜିତ ହୋଇଉଠେ ।

ଏ ପ୍ରକାର ସୌନ୍ଦର୍ଯ୍ୟବୋଧ ଆବେଗର ସୁସଂଗଠିତ ଦିଗ୍‌ଦର୍ଶନ ଜୀବନରେ ବହୁ ଆନନ୍ଦ ଦେଇପାରିଛି । ନିଃସଙ୍ଗ ଜୀବନଯାପନରେ ଗଭୀର ଆନନ୍ଦ ପାଇବାର ସାମର୍ଥ୍ୟ ଦେଖାଦେଇଛି । ଅନ୍ୟ ଉପରେ ନିର୍ଭରଶୀଳ ଆନନ୍ଦ କ୍ଷଣସ୍ଥାୟୀ ଓ ଆପେକ୍ଷିକ । ଅନ୍ୟର ଦୟା ଓ ସହାନୁଭୂତି ଉପରେ ଏହାର ସ୍ଥିତି ନିର୍ଭର କରେ । କିନ୍ତୁ ଯେଉଁ ଆନନ୍ଦ ନିଜ ଉପରେ ନିର୍ଭର କରେ, ତାହା ହେଉଛି ନିଜସ୍ୱ ଏବଂ ସ୍ଥାୟୀ । ଯେତେବେଳେ ଏକୁଟିଆ ରହିବ, ତୁମେ ସୃଷ୍ଟି କରିପାରିବ ସେହି ଆତ୍ମିକ ଆନନ୍ଦ । ଯେଉଁମାନେ ଏକୁଟିଆ ରହିବାକୁ ଭଲ ପାଆନ୍ତି ନାହିଁ, ତାସ୍ ପଶା ଖେଳିବାକୁ ସାଙ୍ଗ ଖୋଜନ୍ତି, ମଦ ପିଇ ମାତାଲ୍ ହେବାର ବାତାବରଣ ସୃଷ୍ଟି ପାଇଁ ସଙ୍ଗୀ ବାଛନ୍ତି– ସେମାନେ ନିଜଠାରୁ ପଳାଇଯିବା ଲାଗି ଯେପରି ଅହରହ ଚେଷ୍ଟା ଚଳାଇଥାନ୍ତି ।

ମୋର ଏହି ଆତ୍ମିକ ଦୃଢ଼ତା ଯୋଗୁ ହିଁ ମୁଁ ନିଜକୁ ହଜାଇଦିଏ ଶୁଭ୍ର ବରଫାଚ୍ଛାଦିତ ସୁଇଜରଲାଣ୍ଡର ଇଣ୍ଟରଲାକାନ୍ ପାହାଡ଼ ଉପରେ; ନିଜର ପ୍ରସାରିତ ହାତ ପାପୁଲିକୁ ଦେଖିପାରୁ ନଥିବା ଲଣ୍ଡନର ଭୟାବହ ଘନ କୁହୁଡ଼ି ଭିତରେ; ଫିନଲାଣ୍ଡ ଆକାଶରେ ଥିବା ମଧ୍ୟରାତ୍ରି ସୂର୍ଯ୍ୟର କ୍ଷୀଣାଭ ଗୋଲାପୀ ଆଲୋକ ଭିତରେ; ଚାଳିଶ ହଜାର ଫୁଟ ଉପରେ ଉଡୁଥିବା ବିମାନର ଝରକାରୁ ଆଟଲାଣ୍ଟିକ୍ ଓ ପ୍ରଶାନ୍ତ ମହାସମୁଦ୍ରର ସୀମାହୀନ ନୀଳାଭ

ଆସ୍ତରଣ ମଧ୍ୟରେ ନାନାରଙ୍ଗର ଚିତ୍ରିତ ମେଘ ଉପରେ ଭାସି ଯାଉଯାଉ ତରଳ ସୁବର୍ଣ୍ଣର ନଦୀ ଧାରରେ ପିଲାଦିନର ବାଲିଘର ତିଆରି କରିବାରେ; ହିମାଳୟର ଅଗଣିତ ଶୁଭ୍ର ଗିରିମାଳା ଉପରେ ଭାସି ଭାସି ସ୍ୱପ୍ନ ଦେଖିବାରେ; ଯେଉଁ ଅମୂଲ୍ୟ ଅନୁଭୂତି ତାହା ଜୀବନକୁ ଉନ୍ମୁକ୍ତ ତଥା ବନ୍ଧନହୀନ କରିପାରେ ।

## (ଖ) ଧର୍ମଗତ ଉଦ୍‌ବେଳନ

ଆଗରୁ କହିଛି, ସେହି ଗୋଟିଏ ସନ୍ଧ୍ୟାରେ ଆମ ଗାଁ'ରେ ଯେତେବେଳେ ବାବାଜୀ ମହାଶୟ ମୋତେ ତାଙ୍କ ଘରୁ ବାହାର କରିଦେଇଥିଲେ ପ୍ରାର୍ଥନା କଲାବେଳେ, ସେହିଦିନଠାରୁ ପ୍ରତି ସନ୍ଧ୍ୟାରେ ମୁଁ ବହୁ ଠାକୁରଙ୍କର ଶହେ ଆଠଥର ନାମ ଜପ କରେ । ମନ୍ଦିରକୁ ଯାଏ, ସେଠାରେ ବସି ଜପ କରେ । କଟକରେ ମୋର ଏହି ପାଞ୍ଚବର୍ଷ ଭିତରେ ଏ ଅଭ୍ୟାସଟି ଆହୁରି ବଢ଼ିଗଲା । ମୁଁ ଭଗବଦ୍ ଗୀତା ପଢ଼ିଲି, ପ୍ରତିଦିନ ଗୀତା ନ ପଢ଼ି ମୁଁ ଖାଉ ନଥିଲି । କାର୍ତ୍ତିକ ମାସରେ ମୁଁ ନିରାମିଷାଶୀ ରହୁଥିଲି । ଜନ୍ମାଷ୍ଟମୀ ଓ ଜାଗର ଦିନ ଉପବାସ କରୁଥିଲି । ଠାକୁର ମନ୍ଦିରକୁ ଯିବା ଆସିବା କରେ ସତ; କିନ୍ତୁ ମନ୍ଦିର ଯିବା ଅପେକ୍ଷା ଜପ କରିବା ଏବଂ ଗୀତା ପଢ଼ିବା ଥିଲା ମୋର ମୁଖ୍ୟ ଧର୍ମଗତ ଅଭ୍ୟାସ । ଥରେ ଥରେ ସମସ୍ତେ ଶୋଇ ପଡ଼ିଲା ପରେ ରାତିବାରଟାରୁ ଭୋର ପର୍ଯ୍ୟନ୍ତ ମୁଁ ଛାତରେ ବସି ଜପ କରେ । କାଠଯୋଡ଼ି କୂଳ ସନ୍‌ସାଇନ ପଡ଼ିଆ ପାଖରେ ଭାଇନାଙ୍କର ଘର ଥିଲା । ତା' ଛାତରେ ଗୋଟିଏ ବେଦୀ ଥିଲା । ତା ଉପରେ ବସି ଦିଗ୍‌ବଳୟକୁ ଚାହିଁ ମୁଁ ଧ୍ୟାନ କରେ । କୃଷ୍ଣଙ୍କୁ ସଖା ହିସାବରେ ପୂଜା କରୁଥିଲି । ଭକ୍ତି କଥାରେ ଅଛି ଯେ କୃଷ୍ଣକଥା ଭାବିଲା ବେଳେ ଦେହରେ ରୋମାଞ୍ଚ ଆସିଲେ ତୁମର ଭକ୍ତି ଗଭୀର ବୋଲି ଧରିବାକୁ ହେବ । କ୍ରମେ ସେଇଆ ହେଲା । ଦୂର ଦିଗ୍‌ବଳୟ ଉପରେ କାଠଯୋଡ଼ି ନଦୀର ପଶ୍ଚିମାଂଶର ଗୋଟିଏ କୋଣରେ ହଠାତ୍ ବାଳକୃଷ୍ଣଙ୍କର ଛବି ଦେଖାଦିଏ । ଦେହରେ ରୋମାଞ୍ଚ ଆସେ । ମୁଁ ଆତ୍ମବିଭୋର ହୋଇଯାଏ । ପରେ ବୁଝିଲି, ଏସବୁ ଅନୁଭୂତି କେବଳ ଆତ୍ମସୂଚନା ବା ଆତ୍ମନିର୍ଦ୍ଦେଶନା ଯୋଗୁ ହୋଇଥାଏ । ଏହା ବାସ୍ତବିକତା କିଛି ନାହିଁ । ସମସ୍ତେ ଯାହା ହୁଏ ବୋଲି କହନ୍ତି ତୁମେ ତାକୁ ଅନୁଭବ କର । ଏହାର କେବଳ ଗୋଟିଏ ଭ୍ରମାତ୍ମକ ବିଶ୍ୱାସ କିଂତୁ ସେତେବେଳର ଧାରଣା ଥିଲା ଯେ ମୁଁ ବାଳକୃଷ୍ଣଙ୍କୁ ସତରେ ଦେଖିପାରୁଛି ।

ଏହି ସମୟରେ ରାମନାରାୟଣ ଦିଣ୍ଡା ନାମରେ ଜଣେ ବଙ୍ଗାଳି ଯୁବକ କଟକରେ ଆସି ପହଞ୍ଚିଲେ । ସେ ଆତଙ୍କବାଦୀ ଦଳର ସଭ୍ୟ ଥିଲେ ଏବଂ ସେଥିପାଇଁ ଜେଲ୍ ମଧ୍ୟ ଯାଇଥିଲେ । ଜେଲ୍‌ରୁ ଖଲାସ ହୋଇ ସେ ଓଡ଼ିଶାରେ ଆସି ରହିଲେ ଏବଂ କ୍ରମେ ବାବାଜୀ ହୋଇଗଲେ । ସେ ଭଦ୍ରଲୋକ ମୋର ଅନ୍ତରଙ୍ଗ ବନ୍ଧୁ ମଧ୍ୟ ହୋଇଗଲେ । ମୁଁ ଯାହା ସ୍ୱପ୍ନ ଦେଖୁଥିଲି ଗୀତା ସମ୍ପର୍କରେ ସେ କୁଆଡ଼େ ସେସବୁ ମୋଠାରେ ରାତିରେ ସୃଷ୍ଟି କରାଉଥିଲେ । ମୁଁ ଧର୍ମଗତ ଭାବାବେଗ ଯୋଗୁ ଏପରି ସରଳ ବିଶ୍ୱାସୀ ଥିଲି ଯେ ଏଥିରେ ମୋର ବିଶ୍ୱାସ ଜନ୍ମିଥିଲା । ସେ କ୍ରମେ ମୋର ଜଣେ ବିଶ୍ୱସ୍ତ ପରାମର୍ଶଦାତା ହୋଇଗଲେ । ସେ ଭଦ୍ରଲୋକ ପରେ ଯୋବ୍ରାଠାରେ ଗୋଟିଏ ଆଶ୍ରମ କରି ରହିଥିଲେ । ପରଜୀବନରେ ମୋର ଧର୍ମ ବିଶ୍ୱାସ କମିଗଲା ପରେ ତାଙ୍କ ସହିତ ପ୍ରାୟ ଦେଖା ହେଉନଥିଲା । ଥରେ ଅଧେ ଦେଖା ହୋଇଥିଲା ରେଭେନ୍ସା କଲେଜରେ ଅଧ୍ୟାପକ ଥିଲା ବେଳେ । ସେ ପୂର୍ବରୁ ବହୁତ

ଅବାସ୍ତବ କଥାମାନ ମୋତେ କହିଥିଲେ । କିନ୍ତୁ ବର୍ତ୍ତମାନ ମୋତେ ଏସବୁ ଏତେ ଅବାନ୍ତର ମନେହେଲା ଯେ ଆମ ଦୁଇଜଣଙ୍କ ଭିତରେ କଥୋପକଥନ ଆଦୌ ଜମିଲା ନାହିଁ । ସେ ଯେପରି ଗୋଟିଏ ଆତ୍ମ ପ୍ରବଞ୍ଚନାର ଜାଲ ଭିତରେ ବୁଡ଼ି ରହିଥିଲେ ବୋଲି ମୋର ମନେହେଲା । ତଥାପି ତାଙ୍କୁ ଏହି ଆବରଣ ବ୍ୟକ୍ତିଗତ ସୁଖ ଓ ସାମାଜିକ ସମ୍ମାନ ଦେଉଥିଲା । ଭବିଷ୍ୟତରେ ତାଙ୍କ ସହିତ ମୋର ସମ୍ପର୍କ ରହିଲା ନାହିଁ ।

ପର ଜୀବନରେ ମୁଁ ନାସ୍ତିକ ହୋଇଥିଲି ସତ, କିନ୍ତୁ ଏହି ଜୀବନରେ ଜପତପ କରିବାର ଯେଉଁ ଅଭ୍ୟାସ ମୋଠାରେ ଦେଖା ଦେଇଥିଲା ଅନ୍ୟ କ୍ଷେତ୍ରରେ ତାର ପ୍ରଭାବ ପଡ଼ିଥିଲା । ମୁଁ ନାସ୍ତିକ ହେଲି ଏମ୍.ଏ. ପଢ଼ିଲାବେଳେ । ତାପରେ ଏହି ନାସ୍ତିକତାର ଦୃଢ଼ତା ବଢ଼ିଲା ସିନା କମିଲା ନାହିଁ । ଦିନରେ କିଛି ସମୟ ଜପତପ ଅଭ୍ୟାସ ପର ଜୀବନରେ ଆସନ, ପ୍ରାଣାୟାମ ଓ ଧ୍ୟାନ କରିବା ଅଭ୍ୟାସରେ ରୂପାୟିତ ହୋଇଗଲା । ପଚାଶ ବର୍ଷ ହେଲା ମୁଁ ପ୍ରତିଦିନ ସକାଳେ ପ୍ରାୟ ଘଣ୍ଟାଏ ଯାଏ ଆସନ, ପ୍ରାଣାୟାମ ଓ ଧ୍ୟାନ କରେ । ପ୍ରଥମେ ପ୍ରଥମେ ଧ୍ୟାନ କରିବା ବହୁତ ଅସୁବିଧା ହେଲା । କୌଣସି ମୂର୍ତ୍ତି ନ ରଖି ଧ୍ୟାନ କରିବା କଷ୍ଟ ହୁଏ । ମୁଁ ଅଭ୍ୟାସ କଲି କେବଳ ଶୂନ୍ୟତା ଉପରେ ମନୋନିବେଶ କରିବା ପାଇଁ । ବହୁବର୍ଷ ପରେ ଏହା କିଛି ପରିମାଣରେ ସମ୍ଭବ ହେଲା । ଏହି ସମୟଟି ବହୁତ ଆନନ୍ଦଦାୟକ । ଦିନର ସବୁ କ୍ଲାନ୍ତି, ସବୁ ଦୁଃଖ, ସବୁ ଅଶାନ୍ତି ଏହି ଶୂନ୍ୟତା ଭିତରେ ଯେପରି ବିଲୀନ ହୋଇଯାଏ । ଦେହମନ ଉଶ୍ୱାସ ହୋଇଯାଏ । ଶାରୀରିକ ସ୍ଥିତି ନଥିଲା ପରି ମନେହୁଏ । ଶୂନ୍ୟରେ ତୁମର ସର୍ବସ୍ୱ ବିଲୀନ ହେବା ଅନୁଭୂତି ବଡ଼ ମନୋରମ ଓ ଶାନ୍ତିଦାୟକ । ଏହା ଏପରି ଅଭ୍ୟାସଗତ ହୋଇଯାଇଛି ଯେ ଦିନେ ନକଲେ ମୋତେ ଭଲ ଲାଗେନାହିଁ । ଏହା ଫଳରେ ମୁଁ ନିରୋଗ ହୋଇପାରିଛି । ଜର ସର୍ଦ୍ଦି ଓ ଅନ୍ୟାନ୍ୟ ଶାରୀରିକ ଅସୁସ୍ଥତା ମୋଠାରେ ପ୍ରାୟ ହୁଏ ନାହିଁ । ଅନ୍ୟାନ୍ୟ ଜୈବିକ ପ୍ରକ୍ରିୟା ମଧ୍ୟ ଭଲ ଭାବରେ ଚାଲିଛି । ମନରେ ବଳ ଓ ସନ୍ତୋଷ ଅଧିକାଂଶ ସମୟରେ ଥାଏ । ଅଯଥା ଦୁଃଖ ଓ ନୈରାଶ୍ୟ ମୋତେ ବିଚଳିତ କରେନାହିଁ । ଏଥିଯୋଗୁ ବଳିଷ୍ଠ ଆତ୍ମବିଶ୍ୱାସ ସମ୍ଭବ ହୋଇପାରିଛି ବୋଲି ମୁଁ ଭାବେ । ଆସନ, ପ୍ରାଣାୟାମର ଉପକାରିତା ବିଷୟରେ ମୁଁ ଦୃଢ଼ନିଶ୍ଚିତ ଏବଂ ସମସ୍ତଙ୍କୁ ପରାମର୍ଶ ଦିଏ ଏହି ଅଭ୍ୟାସ କରିବା ପାଇଁ । ଫଳରେ ମୋର ପୁଅ, ବୋହୂ ଝିଅ, ଜୋଇଁମାନେ ପ୍ରତିଦିନ କିଛି କିଛି ସମୟ ଆସନ ପ୍ରାଣାୟାମ କରନ୍ତି ।

ଏହି ସମୟରେ ଏତେ ଜପତପ କରୁଥିଲେ ମଧ୍ୟ ମୁଁ ସବୁ ଏକାଏକା କରେ । ମନ୍ଦିରକୁ ଯିବା ମୋତେ ସେତେ ଭଲ ଲାଗୁ ନଥିଲା କି ଧର୍ମଗତ ମେଳା ମଉଛବରେ ଯୋଗ ଦେବା ଅଭ୍ୟାସ ମୋର ନଥିଲା । ଭିନ୍ନ ଭିନ୍ନ ମତାବଲମ୍ବୀ ଓ ଧର୍ମ ସମ୍ପ୍ରଦାୟଙ୍କ ସହିତ ମୋର କୌଣସି ଯୋଗସୂତ୍ର ନଥିଲା । ପିଲାଦିନୁ ଏକା ଏକା ରହିବାରେ ଅଭ୍ୟାସ ହୋଇଯାଇଥିଲା ଏବଂ ଧର୍ମଗତ ଚାଲିଚଳନ ମଧ୍ୟ ନିଜ ଭିତରେ ଆବଦ୍ଧ ଥିଲା । ରାମନାରାୟଣ ବାବୁଙ୍କୁ ଛାଡ଼ିଦେଲେ ମୋର ଧର୍ମ ସମ୍ବନ୍ଧୀୟ ବନ୍ଧୁ ଆଉ କେହି ନଥିଲେ ।

## (ଗ) ରାଜନୈତିକ ଆସକ୍ତି

ଖଲ୍ଲିକୋଟରେ ପଢ଼ିଲାବେଳେ ଗୌରୀଶଙ୍କର ସାମନ୍ତଙ୍କ ପ୍ରଭାବରେ ସ୍ୱାଧୀନତା ସଂଗ୍ରାମ ଓ ମହାତ୍ମା ଗାନ୍ଧୀଙ୍କ ପ୍ରତି ଆକୃଷ୍ଟ ହୋଇଥିଲି । ସ୍କୁଲରେ ପଢ଼ିଲା ବେଳେ ଏ ସମ୍ବନ୍ଧରେ ଆଗ୍ରହ ବଢ଼ିଲା ଏବଂ ଆନ୍ଦୋଳନ ବିଷୟରେ ବହୁ ପଢ଼ାପଢ଼ି କଲି । କିନ୍ତୁ ଆନ୍ଦୋଳନରେ ଯୋଗ ଦେଇ ନଥିଲି । ଡେପୁଟି ମାଜିଷ୍ଟ୍ରେଟଙ୍କ ଭାଇ ହିସାବରେ ମୋର ଏହି ଆନ୍ଦୋଳନ ପ୍ରତି ଭୟ ମଧ୍ୟ ଥିଲା ଯେ ମୁଁ ଯୋଗ ଦେଲେ ଭାଇନାଙ୍କ ଚାକିରିରେ ଆଞ୍ଚ ଆସିପାରେ । ତା'ଛଡ଼ା ଏହି ଶ୍ରେଣୀୟ ଅଫିସରଙ୍କ ପିଲାମାନେ ଆନ୍ଦୋଳନରୁ ଦୂରେଇ ରହିଥାନ୍ତି । କିନ୍ତୁ ଗଭୀର ଆଗ୍ରହ ଯୋଗୁଁ ମଝିରେ ମଝିରେ ମୋର ପାଦ ଉଠିଯାଏ ବାଛା ବାଛିଲେ । ମୁଁ ନବମ ଦଶମ ଶ୍ରେଣୀରେ ପଢ଼ିଲା ବେଳେ (୧୯୩୪-୩୫) ଛାତ୍ର ସଂଘର ଗୋଟିଏ ସଭା ଟାଉନ୍ ହଲ୍‌ରେ ହେଉଥାଏ । ସେଠି ହଠାତ୍ ମୋ ନାଁଟି ଆମ ସ୍କୁଲର ପ୍ରତିନିଧି ହିସାବରେ କେହି ଜଣେ ପ୍ରସ୍ତାବ କଲେ ଏବଂ ମୁଁ ନାହିଁ କରି ପାରିଲିନାହିଁ । ବରଂ ଛାତ୍ରସଂଘରେ ରେଭେନ୍ସା କଲିଜିଏଟ୍ ସ୍କୁଲର ଏକମାତ୍ର ପ୍ରତିନିଧି ବୋଲି ନିଜକୁ ଗୌରବାନ୍ୱିତ ମନେକଲି । ମୋର ନାମ ଯେ ପିଲାମାନେ କାହିଁକି ପ୍ରସ୍ତାବ କଲେ ମୁଁ ଜାଣିପାରି ନଥିଲି । ଭଲ ପୋଷାକ ପିନ୍ଧା ଗୋଟିଏ ଡେଙ୍ଗା ପିଲା ଛଡ଼ା ମୋର ଆଉ ସେପରି କୌଣସି ପରିଚୟ ଥିଲା ବୋଲି ମୋର ଧାରଣା ନଥିଲା । କିନ୍ତୁ ସର୍ବସମ୍ମତିକ୍ରମେ ମୋର ନାମ ଗୃହୀତ ହୋଇଗଲା ପରେ ମୋର ଆତ୍ମଚେତନା ନୂଆ ମୋଡ଼ ନେଲା । ମୁଁ ଯେ ଜଣେ ନେତୃସ୍ଥାନୀୟ ବାଳକ ହୋଇପାରିଛି— ଏ ଚେତନା ମୋତେ ଆନନ୍ଦ ଦେଇଥିଲା । ତା'ପରେ ଛାତ୍ର ସଂଘର କାର୍ଯ୍ୟକାରୀ ସମିତି ନବକୃଷ୍ଣ ଚୌଧୁରୀଙ୍କ କାଠଯୋଡ଼ି କୂଳ ବାସଭବନରେ ବସେ । ମୋର ମନେଅଛି, ଘର ଭିତରେ ଆମ ସଭା ଚାଲିଥାଏ ଏବଂ ବାରଣ୍ଡାରେ ନବବାବୁ ବୁଲୁଥାନ୍ତି । ଭବିଷ୍ୟତର ବହୁ ପରିସ୍ଥିତିରେ ନବବାବୁ ଏହିପରି ବୁଲୁଥିବାର ଚିତ୍ର ମୋ ମନରେ ରହିଛି । ଅସ୍ଥିର ବୁଦ୍ଧିଜୀବୀର ଚଞ୍ଚଳତା ଯେ ଏଥିରେ ପରିସ୍ଫୁଟ, ସେଥିରେ ସନ୍ଦେହ ନାହିଁ ।

ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ ନ କଲେ ମଧ୍ୟ ମୁଁ ରାଜନୈତିକ ଅସ୍ଥିରତା ଓ ଏହାର ଲକ୍ଷ୍ୟ ବିଷୟରେ ତୀବ୍ର ଭାବରେ ଅନୁଭବ କରୁଥିଲି । ଏ ବିଷୟରେ ମୋର ବନ୍ଧୁମାନଙ୍କ ସାଙ୍ଗରେ ବହୁ ଆଲୋଚନା ଓ ତର୍କବିତର୍କ କରେ । ଥରେ ସ୍କୁଲରେ ଗୋଟିଏ ବିରକ୍ତିକର ଘଟଣା ଘଟିଥିଲା । ମୁଁ ସ୍କୁଲରେ କିଙ୍ଗ୍‌ସ୍କାଉଟ୍ ଅର୍ଥାତ୍ ସ୍କାଉଟ୍‌ମାନଙ୍କର ଯୋଗ୍ୟତାର ସର୍ବୋଚ୍ଚ ଶ୍ରେଣୀରେ ଥିଲି । ଦିନେ ମୁଁ ସ୍କାଉଟ୍ ପୋଷାକ ପିନ୍ଧି ସ୍କୁଲକୁ ଆସିଥାଏ କୌଣସି ଗୋଟିଏ ସ୍କାଉଟ୍ ସମାରୋହ ପାଇଁ । ସେଦିନ ଆମ ସ୍କାଉଟମାଷ୍ଟ୍ରେ ଫନୀବାବୁ (ସ୍ୱର୍ଗୀୟ ଫନୀନ୍ଦ୍ର କୁମାର ଦାସ) ମୋତେ ପ୍ରଧାନ ଶିକ୍ଷକ ରାୟବାହାଦୂର ବିଶ୍ୱମ୍ଭର ମିଶ୍ରଙ୍କ ପାଖକୁ ଡାକିନେଲେ । ପ୍ରଧାନ ଶିକ୍ଷକ ପଞ୍ଚମ ଜର୍ଜଙ୍କର ସିଂହାସନ ଆରୋହଣ ପାଇଁ ମୁଦ୍ରିତ କେତେଗୁଡ଼ିଏ ଛୋଟ ଛୋଟ ପତାକା ମତେ ବିକ୍ରୀ କରିବାକୁ ବଢ଼ାଇଦେଲେ । ମୁଁ ସାଙ୍ଗେ ସାଙ୍ଗେ ତାକୁ ଫେରାଇ ଦେଇ କହିଲି ଯେ ଆମ ଦେଶର ଶତ୍ରୁ ପଞ୍ଚମ ଜର୍ଜଙ୍କ ସମ୍ମାନାର୍ଥେ ମୁଁ କଦାପି ପତାକା ବିକ୍ରି କରି ପାରିବି ନାହିଁ । ଫନୀବାବୁ ଓ ପ୍ରଧାନ ଶିକ୍ଷକ ମୋ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ଫନୀବାବୁ ଭାରି ରାଗୀ । ମୋ କଥା ଶୁଣି

ପ୍ରଧାନଶିକ୍ଷକଙ୍କ ଆଗରେ ମୋତେ ଠାଇକରି ଏକ ଚଟକଣା ମାରିଲେ । କହିଲେ– ତୁମେ କିଙ୍ଗ୍ ସ୍କାଉଟ୍ ହୋଇ ଏତେବଡ଼ ରାଜଦ୍ରୋହ କଥା କହିପାରୁଛ ?

ଏହା ଶୁଣିଲା ପରେ ମୋର ସୁପ୍ତ ରାଜନୈତିକ ଚେତନା ହଠାତ୍ ନାଗସାପ ପରି ଫଁ କରି ଉଠିଲା । ରାଗରେ ମୁଁ ଜଳି ଉଠିଲି । କ'ଣ କରିବି ଭାବି ପାରିଲି ନାହିଁ । ଫନୀବାବୁ ଓ ପ୍ରଧାନ ଶିକ୍ଷକ...ଯେ କି ବିଶିଷ୍ଟ ରାଜଭକ୍ତ ହିସାବରେ ରାୟବାହାଦୂର ଉପାଧିରେ ଭୂଷିତ, ଆମ ଦେଶ ତଥା ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନର ଦୁଇଟି ମୁଖ୍ୟ ଶତ୍ରୁ ହିସାବରେ ଯେପରି ମୋ ଆଗରେ ଠିଆ ହୋଇଛନ୍ତି । ପ୍ରତିଶୋଧର ଆଉ କୌଣସି ଉପାୟ ନପାଇ ମୋ ଜାମାରେ ଯେତେସବୁ ସ୍କାଉଟ୍ ବ୍ୟାଚ୍ ମରା ହୋଇଥିଲା ପ୍ରାୟ ୧୦/୧୨ଟି କୃତିତ୍ୱର ବ୍ୟାଚ୍ – ସେ ସବୁକୁ ଛିଣ୍ଡାଇ ସେମାନଙ୍କ ଆଗରେ ଫୋପାଡ଼ି ଦେଲି ଏବଂ ଚିତ୍କାର କରି କହିଲି ଯେ ସ୍କାଉଟ୍ ହେବା ଅର୍ଥ ଯଦି ବ୍ରିଟିଶ୍ ସରକାରଙ୍କର ସ୍ତାବକ ହେବାକୁ ହେବ, ତେବେ ଏହି ମୁହୂର୍ତ୍ତରୁ ମୁଁ ଆଉ ସ୍କାଉଟ୍ ହେବିନାହିଁ ।

ତାପରେ ଅଫିସ୍ ଭିତରୁ ଦୌଡ଼ି ଚାଲିଆସିଲି । କି ଆସ୍ପର୍ଦ୍ଧା ମୋର ! ପ୍ରବଳ ପ୍ରତାପୀ ବ୍ରିଟିଶ୍ ସରକାରଙ୍କର ଚିର ଭକ୍ତ ରାୟବାହାଦୂର ଉପାଧି ଭୂଷିତ ପ୍ରଧାନ ଶିକ୍ଷକଙ୍କ ଆଗରେ ମୁଁ ଏପରି ଔଦ୍ଧତ୍ୟ ଦେଖାଇପାରିଲି । ମୁଁ ଦୌଡ଼ି ଆସିଲା ବେଳେ ଫନୀବାବୁ ମୋ ପଛରେ ସ୍କୁଲ ବାରଣ୍ଡାରେ ମୋତେ ଗୋଡ଼ାଇ ଥିଲେ । ଏ ପ୍ରକାର ଅଦ୍ଭୁତ ଦୃଶ୍ୟ ସ୍କୁଲରେ ଚହଳ ପକାଇ ଦେଇଥିଲା । ସମସ୍ତଙ୍କର ଧାରଣା ହେଲା, ମୋତେ ସ୍କୁଲରୁ ବାହାର କରି ଦିଆଯାଇ ପାରେ । ସେତେବେଳକୁ ମୁଁ ଦଶମ ଶ୍ରେଣୀର ଛାତ୍ର । ତାପରେ ଫନୀବାବୁ ମୋତେ ବହୁତ ବୁଝାଇଲେ ସ୍କାଉଟ୍‌ରେ ରହିବାକୁ । ପ୍ରଧାନଶିକ୍ଷକ ମୋର ରାଜଦ୍ରୋହ ଯୋଗୁଁ ବାରବେତ ପାହାର ଦେଲେ । ମୁଁ କିନ୍ତୁ ସ୍କାଉଟ୍ ଛାଡ଼ିବାରେ ଅଟଳ ରହିଲି । ଏହି ଘଟଣାଟିରେ ମୋର ଆତ୍ମଚେତନା ଓ ସ୍ୱାଧୀନ ମନୋଭାବର ଆଉ ଗୋଟିଏ ପରିସର ମୋ ଆଗରେ ମୁକ୍ତ ହୋଇଗଲା ।

ବ୍ରିଟିଶ୍ ସରକାରୀ ସଂସ୍ଥା ଓ ତା'ର କର୍ମଚାରୀଙ୍କ ପ୍ରତି ମୋର ଘୃଣା ଓ ରାଗ ବହୁ ପରିମାଣରେ ମୋ ମନ ଭିତରେ କ୍ରମେ ଦେଖା ଦେଉଥାଏ । ବିଶେଷତଃ ଭାରତୀୟ ଶାସକମାନଙ୍କର ଅତିମାତ୍ରାରେ ରାଜଭକ୍ତ ଓ କେତେକ ଚାଟୁକାର ଭାରତୀୟ କର୍ମଚାରୀମାନେ ଯେଉଁମାନେ କି ସେମାନଙ୍କର ଆତ୍ମାକୁ ବିକି ବ୍ରିଟିଶ୍ ଉପାଧି ପାଇଥିଲେ, ସେମାନଙ୍କ ପ୍ରତି ମୋର କୌଣସି ସମ୍ମାନ ନଥିଲା କି ଆଜି ପର୍ଯ୍ୟନ୍ତ ମଧ୍ୟ ନାହିଁ । ଅବଶ୍ୟ ଏହିମାନେ ହିଁ ସ୍ୱାଧୀନ ଭାରତର ଶାସନରେ ଉଚ୍ଚ ଆସନ ଅଧିକାର କରି ମନ୍ତ୍ରୀମାନଙ୍କୁ ନିୟନ୍ତ୍ରଣ କଲେ । ଏହିମାନଙ୍କ ଅନୁସାରେ ସ୍ୱାଧୀନ ଦେଶର ଶାସନ ସଂସ୍ଥା ଆଜି ପର୍ଯ୍ୟନ୍ତ ପରିଚାଳିତ ହେଉଛି କହିଲେ ଚଳେ । ଏହାହିଁ ସ୍ୱାଧୀନ ଭାରତର ସବୁଠାରୁ ବଳି ଦୁର୍ଭାଗ୍ୟଜନକ ଘଟଣା । କଂଗ୍ରେସ ନେତାମାନେ ସ୍ୱାଧୀନତାକୁ ଏପରି ଭାବରେ ପ୍ରବଞ୍ଚିତ କରିବାରେ ସମ୍ପୂର୍ଣ୍ଣ ରୂପେ ଦାୟୀ ବୋଲି ମୋର ଦୃଢ଼ ଧାରଣା ।

ଥରେ ମୁଁ କଲିଜିଏଟ୍ ସ୍କୁଲକୁ ଚାଲିଚାଲି କଟକ କାଠଯୋଡ଼ି ରାସ୍ତାରେ ଯାଉଥିଲି । ହାତୀଗଡ଼ା ଘାଟ ପାଖରେ ପିଲା ଓ ସ୍ତ୍ରୀ ଲୋକଙ୍କ ପାଇଁ ଗୋଟିଏ ଛୋଟିଆ ପାର୍କ ତିଆରି ହେଉଥାଏ । ତା ନାଁ ହେଲା ଲେଡ଼ି ହବାକ୍ ପାର୍କ । ହବାକ୍ ଥିଲେ ଓଡ଼ିଶାର ଲାଟ୍ ସାହେବ ।

ତାଙ୍କ ସ୍ତ୍ରୀ ଆସି ପାର୍କ କଥା ବୁଝୁଥିଲେ । ସେଦିନ ଲେଡ଼ି ହବାକ୍‌ଙ୍କ ମଟର ସେହି ପାର୍କପାଖ ରାସ୍ତାରେ ପହଞ୍ଚିଲା କ୍ଷଣି କଟକ ମ୍ୟୁନିସିପାଲିଟିର ତତ୍କାଳୀନ ଏକଜ୍ୟୁଟିଭ୍ ଅଫିସର ସ୍ୱର୍ଗୀୟ ସୋମନାଥ ମହାପାତ୍ର ମଟରଗାଡ଼ିର କବାଟ ଖୋଲିଦେଲେ । ଏହା ଭଦ୍ରତା ନିଶ୍ଚୟ । କିନ୍ତୁ ତା ପରେ ଏକାବେଳକେ ନଇଁପଡ଼ି ବହୁବାର କୁର୍ଣ୍ଣିସ୍ କଲେ । ତା ଦେଖି ମୋ ରକ୍ତ ତାତିଉଠିଲା । ମୁଁ ଚିତ୍କାର କରି କହିଲି-

''ଆରେ ଦେଖରେ ଭାରତୀୟ କୁକୁରଟାକୁ, କ'ଣ କରୁଛି ସାହେବାଣୀ ଆଗରେ,''

ସେ ମୋତେ ଦାନ୍ତ କଡ଼ମଡ଼ କରି ଚାହିଁଲେ, କିନ୍ତୁ ତାଙ୍କର କିଛି କରିବାର ଉପାୟ ନଥିଲା । ସେ ମହାଶୟ ପରେ ରାୟବାହାଦୂର ହୋଇଥିଲେ ଏବଂ ସ୍ୱାଧୀନ ଭାରତରେ ଗୋଟିଏ ବଡ଼ ଅଫିସର ସର୍ବୋଚ୍ଚ କର୍ତ୍ତା ମଧ୍ୟ ହୋଇଥିଲେ । ବ୍ରିଟିଶ୍ ଲୋକେ ତାଙ୍କ ଦେଶରେ ଖୁବ୍ ଭଦ୍ର । କିନ୍ତୁ ଭାରତରେ ଯଦି ଦଳେ ଲୋକ କ୍ରୀତଦାସ ପରି ସେମାନଙ୍କ ସାଥିରେ ଏପରି ବ୍ୟବହାର କରିବେ ସେମାନଙ୍କ ପାଇଁ ଚାବୁକ୍ ବ୍ୟବହାର କରିବା ଛଡ଼ା ଏମାନଙ୍କର ଅନ୍ୟ ଉପାୟ ଆଉ କଣ ଅଛି ? ସାମାଜିକ ଆଚାର ଓ ବ୍ୟବହାର ପାରସ୍ପରିକ କ୍ରିୟା ଅନୁକ୍ରିୟାର ଫଳାଫଳ ମାତ୍ର ।

ଆଉ ଗୋଟିଏ କୌତୂହଳକର ରାଜନୈତିକ ଅନୁଭୂତି ଏ ସମୟର । ଗାନ୍ଧୀ-ନେହେରୁ ବହି ପଢ଼ିବା ସହିତ ଅନେକଗୁଡ଼ିଏ ଆଇନ ନିଷିଦ୍ଧ ବହିପଢ଼ା ମୋର ଚାଲିଥାଏ । ବଙ୍ଗଳା ଓ ଓଡ଼ିଆ ଭାଷାରେ ବହୁତ ପ୍ରକାରର ଲେଖା ବଡ଼ ଗୋପନୀୟ ଭାବରେ ମିଳେ ଯାହା କି ଆଇନ୍ ଦ୍ୱାରା ପଢ଼ିବା ନିଷିଦ୍ଧ କରା ହୋଇଥାଏ । ସେଥିରେ ବିଶେଷ ଭାବେ ଇଂରେଜମାନଙ୍କର ଅତ୍ୟାଚାର ଓ ଶୋଷଣ ବିଷୟରେ ବଡ଼ ଉତ୍ତେଜନାପୂର୍ଣ୍ଣ ଭାଷାରେ ଲେଖା ହୋଇଥାଏ । ଏ ବୟସରେ ଗାନ୍ଧୀଙ୍କ ଲେଖା ଅପେକ୍ଷା ଏହି ଲେଖାଗୁଡ଼ିକ ମୋର ବେଶୀ ପସନ୍ଦ ହେଉଥିଲା । କ୍ରମେ ଅହିଂସା ଅସହଯୋଗ ଆନ୍ଦୋଳନ ପ୍ରତି ମନ ଭିତରେ ବିଦ୍ରୋହ ଦେଖାଦେଲା । ଇଂରେଜ ଶାସକ ଗୋଷ୍ଠୀ ବିଶେଷତଃ ଆମ ଭାରତୀୟ ପୋଲିସ୍ ମାଜିଷ୍ଟ୍ରେଟ୍ ଆମ ପ୍ରତି ଅତ୍ୟାଚାର କରୁଥିବେ, ଲାଠି ଗୁଳି ମାରୁଥିବେ ଅଥଚ ଆମେ ଛେଳି ମେଣ୍ଢା ପରି ଠିଆ ହୋଇଥିବା ବା ଦୌଡ଼ି ପଳାଉଥିବା । ସେମାନେ ଆମକୁ ଗୋଡ଼ାଇ ଗୋଡ଼ାଇ ମାରୁଥିବେ । ଆମ ହାତରେ ଅସ୍ତ୍ର ନଥିଲେ କ'ଣ ଆମେ ଅସ୍ତ୍ର ତିଆରି କରି ପାରିବା ନାହିଁ ? ପୋଲିସ୍ ହାତରୁ ଅସ୍ତ୍ର ଛଡ଼ାଇ ନେଇ ପାରିବା ନାହିଁ ? ତେଣୁ ବ୍ରିଟିଶ୍ ସରକାର ବିରୁଦ୍ଧରେ ସଂଗ୍ରାମଶୀଳ ଆତଙ୍କବାଦୀ ପ୍ରତି ମୋର ଶ୍ରଦ୍ଧା ବହୁତ ବଢ଼ିଗଲା । ସେମାନଙ୍କର ଅସୀମ ସାହସ ଓ ଧୈର୍ଯ୍ୟ, ବୀରତ୍ୱ, ଗଭୀର ଦେଶାତ୍ମବୋଧ ଓ ଆତ୍ମତ୍ୟାଗ ମୋତେ ବହୁତ ପ୍ରେରଣା ଦେଲା । ଖୁଦିରାମ୍, ଯତୀନ୍ ଦାସଙ୍କ ବିଷୟରେ ଆହୁରି ବେଶୀ ଜାଣିବାକୁ ଆଗ୍ରହ ବଢ଼ିଲା । ଏ ବିଷୟରେ ଚୋରା ବହି ମିଳୁଥିଲା । କିନ୍ତୁ କିଏ ଦେଉଥିଲା ଏବଂ କେଉଁଠି ଏହା ମିଳେ ଜାଣିବା କଷ୍ଟ । ଏତେ ଗୋପନୀୟ ଭାବରେ ଏସବୁ ବହି ମୋ ପାଖକୁ ଆସେ ଯେ କେବଳ ଜଣଙ୍କର ନାମ ଛଡ଼ା ଅନ୍ୟମାନଙ୍କର ନାମ ଜାଣିବାର ଉପାୟ ନଥିଲା । ସେ ଭଦ୍ରଲୋକ ବର୍ତ୍ତମାନ ଏପରି ନିରୀହ ନୀରବ ଓ ରାଜନୈତିକ ଉତ୍ତାପହୀନ ବ୍ୟକ୍ତି ଯେ ତାଙ୍କ ନାମ ଏଠାରେ ଦେହିଲେ ସେ ନିଶ୍ଚିତ ଭାବରେ ଦୁଃଖ ଅନୁଭବ କରିବେ

ଏବଂ ଏକଥା ମଧ୍ୟ ବର୍ତ୍ତମାନ ସେ ସ୍ୱୀକାର ନ କରି ପାରନ୍ତି । ମନୁଷ୍ୟ ଜୀବନରେ ଏହିପରି ବହୁ ପରିବର୍ତ୍ତନ ହୁଏ ।

ମୁଁ ଏକାଦଶ ଶ୍ରେଣୀର ଛାତ୍ର । ୧୯୩୬ ମସିହା । କଲିଜିଏଟ୍ ସ୍କୁଲ ହଷ୍ଟେଲରେ ମୁଁ ଥାଏ । ଜଣେ ଆତଙ୍କବାଦରେ ଅଭିଯୁକ୍ତ ବ୍ୟକ୍ତି ପ୍ୟାରୋଲ୍‌ରେ କଟକ ଦିନକ ପାଇଁ ଆସିଥାନ୍ତି । ଗୁପ୍ତ ଖବର ମୋତେ ଦିଆଗଲା ଯେ ରାତି ବାରଟାରେ ତାଙ୍କ ସହିତ କଲେକ୍ଟର ଅଫିସ୍ ସାମନା କାଠଯୋଡ଼ି ନଦୀ ମଝି ବାଲିରେ ଦେଖାହେବ । ମୁଁ ହଷ୍ଟେଲରୁ ଲୁଚି ରାତି ଅଧରେ ନଈ ବାଲିଯାକ ଖୋଜିଲି କିନ୍ତୁ ତାଙ୍କର ଦେଖାହେଲା ନାହିଁ । କାହିଁକି ଦେଖା ହେଲା ନାହିଁ ଜଣାପଡ଼ିଲା ନାହିଁ । ତାପରେ ଖବର ଆସିଲା ଯେ ମୁଁ ଏହି ଆତଙ୍କବାଦୀଙ୍କ ଦଳଭୁକ୍ତ ହୋଇପାରିବି ଏକବର୍ଷ ପର୍ଯ୍ୟବେକ୍ଷଣ ପରେ । ତାପରେ ମୋତେ ମୋ ରକ୍ତରେ ଗୋଟିଏ ଶପଥ ଲେଖି ଦେବାକୁ ପଡ଼ିବ ଇତ୍ୟାଦି । ଏଥିରେ ମୁଁ ଏପରି ଉଦ୍‌ବୁଦ୍ଧ ହୋଇଗଲି ଯେ ଆଉ କେତେଜଣଙ୍କୁ ମୁଁ ଏହା ଭିତରେ ଭର୍ତ୍ତି କରିବା ପାଇଁ କାମ ଆରମ୍ଭ କରିଦେଲି ।

ମାଟ୍ରିକ୍ ପରୀକ୍ଷା ପରେ ମୁଁ ଯାଇଁ ଛତ୍ରପୁରରେ ଭାଇନାଙ୍କ ପାଖରେ ରହିଲି । ଭାଇନା ସେଠାରେ ଟ୍ରେଜେରୀ ଅଫିସର ଥାନ୍ତି । ତାଙ୍କ ଭାଇ ହିସାବରେ ମୋର ବହୁତ ଖାତିର ଥିଲା । ମୁଁ ମୋ ପରି ପରୀକ୍ଷା ଦେଇ ବସିଥିବା ଦୁଇଜଣ ପିଲାଙ୍କୁ ହାତ କଲି । ଛତ୍ରପୁରର ଅଳ୍ପଦୂରରେ ଗୋଟିଏ ବଡ଼ ବଡ଼ ପଥରର ନିର୍ଜନ ମୁଣ୍ଡିଆ ଅଛି । ସେଠାରେ ଗୋଟିଏ ବଡ଼ ଉଚ୍ଚ ପଥର ଉପରେ ବସି ଏହି ଦୁଇଟି ନିରୀହ ଛାତ୍ରଙ୍କୁ ଖାଲି ଉଦ୍‌ବୋଧନ ଦେଲି- ଗୁପ୍ତ ବହିର ଭାଷାରେ । ସରକାର, ଅଫିସର ଓ ଗୋରାଲୋକମାନେ କିପରି ଅତ୍ୟାଚାର କରୁଛନ୍ତି ଇତ୍ୟାଦି ବର୍ଣ୍ଣନା କରି । ମୋର ମନେ ହେଉଥାଏ, ମୁଁ ଯେପରି ନେପୋଲିୟନ୍ ପରି ମୋର ସେନାବାହିନୀକୁ ଉଦ୍‌ବୋଧନ ଦେଉଛି । ପୋଲିଓ ବ୍ୟାଧିଗ୍ରସ୍ତ ବାଙ୍ଗରା ନେପୋଲିୟନ୍ ଯଦି ବିଶ୍ୱବିଜୟୀ ହୋଇ ପାରିଥିଲେ, ମୁଁ କାହିଁକି ଏ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଜୟଯୁକ୍ତ ନ ହେବି ? ହୀନମନା ଚକର ଛେଉଣ୍ଡର ଦିଗ୍‌ବିଜୟୀ ଉଦ୍‌ବୋଧନ ! ଆଖି ତରାଟି ପାଟି ମେଲା କରି ନିରୀହ ନିର୍ବୋଧ ବିଚରା ଛାତ୍ର ଦୁଇଟି ମୋର କଥାକୁ ସନ୍ଧ୍ୟା ପରେ ସନ୍ଧ୍ୟା ଶୁଣି ଯାଉଥାନ୍ତି । ବୁଝୁଥାନ୍ତି କି ନାହିଁ ସେଥିପ୍ରତି ମୋର ଲକ୍ଷ୍ୟ ନଥିଲା । ବର୍ତ୍ତମାନ ସେ ଦୃଶ୍ୟ ମନେ ପଡ଼ିଲେ ମୋତେ ହସ ମାଡ଼େ ।

ଆମର ଲକ୍ଷ୍ୟ ହେଲା ଯେ ପ୍ରଥମେ ଅଳ୍ପ କେତେଦିନ ଭିତରେ ସାରା ଭାରତର ସବୁ ଗୋରା ଗଭର୍ଣ୍ଣର, ଜିଲ୍ଲା କଲେକ୍ଟର ଓ ପୋଲିସ୍ ସାହେବଙ୍କୁ ମାରିବାକୁ ପଡ଼ିବ ବୋମା, ପିସ୍ତଲ ଓ ଦେଶୀ ତିଆରି ବନ୍ଧୁକ ସାହାଯ୍ୟରେ ଇତ୍ୟାଦି ଇତ୍ୟାଦି । ଦେଶକୁ ଆତଙ୍କବାଦ ଦ୍ୱାରା ବ୍ରିଟିଶ୍ ହାତରୁ ମୁକ୍ତ କରିବାର ବିରାଟ ଯୋଜନା । ସେ ଦି'ଜଣ ଛାତ୍ର ରାଜି ହୋଇଥିଲେ ଏଥିରେ ଯୋଗ ଦେବା ପାଇଁ । ଆମ ଭିତରେ ବହୁତ ବନ୍ଧୁତା ହୋଇଗଲା । ସେମାନଙ୍କ ଗାଁ'କୁ ମୁଁ ମଧ୍ୟ ଯାଇଥିଲି ନୂତନ ଆତଙ୍କବାଦୀଙ୍କ ଅନ୍ୱେଷଣରେ । କିନ୍ତୁ ୧୯୩୭ ମସିହାରେ ଆତଙ୍କବାଦୀମାନଙ୍କର ଯୋଜନାର ଅବସାନ ଘଟିଲା । ତାପରେ ଭାରତରେ ରକ୍ତାକ୍ତ ସଂଘର୍ଷ ସମ୍ଭବ ନୁହେଁ ବୋଲି ମୋର ଧାରଣା ହେଲା । କିନ୍ତୁ ଏମିତିକା ଧକଡ଼ ଚକଡ଼ ହୋଇ ଅହିଂସା ସତ୍ୟାଗ୍ରହ ଫଳରେ ଦେଶ ସ୍ୱାଧୀନ ହୋଇପାରିବ ବୋଲି ମଧ୍ୟ ମୋର ପୂରା ବିଶ୍ୱାସ ହେଲାନାହିଁ ।

ପ୍ରତ୍ୟେକ ଦେଶର ଜାତୀୟ ଗୌରବ ବୃଦ୍ଧି ପାଇଁ ବା ଗୋଟିଏ ଦର୍ଶନର ଶ୍ରେଷ୍ଠତ୍ୱ ପ୍ରତିପାଦନ ପାଇଁ ବହୁତ ମନଗଢ଼ା କଥା କୁହାଯାଏ । ସେହିପରି ଭାବରେ ଭାରତ କେବଳ ଅହିଂସା ଉପାୟରେ ସ୍ୱାଧୀନତା ହାସଲ କରିବା କଥା ଆମେ ଗତ କେତେବର୍ଷ ହେଲା କହିଚାଲିଛୁ । କିନ୍ତୁ ପ୍ରକୃତରେ କେବଳ ଅହିଂସା ଆନ୍ଦୋଳନ ବଳରେ ଦେଶ ସ୍ୱାଧୀନ ହେବା କଥା ଠିକ୍ ନୁହେଁ । ଦ୍ୱିତୀୟ ମହାଯୁଦ୍ଧ ପରେ ଇଂଲଣ୍ଡର ଅର୍ଥନୈତିକ ଦୁର୍ବଳତା, ୧୯୪୨ ମସିହାର ଦେଶବ୍ୟାପୀ ରକ୍ତାକ୍ତ ବିପ୍ଳବ, ନେତାଜୀ ସୁଭାଷ ବୋଷଙ୍କର ଜାତୀୟ ସେନାର କାର୍ଯ୍ୟକଳାପ, ବମ୍ବେ ଉପକୂଳରେ ଭାରତୀୟ ନାବିକ ସେନାଙ୍କର ବିଦ୍ରୋହ ଭାରତର ସ୍ୱାଧୀନତା ପାଇଁ ବହୁ ପରିମାଣରେ ଦାୟୀ । ଅହିଂସା ଆନ୍ଦୋଳନ ଯେ ଗୁରୁତ୍ୱପୂର୍ଣ୍ଣ, ଏଥିରେ ସନ୍ଦେହ ନାହିଁ । ନିରସ୍ତ୍ର ଭାରତବାସୀଙ୍କ ମନରେ ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ ବିଦ୍ରୋହୀ ମନୋଭାବ ସୃଷ୍ଟି ଲାଗି ଗାନ୍ଧୀଙ୍କର ଅହିଂସା ଆନ୍ଦୋଳନ ଯୋଗୁଁ ହିଁ ଉପରୋକ୍ତ ସଶସ୍ତ୍ର ବିପ୍ଳବାତ୍ମକ ଘଟଣାମାନ ଘଟିପାରିଲା । କିନ୍ତୁ ବ୍ରିଟେନର ଯୁଦ୍ଧଜନିତ ଅର୍ଥନୈତିକ ଦୁର୍ବଳତା ସହିତ ଏସବୁ ଘଟଣା ନ ଘଟିଥିଲେ କେବଳ ସତ୍ୟାଗ୍ରହ ମାଧ୍ୟମରେ ଆମେ କଦାପି ସ୍ୱାଧୀନତା ଲାଭ କରି ପାରିନଥାନ୍ତୁ । ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନ ସମ୍ପୃକ୍ତ ବିଦ୍ରୋହ ଗୋଟିଏ ବିଶେଷ ଘଟଣା । ସେଥିରେ ବ୍ରିଟିଶ୍ ସରକାର ଡରିଗଲେ । ବ୍ରିଟିଶ୍ ପାର୍ଲିଆମେଣ୍ଟରେ ଭାରତକୁ ସ୍ୱାଧୀନତା ଦେବା ସପକ୍ଷରେ ସେ ସମୟର ପ୍ରଧାନମନ୍ତ୍ରୀ ଅଟ୍‌ଲୀ, ଚର୍ଚ୍ଚିଲଙ୍କର ଆକ୍ରମଣର ଉତ୍ତରରେ କହିଥିଲେ— ବର୍ତ୍ତମାନ ପରିସ୍ଥିତିରେ ଭାରତକୁ ହାତରେ ରଖିବାକୁ ହେଲେ ଗୋଟିଏ ବିରାଟ ସୈନ୍ୟବାହିନୀ ସେଠାକୁ ପଠାଇବା ଦରକାର । ତା ନହେଲେ ତାକୁ ସ୍ୱାଧୀନତା ଦେବାକୁ ଆମେ ବାଧ୍ୟ । ଯେହେତୁ ପ୍ରଥମ ପ୍ରକଳ୍ପଟି ବ୍ରିଟେନ୍‌ର ଅର୍ଥନୈତିକ ଅନଟନ ଯୋଗୁ ଅସମ୍ଭବ ଆମେମାନେ ଦ୍ୱିତୀୟଟିକୁ ବାଛି ନେଇଛୁ, ଭାରତକୁ ସ୍ୱାଧୀନତା ଦେଇଛୁ ।

ଏହିପରି ଭାବରେ ଦିଲ୍ଲୀରେ କାଗଜ କଲମରେ ସ୍ୱାଧୀନତା ହସ୍ତାନ୍ତର ଯେ, କି ବିଷମୟ ଫଳ ସୃଷ୍ଟି କଲା— ସେ ବିଷୟରେ କହିବା ନିଷ୍ପ୍ରୟୋଜନ । ଗାନ୍ଧୀଙ୍କର ନୂଆଖାଲି ସମୟର ଚିନ୍ତନ ଏହାର ପ୍ରକୃଷ୍ଟ ପ୍ରମାଣ । ଗାନ୍ଧୀଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଦିଲ୍ଲୀରେ କାଗଜ କଲମରେ ସ୍ୱାଧୀନତା ପାଇବା ଯୋଗୁଁ ଭାରତର କୋଟି କୋଟି ନିରୀହ ଗ୍ରାମବାସୀ ସେଥିରୁ ପ୍ରବଞ୍ଚିତ ହେବେ । ମହାତ୍ମା ଗାନ୍ଧୀଙ୍କର ଏହି ଭବିଷ୍ୟତବାଣୀ ସହିତ ଆଜି କେତେକ ମୁଷ୍ଟିମେୟ ଖଦଡ଼ଧାରୀ ଶାସକଶ୍ରେଣୀ ଅନ୍ତର୍ଭୁକ୍ତ ନେତା ଓ ଅମଲାତାନ୍ତ୍ରିକ ନିଷ୍ପେଷକ ବ୍ୟତୀତ ଆଉ ସମସ୍ତେ ଯେ ଏକମତ ହେବେ— ଏଥିରେ ସନ୍ଦେହ ନାହିଁ । ଭାରତ ସ୍ୱାଧୀନ ହେଲା, କିନ୍ତୁ ଜନତା ପରାଧୀନ ରହିଗଲେ ।

୧୯୩୭ ମସିହାରେ ବିଶ୍ୱନାଥ ଦାସ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ । ତାଙ୍କ ସହିତ ମାତ୍ର ଆଉ ଦୁଇଜଣ ମନ୍ତ୍ରୀ । ସେହି କେତେମାସ ଭିତରେ ଏହା ଆମମାନଙ୍କ ମଧ୍ୟରେ ସ୍ୱାଧୀନ ଶାସନ ବିଷୟରେ ଗୋଟିଏ ଗଭୀର ଛାପ ମାରିପାରିଥିଲା । ବିଶ୍ୱନାଥ ଦାସ ବଡ଼ ପ୍ରତାପୀ ପ୍ରଧାନମନ୍ତ୍ରୀ ଥିଲେ । ବ୍ରିଟିଶ୍ ରାଜତ୍ୱକାଳରେ ବହୁ ସର୍ତ୍ତ ଯୋଗୁ ସେ ବେଶୀ କିଛି କରିପାରି ନଥିଲେ ସୁଦ୍ଧା ସେ ତାଙ୍କର ଶାସନରେ ବହୁତ ଦୃଢ଼ତା ଦେଖାଇ ପାରିଥିଲେ । ଅନୁଗୁଳରେ ରାଜତ୍ୱ କରୁଥିବା ଜଣେ ମାଜିଷ୍ଟ୍ରେଟ୍ ଅତ୍ୟନ୍ତ ପରାକ୍ରମଶାଳୀ ଅତ୍ୟାଚାରୀ

ଅଫିସର ଥିଲେ । ବିଶ୍ୱନାଥ ବାବୁ ସେଠାରେ ପହଞ୍ଚିଲେ । ଲୋକମାନେ ଗୋଟିଏ ନାଟକ ମାଧ୍ୟମରେ ଏହି ଅଫିସରଙ୍କର ଅତ୍ୟାଚାର ବର୍ଣ୍ଣନା କଲେ । ଅଫିସରଜଣଙ୍କ ମଝିରେ ମଝିରେ କହୁଥାନ୍ତି- ଆଚ୍ଛା ଏ କଥାଟି ଠିକ୍ ସତ ନୁହେଁ । ତା ଅର୍ଥ ଅନ୍ୟ କଥାଗୁଡ଼ିକ ସତ । ତାଙ୍କ ଘରୁ ସେହିଦିନ ସ୍କୁଲ ଲାଇବ୍ରେରୀର ସମସ୍ତ ବହି ଗାଡ଼ିରେ ବୁହା ହୋଇ ପୁଣି ସ୍କୁଲକୁ ଅଣା ହୋଇଥିଲା, ଯାହାକି ପୂର୍ବରୁ ତାଙ୍କ ଘରେ ରହୁଥିଲା । ଏହିପରି ବହୁତ ଘଟଣା ଚାରିଆଡ଼େ ଚହଳ ପକାଇ ଦେଇଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ସେ ସ୍ୱାଧୀନତା ପ୍ରାପ୍ତି ପରେ ଏପରି ଦୁର୍ଦ୍ଧର୍ଷ ଅତ୍ୟାଚାରୀ ଅଫିସରଙ୍କୁ ବହିଷ୍କାର ନକରି ସେମାନଙ୍କ ସାହାଯ୍ୟରେ ସ୍ୱାଧୀନ ସରକାର ଦେଶ ଶାସନ କଲେ । ରାଜାମାନେ ମନ୍ତ୍ରୀ ହେଲେ, କଂଗ୍ରେସୀ ନେତାମାନେ ରାଜାପରି ଚଳିଲେ, ଔପନିବେଶୀ ଶାସନ କେବଳ ବହୁମୁଖୀ ଓ ବହୁ ଶାଖାରେ ପ୍ରସାରିତ ହେଲା ସିନା ତାହାର ଗୁଣାତ୍ମକ ପରିବର୍ତ୍ତନ ସମ୍ଭବ ହେଲାନାହିଁ । ବର୍ତ୍ତମାନ ପୃଥିବୀର କୌଣସି ଉନ୍ନତ ଦେଶର ଶାସନ ସହିତ ଏହା ତୁଳନୀୟ ନୁହେଁ ।

## (ଘ) ଅନ୍ୟାନ୍ୟ ଅନୁଭୂତି

ସାହିତ୍ୟ, ରାଜନୀତି, ଧର୍ମଗତ ଓ ସୌନ୍ଦର୍ଯ୍ୟଗତ ଆଭିମୁଖ୍ୟର ମୂଳଭିତ୍ତି ସହଜ ଓ ସରଳ ଭାବରେ ମୋ ଉପରେ ସ୍କୁଲ ଜୀବନର ଏହି ପାଞ୍ଚବର୍ଷରେ ପଡ଼ିଥିଲା । ତାହାର କାରଣ ମୋର ଅଖଣ୍ଡ ସ୍ୱାଧୀନତା ଥିଲା ଏସବୁ କ୍ଷେତ୍ରରେ । ଭାଇନା ମୋତେ ଆଦୌ ନିୟନ୍ତ୍ରଣ କରୁନଥିଲେ । ମଝିରେ ମଝିରେ ଖାଲି ପଚାରୁଥିଲେ ବା ପରାମର୍ଶ ଦେଉଥିଲେ । ଏହିପରି ନାନା କାର୍ଯ୍ୟରେ ଲିପ୍ତ ରହିଥିବାରୁ ମୁଁ ଖୁବ୍ ଭଲ ନ ପଢ଼ିଲେ ମଧ୍ୟ ସେ ବ୍ୟସ୍ତ ଥିବାର ଜଣାଯାଉ ନଥିଲେ । ସେଥିଯୋଗୁ ମୋ ମନରେ ବହୁତ ସାହସ ଆସି ଯାଇଥିଲା । ପଢ଼ା ବିଷୟରେ କୌଣସି ଉଦ୍‌ବିଗ୍ନତା ନଥିଲା । ମନ୍ଦ ପଢୁ ନଥିଲି । ଚାହିଁଥିଲେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କରି ପାରିଥାନ୍ତି । ସେପରି ଘୋଷବନ୍ତ ବଳବନ୍ତ ନ ହୋଇ ଚାରିଆଡ଼େ ମନ ଖୁସିରେ ବୁଲି ନାନା ବିଷୟରେ ଆଗ୍ରହ ସୃଷ୍ଟିରେ ବହୁ ସମୟ ବ୍ୟୟ କରି ଜୀବନରେ ବହୁତ ଉପାଦେୟ ଅନୁଭୂତି ତଥା ଦିଗ୍‌ଦର୍ଶନ ସୃଷ୍ଟି କରି ଯଦି ଉଚ୍ଚ ଦ୍ୱିତୀୟ ଶ୍ରେଣୀରେ ମୁଁ ମାଟ୍ରିକ୍ ପାଶ୍ କରିପାରିଲି ସେଥିରେ ମୁଁ ଖୁସି ଥିଲି । ଭାଇନା ମଧ୍ୟ ବିବ୍ରତ ହୋଇ ନଥିଲେ । ସେ ସମୟରେ ଅଧିକାଂଶ ପ୍ରଥମ ଶ୍ରେଣୀ ପିଲାଙ୍କର ପାଠ ଛଡ଼ା ଆଉ କିଛି କରିବାର ସମୟ ବା ଆଗ୍ରହ ନ ଥିଲା । ଏମାନଙ୍କ ପ୍ରତି ମୋର କାହିଁକି କୌଣସି ଆକର୍ଷଣ ନଥିଲା । ମୋ ସମୟରେ ଯେତେଜଣ କଲିଜିଏଟ୍ ସ୍କୁଲରୁ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲେ କେବଳ ଜଣକ ଛଡ଼ା ଆଉ କେହି ଉପରକୁ ଉଠି ପାରିନାହାନ୍ତି । କିରାଣୀ ବା ସ୍କୁଲ ଶିକ୍ଷକ ହୋଇ ରହିଗଲେ । ପାଠପଢ଼ା କ୍ଷେତ୍ରରେ ଏପ୍ରକାର ଦିଗ୍‌ଦର୍ଶନ ମୋର ଏତେ ବଳିଷ୍ଠ ହୋଇଥିଲା ଯେ ମୋ ପିଲାଙ୍କୁ ମଧ୍ୟ ମୁଁ କେବେହେଲେ ଅନ୍ୟାନ୍ୟ କ୍ଷେତ୍ରରେ ଆଗ୍ରହ ନ ଦେଖାଇ କେବଳ ସବୁ ପ୍ରକାରର ପାଠ ପଢ଼ିବାରେ ବାଧ୍ୟ କରିନାହିଁ । ତଥାପି ସମସ୍ତେ ଭଲ ପଢ଼ିଲେ ।

ଲୁଗାପଟା ପିନ୍ଧିବାରେ, ପୂଜା ଅର୍ଚ୍ଚନା କରିବାରେ, ଇଚ୍ଛା ଅନୁସାରେ ବହି କିଣିବାରେ କେବଳ ଯେ ସ୍ୱାଧୀନତା ଥିଲା ତା ନୁହେଁ, ମୋର ଖର୍ଚ୍ଚବାର୍ଚ୍ଚରେ ମଧ୍ୟ ସେତେ ବେଶି ନିୟନ୍ତ୍ରଣ ନଥିଲା । ଫଳରେ ମୋର ପୋଷାକ ପରିଚ୍ଛଦ ଭଲ ଧରଣର ଥିଲା । ଏହି ମାର୍ଜିତ

ପୋଷାକ ପିନ୍ଧା ଅଭ୍ୟାସ ଜୀବନସାରା ରହିଗଲା । ମୋଟାମୋଟି ଭାବରେ ବ୍ୟକ୍ତି ସ୍ୱାଧୀନତା ମୋତେ ନିଜକୁ ଉପଲବ୍ଧି କରିବା, ନିଜର ବିକାଶ କରାଇବା ଦିଗରେ ଯଥେଷ୍ଟ ସୁବିଧା ଓ ସୁଯୋଗ ଯୋଗାଇ ଦେଇଥିଲା । ମୁଁ ସେଥିଲାଗି ଭାଇନାଙ୍କ ପାଖରେ ଚିର କୃତଜ୍ଞ । ମୋର ସ୍ୱାଧୀନଚେତା ସ୍ୱଭାବ ଯୋଗୁଁ ସ୍କୁଲ ଶିକ୍ଷକମାନେ ମଧ୍ୟ ମୋତେ ବିଶେଷକିଛି ତାଗିଦ୍ କରୁନଥିଲେ । ସ୍କୁଲରେ ପାଠପଢ଼ା ଭଲ ହେଉଥିଲା । ଜଣେ ଦିଜଣ ଶିକ୍ଷକଙ୍କୁ ଛାଡ଼ିଦେଲେ ଅନ୍ୟମାନଙ୍କର ପାଠପଢ଼ା ଢଙ୍ଗ ପୁରୁଣା କାଳିଆ ଥିଲା ।

ଶ୍ରୀ ଲଳିତ ମୋହନ ଘୋଷ ଭୂଗୋଳ ପଢ଼ାଇବାରେ ଏପରି ବିଚକ୍ଷଣ ଥିଲେ ଯେ ସେ ଥରେ ଯାହା କହୁଥିଲେ ପିଲାମାନେ ମନେରଖି ପାରୁଥିଲେ । ଆଜିଯାଏଁ ଭୂଗୋଳ ବିଷୟରେ ମୋର ଗଭୀର ଆଗ୍ରହ ତାଙ୍କ ଯୋଗୁଁ ସମ୍ଭବ ହୋଇଥିଲା । ସେ ଏପରି ଆଗ୍ରହ ସୃଷ୍ଟି କରୁଥିଲେ ଯେ ଭୂଗୋଳରେ ଆଉ ପାଞ୍ଚଖଣ୍ଡ ବହି ପଢ଼ିବାକୁ ଇଚ୍ଛା ହେଉଥିଲା । ସେହି ଭୂଗୋଳ ଜ୍ଞାନ ମୋର ଦେଶ ବିଦେଶ ଭ୍ରମଣରେ ବହୁତ ସାହାଯ୍ୟ କରିଛି । ମୁଁ ଥରେ ପୃଥିବୀ ଭ୍ରମଣରୁ ଫେରିବା ପରେ ଏମ୍.ଏ. ପିଲାଙ୍କୁ ପଚାରିଥିଲି ଯେ ମୁଁ ଟୋକିଓ ସହର ଯେଉଁ ତାରିଖ ଦିନ ସନ୍ଧ୍ୟାବେଳେ ଉଡ଼ାଜାହାଜରେ ବାହାରି ପାଞ୍ଚଛଅ ହଜାର ମାଇଲ ଅତିକ୍ରମ କରି ହନଲୁଲୁରେ ପହଞ୍ଚିଲି ସେତେବେଳକୁ ସେହିଦିନ ସକାଳ ନଅଟା ହୋଇଥିଲା । ଏମ୍.ଏ. ଶ୍ରେଣୀର କୌଣସି ପିଲା ଏହାକୁ ବୁଝି ପାରି ନଥିଲେ । କିନ୍ତୁ ମୋର ମାଟ୍ରିକୁଲେସନ ଭୂଗୋଳ ପଢ଼ାଜ୍ଞାନ ଯୋଗୁଁ ମୁଁ ଏହାକୁ ବୁଝିପାରୁଥିଲି । ପ୍ରକୃତ ପାଠପଢ଼ା ଏହିପରି ଭାବରେ ଜୀବନରେ ଉପାଦେୟ ହୋଇଥାଏ ।

ସ୍କୁଲ ସମୟର ଅନ୍ୟାନ୍ୟ ମନଲାଖି ଅନୁଭୂତି ଭିତରେ ଗୋପାଳ ପ୍ରହରାଜ ଏବଂ ଉତ୍କଳ ଭୀମ ପଦ୍ମଚରଣ ଦାସଙ୍କ ସହ ସମ୍ପର୍କ ମନେପଡ଼େ । ଗୋପାଳ ପ୍ରହରାଜ ଆମମାନଙ୍କୁ ଏତେ ଭଲ ପାଉଥିଲେ ଯେ ଆମମାନଙ୍କ ପାଇଁ ଗୋଟିଏ ବଖରା ଛାଡ଼ିଦେଇଥିଲେ । ସେଠାରେ ନାନା ପ୍ରକାର ଆଲୋଚନା ଚାଲେ । ମୋର ଯେତେଦୂର ମନେ ଅଛି, ଏହିଠାରେ ହିଁ ବିଚ୍ଛିନ୍ନ ଉତ୍କଳ ଅବକାଶ ବାହିନୀର କଳ୍ପନା କରା ହୋଇଥିଲା ଏବଂ ପରେ ମୋ କକେଇ ପୁଅ ଭାଇ ପୁରୁଷୋତ୍ତମ ରଥ ସିଂହଭୂମିରେ ଯାଇ କେତେ ସମୟ ଓଡ଼ିଆ ହାଇସ୍କୁଲରେ ଶିକ୍ଷକତା କରିଥିଲେ । ଗୋପାଳ ପ୍ରହରାଜଙ୍କ ସାହିତ୍ୟ ପ୍ରତିଭା ମୋତେ ଅଭିଭୂତ କରିଥିଲା । ତାଙ୍କ ଆଗରେ ଜଣେ ଇଂରାଜୀ, ବଙ୍ଗଳା ବା ହିନ୍ଦିରେ ପଢ଼ିଯାଏ ଏବଂ ସେ ଶ୍ରୁତଲିଖନ ଲେଖିଲାଭଳି ଓଡ଼ିଆ ଅନୁବାଦ ଲେଖି ଯାଉଥିଲେ । ସବୁ ଭାଷାରେ ଅଦ୍ଭୁତ କ୍ଷମତା ତାଙ୍କର ଥିଲା । ସେ ବଡ଼ ଅମାୟିକ ଓ ଛାତ୍ରବତ୍ସଳ ଥିଲେ । ଭାଷାକୋଷ ପ୍ରକାଶିତ ହେଲା ପରେ ମୋତେ ସାତଖଣ୍ଡିର ଗୋଟିଏ ସେଟ୍ ଉପହାର ଦେଇଥିଲେ । ଆଜିପର୍ଯ୍ୟନ୍ତ ମୋ ପାଖରେ ସେହି ସାତଖଣ୍ଡ ଭାଷାକୋଷ ରହିଛି ।

ସେ ତାଙ୍କ ଜୀବନୀ କଥା ଆମକୁ କହିବାକୁ ଯାଇ କହନ୍ତି ଯେ ଥରେ ସେ ପୁରୀ ଯାଉଥିଲା ବେଳେ ତାଙ୍କ ମଟରଗାଡ଼ିଟି ରେଳଗାଡ଼ି ସହିତ ଧକ୍କା ଲାଗିଲା ଏବଂ ସେ ଗାଡ଼ିରୁ ବାହାରି ରେଳ ଧାରଣା ପାଖରେ ଛିଟିକି ପଡ଼ିଲେ । ରେଳଚକରେ ତାଙ୍କ ମୁଣ୍ଡରେ ଥିବା ପଗଡ଼ିଟି ଉଡ଼ିଯାଇଥିଲା, କିନ୍ତୁ ମୁଣ୍ଡ ରହିଗଲା । ତା'ପରେ ସେ ଭାବିଥିଲେ ଯେ ଭଗବାନ ତାଙ୍କର ମୁଣ୍ଡଟିକୁ ରଖିଲେ ତାଙ୍କ ଜୀବନର ସ୍ୱପ୍ନକୁ ସାର୍ଥକ କରିବା ପାଇଁ । ସେ

ଅନ୍ୟସବୁ କାମ ଛାଡ଼ି ଦେଇ ତାଙ୍କର ଜୀବନର ମହାସ୍ୱପ୍ନ ଭାଷାକୋଷ ଲେଖିବାରେ ସମସ୍ତ ସମୟ ବ୍ୟୟ କଲେ । ଏହା ତାଙ୍କଠାରୁ ଶୁଣିଲା ବେଳେ ଆମ ଲୋମ ଟାଙ୍କୁରି ଉଠେ । ଆମର ଇଚ୍ଛାହୁଏ, ଆମେ କ'ଣ ଏପରି ମହାନ୍ ବ୍ୟକ୍ତି ହୋଇପାରିବୁ ନାହିଁ ? ଆମ ଜୀବନରେ କ'ଣ ଏପରି ଭୀଷ୍ମ ସଂକଳ୍ପ ସମ୍ଭବ ହେବନାହିଁ ? ଏପରି ଜଣେ ମହାନ୍ ବ୍ୟକ୍ତିଙ୍କୁ ଓଡ଼ିଶା ଭୁଲିଗଲା । ତାଙ୍କର ଜୟନ୍ତୀ ଉତ୍ସବ ହୁଏ ନାହିଁ କି ଓଡ଼ିଆ ଭାଷାର ଗୌରବ ଭାଷାକୋଷର ପୁନଃ ମୁଦ୍ରଣ ହୋଇପାରୁନାହିଁ । ଯେଉଁ ଜାତି ନିଜ ଦେଶର ମହାନ୍ ବ୍ୟକ୍ତିଙ୍କୁ ସମ୍ମାନ ଦେଇ ନପାରେ ତାହା ଯେ ଚିରଦିନ ଅବହେଳିତ ହୋଇ ରହିଯିବ, ତାର ଜ୍ୱଳନ୍ତ ଉଦାହରଣ– ଓଡ଼ିଶା ।

ଉତ୍କଳ ଭୀମଙ୍କର ଗୋଟିଏ ବ୍ୟାୟାମଶାଳା ସେତେବେଳକାର ସମାଜ ପ୍ରେସ୍ ନିମିଚୌଡ଼ି ଗଳିରେ ଥାଏ । ସେଠାରେ ବହୁ ପିଲା ଓ ଯୁବକ ଦୈହିକ ଗଠନ ଲାଗି ନାନାବିଧ ଶିକ୍ଷାଲାଭ କରିବାକୁ ଯାଆନ୍ତି । ଯୋଗାସନ ସହ ଅନ୍ୟାନ୍ୟ ଖେଳ କସରତ ଶିଖାଯାଏ । ମୁଁ କେତେଦିନ ସେଠାକୁ ଯାଇଥିଲି । ସବୁବେଳେ ଉତ୍କଳ ଭୀମ ମୋର ହାତର ମାଂସପେଶୀକୁ ଚିପି ମୋର ପତଳା ଦେହକୁ ନାପସନ୍ଦ କରନ୍ତି । ମୋତେ ଗଜାମୁଗ, ନଡ଼ିଆ ଓ ଅଣ୍ଡା ଖାଇବାକୁ ପରାମର୍ଶ ଦିଅନ୍ତି । ମୁଁ ମୋଟା ହେବା ପାଇଁ ବହୁତ ପରିଶ୍ରମ କରେ । କଞ୍ଚା ଅଣ୍ଡା କଞ୍ଚାଦୁଧରେ ଘାଣ୍ଟି ପିଏ । ଗୁଆଘିଅରେ ଅଣ୍ଡା ଫେଣ୍ଟି ଖାଏ । ନଡ଼ିଆ ଗଜାମୁଗ ଖାଏ । ତଥାପି ମୋର ଦେହ ସେହିପରି କ୍ଷୀଣ ରହିଥାଏ । ଛଅଫୁଟିଆ ଡେଙ୍ଗା ଦେହରେ ମାଂସ ପଳେ ନଥାଏ । ଓଜନ ୧୧୨ ପାଉଣ୍ଡ ବା ୫୧ କେଜି ମାତ୍ର । କିନ୍ତୁ ଜାମା ପିନ୍ଧି ପକାଇଲେ ମୁଣ୍ଡଟା ବଡ଼ ଓ ଗାଲ ଦୁଇଟା ଫୁଲୁକା ଫୁଲୁକା ଥିବାରୁ ଦେଖିବାକୁ ଦୁର୍ବଳ ମନେହୁଏ ନାହିଁ । ପତଳା ଦୁର୍ବଳ ଦେହ ପାଇଁ ମୋଠାରେ ହୀନମନ୍ୟତା ଲାଗି ରହିଥାଏ । ବି.ଏ., ଏମ୍.ଏ. ପଢ଼ିବା ପର୍ଯ୍ୟନ୍ତ ଏହାର କୌଣସି ଉନ୍ନତି ହୋଇନଥାଏ । ସେ ସମୟର କେତେଜଣ ଝିଅ ବନ୍ଧୁ ମୋତେ 'ସଂକ୍ରାନ୍ତି ପୁରୁଷ' ବୋଲି ଚିଡ଼ାନ୍ତି । ମୋତେ ବହୁତ ଅପମାନ ଲାଗେ । ଏହି ହୀନମନ୍ୟତାକୁ ଘୋଡ଼ାଇବା ପାଇଁ ବୋଧହୁଏ ମୋର ସମବୟସୀ ଝିଅମାନଙ୍କୁ ଦେଖିଲେ ମୋର ନିଜର ମର୍ଯ୍ୟାଦା ବଜାୟ ରଖିବାକୁ ଚେଷ୍ଟା କରେ । କୌଣସି ଝିଅ ଆଗରେ ଯାଉଥିବାବେଳେ ମୁଁ ଯଦି ପଛରେ ଥାଏ ତା'ହେଲେ ଟିକିଏ ଅଟକି ଯାଏ, କାରଣ କାଳେ ସେ ଭାବିବ ମୁଁ ତା ପିଛା ଧରିଛି । ମୁହାମୁହିଁ ଦେଖାହେଲେ ମୁଁ ନ ଜାଣିଲା ପରି ମୁଣ୍ଡକୁ ଉପରକୁ ଟେକି ଡଗଡଗ ହୋଇ ଚାଲିଯାଏ । ଝିଅମାନଙ୍କ ସହିତ ମିଶିବାରେ ଏହି ମର୍ଯ୍ୟାଦାବୋଧ ଭାବ ଜୀବନ ସାରା ରହିଗଲା ଏବଂ ଏହା ମୋତେ କେବଳ ଉନ୍ନତ ଓ ସଂସ୍କୃତିସମ୍ପନ୍ନା ସ୍ତ୍ରୀ ଲୋକଙ୍କ ସହିତ ବନ୍ଧୁତା କରିବାରେ ସାହାଯ୍ୟ କଲା । ଢଙ୍ଗ ଦେଖାଉଥିବା ଝିଅମାନେ କାହିଁକି କେଜାଣି ମନକୁମନ ମୋଠାରୁ ଦୂରେଇ ରହନ୍ତି । ଲୋକର ମୁଖ୍ୟ ଜୀବନ ରୀତିର ଏହା ଗୋଟିଏ ପ୍ରକୃଷ୍ଟ ଉଦାହରଣ ।

ବହୁ ଅଧ୍ୟବସାୟଲବ୍ଧ ଏ ପ୍ରକାର ମର୍ଯ୍ୟାଦାବନ୍ତ ବ୍ୟକ୍ତି ସୃଷ୍ଟିତ୍ୱ ପାଇଁ ଅହରହ ଉଦ୍ୟମ ଭିତରେ ମଧ୍ୟ ଝିଅମାନଙ୍କ ପ୍ରତି ଆକର୍ଷଣ ଏହି ଆଦ୍ୟ ଯୌବନ କାଳରେ ବହୁ ଶିହରଣ ସୃଷ୍ଟି କରିଥିଲା । କଳ୍ପନା ଜଗତରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଅନୁଭୂତିର ଏହା ଆଉ ଗୋଟିଏ ପରିସର ଥିଲା । କିନ୍ତୁ ଧର୍ମ ଓ ରାଜନୀତି ଭାବନା ଭିତରେ ଏହା ସେପରି

ଭାବରେ ଗଭୀର ଭିତ୍ତି ସ୍ଥାପନ କରିପାରିନଥିଲା । ମୋର ଯେତେକ ବନ୍ଧୁ ଥିଲେ କେବଳ ଜଣଙ୍କୁ ଛାଡ଼ିଦେଲେ ଆଉ ସମସ୍ତଙ୍କ ସହିତ ଝିଅମାନଙ୍କ ବିଷୟ ଛଡ଼ା ପୃଥିବୀର ଆଉସବୁ ବିଷୟରେ ଆଲୋଚନା ହେଉଥିଲା ।

ବଡ଼ ବଡ଼ କଥାରେ ବ୍ୟସ୍ତ ରହି ଖେଳ କସରତ ପ୍ରଭୃତି ପାଇଁ ମୋର ସମୟ ନଥିଲା । ତେଣୁ ପିଲାଦିନୁ ଖେଳ ପ୍ରତି ମୋର କୌଣସି ଆଗ୍ରହ ନଥିଲା । ଘାସ କାଟିବାରେ ମୁଁ ଯେପରି ଅପାରଗ ବୋଲି ପରିଗଣିତ ହୋଇଥିଲି, ଖେଳରେ ମଧ୍ୟ ସେହିପରି ଅର୍ବାଚୀନ ଥିଲି । ଧର୍ମ, ରାଜନୀତି ଓ ସାହିତ୍ୟରେ ସମୟ କଟାଉଥିବା ଯୋଗୁଁ ମୋର ହୀନମନ୍ୟତା ବଢ଼ିପାରି ନଥିଲା । ତା' ସହିତ ଆତ୍ମବିଶ୍ୱାସର ଚାପ ବେଶି ଥିଲା । ତେଣୁ ଏହି ଅଭାବ ମୋତେ ଆଦୌ ବିବ୍ରତ କରି ପାରିନଥିଲା । ପିଲାଦିନୁ ଖେଳ ପ୍ରତି ଅନାଗ୍ରହ ଯୋଗୁ ସାରାଜୀବନ କୌଣସି ଖେଳରେ ମୁଁ ଯୋଗ ନେଇପାରିନାହିଁ । ତାସ, ଲୁଡୁ, ଚେସ୍ ପ୍ରଭୃତି ଖେଳରେ ସମୟ ନଷ୍ଟ ହୁଏ ବୋଲି ମୋର ଧାରଣା । ଫଳରେ ଆମ ଘରର ପିଲାମାନେ ମଧ୍ୟ ଆଦୌ ଖେଳପ୍ରିୟ ହୋଇପାରିଲେ ନାହିଁ । ତାପରିବର୍ତ୍ତେ ସମସ୍ତେ ନାନା ବିଷୟରେ ଗପ କରିବାକୁ ଭଲ ପାଆନ୍ତି ।

ବାସ୍ତବ ଦୁନିଆ ସହିତ ପରିଚୟ ହୋଇଥିଲା ଭାଇନାଙ୍କର ନୂଆ ଘର ତିଆରି କରିବାରେ । କାଳୀଗଳିରେ ଥିବା ଆମ ଭଡ଼ାଘର ବିକ୍ରି ହେଉଥାଏ । ମୋର କିନ୍ତୁ ଇଚ୍ଛା ଥିଲା ଯେ ଏପରି ଗଳିରେ ଥିବା ଘର କିଣିବା ଠିକ୍ ହେବନାହିଁ । ଆଉ କୌଣସି ଖୋଲା ଯାଗା ବିଶେଷତଃ କାଠଯୋଡ଼ୀ ମହାନଦୀ କୂଳରେ ରହିବା ଉଚିତ । ମୁଁ ତ ଘର ତୋଲାଇବାରେ ଭାଇନାଙ୍କୁ ସାହାଯ୍ୟ କରୁଥିଲି କାରଣ ବେଶୀ ସମୟ ସେ ଗସ୍ତରେ ଯାଆନ୍ତି-ବନ୍ୟା ବେଳେ ତ ବାହାରେ ଛଅମାସ ରହିଯାଆନ୍ତି । ତେଣୁ ଘର ତୋଲାଇବାରେ ମୋର ଅଭିଜ୍ଞତା ଥାଏ । କାଠଯୋଡ଼ୀ କୂଳରେ ଯାଗା ମିଳିବା ଦୁରୂହ ବ୍ୟାପାର ଥିଲା । ମୁଁ କିନ୍ତୁ ସବୁଦିନ ଭାଇନାଙ୍କୁ ଲଗାଇଥାଏ ସେହି ଅଞ୍ଚଳରେ ଘର କରିବା ପାଇଁ ।

ଦିନେ ସକାଳେ ସେ ସାଇସାଇନ୍ ପଡ଼ିଆର ପୂର୍ବପଟେ ବୁଲୁ ବୁଲୁ ଦେଖିଲେ ଗୋଟିଏ ଚାଳଘର ସାମନାରେ ଗୋଟିଏ ବୁଢ଼ୀ ବସି ଦାନ୍ତ ଘଷୁଥିଲା । ତାକୁ ଭାଇନା ପଚାରିଲେ ଯେ ସେ ଅଞ୍ଚଳରେ ଜମି କିମ୍ବା ଘର କିଣିବା ପାଇଁ ମିଳିବ କି ? ବୁଢ଼ୀ ସାଙ୍ଗେ ସାଙ୍ଗେ କହିଲା ଯେ ତାର ସେହି ଚାଳଘରଟିକୁ ବିକ୍ରି କରିବ, କିନ୍ତୁ ତାକୁ ସେଠାରେ ରହିବା ପାଇଁ ବଖରାଏ ଘର କରିଦେବା ଦରକାର । ମୁଁ ଗଲି ଯାଗା ଦେଖିବାକୁ- ଚମତ୍କାର ସ୍ଥାନ । ଆଗରେ ସନସାଇନ୍ ପଡ଼ିଆ- ଦକ୍ଷିଣରେ କାଠଯୋଡ଼ୀ ନଦୀ ଦେଖାଯାଏ । ମୁଁ ଭାଇନାଙ୍କ ସାଙ୍ଗରେ ଲାଗିଲି ସେ ଯାଗାଟିକୁ କିଣିବା ପାଇଁ - ବୁଢ଼ୀ ଓ ବୁଢ଼ା ଦୁଇଜଣ ଲୋକଙ୍କ ପାଇଁ ଘର ଦିବଖରା କରାଇଦେବା ଉଚିତ । ଯାହାହେଉ ସେ ଯାଗା କିଣାହେଲା । ସେମାନଙ୍କ ପାଇଁ ଦୁଇବଖରା ଘର ଘରର ଗୋଟିଏ ପାଖରେ ତିଆରି ହେଲା । ବୁଢ଼ୀଟି ଅତୀତରେ ଗୋଟିଏ ବେଶ୍ୟା ଥିଲା- ସେ ଜଣକୁ ଧରି ବହୁ ବର୍ଷଧରି ଘର କରିଥାଏ । ବୁଢ଼ୀଟି ଏତେ ସ୍ନେହଶୀଳା ଯେ ଆଜିଯାଏ ତା କଥା ମନେଅଛି । ବେଶ୍ୟାମାନେ ଜୀବନରେ ପ୍ରକୃତ ସ୍ନେହ ମମତା ନ ପାଇଥିବାରୁ ବୋଧହୁଏ ଏପରି ଭାବରେ ପର ଜୀବନରେ ସ୍ନେହଶୀଳା ହୋଇଯାଆନ୍ତି । ମୋତେ ତାକୁ ବହୁତ ଭଲ ଲାଗିଥିଲା । ସେ ମୋତେ ଦେଖିଲାକ୍ଷଣି ମୋ

ଦେହ ମୁଣ୍ଡକୁ ଆଉଁସି ପକାଏ । ଭଲଭଲ ଜିନିଷ ଖାଇବାକୁ ଦିଏ । ତା ମାତୃବତ୍ସଳ ସ୍ନେହ ମୋ ଉପରେ ଯେପରି ଅଜାଡ଼ି ଦେଇଯାଏ ।

ଘର ତିଆରି କରିବାରେ ମୁଁ ବହୁତ ସାହାଯ୍ୟ କଲି । ମୋର ଏହି ଅଭିଜ୍ଞତା ପର ଜୀବନରେ ମୋତେ ବହୁତ ସାହାଯ୍ୟ କଲା, ପ୍ରାୟ ଆଠ ହଜାର ଟଙ୍କାରେ ପ୍ରାୟ ତିନି ହଜାର ବର୍ଗଫୁଟର ଦୋତାଲା ଘର ତିଆରି ହୋଇପାରିଥିଲା । କଟକର ପ୍ରଥମ ସିମେଣ୍ଟ ଛାତର ଶୂନ ଛାତ ଏହି ଘରେ ପଡ଼ିଥିଲା- ତାପରେ ଏପରି ଶୂନ ଛାତ ଘର ଆଡ୍‌ଭୋକେଟ୍ ହରିହର ମହାପାତ୍ରଙ୍କର ହେଲା ।

ଜହ୍ନ ରାତ୍ରିରେ ଏହାର ଛାତ ଉପରେ ମୋର ବହୁତ ସମୟ କଟେ । କାଠଯୋଡ଼ୀ ଆଡୁ ଶୀତଳ ପବନ ମନ ପ୍ରାଣ ଦୋହଲାଇ ନେଇଯାଏ । ଏହି ଘରର ବିଭିନ୍ନ ସମୟର ମାଧୁରିମା ଜୀବନ ସାରା ମନରେ ରହିଯାଇଛି । ଏପରି ସୁନ୍ଦର ପରିବେଶରେ ଭାଇନାଙ୍କର ଦୁଇଝିଅ- ବିନୋଦିନୀ କୁମୁଦିନୀଙ୍କର ଜନ୍ମ । ସେମାନଙ୍କର କୁନି କୁନି କଥା, ହସ ଖୁସିର ବାତାବରଣ ଯୋଗୁ କଟକର ମୋର ପାଞ୍ଚବର୍ଷ ସ୍କୁଲ ଜୀବନ ସ୍ମରଣୀୟ ହୋଇ ରହିଯାଇଛି ।

■ ■ ■

## ୭

# ରେଭେନ୍ସା କଲେଜ : ମାନସିକ ଦ୍ୱନ୍ଦ୍ୱ, ଲକ୍ଷ୍ୟହୀନ ଭାସମାନ ଅବସ୍ଥା

ସ୍କୁଲରେ ପଢ଼ିବା ସମୟରେ ନାନା ପ୍ରକାର କଳ୍ପନା ଜଳ୍ପନା, ଧର୍ମଗତ ରାଜନୈତିକ କ୍ରିୟା କଳାପ, ଭାବଗତ ଉଦବେଳନ ମଧ୍ୟରେ ପାଠରେ ଯେତିକି ସମୟ ବିନିଯୋଗ ହୋଇପାରିଲା ସେତିକିରେ କୌଣସି ମତେ ଉଚ୍ଚ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ ପାଶ୍ କଲି ଏବଂ ରେଭେନ୍ସା କଲେଜରେ ଆଇ.ଏ.ରେ ନାମ ଲେଖାଇଲି । ସେତେବେଳେ କଳାରେ ଦୁଇଟି ବିଷୟ ଗ୍ରୁପ୍ ଥାଏ । ଇତିହାସ, ତର୍କଶାସ୍ତ୍ର, ସଂସ୍କୃତ କିମ୍ୱା ଅଙ୍କ ତର୍କଶାସ୍ତ୍ର ସଂସ୍କୃତ । କଳାରେ ଆଉ କୌଣସି ବିଷୟବସ୍ତୁ ପଢ଼ା ହେଉନଥାଏ । ଏପରିକି ଓଡ଼ିଆ ମଧ୍ୟ ନୁହେଁ । ଅଙ୍କ ତ ସ୍କୁଲରେ ଛାଡ଼ି ଦେଇଥିଲି । ଅଙ୍କ ନଥିଲେ ସେତେବେଳେ ବିଜ୍ଞାନ ପଢ଼ା ସମ୍ଭବ ହେଉନଥିଲା । ଭବିଷ୍ୟତରେ ଡାକ୍ତର ହେବା ସ୍ୱପ୍ନ ମଉଳିଗଲା । ତେଣୁ ଇତିହାସ, ତର୍କଶାସ୍ତ୍ର ଓ ସଂସ୍କୃତ ନେବାକୁ ବାଧ୍ୟ ହେଲି । ଇଂରାଜୀ ଓ ଦର୍ଶନ ବିଭାଗର ଅଧ୍ୟାପକମାନେ ପ୍ରାୟ ଭଲ ଥିଲେ କିନ୍ତୁ ଅନ୍ୟାନ୍ୟ ଅଧ୍ୟାପକଙ୍କର ପାଠ ପଢ଼ାଇବା ଢଙ୍ଗ ସେପରି ସୁଖକର ନଥିଲା । ଆଗକାଳରେ କଲେଜରେ ଖୁବ୍ ଭଲ ପଢ଼ା ହେଉଥିଲା ବୋଲି ଯେଉଁ ଧାରଣା ଅଛି ତାହା ଠିକ୍ ନୁହେଁ । ଜଣେ ପୁରୁଣା ଅଧ୍ୟାପକ ତ କିଛି ପାଠ ପଢ଼ାଉ ନଥିଲେ ଏବଂ କହୁଥିଲେ ଯେ ସେ ପଢ଼ିଛନ୍ତି ବୋଲି ଦରମା ପାଉଛନ୍ତି ପଢ଼ାଇବା ପାଇଁ ନୁହେଁ । ଏଣୁ ଇଣ୍ଟରମିଡ଼ିଏଟ୍ କଲେଜ ଶିକ୍ଷା ମୋତେ ଖୁବ୍ ବେଶି ଅନୁପ୍ରାଣିତ କରିପାରିନଥିଲା ।

ରେଭେନ୍ସା କଲେଜର ଏତେ ଖ୍ୟାତି ଥିଲା ଯେ ସେ କଲେଜର ଛାତ୍ର ହେବା ବଡ଼ ଗର୍ବର କଥା । ସାରା ଓଡ଼ିଶାରେ ତାହା ଏକମାତ୍ର କଲେଜ ଥିଲା । ମୁଁ ପଶ୍ଚିମ ଛାତ୍ରାବାସରେ ରହିଲା । କାରଣ ସହରିଆ ଓ ଉପକୂଳ ଅଂଚଳରେ ରହୁଥିବା ପିଲାଏ ପଶ୍ଚିମ ଛାତ୍ରାବାସରେ ସେତେବେଳେ ସମ୍ବଲପୁର ଓ ଗଡ଼ଜାତର ପିଲାମାନେ ପୂର୍ବ ଛାତ୍ରାବାସରେ ରହୁଥିବାର ଗୋଟିଏ ପରମ୍ପରା ରହି ଆସିଥିଲା । ଆମ ଛାତ୍ରାବାସର ଓ୍ୟାର୍ଡ଼େନ ଥିଲେ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା ଏବଂ ତାପରେ ଆସିଲେ ଅଧ୍ୟାପକ ବଳଭଦ୍ର ପ୍ରସାଦ । ସୁପରିନ୍‌ଟେଣ୍ଡେଣ୍ଟ ଅଧ୍ୟାପକ ନାରାୟଣ ମିଶ୍ର ଓ ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ ଅଧ୍ୟାପକ ରୋହତ୍‌ଗୀ । ହଷ୍ଟେଲରେ ସବୁ କ୍ଲାସର ପିଲାଏ ରହୁଥିଲେ । ଏମ୍.ଏ. ଓ ଆଇନ୍ କ୍ଲାସରୁ ଆରମ୍ଭ କରି ପ୍ରଥମ ବାର୍ଷିକ

ଛାତ୍ର ପର୍ଯ୍ୟନ୍ତ । ତେଣୁ ପଚିଶ ଛବିଶ ବର୍ଷର ଛାତ୍ରମାନେ ମଧ୍ୟ ଆମ ସାଙ୍ଗରେ ରହୁଥିଲେ । ଏମାନେ ଲମ୍ବା ଲମ୍ବା ପଞ୍ଜାବୀ ପିନ୍ଧି ଅନେକ ସମୟରେ ଷ୍ଟାଇଲ୍‌ରେ ବାଡ଼ିଧରି ବୁଲି ବାହାରନ୍ତି । ପ୍ରଥମେ ଯାଇଥିବା ନୂଆ ପିଲାମାନେ ସେମାନଙ୍କୁ ଭୟ ଓ ସମ୍ମାନର ସହ ଦେଖୁଥିଲେ ।

ହଷ୍ଟେଲରେ ଆମ ଭିତରେ ଗୋଟିଏ ନୂଆ ବନ୍ଧୁ ଦଳ ଗଢ଼ିଉଠିଲା । ଆମେ ସବୁ କବିତା, ସାହିତ୍ୟ ଓ ସଂଗୀତ ଚର୍ଚ୍ଚାରେ ଲାଗିଗଲୁ । ରବି ଠାକୁରଙ୍କ ଲେଖା ଅଧିକାଂଶ ସମୟରେ ଆଲୋଚିତ ହେଉଥିଲା । ଇଂରାଜୀ ଲେଖକଙ୍କ ଭିତରୁ ବର୍ଣ୍ଣାଡ଼ଶ ଆମର ସବୁଠୁ ପ୍ରିୟ । ତା ସହିତ ଟମାସ୍ ହାର୍ଡ଼ି, ସେଲି, କିଟ୍‌ସ ବାଇରନ୍‌ଙ୍କ ପରି ରୋମାଣ୍ଟିକ କବିମାନଙ୍କ ଲେଖା ଆମକୁ ଆକୃଷ୍ଟ କରିଥିଲା । ଓଡ଼ିଶାର ମାୟାଧର ମାନସିଂହ, କାଳିନ୍ଦୀଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ଶରତ ମୁଖାର୍ଜୀ, ସଚ୍ଚି ରାଉତରାୟ ମଧ୍ୟ ଆମର ପ୍ରିୟ କବି । କିଛି ଉପର ଶ୍ରେଣୀ ପିଲା ମଧ୍ୟ ଏଥିରେ ଯୋଗ ଦିଅନ୍ତି ।

ଆମର ପୋଷାକ ମଧ୍ୟ ବଦଳିଗଲା । ପାଠପଢ଼ାରେ ବିଶେଷ ଆଗ୍ରହ ନଥାଇ ସାହିତ୍ୟ ଓ ପୋଷାକରେ ଆଗ୍ରହ ବଢ଼ିଲା । ମୋର ଓ ଆଉଜଣେ ବନ୍ଧୁଙ୍କର ଧୋତି ଜଣେ ହଷ୍ଟେଲ ଚାକର ବାଉଁଶ ପାଡିଆରେ ମୋଡ଼ିମୋଡ଼ି କୁଞ୍ଚ କରି ଆମକୁ ଦିଏ । ସାହିତ୍ୟରେ ଆଗ୍ରହୀ କି ନା ତେଣୁ ମୁଁ କବିସମ୍ରାଟ ବ୍ରେଡ୍ ମାର୍କର ଗୋଟିଏ ପ୍ରକାର ଉତ୍ତମ ଧରଣର ଧୋତି ପିନ୍ଧୁଥିଲି । ଏହା ସବୁଠୁ ବେଶି ଦାମ୍ ଥିଲା । ଦେଢ଼ଟଙ୍କା ବା ଟଙ୍କାଏ ଛଅଣା ଗୋଟି । ସେତେବେଳକାର ଦାମ୍ ତୁଳନାରେ ନିଶ୍ଚୟ ବେଶି । ଗୋଟାଏ ବଡ଼ ରସଗୋଲା ଦାମ୍ ତିନିପଇସା ଥାଏ ଯାହାର ଦାମ୍ ବର୍ତ୍ତମାନ ପାଞ୍ଚଟଙ୍କା । ହଷ୍ଟେଲ ଖାଇବା ଖର୍ଚ୍ଚ ମାସକୁ ଏଗାର ଟଙ୍କା ପଡ଼େ । ସେଥିରେ ଦୁଇଥର ଖାଇବା ସହିତ ଗୋଟିଏଥର ଜଳଖିଆ ମିଳେ ।

ସେତେବେଳେ କବି ସଚ୍ଚି ରାଉତରାୟଙ୍କ ସହିତ କଲେଜ କମନ ରୁମ୍‌ରେ ଦେଖାହୁଏ । ସେ କଲିକତାରୁ ଆସି ରେଭେନ୍ସା କଲେଜରେ ଯୋଗ ଦେଇଥାନ୍ତି । ତାଙ୍କ ସହିତ କଥାବାର୍ତ୍ତା କରିବା ଗୋଟିଏ ଗର୍ବର କଥା ଥିଲା ।

ଏହି ସମୟରେ ଆମେ କେତେଜଣ ମିଶି ଗୋଟିଏ ଉଚ୍ଚଧରଣର ମାସିକ ସାହିତ୍ୟ ପତ୍ରିକା ପ୍ରକାଶ କରିବାକୁ ଯୋଜନା କଲୁ । ସଚ୍ଚି ରାଉତରାୟ ଏହାର ସଂପାଦକ ହେଲେ । ଉପେନ୍ଦ୍ର ସାମଲ ଏହାର ପରିଚାଳକ । ଆମେମାନେ ବିଭିନ୍ନ ଲେଖକଙ୍କ ପାଖକୁ ଯାଇ ଲେଖା ସଂଗ୍ରହରେ ଲାଗିପଡ଼ିଲୁ । ଏହି ଅବସରରେ ଓଡ଼ିଶାର ତତ୍କାଳୀନ ସବୁଜ ସାହିତ୍ୟର ମହାରଥୀମାନଙ୍କ ସହିତ ପରିଚୟ ହୋଇଥିଲା । ଛାତ୍ରବତ୍ସଳ ବୈକୁଣ୍ଠନାଥ ପଟ୍ଟନାୟକଙ୍କ ସହିତ ଏହି ସମୟରେ ବନ୍ଧୁତା ଜୀବନସାରା ରହିଯାଇଥିଲା । ଯେତେଦୂର ମନେହେଉଛି, ଏହି ପତ୍ରିକାର, ସାତ-ଆଠଟି ସଂଖ୍ୟା ବାହାରିଥିଲା । ତାପରେ ଆମେମାନେ ଚାରିଆଡ଼େ ଛିନଛତ୍ର ହୋଇଗଲୁ । ଆଉ ପତ୍ରିକା ବାହାରିପାରିଲା ନାହିଁ । ବର୍ତ୍ତମାନ ସୁଦ୍ଧା ସଚ୍ଚି ରାଉତରାୟଙ୍କର ପତ୍ରିକା ବିଷୟରେ ମନେଅଛି ।

ସାହିତ୍ୟ ଚର୍ଚ୍ଚା ସାଙ୍ଗକୁ ରାତିରେ କେନାଲ୍‌ରେ ନୌକାବିହାର ଆମର ଗୋଟିଏ ଆମୋଦକର ଓ ଉପଭୋଗ୍ୟ ଅନୁଭୂତି । ଶ୍ରୀଯୁକ୍ତ ଶ୍ୟାମାଚରଣ ତ୍ରିପାଠୀ ପ୍ରିନ୍‌ସପାଲ୍ କିଛିଦିନ ଥିଲେ । ସେ କଲେଜ ପିଲାମାନଙ୍କ ପାଇଁ ତିନୋଟି ଲମ୍ବା ଲମ୍ବା ଷ୍ଟାଇଲ୍‌ର ଡଙ୍ଗା

ମଗାଇ ଦେଉଥିଲେ । ତା ପାଇଁ ପଶ୍ଚିମ ଛାତ୍ରାବାସର ପଶ୍ଚିମପଟ କେନାଲରେ ଗୋଟିଏ ବୋଟ୍‌କ୍ଲବ୍ ହୋଇଥାଏ । ସେଥିରେ ଆମେମାନେ ଥିଲୁ ସ୍ଥାୟୀ ସଦସ୍ୟ । ଅପରାହ୍ନରେ ଡଙ୍ଗା ଚଲାଉ, କିନ୍ତୁ ଥରେ ଥରେ ଜହ୍ନ ପକ୍ଷ ରାତିରେ ଲୁଚି ଲୁଚି ଡଙ୍ଗାକୁ ଧରି ବିଦ୍ୟାଧରପୁର ଫାର୍ମ ପର୍ଯ୍ୟନ୍ତ ନେଇଯାଉ । ସେଠାରେ ଆଖୁ ଖାଉ ଏବଂ ଭୋର୍‌କୁ ଫେରୁ । ନିର୍ଜନ ଜହ୍ନପକ୍ଷ ରାତିରେ କେନାଲ୍‌ରେ ଡଙ୍ଗା ବାହି ଯିବା ଆମକୁ ବହୁତ ଭଲ ଲାଗୁଥିଲା । ଶରତ ଚାଟାର୍ଜୀଙ୍କ ଉପନ୍ୟାସ 'ଶ୍ରୀକାନ୍ତ'ରେ ଏପରି ଅନୁଭୂତି ବର୍ଣ୍ଣିତ ହୋଇଥିଲା । ଆମେ ଯେପରି ଶ୍ରୀକାନ୍ତ ପରି ଉପନ୍ୟାସର ନାୟକ ! ଥରେ ଚୌଦ୍ୱାରର ଉପର ପଟ ଗୋଟିଏ ସ୍ଥାନରୁ ଡାହାଣୀ ନିଆଁ ବାହାରି ବହୁବାଟ ଯାଏ ବୋଲି ଶୁଣି ଆମେ କେତେଜଣ ରାତିରେ ଲୁଚି ଡଙ୍ଗା ଧରି ଗଲୁ ଏହି ଡାହାଁଣୀ ନିଆଁକୁ ଗୋଡ଼ାଇବା ପାଇଁ । ରାତିସାରା ଗୋଟାଏ ମଶାଣିରେ ବସି ଗୀତ ଗାଇବା ଆରମ୍ଭ ହେଲା । ଅବଶ୍ୟ ଶେଷ ପର୍ଯ୍ୟନ୍ତ ଡାହାଁଣୀ ନିଆଁ ଆମ ଆଗକୁ ଆସିଲା ନାହିଁ । ଏସବୁ ବଡ଼ ଅଦ୍ଭୁତ ଅନୁଭୂତି । ଭଲ ପଢୁଥିବା ପିଲାଙ୍କର ଏହା କଳ୍ପନାର ବାହାରେ । ଗୀତ, ସାହିତ୍ୟ, ଡଙ୍ଗାଚଲା ପ୍ରଭୃତିରେ ମତ୍ତ ରହୁଥିବା ପିଲାଙ୍କର ଯାହା ପଢ଼ା ହେଉଥିବ ସହଜରେ ଅନୁମେୟ ।

ରାଜନୀତିଗତ କାର୍ଯ୍ୟକଳାପରେ ମୋର ଆଗ୍ରହ ଏକଦମ୍ କମି ଆସୁଥିଲା । ଆତଙ୍କବାଦ ଆନ୍ଦୋଳନ ଦବିଗଲା । ସତ୍ୟାଗ୍ରହରେ ବିଶ୍ୱାସ ମୋର ଖୁବ୍ ବେଶି ଦୃଢ଼ ନଥିଲା । ତେଣୁ ରାଜନୀତିରେ ଗୋଟିଏ ଦ୍ୱନ୍ଦାତ୍ମକ ମାନସିକ ଅବସ୍ଥା ଥିଲା ।

ସେତେବେଳକୁ ଓଡ଼ିଶାରେ ବିଶେଷତଃ, ରେଭେନ୍ସା କଲେଜ ଏବଂ କଟକ ମେଡିକାଲ କଲେଜରେ ଛାତ୍ର ଅଶାନ୍ତି ପ୍ରଚଣ୍ଡ ଭାବରେ ଦେଖାଦେଇଥିଲା । ରାଜନୀତି ବ୍ୟତୀତ ଯେ କୌଣସି ଆଳରେ ମଧ୍ୟ କଲେଜ ବନ୍ଦ ଆଂଦୋଳନ ଆରମ୍ଭ ହୋଇଯାଉଥିଲା- ସେତେବେଳେ ଛାତ୍ରନେତା ବୀରେନ୍ ମିତ୍ର, ଅଶୋକ ଦାଶ, ବିବୁଧେନ୍ଦୁ ମିଶ୍ର, ବୈଦ୍ୟନାଥ ରଥ ମନମୋହନ ମିଶ୍ର ପ୍ରମୁଖ କଲେଜରେ ବିଭିନ୍ନ କ୍ଲାସର ଛାତ୍ର ଥିଲେ । ଆଇନ କ୍ଲାସ ସବୁ ରେଭେନ୍ସା କଲେଜରେ ହେଉଥିବାରୁ ଏମାନଙ୍କ ଭିତରୁ ଅଧିକାଂଶ ଆଇନ ପଢୁଥିଲେ । ଏହି ରାଜନୈତିକ ଆନ୍ଦୋଳନର ମୁଁ ଜଣେ ନିଷ୍କ୍ରିୟ ଦର୍ଶକ ମାତ୍ର ଥିଲି । ସାହିତ୍ୟ ସଂଗୀତ ଚର୍ଚ୍ଚା ଥିଲା ଆମ କେତେଜଣଙ୍କର ପ୍ରଧାନ କାର୍ଯ୍ୟ । ମୁଁ ମଧ୍ୟ କିଛିଦିନ ହାରମୋନିୟମ୍ ଧରି ଗୀତ ଶିଖିବାକୁ ଆରମ୍ଭ କରିଥିଲି । ଡୁବି ତାବଲା ଶିଖୁଥିଲି ।

ଆଉ ଗୋଟିଏ ବଡ଼ ଗୁରୁତ୍ୱପୂର୍ଣ୍ଣ ଅନୁଭୂତି ଏ ସମୟରେ ଦେଖା ଦେଇଥିଲା ଯାହା କି ଭବିଷ୍ୟତରେ ମୋର ଧର୍ମଗତ ଅଭ୍ୟାସକୁ ପୂରା ବଦଳାଇ ଦେଲା । ମୁଁ ତ ପିଲାଦିନୁ ବହୁତ ବେଶି ଧର୍ମଗତ କାର୍ଯ୍ୟକଳାପରେ ବୁଡ଼ିରହିଥିଲି, ଘଣ୍ଟା ଘଣ୍ଟା ଧରି ଜପତପ କରୁଥିଲି, ଶ୍ରୀକୃଷ୍ଣଙ୍କୁ ସଖା ହିସାବରେ ଧ୍ୟାନ କରୁଥିଲି, ମଝି ମଝିରେ ମଧ୍ୟରାତ୍ରିରେ ଦିଗ୍‌ମଣ୍ଡଳ ଉପରେ ବାଳକୃଷ୍ଣଙ୍କର ଚେହେରା ଦେଖି ପାରୁଥିଲି, ବହିରେ ଲେଖାଥିବା ଶିହରଣ ମୋ ଦେହରେ ଦେଖାଯାଉଥିଲା ଇତ୍ୟାଦି ଇତ୍ୟାଦି । କିନ୍ତୁ ଏହି ସମୟରେ କୌଣସି ନିର୍ଦ୍ଦିଷ୍ଟ କାରଣ ନଥାଇ ମଧ୍ୟ ମନରେ ସନ୍ଦେହ ଜାତ ହେଲା ଯେ ମୁଁ ଯାହା କରୁଛି ସେଥିରେ କିଛି ସତ୍ୟତା ଅଛି ନା ବହିରେ ଅଛି ଓ ଲୋକମାନେ କରୁଛନ୍ତି ବୋଲି ମୁଁ କରୁଛି ଏବଂ ଅନ୍ୟମାନଙ୍କଠାରୁ

ଶୁଣି ଶୁଣି ସେ ପ୍ରକାର ଅନୁଭୂତି ମୋର ହେଉଛି ? ଥରେ ସନ୍ଦେହ ହେଲା ପରେ ମୁଁ ଆଉ ସରଳ ଭାବରେ ପ୍ରାର୍ଥନା କରିପାରିଲି ନାହିଁ ।

ଅନେକ ସମୟରେ ବିପଦ ଆପଦ ପଡ଼ିଲେ ଏବଂ ଠାକୁର ତୁମକଥା ନ ଶୁଣିଲେ ବୋଲି ହୃଦ୍‌ବୋଧ ହେଲେ ମଣିଷ ବିରକ୍ତ ହୋଇ ଠାକୁର ପୂଜା ଛାଡ଼ିଦିଏ । ପର ଜୀବନରେ ମୋତେ ଜଣେ ବିଶିଷ୍ଟ ଭଦ୍ରବ୍ୟକ୍ତି କହୁଥିଲେ ଯେ ସେ ବହୁତ ବେଶି ଠାକୁରାଣୀ ଭକ୍ତ ଥିଲେ । ଥରେ ତାଙ୍କର ଜଣେ ଆତ୍ମୀୟା ଭୟଙ୍କର ରୋଗରେ ପୀଡ଼ିତ ହୋଇପଡ଼ିଲେ । ସେଦିନ ରାତି ତାଙ୍କ ଘରେ ବହୁବର୍ଷ ଧରି ପୂଜା ପାଉଥିବା ଇଷ୍ଟଦେବତା ଠାକୁରାଣୀଙ୍କ ମୂର୍ତ୍ତି ପାଖରେ ସେ ବସି ପୂଜା କଲେ । କିନ୍ତୁ ତାଙ୍କର ସେ ଆତ୍ମୀୟା ମରିଗଲା ପରେ ସେ ଏତେ ବେଶି ବିଦ୍ରୋହୀ ହୋଇଗଲେ ଯେ ଠାକୁରାଣୀ ମୂର୍ତ୍ତିକୁ ମହାନଦୀରେ ଫୋପାଡ଼ି ଦେଇଥିଲେ । ମୋଠାରେ କିନ୍ତୁ ଈଶ୍ୱର ବିଶ୍ୱାସ ନେଇ ଏପରି କୌଣସି ବ୍ୟର୍ଥତା ବା ବିଦ୍ରୋହ ଦେଖା ଦେଇନଥିଲା । କେବଳ ବୌଦ୍ଧିକ ସଂଶୟ ଆସିଲା । ଅନ୍ୟମାନଙ୍କର ଗତାନୁଗତିକ କଥାରେ ମୁଁ ଖାଲି ଭାସି ଚାଲିଛି ନା ଏଥିରେ କୌଣସି ଯାଥାର୍ଥ୍ୟ ରହିଛି ? ଏହି ବିରାଟ ସନ୍ଦେହ ମୋର ସାରା ବ୍ୟକ୍ତିତ୍ୱକୁ ମନ୍ଥି ପକାଇଲା । ଫଳରେ ଏହି ଦୁଇବର୍ଷ କାଳ ମୁଁ ଆଉ ଜପତପ କରିପାରିଲି ନାହିଁ । ମୋର ବୌଦ୍ଧିକ ଓ ଧର୍ମଗତ ଜଗତରେ ଏହା ଗୋଟିଏ ବିରାଟ ପରିବର୍ତ୍ତନ ଆଣିଦେବାର ପ୍ରଥମ ସୂଚନା ଥିଲା ।

ଏହି ଦୁଇବର୍ଷ ଭିତରେ ସାହିତ୍ୟ ଆଲୋଚନା, ଜହ୍ନ ରାତିରେ ଡଙ୍ଗା ଚଲାଇବା, ରାତିରେ କଲେଜ ପଡ଼ିଆରେ ବୁଲିବା, ଉଦିତ ଅସ୍ତମିତ ଜହ୍ନ ପାଇଁ ପ୍ରତୀକ୍ଷା କରି ବସିବା ସହିତ ରାଜନୀତି ଓ ଧର୍ମଗତ ସଂଶୟରେ ପ୍ରବଳ ଭାବରେ ଦ୍ୱନ୍ଦ୍ୱାଭିମୁଖୀ ହୋଇ ସମୟ ସ୍ରୋତରେ ମୁଁ ଦିଗହୀନ ଲକ୍ଷ୍ୟହୀନ ନୌକା ପରି କେବଳ ଭାସି ଚାଲିଲି । ଏ ସମୟରେ କୌଣସି ସଫଳତା କିମ୍ବା ବ୍ୟର୍ଥତା ମଧ୍ୟ ନଥିଲା । ଗନ୍ତବ୍ୟ ପଥରେ କୌଣସି ଦିଗ ନିର୍ଦ୍ଦେଶକ ଦିଗନ୍ତ ନଥିଲା । କଳ୍ପନାବିଳାସୀ ନ୍ୟୂନ ମନୋଭାବାପନ୍ନ ବ୍ୟକ୍ତି ଜୀବନରେ ବୋଧହୁଏ ଏ ପ୍ରକାର ନିଷ୍ଫଳ ଓ ସଶଂୟାଗତ ସମୟ ଆସେ । ଏହା ହୁଏତ ଭବିଷ୍ୟତ ଜୀବନ ଦର୍ଶନର ନୂତନ ଆଦର୍ଶ ଓ ସଂକଳ୍ପ ପାଇଁ ଦରକାର ହୁଏ । ତଥାକଥିତ ମାନସିକ ଶୂନ୍ୟତା ଭିତରୁ ନୂତନ ଦିଗ୍‌ଦର୍ଶନର ସନ୍ଧାନ ମିଳେ । ଜୀବନର ବାଟ ଅଲଗା ହୋଇଯାଏ । ନୂତନ ଭାବରେ ବ୍ୟକ୍ତିତ୍ୱର ଆତ୍ମଦର୍ଶନ ହୁଏ ।

ଆଇ.ଏ. ପରୀକ୍ଷାର କିଛିଦିନ ପୂର୍ବରୁ ମନରେ ହଠାତ୍ ଭୟ, ଉତ୍କଣ୍ଠା ଓ ଉଦ୍‌ବିଗ୍ନତା ଦେଖାଦେଲା । ମୋତେ ରାତିରେ ନିଦ ହେଲାନାହିଁ । ନିଦ୍ରାହୀନତା ଯୋଗୁଁ ଶାରୀରିକ ଦୁର୍ବଳତା ଏବଂ ମାନସିକ ଉଦ୍‌ବିଗ୍ନତା ଭିତରେ କୌଣସିମତେ ଆଇ.ଏ. ପରୀକ୍ଷା ଦେଇଦେଲି । ମୋର କେତେକ ଅନ୍ତରଙ୍ଗ ସାହିତ୍ୟ ସାଥୀ ଭୟରେ ପରୀକ୍ଷା ଦେଲେନାହିଁ । ସେମାନଙ୍କ ଭିତରୁ କେତେକ ମଧ୍ୟ ଜୀବନସାରା ଆଉ ପରୀକ୍ଷା ଦେଇନାହାନ୍ତି । ଆଉ କେତେଜଣ ଦେଇଥିଲେ, ଫେଲ୍ ବି ହେଲେ । ସେମାନଙ୍କ ଭିତରୁ କେବଳ ମୁଁ କୌଣସିମତେ ପାଶ୍ କରିଗଲି । ପରୀକ୍ଷାରେ ନିଶ୍ଚିତ ଭାବରେ ଫେଲ୍ ହେବି ଭାବି ମୁଁ ଖରା ଛୁଟିରେ ଭାଇନାଙ୍କ ପାଖକୁ ନ ଯାଇ କଟକରେ ଗୋଟିଏ ଭଡ଼ାଘରେ ନାନୀ, ଖୁଡ଼ି ଓ ମୋର କକେଇପୁଅ ଭାଇ ପୁରୁଷୋତ୍ତମ ଭାଇନାଙ୍କୁ ନେଇ ରହିଲି ।

ପରୀକ୍ଷା ପର ପର ଦୁଇମାସର ଅବସ୍ଥା ଅତି ବିଚିତ୍ର ଥିଲା । ମୁଁ ଦିନଯାକ ଘରେ ଶୁଏ । ସନ୍ଧ୍ୟା ପରେ ଖାଇସାରି କାଠଯୋଡ଼ି ନଦୀର ମଝି ବାଲିରେ ବୋହିଯାଉଥିବା ପାଣିଧାର କୂଳେ କୂଳେ ଚାଲେ । ପ୍ରାୟ ରାତିସାରା ଏହିପରି ବାଲିରେ ବହୁବାଟ ବୁଲେ । କେତେବେଳେ ଛୋଟିଆ ଡଙ୍ଗାଟିଏ ଦେଖିଲେ ସେଥିରେ ଯାଇ ବସେ । ପାଣି ଭିତରେ ବୁଡ଼ି ବସିବାରେ କେତେସମୟ କଟିଯାଏ । ମଝି ମଝିରେ ଗୀତ ଗାଏ । ଚନ୍ଦ୍ର ଉଦୟ ଓ ଅସ୍ତ ଦେଖେ । ଚନ୍ଦ୍ରାସ୍ତ ବେଳେ ମୋର ବିରାଟ ଲମ୍ବାଛାଇ କାଠଯୋଡ଼ି ବାଲିରେ ଥିବା ବିଭିନ୍ନ ଆକାରର ବାଲିକୁଦର ଛାଇ ଭିତରେ ବୁଲୁଥିବାର ଚିତ୍ର ଦେଖିବାରେ ଆନନ୍ଦ ପାଏ । ଥରେ ପାଣିଧାର ପାଖରେ ଗୋଟିଏ ଲମ୍ବା ଓ ଚୌଡ଼ା ଛାଇ ଦେଖାଗଲା । ପାଖକୁ ଗଲା ପରେ ଦେଖିଲି ଗୋଟିଏ ଯୁବକର ମୋଟା ମୋଟା ହାତ ଗୋଡ଼ ଓ ଚୌଡ଼ା ଛାତିଥିବା ଶବଟିଏ ପଡ଼ିଛି । ଭୟ ନିଶ୍ଚୟ ହେଲା କିନ୍ତୁ ଉପାୟ ନଥିଲା । ଆଗ ସମୟରେ ଯେତେଟା ଭୟ ହୋଇଥାଆନ୍ତା ସେତେଟା ଭୟ କାହିଁକି ହୋଇ ନଥିଲା । ଭଗବତ୍ ବିଶ୍ୱାସ କମିଯିବା ସହିତ ଭୂତଭୟ ମଧ୍ୟ ଯେମିତି କମି ଆସୁଥିଲା ।

ସେହି କେତେଦିନର ଅନୁଭୂତି ବହୁତ ଅଦ୍ଭୁତ ଥିଲା ମୋ ପକ୍ଷରେ । ମୁଁ ଯେପରି କ'ଣ ଖୋଜୁଥିଲି । ଦିନର ଗୋଳମାଳିଆ ସମୟରେ ଯେପରି ଏହା ସମ୍ଭବ ନଥିଲା । ନିର୍ଜନ ରାତିର ମୋଲାୟମ ଶୂନ୍ୟତା ଭିତରେ ଖୋଜିବାରେ ଆନନ୍ଦ ଥିଲା । କ'ଣ ଖୋଜୁଥିଲି ତାର ଚେତନା ମଧ୍ୟ ମୋର ନଥିଲା । ଉଦ୍ଦେଶ୍ୟବିହୀନ, ଲକ୍ଷ୍ୟହୀନ ଏ ସନ୍ଧାନ । ଏଥିରେ ଦୁଃଖ, ବ୍ୟର୍ଥତା କି ନିର୍ଦ୍ଦିଷ୍ଟ ଆନନ୍ଦ ମଧ୍ୟ ନ ଥିଲା । ଅନ୍ଧାର ରାତିରେ ତାରକାର କ୍ଷୀଣ ଆଲୋକରେ କିମ୍ବା ଜ୍ୟୋସ୍ନାଭରା ଦୀପ୍ତିରେ, ଦିଗନ୍ତବ୍ୟାପୀ ବାଲୁକାର ଆସ୍ତରଣ ଉପରେ ଏକୁଟିଆ ଚାଲିବାର କଣ ଉଦ୍ଦେଶ୍ୟ ଥିଲା କେଜାଣି । ଜନହୀନ ନିର୍ଜନ ରାତିରେ ଯେପରି ପ୍ରକୃତିର କେବଳ ନୀରବ ନିଶ୍ଚଳ ସ୍ଥିତି ଉପଲବ୍ଧ କରିହୁଏ ମୋର ସେହିପରି କେବଳ ଏକ ଅସ୍ତିତ୍ୱ ଥିଲା । ମନ ଗହୀରର କୌଣସି ଉଚ୍ଚାଟ ନଥିଲା– Pulsated at a point like a trembling distant star in the midst of infinite existance.

ପରୀକ୍ଷା ଫଳ ବାହାରିବାର କିଛିଦିନ ପରେ ଏପରି ଏକ ନିରୋଳା ରାତିର ଶେଷ ଭାଗରେ ମୋ ମନରେ ଗୋଟିଏ ଆଲୋଡ଼ନ ସୃଷ୍ଟି ହୋଇଥିଲା । ମୁଁ ସାଙ୍ଗେ ସାଙ୍ଗେ ଘରକୁ ଫେରି ସେହି ରାତିରେ ପାଟଣା କଲେଜର ପ୍ରିନ୍ସପାଲଙ୍କ ପାଖକୁ ଗୋଟିଏ ଚିଠି ଲେଖିଲି ଏବଂ ଭୋର୍‌ରେ ତାକୁ ଡାକରେ ପକାଇ ଆସିଲି । ତାଙ୍କର ନାମ ମୋତେ ଜଣା ନଥିଲା । କେବଳ ପ୍ରିନ୍ସିପାଲ ପାଟନା କଲେଜର ଠିକଣା । ମନେ ମନେ ଠିକ୍ କଲି ଯେ ମୁଁ ଆଉ କଟକରେ ପଢ଼ିବି ନାହିଁ । ସେ ଚିଠିରେ କ'ଣ ଲେଖିଥିଲି ମୋର ମନେନାହିଁ । ଆଜି ପର୍ଯ୍ୟନ୍ତ କେବଳ ଗୋଟିଏ ଧାଡ଼ି ମନେଅଛି – The sword of democleus is hanging over me.

ତା'ପରେ ରେଭେନ୍ସା କଲେଜକୁ ଗଲି ଟ୍ରାନ୍ସଫର ସାର୍ଟିଫିକେଟ ଆଣିବା ପାଇଁ । ଡ. ବଳଭଦ୍ର ପ୍ରସାଦ ପ୍ରିନ୍ସପାଲ ଚାର୍ଜରେ ଥାନ୍ତି । ସେ ମୋତେ ବହୁତ ବୁଝାଇ କହିଥିଲେ ଟ୍ରାନ୍ସଫର ନ ହେବା ପାଇଁ । କାରଣ ସେ ନିଶ୍ଚନ୍ତ ଥିଲେ ଯେ ପାଟଣା କଲେଜର ସ୍ନାତକ ଶ୍ରେଣୀରେ ପ୍ରଥମ ଶ୍ରେଣୀରେ ପାଶ୍ ନ କରିଥିବା ଓଡ଼ିଆ ପିଲାଙ୍କୁ ବିଲ୍‌କୁଲ ଯାଗା ମିଳିବ

ନାହିଁ । ତା'ଛଡ଼ା ମୁଁ ଯେପରି ଭାବରେ ଖାଲି ଗୋଟିଏ ଚିଠି ଲେଖିଦେଇଛି ସେଥିରେ ସ୍ଥାନ ପାଇବା ଅସମ୍ଭବ ବୋଲି କହିଲେ । ସେତେବେଳକୁ ପାଟଣା କଲେଜରେ ନାମ ଲେଖାଇବା ପାଇଁ ଆଉ ମାତ୍ର ଥାଏ ପନ୍ଦର ଦିନ ଅଥଚ ମୋ ପାଖକୁ କୌଣସି ଖବର ଆସି ନଥାଏ । ମୁଁ କିନ୍ତୁ ତାଙ୍କ କଥା ନମାନି ଜିଦ୍ କରି କଲେଜ ଛାଡ଼ିବା ସାର୍ଟିଫିକେଟ ଯୋଗାଡ଼ କଲି ଏବଂ ପାଟଣା କଲେଜ ପ୍ରିନ୍ସପାଲଙ୍କ ପାଖକୁ ପଠାଇଦେଲି । ମୋର ଦୃଢ଼ ସଂକଳ୍ପ ଥିଲା ଯେ ଯାହା ହେଲେ ବି ମୁଁ ଆଉ କଟକରେ ପଢ଼ିବି ନାହିଁ । ଏପ୍ରକାର ଅବାସ୍ତବ ସଂକଳ୍ପ ଯେ ମୋର କିପରି ହେଲା ମୁଁ ଭାବିପାରୁନାହିଁ ।

ତା'ପରେ ହଠାତ୍ ସାକ୍ଷାତ ପାଇଁ ପାଟଣା କଲେଜରୁ ଚିଠି ଆସିଲା । ସାକ୍ଷାତ ଦିନ ମଧ୍ୟ କଲେଜରେ ନାମ ଲେଖାଇବାର ଶେଷଦିନ ଥିଲା । ମୁଁ ଯଦି ସେହିଦିନ କଟକ ଛାଡ଼େ ତାହାହେଲେ ସାକ୍ଷାତ ଦିନ ସକାଳେ ଯାଇ ପହଞ୍ଚି ପାରିବି । ଜଣେ ବନ୍ଧୁଙ୍କ ପାଖରୁ କିଛିଟଙ୍କା ଧାର୍ କରି ପାଟଣା ଅଭିମୁଖେ ଯାତ୍ରା କଲି । ପାଟଣା ପରି ଦୂର ଯାଗାକୁ ଯିବା ପାଇଁ ଏହା ଥିଲା ମୋର ପ୍ରଥମ ରେଳଯାତ୍ରା । ମୋର ମନେପଡୁଛି, କଲିକତାରୁ ସବୁଠୁ କ୍ଷିପ୍ରଗାମୀ ପଞ୍ଜାବ ମେଲ୍‌ରେ ଟିକେଟ କାଟିଲି ଯଦିଚ ଏହା ପାଟଣାରେ ରାତି ଦୁଇଟାବେଳେ ପହଞ୍ଚିବ । ସବୁଠୁ କ୍ଷିପ୍ରଗାମୀ ଗାଡ଼ିରେ ପାଟଣା ଯିବା ପାଇଁ ମୁଁ ସ୍ଥିର କରିଥିଲି କାହିଁକି କେଜାଣି । ବିଳମ୍ବିତ ରେଳଗାଡ଼ି ଯେପରି ମୋର ଦୃଢ଼ ସଂକଳ୍ପ ସହିତ ଖାପ ଖାଉନଥିଲା ।

ପାଟଣା କଲେଜରେ ସେତେବେଳକୁ ବିଖ୍ୟାତ ଇତିହାସ ଅଧ୍ୟାପକ ଡ. ସୁବିମଳ ସରକାର ପ୍ରିନ୍ସପାଲ ଥାନ୍ତି । ତାଙ୍କର ବହି ମୁଁ ଆଇ.ଏ.ରେ ପଢୁଥିଲି । ସାକ୍ଷାତ ବେଳେ ମୋର ନାମଟି ଶୁଣି ସେ ପ୍ରଥମେ ବହୁତ ହସିଲେ । ମୋତେ ବହୁତ ଡର ମାଡୁଥାଏ । ମୋ ଚିଠିଟି ତାଙ୍କ ଟେବୁଲ ଉପରେ ଥିବାର ଦେଖିଲି । ସେ ମୋର ରାତ୍ରିର ଶେଷ ଭାଗରେ ମୁଁ ଲେଖିଥିବା ଚିଠିଟି ଦେଖାଇ ପଚାରିଲେ- "ତୁମେ ଏହି ଚିଠି ଲେଖିଚ ?" ତା'ପରେ ପୁଣି ହସିଲେ । ତାଙ୍କର ହସ ଏତେ ଖୋଲା ଏବଂ ଏତେ ମାନବିକତା-ପୂର୍ଣ୍ଣ ଥିଲା ଯେ ମୋତେ ସେ ହସ ବହୁତ ଭଲ ଲାଗିଥିଲା । ଏହା ଜୀବନରେ ଭୁଲିବାର ନୁହେଁ । ସେ ମୋତେ ଗୋଟିଏ ଚୌକିରେ ବସିବାକୁ କହିଲେ । ବାହାରେ ନାମ ଲେଖାଇବା ପାଇଁ ପିଲାଙ୍କର ଲମ୍ବାଧାଡ଼ି ଲାଗିଥାଏ । ମୋର ତ ଇଣ୍ଡେକ୍ସ ନମ୍ବର ନଥାଏ । ସେ ତାଙ୍କର ପି.ଏ.ଙ୍କୁ ଡାକି ମୋର ନାମ ଲେଖାଇ ରସିଦ୍ ଆଣିଦେବାକୁ କହିଲେ । ମୁଁ ଆନନ୍ଦରେ ଏବଂ ତାଙ୍କ ପ୍ରତି ଗଭୀର ସମ୍ମାନରେ ଅଭିଭୂତ ହୋଇଗଲି । ତା'ପରେ ସେ ମୋତେ କହିଲେ ଯେ ହଷ୍ଟେଲ ଖୋଲିବାକୁ ଆହୁରି ସାତଦିନ ବାକି ଅଛି, ତେଣୁ ମୁଁ ତାଙ୍କ ଘରେ ଯାଇ ରହେ । ତାଙ୍କର ଏପରି ଅଯାଚିତ ସ୍ନେହରେ ମୁଁ ଅବାକ୍ ହୋଇଗଲି । ଶେଷ ରାତ୍ରିର ବିଭୋରତା ଭିତରେ କୋଲ୍‌ରିଜଙ୍କ କୁବ୍‌ଲା ଖାଁ କାବ୍ୟ ପରି ମୁଁ କଣ ଲେଖିଥିଲି ଦେଖିବାକୁ ଇଚ୍ଛା ହେଲା । କିନ୍ତୁ ସାହସ କରି ଚିଠିଟି ମାଗି ପାରିନଥିଲି । ମୁଁ ମେଡିକାଲ କଲେଜ ହଷ୍ଟେଲରେ ଓଡ଼ିଆ ପିଲାଙ୍କ ପାଖରେ ରହୁଥିଲି । ତେଣୁ ଡ. ସରକାରଙ୍କ ଘରକୁ ଯାଇ ନଥିଲି । ସେ ମୋତେ ତାଙ୍କ ତତ୍ତ୍ୱାବଧାନରେ ଥିବା ଜାକ୍‌ସନ ହଷ୍ଟେଲରେ ସ୍ଥାନ ଦେଲେ । ମଝିରେ ମଝିରେ ମତେ ଡକାଇ ମୋ କଥା ବୁଝୁଥିଲେ । ବଡ଼ ଅମାୟିକ ଲୋକ ଥିଲେ ଡ.

ସରକାର । ଲେଖକ, ଗବେଷକ ହିସାବରେ ସେ ଯେପରି ଖ୍ୟାତନାମା ଥିଲେ ପଢ଼ାଇବାରେ ମଧ୍ୟ ସେହିପରି ପ୍ରବୀଣ ଥିଲେ ।

ପାଟଣା କଲେଜରେ ସ୍ଥାନ ପାଇବା ହେଲା ମୋର ସଂକଳ୍ପର ପ୍ରଥମ ଫଳପ୍ରଦ ଅଭିଯାନ । କ୍ରମେ ମୋଠାରେ ଯେପରି ଗୋଟିଏ ବଳିଷ୍ଠ ସଂକଳ୍ପର ମୂଳଭିତ୍ତି ସ୍ଥାପିତ ହୋଇଥିଲା । ଏହାର ଉତ୍ତରୋତ୍ତର ବହିଃପ୍ରକାଶ ଫଳରେ ମୁଁ ଜୀବନରେ ଯାହା ଚାହିଁଛି ତାହା ପାଇଛି କହିଲେ ଅତ୍ୟୁକ୍ତି ହେବନାହିଁ । ଯାହା ପାଇଛି ସେଥିରେ ସନ୍ତୁଷ୍ଟ । ଯାହା ନ ପାଇଛି ସେ ବିଷୟରେ ମୋର କୌଣସି ବ୍ୟର୍ଥତା କିମ୍ବା ଅନୁଶୋଚନା ନାହିଁ । ସାମାନ୍ୟ କେତୋଟି ଲଘୁ ଧରଣର କାର୍ଯ୍ୟକୁ ଛାଡ଼ିଦେଲେ ମୁଁ ଯେଉଁ ଗୁରୁତ୍ୱପୂର୍ଣ୍ଣ ସଂକଳ୍ପ ଆଜିଯାଏ ନେଇ ଆସିଛି ତାହା ନିଶ୍ଚିତ ଭାବରେ ସଫଳ ହୋଇଛି । ତାହାହିଁ ମୋର ଆତ୍ମସନ୍ତୋଷ ଓ ଆତ୍ମବିଶ୍ୱାସର ସୁଦୃଢ଼ ମୂଳ ଆସ୍ଥାନ । ''ଯାହା ପାଇଛି ତାହା ଚାହିଁନି ଏବଂ ଯାହା ଚାହିଁଚି ତାହା ପାଇନି'' ଏପରି ବିରହ ରାଗିଣୀ ମୋତେ ବିଚଳିତ କରିନାହିଁ । ଅନ୍ୟମାନଙ୍କର ମୋ ପ୍ରତି ଶ୍ରଦ୍ଧା, ସମ୍ମାନ ଓ ଅଖଣ୍ଡ ବିଶ୍ୱାସ ଯୋଗୁଁ ସେମାନେ ମୋତେ ଶିକ୍ଷା ବିଭାଗର ଡିରେକ୍ଟର, କୁଳପତି ପ୍ରଭୃତି ଯେଉଁ ଯେଉଁ ଶୀର୍ଷ ସ୍ଥାନରେ ଦେଖିବାକୁ ଚାହୁଁଥିଲେ ସେଠାରେ ମୋତେ ନ ଦେଖି ମୋର ଜୀବନର ସାର୍ଥକତା ବିଷୟରେ ସନ୍ଦେହ ପ୍ରକାଶ କରନ୍ତି । କିନ୍ତୁ ମୋ ମତରେ ସେସବୁ ତଥାକଥିତ ସାମନ୍ତବାଦୀ ମର୍ଯ୍ୟାଦାବନ୍ତ ସ୍ଥାନ ପାଇବା ପାଇଁ ମୁଁ ଗଭୀର ଭାବରେ କେବେ ହେଲେ ଚାହୁଁ ନଥିଲି । ତେଣୁ ସେହି ଅନୁସାରେ ଜୀବନ ରୀତି ଗଢ଼ି ନେଇଥିଲି । ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କ ଘରକୁ ମୁଁ କେବେ ଯାଇନାହିଁ କହିଲେ ଚଳେ, ତେଣୁ କୁଳପତି ପରି ସାମନ୍ତବାଦୀ ମର୍ଯ୍ୟାଦାବନ୍ତ ସ୍ଥାନ ପାଇବାର ସମ୍ଭାବନା ମୋର ନଥିଲା ।

■ ■ ■

## ୮

# ପ୍ରାରମ୍ଭିକ ସାଧନା ଓ ସିଦ୍ଧି : ପାଟଣା (୧୯୩୯-୪୩)

ପାଟଣାରେ ପହଞ୍ଚିବା ଦିନ ହିଁ ମୋର ଅଧ୍ୟୟନ ସମ୍ବନ୍ଧୀୟ ସାଧନା ଆରମ୍ଭ କଲି । ହାୱଡ଼ା ଷ୍ଟେସନରେ ଦୁଇଟି ବହି କିଣିଥିଲି । ଗୋଟିଏ ଫ୍ରଏଡ୍‌ଙ୍କର Psychopathology of everyday life ଏବଂ ବାର୍ଣ୍ଣାର୍ଡ୍ ଶ'ଙ୍କର କେତେଗୁଡ଼ିଏ ନାଟକର ଗୋଟିଏ ସଂଗୃହୀତ ସଂସ୍କରଣ । ପ୍ରତ୍ୟେକଦିନ ସର୍ବନିମ୍ନ ଚାରିଘଣ୍ଟା ଓ ରବିବାର ଦିନ ଏବଂ ଅନ୍ୟାନ୍ୟ ଛୁଟିଦିନମାନଙ୍କରେ ଛଅଘଣ୍ଟା ପଢ଼ିବାର ସଂକଳ୍ପ ନେଇଥିଲି । ପ୍ରଥମ ଦିନହିଁ ମେଡିକାଲ କଲେଜ ହଷ୍ଟେଲରେ ଜଣଙ୍କ ବଖରାରେ ବସି ଚାରିଘଣ୍ଟା ପଢ଼ିଲି । ଗୋଟିଏ ଗ୍ରାଫ୍‌ଖାତା ମଧ୍ୟ କିଣିଲି । ସେଠାରେ ଦିନକୁ ଚାରିଘଣ୍ଟା, ହପ୍ତାରେ ୩୦ ଘଣ୍ଟା ହିସାବରେ ଗୋଟିଏ ଲାଲଗାର ଟାଣିଦେଲି । ତା ଉପରେ ମୋର କୃତିରେଖା ଗ୍ରାଫ୍ ରହିବ ସିନା କଦାପି ତଳକୁ ଆସିବ ନାହିଁ । ଦେହ ଖରାପ ହେଉ, ଝଡ଼ ତୋଫାନ ହେଉ, ଗାଡ଼ିରେ ଯିବା ସମୟରେ ହେଉ କୌଣସି କାରଣରୁ ଦିନେ ଏଥିରେ ବିଭ୍ରାଟ ହେଲେ ମଧ୍ୟ ହପ୍ତାର ୩୦ ଘଣ୍ଟା ତଳକୁ ଯେପରି କୃତିରେଖା ନ ଖସେ । ବି.ଏ. ପଢ଼ିବା ଦୁଇବର୍ଷ ଏହି ସଂକଳ୍ପରେ ଅଟଳ ରହିଲି । ଏହି ସାଧନାହିଁ ମୋତେ ଅତି ସହଜରେ ବି.ଏ. ଅନର୍ସରେ ପ୍ରଥମ ଶ୍ରେଣୀ ଆଣିଦେଲା । ସେ ସମୟରେ ପ୍ରଥମ ଶ୍ରେଣୀ ଜଣେ ଦୁଇଜଣ ପାଆନ୍ତି । ତେଣୁ ପାଟଣା ବିଶ୍ୱବିଦ୍ୟାଳୟରେ ଫାଷ୍ଟ କ୍ଲାସର ମୂଲ୍ୟ ବହୁତ ବେଶି ଥିଲା । ମୁଁ ଓଡ଼ିଶା ଛାତ୍ରଛାତ୍ରୀଙ୍କ ଭିତରେ ପ୍ରଥମସ୍ଥାନ ଅଧିକାର କରିପାରିଥିଲି ।

ଓଡ଼ିଶାର ଜଣେ କୃତୀଛାତ୍ର ଥିଲେ ଗଣେଶ୍ୱର ମିଶ୍ର । ସେ ମାଟ୍ରିକ୍ ଓ ଆଇ.ଏ.ରେ ମଧ୍ୟ ଫାଷ୍ଟକ୍ଲାସ୍ ପାଇଥିଲେ । ସେ ଦର୍ଶନରେ ସ୍ନାତକ ପରୀକ୍ଷା ଦେଇଥିଲେ । ସେ ମଧ୍ୟ ଫାଷ୍ଟ କ୍ଲାସ୍ ପାଇଥିଲେ, କିନ୍ତୁ ମୁଁ ତାଙ୍କୁ ଟପି ଯାଇଥିଲି । ଫଳରେ ମୋର ମର୍ଯ୍ୟାଦା ହଠାତ୍ ଓଡ଼ିଶାରେ ବଢ଼ିଗଲା । ମୋତେ ଆଗରୁ ରେଭେନ୍ସା କଲେଜର ଅଧ୍ୟାପକମାନେ ଜାଣି ବି ନଥିଲେ, କିନ୍ତୁ ହଠାତ୍ ମୋର ଏହି ଆଶାତୀତ କୃତିତ୍ୱ ଯୋଗୁ ସେମାନେ ମୋତେ ପାଟନାରେ ଖୋଜି ପଠାଇଲେ । ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ରେଭେନ୍ସା କଲେଜ ଥିଲା । ତେଣୁ ବିଶ୍ୱବିଦ୍ୟାଳୟର ବହୁ ସଭା ସମିତି ପାଇଁ ଓଡ଼ିଶାର

ଅଧ୍ୟାପକମାନେ ଯାଆନ୍ତି । ସେମାନେ ମୋତେ ଏପରି ଭାବରେ ଆଦର ଅଭ୍ୟର୍ଥନା କଲେ ଯେ ମୋର ଆତ୍ମସମ୍ମାନ ବହୁତ ବଢ଼ିଗଲା । ସାରା ଜୀବନ ସେମାନଙ୍କର ସ୍ନେହ ଆଦର ଭୁଲିବାର ନୁହେଁ । ସେମାନଙ୍କ ଭିତରୁ ଦର୍ଶନ ଅଧ୍ୟାପକ ରତ୍ନାକର ପତି ମୋର ଜୀବନସାରା ପରମ ହିତୈଷୀ ବନ୍ଧୁ ହୋଇ ରହିଗଲେ । ତାଙ୍କର ଦେହାନ୍ତ ହେବାର ମାତ୍ର ଦୁଇଘଣ୍ଟା ପୂର୍ବରୁ ମୋ ଘରୁ ତାଙ୍କୁ ମୁଁ ବିଦାୟ ଦେଇଥିଲି ।

ପ୍ରଥମେ ମୁଁ ନେଇଥିଲି ଇଂରାଜୀ ଅନର୍ସ । କିନ୍ତୁ କିଛିଦିନ ପରେ ଦର୍ଶନ ଶାସ୍ତ୍ର ନେଲି । ସେତେବେଳେ ଅଧ୍ୟାପକ ଚାକିରି ପାଇଁ ପାଠପଢ଼ା ହେଉନଥିଲା । ଓଡ଼ିଶାର ଏକମାତ୍ର କଲେଜ ଥିଲା ରେଭେନ୍ସା କଲେଜ । ତାଛଡ଼ା ପାରଳାଖେମୁଣ୍ଡିରେ ରାଜାଙ୍କ ପରିଚାଳିତ ଗୋଟିଏ ଛୋଟ ଘରୋଇ ଆ.ଇଏ କଲେଜ ଥିଲା । କଲେଜ ଚାକିରି ବା କେତୋଟି ଥାଏ । ତେଣୁ ଅଧ୍ୟାପକ ହେବା ପାଇଁ ପାଠ ପଢ଼ିବା ବିଡ଼ମ୍ବନା ମାତ୍ର । ଦର୍ଶନଶାସ୍ତ୍ର ନେବାର ମୋର ମୁଖ୍ୟ ଉଦ୍ଦେଶ୍ୟ ହେଲା ଯେ ଆଇ.ଏ. ପଢ଼ିବା ସମୟରେ ମୋର ଧର୍ମ ପ୍ରତି ଯେଉଁ ସନ୍ଦେହ ଓ ଦ୍ୱନ୍ଦ୍ୱାତ୍ମକ ଭାବ ଦେଖା ଦେଇଥିଲା, ତାର ବୌଦ୍ଧିକ ସ୍ତରରେ ସମାଧାନ ହେବା ଦରକାର ଥିଲା । ତେଣୁ ଭାବିଲି ଇଂରାଜୀରେ ଯେଉଁସବୁ ବହି ପଢ଼ା ହେଉଛି ସେଥିରୁ ତ ବହୁ ମୁଁ ବହି ପଢ଼ିସାରିଛି । ତା'ଛଡ଼ା ଘରେ ବି ଇଂରାଜୀ ସାହିତ୍ୟ ପଢ଼ିହେବ । ତେଣୁ ଦର୍ଶନ ଶାସ୍ତ୍ର ପଢ଼ି ଭଗବାନଙ୍କର ଅସ୍ତିତ୍ୱ ବିଷୟରେ କାହିଁକି ଆଲୋଚନା ନ କରିବି ? କେତେ କେତେ ଦାର୍ଶନିକ ସେମାନଙ୍କର ମତାମତ ପ୍ରକାଶ କରିଛନ୍ତି । ସେମାନଙ୍କର ସହିତ ଶାସ୍ତ୍ରୀୟ ପରିଚୟ ହେଲେ ମୋ ମନର ଦ୍ୱନ୍ଦ୍ୱ ବିଷୟରେ କିଛି ସମାଧାନ ମିଳିପାରେ । ତେଣୁ ଦର୍ଶନ ବିଭାଗକୁ ଆସିଲି ।

ଏହି ବିଭାଗରେ ଯୋଗ୍ୟ ଅଧ୍ୟାପକ ସବୁ ଥିଲେ । ସେମାନଙ୍କ ଭିତରୁ ଭାରତୀୟ ଦର୍ଶନରେ ଅଗାଧ ପାଣ୍ଡିତ୍ୟ ଅର୍ଜନ କରିଥିବା ଡକ୍ଟର ଡି.କେ. ଦତ୍ତ ଏବଂ ବିଭାଗୀୟ ମୁଖ୍ୟ ଅଧ୍ୟାପକ ଚାରୁଚନ୍ଦ୍ର ସିହ୍ନାଙ୍କ ନାମ ଉଲ୍ଲେଖଯୋଗ୍ୟ । ପର ସମୟରେ ମନୋବିଜ୍ଞାନରେ ଖ୍ୟାତି ଅର୍ଜନ କରିଥିବା ଡ. ମୋହସିନ୍ ଅଧ୍ୟାପକ ଭାବରେ ଅଳ୍ପଦିନ ହେବ ବିଭାଗକୁ ଆସିଥାନ୍ତି । ତା'ଛଡ଼ା ଅନ୍ୟ ଅଧ୍ୟାପକମାନେ ମଧ୍ୟ ବହୁତ ସ୍ନେହଶୀଳ ଓ ସାହାଯ୍ୟକାରୀ ଶିକ୍ଷକ ଥିଲେ । କ୍ରମେ ଏହି ବିଭାଗଟି ମୋତେ ବହୁତ ଭଲ ଲାଗିଲା । ମୋର ଜୀବନବ୍ୟାପୀ ପରମ ବନ୍ଧୁ ଶିବ କୁମାର ମିତ୍ର ମୋର ସହପାଠୀ ଥିଲେ । ତାଙ୍କ ମୋ ଭିତରେ ପ୍ରତିଯୋଗିତା ହେଉଥିଲା ସତ, କିନ୍ତୁ ଆମେ ଦୁହେଁ ପରସ୍ପରକୁ ବହୁତ ଭଲ ପାଉଥିଲୁ । ସେ କିମ୍ବା ମୁଁ ଯଦି କୌଣସି ଦରକାରୀ ବହି ପଢ଼ିଥିବୁ, ତା ହେଲେ ଅନ୍ୟକୁ ସେ ବହି ଦେଇଆସୁ । ଥରେ ପରୀକ୍ଷାର ଦୁଇତିନି ଦିନ ଆଗରୁ ଆଉ ଗୋଟିଏ କଲେଜର କ୍ଲାସ୍ ନୋଟ୍ ଶିବ କୁମାର ପାଇଥିଲେ । ସେ ଅଧ୍ୟାପକ ଥିଲେ ଆମର ପରୀକ୍ଷକ । ତେଣୁ ତାଙ୍କର ନୋଟ ଆମେ ଖୋଜୁଥିଲୁ । ସେ ହଠାତ୍ ପରୀକ୍ଷାର ଦୁଇଦିନ ପୂର୍ବରୁ ଏହାକୁ ପାଇ ନିଜେ ପଢ଼ି ସାଙ୍ଗେ ସାଙ୍ଗେ ପରୀକ୍ଷା ଦିନ ପୂର୍ବ ରାତିରେ ମୋ ପାଖରେ ସେହି ନୋଟ୍ ଖାତା ଧରି ପହଞ୍ଚିଗଲେ । ମୁଁ ଅବାକ୍ ହୋଇଗଲି । ଦୁଇଜଣଙ୍କ ଭିତରେ ପ୍ରତିଯୋଗିତା ଚାଲିଥିଲାବେଳେ ଗୋଟିଏ ବହୁମୂଲ୍ୟ ନୋଟ୍ ଜଣେ ଅନ୍ୟ ଜଣକୁ ସହଜରେ ଦେଇପାରିବ ? କିନ୍ତୁ ଆମ ଭିତରେ ସେ ପ୍ରକାର ଗଭୀର ସୌହାର୍ଦ୍ଦ୍ୟ ଓ ବୁଝାମଣା ଥିଲା । ଶିବ କୁମାରଙ୍କର ଦେହାନ୍ତ

ପର୍ଯ୍ୟନ୍ତ ଭାରତର ବହୁ କ୍ଷେତ୍ରରେ ଆମେ ଦୁଇଜଣ ଏକାଠି କାମ କରିଛୁ ଏବଂ ସେହି ପୁରୁଣା ବନ୍ଧୁତା ଥିଲା ଅତୁଟ । ଶିକ୍ଷାୟତନ ଓ ଗବେଷଣା କ୍ଷେତ୍ରରେ ରହୁଥିବା ବହୁ ପ୍ରକାରର ପାରସ୍ପରିକ ହିଂସା ଦ୍ୱେଷ ଆମମାନଙ୍କୁ ସ୍ପର୍ଶ କରି ପାରିନାହିଁ । ଏହା କମ୍ ଗୌରବ ଓ ଆନନ୍ଦର କଥା ନୁହେଁ । ଆମେ ଦୁଇଜଣ ପାଟଣାରେ ଥିବା ପ୍ରସିଦ୍ଧ ମଇଦାନର ଗୋଟିଏ କୋଣରେ ନିର୍ଦ୍ଦିଷ୍ଟ ଗୋଟିଏ ବେଞ୍ଚିରେ ବସି ଅନ୍ତତଃ ଘଣ୍ଟେ ଦୁଇଘଣ୍ଟା ନାନା ବିଷୟରେ ଆଲୋଚନା କରୁ । ଭବିଷ୍ୟତ ସ୍ୱପ୍ନ ଦେଖୁ । ଗୋଟିଏ ଦିନ ମଧ୍ୟ ଜଣେ ଅନ୍ୟ ଜଣକୁ ନ ଦେଖିଲେ ମନ ଶାନ୍ତ ହୁଏନାହିଁ । ଅବିଚ୍ଛେଦ୍ୟ ଏ ବନ୍ଧନ ସାରାଜୀବନ ରହିପାରିଛି । ନିକଟରେ ତାଙ୍କର ଦେହାନ୍ତ ହୋଇଗଲା । ମୃତ୍ୟୁର ଅଳ୍ପ କିଛିଦିନ ଆଗେ ତାଙ୍କ ସହିତ ମୋର ଦେଖା ହୋଇଥିଲା । ସେ ହସି ହସି କହିଥିଲେ ''ଦେଖ ଏ ଜୀବନରେ ଆଉ ଦେଖା ନ ହେଲେ ମଧ୍ୟ ଜୀବନର ସେପାରେ ନିଶ୍ଚୟ ଦେଖାହେବ ।''

କ୍ଲାସ୍‌ରେ ଯେତିକି ପଢ଼ାହୁଏ ତାହା ପ୍ରତିଦିନ ଘଣ୍ଟାଏ ଦୁଇଘଣ୍ଟା ଭିତରେ ଶେଷ ହୋଇଯାଏ । ତାପରେ ପ୍ରତ୍ୟେକ ବିଷୟରେ ଲେଖା ହୋଇଥିବା ମୌଳିକ ବହି ପଢ଼ିବାକୁ ସମୟ ମିଳେ । ସକ୍ରେଟିସ୍ ବିଷୟରେ ପଢ଼ିଲା ପରେ ତାଙ୍କ ଲିଖିତ ଅନ୍ୟାନ୍ୟ ବହି ପଢ଼ିବାକୁ ବହୁତ ଆଗ୍ରହହୁଏ । ଫ୍ରଏଡ୍‌ଙ୍କ ବିଷୟରେ ଜାଣିଲା ପରେ ତାଙ୍କର ସବୁ ବହି ନ ପଢ଼ିଲାଯାଏ ମନରେ ଶାନ୍ତି ନଥାଏ । ଦାର୍ଶନିକମାନଙ୍କର ମୌଳିକ ବହି ଏହିପରି ଭାବରେ ପଢ଼ି ପାରିଥିଲି । ବି.ଏ. ଦୁଇବର୍ଷ କାଳ ପାଠ ପଢ଼ିବା ଛଡ଼ା ଆଉ କୌଣସି କାମ ଭଲ ଲାଗୁ ନଥାଏ । ଅପରାହ୍ନ ଠିକ୍ ପାଞ୍ଚଟାବେଳେ ମୁଁ ବୁଲି ବାହାରେ । ପାଟଣା କଲେଜ ହଷ୍ଟେଲରୁ ବାହାରି ମେଡିକାଲ କଲେଜ ହତା ଭିତର ଦେଇ ପାଟଣା ମଇଦାନରେ ଯାଇ ପହଞ୍ଚେ । ଶିବ କୁମାର ସାଥିରେ କଥାବାର୍ତ୍ତା ହୋଇ ଫେରେ । ପୁଣି ଠିକ୍ ସାତଟା ବେଳେ ପଢ଼ା ଆରମ୍ଭ ହୁଏ । ଖରା ବର୍ଷା ସବୁଦିନେ ସେଇ ଗୋଟିଏ ପ୍ରକାର ନିର୍ଦ୍ଦିଷ୍ଟ ରୁଟିନ୍ । ବର୍ଷା ହେଲେ ଛତା ଧରି ମଧ୍ୟ ବୁଲିଯାଏ । ଏହି ଦୁଇବର୍ଷ ଭିତରେ ଶିବ କୁମାର ଛଡ଼ା ଆଉ କେହି ବିଶେଷ ଭାବରେ ମୋର ସାଙ୍ଗ ନଥିଲେ । ରାଜନୀତିରେ କୌଣସି ଆଗ୍ରହ ନଥିଲା । ପାଟଣା କଲେଜ ପିଲାଙ୍କର ମଧ୍ୟ ରାଜନୀତିରେ କୌଣସି ଆଗ୍ରହ କିମ୍ବା ଅଭିଜ୍ଞତା ନଥିଲା । ରାଜନୈତିକ ସଭା ହେଲେ ୨୦/୩୦ ଜଣ ପିଲା ଏକାଠି ହେବା କଷ୍ଟକର ଥିଲା, ଅଥଚ ସେତେବେଳକୁ କଟକର ରେଭେନ୍ସା କଲେଜ ଓ ମେଡିକାଲ ସ୍କୁଲରେ ରାଜନୈତିକ ଝଡ଼ଝଞ୍ଜା ବହି ଯାଉଥିଲା । କଲେଜ ବନ୍ଦ, ଛାତ୍ରସଭା ଓ ଶୋଭାଯାତ୍ରା ଉପରେ ଲାଠିମାଡ଼ ପ୍ରଭୃତି ଦୈନନ୍ଦିନ ଘଟଣା ଥିଲା । ପାଟଣାର ପିଲାମାନେ ବଡ଼ ମାନ୍ଦା । ସେତେବେଳେ ଅଧିକାଂଶ ବିହାରୀ ଛାତ୍ର ଧନୀ ଘରର ପିଲା, ଜମିଦାର ପରିବାରରୁ ଆସିଥାନ୍ତି । ସେମାନଙ୍କର ହାତୀ, ଘୋଡ଼ା ଥିଲେ । ଅଳ୍ପ ବୟସରେ ବାହା ହୋଇଥାନ୍ତି । ସେମାନେ ବଡ଼ ବିଳାସପୂର୍ଣ୍ଣ ଜୀବନଯାପନ କରୁଥିଲେ । କିନ୍ତୁ ସେ ସମୟରେ ଓଡ଼ିଆ ପିଲାମାନେ ସବୁ ବିଭାଗରେ ଭଲ କରନ୍ତି, ପ୍ରଥମ ହୁଅନ୍ତି ସେମାନଙ୍କ ଭିତରୁ ଅଧିକାଂଶ ଗରିବ ଘର ପିଲା ଥିଲେ । ବିହାରୀ ପିଲାମାନେ ମୁକ୍ତ କଣ୍ଠରେ ଓଡ଼ିଆମାନଙ୍କର ବୁଦ୍ଧିମତ୍ତା ଓ ପ୍ରତିଭାକୁ ପ୍ରଶଂସା କରନ୍ତି ।

ଏହି ସାଧନା ସମୟରେ ମୋ ମନରେ କୌଣସି ଜଞ୍ଜାଳ, ମାନସିକ ଅଶାନ୍ତି ବା ନୈରାଶ୍ୟ ନଥିଲା । ଗୋଟିଏ ପ୍ରକାର ଜ୍ଞାନ ପିପାସା ଓ ଭଗବତ୍ ସତ୍ତା ବିଷୟରେ ଜ୍ଞାନ

ଆହରଣ ପାଇଁ ଗଭୀର ଅନୁସନ୍ଧିତ୍ସା ଭିତରେ ମୋର ନିଃସଙ୍ଗ ଜୀବନ କଟିବାକୁ ଲାଗିଲା । ପ୍ରଥମେ ପ୍ରଥମେ ମୋର ଯଥେଷ୍ଟ ଜ୍ଞାନ ଓ ମାନସିକ ଆସ୍ଥା ହୋଇନଥିଲା ଅଧ୍ୟାପକମାନଙ୍କ ସହିତ ଯୁକ୍ତିତର୍କ କରିବା ପାଇଁ । କିନ୍ତୁ ପ୍ରାୟ ବର୍ଷକ ପରେ ଦର୍ଶନ ଶିକ୍ଷାରେ ମୋର ଆତ୍ମବିଶ୍ୱାସ ବଢ଼ି ଉଠିଲା । ଅଧ୍ୟାପକମାନେ ଭଗବାନଙ୍କ ସପକ୍ଷରେ କହିବା ବେଳେ ତାହା ବିରୁଦ୍ଧରେ ଯୁକ୍ତିତର୍କ ଉପସ୍ଥାପନ କରିବାରେ ମୋଠାରେ ସାହସ ଦେଖାଗଲା । ଆନନ୍ଦର କଥା ଯେ ପ୍ରାୟ ସବୁ ଅଧ୍ୟାପକ ଏଥିରେ ବିରକ୍ତି ପ୍ରକାଶ କରିବା ପରିବର୍ତ୍ତେ ଖୁସି ହେଉଥିଲେ । ଏହା ମୋତେ ବହୁତ ଉତ୍ସାହିତ କରୁଥିଲା । କ୍ରମେ ପ୍ରତ୍ୟେକ ପାଠ୍ୟ ବିଷୟ ଉତ୍‌ଥାପିତ ହେଲାବେଳେ ଅଧ୍ୟାପକମାନେ ମୋର ମତାମତ ପଚାରିବାକୁ ଆରମ୍ଭ କରନ୍ତି । ହପ୍ତାରେ ଗୋଟିଏ ପ୍ରବନ୍ଧ ଲେଖିବାକୁ ଦିଆଯାଏ । ମୋର ସଂକଳ୍ପ ଯେ ମୁଁ ଏପରି ଲମ୍ବା ପ୍ରବନ୍ଧ ଲେଖିବି ଯାହା ଫଳରେ ମୋ ପ୍ରବନ୍ଧ ପାଠ ଓ ଆଲୋଚନା ଲାଗି ଗୋଟିଏ ଘଣ୍ଟା ସରିଯିବ । ତାହାହିଁ ହୁଏ । ଫଳରେ ମୋର ମର୍ଯ୍ୟାଦା ବହୁତ ବଢ଼ିଗଲା । ମୋ କ୍ଲାସ୍‌ରେ ଦୁଇଜଣ ମାତ୍ର ଝିଅ ଥିଲେ । ସେମାନେ ମୋଠାରୁ ଖାତା ମାଗି ନେଉଥିଲେ । ସେଥିରେ ମୋର ବହୁତ ଆନନ୍ଦ । ସେ ଭିତରୁ ସବୁଠୁ ବେଶୀ ସୁନ୍ଦରୀ ଝିଅଟି କୁଆଡ଼େ ମୋର ବହୁତ ପ୍ରଶଂସା କରେ । ସାଙ୍ଗମାନେ କହନ୍ତି ଯେ ସେ ମୋତେ ବହୁତ ଭଲ ପାଉଥିଲା । ଶୁଣିବାରେ ଆନନ୍ଦ ଲାଗୁଥିଲା ସତ, କିନ୍ତୁ ସେଥିପାଇଁ ମୋ ମନରେ କୌଣସି ପ୍ରକାର କଳ୍ପନା ଜଳ୍ପନା ବା ସ୍ୱପ୍ନ ନଥିଲା । ଭଲପାଇବା କଥା ଶୁଣିବାରେ ଯାହା ଗୋଟିଏ କୁତ୍‌କୁତିଆ ଭାବ । ବେଶ୍ ସେତିକି । ଭଲପାଇ ଅଯଥା ସମୟ ନଷ୍ଟ କରିବାର କୌଣସି ଆବଶ୍ୟକତା ଅନୁଭୂତ ହୋଇନଥିଲା ।

ଏ ସମୟରେ ଗୋଟିଏ ଅଦ୍ଭୁତ ଓ ଅଭୁଲା ଘଟଣା ଘଟିଥିଲା । ଆମର ବି.ଏ. ଚତୁର୍ଥ ବର୍ଷ କ୍ଲାସ୍ । ବିଭାଗୀୟ ମୁଖ୍ୟ ଅଧ୍ୟାପକ ଚାରୁଚନ୍ଦ୍ର ସିହ୍ନା ଆମର ନୀତିଶାସ୍ତ୍ର ଏବଂ ମୁଁ ନେଇଥିବା ସ୍ପେଶାଲ ପେପର ପଢ଼ାଇଲେ । ତାଙ୍କୁ ସମସ୍ତଙ୍କର ଭୟଙ୍କର ଡର । ସେ ପ୍ରାୟ ହସନ୍ତି ନାହିଁ । ଭାରି ଗମ୍ଭୀର । ବିଭାଗର ଗୋଟିଏ ବଡ଼ ବଖରା ଘରେ ସେ ଅଧିକାଂଶ ସମୟ ଏକୁଟିଆ ଥାଆନ୍ତି । କିମ୍ବା ସେ ଭିତରେ ଖାଲି ବୁଲୁଥାନ୍ତି । ଅନ୍ୟ ଅଧ୍ୟାପକମାନେ ମଧ୍ୟ ତାଙ୍କୁ ବହୁତ ଡରନ୍ତି । ମୋଟାମୋଟି ଭାବରେ ପିଲା ଓ ଅଧ୍ୟାପକମାନେ ନିହାତି ଦରକାର ନ ହେଲେ ତାଙ୍କ ପାଖକୁ ଯାଆନ୍ତି ନାହିଁ । ସେ ବଡ଼ ନିଃସଙ୍ଗ ଜୀବନଯାପନ କରନ୍ତି ଏବଂ ପ୍ରତ୍ୟେକ କଥାରେ ସେ ବହୁତ କଠିନ ଜଣାପଡ଼ନ୍ତି । ତାଙ୍କର ମୋଟା ମୁହଁରେ ଦି'ପଟା ବଡ଼ ନିଶ, ଜମାଟ ବନ୍ଧା ଗାମ୍ଭୀର୍ଯ୍ୟପୂର୍ଣ୍ଣ ମୁହଁର ମୁଖ୍ୟ ବୈଶିଷ୍ଟ୍ୟ । କୌଣସି ନରମଭାବ ଯେପରି ଏଭଳି ମୁହଁ ଉପରେ ଶୋଭା ପାଇବ ନାହିଁ । ଆମର ସ୍ପେଶାଲ ପାଠ୍ୟକ୍ରମ କ୍ଲାସରେ ଆମେ ଆଠ ଦଶଜଣ ଥାଉ । ଶିବ କୁମାରର ଅନ୍ୟ ସ୍ପେଶାଲ ବିଷୟ ଥାଏ । ପ୍ରଥମ ଦିନ ଆମେ ସମସ୍ତେ ତାଙ୍କୁ କ୍ଲାସ୍‌ରେ ଦେଖି ଭୀତତ୍ରସ୍ତ ଅବସ୍ଥାରେ ଥାଉ । ହଠାତ୍ ସେ ପ୍ରଶ୍ନ କଲେ "ତୁମ କ୍ଲାସ୍‌ର ସବୁଠୁ ଭଲ ଛାତ୍ର କିଏ ।"

ଜଣେ ଛାତ୍ର ମୋତେ ଦେଖାଇ ଦେଲେ । ମୋ ଦେହରୁ ଗୋଟିଏ ଝାଳ ବୋହିଗଲା । ସେ କହିଲେ—

''ଆଚ୍ଛା ତୁମେ ଯଦି ଭଲ ଛାତ୍ର ତାହେଲେ ମୁଁ ତୁମକୁ ଦଶଟି ପ୍ରଶ୍ନ ପଚାରିବି । ତୁମେ ତାର ଉତ୍ତର ଦିଅ ।''

ତାପରେ ଆରମ୍ଭ ହେଲା ପ୍ରଶ୍ନ ପରେ ପ୍ରଶ୍ନ । ଭୟରେ ମୋର ରକ୍ତ ଶୁଖି ଆସିଲା ପରି ମନେହେଲା । ସବୁ ପ୍ରଶ୍ନର ଯଥାଯଥ ଉତ୍ତର ମୁଁ ଦେଲି । ତଥାପି ମଧ୍ୟ ତାଙ୍କ ମୁହଁରେ ହସ ନାହିଁ କି ଖୁସି ହେବାର କୌଣସି ଇଙ୍ଗିତ ମଧ୍ୟ ନାହିଁ । ପ୍ରଶଂସା କଥା କିଏ ପଚାରେ ।

ତାଙ୍କ ପାଠ ମୁଁ ବଢ଼ିଆ କରି ପ୍ରସ୍ତୁତ କରେ ଏବଂ କ୍ରମେ ତାଙ୍କୁ ପ୍ରଶ୍ନ କରିବାର ସାହସ ମଧ୍ୟ ମୋର ହେଲା । ତାଙ୍କୁ ବିରୋଧ କଲେ ସେ ଆନନ୍ଦିତ ହେବାର ମୁଁ ଲକ୍ଷ୍ୟ କଲି । ମୋତେ ଏହା ବଡ଼ ଅଦ୍ଭୁତ ଲାଗିଲା । ତାଙ୍କୁ ବୋଧହୁଏ ଏହିପରି ଭାବରେ ପ୍ରଶ୍ନ କରିବାର ସାହସ କାହାରି ନଥିଲା । କିଛିଦିନ ପରେ ଦିନେ ଆଲୋଚନା ସରିବାର ଶେଷ ଭାଗରେ ସବୁପିଲା ଯେତେବେଳେ ବାହାରି ଯାଉଥିଲେ ମୁଁ ଲକ୍ଷ୍ୟ କଲି ତାଙ୍କ ଆଖିରେ ଲୁହ ! ଚାରୁବାବୁଙ୍କ ଆଖିରେ ଲୁହ ଦେଖି ମୁଁ ଅବାକ୍ ହେଇଗଲି । କିନ୍ତୁ ମୁଁ ବା ଏ ବିଷୟରେ କ'ଣ ପଚାରିବି ? ତେଣୁ ମୁଁ ଚାଲିଗଲି । ମୋ ମନ କିନ୍ତୁ ଗୁଡୁପୁଡୁ ହେଉଥାଏ । ସେହିଦିନ ସନ୍ଧ୍ୟାରେ ବହୁ ସନ୍ତର୍ପଣରେ ମୁଁ ତାଙ୍କ ଘରକୁ ଗଲି । ଘରେ ମୋତେ ଦେଖି ସେ ବହୁତ ଖୁସି ହେଲେ । ତାଙ୍କର ସଦା ଗମ୍ଭୀର ମୁହଁରେ ହସ ଫୁଟି ଉଠିଲା । କିନ୍ତୁ ସେ ହସ ଭିତରେ ଗୋଟିଏ ଗଭୀର କାରୁଣ୍ୟର ଆଭାସ ପାଇଲି । ସେ ଯେପରି ହସ ଭିତରେ କାନ୍ଦୁଛନ୍ତି । ମୁଁ ହଠାତ୍ ସାହସର ସହିତ ପଚାରିଲି-ସେଦିନ କ୍ଲାସ୍‌ରେ ତାଙ୍କ ଆଖିରେ କାହିଁକି ଲୁହ ଆସିଥିଲା । ଏହି ପଦକ କଥାରେ ତାଙ୍କ ଆଖିରୁ ଅବାରିତ ଲୁହ ଝରିପଡ଼ିଲା । ମୁହଁରେ କିନ୍ତୁ ଥିଲା ସେହିପରି ମଳିନ ହସ । ଦିନର ଶେଷ ଭାଗର ବର୍ଷା ଖରା ଭିତରେ ଝାପ୍‌ସା ଡାହାଁଣୀ ଆଲୁଅ ପରି ମଳିନ, ଅଥଚ ସ୍ପଷ୍ଟ ।

ଦୁଇଜଣଯାକ ନିର୍ବାକ୍ ନିଶ୍ଚଳ ହୋଇ ବହୁ ସମୟ ବସି ରହିଲା ପରେ ସେ କହିଥିଲେ ଯେ ଚାକିରିର ଆରମ୍ଭ ସମୟରେ ବ୍ରହ୍ମପୁତ୍ର ନଦୀରେ ନୌକା ବୁଡିବାରେ ତାଙ୍କର ଗୋଟିଏ ଛୋଟିଆ ପୁଅ ମରିଯାଇଥିଲା । ସେ ପିଲାଟିକୁ ଏତେ ଭଲ ପାଉଥିଲେ ଯେ ସେହିଦିନଠାରୁ ସେ ଅଲଗା ମଣିଷ ହୋଇଗଲେ । ନିଜକୁ ଜୀବନସାରା ନିଃସଙ୍ଗ ବୋଲି ମନେ କରୁଥିଲେ । ସେଥିଯୋଗୁଁ ସେ ଆହୁରି ବେଶୀ ନିଃସଙ୍ଗ ଓ ଗମ୍ଭୀର ହୋଇଯାଇଥିଲେ । ଜମାଟବନ୍ଧା ଗାମ୍ଭୀର୍ଯ୍ୟର ଖୋଳ ଭିତରେ କିନ୍ତୁ ତାଙ୍କର ନରମ ମନ ସବୁବେଳେ ଅତି ଦୁଃଖରେ ଗୁମୁରି ଉଠୁଥିଲା । ତାଙ୍କର ଆଉ ଅଳ୍ପଦିନ ପରେ ଅବସର ନେବାକୁ ଥାଏ । କଲେଜରେ ଥିଲାବେଳେ ତାଙ୍କର ସେଇ ହଜିଲା ପୁଅ କଥା ବେଶୀ ମନ ପଡୁଥିଲା । ତାଙ୍କୁ ମୋର ଯୁକ୍ତିତର୍କ ଏତେ ଭଲ ଲାଗିଲା ଯେ ତାଙ୍କର ନୌକାବୁଡି ପୁଅର ମୁହଁ ମୋଠାରେ ସେ ଦେଖିପାରିଥିଲେ ; ସେଥିପାଇଁ ସେ ଏପରି ଭାବରେ କାନ୍ଦି ପକାଇଥିଲେ ।

କି କରୁଣ କାହାଣୀ ତାଙ୍କ ଜୀବନର ! ବହୁ ଲୋକଙ୍କର ତ ପୁଅ ଝିଅ ମରିଥାନ୍ତି, କିନ୍ତୁ ଏ ମହାଶୟ ନିଜ ଜୀବନକୁ ଏତେ କରୁଣ କରି ପକାଇଲେ କାହିଁକି ? ବୋଧହୁଏ ଆଉ ପୁଅଟି ଯୋଗ୍ୟର ହୋଇଥିଲେ ସେ ପ୍ରଥମ ପୁଅ କଥା ଭୁଲି ଯାଇଥାନ୍ତେ । ତାଙ୍କ ମନର ଗମ୍ଭୀର ସମ୍ବେଦନଶୀଳତା ତଥା କାରୁଣ୍ୟ ମତେ ଅଭିଭୂତ କରି ପକାଇଥିଲା ।

ଅଳ୍ପଦିନ ପରେ ସେ ପାଟଣା ଛାଡ଼ି ଚାଲି ଗଲେ । ଷ୍ଟେସନରେ ତାଙ୍କୁ ବିଦାୟ ଦେବା ଲାଗି ମୁଁ ଯାଇଥିଲି ।

ତାଙ୍କର ଶେଷ ଅଶ୍ରୁଳ ଆଖି ଦୁଇଟି ଆଜିଯାଏ ମୋ ମନରେ ଆଙ୍କି ହୋଇ ରହିଛି । ଏ ପ୍ରକାର ମାନବିକ ସ୍ନେହ ଓ କରୁଣାପୂର୍ଣ୍ଣ ଅନୁଭୂତି ମନୁଷ୍ୟ ଜୀବନକୁ ନିବିଡ଼ ଭାବରେ ସ୍ପର୍ଶ ତଥା ପ୍ରଭାବିତ କରିଥାଏ । ଚାରୁବାବୁ ପୁତ୍ରର ଅକାଳ ମୃତ୍ୟୁରେ ଯେପରି ସାରା ଜୀବନ ଦୁଃଖ ଭାରରେ ନଇଁ ଯାଇଥିଲେ, ମୁଁ ବୋଧହୁଏ ସେହିପରି ପିତାମାତାଙ୍କ ଅକାଳ ବିୟୋଗରେ ଅତୀତରେ ନଇଁ ଯାଇଥିଲି । ସେଥିଯୋଗୁଁ ବୋଧହୁଏ ପରସ୍ପର ମଧ୍ୟରେ ଏପରି ଅଜଣା ଆକର୍ଷଣ ଦେଖା ଦେଇଥିଲା । ବର୍ତ୍ତମାନ ସୁଦ୍ଧା ଗଳ୍ପ ଉପନ୍ୟାସରେ ବା ସିନେମା ଥିଏଟରରେ ବାପ ମା, ପୁଅ ଝିଅର ବିଚ୍ଛେଦ ମୋତେ ବହୁତ ବେଶୀ ଆନ୍ଦୋଳିତ କରିଥାଏ ।

ବି.ଏ. ପଢ଼ିବାର ଦୁଇବର୍ଷ ଭିତରେ କେବଳ ପାଠ ପଢ଼ାର ଯେଉଁ କଠୋର ସଂକଳ୍ପ, ଏମ୍.ଏ. ପଢ଼ିବା ସମୟରେ ତାର ଟିକିଏ ପରିବର୍ତ୍ତନ ହେଲା । ନିୟମିତ ଭାବରେ ଦିନକୁ ଚାରିଘଣ୍ଟା ପଢ଼ା ହୁଏତ ରହିଲା, କିନ୍ତୁ ତା'ପରେ ଆହୁରି ବେଶୀ ସମୟ ପଢ଼ିବାର ଯେଉଁ ଝୁଙ୍କ ତାହା କମି ଆସିଲା । ବି.ଏ. ପ୍ରଥମ ଶ୍ରେଣୀରେ ପାଶ୍ କରିଥିବା ସ୍ନାତକୋତ୍ତର ଛାତ୍ର ହିସାବରେ ଗଙ୍ଗାନଦୀ କୂଳରେ ଥିବା ହଷ୍ଟେଲରେ ଜଣକିଆ କୋଠରୀ ମୋତେ ମିଳିଥାଏ । ଚାରିଘଣ୍ଟା ପଢ଼ି ସାରିବା ପରେ ପୁଣି ନାନାପ୍ରକାର ସୌଖିନ କାମ ଓ ବୁଲାବୁଲି ଆରମ୍ଭ ହୋଇଗଲା । ସେତେବେଳକୁ ମୁଁ ପୂରାପୂରି ନାସ୍ତିକ ହୋଇଯାଇଥାଏ ଏବଂ ପ୍ରତ୍ୟେକ କ୍ଲାସ୍‌ରେ ଏପରି ଯୁକ୍ତି କରିବାକୁ ଭଲ ଲାଗେ । ଯେଉଁ ଦର୍ଶନ ଶାସ୍ତ୍ର ଭଗବାନଙ୍କର ଅସ୍ତିତ୍ୱ ବିଷୟ ପ୍ରତିପାଦିତ କରେ ତାହା କିପରି ଅବାସ୍ତବ ଏବଂ ଅଯୌକ୍ତିକ ବୋଲି ମୁଁ ଯୁକ୍ତି କରେ । ଭଗବତ୍ ବିଶ୍ୱାସରେ ବୌଦ୍ଧିକ ଯୁକ୍ତିଯୁକ୍ତତା ଅପେକ୍ଷା ବିଶ୍ୱାସ ଓ କଳ୍ପନା ବେଶୀ ଥିବାର ମନେହେଲା । ତେଣୁ ଏହିସବୁ ଯୁକ୍ତି ବିରୁଦ୍ଧରେ ପ୍ରମାଣ ବାହାର କରିବା ମୋ ପକ୍ଷରେ କଷ୍ଟକର ହେଉ ନଥିଲା ।

ମୁଁ ପାଟଣା କଲେଜରେ ନାସ୍ତିକ ହିସାବରେ ଏପରି ପରିଚିତ ହୋଇଗଲି ଯେ ଥରେ କଲେଜର ପ୍ରିନ୍‌ସପାଲ ବାଥେଜା ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଗୀତା ପ୍ରବଚନ ସଭାରେ ମୋତେ କହିବାକୁ ଡାକିଲେ । ମୁଁ ଭଗବାନଙ୍କ ବିରୁଦ୍ଧରେ କହିଥିଲି । ସେ ମୋର ମନ୍ତବ୍ୟ ଶୁଣି ସ୍ତମ୍ଭୀଭୂତ ହୋଇଯାଇଥିଲେ । ତାପରେ ମୋତେ ଅଲଗା ଡାକି ବହୁତ ବୁଝାଇଥିଲେ । କିନ୍ତୁ ମୁଁ ମୋ ମତରେ ଅଟଳ ରହିଥିଲି । ଏଥିଯୋଗୁଁ ମୁଁ କଲେଜରେ ଜଣେ ଲୋକପ୍ରିୟ ଛାତ୍ର ହିସାବରେ ପରିଚିତ ହୋଇଗଲି ।

ମୋର ଏମ୍.ଏ.ର ଦ୍ୱିତୀୟ ବର୍ଷ ୧୯୪୨ ଅଗଷ୍ଟ ମାସରେ ଗୋଟିଏ ବିଶେଷ ଘଟଣା ଘଟିଥିଲା । ଭାରତଛାଡ଼ ଆନ୍ଦୋଳନ ଆରମ୍ଭ ହେଲା ଅଗଷ୍ଟ ନଅରେ । ସାଙ୍ଗେ ସାଙ୍ଗେ ଭାରତର ସବୁ ବଡ଼ବଡ଼ ନେତାଙ୍କୁ ଜେଲ୍‌ରେ ଭର୍ତ୍ତି କରା ହୋଇଥିଲା । ଜୟପ୍ରକାଶ ନାରାୟଣ ଆତ୍ମଗୋପନ କରିଥିଲେ । ଅଗଷ୍ଟ ନଅରେ ପାଟଣାରେ ସବୁ କଲେଜ ଓ ସ୍କୁଲରେ ଧର୍ମଘଟ ଆରମ୍ଭ ହେଲା । ନଅ ଓ ଦଶ ତାରିଖ ସାଧାରଣ ଭାବେ ଧର୍ମଘଟ ଚାଲିଥାଏ । ଏ ଧର୍ମଘଟରେ ମୋର କୌଣସି ଭାଗ ନଥିଲା । ମୁଁ କେବଳ ବାହାରର ଦର୍ଶକ ହିସାବରେ

ଧର୍ମଘଟ ଦେଖୁଥାଏ । ଏଗାର ତାରିଖରେ ଠିକ୍ ହେଲା ଯେ ସବୁ ସ୍କୁଲ ଓ କଲେଜରୁ ବଡ଼ ବଡ଼ ଶୋଭାଯାତ୍ରାମାନ ପାଟଣା ସେକ୍ରେଟେରୀଏଟ୍ ଅଭିମୁଖେ ବାହାରିବ । କ୍ରମେ ଶୋଭାଯାତ୍ରା ବହୁତ ବଡ଼ ଧରଣର ହେବାକୁ ଆରମ୍ଭ କଲା । ଏତେ ଲୋକ ଏକାଠି ହୋଇ ସ୍ଲୋଗାନ ଦେଲାବେଳେ ମୋ ଦେହରେ ଗୋଟିଏ ଶିହରଣ ଖେଳିଗଲା । ବାଜା ବାଜିଲେ ନାଚବାଲାର ଗୋଡ଼ ପଡ଼ିଲା ପରି ମୁଁ ଏହି ବିରାଟ ଶୋଭାଯାତ୍ରାରେ ଯୋଗ ନ ଦେଇ ରହିପାରିଲି ନାହିଁ । ଏତେବଡ଼ ଛାତ୍ର ଶୋଭାଯାତ୍ରା ଗଗନ ପବନ କମ୍ପାଇ ଆଗକୁ ମାଡ଼ିଚାଲିଥିଲା ବେଳେ ମୁଁ ଜଣେ ନିଷ୍କ୍ରିୟ ଦେଖଣାହାରୀ ହୋଇ ରାସ୍ତା କଡ଼ରେ ଠିଆ ହୋଇଥିବି ? ବ୍ରିଟିଶ୍ ଶାସନ ପ୍ରତି ମୋର ଅନ୍ତର୍ନିହିତ କ୍ରୋଧ ହଠାତ୍ ଜଳିଉଠିଲା । ମୁଁ ମଧ୍ୟ ସ୍ଲୋଗାନ ଦେଇ ଶୋଭାଯାତ୍ରାରେ ଯୋଗ ଦେଲି । ସେକ୍ରେଟେରୀଏଟ୍ ପାଟଣା କଲେଜରୁ ପ୍ରାୟ ପାଞ୍ଚ କିଲୋମିଟର ହେବ । ନାନା ଦିଗରୁ ଏପରି ବହୁ ଶୋଭାଯାତ୍ରା ସେକ୍ରେଟେରୀଏଟ୍ ଆଡ଼କୁ ଚାଲିବାକୁ ଆରମ୍ଭ କଲା । କ୍ରମେ ଜନସମୁଦ୍ର ହିଲ୍ଲୋଳରେ ପାଟଣା ସହର କମ୍ପି ଉଠିଲା । ଦେଖୁ ଦେଖୁ ମୁଁ କେତେବେଳେ ଗୋଟିଏ ଶୋଭାଯାତ୍ରାର ଅଗ୍ରଣୀ ହୋଇଗଲିଣି । କିଏ ମଧ୍ୟ ମୋ ହାତରେ ଗୋଟିଏ ପତାକା ଧରାଇ ଦେଇଥାଏ । ଗୋଟିଏ ଗଭୀର ଉତ୍ତେଜନା ଓ ଆଗ୍ରହ ସମସ୍ତଙ୍କୁ ଅନୁପ୍ରାଣିତ କରୁଥିଲା । କିଛି ସମୟ ପରେ ସେକ୍ରେଟେରୀଏଟ୍‌ର ବିରାଟ ଲୁହା ଫାଟକ ଆଗରେ ଆମେସବୁ ପହଞ୍ଚିଗଲୁ । ଗେଟ୍‌ସବୁ ବନ୍ଦ ହୋଇଯାଇଥାଏ । ବନ୍ଧୁକଧାରୀ ଘୋଡ଼ାସବାର ପୋଲିସ୍ ଲୋକଙ୍କ ଭିତରକୁ ଧସିହୋଇ ଦୌଡ଼ୁଥାନ୍ତି । ଲୋକେ ତଳେ ପଡ଼ି ଖଣ୍ଡିଆ ଖାବରା ହୋଇଯାଉଥାନ୍ତି । କିନ୍ତୁ କେହି ପଛଘୁଞ୍ଚା ଦେଉ ନଥିଲେ ।

ବରଂ ସମସ୍ତେ ଫାଟକ ଆଡ଼କୁ ଆଗେଇ ଯାଉଥିଲେ । ହଠାତ୍ ଆମମାନଙ୍କ ସାମନାରେ ତତ୍କାଳୀନ ଗୋରା ଜିଲ୍ଲା କଲେକ୍ଟର ଥାର୍ଚର ସାହେବ ଆସି ଠିଆ ହେଲେ ପୁଲିସ୍ ସହିତ । ଥାର୍ଚର ଖୁବ୍ ଭଲ ଲୋକ ବୋଲି ଜଣାପଡୁଥିଲେ । ଆମମାନଙ୍କ ସହିତ ସେ ହସିହସି କଥାବାର୍ତ୍ତା କରୁଥିଲେ । ସେ ଜାଣିବାକୁ ଚାହିଁଲେ ଯେ ଆମେମାନେ କଣ ଚାହୁଁ । ଆମେମାନେ କହିଥିଲୁ ଯେ ଆମ ଭିତରୁ କେତେଜଣ ଯାଇ ସେକ୍ରେଟେରୀଏଟ୍ କୋଠାରେ ଜାତୀୟ ପତାକା ଉଡ଼ାଇ ଫେରିଆସିବୁ । ତା'ପରେ ଆମେ ସମସ୍ତେ ଶାନ୍ତିପୂର୍ଣ୍ଣ ଭାବରେ ଫେରିଯିବୁ । ଥାର୍ଚର କିନ୍ତୁ ବିରକ୍ତ ନ ହୋଇ ଆମମାନଙ୍କୁ ବୁଝାଉଥାନ୍ତି । ସେ ଜଣେ ଆୟାରଲାଣ୍ଡ ଅଧିବାସୀ ଥିଲେ । ତେଣୁ ତାଙ୍କର ଭାରତୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ସେପରି କଠୋରତା ନଥିଲା ପରି ଜଣାଯାଉଥିଲା ।

ଏପରି ଭାବରେ କଥାବାର୍ତ୍ତା ଚାଲିଥିଲାବେଳେ ଅନ୍ୟ ଦିଗରେ ହଠାତ୍ ପ୍ରଥମ ରାଉଣ୍ଡ ଗୁଳି ଚାଲିଲା । ଆମେସବୁ ଛିନ୍‌ଛତର ହୋଇଗଲୁ । ଏ ସମ୍ପର୍କରେ ଆମକୁ ଆଗରୁ ସତର୍କ କରି ଦିଆଯାଇ ନଥିଲା କିମ୍ବା ଜିଲ୍ଲା କଲେକ୍ଟରଙ୍କଠାରୁ ଗୁଳି ଚଳାଇବା ପାଇଁ ଅନୁମତି ମଧ୍ୟ ନିଆଯାଇ ନଥିଲା । କିଛି ବାଟ ଦୌଡ଼ିଯିବା ପରେ ହଠାତ୍ ଆମେ କେତେଜଣ ଠିଆ ହୋଇ ପଛକୁ ଚାହିଁଲୁ । ମୁଁ କହିଲି ବୋଧହୁଏ ଏହା ମିଛିମିଛିକା ଶୂନ୍ୟକୁ ଗୁଳି । ମୋ କଥା ନ ସରୁଣୁ ମୋ ପାଖରେ ଠିଆ ହୋଇଥିବା ଗୋଟିଏ ସ୍କୁଲ ପିଲାର–ଯେ କି ମୋ ସହିତ ଶୋଭାଯାତ୍ରାରେ ପତାକା ଧରି ଚାଲୁଥିଲା– ଛାତିରେ ଗୁଳି ପଶିଗଲା । ସେ ତଳେ

ପଡ଼ିଗଲାବେଳକୁ ମୁଁ ତାକୁ ମୋ କୋଳରେ ଧରି ବସିପଡ଼ିଲି । ସେ ସାଙ୍ଗେ ସାଙ୍ଗେ ମୋ କୋଳରେ ମରି ଯାଇଥିଲା । ତା ଛାତିରୁ ପିଚ୍ ପିଚ୍ ରକ୍ତର ଫୁଆରା ମୋର ଦେହ ମୁଣ୍ଡ ଲୁଗାପଟା ବୁଡ଼ାଇ ଦେଇଗଲା । କି ମର୍ମନ୍ତୁଦ ଘଟଣା ! ଆଜି ପର୍ଯ୍ୟନ୍ତ ସେ ଅଳ୍ପ ବୟସ୍କ ସ୍କୁଲ ଛାତ୍ରଟିର ଗୋରା ମାଉଁସିଆ ମୁହଁଟି ମୋ ମନରେ ଲିପିବଦ୍ଧ ହୋଇ ରହିଛି । ତା'ପରେ ଚାଲିଲା ପୋଲିସ୍ ଲାଠି ଚାଳନା । ପୋଲିସ୍ ମୃତ ଓ ଆହତ ଲୋକମାନଙ୍କୁ ଜବରଦସ୍ତ ନିଜ ଅକ୍ତିଆରକୁ ନେବାକୁ ବସିଲେ । କିନ୍ତୁ ଜନତା ଏମାନଙ୍କୁ ଛାଡ଼ିବାକୁ ନାରାଜ୍ । ଧସ୍ତାଧସ୍ତି ଚାଲିଲା । ସେତିକିବେଳେ ବୋଧହୁଏ ମୁଁ ପୋଲିସ୍ ଲାଠିରେ ଆଘାତ ପାଇଥିଲି ବେକ ପାଖରେ, କାରଣ କୋଳରେ ମୃତ ବାଳକଟିର ଶବ ରହିଥିଲା । ତାପରେ ଲୋକମାନେ ମୃତ ଲୋକଙ୍କୁ ସାଇକେଲ୍ ରିକ୍ସାରେ ପକାଇ ମେଡିକାଲ କଲେଜ ହସ୍ପିଟାଲ ଆଡ଼େ ଚାଲିଲେ । ଏତେ ଗୋଳମାଳ ଭିତରେ ମଧ ଏହା ସମ୍ଭବ ହୋଇପାରିଲା । ପୋଲିସ୍ ଗୋଟିଏ ସୁଦ୍ଧା ମୃତ ବା ଆହତ ଲୋକଙ୍କୁ ନେଇପାରିଲା ନାହିଁ । ମୋ କୋଳରେ ମରିଥିବା ପିଲାଟିକୁ ପଠାଇ ଦେଲା ପରେ ଜଣେ କେହି ମୋତେ ମଧ ସାଇକେଲ୍ ରିକ୍ସାରେ ବସାଇ ମେଡିକାଲ ଅଭିମୁଖେ ନେଇ ଚାଲିଲେ । ମୋର କିନ୍ତୁ ସେପରି କିଛି ଆଘାତ ହୋଇ ନଥିଲା । ସେହି ପିଲାଟିର ରକ୍ତରେ ମୋର ଦେହ ମୁଣ୍ଡ ଜୁଡୁବୁଡୁ ହୋଇ ରହିଥିଲା । କିନ୍ତୁ ଅନ୍ୟମାନେ ଭାବୁଥିଲେ ଯେ ମୁଁ ଯଦିଚ ବଞ୍ଚିଛି ତଥାପି ବହୁତ ବେଶୀ ରକ୍ତାକ୍ତ ହୋଇପଡ଼ିଛି । ପାଞ୍ଚ କିଲୋମିଟର ବାଟ ସାଇକେଲ୍ ରିକ୍ସାରେ ବୁହା ହେଉଥିବା ମୃତ ଓ ରକ୍ତାକ୍ତ ଛାତ୍ରଙ୍କ ଶୋଭାଯାତ୍ରା ଭୁଲିବାର ନୁହେଁ ।

ରାସ୍ତାର ଦୁଇକଡ଼େ ଅସଂଖ୍ୟ ଜନତା । ସେମାନଙ୍କ ସ୍ଲୋଗାନରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ । ଇନ୍‌କିଲାବ ଜିନ୍ଦାବାଦ୍‌ର ଧ୍ୱନି ଛଡ଼ା ଆଉ କିଛି ଶବ୍ଦ ନଥିଲା– ପାଞ୍ଚ କିଲୋମିଟର ରାସ୍ତାର ଦୁଇକଡ଼େ ଅସଂଖ୍ୟ ଜନତାର ଦୃଶ୍ୟ । ମୋର ରିକ୍ସା ଗଲାବେଳେ ରାସ୍ତାରେ ଲୋକେ ପଚାରୁଥିଲେ–

''ଜିନ୍ଦା ହେଁ ?''

ମୋର ବନ୍ଧୁ କହୁଥିଲେ– ''ଜିନ୍ଦା ହେ ଲେକିନ୍ ବହତ ଘାଏଲ୍ ହେ ।''

ମୁଁ ଯେତେ କହୁଥିଲି ଯେ ମୋର କିଛି ହୋଇନାହିଁ, ମୋତେ ହସ୍ପିଟାଲକୁ ନିଅନାହିଁ, ସେ କଥା କେହି ଶୁଣୁ ନଥିଲେ । ମୁଁ ଡାକ୍ତରଖାନା ଅଭିମୁଖେ ଚାଲିଥାଏ ଉପାୟହୀନ ଭାବରେ । ମନେହେଉଥାଏ, ଯୁଦ୍ଧ ପରେ ଶତ୍ରୁକୁ ନିପାତ କରି ଯେପରି ଆମେସବୁ ବିଜୟୀ ସେନା ପାଟଣା ରାଜପଥରେ ଚାଲିଛୁ । ଏ ଗଭୀର ଅନୁଭୂତି ବର୍ଣ୍ଣନାତୀତ । ଜୀବନରେ ଏପରି ଗୋଟିଏ ଗୋଟିଏ ସ୍ମୃତିର ଦାମ୍ ଅନେକ ବେଶୀ । ଯେତେବେଳେ ଅତୀତ ଜୀବନକୁ ଫେରି ଚାହେଁ–ପାଟଣା ରାଜପଥର ଏହି ବିଜୟ ଯାତ୍ରା ଶିହରଣ ସୃଷ୍ଟି କରେ । ଏବେ ମଧ ପାଟଣା ଗଲେ ସାଇକେଲ୍ ରିକ୍ସାରେ ଠିକ୍ ସେହି ରାସ୍ତାରେ ଥରେ ଦିଥର ଯାଏ– ଭଲ ଲାଗେ ।

ପାଟଣା ମେଡିକାଲ୍ ହସ୍ପିଟାଲରେ ପହଞ୍ଚିବାକୁ ଆଉ ପ୍ରାୟ ପାଞ୍ଚ ମିନିଟ୍‌ର ରାସ୍ତା ଅଛି- ହଠାତ୍ ମୋର ସହପାଠୀ ପରଜୀବନର ଆଡ୍‌ଭୋକେଟ୍ ସୀତାକାନ୍ତ ପଟ୍ଟନାୟକଙ୍କୁ ଦେଖିଲି । ମୁଁ ତାକୁ ଡାକି କହିଲି ଯେ ମୋତେ ଅନ୍ୟ କୁଆଡ଼େ ନେଇଯିବା ପାଇଁ କାରଣ

ହସ୍ପିଟାଲ ଗଲେ ତା ପରଦିନ ମୋତେ ଜେଲ୍ ଯିବାକୁ ପଡ଼ିଥାନ୍ତା । ଜେଲ୍ ଯାଇଥିଲେ ବର୍ତ୍ତମାନ ଭତ୍ତା ମିଳିଥାନ୍ତା - ପାଠପଢ଼ା ବନ୍ଦ ହେବା ଫଳରେ ରାଜନୀତିରେ ଯୋଗ ଦେଇ ନେତା ଓ ମନ୍ତ୍ରୀ ହୋଇ ମୋର ଆତ୍ମାକୁ ନିର୍ଲ୍ଲଜ ଭାବରେ ବଳି ଦେଇଥାନ୍ତି । ଜନତାର ସ୍ୱାଧୀନତା ସ୍ୱପ୍ନକୁ ପ୍ରତିହତ କରିଥିବା ଆତତାୟୀଙ୍କ ଭିତରେ ମୁଁ ହୋଇଥାନ୍ତି ଜଣେ ।

ସୀତାକାନ୍ତ ମୋତେ ନେଇ ଡେପୁଟୀ ମାଜିଷ୍ଟ୍ରେଟ୍ ଭରତ ଚନ୍ଦ୍ର ନାୟକଙ୍କ ବସାଘରେ ପହଞ୍ଚାଇ ଦେଇଥିଲେ । ତାପରେ ମୁଁ ବହୁତ ସମୟ ଯାଏ ବେହୋସ ହୋଇ ଆବୁରୁ ଛାବୁରୁ ପ୍ରଳାପ କରିବାକୁ ଲାଗିଲି । ବେକରେ ଯେଉଁ ଲାଠିମାଡ଼ ହୋଇଥିଲା ସେଥିଯୋଗୁ ବୋଧହୁଏ ସଂଜ୍ଞାହୀନ ହୋଇଯାଇଥିଲି । ସେଠାରେ ପାଟଣା କଲେଜର ସବୁ ଓଡ଼ିଆ ପିଲା, କଲେଜ ଡାକ୍ତର, ସୁପରିନ୍‌ଟେଣ୍ଡେଣ୍ଟ, କେତେକ ଅଧ୍ୟାପକ ଆସି ପହଞ୍ଚିଗଲେ । ମୁଁ ଏକମାତ୍ର ଓଡ଼ିଆ ଏଥିରେ ସଂପୃକ୍ତ ଥିଲି । ପାଟଣା କଲେଜରେ ମଧ୍ୟ ମୁଁ ଏକମାତ୍ର ଛାତ୍ର ଏପରି ଭାବରେ ଆହତ ହୋଇଥିଲି । ତେଣୁ ଗହଳି ହେବା କଥା ।

ଏ ବିରାଟ କାଣ୍ଡ ପରେ ବହୁ ଓଡ଼ିଆ ପିଲା ପ୍ରାଣ ବିକଳରେ ସେଦିନ ରାତିରେ ପାଟଣା ଛାଡ଼ି ଓଡ଼ିଶା ଚାଲିଗଲେ । ତା'ପରେ ଦିନ ଦି ଦିନେ ପରେ ଆଉ କେତେଜଣ ଓଡ଼ିଆ ଛାତ୍ର ଭରା ଗଙ୍ଗାନଦୀରେ ଡଙ୍ଗାରେ ବସି ପାଟଣା ଛାଡ଼ିଥିଲେ । କାରଣ ତା'ପରଦିନ ସବୁ ରେଳଗାଡ଼ି ବନ୍ଦ ହୋଇଗଲା । ମୁଁ କିନ୍ତୁ ସେଠାରେ ରହିଲି ଆହୁରି ମାସେ । କାରଣ ମୁଁ ଆହତ ହେଲା ପରେ ମୋର ଜିଦ୍ ବଢ଼ି ଯାଇଥିଲା । ଠିକ୍ ତା ଆରଦିନ ବହୁତ ଲୋକଙ୍କ ସହିତ ମିଶି ଆମେମାନେ ପୋଷ୍ଟ ଅଫିସ୍ ପୋଡ଼ିବା, ତାକତାର ଛିଣ୍ଡାଇବା ଡାକ ଖୁଣ୍ଟି ଓପାଡ଼ିବା, ରାସ୍ତା କାଟିବା ଓ ଗାଡ଼ି ଚଳାଚଳ ବନ୍ଦ ପାଇଁ ବଡ଼ଗଛ କାଟି ରାସ୍ତା ମଝିରେ ପକାଇବା ପ୍ରଭୃତି କାମରେ ଲାଗିଗଲୁ । ଗୁଳି ଚାଳନାରେ ଏଗାରଜଣ ଛାତ୍ର ମରିଗଲେ । ତା'ପରେ ପାଟଣା ସହର ହୁଲୁସ୍ଥୁଲୁ ହୋଇଗଲା । ପାଟଣାରେ ଯେତେ ପୋଲିସ ଥିଲେ ସେମାନେ କେବଳ ବଡ଼ବଡ଼ ଅଫିସରଙ୍କ ଘରକୁ ଜଗି ରହିଲେ । ଗଭର୍ଣ୍ଣର ମଧ୍ୟ ଉଡ଼ାଜାହାଜ ଯୋଗେ ଦିଲ୍ଲୀ ଚାଲିଗଲେ ।

ଯୁଦ୍ଧ ସମୟରେ ପାଟଣାରେ ବେଶୀ ସୈନ୍ୟ ନଥିଲେ । ପାଟଣା ସହର ତିନି ଚାରିଦିନ ପାଇଁ ସ୍ୱାଧୀନ ହୋଇଗଲା କହିଲେ ଚଳେ । ରାସ୍ତାରେ ଆମେମାନେ ଯାହା କଲୁ ସେଥିରେ କେହି ବାଧା ଦେବାକୁ ନଥିଲେ । ପାଟଣା ଆଖପାଖ ଓ ବିହାରର ବହୁ ସ୍ଥାନରେ ଏପରି ଭାବରେ ବିଦ୍ରୋହ ଆରମ୍ଭ ହୋଇଗଲା । ରେଳ ଧାରଣାସବୁ କାଢ଼ି ଫୋପାଡ଼ି ଦିଆଗଲା । ରେଳ ଯିବା ରାସ୍ତାକୁ କାଟି ମାଟିରେ ମିଶାଇ ଦିଆଗଲା ଓ ସେଠାରେ ବୋର୍ଡ଼ ମରାଗଲା - 'grow more food'...ଏହା ଥିଲା ଯୁଦ୍ଧ ସମୟର ସରକାରୀ ସ୍ଲୋଗାନ୍ । ରାଞ୍ଚିରେ ଯୁଦ୍ଧ ସଂପର୍କୀୟ ଦ୍ୱିତୀୟ ଫ୍ରଣ୍ଟ ପାଇଁ ବହୁତ ସୈନ୍ୟ ଥିଲେ । କିନ୍ତୁ ରାଞ୍ଚିରୁ ପାଟଣାକୁ ସୈନ୍ୟ ଆଣିବା ଲାଗି ତିନି ଚାରିଦିନ ଲାଗିଲା କାରଣ ରାସ୍ତାରେ ବହୁତ ଘାଇ । ବଡ଼ ବଡ଼ ଗଛ କାଟି ରାସ୍ତାରେ ପକାଇ ଦିଆ ହୋଇଥାଏ । ଯେଉଁ ବିହାର ରାଜନୈତିକ ଆନ୍ଦୋଳନରେ ଏତେ ପଛରେ ଥିଲା, ସେଠାରେ ଅସମ୍ଭବ ଧରଣର ବିପ୍ଳବ ଦେଖାଦେଇଥିଲା । ସେ ସମୟର ବିହାର ବିପ୍ଳବ ଯେ ଦେଖିଥିବ ସେ କଦାପି ବିଶ୍ୱାସ କରିବ ନାହିଁ ଯେ ଭାରତ କେବଳ ଅହିଂସା ଉପାୟରେ ସ୍ୱାଧୀନତା ଲାଭ କରିଛି । ବିହାରୀ ଲୋକେ ସାଧାରଣ

ସମୟରେ ବଡ଼ ନିରୀହ ନିଷ୍କ୍ରିୟ ଦେଖାଯାନ୍ତି, କିନ୍ତୁ ମାତିଗଲେ ଭୟଙ୍କର ହୋଇପଡ଼ନ୍ତି । ଏହା ଏମାନଙ୍କର ଗୋଟିଏ ଜାତୀୟ ଲକ୍ଷଣ ।

ତିନିଚାରି ଦିନ ପରେ ପ୍ରାୟ ପଚାଶ ହଜାର ସୈନ୍ୟ ଟ୍ୟାଙ୍କ ଧରି ପାଟଣା ରାସ୍ତାରେ ପଇଁତରା ମାରିଲେ । ତା'ପରେ ସବୁ ଛାତ୍ର ଲୁଚିଗଲେ । ଛାତ୍ରଙ୍କୁ ଦେଖିଲାକ୍ଷଣି ସୈନ୍ୟମାନେ ପିଟିଲେ । ରାସ୍ତାରେ ଯେ ବାହାରିଲା ତାରି ସାହାଯ୍ୟରେ କଟା ଯାଇଥିବା ରାସ୍ତା ତିଆରି କରାଗଲା ବନ୍ଧୁକ ମୁନ ଦେଖାଇ । ପ୍ରଫେସର ଜ୍ଞାନଚାନ୍ଦ ଓ ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ଥରେ ସେହିପରି ଭାବରେ ଜବରଦସ୍ତ ରାସ୍ତା କାମରେ ଲଗା ହୋଇଥିଲା । ମୁଁ ଲୁଚି ରହିଲି ଡେପୁଟି ମାଜିଷ୍ଟ୍ରେଟ୍  ଭାରତ ନାୟକଙ୍କ ଘରେ । ବାହାରକୁ ବାହାରିବା ବିପଦ ଥିଲା । ଦୋକାନ ବଜାର ବନ୍ଦ । ସାଇପଡ଼ିଶାରୁ ଧାର ଉଧାର କରି ରୁଟି ଆଳୁଭଜା ଖାଇ ପାରିଲେ ଯଥେଷ୍ଟ ହେଲା । ଏହିପରି ପ୍ରାୟ ମାସେ କଟିଗଲା ।

ଏହି ସମୟରେ ମଝି ମଝିରେ ମୁଁ ଆଉ କେତେକ ଛାତ୍ର ଗଙ୍ଗା ପାର ହୋଇ ଗ୍ରାମାଞ୍ଚଳକୁ ଯାଉଥିଲୁ । ସେଠାରେ ପ୍ରଥମେ ପ୍ରଥମେ ସୈନ୍ୟମାନେ ପହଞ୍ଚି ନଥିଲେ । ଆମେମାନେ ଗୋଟିଏ ଗ୍ରାମକୁ ଯାଇ ଗ୍ରାମବାସୀଙ୍କ ସାହାଯ୍ୟରେ ପୋଲିସକୁ ନିରସ୍ତ୍ର କରି ତା'ର ବଂଧୁକଟି ଗ୍ରାମର ଆଉ ଜଣେ ଯୁବକ ନେତା ହାତରେ ଦେଇ ପୁଲିସକୁ ନିରସ୍ତ୍ର କରୁ । ଗ୍ରାମାଞ୍ଚଳକୁ ଯାଇଥିବା ରାସ୍ତାକୁ କାଟି ବଡ଼ ବଡ଼ ଗାତ କରି ତା ଉପରେ ତାଳପତ୍ର ଘୋଡ଼ାଇ ଦେଉ । ପରେ ଯେତେବେଳେ ସୈନ୍ୟମାନେ ସେହି ରାସ୍ତାରେ ଯାଆନ୍ତି କେତେକ ଗାଡ଼ି ସେହି ଖାଲ ଭିତରେ ଯାଇ ପଡ଼େ । ପରେ ଏହାର ସଂବାଦ ଆମକୁ ମିଳେ । ଏହିପରି ଭାବରେ ବିହାରର ଗ୍ରାମାଞ୍ଚଳରେ ବିରାଟ ବିଦ୍ରୋହାତ୍ମକ ଆନ୍ଦୋଳନ ଅନେକ ଦିନ ଧରି  ଲାଗି ରହିଥିଲା । ତାର ଇତିହାସ ବୋଧହୁଏ ଅହିଂସାର ଉପାସକ କଂଗ୍ରେସବାଲା ସ୍ୱାଧୀନତା ପରେ ଲେଖିବାରେ ସଂକୋଚ ବୋଧ କରିଥିବେ !

ଯେଉଁ ଓଡ଼ିଆ ଛାତ୍ରମାନେ ଏଗାର ତାରିଖ ଆନ୍ଦୋଳନ ହେବା ଦିନ ସଂଧ୍ୟାରେ ଆସୁଥିବା ରେଳରେ ଚାଲିଆସିଥିଲେ ସେମାନଙ୍କ ଭିତରୁ କେହି କେହି ଓଡ଼ିଶାରେ ପ୍ରଚାର କରିଦେଲେ ଯେ ମୁଁ ମରିଯାଇଛି । ମୋ ଦେହରେ ଗୁଳି ବାଜିଥିଲା । ଅପରେସନ ଟେବୁଲରେ ମୁଁ ମରିଗଲି । ସେମାନେ ମୋ ରକ୍ତରଞ୍ଜିତ ଦେହ ରାସ୍ତାରେ ରିକ୍ସାରେ ବୁହା ହେବାର ଦୃଶ୍ୟ ଦେଖିଥିଲେ । ତାଙ୍କ କଳ୍ପନାରୁ ମରିଯିବା କଥାଟି ଯୋଡ଼ି ଦେଇଥିଲେ । ଏ ଖବର କିନ୍ତୁ ମୋର ପାଇବାର ଉପାୟ ନଥିଲା । କି ମୋ ଖବର ମଧ୍ୟ ଘରେ କେହି ପାଇପାରୁ ନଥିଲେ । ପୋଷ୍ଟ ନଥିଲା, ଟେଲିଗ୍ରାମ୍ ନଥିଲା । ଚାରିଆଡ଼େ ଗାଡ଼ିମଟର ବନ୍ଦ । କିଏ କାହାର ଖବର ରଖୁଛି ? ତେଣୁ ଆମ ଘରେ ସମସ୍ତେ କାନ୍ଦି ବୋବାଇ ରହିଥିଲେ ଏକମାସ ପର୍ଯ୍ୟନ୍ତ ।

ଗୋଟିଏ ମଜା କଥା ଥରେ ଘଟିଥିଲା । ଏହି ଘଟଣାର ଚାରିପାଞ୍ଚ ବର୍ଷ ପରେ ଜଣେ ଭଦ୍ରଲୋକ କଟକ ରାସ୍ତାରେ ହଠାତ୍ ମୋତେ ଦେଖି ଅବାକ ହୋଇ ଠିଆ ହୋଇଗଲେ । ଖାଲି କହିଲେ- ''ଆପଣ !''

ମୁଁ ବି ପ୍ରଥମେ କିଛି ବୁଝିପାରିଲି ନାହିଁ । ତା'ପରେ ବୁଝିଲି ଯେ ସେ ମୋର ଅତୀତ ଜୀବନର ପ୍ରେତାତ୍ମା ଦେଖୁଥିଲେ, ବଡ଼ ମଜା ଲାଗିଲା ।

ପାଟଣାରେ ସୈନ୍ୟ ମୁତୟନ ପରେ ସବୁ ଚୁପ୍‌ଚାପ୍ ହୋଇଗଲା । ସେ ସମୟରେ ଆମେ ଏବଂ ଆଉ କେତେଜଣ ଅଧ୍ୟାପକ ଜ୍ଞାନ ଚାନ୍ଦଙ୍କ ଘରେ ସନ୍ଧ୍ୟାବେଳେ ବସୁ । ଡକ୍ଟର ଜ୍ଞାନଚାନ୍ଦ ଦୁର୍ଦ୍ଧର୍ଷ ବ୍ରିଟିଶ୍ ଶାସନ କାଳରେ ମଧ୍ୟ ଜଣେ ଜଣାଶୁଣା ଜାତୀୟବାଦୀ ଓ ସମାଜବାଦୀ ବ୍ୟକ୍ତି ଥିଲେ । ଆମ ଆଲୋଚନାର ମୂଳ କଥା ଥିଲା ଭାରତ ଛାଡ଼ ଆନ୍ଦୋଳନ ବେଳେ ଯଦି ଜାପାନୀ ସୈନ୍ୟ ଭାରତରେ ଆସି ପହଞ୍ଚିଯିବେ ତାହାହେଲେ ଭାରତର ଅବସ୍ଥା କଣ ହେବ ? ବ୍ରିଟିଶ ସରକାରଠାରୁ ଜାପାନ ସରକାର ଆହୁରି ବେଶୀ ଅତ୍ୟାଚାରୀ । ଜାପାନୀ ସୈନ୍ୟଙ୍କର ଦକ୍ଷିଣ-ପଶ୍ଚିମ ଏସିଆରେ ଅତ୍ୟାଚାରର ବିଭୀଷିକା ବିଷୟରେ ଆମ ପାଖରେ ଖବର ଥାଏ । ଯାହା ହେଉ, ସେ ଦୁର୍ଭାଗ୍ୟ ଭାରତର ହୋଇ ନଥିଲା । ଜାପାନ ଓ ଜର୍ମାନୀର ବୀଭତ୍ସ ନାରକୀୟ କ୍ରିୟାକଳାପ ଯୋଗୁଁ ସୁଭାଷ ବୋଷଙ୍କର ସେମାନଙ୍କଠାରେ ସାହାଯ୍ୟ ଭିକ୍ଷା ଆମମାନଙ୍କୁ ଆଦୌ ଭଲ ଲାଗୁ ନଥିଲା ।

ପାଟଣାରେ ମାସେ କାଳ ଲୁଚି ରହିଲା ପରେ ବସ୍‌ରେ ଭିନ୍ନ ଭିନ୍ନ ସ୍ଥାନ ଦେଇ ମୁଁ ସମ୍ବଲପୁରରେ ପହଞ୍ଚିଲି । କାରଣ ସେତେବେଳ ପର୍ଯ୍ୟନ୍ତ ରେଳ ଲାଇନ୍ ମରାମତି ହୋଇନଥିଲା । ଏତେ ବ୍ୟାପକ ଭାବରେ ଲାଇନ୍ କଟା ଯାଇଥିଲା ଯେ ତାକୁ ପୁଣି ଆଉଥରେ ତିଆରି କରିବାକୁ ବହୁତ ଦିନ ଲାଗିଥିଲା । ଭାଇନା ସମ୍ବଲପୁର ଏସ୍.ଡି.ଓ. ଥିଲେ । ଘରେ ମୋତେ ଦେଖି ସମସ୍ତେ ଖୁସି ହେଲେ । ମାସେ କାଳ ମୃତ୍ୟୁ ବା ନିଖୋଜ ପରେ ଘରେ ପହଞ୍ଚିଛି ଶୁଣି ମୁଁ ଅବାକ୍ ହୋଇଗଲି । ଆଶ୍ଚର୍ଯ୍ୟର କଥା ଯେ ପ୍ରବଳ ପ୍ରତାପୀ ବ୍ରିଟିଶ୍ ସରକାର ବିରୁଦ୍ଧରେ ମୁଁ ଏପରି ଭାବରେ ସଂପୃକ୍ତ ହୋଇଯାଇଥିଲେ ମଧ୍ୟ ଭାଇନା ଥରେ ସୁଦ୍ଧା ମୋତେ କିଛି କହିନଥିଲେ । ଏହା ତାଙ୍କର ମହାନୁଭବତାର ପରିଚୟ ଦିଏ । ସବୁକଥାରେ ସେ ମୋତେ ଅଖଣ୍ଡ ସ୍ୱାଧୀନତା ଦେଇଥିବା ଯୋଗୁଁ ମୋ ଜୀବନ ଏପରି ଭାବରେ ବିକଶିତ ହେବାକୁ ସୁଯୋଗ ପାଇଥିଲା ।

ପ୍ରାୟ ଦୁଇମାସ ପରେ ମୁଁ ଯେତେବେଳେ ପାଟଣା ଫେରେ, ନୋଟିସ୍ ବୋର୍ଡ଼ରେ ଦେଖିଲି ଯେ ମୁଁ ହଷ୍ଟେଲରୁ ବିତାଡ଼ିତ ହୋଇଛି, କିନ୍ତୁ କଲେଜର ନାମ ଅଛି । ତା'ପରେ ପ୍ରିନ୍‌ସିପାଲ ବାଥେଜାଙ୍କ ସହ ଦେଖା କଲି । ସେ ମୋତେ ବହୁତ ବୁଝାଇଲେ ଯେ ବ୍ରିଟିଶ୍ ସରକାରଙ୍କର ନିକଟ ଭବିଷ୍ୟତରେ ଭାରତ ଛାଡ଼ିବାର କୌଣସି ସମ୍ଭାବନା ନାହିଁ । ତେଣୁ ମୁଁ ଯଦି ଦୁଃଖ ପ୍ରକାଶ କରି ଗୋଟିଏ ମୁଚାଲିକା ଲେଖିଦେବି ଯେ ଭବିଷ୍ୟତରେ ଆଉ କେବେ ଏପରି ଆନ୍ଦୋଳନରେ ଯୋଗ ଦେବିନାହିଁ, ତା'ହେଲେ ମୋତେ ପୁଣି ହଷ୍ଟେଲରେ ରଖାଯାଇପାରିବ । ମାତ୍ର କିଛିଦିନ ତଳେ ପାଟଣା ରାଜପଥରେ ସ୍ୱାଧୀନତା ସଂଗ୍ରାମୀ ଶହୀଦର ରକ୍ତରେ ରଞ୍ଜିତ ହୋଇ ମୁଁ ଯେପରି ବୀରର ସମ୍ମାନ ପାଇଥିଲି ତା'ପରେ ଲେଖିଦେବି ଯେ ମୋର ଭୁଲ୍ ହୋଇଛି, ମୋର ଆନ୍ଦୋଳନରେ ବିଶ୍ୱାସ ନାହିଁ ? ଏହା କ'ଣ ମୋ କୋଡ଼ରେ ଚିରଦିନ ପାଇଁ ଆଖି ବୁଜି ଦେଇଥିବା ଶହୀଦ୍ ଆତ୍ମା ପ୍ରତି ପ୍ରବଳ ପ୍ରବଞ୍ଚନା ନୁହେଁ ? ତେଣୁ ଏ ପ୍ରସ୍ତାବଟି ମୋତେ ଏତେ ଉତ୍ତେଜିତ କରିଦେଲା ଯେ ମୁଁ ଅତି କଠୋର ଭାବରେ ଏହାକୁ ପ୍ରତ୍ୟାଖ୍ୟାନ କଲି ଏବଂ ବାଥେଜାଙ୍କୁ ବ୍ରିଟିଶ୍ ସରକାରଙ୍କର ଚାଟୁକାର ବୋଲି କହିଥିଲି । ତାପରେ ବାଥେଜା କହିଲେ—

''ଦେଖ ମୋର ଭଲ ପିଲାଙ୍କ ପ୍ରତି ବହୁତ ଦୁର୍ବଳତା ରହିଛି । ତେଣୁ ମୁଁ କଲେଜରୁ ତୁମକୁ ବହିଷ୍କାର କରିବି ନାହିଁ ।''

କିନ୍ତୁ ଶାସ୍ତି ଆହୁରି ବଢ଼ାଇଦେଲେ । ପଚାଶଟଙ୍କା ଜୋରିମାନା ଏବଂ ବ୍ଲାକ୍ ରେଜିଷ୍ଟ୍ରାର୍‌ରେ ମୋର ନାମ ରଖିଦେଲେ । ଅର୍ଥାତ୍ ପାଶ୍ ପରେ ମୁଁ ଯେପରି କଲେଜରୁ ଉତ୍ତମ ଚରିତ୍ରର ସାର୍ଟିଫିକେଟ୍ ନ ପାଏ ।

ହଷ୍ଟେଲରୁ ବିତାଡ଼ିତ ହୋଇ ମୁଁ ଗୋଟିଏ ଘରୋଇ ମେସ୍‌ରେ ଆସି ରହିଲି । ତାହାର ନାମ ଥିଲା 'ପାଗୋଡ଼ା' । ଦୋତାଲା ଉପରେ ବଖରାଟିଏ ଘର ଅଲଗା ଥିଲା । ମୁଁ ଅଧିକ ଭଡ଼ା ଦେଇ ସେଠାରେ ରହିଲି । ମୋର ସ୍ୱାଧୀନତା ଆହୁରି ବଢ଼ିଗଲା । ମୋ ବଖରାର ସାମନା ଖୋଲା ଛାତରେ ଫୁଲକୁଣ୍ଡ ଆଣି ସଜାଇଲି । ତା' ମଝିରେ ଆରାମଚୌକୀ ପକାଇ ଥାଏ । ଘର ଭିତରେ ବାଘ ଭାଲୁ ଛାଲସବୁ ପଡ଼ିଥାଏ । ରୁମାଲରେ Evening in Paris ଅତର ପକାଇ ଫୁଲକୁଣ୍ଡରେ ବନ୍ଧା ହୋଇଥାଏ । ମୁଁ ତା' ପଛରେ ବସି ପଢ଼େ । ମୁଁ ସେଠାରେ ପାଗୋଡ଼ାର ରାଜକୁମାର ବୋଲି ଆଖ୍ୟାୟିତ ହୋଇଥିଲି । ବହୁ ଧରଣର ଛାତ୍ର ଓ ଚାକିରିଆ ସେଠାରେ ରହୁଥିଲେ । ପ୍ରତ୍ୟେକେ ଜଣେ ଜଣେ ଅଦ୍ଭୁତ ଧରଣର ଲୋକ । ମଝିରେ ମଝିରେ ସେମାନଙ୍କ ଭିତରୁ ଜଣେ ଜଣେ ଆସି ତାଙ୍କର କରୁଣ ଜୀବନ କାହାଣୀ ମୋତେ କହନ୍ତି । ସେମାନଙ୍କ ଭିତରେ ମୋର ସମୟ ଭଲ କଟୁଥିଲା । ମୁଁ ପ୍ରତିଦିନ ଚାରି-ଛଅଘଣ୍ଟା ପଢ଼ିଦିଏ । ତା'ପରେ ଚାରିଆଡ଼େ ବୁଲେ । ପାଟଣା ସଙ୍ଗୀତ କ୍ଲବ୍‌ର ସଭ୍ୟ ହେଲି । ସେଠାରେ ଗୀତର ଆସର ରାତି ଏଗାରଟାରେ ଆରମ୍ଭ ହୁଏ । ଭୋର ଚାରିଟାରେ ସରେ । ବିଖ୍ୟାତ ସଙ୍ଗୀତଜ୍ଞ ସବୁ ସେଠାକୁ ଆସନ୍ତି । ସୁସଙ୍ଗୀତଜ୍ଞ ପଣ୍ଡିତ ରବି ଶଙ୍କର ଥରେ ରାତି ଦଶଟାରେ ତାଙ୍କର ଆସର ଆରମ୍ଭ କଲେ ଯେ ଭୋର ପାଞ୍ଚଟା ପର୍ଯ୍ୟନ୍ତ । କେବଳ ଦୁଇଟି ଧାଡ଼ି ଶାସ୍ତ୍ରୀୟ ସଙ୍ଗୀତ । 'ପ୍ରେମ୍ ଯମୁନାର ତୀରେ ହିଆ ମୋର୍ କେନ୍ଦେ ମରେ' । କେତେ ଠାଣିରେ ସେ ଏହି ପଦକ ଗୀତ ଗାଉଥିଲେ । ଆମେସବୁ ଭୋଳ ହୋଇ ଶୁଣୁଥିଲୁ । କିନ୍ତୁ ଆଜିକାଲି ମୋତେ ଆଉ ଶାସ୍ତ୍ରୀୟ ସଙ୍ଗୀତ ଭଲ ଲାଗୁନାହିଁ ।

ଏସବୁ ହୋ ହଲ୍ଲା ଭିତରେ ରହି ମୁଁ କିପରି ପ୍ରଥମ ଶ୍ରେଣୀ ପାଇବି ଏ ବିଷୟରେ ମୋର ବନ୍ଧୁମାନଙ୍କର ବହୁତ ସନ୍ଦେହ ଥିଲା । ଏପରି ଜଣେତ ମୋ ସାଥିରେ ବାଜି ମାରିଥିଲେ ଯେ ମୁଁ ଯଦି ପ୍ରଥମ ଶ୍ରେଣୀ ପାଇବି ସେ ମତେ ଶହେଟଙ୍କା ଦେବେ । ମୁଁ ମଧ୍ୟ କହିଥିଲି ଯେ ମୁଁ ପ୍ରଥମ ଶ୍ରେଣୀ ନ ପାଇଲେ ତାଂକୁ ନିଶ୍ଚୟ ଶହେଟଙ୍କା ଦେବି । ବର୍ତ୍ତମାନ ପର୍ଯ୍ୟନ୍ତ ସେ ଶହେ ଟଙ୍କା ତାଙ୍କଠାରୁ ଆଦାୟ ହୋଇ ନାହିଁ । ସେ ଗୟାରେ ଓକିଲ ଅଛନ୍ତି । ପରେ ସେ ଲେଖିଥିଲେ ଯେ ମୁଁ ଗୟା ଗଲେ ସେ ଶହେଟଙ୍କା ଜାଗାରେ ମୋ ପାଇଁ ହଜାରେ ଟଙ୍କା ଖରଚ କରିବେ ।

ମୋର ଦୃଢ଼ ବିଶ୍ୱାସ ଥାଏ ଯେ ମୁଁ ନିଶ୍ଚିତ ଭାବରେ ପ୍ରଥମ ଶ୍ରେଣୀ ପାଇବି । ମୋର ବି.ଏ. ସମୟରେ ସାଧନା ଯୋଗୁଁ ଯେଉଁ ଆତ୍ମବିଶ୍ୱାସ ମୋଠାରେ ସୃଷ୍ଟି ହୋଇଥିଲା, ତାହା ଅମ୍ଳାନ ଥିଲା । କଲେଜ ଥିବା ସମୟରେ ଦିନକୁ ଚାରିଘଣ୍ଟା ଏବଂ କଲେଜ ନଥିଲା ବେଳେ ଦିନକୁ ଛଅ ଘଣ୍ଟା ଗଭୀର ମନୋନିବେଶ ସହ ମୁଁ ପଢ଼ିଦିଏ । ତାପରେ ବହୁତ ସମୟ ସିନେମା ଦେଖିବା, ସଙ୍ଗୀତ ଆସରରେ ଯୋଗ ଦେବା, ପିକ୍‌ନିକ୍ କରିବା, ପ୍ରେମ

ବିଷୟରେ କଳ୍ପନା ଜଳ୍ପନା କରିବା, ପ୍ରେମଜନିତ ବ୍ୟର୍ଥତାର ବିଳାସ ଉପଭୋଗ କରିବା, ଇତ୍ୟାଦି ।

ପ୍ରତିଦିନ ନିର୍ଦ୍ଦିଷ୍ଟ ସମୟ ପଢ଼ି ସାରିଲା ପରେ, ବଢ଼ିଆ ବଢ଼ିଆ ଜାମାପଟା ପିନ୍ଧି ମୋର ସାଇକେଲ୍‌ରେ ଚଢ଼ି...ସାଇକେଲ୍‌ର ନାଁ ଥାଏ ଚୈତକ, - ମୁଁ ସନ୍ଧ୍ୟାରେ ବୁଲି ବାହାରେ । ରାତି ଏଗାରଟାରେ ଫେରେ । ସବୁଠୁ ଦାମିକା କନାର ସୁଟ୍ ନାମଜାଦା ସିଲାଇ ଦୋକାନ ପଞ୍ଜାବ ଟେଲରିଙ୍ଗ୍‌ରେ ତିଆରି ହୋଇଥାଏ । ଘରୁ ପଇସା ଯାହା ପାଏ, ତାହା ନିଅଣ୍ଟ ହେଲେ ସନ୍ଧ୍ୟାରେ ଘଣ୍ଟାଏ ଟିଉସନ୍ କରି ମାସକୁ ଚାଳିଶ-ପଚାଶ ଟଙ୍କା ରୋଜଗାର କରିନିଏ । ବିହାରୀ ପିଲାମାନେ ଭାରି ଧନୀ । ସେମାନଙ୍କ ପାଇଁ ଟଙ୍କା କିଛି ନୁହେଁ । ଏହି ଟଙ୍କାରେ ମୋର ସୌଖୀନ କାମ ହୁଏ । ଗୋଟିଏ ପିଲା ମୋ ବୋଲହାକ କରିବା ପାଇଁ ମୋ ବଖରା ଆଗରେ ବସିଥାଏ । ତା ନାଁ ଥିଲା ଶହୀଦ୍ । ଦରମା ମାସକୁ ପାଞ୍ଚଟଙ୍କା । ମୋଟାମୋଟି ମୁଁ ଥିଲି ପାଗୋଡ଼ାର ଯୁବରାଜ । ତାସ୍ ରାଜ୍ୟର ରାଜା ପରି ମୁଁ ଅବାସ୍ତବ ରାଜ୍ୟର ଯୁବରାଜ ଥିଲି । ମନ୍ଦ ଜୀବନ ନୁହେଁ ।

୧୯୪୨ ଅକ୍ଟୋବରଠାରୁ ୧୯୪୩ ଅକ୍ଟୋବର ପର୍ଯ୍ୟନ୍ତ ମୁଁ ଏହି ପାଗୋଡ଼ାରେ କଟାଇଥିଲି । ଏହି ବର୍ଷର ଅନୁଭୂତି ଅତ୍ୟନ୍ତ ରୋମାଞ୍ଚକର । ପାଗୋଡ଼ାରେ ରହୁଥିବା କେତେ ଅଦ୍ଭୁତ ଲୋକଙ୍କ ସହିତ ମୋର ବଂଧୁତା ହେଲା । ଜଣେ ଚିଟାଗଂଜର ମୁସଲମାନ ଯୁବକ ବିଏ ପଢୁଥିଲା - ସେ ମୋ ବଖରାକୁ ବରାବର ଆସେ - ସେ ଜଣେ ହିଂଦୁ ଝିଅ ସହିତ ଚିଟାଗଂଜରେ ପ୍ରେମରେ ପଡ଼ିଥିଲା । ତା କଥା ମୋତେ ଅନବରତ କହେ । ତାଠାରୁ କୌଣସି ଚିଠି ବହୁତ ଦିନ ଧରି ନ ଆସିଲେ ସେ ମଦ ଖାଏ - ମଦ ଖାଇ ମୋ ବଖରାରେ ନାନା କଥା କହିଯାଏ । ସେ ସମୟରେ ଦେବ ଦାସ ଚଳଚ୍ଚିତ୍ରରେ ପ୍ରମଥେସ୍ ବଡୁଆଙ୍କର ପ୍ରେମିକାକୁ ନ ପାଇ ମଦ ଖାଇ ମାତାଲ ହେବାର ଚିତ୍ର ଯୁବକମାନଙ୍କ ପାଇଁ ବହୁତ ଆକର୍ଷଣୀୟ ଥିଲା- ଏହି ଭଦ୍ରଲୋକ ପ୍ରେୟସୀ ଚିଠି ପାଇଲା ଦିନ ଆନନ୍ଦରେ ମଦ ଖାଆନ୍ତି - ନ ପାଇଲେ ମଧ୍ୟ ଦୁଃଖରେ ମଦ ଖାଇ ମୋ ଆଗରେ କାନ୍ଦନ୍ତି - ଅଜସ୍ର କାନ୍ଦଣା ତାଙ୍କର । ମୋର ତାଙ୍କ ପ୍ରତି ବହୁତ ଦୟା ହୁଏ – ଫଳରେ ମୁଁ ତାଙ୍କର ଜଣେ ଅତରଂଗ ବନ୍ଧୁ ହୋଇଗଲି । କିନ୍ତୁ କୌଣସିମତେ ତାଙ୍କ ସହିତ ମଦ ଖାଇ ପାରିଲି ନାହିଁ । ମଦୁଆମାନେ ତ ଅନ୍ୟକୁ ପିଇବା ପାଇଁ ଜବରଦସ୍ତ କରନ୍ତି । ମଦ ନ ଖାଇଲେ ସିନା ତାର ଦୁଃଖ ବେଦନା ଭଲ କରି ବୁଝିପାରିବି ବୋଲି ତାଙ୍କୁ ବୁଝାଏ । ସେ ବୁଝିଯାଏ । ମୁଁ ପାଟନା ଛାଡ଼ି ଆସିଲା ପରେ ତାର ଆଉ କୌଣସି ଖବର ମୁଁ ପାଇପାରିଲି ନାହିଁ । ଆଜିଯାଏ ତାର କରୁଣ ମୁହଁଟି ମୋ ମନରେ ରହିଯାଇଛି ।

କେଉଁ ସଂଗୀତ ଶିକ୍ଷକ ତାର ଛାତ୍ରୀକୁ ଭଲ ପାଇ ପାଗଳ ତ ଆଉ କିଏ ତାର ମାଉସୀ ଝିଅକୁ ଭଲ ପାଇ ଘରେ ନାନା ସମସ୍ୟା ସୃଷ୍ଟି କରି ଚାଲିଛି । କାହାର ସ୍ତ୍ରୀ କାହାର ବାପା ଆସି ପାଗୋଡ଼ାରେ ଏଥିଲାଗି ହା ହଲ୍ଲା କରନ୍ତି । କେଜାଣି କାହିଁକି ଏପରି ଅଦ୍ଭୁତ ଲୋକେ ମୋ ପାଖରେ ଆସି ତାଙ୍କ ମନ କଥା କହନ୍ତି । ମୁଁ ଧୈର୍ଯ୍ୟର ସହିତ ଶୁଣେ ବୋଲି ଏମାନଙ୍କର ମୁଁ ଘନିଷ୍ଠ ବନ୍ଧୁ ହୋଇଯାଇଥାଏ ।

ହଷ୍ଟେଲର କୌଣସି ନିୟନ୍ତ୍ରଣ ନଥିବାରୁ ଏବଂ ଘରୋଇ ମେସ୍‌ରେ ନାନାଧରଣର ଲୋକେ ରହୁଥିବାରୁ ମୋର ଏ ପ୍ରକାର ଲୋକଙ୍କ ସହିତ ମିଶିବା ସ୍ୱାଭାବିକ । ଏମାନେ ପ୍ରାୟ ସମସ୍ତେ ହାତରେଖା, ଜ୍ୟୋତିଷ ବିଦ୍ୟାରେ ପ୍ରବଳ ବିଶ୍ୱାସୀ । ଫଳରେ ହାତ ଦେଖି ପାରୁଥିବା ବହୁତ ଲୋକ ଏଠାକୁ ଆସନ୍ତି, ମୋର ଏହି ବନ୍ଧୁମାନେ ମୋ ପାଖକୁ ସେମାନଙ୍କୁ ନେଇ ଆସନ୍ତି । ମୋର ବହୁତ ଆଗ୍ରହ ହେଲା ସେମାନଙ୍କର ହାତରେଖା ବିଶ୍ଳେଷଣ ପଦ୍ଧତି ବିଷୟରେ ଜାଣିବା ପାଇଁ । ବହୁ ଜ୍ୟୋତିଷୀଙ୍କ ସହିତ ଦେଖାହେଲା ପରେ ମୁଁ ଦେଖିଲି ଯେ ହାତ ରେଖା ବିଷୟରେ କିଛି ନଜାଣି ମଧ୍ୟ କେତୋଟି ସାଧାରଣ ମନସ୍ତାତ୍ତ୍ୱିକ ନୀତି ଉପରେ ପର୍ଯ୍ୟବସିତ ଏମାନଙ୍କର ଭବିଷ୍ୟତବାଣୀ । ଏସବୁକୁ ନେଇ ମୁଁ କେତେଗୁଡ଼ିଏ ହାତଦେଖା ରୀତି ବାହାର କଲି ଏବଂ ହାତ ରେଖା ବିଷୟ ନ ଜାଣି ମଧ୍ୟ ମୋର ଏ କ୍ଷେତ୍ରରେ ସୁନାମ ହୋଇଗଲା । ଫଳରେ ମେଡ଼ିକାଲ କଲେଜରେ ପଢୁଥିବା ଜଣେ ଆଙ୍ଗ୍ଲୋ ଇଣ୍ଡିଆନ ଛାତ୍ରୀର ହାତ ଦେଖିବା ପାଇଁ ମୋତେ ଡାକରା ଆସିଲା । ସେ ଭଦ୍ରମହିଳା ଜଣେ ବିବାହିତ ବିହାରୀ ବ୍ରାହ୍ମଣଙ୍କୁ ଭଲ ପାଉଥିଲା ଏବଂ ସେଥିଲାଗି ତାଙ୍କ ଘରେ ବିରାଟ ବିଭ୍ରାଟ ଦେଖାଦେଇଥିଲା । ମୁଁ ଏହି ଖବରଟି ତାଙ୍କର ସହପାଠିନୀଠାରୁ ଶୁଣିଥିଲି । ତାପରେ ଦିନେ ଗୋଟିଏ ସ୍କେଲ ଓ ଡିଭାଇଡର ଧରି ସେଠାରେ ପହଞ୍ଚିଲି । ତା ହାତ ରେଖାକୁ ନାନା ଭାବରେ ମାପଚୁପ କଲି ଅଧଘଣ୍ଟା ଯାଏଁ । ତାପରେ କହିଲି ଯେ ସେ ସେତେବେଳକୁ ଦୁଇଜଣଙ୍କୁ ଭଲ ପାଉଛି । ଯାହାକୁ ବର୍ତ୍ତମାନ ସବୁଠୁ ବେଶି ପାଉଛି ସେ ଲୋକ କ୍ରମେ ତା ଜୀବନରୁ ଅପସରିଯିବ- ପ୍ରାୟ ବର୍ଷେ ଭିତରେ ଏହା ଘଟିବ । ଏହା ତାକୁ ଏପରି ପ୍ରଭାବିତ କରିଥିଲା ଯେ ଚାରିମାସ ପରେ ହିଁ ତାର ସେହି ବିବାହିତ ଲୋକ ସହିତ ଛାଡ଼ବାଡ଼ ହୋଇଗଲା ବୋଲି ଶୁଣିଲି । ତା ଅର୍ଥ ଏସବୁରେ ବିଶ୍ୱାସ କରୁଥିବା ଲୋକଙ୍କୁ ହିଁ ଏପ୍ରକାର ଭବିଷ୍ୟତବାଣୀ କାମ୍ଚୁ କରୁଥାଏ । ଯାହାହେଉ ମୁଁ ଜଣେ ନିରୀହ ବିବାହିତା ସ୍ତ୍ରୀର କିଛି ଉପକାରରେ ଆସିଲି ।

ମେସରେ ରହିଥିବାରୁ ସିନା ଏପରି ଅଦ୍ଭୁତ ଧରଣର ଲୋକଙ୍କ ସହିତ ମିଳାମିଶା ହେଲା । ଏହା ଜୀବନରେ ବହୁତ ଉପାଦେୟ ଅନୁଭୂତି ବୋଲି ମୋର ମନେହୁଏ । ସଂପୂର୍ଣ୍ଣ ସ୍ୱାଧୀନତା ଯୋଗୁ ଯେଉଁଠି ସେଠି ଯାଇ ଖାଇଦିଏ । ଯାହା ଭଲ ଲାଗିଲା ତ ଇଚ୍ଛାନୁସାରେ କଲି, ବୁଲିଲି ତ ବୁଲିଲି । ଏସବୁ ଭିତରେ କିନ୍ତୁ ମୋର ଅଭ୍ୟାସଗତ ଛଅ ଘଣ୍ଟା ପାଠ ପଢୁଥାଏ ।

ପ୍ରାୟ ପଚାଶ ବର୍ଷ ତଳେ ଏପରି ଜଣେ ବଂଧୁ କଲିକତାରୁ ପୁରୀ ଯାଉଥିଲେ ପରିବାର ସହିତ । ତାଙ୍କର ମନେ ପଡ଼ିଗଲା ଯେ କଟକରେ ମୁଁ ଥାଏ । ମୋର ଠିକଣା ସେ ଜାଣିନଥିଲେ । ସେ ବିଚରା କଟକ ଉପକଣ୍ଠରୁ ପଚାରି ପଚାରି ସମାଜ ସଂପାଦକ ରାଧାନାଥ ରଥ ଓ ତାପରେ ଡାକ୍ତର ରାଧାନାଥ ରଥଙ୍କୁ ଦେଖା କରିସାରିଲା ପରେ ମୋ ପାଖରେ ପରିବାର ସହିତ ପହଞ୍ଚିଥିଲେ । ତାଙ୍କୁ ମୁଁ ଆଦୌ ଚିହ୍ନି ପାରିଲି ନାହିଁ । ତାଙ୍କ ନାମ ଏବଂ ପାଗୋଡ଼ାର ମଜାମଜା କଥା ପଦେ ଦିପଦ କହିଦେଲା ପରେ ମୁଁ ତାଙ୍କୁ କୁଣ୍ଢାଇ ପକାଇଲି । ସେ ମୋ ବଗିଚାରେ ବୁଲି ବୁଲି ମୁଗ୍ଧ ହୋଇ କହିଲେ ଯେ ତୁମେ ଆମକୁ ଭବିଷ୍ୟତରେ କିପରି ଘରେ ରହିବ ବୋଲି ଯାହା କହୁଥିଲ ସବୁ ଠିକ୍ ସେହିପରି

ଦେଖୁଛି । ଅଧ୍ୟାପନା କାର୍ଯ୍ୟରେ ମଧ ଏତେ ନାମ କରିଛ ଯେ ତୁମ କଥା କହୁ କହୁ ଏଠାକାର ଆଉ ଦୁଇ ରାଧାନାଥ ରଥ ଗଦଗଦ ହୋଇ ତୁମ ବିଷୟରେ ଆମକୁ କହିଲେ ।

ଅତୀତର ଅନୁଭୂତି ଏପରି ଭାବରେ ସ୍ମୃତି ମଧୁର ହୋଇ ରହେ ଯଦି ତୁମେ ତାକୁ ଆନ୍ତରିକତା ସହିତ ଗ୍ରହଣ କରିଥାଅ । ଲୋକଙ୍କୁ ଭଲ ପାଇବା ଉଦ୍ଦେଶ୍ୟରେ ହିଁ ଯଦି ତାଙ୍କ ସହିତ ମିଳାମିଶା କରିଥାଅ । କାରଣ ମଣିଷଙ୍କୁ ଭଲ ପାଇବାଠୁ ବଳି ବଡ଼ ଜୀବନ ଦର୍ଶନ ଆଉ କିଛିନାହିଁ । ମୋଠାରେ ଭଗବାନ ବିଶ୍ୱାସ ତୁଟିଗଲା ପରେ ମନୁଷ୍ୟକୁ ଭଲ ପାଇବାର ଦର୍ଶନ ବଳବତ୍ତର ହୋଇ ଚାଲିଥାଏ-ସାରା ଜୀବନ ପୃଥିବୀ ସାରା ବୁଲି ବୁଲି ଏହି ସତ୍ୟଟି ମୁଁ ଉପଲବ୍ଧି କରିପାରିଛି । ସେତେବେଳେକାର ପାଗୋଡ଼ା ମେସ୍‌ଟି ବିଶ୍ୱର ବିଭିନ୍ନ ଚରିତ୍ରର ଗୋଟିଏ କ୍ଷୁଦ୍ର ସମାବେଶ ବୋଲି ମୋର ମନେ ହୁଏ ।

ଜୀବନର ଅଭିନୟ ରଙ୍ଗମଞ୍ଚର ଏହା ଗୋଟିଏ ଦୃଶ୍ୟ ଯାହାକି ଅତୀତ ଜୀବନର ଚକର ଛେଉଣ୍ଡ ଦୃଶ୍ୟପଟ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଚକର ଛେଉଣ୍ଡର ରାଜକୀୟ ପୋଷାକରେ ତାର ଚୈତକ୍ ସାଇକେଲ୍‌ରେ ବସି ଛାତିକି ଫୁଲାଇ ପାଟଣା ସହରରେ ଦିଗ୍‌ବିଜୟ କରି ବାହାରିବାରେ ଅଭିନୟର ଗୋଟିଏ ପରିପୂରକ ଦୃଶ୍ୟପଟ । ଜୀବନର ବାସ୍ତବତା ଅପେକ୍ଷା ଅବାସ୍ତବ ସ୍ୱପ୍ନର ମାତ୍ରା ତଥା ପରିସର ବହୁତ ବେଶୀ । ଏହି ରାଜକୁମାର ଦୃଶ୍ୟପଟଟି ମୋ ଗାଁ ସାଙ୍ଗ ପିଲାଙ୍କ ଆଗରେ ଦେଖାଇବାର ବିରାଟ ବାସନା ସବୁବେଳେ ରହିଯାଇଥାଏ । ପାଟଣାରେ ଏହାର ମୂଲ୍ୟ କଣ ? ଯେଉଁ ଗାଁ ପିଲାମାନେ ମତେ ଘାସକଟା କାଠହଣା ବେଳେ ହତାଦର କରୁଥିଲେ, ଯେଉଁମାନଙ୍କ ଯୋଗୁ ମୋ ମନରେ ହୀନମନ୍ୟତା ଏତେ ବେଶୀ ଗଭୀର ରେଖାପାତ କରିଥିଲା—ସେମାନଙ୍କ ଅନୁପସ୍ଥିତିରେ ମଧ ସେମାନଙ୍କର ସ୍ମୃତି ବୋଧହୁଏ ମୋତେ ରାଜକୁମାର ଦୃଶ୍ୟପଟରେ ଅଭିନୟ କରିବାରେ ବହୁତ ବେଶୀ ଉତ୍ସାହିତ କରୁଥିଲା । ତେଣୁ ସେମାନଙ୍କୁ ମୁଁ ଜୀବନର ଯେକୌଣସି ଶୁଭ ମୁହୂର୍ତ୍ତରେ ମଧ ଭୁଲିପାରି ନଥିଲି ।

ପ୍ରଥମ ଶ୍ରେଣୀରେ ପାଶ୍ କରି କୁଳପତିଙ୍କଠାରୁ ଡିଗ୍ରୀ ଆଣିବା ବେଳେ, ଲଣ୍ଡନ ବିଶ୍ୱବିଦ୍ୟାଳୟର ଗବେଷଣାଗାର ଭିତରେ, ଆମେରିକାର ସର୍ବୋଚ୍ଚ ପ୍ରାସାଦ ୧୦୨ ମହଲା ଅମ୍ପାୟାର ଷ୍ଟେଟ୍ ବିଲ୍‌ଡିଙ୍ଗ୍ ଉପରେ, ମସ୍କୋ ବିଦ୍ୟାଳୟ, ପ୍ରଭୃତି ସ୍ଥାନରେ ଏହି ଚକର ଛେଉଣ୍ଡ ଦୃଶ୍ୟପଟଟି ପଟ୍ଟଭୂମି ରୂପେ ଚକ୍ ଚକ୍ କରୁଥାଏ । ଜୀବନ ଅଭିନୟର ଅଗଣିତ ଦୃଶ୍ୟପଟ ଭିତରେ ନିରବଚ୍ଛିନ୍ନ ସମ୍ପର୍କହିଁ ମନୁଷ୍ୟର ବ୍ୟକ୍ତିତ୍ୱକୁ ବଳିଷ୍ଠ କରେ । ସେ ଖଣ୍ଡ ଖଣ୍ଡ କ୍ଷୁଦ୍ର ଫୁଲହାରର ସମଷ୍ଟି ନ ହୋଇ ଗୋଟିଏ ଗୋଛାଳିଆ ବିଚିତ୍ର ରଙ୍ଗର ଫୁଲର ନିରବଚ୍ଛିନ୍ନ ପ୍ରଲମ୍ବିତ ପୁଷ୍ପହାର ରୂପେ ନିଜକୁ ନିଜେ ସୁରଭିତ କରିପାରିଥାଏ । ବହୁଧା ବିଭକ୍ତ ବ୍ୟକ୍ତିତ୍ୱ ଅପେକ୍ଷା ଏକତ୍ୱନିଷ୍ଠ ଆତ୍ମପ୍ରତ୍ୟୟାତ୍ମିକ ଶକ୍ତି ଅତି ବେଶୀ ।

ଆଉ ଗୋଟିଏ ରାଜନୈତିକ ଘଟଣା ଘଟିଥିଲା ଏହି ସମୟରେ । ମୁଁ ଥିଲି ପାଟଣା କଲେଜର ଓଡ଼ିଆ ସମାଜର ସେକ୍ରେଟାରୀ । ଆମର ଉପଦେଷ୍ଟା ଥିଲେ ଅର୍ଥନୀତି ଅଧ୍ୟାପକ ଗୋରଖନାଥ ସିହ୍ନା । ୧୯୪୨-୪୩ରେ ଯୁଦ୍ଧ ସମୟରେ ବ୍ରିଟିଶ୍ ସରକାର ସବୁ ନେତାଙ୍କୁ ଜେଲ୍‌ରେ ଭର୍ତ୍ତି କରିଦେଲେ । ୧୯୪୨ ମସିହା ଅଗଷ୍ଟ ମାସରେ ଭାରତରେ ଏତେବଡ଼ ବିପ୍ଳବ ଘଟିଗଲା । ଏସବୁ ସତ୍ତ୍ୱେ ବି ଓଡ଼ିଶାରେ ପାରଳା ମହାରାଜାଙ୍କ ମୁଖ୍ୟମନ୍ତ୍ରୀତ୍ୱରେ

ଗୋଟିଏ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ସେହି ମନ୍ତ୍ରିମଣ୍ଡଳର ଶିକ୍ଷାମନ୍ତ୍ରୀ ହେଲେ । ଗୋଦାବରୀଶ ମିଶ୍ରଙ୍କ ସହିତ ମୋର ଭଲ ପରିଚୟ ଥାଏ । ପୁରୀରେ ବହୁତ ଥର ତାଙ୍କ ସହିତ ସମୁଦ୍ର କୂଳରେ ମୁଁ ବୁଲିବାର ସୁଯୋଗ ପାଇଥିଲି । ତାଙ୍କୁ ମୋତେ ବହୁତ ଭଲ ଲାଗୁଥିଲା । କିନ୍ତୁ କଂଗ୍ରେସୀ ନେତା ହୋଇ ସୁଦ୍ଧା ଭାରତର ସ୍ୱାଧୀନତା ସଂଗ୍ରାମ ବିରୁଦ୍ଧରେ ବିଶ୍ୱାସଘାତକତା କରି କିଛିକାଳ ପାଇଁ ମନ୍ତ୍ରୀ ହୋଇ ବ୍ରିଟିଶ୍ ସରକାରଙ୍କର ସ୍ତବଗାନ କରିବାଟା ମୋତେ ଭାରି ଖରାପ ଲାଗିଲା । ତେଣୁ ସେ ସମୟରେ ଗୋଦାବରୀଶ ବାବୁଙ୍କର ଓ ତାଙ୍କର ବିଶେଷ ଭାବରେ ପ୍ରିୟ ପ୍ରଚାରକ ଚିନ୍ତାମଣି ମିଶ୍ରଙ୍କର ବକ୍ତୃତା ଶୁଣିଲେ ମୋର ହାଡ଼ ଜଳିଯାଉଥାଏ । ପାଟଣା ସେକ୍ରେଟେରୀଏଟ୍ ଆଗରେ ମରିଥିବା ପିଲାଙ୍କ କଥା ମୋର ମନେପଡ଼ି ଯାଉଥିଲା । ଗୋଦାବରୀଶ ବାବୁ ସାମାନ୍ୟ ସ୍ୱାର୍ଥ ପାଇଁ ଏତେବଡ଼ ବିଶ୍ୱାସଘାତକତା କାହିଁକି କଲେ ତାହା ବୁଝିବା ବଡ଼ କଷ୍ଟକର ବ୍ୟାପାର ଥିଲା ।

ସେ ମନ୍ତ୍ରୀ ହେଲା ପରେ ଥରେ ପାଟଣା ଆସିଥିଲେ । କେତେଜଣ ଓଡ଼ିଆ ଛାତ୍ର ପାଟଣା କଲେଜ ଓଡ଼ିଆ ସମାଜ ତରଫରୁ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ମୋତେ ଅନୁରୋଧ କଲେ । ବିଶ୍ୱାସଘାତକ ଦେଶଦ୍ରୋହୀଙ୍କୁ କୌଣସି ସମ୍ମାନ ଦେଖାଇବା ଉଚିତ ନୁହେଁ ବୋଲି ମୁଁ ସେ ସମ୍ବର୍ଦ୍ଧନା ସଭା କରାଇ ଦେଲିନାହିଁ । ଏଥିରେ ସମାଜର ଉପଦେଷ୍ଟା ଅଧ୍ୟାପକ ଗୋରଖନାଥ ସିହ୍ନା ମୋ ସହିତ ଏକମତ ହେଲେ । ତାପରେ ମୁଁ ସେକ୍ରେଟେରୀ ପଦରୁ ଗଲା ପରେ ଅନ୍ୟମାନେ ଓଡ଼ିଆ ସମାଜରେ ତାଙ୍କ ସମ୍ବର୍ଦ୍ଧନା ଦେଇଥିଲେ । ଏସବୁ ଘଟଣା ଗୋଦାବରୀଶ ବାବୁଙ୍କୁ ତାଙ୍କର ସ୍ତାବକମାନେ ଜଣାଇ ଦେଇଥିଲେ । ମୁଁ ଏଥିରେ ବିଚଳିତ ହୋଇ ନଥିଲି, ବରଂ ମୁଁ ଚାହୁଁଥିଲି ଯେ ସେ ମୋର ଏହି ଦୃଢ଼ମତ ଜାଣନ୍ତୁ । ଏହି କଥା ନେଇ ଗୋଦାବରୀଶ ବାବୁ ମୋ ସହିତ ଅତି ଖରାପ ବ୍ୟବହାର କରିଥିଲେ ଏବଂ ମୋତେ ଯଥା ସମୟରେ ନିଯୁକ୍ତିପତ୍ର ନଦେଇ ମୋର ଜଣେ ବନ୍ଧୁଙ୍କୁ ମୋ ଆଗରୁ ନିଯୁକ୍ତ କରିଦେଲେ ଯାହାକି ହେବା ଆଦୌ ବାଞ୍ଛନୀୟ ନଥିଲା । କାରଣ ସେତେବେଳେ କଲେଜର ସବୁ ଅଧ୍ୟାପକ ନିଯୁକ୍ତି ଜୁଲାଇରେ ହେଉଥିଲା । ଜାନୁଆରୀଠାରୁ ଜୁନ୍ ପର୍ଯ୍ୟନ୍ତ କଲେଜରେ କାମ ଅଧା ଥିବାରୁ ଏବଂ ରେଭେନ୍ସା କଲେଜ ଏକମାତ୍ର କଲେଜ ଥିବା ଯୋଗୁ ସବୁ ନିଯୁକ୍ତି ଜୁଲାଇରେ ହୁଏ । ନୂତନ ପୁରୀ କଲେଜ ଜୁଲାଇରେ ଖୋଲିବାର ଥିଲା, କିନ୍ତୁ ମୋ ଉପରେ ରାଗିଯାଇ ସେ ଏହି ଗୋଟିଏ ମାତ୍ର ନିଯୁକ୍ତି ମାର୍ଚ୍ଚ ମାସରେ କରିଥିଲେ । ତା'ପରେ ତାଙ୍କର ଜଣେ ଅତି ପାଖଲୋକ ମୋତେ ଆସି ଭାଇନାଙ୍କ ଆଗରେ ଆକ୍ଷେପ କଲେ ଯେ ଗୋଦାବରୀଶ ବାବୁଙ୍କ ବିରୁଦ୍ଧରେ ମୁଁ ଥିବାରୁ ମୋର ଆଉ ଚାକିରିର ସମ୍ଭାବନା ନାହିଁ ଯଦିଚ ବହୁ ଆଗରୁ ପବ୍ଲିକ୍ ସର୍ଭିସ୍ କମିଶନ ମୋତେ ଅଧ୍ୟାପକ ପାଇଁ ବାଛି ସାରିଥିଲେ । ମୁଁ ସେ ଭଦ୍ରଲୋକଙ୍କୁ ଏହାର ଉତ୍ତରରେ କହିଥିଲି ଯେ ଗୋଦାବରୀଶ ବାବୁ ମନ୍ତ୍ରୀ ଥିଲାଯାଏ ମୁଁ ଚାକିରି କରିବି ନାହିଁ । କାରଣ ତାଙ୍କ ପରି ଦେଶଦ୍ରୋହୀ ଶିକ୍ଷାମନ୍ତ୍ରୀ ଥିବା ସମୟରେ ଶିକ୍ଷା ବିଭାଗରେ କାମ କରିବା ଲଜ୍ଜାକର ଓ ମାନହାନିକର ଘଟଣା । ଦେଶଦ୍ରୋହୀଙ୍କଠାରୁ ଚାକିରି ପାଇବା ଅପେକ୍ଷା ବେକାର ରହିବା ଭଲ । ଏକଥା କହିଲା ପରେ ମୋତେ ନିଜକୁ ଖୁବ୍ ଭଲ ଲାଗିଥିଲା । ମୋ ନିଜ ଆଖିରେ ମୋର ଆତ୍ମସମ୍ମାନ ବହୁତ ବଢ଼ିଯାଇଥିଲା । ନିଜର ଆତ୍ମସମ୍ମାନ ଉପଲବ୍ଧି ଜୀବନରେ ବହୁତ ସାହାଯ୍ୟ କରେ ।

ମୁଁ ଠିକ୍ କରିଥିଲି ଯେ ମୁଁ ଓକିଲାତି କରିବି । ମୋର ଚାକିରି କରିବାର ଉଦ୍ଦେଶ୍ୟ ମଧ୍ୟ ଆଗରୁ ନଥିଲା । ଏଣୁ ଏତେ ବ୍ୟସ୍ତ ହେବାର କାରଣ କଣ ? ଅବଶ୍ୟ ଚାକିରି ଯଦି କରେ, ଅଧ୍ୟାପକ ହେବାକୁ ମୋର ଇଚ୍ଛା ଥିଲା । ଏମ୍.ଏ.ର ପ୍ରଥମ ବର୍ଷରେ ଭାଇନା ମୋତେ ବହୁତ କହିଲେ ଡେପୁଟୀ ଚାକିରି ପାଇଁ ଦରଖାସ୍ତ କରିବାକୁ । ସେତେବେଳେ ପ୍ରଥମ ନିଯୁକ୍ତି ସବ୍ ଡେପୁଟୀ ମାଜିଷ୍ଟ୍ରେଟ୍ । ତାପରେ ଡେପୁଟୀ ହୁଅନ୍ତି । ମୁଁ ବାଧ୍ୟ ହୋଇ କମିଶନ ଆଗରେ ଏହି ଚାକିରି ପାଇଁ ଦେଖା କରିଥିଲି । କମିଶନଙ୍କର ପ୍ରଥମ ପ୍ରଶ୍ନ ଥିଲା ଯେ ମୁଁ ଚାକିରି କଲେ ବ୍ରିଟିଶ୍ ସରକାରଙ୍କୁ ଯୁଦ୍ଧ ସମୟରେ କି ପ୍ରକାର ସାହାଯ୍ୟ କରିପାରିବି । ସାଙ୍ଗେ ସାଙ୍ଗେ ମୁଁ ଉତ୍ତର ଦେଇଥିଲି ଯେ ମୁଁ ଅଫିସର ହିସାବରେ ଦେଶସେବା କରିବି କିନ୍ତୁ ବ୍ରିଟିଶ ସରକାରଙ୍କୁ ସାହାଯ୍ୟ କରିପାରିବି ନାହିଁ । ମୋର ଏପରି ଉତ୍ତରରେ କମିଶନ ମଣ୍ଡଳୀ ଏତେ ବେଶୀ ଅବାକ୍ ହୋଇଗଲେ ଯେ ମୋତେ ଆଉ କିଛି ନ ପଚାରି ବିଦାୟ କରିଦେଲେ । ମୁଁ କିନ୍ତୁ ମନ ଆନନ୍ଦରେ ପାଟଣା ଫେରିଗଲି । ଡେପୁଟୀ ଚାକିରି ନୋହିଲା ।

ଯେକୌଣସି ହାକିମୀ ଚାକିରି କେଜାଣି କାହିଁକି ମୋତେ ଆଦୌ ଭଲ ଲାଗୁ ନଥିଲା । ସେ ସମୟର ହାକିମୀ ମନୋଭାବ ବହୁ ବର୍ଷ ଧରି ମୁଁ ଦେଖିଛି । ସାଧାରଣ ଲୋକଙ୍କ ପ୍ରତି ସେମାନଙ୍କର ରୂଢ଼ ବ୍ୟବହାର, ହାକିମୀ ମିଜାସ୍, ପୋଲିସ୍ ଚପରାସୀମାନଙ୍କର ସଲାମ୍, ସାଧାରଣ ଲୋକମାନଙ୍କର ସେମାନଙ୍କ ପ୍ରତି ଭୟଜନିତ ସମ୍ମାନ ମୋତେ ଆଦୌ ଭଲ ଲାଗୁ ନଥିଲା । ସେଥିପ୍ରତି ମୋର କୌଣସି ଆକର୍ଷଣ ନଥିଲା । ସାଧାରଣତଃ ଗରିବ ଘରର ପିଲାଏ ହାକିମ ହେବାର ଲୋଭ ସମ୍ବରଣ କରିପାରନ୍ତି ନାହିଁ । ଅନେକ ଗରିବ ପିଲା ପର ଜୀବନରେ ହାକିମ ହୋଇ ଗରିବଙ୍କୁ ବହୁତ ଘୃଣା କରନ୍ତି ଏବଂ ସେମାନଙ୍କ ପ୍ରତି କଠୋରତା ପ୍ରଦର୍ଶନ କରନ୍ତି । ଏପରି ବହୁ ଅଫିସର ଓ ଅଧ୍ୟାପକଙ୍କ ସଂପର୍କରେ ମୁଁ ଆସିଛି । ଏମାନଙ୍କ ପ୍ରତି ମୋର କୌଣସି ସମ୍ମାନ ସୃଷ୍ଟି ହୋଇପାରିଲା ନାହିଁ । ଅନେକ ସମୟରେ ତଥାକଥିତ ଦରିଦ୍ରବତ୍ସଳ ଲୋକେ ମଧ୍ୟ ସୁଯୋଗ ପାଇଲେ ଗରିବଲୋକଙ୍କ ପ୍ରତି ଅତ୍ୟାଚାର କରନ୍ତି ଏବଂ ବଡ଼ଲୋକଙ୍କୁ ଅତିରିକ୍ତ ସମ୍ମାନ ଦେଖାଇଥାନ୍ତି । ଏ ପ୍ରକାରର ଲୋକଙ୍କର ସଂଖ୍ୟା କମ୍ ନୁହେଁ । ଠିକ୍ ଏହି ମନୋବୃତ୍ତି ଯୋଗୁହିଁ ଆଜି ପର୍ଯ୍ୟନ୍ତ ଏହି ଅମଲା ତାନ୍ତ୍ରିକ ଅଫିସରମାନଙ୍କ ଦ୍ୱାରା ଗରିବ ଜନସାଧାରଣଙ୍କର ବିଶେଷ କିଛି ଉନ୍ନତି ହୋଇପାରିଲା ନାହିଁ । ଯେ ବଡ଼ଲୋକ ହେଲା ସେ ଏକାବେଳେକେ ଭୁଲିଗଲା ଯେ ସେ ଦିନେ ଗରିବ ଥିଲା । ନିଜ ବ୍ୟକ୍ତିତ୍ୱକୁ ଘୃଣା କରିବା ପରିବର୍ତ୍ତେ ସେମାନେ ଗରିବକୁ ଘୃଣା କରି ଆନନ୍ଦ ପାଆନ୍ତି । ଆଦ୍ୟ ଜୀବନର ଅଭାବ ଯୋଗୁ ସେମାନେ ଯେପରି ଏମାନଙ୍କ ଉପରେ ପ୍ରତିଶୋଧ ନିଅନ୍ତି ।

ଯାହାହେଉ, ହାକିମ ନ ହେବା ମନୋବୃତ୍ତି ମୋର ଏପରି ଭାବରେ ବଦ୍ଧମୂଳ ହୋଇଯାଇଥିଲା ଯେ ଜୀବନ ସାରା ପ୍ରିନ୍ସପାଲ, ଡିରେକ୍ଟର କିମ୍ବା କୁଳପତି ହେବାର ଆକାଙ୍କ୍ଷା ମୋର ନଥିଲା । ଅଧ୍ୟାପନା ଏସବୁର ଉର୍ଦ୍ଧ୍ୱରେ ବୋଲି ମୋର ଦୃଢ଼ ବିଶ୍ୱାସ ହୋଇଯାଇଥିଲା । ସ୍କୁଲ କଲେଜରେ ପଢ଼ିବା ସମୟରୁ ମୋର ଏ ପ୍ରକାର ଧାରଣା ଜୀବନ ତମାମ୍ ବଦଳିଲା ନାହିଁ । ସେଥିଲାଗି ମୁଁ ବହୁତ ଆନନ୍ଦିତ । ହାକିମ ନ ହେବାର ଅବଶୋଷ

କିମ୍ବା କୌଣସି ପ୍ରକାର ବ୍ୟର୍ଥତା ମୋତେ କଦାପି ସ୍ପର୍ଶ କରିପାରିଲା ନାହିଁ । ଫଳରେ ମୋର ଆଚାର, ବିଚାର, ବ୍ୟବହାର, ସାମାଜିକ ସମ୍ପର୍କ ଏବଂ ମୋଟାମୋଟି ଭାବରେ ଜୀବନଦର୍ଶନ ରୀତି (Life style) ଅଲଗା ହୋଇଗଲା । ଭବିଷ୍ୟତରେ ବଡ଼, ହାକିମ ହେବାର ଲୋଭ ଯୋଗୁ ସବୁବେଳେ ଲୋଚାକୋଚା ହୋଇ 'ହାଁଜୀ' କରି ଉପରିସ୍ଥ ହାକିମଙ୍କୁ ଖୋସାମତ କରି କଥା କହିବାର ଅଭ୍ୟାସ ମୋର ବିଲକୁଲ ହେଲାନାହିଁ । ଯାହା ଠିକ୍ ଭାବେ କହେ, ଯାହା ହେବା ଉଚିତ– ସେ ବିଷୟରେ ଠୋକ୍‌ଠୋକ୍ ଭାବରେ ଆଲୋଚନା କରେ ସମସ୍ତଙ୍କ ଆଗରେ । ସେମାନେ ଯେତେ ପ୍ରତିଷ୍ଠିତ ବ୍ୟକ୍ତି ହୁଅନ୍ତୁ ନା କାହିଁକି, ଏପରି ସତ କହିବାରେ ମୋତେ କେବେହେଲେ ସଂକୋଚ ଲାଗେ ନାହିଁ । ଏହି ଭାବନା ଓ ମନୋବୃତ୍ତି କ୍ରମେ କ୍ରମେ ମୋର ସମ୍ପୂର୍ଣ୍ଣ ବ୍ୟକ୍ତିତ୍ୱର ଦିଗ୍‌ଦର୍ଶନ ନିର୍ଦ୍ଧାରିତ କରିଦେଲା । ବହୁ ମନ୍ତ୍ରୀ, ଅଫିସର ମୋତେ ଏଥିପାଇଁ ଘୃଣା କରନ୍ତି– କିନ୍ତୁ ମୋତେ ଭଲ ପାଇବା, ଏଥିପାଇଁ ଶ୍ରଦ୍ଧା ସମ୍ମାନ କରିବା ଲୋକଙ୍କ ସଂଖ୍ୟା ଏତେ ବେଶୀ ଯେ ସେମାନଙ୍କର ଆନ୍ତରିକ ସ୍ନେହ ଶ୍ରଦ୍ଧା ମୋତେ ଉତ୍‌ଫୁଲ୍ଲିତ କରେ । ହାକିମମାନଙ୍କର ମୋ ପ୍ରତି ଘୃଣା ପାଇଁ ମୋର କୌଣସି ଭ୍ରୂକ୍ଷେପ ନ ଥାଏ । ଏହା ଜୀବନର ସବୁଠୁ ବେଶୀ ଆତ୍ମିକ ଗୌରବ ଓ ଆଶୀର୍ବାଦ ଭାବେ କାମ କରି ଆସିଛି ।

ଯାହାହେଉ, ବହୁ ପ୍ରକାରର ରୋମାଞ୍ଚକର ଅନୁଭୂତି ଭିତର ଦେଇ ଏମ୍.ଏ. ଦୁଇବର୍ଷ ପାଟଣାରେ କଟିଗଲା । ନାନା କାରଣରୁ ଏହି ଦୁଇଟି ବର୍ଷ ଭିତରେହିଁ ମୁଁ ପାଟଣା ସହିତ ବହୁ ଘନିଷ୍ଠ ଭାବରେ ପରିଚିତ ହୋଇଗଲି । ପ୍ରତ୍ୟେକ ରାସ୍ତା, କେତେକ ଗଳି, କନ୍ଦି, ପାଟଣା ମଇଦାନ, ପାଟଣା କଲେଜ, ଗଙ୍ଗାକୂଳ, ପାଗୋଡ଼ା ମେସ୍, ବହୁ ବ୍ୟକ୍ତି, ବହୁ ଧରଣର ଦୋକାନ, ରାଜନୈତିକ ବ୍ୟକ୍ତିଙ୍କ ସଂପର୍କରେ ମୋର ଗଭୀର ସ୍ମୃତି ମନ ଭିତରେ ଆଙ୍କି ହୋଇ ରହିଗଲା । କେତେବର୍ଷ ପରେ ମୁଁ ଯେତେବେଳେ ପାଟଣା ଗଲି, ରିକ୍ସା କରି ଏସବୁ ରାସ୍ତା ଗଳିକନ୍ଦି ଥରେ ଦୁଇଥର କରି ବୁଲି ଆସେ । ଗୋଟିଏ ଫଟୋ ଦୋକାନରେ ମୋର ଏମ୍.ଏ. ସମୟର ଗୋଟିଏ ଫଟୋଚିତ୍ର ସାମନା ପ୍ରଦର୍ଶନ ବାକ୍ସରେ ଦଶବର୍ଷ ପରେ ମଧ୍ୟ ସେହିପରି ଥିଲା । ମୋତେ ଦେଖିଲାକ୍ଷଣି ସେ ଦୋକାନୀ ସାଙ୍ଗେ ସାଙ୍ଗେ ଚିହ୍ନିପାରିଲା, ଟା' ଛଳଖିଆ ଦେଲା । ସେ ଫଟୋଟି କୁଆଡ଼େ ଏତେ ଭଲ ହୋଇଥିଲା ଯେ ଦଶବର୍ଷ ପର୍ଯ୍ୟନ୍ତ ତାହା ସେହିପରି ସେଠାରେ ମରା ହୋଇଥିଲା । ତା' ପାଇଁ ସେ ଫଟୋଟି କୁଆଡ଼େ ଶୁଭଙ୍କର ଥିଲା । ମୋତେ ଆଉ ଗୋଟିଏ ଫଟୋ ଛପାଇ ଦେଲା । କିନ୍ତୁ ଆଶ୍ଚର୍ଯ୍ୟର କଥା, ନେଗେଟିଭ୍ ଦେଲାନାହିଁ । ମଣିଷର କି ଅଦ୍ଭୁତ ଖିଆଲ । ଜୀବନକୁ ଏହି ଖିଆଲର ନିଶାହିଁ ସ୍ୱପ୍ନିଳ କରି ରଖେ ।

ପାଟନାରେ କଠୋର ସାଧନା ଭିତରେ କେତେକ ଅକୁହା କଥାର ଅଭୁଲା ସ୍ମୃତି ରହିଗଲା- ଯାହା ଉପରେ ରଖା ଦେଇ ଜୀବନ ସ୍ରୋତ ଗଡ଼ି ଚାଲିଲା, ଏହାର କରୁଣ ଓ ସ୍ମୃତି ମଧୁର ଆବେଗାନୁଭୂତି ମନ ପ୍ରାଣକୁ ମଝି ମଝିରେ ଆନ୍ଦୋଳିତ କରେ- ବିଭିନ୍ନ ପରିସ୍ଥିତିରେ ଏହାର ସୌରଭ ବଂଚିବାରେ ସାର୍ଥକତା ଯୋଗାଏ ।

ପାଟନା ରହଣିର ଆଉ ଗୋଟିଏ ଅଭୁଲା ଅନୁଭୂତି ଜୀବନ ଭରି ରହିଗଲା । ତାହା ହେଉଛି, ମୋର ସୁଖ ଦୁଃଖ ସହିତ ଅନ୍ତରଂଗ ଭାବରେ ଜଡ଼ିତ ଗଙ୍ଗା ନଦୀର ମମତାଭରା

ସ୍ମୃତି — ଏହାର ବିଶାଳ ବକ୍ଷରେ ଉଲ୍ଲସିତ ବୀଚି ସହିତ ମୋର ମାର୍ମିକ ସଂପର୍କ । ଏହା କୂଳରେ ଘନ ଅନ୍ଧକାର ରାତ୍ରିରେ କିମ୍ବା ଜ୍ୟୋତ୍ସ୍ନା ପୁଲକିତ ଉଦ୍‌ବେଳିତ ମୁହୂର୍ତ୍ତମାନଙ୍କରେ ଗଙ୍ଗାର ଛଳଛଳ ଜଳରାଶି ସହିତ ମୋର ଭାବାବେଗୀୟ ଆଲୋଡ଼ନ ଜୀବନକୁ ନୂତନ ଛନ୍ଦରେ ଛନ୍ଦାୟିତ କରି ରଖିପାରିଥିଲା । ନିରୋଳା ମୁହୂର୍ତ୍ତରେ ପୃଥିବୀରେ ଯେକୌଣସି ନଦୀକୂଳ ବୁଲିଲା ବେଳେ ଗଙ୍ଗା ନଦୀର ଏହି କୋମଳ ଶିହରଣ ମୋର ମନକୁ ଦୋହଲାଇ ଦେଇଯାଏ । ଗଙ୍ଗା କୂଳରେ ନିରୋଳା ରାତିରେ ଯେଉଁ ନିଃସଙ୍ଗ ବଂଶୀ ସ୍ୱର ମୁଁ ବସି ବସି ଶୁଣୁଥାଏ, ତାହା ଆଜି ପର୍ଯ୍ୟନ୍ତ ମୋର ମନ ଭିତରେ ନିନାଦିତ ହୋଇ ଚାଲିଛି । ଏହାର ପବିତ୍ର ଜଳରାଶି ଯେପରି ଅସଂଖ୍ୟ ଧୂଳି ମଇଳାର ଅପବିତ୍ରତାକୁ ଧୋଇ ମାଜି ପବିତ୍ର କରିଦିଏ ସେହିପରି ଏହାର ମୋଲାୟମ ସ୍ମୃତି ମୋର ମାନସିକ ଦୁଃଖ ଯନ୍ତ୍ରଣା ଉପରେ ମାଧୁରିମାର ପ୍ରଲେପ ଲେପି ଦେଇଯାଏ । ଜୀବନର ଅତିକ୍ରାନ୍ତ ପଥରେ ଦେଖାଦେଇଥିବା ଛୋଟ ଛୋଟ ପୋଖରୀ ଗାଡ଼ିଆକୁ ତାର ପବିତ୍ର ସ୍ମୃତି ପ୍ରବାହରେ ପବିତ୍ର କରିଦିଏ । ଜୀବନର ବହୁ ଆତ୍ମିକ ବିଡ଼ମ୍ବନା ପୁଣି ନୂତନ ସବୁଜିମାରେ ପ୍ରଫୁଲ୍ଲିତ ହୋଇଉଠେ । ମୋର ପାଟନା ରହଣିର ଚାରିବର୍ଷ ଭିତରେ ଗଙ୍ଗା ସହିତ ଏପ୍ରକାର ଭାବବିହ୍ୱଳିତ ଐକାନ୍ତିକତା ବର୍ତ୍ତମାନ ସୁଦ୍ଧା ନିଷ୍ପ୍ରଭ ହୋଇପାରି ନାହିଁ । କାଠଯୋଡ଼ି ମହାନଦୀ ପାଣି କିଂବା ମୋ ପୋଖରୀ ପାଣିକୁ ଦିନ ରାତିର ବିଭିନ୍ନ ପ୍ରହରରେ କିମ୍ବା ବର୍ଷା, ବସନ୍ତ, ଗ୍ରୀଷ୍ମ ଋତୁରେ ଚାହିଁଲେ ଅନେକ ସମୟରେ ଗଙ୍ଗାନଦୀର ପାଣି କଥା ମନେପଡ଼ିଯାଏ ।

ପାଟନାରେ ଚାରିବର୍ଷର ସାଧନା ଶେଷ ହେଲା । ୧୯୪୩ରେ ବି.ଏ. ଅନର୍ସ ଏବଂ ଏମ୍. ଦର୍ଶନରେ ଫାଷ୍ଟ କ୍ଲାସ ପାଇବା ହେଲା ଏହି କଠୋର ସାଧନାର ସିଦ୍ଧି । ତା ସହିତ ଏହି ସମୟରେ ପ୍ରାଣ ପ୍ରାଚୁର୍ଯ୍ୟର ନାନାଧରଣର ରମଣୀୟ ଜୀବନାନୁଭୂତି ମୋଠାରେ ଚକର ଛେଉଣ୍ଡର ଦୁର୍ବଳ ଜୀବନିକାକୁ ବଳିଷ୍ଠ ଆତ୍ମବିଶ୍ୱାସରେ ରୂପାନ୍ତରିତ କରିପାରିଥିଲା- ବିଶ୍ୱବିଦ୍ୟାଳୟ ଆକାଶରେ ଗୋଟିଏ ଜାଜ୍ଜ୍ୱଲ୍ୟମାନ ଜ୍ୟୋତିଷ୍କ ହିସାବରେ ମୁଁ ଅନ୍ୟମାନଙ୍କୁ ଦେଖାଯାଉଥିବା ଯୋଗୁ ମୋର ହୀନମନ୍ୟତାର କଳାଛାଇ ଲିଭି ଆସିଥିଲା । ରେଭେନ୍ସା କଲେଜରେ ଦୁଇବର୍ଷ ଧରି ଭାସମାନ ଅବସ୍ଥାରୁ ମୁକ୍ତି ମିଳିଥିଲା । ଭଗବତ ଅନ୍ଧ ବିଶ୍ୱାସ ବଳିଷ୍ଠ ମାନବିକତାରେ ପରିଣତ ହୋଇଯାଇଥିଲା । ପଛକୁ ଚାହିଁବାର ମାନସିକ ଦୁର୍ବଳତା ସ୍ଥାନରେ ଭବିଷ୍ୟତ ସ୍ୱପ୍ନ ମନ ପ୍ରାଣକୁ ସ୍ୱପ୍ନିଳ ଆବେଗରେ ଉଦ୍‌ଜୀବିତ କଲା । ଏଥିଯୋଗୁ ହିଁ ମୋର ପାଟନା ରହଣି ଜୀବନରେ ଭୁଲିବାର ନୁହେଁ ।

୧୯୪୩ରେ ପାଟନା ଛାଡ଼ିଲା ପରେ କଟକରେ ଆସି ଆଇନ କ୍ଲାସ୍‌ରେ ଯୋଗ ଦେଲି ।

■ ■ ■

୯

# ଜୀବନଯାତ୍ରାର ପ୍ରଥମ ବନ୍ଧନ : ବିବାହ

୧୯୪୩ ମସିହାର ଶେଷାର୍ଦ୍ଧରେ ଏମ୍.ଏ. ପରୀକ୍ଷା ଫଳ ବାହାରିଲା ପରେ ଲେକଚରରର ଚାକିରି ପାଇଁ ବିଜ୍ଞାପନ ବାହାରିଥାଏ । ଦରଖାସ୍ତ କଲି ଏବଂ ସେଥିପାଇଁ ବଛା ହୋଇଛି ବୋଲି ଶୁଣିଲି । ୧୯୪୪ ଜୁଲାଇରେ ଚାକିରିରେ ଯୋଗ ଦେବା କଥା । ଏ ଭିତରେ ବିବାହ ପାଇଁ ପ୍ରସ୍ତାବସବୁ ଆସିଲା । ଏ ବିଷୟରେ ମଧ ଭାଇନା ମୋତେ ସଂପୂର୍ଣ୍ଣ ସ୍ୱାଧୀନତା ଦେଇଥାନ୍ତି । ଝିଅର ବାପା ମା', ଘରର ମର୍ଯ୍ୟାଦା, ଝିଅର ଗୁଣଗ୍ରାମ, ଚେହେରା ବିଷୟରେ ଯଥେଷ୍ଟ ଖବର ପାଇଲା ପରେ ପୁରୀର ବିଶିଷ୍ଟ ଓକିଲ ସ୍ୱର୍ଗୀୟ ଆର୍ତ୍ତତ୍ରାଣ ମିଶ୍ରଙ୍କର ସାନଝିଅ ଶାନ୍ତି ମିଶ୍ରଙ୍କ ସହିତ ମୋର ବିବାହ ୧୯୪୪ ମାର୍ଚ୍ଚ ମାସରେ ସମ୍ପନ୍ନ ହୋଇଥିଲା । ଆର୍ତ୍ତବାବୁ ଓ ତାଙ୍କ ସ୍ତ୍ରୀ ଏତେ ହୃଦୟବାନ୍ ସ୍ନେହଶୀଳ, ଅମାୟିକ ଓ ଉଚ୍ଚକୋଟୀର ଲୋକ ଥିଲେ ଯେ ଅଳ୍ପଦିନ ଭିତରେ ମୋତେ ସେମାନଙ୍କୁ ବହୁତ ଭଲ ଲାଗିଲା । ଶଶୁରଙ୍କର ନିୟମାନୁବର୍ତ୍ତିତା ଓ ଶୃଙ୍ଖଳିତ ଜୀବନ ଠିକ୍ ଘଡ଼ିକଣ୍ଟା ଅନୁସାରେ ବନ୍ଧାହୋଇ ଚାଲିଥାଏ ।

ଶାଶୁ କିନ୍ତୁ ଏ ବିଷୟରେ ଠିକ୍ ଓଲଟା ଥିଲେ । ସମୟାନୁବର୍ତ୍ତିତାର ବହୁ ଦୂରରେ ସେ ଥିଲେ । ସାଂସାରିକ କ୍ଷେତ୍ରରେ ବିଚକ୍ଷଣତା, ବୁଦ୍ଧିମତ୍ତା, ସମାଜସେବା ମନୋଭାବ ଓ ଗରିବ ଲୋକମାନଙ୍କ ପ୍ରତି ଅନୁକମ୍ପା ତାଙ୍କର ଦୈନନ୍ଦିନ କାମରେ ପ୍ରତିଫଳିତ ହେଉଥାଏ । ସେ ଯୁଗର ଅଶିକ୍ଷିତା ସାଧାରଣ ସ୍ତ୍ରୀ ଲୋକଙ୍କଠାରୁ ସେ ବହୁତ ଅଲଗା ଥିଲେ । ପାଠ ବେଶୀ ପଢ଼ିନଥିଲେ ମଧ ସେ ଭାରତୀୟ ଓ ଆନ୍ତର୍ଜାତିକ ଖବର ଏପରି ବିଚକ୍ଷଣ ଭାବରେ ବୁଝି ପାରୁଥିଲେ ଯେ ତାଙ୍କ ସହିତ କଥାବାର୍ତ୍ତା କରିବାରେ ମୋତେ ଆନନ୍ଦ ମିଳେ । ପର ପ୍ରତି ସହାନୁଭୂତି ଓ ସେମାନଙ୍କ ଦୁଃଖରେ ଦୁଃଖୀ ହେବା ଭଳି ମହତ୍ ଗୁଣ ବହୁ କମ୍ ଲୋକଙ୍କଠାରେ ଦେଖାଯାଏ । ସେ ଗୋଟିଏ ଦିଗରେ ରକ୍ଷଣଶୀଳା ଥିଲେ ମଧ ଅନ୍ୟ ଦିଗରେ ତାଙ୍କର ସ୍ୱଭାବଗତ ଅନୁକମ୍ପା ଓ ବିଚାର ବୁଦ୍ଧି ଯୋଗୁ ସେ ଅନ୍ୟ ରକ୍ଷଣଶୀଳ ଲୋକଙ୍କଠାରୁ ପୃଥକ୍ ଥିଲେ । ମୋର ମନେଅଛି, ତାଙ୍କ ଘରେ ରହୁଥିବା ଜଣେ ବିଧବା ସ୍ତ୍ରୀର ପାପଗର୍ଭ ହେଲା, ପରେ ସେ ତା ପ୍ରତି ଏପରି ସହାନୁଭୂତିଶୀଳ ହୋଇଥିଲେ ଯେ

ତାକୁ ଘରେ ରଖି ତାର ପ୍ରସୂତି ପାଇଁ ସବୁ ବନ୍ଦୋବସ୍ତ କରିଥିଲେ ଏବଂ ତାର ଅବୈଧ ସନ୍ତାନ ପାଇଁ ଅନ୍ୟଘର ମଧ୍ୟ ଯୋଗାଡ଼ କରିଦେଇଥିଲେ । ତାଙ୍କ ଘରେ ସମସ୍ତେ ଏଥିପାଇଁ ତାଙ୍କ ପ୍ରତି ବିରକ୍ତି ପ୍ରକାଶ କରୁଥିଲେ ସୁଦ୍ଧା ସେ ଅସହାୟା ମହିଳାଟି ପ୍ରତି ଏପରି କରୁଣାସିକ୍ତ ହୋଇଥିଲେ ଯେ ସମସ୍ତ ବିରୋଧ ସତ୍ତ୍ୱେ ତାକୁ ନିଜ ଘରେ ସ୍ଥାନ ଦେଇଥିଲେ । ସେ ସ୍ତ୍ରୀ ଲୋକଟି ତାଙ୍କ ପ୍ରତି ସାରା ଜୀବନ ଅନୁରକ୍ତ ରହିଥିଲା । ଜଣେ ରକ୍ଷଣଶୀଳା ବର୍ଷୀୟସୀ ମହିଳାଙ୍କ ପକ୍ଷରେ ଏହା ଏକ ବିରାଟ ସାହସ ଓ ମାନବିକ ମହାନୁଭବତାର ପରିଚୟ ଦିଏ ।

ମୋ ସ୍ତ୍ରୀଙ୍କର ବୟସ ବିବାହ ବେଳକୁ ସତର ଚାଲିଥାଏ । ସେ ଥିଲେ ଧନୀ ଓ ସାମନ୍ତବାଦୀ ପରିବାରର ଅଲିଅଳ ସାନଝିଅ । ଗୋଟିଏ ପୁଅ ଓ ଦୁଇଟି ଝିଅ ମଧ୍ୟରୁ ସେ କନିଷ୍ଠା । ବିବାହ ପର୍ଯ୍ୟନ୍ତ ରାତିରେ ନିଦରୁ ଉଠାଇ ଆଣି ନନା ତାଙ୍କୁ ଖୁଆଇ ଦେଉଥିଲେ । ଧନୀ ଓ ସାମନ୍ତବାଦୀ ପରିବାରରେ ପିଲାମାନେ ଯେପରି ବଢ଼ନ୍ତି ସେ ସମସ୍ତ ପ୍ରକାରର ପରିବେଶ ସେଠାରେ ଥିଲା । ବହୁ ଚାକର, ଚାକରାଣୀ, ପୂଝାରୀ ଦଳଦଳ ହୋଇ କାମରେ ଲାଗିଥାନ୍ତି । ଘରେ କେବଳ ଶଶୁର ସମୟାନୁବର୍ତ୍ତିତାର ଚରମ ପ୍ରତୀକ ଥିଲେ । ମିନିଟ୍ କଣ୍ଟା ପ୍ରତି ମଧ୍ୟ ତାଙ୍କର ନଜର ଥିଲା । କିନ୍ତୁ ଆଉ ସମସ୍ତଙ୍କଠାରେ ସମୟର ମୋଟାମୋଟି ବିଭାଜନ ଯଥା ଦିନ, ରାତି, ସକାଳ, ସନ୍ଧ୍ୟା, ଦ୍ୱିପ୍ରହର ଛଡ଼ା ଘଣ୍ଟା ମିନିଟ୍‌ର ଚେତନା ନଥିଲା କହିଲେ ଚଳେ । ସବୁ କାମ ଇଚ୍ଛାନୁସାରେ ଧୀରେ ସୁସ୍ଥେ ଚାଲେ । କୌଣସି କାମ ଆଜି ନ ହେଲେ କାଲି ହେବ, ଏହି ମନୋଭାବସମ୍ପନ୍ନ ଲୋକ ଅନ୍ୟ ସମସ୍ତେ ଥିଲେ । ଏହି ପରିବେଶର ମୂର୍ତ୍ତିମତୀ ପ୍ରତୀକ ଥିଲେ ମୋ ସ୍ତ୍ରୀ । ତା'ଛଡ଼ା ସେ ଆସି ରେଭେନ୍ସା ବାଳିକା ସ୍କୁଲ ହଷ୍ଟେଲରେ ରହି ମାଟ୍ରିକ୍ ପଢୁଥିଲେ । ସେଠାକୁ ସେତେବେଳେ ସମାଜ କିମ୍ବା କୌଣସି ଖବରକାଗଜ ଆସୁନଥିଲା । କେବଳ କେତେ ଖଣ୍ଡି ପଢ଼ାବହିର ସଂକୀର୍ଣ୍ଣ ପରିସର ଭିତରେ ଓ ତାଙ୍କ ପରି ଅପରିପକ୍ୱ ଓ ଜଗତ ସହିତ ଅପରିଚିତ ସମବୟସୀ ଝିଅଙ୍କ ମେଳରେ ତାଙ୍କର ମାନସିକ ପ୍ରକ୍ରିୟା କାମ କରୁଥିଲା ।

କୋମଳବୟସୀ, ପୃଥିବୀର ଜଟିଳତାର ତାତ୍ପର୍ଯ୍ୟ ସଂପର୍କରେ ସଂପୂର୍ଣ୍ଣ ଅନଭିଜ୍ଞ, ସଂକୀର୍ଣ୍ଣ ବେଷ୍ଟନୀ ପରିସୀମିତ ଏହି ଅଲିଅଳ ଝିଅଟି ସହିତ ମୋପରି ଜୀବନର ଘାତ ପ୍ରତିଘାତ ଭିତରେ ପରିବର୍ଦ୍ଧିତ ଓ ପରିପକ୍ୱ ଲୋକଟିର ଘରକରଣା କେତେ ବେଶୀ ସଂଘର୍ଷମୟ ହୋଇପାରେ, ତାହା ଅନୁମାନ କରାଯାଇପାରେ । ଅଳ୍ପ ବୟସୀ ଝିଅଙ୍କ ସହିତ ମନ ମିଳାଇ ଚଳିବାରେ ମୁଁ ଥିଲି ସଂପୂର୍ଣ୍ଣ ଅପାରଗ । ଦର୍ଶନ ଓ ମନୋବିଜ୍ଞାନରେ ବିଦ୍ୟା ହାସଲ କରିଥିଲେ ସୁଦ୍ଧା ଏପରି ଝିଅମାନଙ୍କର ମନୋବିଜ୍ଞାନ ବୁଝିବାର କ୍ଷମତା ବା ଅଭିଜ୍ଞତା ମୋର ନଥିଲା । ମୁଁ ବିବାହ ପରେ ଆରମ୍ଭ କରିଥିଲି ତାକୁ ଆଧୁନିକ ଦୁନିଆ ବିଷୟରେ ବକ୍ତୃତା । ରାତ୍ରିର ନକ୍ଷତ୍ର ଖଚିତ ଆକାଶରେ ତାରକାର ସ୍ଥିତି ଓ ପରିଚୟ, ଆଲୋକର ଗତି, ଆଲୋକ ବର୍ଷର ତାତ୍ପର୍ଯ୍ୟ, ଫ୍ରଏଡ୍‌ଙ୍କର ଯୁଗ ପ୍ରବର୍ତ୍ତକ ତଥ୍ୟାବଳୀ... ସାର ଜେମ୍‌ସ ଜୀନ୍‌ଙ୍କ ଲିଖିତ ଜ୍ୟୋତିଷ୍କ ମାନଙ୍କର ରୋମାଞ୍ଚକର ଇତିବୃତ୍ତି, ରବି ଠାକୁରଙ୍କର କବିତାର ଗଭୀରତମ ଆବେଗାନୁଭୂତି ଓ ଅତୀନ୍ଦ୍ରିୟ ନାଦ, ବର୍ଣ୍ଣାଡ଼'ଶଙ୍କର ପ୍ରଚଣ୍ଡ ବୁଦ୍ଧିମତ୍ତାର ବିସ୍ଫୋରଣ ଇତ୍ୟାଦି ଗୂଢ଼ କଥାମାନ । ଏସବୁ ବକ୍ତୃତା ତାଙ୍କ ପକ୍ଷରେ କେବଳ ଯେ ଅବୋଧ

ଥିଲା ତା ନୁହେଁ, ନିତାନ୍ତ ଅପ୍ରୀତିକର ମଧ୍ୟ  ମୋର ବକ୍ତୃତା ମଝିରେ ମୁଁ ଚାହିଁ ଦେଖିଲା ବେଳକୁ ସେ କେତେବେଳୁ ଗାଢ଼ ନିଦ୍ରାଭିଭୂତ ହୋଇଗଲେଣି ! ତାପରେ ମୋର ସମସ୍ତ ଉତ୍ସାହ, ଉଦ୍ଦୀପନା ଶୁଖିଯାଏ । ମୁଁ ନିସ୍ପୃହ ଓ ଉଦାସୀନ ହୋଇ ଦୂର ଦିଗ୍‌ବଳୟକୁ ଚାହିଁରହେ । ବର୍ତ୍ତମାନ ମୁଁ ବୁଝିପାରୁଚି, ଏହା କିପରି ବିରାଟ ନିର୍ବୋଧତାର କାର୍ଯ୍ୟ ଥିଲା । ମୋର ବହୁଦିନ ଧରି ପରିବର୍ଦ୍ଧିତ ଓ ପରିପକ୍ୱୀଭୂତ ଜ୍ଞାନ ହଠାତ୍ କେତେ ସମୟ ଭିତରେ ଜଣେ ଜ୍ଞାନରେ ଅପରିପକ୍ୱା ଝିଅଟି ମୁଣ୍ଡ ଭିତରେ ପୂରାଇବା ପାଇଁ ଚେଷ୍ଟା କରିବା ନିଶ୍ଚୟ ଅସ୍ୱାଭାବିକ ଥିଲା । ମଣିଷ ତ ଏପରି ଭୁଲ୍ କରେ ଜୀବନରେ ।

ମୋ ସ୍ତ୍ରୀଙ୍କର ରାଜନୀତି ଓ ସାଧାରଣ ବିଜ୍ଞାନ ବିଷୟରେ ଜାଣିବାର କୌଣସି ଆଗ୍ରହ ମଧ୍ୟ ନଥିଲା । ଫଳରେ ଆମେ ଦୁହେଁ ଚିନ୍ତା ରାଜ୍ୟରେ ଦୁଇଟି ସମାନ୍ତରାଳ ରେଖାରେ ଗତି କଲୁ । ମୁଁ ଥିଲି ଅଗ୍ରଧର୍ଷୀ ନାସ୍ତିକ । ତାଙ୍କର ଭଗବତ୍ ବିଶ୍ୱାସ ଗତାନୁଗତିକ ଥିଲା । ମୁଁ ଥିଲି ସମାଜବାଦୀ, ସେ ଥିଲେ ସାମନ୍ତବାଦୀ । ମୁଁ ଥିଲି ସମାଜର ଅନ୍ଧବିଶ୍ୱାସ ବିରୁଦ୍ଧରେ ଅସହନଶୀଳ ଓ ଆପୋଷହୀନ ଅଗ୍ରଧର୍ଷୀ ସଂଗ୍ରାମୀ, ସେ ପୂରାପୂରି ଅନ୍ଧବିଶ୍ୱାସୀ ନଥିଲେ ମଧ୍ୟ ଅନ୍ଧବିଶ୍ୱାସ ବିରୁଦ୍ଧରେ ସଂଗ୍ରାମ କରିବାର ଆଗ୍ରହ ତାଙ୍କର ନଥିଲା । ହଠାତ୍ ଜଣେ ଅଳ୍ପ ବୟସୀ ଝିଅ ବାପ ମା ଓ ଅନ୍ୟର କୁସଂସ୍କାର ବିରୁଦ୍ଧରେ ଯୁକ୍ତି କରିବା ଅସମ୍ଭବ । ମୁଁ ସମୟ ଅନୁସାରେ କାମ କରିବାକୁ ଭଲ ପାଉଥିଲି । ସେ କିନ୍ତୁ ସମୟର ଶୃଙ୍ଖଳା ଗ୍ରହଣ କରିବାକୁ ବିଲ୍‌କୁଲ୍ ଅଭ୍ୟସ୍ତ ନଥିଲେ । ଏ ପ୍ରକାର ମାନସିକ ବୈଷମ୍ୟ ଯେ ଆମ ଦୁହିଁଙ୍କ ଭିତରେ କେବଳ ଥିଲା ତା ନୁହେଁ, ସେ ସମୟର ଅଧିକାଂଶ ଶିକ୍ଷିତ ପରିବାରରେ ଏହା ଅତ୍ୟନ୍ତ ସ୍ୱାଭାବିକ ଥିଲା । ମୁଁ ଯାହା ଦେଖୁଛି ବର୍ତ୍ତମାନ ମଧ୍ୟ ଆମ ଦେଶରେ ଦୁଇଜଣ ଏମ୍.ଏ. ପାଶ୍ କରିଥିବା ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ମଧ୍ୟ ଏ ପ୍ରକାର ବ୍ୟବଧାନ ଦେଖିବାକୁ ମିଳୁଛି । କେବଳ ଅସହନଶୀଳ ନିର୍ବୋଧ ଲୋକେହିଁ ଏ ବିଷୟ ନେଇ ଅଯଥା ତମ୍ବିତୋଫାନ୍ ସୃଷ୍ଟି କରନ୍ତି ।

ମୋ ସ୍ତ୍ରୀଙ୍କର ଗୋଟିଏ ଅଦ୍ଭୁତ ବଦଗୁଣ ଥିଲା ଯେ ଦୁଇ ସେକେଣ୍ଡ ପରେ ସେ ଗୋଟିଏ କଥା ଭୁଲି ଯାଆନ୍ତି । କାମର ଅଭ୍ୟାସ ନ ଥିବାରୁ ତରକାରୀରେ ଲୁଣ ପଡ଼ିଛି କି ନାହିଁ ମନ ରହେନାହିଁ । ଭୁଲିଯିବା ମନୋମାଳିନ୍ୟର ଗୋଟାଏ ବଡ଼ କାରଣ ଥିଲା । ଫ୍ରଏଡ୍‌ଙ୍କର ଭୁଲିଯିବାର ଗୂଢ଼ ମନୋବିଜ୍ଞାନୀ କାରଣ ବିଷୟରେ ପଢ଼ିଥିବା ଯୋଗୁଁ ଏହା ଆହୁରି ବେଶୀ ବେଦନାମୟ ହୁଏ । ଭୁଲିବାର ପ୍ରକୃତ କାରଣ ଅବହେଳା କରିବା, ମାନସିକ ପ୍ରତିଶୋଧ ନେବା ଇତ୍ୟାଦି ବହୁତ ପ୍ରକାରର ଫ୍ରଏଡ଼ୀୟ ବ୍ୟାଖ୍ୟା ମନକୁ ତିକ୍ତ କରି ଦେଉଥିଲା । କିନ୍ତୁ ଏହି ଅବହେଳା ବା ପ୍ରତିଶୋଧ ଯେ ଠିକ୍ ତୁମ ପ୍ରତି ପ୍ରଯୁଜ୍ୟ ହୋଇ ନପାରେ, ସାଧାରଣ ଭାବରେ ତାଙ୍କର ପରିବାର ଓ ଅନ୍ୟାନ୍ୟ ଜଣାଶୁଣା ଲୋକଙ୍କ ପ୍ରତି ପ୍ରତିରୋଧମୂଳକ ବ୍ୟବହାର ହୋଇପାରେ– ସେ ପ୍ରକାରର ଗଭୀର ଅଭିଜ୍ଞତା ମୋର ନଥିଲା । ତା'ଛଡ଼ା ବହୁ ପିଲାଦିନୁ ପିତୃମାତୃହୀନ ଚକର ଛେଉଣ୍ଡର ସମ୍ବେଦନଶୀଳ ଆତୁରତାଭରା ମନରେ ଏହା ପ୍ରଚଣ୍ଡ ଆଘାତ ଦେବା ମଧ୍ୟ ସ୍ୱାଭାବିକ ଥିଲା । କିନ୍ତୁ ଗୋଟିଏ ସତର ବର୍ଷ ବୟସର ଝିଅକୁ ମୋର ମାଆ ହିସାବରେ ପାଇବାର ଆକାଂକ୍ଷା ନିଶ୍ଚିତ

ଭାବରେ ଅବାସ୍ତବ ପ୍ରତ୍ୟାଶା । କିନ୍ତୁ ଆଶା କରିବା ଲୋକ ପାଇଁ ଏହା ଯେ ବିରାଟ ବ୍ୟର୍ଥତା, ଏଥିରେ ସନ୍ଦେହର ଅବକାଶ ନାହିଁ ।

ମୋଟାମୋଟି ଭାବରେ ଅଭିଜ୍ଞତା, ମାନସିକ ପରିପକ୍ୱତା, ଆବେଗାତ୍ମକ ଅନୁଭୂତି ତଥା ଆତ୍ମ ପରିପ୍ରକାଶ କ୍ଷେତ୍ରରେ ଆମ ଦୁହିଁଙ୍କ ଭିତରେ ବହୁ ପାର୍ଥକ୍ୟ ରହିଥିଲା । ଏପରି ପରିସ୍ଥିତିରେ ଆମର ପାରିବାରିକ ଜୀବନ ଅଶାନ୍ତ ଏବଂ ବିପର୍ଯ୍ୟସ୍ତ ହୋଇଯିବାର କଥା । କିନ୍ତୁ ତାଙ୍କର କେତୋଟି ବଳିଷ୍ଠ ଗୁଣ ଏ ପ୍ରକାର ବିପର୍ଯ୍ୟୟକୁ ଦୂରେଇ ଦେଇଥିଲା । ଯେତେ ରଗାରଗି ହେଲେ ମଧ୍ୟ ସେ ପ୍ରଥମେ କଥା କହନ୍ତି । ରାଗିବା ଘଟଣାଟି ପ୍ରତି ସେ କୌଣସି ଭ୍ରୂକ୍ଷେପ କରନ୍ତି ନାହିଁ, ଫଳରେ କିଛି ସମୟ ପୂର୍ବେ ଏପରି ମନୋମାଳିନ୍ୟ ଘଟିଥିଲା ବୋଲି ଜଣାଯାଏ ନାହିଁ । ଏହା ତାଙ୍କର ଗୋଟିଏ ଅସମ୍ଭବ ପ୍ରକାରର ଗୁଣ ଯାହା ମୋ ପାଖରେ ନଥିଲା । ମୁଁ ମୁହଁ ଶୁଖାଇ ବହୁ ସମୟ ରହେ । ସେ କିନ୍ତୁ ଅତିଶୀଘ୍ର ସ୍ୱାଭାବିକ ଅବସ୍ଥାକୁ ଫେରି ଆସନ୍ତି । ତା'ପରେ ସେ ଅତି ସ୍ନେହୀ । ଆମ ପରିବାରର ସମସ୍ତଙ୍କୁ ତଥା ବନ୍ଧୁବାନ୍ଧବମାନଙ୍କୁ ବହୁତ ଆଦର ଯତ୍ନ କରନ୍ତି । ତାଙ୍କର ଏହି ଗୋଟିଏ ବିରାଟ ଗୁଣ ମୋର ଓ ମୋ ପାରିବାରିକ ଜୀବନକୁ ସୁଖମୟ କରିପାରିଛି । ମୁଁ ଯଦି କାହାକୁ ସାହାଯ୍ୟ କରିବାକୁ ଚାହାନ୍ତି ଏବଂ ସେ ବାରଣ କରନ୍ତେ, ତାହେଲେ ପାରିବାରିକ ସଂଘର୍ଷ ଆହୁରି ବଢ଼ିଯାନ୍ତା । 'ପରଝିଅ ଘର ଭାଙ୍ଗେ' କଥାର ସେ ଥିଲେ ସଂପୂର୍ଣ୍ଣ ବିପରୀତ । ତାଙ୍କୁ ଆମର ସମସ୍ତ ବନ୍ଧୁବାନ୍ଧବ ବହୁତ ଭଲ ପାଆନ୍ତି । ଏମାନଙ୍କ ପାଇଁ ମୁଁ ପ୍ରକୃତରେ କେହି ନୁହେଁ, ମୋ ସ୍ତ୍ରୀ ହିଁ ସବୁ କିଛି । ସେମାନଙ୍କର ସମସ୍ତ ଅସୁବିଧା ପ୍ରତି ଦୃଷ୍ଟି ଦେଇ ସେ ଏପରି କାମ କରନ୍ତି ଯେ ସମସ୍ତେ ତାଙ୍କୁ ମନେ ପକାନ୍ତି, ପ୍ରଶଂସା କରନ୍ତି । ଏହା ତାଙ୍କ ପକ୍ଷରେ କମ୍ ବାହାଦୁରୀ କଥା ନୁହେଁ। ଏହି ଗୁଣଟି ସେ ତାଙ୍କ ମାଆଙ୍କଠାରୁ ପାଇଥିଲେ ।

ଏହି ଅନଭିଜ୍ଞ ଅପରିପକ୍ୱ ଝିଅଟି କାଳକ୍ରମେ ସବୁ କାମରେ ଏପରି ପାରଙ୍ଗମ ହୋଇଉଠିଲେ ଯେ ଘରର ଯାବତୀୟ କାମ ସେ କଲେ । ମୁଁ କହେ ଯେ ଘରେ ମୁଁ କେବଳ ଜଣେ ପଇସାଦିଆ ଅତିଥି ମାତ୍ର । ମୁଁ ଘର ତିଆରି କଲା ପରେ ଘରଟି ତାଙ୍କ ହାତରେ ସମର୍ପି ଦେଲି । ପ୍ରଥମେ ତ ସେ କେବଳ ଗୋଟିଏ ଫୁଲକୁ ଭଲ ପାଉଥିଲେ, ତାହା ଥିଲା ଫୁଲକୋବି ! କିନ୍ତୁ କ୍ରମେ ମୋ ଅପେକ୍ଷା ଫୁଲରେ ତାଙ୍କର ଆଗ୍ରହ ସବୁଠୁ ବେଶୀ ବଢ଼ିଗଲା । ସେ ନାନାପ୍ରକାର ଫୁଲ ଲଗାନ୍ତି, ପାଣି ଦିଅନ୍ତି, ତାର ଯତ୍ନ ନିଅନ୍ତି । ମୁଁ ବାହାରୁ ଆସି ଉପଭୋଗ କରେ । ଅନ୍ୟ ଭଦ୍ରଲୋକଙ୍କୁ ଆଣି ଦେଖାଏ । ସେ ଗାଈ ରଖନ୍ତି, ସେମାନଙ୍କ ପାଇଁ ବହୁତ ପରିଶ୍ରମ କରନ୍ତି, ଘରେ ସମସ୍ତେ କ୍ଷୀର ଦହି ଖାଉ । ସେ ପୋଖରୀରେ ଜାଆଁଳ ଛାଡ଼ନ୍ତି । ମାଛ ଖାଦ୍ୟ ପକାନ୍ତି, ଜାଲୁଆ ଡାକନ୍ତି, ଆମେ ମାଛ ଖାଉ ଇତ୍ୟାଦି ଘରର ସବୁ କାମ ସେ ବୁଝନ୍ତି । —ଆମ ପିଲାଙ୍କର, ବନ୍ଧୁବାନ୍ଧବଙ୍କର, ଗାଁଆଡ଼ ଲୋକଙ୍କର, ବଗିଚାରେ ରହୁଥିବା ମୂଲିଆମାନଙ୍କର ଏବଂ ସେମାନଙ୍କ ସ୍ତ୍ରୀଙ୍କର ମଧ୍ୟ ଦେହପା ଦେଖାଇବା କାମ ମୋ ସ୍ତ୍ରୀଙ୍କର ।

ଘରର ପୂରା ଦାୟିତ୍ୱ ସେ ନେଇଯିବା ଫଳରେ ମୁଁ ବାହାର କାମରେ ବହୁତ ସମୟ କଟାଇପାରେ । ପରିବାରର କୌଣସି ଯୋଗାଡ଼ଯନ୍ତ୍ର ନକରି ମୁଁ ଚାହିଁଲା ମାତ୍ରେ ଦିଲ୍ଲୀ,

ବମ୍ବେ କିମ୍ବା ବିଦେଶ ଯାତ୍ରା କରିପାରେ । କେତେମାସ ବିଦେଶରେ ରହିଲା ପରେ ଘରକୁ ଫେରିଲା ବେଳକୁ ସବୁ ଠିକ୍ ଠିକ୍ ଭାବରେ କାମ ଚାଲିଥାଏ । ଏହାକଣ କମ୍ ସାହାଯ୍ୟ ନିଜ ଜୀବନରେ ଉନ୍ନତି କରିବା ପାଇଁ ? ଯେଉଁ ସ୍ତ୍ରୀମାନେ ଚାକିରି କରି ଅଧିକା ଉପାର୍ଜନ କରନ୍ତି ସେମାନଙ୍କର ଅବଦାନ ଠାରୁ ମୋ ସ୍ତ୍ରୀଙ୍କର ଅବଦାନ ଯଥେଷ୍ଟ ବେଶୀ କହିଲେ ଚଳେ । ଅବଶ୍ୟ ମୋ ତରଫରୁ ମୁଁ ତାଙ୍କୁ ପୂରା ଦାୟିତ୍ୱ ଦେଇଥାଏ । ଛୋଟ ଛୋଟ କଥାରେ ମୁଁ ବ୍ୟାଘାତ ସୃଷ୍ଟି କରେନାହିଁ । କେବଳ ପିଲାମାନଙ୍କର ଲାଳନପାଳନ ବିଷୟରେ ମୁଁ ବଳିଷ୍ଠ ଭାବରେ ହସ୍ତକ୍ଷେପ କରେ । କ୍ରମେ ସେ ମଧ ଅନେକ କଥାରେ ମୋ ସହିତ ଏକମତ ହେଲେ । ପିଲାଙ୍କୁ ନ ମାରିବା ବିଷୟରେ ସେ ମୋ ସହିତ ସଂପୂର୍ଣ୍ଣ ଭାବରେ ସହଯୋଗ କରନ୍ତି । ମୁଁ ଅବଶ୍ୟ ସେମାନଙ୍କର ସଂପୂର୍ଣ୍ଣ ସ୍ୱାଧୀନତାର ପକ୍ଷପାତୀ । ସେ ହୁଏତ ଏତେଦୂର ଯାଇପାରନ୍ତି ନାହିଁ ।

କ୍ରମେ ଆମ ଘରୁ ସମସ୍ତ ପ୍ରକାରର କୁସଂସ୍କାରଗତ ରୀତିନୀତି ଲୋପ ପାଇଗଲା । ମୁଁ ନାସ୍ତିକ । ସେ ଆସ୍ତିକ ସତ, କିନ୍ତୁ ଅଯଥା ପୂଜାପୂଜି ପର୍ବପର୍ବାଣୀର ଲୋକ ଦେଖାଣିଆ ରୀତିନୀତି ପାଳନ କରନ୍ତି ନାହିଁ । ମୋ ପୁଅମାନଙ୍କର ବ୍ରତ ହେଲାନାହିଁ । ସେ ଯଦି ଜିଦ୍ ଧରି ବସିଥାନ୍ତେ ବ୍ରତ କରିବା ପାଇଁ ଘରେ ନିଶ୍ଚିତ ଭାବରେ ଅଶାନ୍ତି ସୃଷ୍ଟି ହୋଇଥାନ୍ତା । ମୁଁ ବ୍ରତଘରେ ଯୋଗ ଦେଇନଥାନ୍ତି । ସେ ନିଜେ ବ୍ରତ କରିଥାନ୍ତେ । ଏହା କିନ୍ତୁ ପିଲାଙ୍କ ମନରେ ବିଶେଷ ଅଶାନ୍ତି ସୃଷ୍ଟି କରିଥାନ୍ତା । ତେଣୁ ଜୀବନର ଅଧିକାଂଶ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକଳାପରେ ସେ ମୋ ସହିତ ଏକମତ । ପ୍ରଥମେ ମୁଁ ତାଙ୍କୁ ମୋ ମତରେ ଦୀକ୍ଷିତ କରିବା ପାଇଁ ଚେଷ୍ଟା କଲିନାହିଁ । କ୍ରମେ କ୍ରମେ ବହୁତ କଥାରେ ସେ ମୋ ସହିତ ଏକମତ ହେଲେ । ମୋର ଧାରଣା, ସ୍ୱାମୀ କିମ୍ବା ସ୍ତ୍ରୀ ପରସ୍ପରକୁ ନିଜ ମତରେ ଦୀକ୍ଷିତ କରିବାର ପ୍ରୟାସ କରିବା ଉଚିତ ନୁହେଁ । ତା'ଫଳରେ ପରସ୍ପର ମଧରେ ପ୍ରତିରୋଧ ଜନ୍ମେ । ଜଣକ କଥାକୁ ଗ୍ରହଣ କରିବାକୁ ଅନ୍ୟ ଜଣକ ଅନିଚ୍ଛୁକ ହୁଏ । ତେଣୁ କେହି କାହାକୁ ପ୍ରବର୍ତ୍ତାଇ ନିଜ ବାଟକୁ ଆଣିବା ସମ୍ଭବ ନୁହେଁ । ପାରସ୍ପରିକ ପ୍ରତିଯୋଜନାତ୍ମକ କାର୍ଯ୍ୟ ଭିତରେ ଏହା ସଂଭବ ହୁଏ ।

ସମାନ୍ତରାଳ ରେଖାରେ ମାନସିକ ସ୍ତରରେ ଗତି କରୁଥିବା ସ୍ତ୍ରୀ ପୁରୁଷଙ୍କ ଭିତରେ ପାଶ୍ଚାତ୍ୟ ଦେଶରେ କିଛି ସମୟ ପରେ ଛାଡ଼ପତ୍ର ହୋଇଯାଏ । କିନ୍ତୁ ଆମ ଦେଶ ପରିବାରର ଗୋଟିଏ ପ୍ରଧାନ ବୈଶିଷ୍ଟ୍ୟ ହେଲା ଯେ ବାପା ମା' ପିଲାଙ୍କ ପାଇଁ ବଞ୍ଚନ୍ତି । ପିଲାଙ୍କର ମୁହଁକୁ ଚାହିଁ ସେମାନେ ମନାନ୍ତର ମତାନ୍ତରକୁ ଭୁଲି ଯାଆନ୍ତି । ପିଲାମାନଙ୍କ ଭଲମନ୍ଦ ଲାଗି ଉଭୟେ ଏତେ ବ୍ୟାକୁଳ ଏବଂ ଏପରି ଭାବରେ ଅହରହ କାର୍ଯ୍ୟବ୍ୟସ୍ତ ରହନ୍ତି ଯେ ସ୍ୱାମୀସ୍ତ୍ରୀଙ୍କର ବ୍ୟକ୍ତିଗତ ମନାନ୍ତର ବିଷୟରେ ଭାବିବା ଦରକାର ହୁଏନାହିଁ । ଅବଶ୍ୟ ସ୍ତ୍ରୀମାନେ ଅର୍ଥନୈତିକ କ୍ଷେତ୍ରରେ ଆତ୍ମ ନିର୍ଭରଶୀଳ ହୋଇ ନଥିବାରୁ ସେମାନଙ୍କ ତରଫରୁ ଅନ୍ତତଃ ଛାଡ଼ପତ୍ରର ସମ୍ଭାବନା ନାହିଁ । ସ୍ୱାମୀମାନେ ଏହାର ସୁଯୋଗ ନିଅନ୍ତି । କିନ୍ତୁ ବର୍ତ୍ତମାନ ଯେଉଁ ପରିବାରରେ ସ୍ତ୍ରୀର ଅର୍ଥନୈତିକ ସ୍ୱାଧୀନତା ରହିଛି ସେଠାରେ ମଧ ଯେତେ ବ୍ୟକ୍ତିଗତ ଅଶାନ୍ତି ହେଲେ ମଧ ପିଲାଙ୍କ ପାଇଁ ସେମାନେ ଏକତ୍ର ରହନ୍ତି । ଆମ ଦେଶର ଦାମ୍ପତ୍ୟ ଜୀବନର କୃତକାର୍ଯ୍ୟତା ପିଲାମାନଙ୍କର ଚରିତ୍ର ଗଠନ ଓ ସେମାନଙ୍କର

ସାମାଜିକ କୃତି ଉପରେ ନିର୍ଭର କରିଥାଏ । ସେହି ଦୃଷ୍ଟିରୁ ଆମ ପାରିବାରିକ ଜୀବନରେ ଗଭୀର ସାର୍ଥକତା ରହିଛି ବୋଲି ମୋର ବିଶ୍ୱାସ । ଆମର ଦୁଇଟି ପୁଅ ଓ ଦୁଇଟି ଝିଅଙ୍କର ଗୁଣ, ଚରିତ୍ରବତ୍ତା, ଶିକ୍ଷା ଓ ଅର୍ଥନୈତିକ କ୍ଷେତ୍ରରେ ଅଗ୍ରଗତି କରିଥିବା ଯୋଗୁଁ ଆମ ଦାମ୍ପତ୍ୟଜୀବନର ଆଭିମୁଖ୍ୟ ସାର୍ଥକ ହୋଇଛି ବୋଲି ମନେହୁଏ ।

ପାଶ୍ଚାତ୍ୟ ଓ ଭାରତୀୟ ପରିବାରର ଜୀବନ ଆଦର୍ଶ ଭିତରେ ବହୁତ ତଫାତ୍ ଦେଖାଯାଏ । ପାଶ୍ଚାତ୍ୟ ଦେଶରେ ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଯଦି ବହୁତ ବେଶି ମନୋମାଳିନ୍ୟ ହୁଏ, ସେମାନଙ୍କ ଭିତରେ ଛାଡ଼ପତ୍ର ହୋଇଯାଏ- ପିଲାମାନଙ୍କ ପ୍ରତି ସେମାନଙ୍କର ନଜର ନଥାଏ । ସେମାନଙ୍କ ମତରେ ଜୀବନର ସୁଖ ଦୁଃଖ ସ୍ୱାମୀ ସ୍ତ୍ରୀ ଭିତରେ ହିଁ ଆବଦ୍ଧ ରହିଯାଏ । ସେମାନଙ୍କର ନ ପଡ଼ିଲେ ଅଲଗା ହୋଇଯିବା ସ୍ୱାଭାବିକ । କିନ୍ତୁ ଭାରତରେ ସ୍ୱାମୀ ସ୍ତ୍ରୀମାନେ ଚାରୋଟି ପାରିବାରିକ ପରିସର ଭିତରେ କାମ କରନ୍ତି । ନାରୀର ସ୍ତ୍ରୀ ଭୂମିକା ସହିତ ମାଆର କର୍ତ୍ତବ୍ୟ, ପାରିବାରିକ ଦାୟିତ୍ୱ ଏବଂ ସାମାଜିକତା ରହିଥାଏ । ଜଣେ ଗୋଟିଏ ପରିସର ଭିତରେ ଅସୁଖୀ ହେଲେ ମଧ ଅନ୍ୟ ତିନୋଟି ପରିସରରେ ସେ ଯଦି ବହୁତ କୃତ କାର୍ଯ୍ୟ ହୁଏ, ତାହାହେଲେ ମଧ ଦାମ୍ପତ୍ୟ ଜୀବନ ଅତୁଟ ରହିଥାଏ । ଜଣେ ସ୍ତ୍ରୀ କିମ୍ବା ସ୍ୱାମୀ ହିସାବରେ ଆଦର୍ଶ ସ୍ଥାନୀୟ ନ ହେଲେ ମଧ ଅନ୍ୟ ତିନୋଟି ପରିସର ତାର ଅସୁଖୀ ଜୀବନର ପରିପୂରକ ରୂପେ କାମ କରେ । ତେଣୁ ଭାରତୀୟ ପରିବାରରେ ବିବାହ ବିଚ୍ଛେଦ କମ ହେବା ସ୍ୱାଭାବିକ ।

ମୋର ଏବଂ ମୋ ସ୍ତ୍ରୀ ଭିତରେ ଦାଂପତ୍ୟ ଭୂମିକା ଖୁବ୍ ଆଦର୍ଶ ସ୍ଥାନୀୟ ହୋଇପାରି ନଥିଲା । ବୌଦ୍ଧିକ ଏବଂ ଆବେଗିକ ସ୍ତରରେ ବିଶେଷ ମିଳନ ଥିଲା । କିନ୍ତୁ ପିଲାପିଲିଙ୍କ ତତ୍ତ୍ୱାବଧାନରେ ଏବଂ ଅନ୍ୟାନ୍ୟ ପାରିବାରିକ କ୍ଷେତ୍ରରେ ଆମ ଭିତରେ ବହୁ ପରିମାଣରେ ସହଯୋଗ ରହିଥିଲା । ଫଳରେ ପିଲାଙ୍କ ଉପରେ ଏହାର ପ୍ରଭାବ ଆଦୌ ପଡୁ ନଥିଲା । ବ୍ୟକ୍ତିଗତ ସ୍ତରରେ ମୋ ସ୍ତ୍ରୀ ଥିଲେ ସବୁବେଳେ ତର୍କ ପ୍ରବଣ– ଯେ କୌଣସି କଥାରେ ସେ ନିଶ୍ଚୟ ତା'ର ବିପରୀତ ଯୁକ୍ତି ନେଇ ତର୍କ କରିବା ତାଙ୍କର ଗୋଟିଏ ସହଜାତ ଗୁଣ ହୋଇଯାଇଥିଲା । ତେଣୁ ତାଙ୍କ ସହିତ କୌଣସି ଆଲୋଚନା ମୋ ପକ୍ଷରେ ସୁଖକର ନ ଥିଲା । କେବଳ ଯୁକ୍ତି ପାଇଁ ଯୁକ୍ତି କରିବା ଅନେକ ସମୟରେ ଅପ୍ରୀତିକର ହୋଇଯାଏ । ତେଣୁ ଆମମାନଙ୍କ ଭିତରେ କଥାବାର୍ତ୍ତା ଜମେ ନାହିଁ ।

ଆଉ ଗୋଟିଏ ଗୁରୁତର ବ୍ୟକ୍ତିତ୍ୱଗତ ବିଭେଦ ଆମ ଭିତରେ ଥିଲା । ସାମନ୍ତବାଦୀ ଅହଂକାର ତାଙ୍କଠାରେ ପ୍ରଚଣ୍ଡ ଭାବରେ ଥିଲା । କିନ୍ତୁ ମୁଁ ଗରିବ ପରିବାରରେ ବଢ଼ିଥିବା ଯୋଗୁ ଏବଂ ପର କାଳରେ ତାର ବହୁତ ଊର୍ଦ୍ଧ୍ୱକୁ ମୁଁ ଉଠିଯାଇଥିଲେ ସୁଦ୍ଧା- ମୋଠାରେ ଏହାର ବିପରୀତ ଦୃଷ୍ଟିକୋଣ ଦୃଢ଼ ଭାବରେ ରହିଥିଲା । ତାଙ୍କର ବାପ ଘର ଏବଂ ଅନ୍ୟାନ୍ୟ ବହୁତ ବନ୍ଧୁ ବାନ୍ଧବ ପ୍ରଚୁର ଜମିବାଡ଼ିର ମାଲିକ ଥିବା ଯୋଗୁ ସେ ସେମାନଙ୍କ ସହିତ ଯେପରି ଭାବରେ ସବୁ କ୍ଷେତ୍ରରେ ତାଳ ଦେଇ ଚାଲିପାରୁଥିଲେ - ମୋ ପାଖରେ ତାହା ସଂଭବ ହୁଏ ନାହିଁ । ସାମନ୍ତବାଦୀ ମନୋବୃତ୍ତିର ଲୋକେ ସାଧାରଣତଃ ନିଜ ନିଜର ଅଧିକାରକୁ ପ୍ରଚଣ୍ଡ ଭାବରେ ସାବ୍ୟସ୍ତ କରିବାରେ ଏବଂ ଅନ୍ୟମାନଙ୍କ ଉପରେ କର୍ତ୍ତୃତ୍ୱ ଜାରି କରିବାରେ ପିଲାଦିନରୁ ଅଭ୍ୟସ୍ତ । ତେଣୁ ଏ କ୍ଷେତ୍ରରେ ମଧ ମୋର ତାଙ୍କ ସହିତ

ଚରମ ମତଭେଦ । ତାଙ୍କର ସାମନ୍ତବାଦୀ ପରିବାର ପରି ଅନ୍ୟ ତାଙ୍କର ବହୁ ବନ୍ଧୁବାନ୍ଧବଙ୍କ ସହିତ ମୋର ପିଲାଦିନରୁ ସେପରି ଘନିଷ୍ଠତା ସଂଭବ ହୋଇପାରିଲା ନାହିଁ । ପିଲାଦିନରୁ ବଢ଼ି ଆସୁଥିବା ବ୍ୟକ୍ତିତ୍ୱ ସହଜରେ ବଦଳି ପାରେ ନାହିଁ । ବଦଳାଇବାକୁ ହେଲେ ସେଥିପାଇଁ ବହୁ ଆତ୍ମବିଶ୍ଳେଷଣ, ଆତ୍ମସମାଲୋଚନାର ଆବଶ୍ୟକତା ରହିଛି । ତାହା ସମସ୍ତଙ୍କ ପକ୍ଷରେ ସଂଭବ ହୁଏନାହିଁ । ତେଣୁ ମୋ ମତରେ ପରସ୍ପର ବିରୋଧୀ ବଦ୍ଧମୂଳ ଚରିତ୍ରରେ ସଂଶୋଧନର ଆଶା ନ ରଖି ନିଜ ନିଜର ମାନସିକ ପରିଧି ଭିତରେ ସ୍ୱାଧୀନ ଭାବରେ ବୁଲିବା ପାଇଁ ଛାଡ଼ିଦେବା ଉଚିତ । ଏଥିପାଇଁ ପ୍ରଚୁର ଧୈର୍ଯ୍ୟ ଓ ସହନଶୀଳତାର ଆବଶ୍ୟକତା ରହିଛି । ତା ନହେଲେ ଅଯଥା ପାରିବାରିକ କଳହରେ ସମସ୍ତେ ବ୍ୟତିବ୍ୟସ୍ତ ହୋଇପଡ଼ିବା ସ୍ୱାଭାବିକ ।

ମୋ ମତରେ ଆଜିକାଲି ବିବାହ କ୍ଷେତ୍ରରେ ଝିଅ ପୁଅମାନଙ୍କ ପକ୍ଷରେ ପସନ୍ଦ ମୁତାବକ ପାତ୍ରପାତ୍ରୀଙ୍କର ଅଭାବ ନଥିଲା ବେଳେ ସାମାଜିକ ଅର୍ଥନୈତିକ, ଶ୍ରେଣୀଗତ ବା ସାଂସ୍କୃତିକ ବୈଷମ୍ୟ ଥିବା ପରିବାର ଭିତରେ ବିବାହ ସଂବଧ ସ୍ଥାପିତ ହେବା ଉଚିତ ନୁହେଁ ।

ଆମ ଦେଶରେ ପିଲାଟିଏ ଜନ୍ମହେଲା ପରେ ଅନେକ କ୍ଷେତ୍ରରେ ସ୍ତ୍ରୀର ସମସ୍ତ ଧ୍ୟାନ ଧାରଣା ପିଲା ଉପରେ ବିନିଷ୍ଟ ରହେ । ସ୍ୱାମୀ ବୈଠକଖାନାର ସୋଫା ପରି ପଡ଼ିରହେ । ପୋଛାପୋଛି ନ କଲେ ବୈଠକଖାନାର ଶୋଭାବର୍ଦ୍ଧନରେ ବ୍ୟାଘାତ ଘଟିବ । ତେଣୁ ସ୍ୱାମୀର ଯତ୍‌ସାମାନ୍ୟ ପରିଚର୍ଯ୍ୟା ଯଥେଷ୍ଟ ବୋଲି ଧରାଯାଏ । ବୈଠକଖାନାର ସୋଫାକୁ ତାରିଫ୍ କଲେ ନିଜର ଯେପରି ମର୍ଯ୍ୟାଦା ବଢ଼େ, ସ୍ୱାମୀର ପ୍ରଶଂସା କରିବାରେ ନିଜର ଗୌରବ ବୃଦ୍ଧି ହୁଏ । ଏହା ପ୍ରାୟ ଦେଖାଯାଏ ଯେ ବଡ଼ ଚାକିରିଆ ଓ ସମାଜରେ ପ୍ରତିଷ୍ଠିତ ସ୍ୱାମୀମାନଙ୍କର ସ୍ତ୍ରୀମାନେ ଶତମୁଖରେ ସେମାନଙ୍କୁ ଅନ୍ୟମାନଙ୍କ ଆଗରେ ପ୍ରଶଂସା କରିଥାନ୍ତି । ତାଙ୍କର ଗୁଣ ଗାରିମା କଥା କହି କହି ବେଦମ ହୋଇଯାନ୍ତି । ଅଥଚ ସେହି ପ୍ରଶଂସା ଅନୁଯାୟୀ ସ୍ୱାମୀମାନଙ୍କ ପ୍ରତି ପ୍ରକୃତ କ୍ଷେତ୍ରରେ ସେମାନେ ଯଥେଷ୍ଟ ଆଦର, ଆଗ୍ରହ ବା ପରିଚର୍ଯ୍ୟା ଦେଖାନ୍ତି ନାହିଁ । ଗାଈକୁ ହତାଦର କଲେ ସାଙ୍ଗେ ସାଙ୍ଗେ ତା'ର କ୍ଷୀର କମିଯିବ । ସ୍ୱାମୀକୁ ହତାଦର କଲେ ତ ହଠାତ୍ କୌଣସି କ୍ଷେତ୍ରରେ କ୍ଷତି ହୋଇଯିବନାହିଁ । ଏ ପ୍ରକାର ମନୋଭାବ ସ୍ତ୍ରୀମାନଙ୍କ ପ୍ରତି ସ୍ୱାମୀମାନଙ୍କର ମଧ୍ୟ ରହିଥାଏ । ଏ ବିଷୟରେ ଆମେମାନେ ଯଥେଷ୍ଟ ସଚେତନ ଥିଲୁ ।

ବିବାହର ତିନି ଚାରିଦିନ ପରେ ଆଉ ଗୋଟିଏ ଘଟଣା ଘଟିଥିଲା, ଯାହା ବହୁଦିନ ଯାଏଁ ମନେପଡ଼େ । କାରଣ ମୋର ମାନବୀୟ ସଂପର୍କ ସମ୍ବନ୍ଧରେ ଯେଉଁ ଆଦର୍ଶବୋଧ ରହିଛି, ଏହି ଘଟଣାଟି ତାର ଗୋଟିଏ ମୁଖ୍ୟ ମାଇଲ ଖୁଣ୍ଟି ରୂପେ କାମ କରେ । ଦିନେ ମୋ ସ୍ତ୍ରୀ ଓ ଶାଶୁ ଗୋଟିଏ ରିକ୍ସାରେ ଆମ ଘରୁ ବାହାରୁଥିଲେ । ରିକ୍ସାବାଲା ସେମାନଙ୍କୁ ତାଙ୍କ ଘରେ ଛାଡ଼ି ଦେବା ପାଇଁ ଆଗତୁରା ପଇସା ନେବା ପାଇଁ ଦାବି କଲା ଓ ପଇସା ଆଗତୁରା ନ ପାଇଲେ ନେବ ନାହିଁ ବୋଲି କହିଲା । ଆଉ ରିକ୍ସା ମଧ୍ୟ ମିଳିଲାନି । ମୋର ଟ୍ରେନ୍‌କୁ ଯିବା କଥା—ଡେରି ହୋଇଯାଉଥାଏ । ପାଖରେ ଖୁଚୁରା ପଇସା ବା ଟଙ୍କା ନଥିଲା । ଏ ସଂପର୍କରେ ସେ ପାଟିତୁଣ୍ଡ କରିଥିଲା । ମୋର ସ୍ତ୍ରୀ ଓ ଶାଶୂଙ୍କ ଆଗରେ ଏହା ମୋର

ପୁରୁଷତ୍ୱ ଉପରେ ଯେପରି ଭୟଙ୍କର ଆଘାତ ଦେଲା । ମୁଁ ରିକ୍ସାବାଲାକୁ ଚଟକଣାଟିଏ ପକାଇଦେଲି । ଏହା ଆମ ସମାଜରେ ଗୋଟିଏ ଅତି ସାଧାରଣ କଥା ବୋଲି ଧରି ନିଆଯାଇପାରେ । କିନ୍ତୁ ମୋ ମନରେ ଏହି ଘଟଣାଟି ଗଭୀର ରେଖାପାତ କରିଥିଲା । ମୁଁ କେବେହେଲେ ସେଦିନ ପର୍ଯ୍ୟନ୍ତ କାହାରିକୁ ଭୁଲ୍‌ରେ ମଧ୍ୟ ମାରି ନଥିଲି । ତେଣୁ ମୋ ପକ୍ଷରେ ଏହା ଗୋଟିଏ ଭୟଙ୍କର ଘଟଣା ହିସାବରେ ଦେଖା ଦେଇଥିଲା । ଗରିବ ରିକ୍ସାବାଲାକୁ ଚଟକଣାଟିଏ ମାରିବା ପରେ ମୋର ଏତେ ଅନୁତାପ ହୋଇଥିଲା ଯେ ଏହା ଯେପରି ଜୀବନରେ ଆଉଥରେ ନ ଘଟେ, ସେଥିପାଇଁ ମୋ ମନରେ ପ୍ରତିଜ୍ଞା ଛାଏଁ ଛାଏଁ ଆସିଯାଇଥିଲା । ତାପରେ ମୁଁ କାହାରିକୁ ଜୀବନସାରା ମାରିନାହିଁ କି ଖରାପ କଥା କହି ଗାଳି ମଧ୍ୟ ଦେଇନାହିଁ ।

ସ୍ତ୍ରୀ ଆଗରେ ପୁରୁଷତ୍ୱ ଦେଖାଇବାର ଯେ ମିଥ୍ୟା ବାହାଦୂରୀ ତାହା ମଧ୍ୟ ଗୋଟିଏ କାପୁରୁଷତାର ଲକ୍ଷଣ ବୋଲି ମୋର ମନେ ହୁଏ । ଏ ପ୍ରକାର ଫମ୍ପା ବାହାଦୂରୀ ଝିଅମାନଙ୍କ ଆଗରେ ଦେଖାଇବାର ମନୋବୃତ୍ତି ଯୋଗୁ ନାନା ପ୍ରକାରର ଅକଥନୀୟ ଓ ଅଶୋଭନୀୟ ବ୍ୟବହାର ପୁରୁଷମାନେ ଦେଖାଇଥାନ୍ତି । ନାନାପ୍ରକାରର ନିଷ୍ଠୁର କାର୍ଯ୍ୟକଳାପ ଏ ପ୍ରକାରର ମନୋବୃତ୍ତି ଯୋଗୁ ଆଜିକାଲି ବହୁତ ଦେଖାଯାଏ । ହିନ୍ଦି ସିନେମାରେତ ଏହା ଗୋଟିଏ ନିତ୍ୟ ନୈମିତୀକ ଘଟଣାରେ ପରିଣତ ହୋଇଯାଇଛି । ଯେ କୌଣସି ସଭ୍ୟ ସମାଜରେ ଏହା ଯେ କେତେ ଘୃଣ୍ୟ– ଏହା ଆମ ଦେଶର ବହୁ ଲୋକ ହୃଦୟଙ୍ଗମ କରିପାରନ୍ତି ନାହିଁ । ଏଥିଯୋଗୁଁ ଏହି ଛୋଟ ଘଟଣାଟି ମୋ ମନ ଭିତରେ ଏପରି ସ୍ଥାୟୀ ପ୍ରଭାବ ପକାଇ ପାରିଛି ।

■■■

# ୧୦

# ଉଚ୍ଚାକାଙ୍କ୍ଷାର ଆଦ୍ୟ ଉଦ୍‌ବେଳନ (୧୯୪୪-୪୬)

୧୯୪୪ ମସିହା ମେ-ଜୁନ୍ ଖରାଛୁଟିରେ ମୁଁ ଭାଇନାଙ୍କ ପାଖରେ ସମ୍ବଲପୁରରେ ଥିଲି । ରେଭେନ୍ସା କଲେଜ ଜୁଲାଇ ୩ ତାରିଖରେ ଖୋଲିଲା । ମୁଁ ସେଦିନ ସକାଳେ ଯାଇ ଡି.ପି.ଆଇ. ଅଫିସ୍‌ରେ ମୋ ନିଯୁକ୍ତି କଥା ପଚାରିଲି । କେହି କିଛି ନିର୍ଦ୍ଦିଷ୍ଟ ଭାବରେ କହିପାରିଲେ ନାହିଁ । ମୁଁ ନିରାଶ ହୋଇ ଘରକୁ ଫେରି ଯାଉଥିଲି । ଇଚ୍ଛା ହେଲା, ଡି.ପି.ଆଇ. ସ୍ୱର୍ଗୀୟ ଶ୍ୟାମା ଚରଣ ତ୍ରିପାଠୀଙ୍କୁ ତାଙ୍କ ଘରେ ଯାଇ ଦେଖା କରିବି । ଆଗରୁ ତାଙ୍କ ସହିତ ମୋର ପରିଚୟ ଥିଲା । ସେ ମୋତେ ଦେଖିଲାକ୍ଷଣି କହିଲେ—

'କିଓ ରଥେ, ତୁମେ କ'ଣ ରେଭେନ୍ସା କଲେଜରେ ଯୋଗ ଦେଇନାହଁ ? ଏହିକ୍ଷଣି ଯାଅ । ମୁଁ ପ୍ରିନ୍ସପାଲ ପରିଜାଙ୍କୁ ଫୋନ୍‌କରି ଦେଉଛି ସେ ତୁମକୁ କଲେଜରେ ଲେକ୍‌ଚର ହିସାବରେ ନିଯୁକ୍ତି ଦେବେ । ବର୍ତ୍ତମାନ ଏଗାରଟା ହେଲାଣି । ଆଜି ବାରଟା ପୂର୍ବରୁ ଯାଇ ଯୋଗ ଦିଅ ।'

ମୋତେ ଆଶ୍ଚର୍ଯ୍ୟ ଲାଗିଲା ଯେ ଏପରି ଭାବରେ ପୁଣି ଚାକିରିରେ ନିଯୁକ୍ତି ମିଳେ ! ସାଙ୍ଗେ ସାଙ୍ଗେ ରେଭେନ୍ସା କଲେଜ ପ୍ରିନ୍ସପାଲ ପରିଜା ସାହେବଙ୍କ ସାଙ୍ଗରେ ଦେଖା କଲି । ସେ ତା'ପୂର୍ବରୁ ତ୍ରିପାଠୀ ସାହେବଙ୍କ ପାଖରୁ ଟେଲିଫୋନ୍ ପାଇଥାନ୍ତି । ମୁଁ ବାରଟା ବାଜିବାର ପାଞ୍ଚମିନିଟ୍ ପୂର୍ବରୁ ଚାକିରିରେ ଯୋଗ ଦେଲି । ଲେଖାହେଲା ମୋ ନିଯୁକ୍ତିପତ୍ରରେ ଯେ ମୁଁ ଏଗାରଟା ପଞ୍ଚାବନରେ ଚାକିରିରେ ଯୋଗ ଦେଇଥିଲି । ସେତେବେଳେ ଏ ପ୍ରକାର ସମୟାନୁବର୍ତ୍ତିତା ଓ ଆଇନଗତ କାର୍ଯ୍ୟ ହେଉଥିଲା ଏବଂ ଏ ପ୍ରକାରର ଦକ୍ଷ ଏବଂ ପ୍ରଚଣ୍ଡ ହୃଦୟବତ୍ତାର ଶାସକ ଥିଲେ ।

ତ୍ରିପାଠୀ ସାହେବଙ୍କୁ ସମସ୍ତେ ରଜା ବୋଲି କହୁଥିଲେ । ବଡ଼ ଦିଲ୍‌ଦାରିଆ ଲୋକ ସେ ଥିଲେ । ତାଙ୍କର ହୃଦୟବତ୍ତା ସମସ୍ତଙ୍କୁ ମୁଗ୍ଧ କରିଦେଉଥିଲା । ସେ ଟେଲିଫୋନ୍‌ରେ ଏପରି ଆଦେଶ ଦେବା ଲୋକ । ତାଙ୍କ ସହିତ ମନଖୋଲି କଥାବାର୍ତ୍ତା କରିହୁଏ । ପରିଜା ସାହେବ ଗମ୍ଭୀର ଓ ବିଦ୍ୱାନ । ତାଙ୍କୁ ଦେଖିଲେ ଡର ମାଡ଼େ । ଅବଶ୍ୟ ପର ଜୀବନରେ ତାଙ୍କ ସହିତ ମୋର ଗଭୀର ମାନବୀୟ ସମ୍ପର୍କ ସ୍ଥାପିତ ହୋଇଥିଲା । ତାଙ୍କ ପ୍ରତି ମୋର

ଅଗାଧ ଭକ୍ତି ଓ ସମ୍ମାନ ରହିଥିଲା । ସେ ଜଣେ ନିରପେକ୍ଷ ଏବଂ ନ୍ୟାୟବାନ ଲୋକ ଥିଲେ ।

ଚାକିରିରେ ଯୋଗ ଦେଇ ଅଧ୍ୟାପକମାନଙ୍କର କମନ୍‌ରୁମ୍‌ରେ ଯାଇ ପହଞ୍ଚିଲି । ସବୁ ଅଧ୍ୟାପକମାନଙ୍କ ସହିତ ଚିହ୍ନା ପରିଚୟ ଥିଲା । ପ୍ରାୟ ସମସ୍ତେ ପାଟଣା ଯାଆନ୍ତି ବିଶ୍ୱବିଦ୍ୟାଳୟ କାର୍ଯ୍ୟରେ । ସେଠାରେ ସେମାନଙ୍କ ସହିତ ଆଲୋଚନା ହୁଏ । ଅଧିକାଂଶ ଅଧ୍ୟାପକ ବଡ଼ ସହୃଦୟତାର ସହ ଆଳାପ କରନ୍ତି । ଦର୍ଶନ ବିଭାଗର ମୁଖ୍ୟ ଥିଲେ ସ୍ୱର୍ଗୀୟ ଅଧ୍ୟାପକ ରତ୍ନାକର ପତି । ଅଧ୍ୟାପକମାନେ ମୋତେ ଅଭିନନ୍ଦନ ଜଣାଇଲେ ଏବଂ ତା ପରଦିନଠାରୁ ମୋର କ୍ଳାସ୍ ନେବା ପାଇଁ ବନ୍ଦୋବସ୍ତ ହୋଇଥିଲା । ମୁଁ ଆଇ.ଏ.ର ପ୍ରଥମ ବାର୍ଷିକ ଶ୍ରେଣୀରେ ତର୍କଶାସ୍ତ୍ର ଏବଂ ବି.ଏ. ଶ୍ରେଣୀରେ ମେଟାଫିଜିକ୍‌ସ ପଢ଼ାଇବା ପାଇଁ ନିର୍ଦ୍ଦେଶ ପାଇଲି ।

ସେ ସମୟରେ ଚାକିରି ଅବସ୍ଥା ଯାହା ସେଥିରେ ପାଶ୍ କରିବାର ଅଳ୍ପଦିନ ପରେ ଚାକିରିଟିଏ ପାଇ ମୁଁ ବହୁତ ଆନନ୍ଦିତ ହେଲି । ଛତ୍ରବଜାର ପୋଲ ପାଖରେ ଥିବା ସାହୁ ପରିବାରର ଗୋଟିଏ ତିନି ବଖୁରିଆ ଘର ମାସିକ ପଚିଶ ଟଙ୍କାରେ ଭଡ଼ା ନେଇ ମୋ ସ୍ତ୍ରୀଙ୍କୁ ଆଣିଲି । ଘରଟି ନୂଆ, ପରିଷ୍କାର; ତେଣୁ ଭଲ ଲାଗିଲା ।

ପଢ଼ାଇବାରେ ପ୍ରଥମେ ମୋର ବହୁତ ଭୟ ଓ ଉଦ୍‌ବିଗ୍ନତା ଥିଲା । ଶହେ ଅଠେଇଶି ଜଣ ପିଲାଥିବା କ୍ଳାସ୍‌ରେ ପ୍ରଥମରୁ ପଢ଼ାଇବା କି କଠିନ କଥା ସେ କଥା ଭାବି ଭାବି ପ୍ରଥମ ଦିନ ରାତିରେ ମୋତେ ନିଦ ହୋଇନଥିଲା । ତର୍କ ଶାସ୍ତ୍ରର ଯେଉଁ ଅଂଶ ପଢ଼ାଇବି ସେତକ କିପରି ପଢ଼ାଇବି, କି କି ଉଦାହରଣ ଦେବି— ଦୈନନ୍ଦିନ ଅନୁଭୂତି ସହିତ କିପରି ତାକୁ ସଂପୃକ୍ତ କରିବି— ସେ ବିଷୟରେ ବିଶଦ ଭାବରେ ଲେଖାଲେଖି କରି ରଖିଲି । ଦର୍ପଣ ଆଗରେ ଠିଆ ହୋଇ ବକ୍ତୃତା ଅଭ୍ୟାସ କଲି । ବି.ଏ.ରେ ମେଟାଫିଜିକ୍‌ସ ପଢ଼ାଇବା ପାଇଁ ମୋର ଏତେ ଭୟ ନଥିଲା । ପିଲା କମ୍, ମୁଁ ବି ସେ ବିଷୟରେ ଅନେକ କିଛି ଜାଣିଛି, ତେଣୁ ଏ କ୍ଷେତ୍ରରେ ମୋର ଦୃଢ଼ ଆତ୍ମବିଶ୍ୱାସ ଥିଲା । କିନ୍ତୁ ତର୍କଶାସ୍ତ୍ର ମୋ ପାଇଁ ନୂଆ । ଆଇ.ଏ.ରେ ଯାହା ପଢ଼ିଥିଲି । ଯାହାହେଉ ପ୍ରଥମ ବକ୍ତୃତା ଦେଇସାରିଲା ପରେ ମୋର ଆତ୍ମବିଶ୍ୱାସ କିଛି ପରିମାଣରେ ହେଲା । ପିଲାମାନେ ତ ନୂଆ ଅଧ୍ୟାପକଙ୍କୁ ପ୍ରଥମେ ଟିକିଏ ପରୀକ୍ଷା କରନ୍ତି । ସେ ଯଦି ସେଥିରେ ପାରିଗଲା ତାହାହେଲେ ଭବିଷ୍ୟତରେ ତାର ଆଉ ଅସୁବିଧା ହୁଏନାହିଁ । ମୁଁ ଏହି ପରୀକ୍ଷାରେ କୃତକାର୍ଯ୍ୟତାର ସହ ସମ୍ମୁଖୀନ ହୋଇଥିଲି ।

ବି.ଏ. କ୍ଳାସ୍ ମୋତେ ସବୁଠୁ ବେଶୀ ଭଲ ଲାଗୁଥିଲା । କାରଣ ମୁଁ ପ୍ରଥମେ ଅଧଘଣ୍ଟାଏ ବହିରେ ଯାହା ଅଛି ସେହି କଥା ପଢ଼ାଏ । ତାପରେ ପନ୍ଦର ମିନିଟ୍ ଭିତରେ ଏହାସବୁ ମୋ ମତରେ କିପରି ଭୁଲ୍ ଏବଂ ଅଯୌକ୍ତିକ ବୋଲି ଯୁକ୍ତି ବାଢ଼େ । ଏଥିଯୋଗୁ ପଢ଼ାଇବାରେ ମୋର ବହୁତ ଆନନ୍ଦ ହୁଏ । ପଢ଼ାଇଲାବେଳେ ମୁଁ ଅନୁପ୍ରାଣିତ ହୋଇଯାଏ । ଘଣ୍ଟା ବାଜିବା ଭୁଲିଯାଏ । ଛାତ୍ରଛାତ୍ରୀମାନେ ମଧ୍ୟ ବହୁତ ଖୁସି ହୁଅନ୍ତି । ମୋର ବି.ଏ. ଅନର୍ସ ଛାତ୍ରଛାତ୍ରୀମାନଙ୍କ ଭିତରୁ ପରବର୍ତ୍ତୀକାଳୀନ ଦାର୍ଶନିକ ସ୍ୱର୍ଗୀୟ ଅଧ୍ୟାପକ ପ୍ରପତ୍ତି । ଅନ୍ୟ ଗୋଟିଏ କ୍ଳାସ୍‌ରେ ଥିଲେ ଶ୍ରୀ ସତ୍ୟବାଦୀ ମିଶ୍ର । ଅନ୍ୟାନ୍ୟ କ୍ଳାସ୍‌ମାନଙ୍କରେ ଥିଲେ ବର୍ତ୍ତମାନର ପ୍ରସିଦ୍ଧ ଗାଣିତିକ ଶ୍ରୀ ବିକ୍ରମ ପତି ।

ଅଧ୍ୟାପନା ଅତ୍ୟନ୍ତ ରୁଚିକର ଓ ପ୍ରେରଣାତ୍ମକ ଥିଲା ମୋ ପକ୍ଷରେ । ଗତାନୁଗତିକ ଭାବରେ କେବଳ ବହିରେ ଥିବା ବିଷୟଟି ପଢ଼ାଇବାରେ ମୋର ଆଗ୍ରହ ନଥିଲା । ବହିପାଠର ଚିରାଚରିତ ଯୁକ୍ତିର ପୁନରାବୃତ୍ତି ସହିତ ତା ବିରୁଦ୍ଧରେ କେତେପ୍ରକାର ମତ ହୋଇପାରେ, ତାର ଅବତାରଣା କଲେ ପିଲାଙ୍କ ଭିତରେ ଆଗ୍ରହ ସୃଷ୍ଟି ହେଉଥିଲା । ଭଗବାନଙ୍କ ସପକ୍ଷରେ ଯେଉଁସବୁ ଯୁକ୍ତି ଥିଲା, ତା ବିରୁଦ୍ଧରେ ଅନ୍ୟାନ୍ୟ ଯୁକ୍ତି ଉତ୍‌ଥାପନ କରିବାରେ ମୁଁ ବହୁତ ଆନନ୍ଦ ପାଉଥିଲି । ଯାହା ଯୁକ୍ତିଗତ, ହେତୁଯୁକ୍ତ ସେପରି ତଥ୍ୟକୁ ଗ୍ରହଣ କରିବା ପାଇଁ ପିଲାଙ୍କୁ ପ୍ରରୋଚନା ଦେଉଥିଲି । ମନୁଷ୍ୟ ଜୀବନ ଓ ସାମାଜିକ ଘଟଣା ପ୍ରବାହ ସହିତ ସଂପର୍କ ନଥିବା ତଥ୍ୟ କିପରି ଅବାନ୍ତର ସେ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ହେଉଥିଲା । ସେତେବେଳେ ମଧ ବହୁ ସତ୍ୟସନ୍ଧିତ୍ସୁ ଛାତ୍ରଛାତ୍ରୀ ଏପରି ଆଲୋଚନାରେ ସକ୍ରିୟ ଭାଗ ନେଉଥିଲେ । ଏହି ଆଲୋଚନା ଫଳରେ ମୋର ମଧ ବହୁତ ବିଷୟ ଶିଖି ହେଉଥିଲା । ନୂଆ ପ୍ରକାର ଭାବନା ମନରେ ସୃଷ୍ଟି ହେଉଥିଲା । ତେଣୁ ଅଧ୍ୟାପନା ବହୁତ ଭଲ ଲାଗୁଥିଲା ।

ନାସ୍ତିକବାଦ ବିଷୟରେ ଅଧ୍ୟାପକ ରତ୍ନାକର ପତିଙ୍କ ସହିତ ବହୁଥର ଆଲୋଚନା ହୁଏ ଏବଂ ଆମେ ଦୁହେଁ ଭିନ୍ନମତାବଲମ୍ବୀ ହୋଇଥିଲେ ମଧ ତାଙ୍କର ଶେଷ ଜୀବନ ପର୍ଯ୍ୟନ୍ତ ଆମ ଦୁହିଁଙ୍କ ଭିତରେ ଅଗାଧ ବଂଧୁତା ରହିଥିଲା । ତାଙ୍କର ଯେଉଁଦିନ ମୃତ୍ୟୁ ହେଲା, ସେହିଦିନ ସକାଳେ ସେ ଆମ ଘରକୁ ଆସିଥିଲେ । ଗଲାବେଳେ ମୁଁ ପ୍ରତିଥର ପରି ତାଙ୍କୁ ନମସ୍କାର କଲାବେଳେ ସେ କହନ୍ତି ଭଗବାନ ତୁମର ମଙ୍ଗଳ କରନ୍ତୁ । (God bless you) ମୁଁ କହେ- ଆପଣଙ୍କ ଆଶୀର୍ବାଦ ମୋ ପାଇଁ ଏତେ ମୂଲ୍ୟବାନ ଏବଂ ଆନନ୍ଦଦାୟକ ଯେ ଭଗବାନଙ୍କ ଆଶୀର୍ବାଦ ମୋ ପାଇଁ ସଂପୂର୍ଣ୍ଣ ଅର୍ଥହୀନ । ସବୁଦିନ ପରି ହସି ହସି ମୋ ହାତକୁ ଆହୁରି ଜୋର୍‌ରେ ହଲାଇ ଦେଇ ଆଶୀର୍ବାଦ କରି କରି ସେ ଚାଲିଗଲେ– ସେଦିନ ସନ୍ଧ୍ୟାବେଳକୁ ସେ ଆଉ ଇହଧାମରେ ନଥିଲେ । ମୋ ମତରେ ଅଧ୍ୟାପକ ରତ୍ନାକର ପତି ହେଉଛନ୍ତି ଜଣେ ପରିପୂର୍ଣ୍ଣ ମନୁଷ୍ୟ, ସେ ମନ୍ଦିରକୁ ପ୍ରାୟ ଯାଆନ୍ତି ନାହିଁ, ପୂଜାପୂଜିରେ ବେଶୀ ସମୟ ଦିଅନ୍ତି ନାହିଁ, ଶ୍ରୀ ଶ୍ରୀ ବାବା ମାଆମାନଙ୍କୁ ମାନନ୍ତି ନାହିଁ, ଗରିବଙ୍କୁ ସାହାଯ୍ୟ କରନ୍ତି, କିନ୍ତୁ ସେଥିପାଇଁ ଡିଂଡିମ ପିଟନ୍ତି ନାହିଁ – ବରଂ ଅନ୍ୟମାନଙ୍କ ଅଗୋଚରରେ ସେମାନଙ୍କୁ ସାହାଯ୍ୟ କରନ୍ତି । ଅମାୟିକ ତାଙ୍କର ଜୀବନ । ଏପରି ପ୍ରକୃତ ମାନବୀୟ ଧର୍ମରେ ଦୀକ୍ଷିତ ଧାର୍ମିକଙ୍କ ସହିତ ମୋର ଖୁବ୍ ବଂଧୁତା ହୁଏ । କେବଳ ମାଳାଧାରୀ ଧାର୍ମିକ ଲୋକଙ୍କ ସହିତ ମୋର ବିଶେଷ ଭଲ ସଂପର୍କ ନଥାଏ ।

ଅଧ୍ୟାପନା ଆରମ୍ଭରୁ ହିଁ ମୁଁ ରୁଚିକର ପୋଷାକ ପିନ୍ଧୁଥିଲି । ଘରେ ଦୁଇଟି ଚମତ୍କାର କୁକୁର ଥାଆନ୍ତି । ଗୋଟିଏ ପୋମିରୀଆନ, ମୁହଁ ଗୋଜିଆ, ଧଳା ମାଟିଆ ରଙ୍ଗର ଛାପି ଛାପିକିଆ ଦେହ, ବାଳ ବେଶୀ ଲମ୍ବା କି ଛୋଟ ନୁହେଁ ; ତା ସାଙ୍ଗକୁ ଥିଲା ଗୋଟିଏ ସଫେଦ୍ ଧଳା ବଡ଼ ବଡ଼ ରୁମ୍ ଥିବା କୁକୁର । ଏଉଟି ଥିଲା ଅଣ୍ଡିରା । ତାର ନାମ ଥିଲା ସୁଲତାନ । ଆଉଟି ମାଈ, ତାର ନାମ ଥିଲା ବେଗମ୍ । ଆମମାନଙ୍କର ଅତି ଆଦରର ଏ ଦୁଇଟି କୁକୁର  ମଣିଷଙ୍କ ପରି କଥା ବୁଝନ୍ତି । ଭବିଷ୍ୟତରେ ଆଉ ଯେତେକ କୁକୁର

ରଖାହୋଇଛି ସେମାନଙ୍କୁ ମଧ୍ୟ ସୁଲତାନ ଓ ବେଗମ୍ ଏକ, ଦୁଇ, ତିନି, ଚାରି ପ୍ରଭୃତିରେ ନାମକରଣ କରାହୋଇଛି । କିନ୍ତ ଏତେ ବୁଦ୍ଧିଆ କୁକୁର ଆଉ ଦେଖିବାକୁ ମିଳିନାହିଁ ।

ସେମାନଙ୍କୁ ଗୋଟିଏ ଚାକର ପିଲା କଲେଜ ପଡ଼ିଆରେ ନେଇ ବୁଲାଏ ।

ମୋର ରୁଚିକର ପୋଷାକ, ଭଲ ଭଡ଼ାଘର, କୁକୁର ବୁଲାଇବା ପାଇଁ ଚାକର ପ୍ରଭୃତି ଦେଖି ବହୁ କଲେଜ ପିଲା ଭାବନ୍ତି ଯେ ମୁଁ ଜଣେ ଜମିଦାର ଘରର ପିଲା । ଖାଲି ସଉକିରେ ମୁଁ ଚାକିରି କରିଛି । କିନ୍ତୁ ପ୍ରକୃତରେ ମୋର ଅନ୍ୟ କୌଣସି ରୋଜଗାର ପନ୍ଥା ନଥିଲା । ଦରମା ଥାଏ ମାସକୁ ଶହେ ପଚିଶଟଙ୍କା ଏବଂ ମହଙ୍ଗା ଭତ୍ତା ମାତ୍ର ଆଠଟଙ୍କା । କିନ୍ତୁ ଜିନିଷପତ୍ର ଏତେ ଶସ୍ତା ଥିଲା ଯେ ପାଞ୍ଚଟଙ୍କାକୁ ଚାକର ପିଲାଟିଏ ମିଳୁଥିଲା । ତିନିବଖରା ଘରର ଭଡ଼ା ପଚିଶ ଟଙ୍କା । ଏହିପରି ମୁଁ ସବୁଟଙ୍କା ଖର୍ଚ୍ଚ କରି ଦେଉଥିଲି । ଟଙ୍କା ସଞ୍ଚୟ କରିବା ମନୋବୃତ୍ତି ମୋର ପ୍ରଥମରୁହିଁ ନଥିଲା ଏବଂ ଶେଷ ପର୍ଯ୍ୟନ୍ତ ମଧ୍ୟ ଏହା ସମ୍ଭବ ହେଲାନାହିଁ । ମୁଁ ବାଧ୍ୟବାଧକତାରେ ପଡ଼ି ମାତ୍ର ତିନିହଜାର ଟଙ୍କା ପାଇଁ ଜୀବନ ବୀମା କରିଥିଲି । ନାସ୍ତିକ ଲୋକ, ଗୋଟିଏ ଜୀବନ, ଭଲ ଖାଇ ଭଲ ଘରେ ରହି ରୁଚିକର ଜୀବନଯାପନ କରି ଆନନ୍ଦରେ ଚଳିବା ନୀତି ମୋର ଦୃଢ଼ ଥିଲା । ମୁଁ ଭାବୁଥିଲି ଯେ ଯଦି ହଠାତ୍ ମୁଁ ମରିଯାଏ ମୋ ପିଲାଙ୍କୁ କେହି ନା କେହି ସାହାଯ୍ୟ କରିବ । ସେମାନେ ଭଲ ପଢ଼ିଲେ ବୃତ୍ତି ପାଇବେ, ଆଗକୁ ଯିବେ ଏବଂ ଭଲ ନ ପଢ଼ିଲେ ଛୋଟ ଚାକିରି କରିବେ । ସେଥିପାଇଁ ମୁଁ ନିଜକୁ ଓ ପରିବାରର ସମସ୍ତଙ୍କୁ ଅତିକଷ୍ଟରେ ଜୀବନଯାପନ କରିବାକୁ କାହିଁକି ଦେବି ? ଆମ ପାଇଁ କିଏ ସଞ୍ଚୟ କରିଥିଲା ? ଆମ ଭାଇମାନେ ଯଦି ବହୁ ପରିଶ୍ରମ କରି ନିଜ ଗୋଡ଼ରେ ଠିଆ ହୋଇପାରିଲୁ, ଆମ ପିଲାମାନେ ମଧ୍ୟ ସେହିପରି ଭାବରେ ସ୍ୱାବଲମ୍ବୀ ହେବା ଉଚିତ । ତାଙ୍କ ପେଟରୁ କାଟି ସବୁବେଳେ ଅଭାବର ବାତାବରଣ ସୃଷ୍ଟି କରିବାର ପକ୍ଷପାତୀ ମୁଁ ନଥିଲି । ଫଳରେ ସାରା ଜୀବନ ମୋର ସମସ୍ତ ରୋଜଗାରକୁ ମୁଁ ଖର୍ଚ୍ଚ କରି ଆସିଛି । ବରଂ ସାମର୍ଥ୍ୟ ଅନୁଯାୟୀ ଋଣ କରିଛି ସିନା ସଞ୍ଚୟ କରିନାହିଁ । ମୋର ସାଙ୍ଗମାନେ ଚାଳିଶ ପଚାଶ ହଜାର ଟଙ୍କା ଯାଏ ଜୀବନ ବୀମା କରି ବଡ଼ କଷ୍ଟରେ ଚଳୁଥିଲେ, ସାରାଜୀବନ ଧରି କଷ୍ଟରେ ସଞ୍ଚୟ କରିଥିବା ଚାଳିଶ ପଚାଶ ହଜାର ଟଙ୍କାର ମୂଲ୍ୟ ବର୍ତ୍ତମାନ କଣ ? ବରଂ ସେହି ଟଙ୍କାରେ ସେତେବେଳେ ଘରଦ୍ୱାର, ଗାଡ଼ି ପ୍ରଭୃତି ମୁଁ କରି ପାରିଥିବାରୁ ତାର ପରବର୍ତ୍ତୀ ଉପଯୋଗିତା ମୁଁ ବହୁତ ବେଶୀ ପାଇ ପାରିଛି ।

ପଢ଼ାଇବାରେ ମୋତେ ଆନନ୍ଦ ମିଳୁଥିଲେ ସୁଦ୍ଧା କିଛିଦିନ ପରେ ଦର୍ଶନ ଶାସ୍ତ୍ର ପଢ଼ାଇବା ବଡ଼ ବିରକ୍ତିକର ମନେହେଲା । ଯେଉଁ ବିଷୟ ମୁଁ ପଢ଼ାଉଥିଲି ସେଥିରେ ବିଶ୍ୱାସ ନଥିବାରୁ ଏପରି ପାଠ ପଢ଼ାଇବା ମୋତେ କିପରି ଅଶ୍ୱସ୍ତିକର ଲାଗୁଥାଏ । ମନୋବିଜ୍ଞାନ ପଢ଼ାଇବାକୁ ଭଲ ଲାଗୁଥିଲା । କାରଣ ସେଥିରେ ଯେଉଁ ବିଷୟ ରହିଛି ତାହା ଅଭିଜ୍ଞତା, ଗବେଷଣା ଓ ପର୍ଯ୍ୟବେକ୍ଷଣ ଉପରେ ପର୍ଯ୍ୟବସିତ । ଏଥିରେ କଳ୍ପନା ନାହିଁ, ଅବାନ୍ତର ଯୁକ୍ତି ନାହିଁ, ମନ ଗଢ଼ା ପ୍ରକଳ୍ପ ନାହିଁ । ସବୁ ବାସ୍ତବ ଘଟଣା ।

ମୁଁ ପଢୁଥିବା ବେଳେ ଏମ୍.ଏ. ପାଠ୍ୟକ୍ରମରେ ଦୁଇଟି ପେପର୍ ମନୋବିଜ୍ଞାନ ଥିଲା । ଯଦିଚ ମନୋବିଜ୍ଞାନରେ ମୁଁ ବହୁତ ବହି ପଢ଼ିଥିଲି କିନ୍ତୁ ମନୋବିଜ୍ଞାନଗତ ପରୀକ୍ଷା ନିରୀକ୍ଷାରେ ମୋର ଅଭିଜ୍ଞତା ନଥିଲା । ମୁଁ ଚାକିରି କରିବା ବର୍ଷର ଶେଷ ଭାଗକୁ ଦୁଇମାସ

ଛୁଟି ଖରାଛୁଟି ସହିତ ମିଶାଇ ହାତରୁ ସବୁ ଖର୍ଚ୍ଚ କରି କଲିକତା ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗରେ ସାମୟିକ ଛାତ୍ର ହିସାବରେ ଯୋଗ ଦେଲି । ତତ୍କାଳୀନ ଡି.ପି.ଆଇ. ତ୍ରିପାଠୀ ସାହେବ କଲିକତା ବିଶ୍ୱବିଦ୍ୟାଳୟ ମନସ୍ତତ୍ତ୍ୱ ବିଭାଗର ମୁଖ୍ୟ ଅଧ୍ୟାପକ ପ୍ରସିଦ୍ଧ ମନୋବିଜ୍ଞାନୀ ଡକ୍ଟର ଗିରୀନ୍ଦ୍ରଚନ୍ଦ୍ରଶେଖର ବୋଷଙ୍କ ପାଖକୁ ମୋ ବିଷୟରେ ଗୋଟିଏ ଚିଠି ଲେଖି ଦେଇଥିଲେ । ସେହି ସୁପାରିଶ ପତ୍ର ଫଳରେ ୧୯୪୫ ମାର୍ଚ୍ଚରୁ ଜୁନ୍ ପର୍ଯ୍ୟନ୍ତ ମୁଁ ସେଠାରେ ଛାତ୍ର ହିସାବରେ ଯୋଗ ଦେଇଥିଲି । ପ୍ରଫେସର ବୋଷ ମୋତେ ଜଣେ ଅଧ୍ୟାପକଙ୍କ ତତ୍ତ୍ୱାବଧାନରେ ରଖି ପଢ଼ାପଢ଼ିର ବ୍ୟବସ୍ଥା କରିଦେଲେ । ସେତେବେଳେ ବହୁ ବିଶିଷ୍ଟ ମନୋବିଜ୍ଞାନ ଅଧ୍ୟାପକ ସେଠାରେ ଥିଲେ । କଲିକତାର ମନୋବିଜ୍ଞାନ ବିଭାଗ ଭାରତବର୍ଷର ସର୍ବପୁରାତନ ତଥା ସର୍ବଶ୍ରେଷ୍ଠ ବିଭାଗ ଥିଲା । ସେଠାରେ ମୋତେ ବହୁତ ପରିଶ୍ରମ କରିବାକୁ ପଡ଼ିଥିଲା । ପ୍ରତ୍ୟେକ ଅଧ୍ୟାପକଙ୍କ ପାଖରେ ଦୁଇ ତିନି ସପ୍ତାହ କାମ କରି ତାଙ୍କର ପାଠ୍ୟକ୍ରମ ଆୟତ୍ତ କରୁଥିଲି । ପ୍ରାୟ ପଚାଶଟି ପ୍ରାକ୍ଟିକାଲ ପରୀକ୍ଷା କଲି । ଅଧିକାଂଶ ସମୟ ମୋର ପଢ଼ାପଢ଼ିରେ ହିଁ କଟୁଥିଲା । ଯୁଦ୍ଧ ସମୟ । ସନ୍ଧ୍ୟା ପରେ କଲିକତାର ଚାରିଆଡ଼ ଅନ୍ଧାର । ମୁଁ ରହୁଥିଲି ବେଙ୍ଗଲ ବୋର୍ଡ଼ ହୋଟେଲରେ । ସେଠାରେ ପ୍ରସିଦ୍ଧ ଲେଖକ ସ୍ୱର୍ଗତଃ ପଣ୍ଡିତ ବିନାୟକ ମିଶ୍ର ରହୁଥିଲେ । ତାଙ୍କ ସହିତ ବହୁତ ଆଲୋଚନା ହୁଏ । ତାଙ୍କର ଅଗାଧ ପାଣ୍ଡିତ୍ୟ ଓ ନିଷ୍ଠା ମୋତେ ଅଭିଭୂତ କରିଥିଲା । ସେତେବେଳେ ମଧ୍ୟ ସେଠାରେ ଶ୍ରୀଯୁକ୍ତ ବୃନ୍ଦାବନ ଆଚାର୍ଯ୍ୟ ଭୂଗୋଳରେ ଏମ୍.ଏ. ପଢୁଥିଲେ । ଏମାନଙ୍କ ଗହଣରେ ମୋର ସମୟ ଭଲ କଟି ଯାଉଥିଲା ।

ହାତରୁ ପଇସା ଖର୍ଚ୍ଚ କରି କଲିକତାରେ ଚାରିମାସ ବହୁ କଷ୍ଟରେ ସମୟ କଟାଇଥିଲି । ମୋର ପ୍ରଥମ ପୁଅ ସେତେବେଳକୁ ମାତ୍ର ପାଞ୍ଚମାସର ହୋଇଥିଲା । ଏମାନଙ୍କୁ ଛାଡ଼ିଯିବାରେ ମନକଷ୍ଟ ହେଉଥିଲେ ସୁଦ୍ଧା ମନସ୍ତତ୍ତ୍ୱରେ ଅଧିକ ଜ୍ଞାନ ହାସଲ କରିବା ପାଇଁ ମୁଁ ପରିଶ୍ରମ କରୁଥିଲି । ମୋର ବନ୍ଧୁମାନେ ମୋତେ ପରିହାସ କରି କହୁଥିଲେ ଯେ ହାତରୁ ଖାଇ ଘୋଡ଼ା ଆଗରେ ଡେଇଁବା ଲୋକଙ୍କ ଭିତରୁ ମୁଁ ଜଣେ । ଅବଶ୍ୟ ମୋ ଜୀବନରେ ଏହିପରି ବହୁ କ୍ଷେତ୍ରରେ ବିନା ପାରିଶ୍ରମିକରେ ହାତରୁ ଖର୍ଚ୍ଚ କରି ଏପରି ବହୁତ କାମ କରିଛି । କିନ୍ତୁ ସେଥିରେ ସାମଗ୍ରିକ ଭାବରେ ମୋର ଉନ୍ନତି ହୋଇଛି ସିନା କ୍ଷତି ହୋଇନାହିଁ ।

ଏହି ସମୟରେ ଆଉ ଗୋଟିଏ କଥାରେ ମୋର ଆଗ୍ରହ ଥିଲା । ଯୁଦ୍ଧ ହେଲା ଦିନଠାରୁ ପୃଥିବୀର ଗୋଟିଏ ବଡ଼ ମାନଚିତ୍ରରେ ବିଭିନ୍ନ ରାଜ୍ୟରେ ନାଜି ଅଧିକୃତ ଏବଂ ମୁକ୍ତ ଅଞ୍ଚଳ ସବୁ ନାଲି ନେଳି ପେନ୍‌ସିଲ୍‌ରେ ମୁଁ ଦାଗ ଦେଇ ରଖୁଥିଲି । ହିଟଲରର ଦୁର୍ଦ୍ଧର୍ଷ ସୈନ୍ୟବାହିନୀ କିପରି ସୋଭିଏଟ୍ ରୁଷ ଦଖଲ କରି ଯାଉଥିଲା ଏବଂ ୧୯୪୫ ବେଳକୁ କିପରି ଐତିହାସିକ ପଛଘୁଞ୍ଚା ଦେଇଥିଲା ତାର ସମସ୍ତ ବିବରଣୀ ସେହି ବଡ଼ ମାନଚିତ୍ରରେ ଦେଖାଯାଉଥିଲା । ଅନ୍ୟମାନେ ଆସି ଏ ବିଷୟରେ ମୋଠାରୁ ବହୁତ ଖବର ଜାଣୁଥିଲେ ।

କଲିକତା ରହଣି ସମୟରେ ଗୋଟିଏ ଅଦ୍ଭୁତ ଘଟଣାର ଆଭାସ ପାଇଲି । ମନୋବିଜ୍ଞାନ ବିଭାଗରେ କାମ କରୁଥିବା ବେଳେ ଜଣେ ଭଦ୍ରମହିଳା ଗବେଷକଙ୍କ ସହିତ ମୋର ପରିଚୟ ହୋଇଥିଲା । ଦିନେ ଆମେ ଦୁହେଁ ଏକାଠି ବସି ଗୋଟିଏ ଗବେଷଣାଗତ

ଘଟଣା ବିଷୟରେ ଆଲୋଚନା ସମୟରେ ସେ ହଠାତ୍ କହି ପକାଇଲେ ଯେ ତାଙ୍କର ବହୁ ସଉତୁଣୀ ଅଛନ୍ତି । ଭଦ୍ର ମହିଳାଙ୍କ ବୟସ ଚବିଶି କି ପଚିଶି । ଦେଖିବାକୁ ଖୁବ୍ ସୁନ୍ଦର । ମନୋବିଜ୍ଞାନରେ ଏମ୍.ଏ. ପାଶ୍ କରିଛନ୍ତି । କଲିକତାର ଜଣେ ଅବସରପ୍ରାପ୍ତ ଅବକାରୀ କମିଶନରଙ୍କର ସେ ହେଉଛନ୍ତି ଏକମାତ୍ର କନ୍ୟା । ଅଥଚ ତାଙ୍କର ପୁଣି ଏ ବୟସରୁ ବହୁତ ସଉତୁଣୀ, କଥାଟା ଶୁଣି ମୋତେ ଆଶ୍ଚର୍ଯ୍ୟ ଲାଗିଲା । କ୍ରମେ ସତ୍ୟ ଘଟଣାଟି ଉଦ୍‌ଘାଟିତ ହେଲା । ସେ ଭଦ୍ରମହିଳା ସେ ସମୟର ଜଣେ ପ୍ରଖ୍ୟାତ ଶ୍ରୀ ଶ୍ରୀ ଠାକୁରଙ୍କୁ* ବିବାହ କରିଥିଲେ ଏବଂ ଏହି ଠାକୁରଙ୍କର ତାଙ୍କ ଛଡ଼ା ଆହୁରି ବହୁ ପତ୍ନୀ ଥିଲେ । କିନ୍ତୁ ଏପରି ସୁନ୍ଦରୀ, ବିଦୂଷୀ, ବଡ଼ଘରର ଏକମାତ୍ର କନ୍ୟା ହଠାତ୍ ଗୋଟିଏ ବାବାଙ୍କୁ ତାଙ୍କର ପରିଣତ ବୟସରେ କିପରି ବିବାହ କଲେ ତାହା ମୋତେ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଥିଲା ।

ଘଟଣାଟି ହେଉଛି, ଝିଅର ବାପାମାଆ ସେ ବାବାଙ୍କର ଭକ୍ତ ଥିଲେ । ତାଙ୍କ ଅନୁଗ୍ରହରୁ କୁଆଡ଼େ ଏହି ଝିଅଟି ଜନ୍ମଲାଭ କରିଥିଲା । ଝିଅଟି ଆଶ୍ରମରେ ଅନେକଦିନ ବଢ଼ିଥିଲା । ବାପ, ମାଆ ଓ ଝିଅର ଅଗାଧ ଭକ୍ତି ବାବାଙ୍କଠାରେ । ଝିଅଟିକୁ ବାଇଶି ବର୍ଷ ହେଲାବେଳକୁ ହଠାତ୍ ବାବା କହିଲେ ତାକୁ ସ୍ତ୍ରୀ ରୂପେ ଗ୍ରହଣ କରିବା ପାଇଁ । ବାପ ମା ଆଶ୍ଚର୍ଯ୍ୟ ହୋଇଗଲେ । ଝିଅଟି ଏତେ ସରଳ ଯେ ସେ ଏହାର ତାତ୍ପର୍ଯ୍ୟ ହୃଦୟଙ୍ଗମ କରିପାରି ନଥିଲା । ତା'ପରେ ବାପ ମା ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଆନନ୍ଦରେ ମଧ୍ୟ ଅଭିଭୂତ ହୋଇଗଲେ । ଘରେ କୁଆଡ଼େ ସଂକୀର୍ତ୍ତନ ହେଲା ଯେ–

"ଆମାଦେର ମେୟେକେ ଠାକୁର୍ ଗ୍ରହନ୍ କରିତେ ରାଜି ହଇଆଛେନ ।"

ଏ ପ୍ରକାର ହୋ-ହଲ୍ଲା ଭିତରେ ବିବାହ ସମ୍ପନ୍ନ ହୋଇଗଲା । ବିବାହର କିଛିଦିନ ପରେ ଝିଅଟି ଆବିଷ୍କାର କରିଥିଲା ଯେ ବାବାଙ୍କର ଆହୁରି କେତେକ ବିବାହିତା ସ୍ତ୍ରୀଙ୍କ ଭିତରୁ ସେ ଅନ୍ୟତମ । ଯେହେତୁ ସେ ଶିକ୍ଷିତା ଏବଂ ତାର ରୁଚିକର ବ୍ୟକ୍ତିତ୍ୱ ଥିଲା, ତେଣୁ ତାକୁ ଅନ୍ୟ ସଉତୁଣୀମାନଙ୍କର ପୋଷାକ ପରିଚ୍ଛଦ ଓ ସାଜସଜ୍ଜାର ଦାୟିତ୍ୱ ଦିଆଗଲା । ଏହି ଆବିଷ୍କାରରେ ସେ ଏପରି ଭାଙ୍ଗି ପଡ଼ିଲା ଯେ ସାଙ୍ଗେ ସାଙ୍ଗେ ତାର ବାପା ମାଆଙ୍କ ପାଖକୁ କଲିକତା ଫେରିଆସିଲା । ବାପା ମାଆ ଓ ଆଉ ସମସ୍ତେ ଏହା ଶୁଣି ସ୍ତମ୍ଭୀଭୂତ ହୋଇଗଲେ । ଏମାନେ ଏତେ ଶିକ୍ଷିତ ଓ ପଦସ୍ଥ ଲୋକ ହୋଇ ମଧ୍ୟ ଏପରି କୁସଂସ୍କାରଗ୍ରସ୍ତ ଥିଲେ, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ବାପ ମାଆ ବହୁତ ମନସ୍ତାପର ସହିତ ଝିଅକୁ ପ୍ରତିଶ୍ରୁତି ଦେଲେ ଯେ ତାର ଉଚ୍ଚ ଶିକ୍ଷାର ସମସ୍ତ ବ୍ୟୟଭାର ସେମାନେ ଗ୍ରହଣ କରିବେ । ତାଙ୍କ ଘରର ଗୋଟିଏ ଫ୍ଲାଟ୍ ତାଙ୍କୁ ଦେଲେ । ପରେ ପରେ ସେ ଭଦ୍ରମହିଳା ଇଂଲଣ୍ଡ ଆମେରିକା ଯାଇ ଶ୍ରମ ଆଇନ ବିଭାଗରେ ପାରଦର୍ଶିତା ଲାଭ କରିଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ମନୋବିଜ୍ଞାନରେ ଡକ୍ଟରେଟ୍ ପାଇଥିଲେ । ବେଙ୍ଗଲ ସରକାରଙ୍କର ଶ୍ରମ ବିଭାଗରେ ସେ ଖୁବ୍ ଉଚ୍ଚ ସ୍ଥାନ ଅଧିକାର କଲେ । କିନ୍ତୁ ତାଙ୍କ ଜୀବନର ପାରିବାରିକ ଦିଗଟି ନଷ୍ଟ ହୋଇଯାଇଥିଲା । ତାଙ୍କ ପରି ସରଳା ବାଳିକା ପକ୍ଷରେ

---

*ଏହି ଠାକୁରଙ୍କର ବହୁତ ଭକ୍ତ । ତେଣୁ ତାଙ୍କର ନାମ ଏଠାରେ ଉଲ୍ଲେଖ କରାହୋଇନାହିଁ ।

ସେହି ବିବାହ ବହୁତ ବଡ଼ ଆବେଗାତ୍ମକ ସଂଘର୍ଷ ସୃଷ୍ଟି କରିଥିଲା । ଫଳରେ ବହୁ ପ୍ରକାରର ଦୈହିକ ପୀଡ଼ା ତାଙ୍କଠାରେ ଦେଖା ଦେଇଥିଲା । ଯଦି କୌଣସି ପୁରୁଷ ଥଟ୍ଟାରେ ମଧ୍ୟ ଏପରି କୌଣସି କଥାର ସୂଚନା ଦେଉଥିଲେ, ସେଥିରେ ତାଙ୍କର ଘୃଣା ତୀବ୍ରତର ହୋଇଉଠୁଥିଲା । ଏହା ତାଙ୍କର ମାନସିକ ଭାରସାମ୍ୟ ଅନେକ ସମୟରେ ନଷ୍ଟ କରିଦେଉଥିଲା ।

ଶ୍ରୀ ବାବାଙ୍କ ଔରସରୁ ତାଙ୍କର ଗୋଟିଏ ଝିଅ ହୋଇଥିଲା । ସେ ଥିଲେ ଜାତିରେ କାୟସ୍ଥ, କିନ୍ତୁ ବାବା ବ୍ରାହ୍ମଣ ଥିଲେ । ତେଣୁ ଝିଅର ବିବାହ ପାଇଁ ତାଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତା'ଛଡ଼ା ସେ ବାବାଙ୍କ ଆଶ୍ରମ ଛାଡ଼ିଦେଲେ ବୋଲି ତାଙ୍କର ଶିଷ୍ୟମାନେ ତାଙ୍କ ବିରୁଦ୍ଧରେ ଭୟଙ୍କର ପ୍ରତିଶୋଧପରାୟଣ ହୋଇପଡ଼ିଥିଲେ । ସେମାନେ ବହୁ ସ୍ଥାନରେ ତାଙ୍କୁ ନାନା ଅସୁବିଧାରେ ପକାଉଥିଲେ । ଲଣ୍ଡନରେ ସେ ଯେତେବେଳେ ଶ୍ରମ ଆଇନ୍ ପାଠ ସାରି ଆମେରିକା ଯିବାକୁ ଚାହିଁଲେ ଲଣ୍ଡନ ହାଇ କମିଶନର ଅଫିସରେ ଥିବା ବାବାଙ୍କର କେତେକ ଶିଷ୍ୟ ସେ ଜଣେ କମ୍ୟୁନିଷ୍ଟ ବୋଲି ଗୁପ୍ତ ରିପୋର୍ଟ ଦେବା ଫଳରେ ସେ ତିନିମାସ ପର୍ଯ୍ୟନ୍ତ ଆମେରିକା ଯାଇପାରି ନଥିଲେ । ଏଣେ ତାଙ୍କର ବିଦେଶୀ ମୁଦ୍ରା ବିନିମୟ ବ୍ୟବସ୍ଥାକୁ କାଟିଦେଲେ । ଏମାନଙ୍କର ଯୋଜନା ଥିଲା ଯେ ସେ ଲଣ୍ଡନରେ ଭୋକ ଉପାସରେ ରହି ଭାରତ ଫେରିଯିବେ । ଭାରତୀୟ ହାଇ କମିଶନରଙ୍କୁ ସେ ଦେଖା କଲେ, କିନ୍ତୁ କିଛି ସାହାଯ୍ୟ ମିଳି ନଥିଲା । ମୋର ଲଣ୍ଡନରେ ତାଙ୍କ ସହିତ ଦେଖା ହୋଇଥିଲା । ତାଙ୍କର ଏ ଦୁର୍ଦ୍ଦଶାରୁ ମୁଁ ତାଙ୍କୁ ରକ୍ଷା କରିଥିଲି । ମୁଁ ମୋର ଗଚ୍ଛିତ ଯତ୍‌କିଞ୍ଚିତ ଟଙ୍କା ଦେଇଥିଲି—ସେଥିରେ ସେ ଦୁଇମାସ ଚଳିଥିଲେ । ତାଙ୍କ ବିରୁଦ୍ଧରେ କମ୍ୟୁନିଷ୍ଟ ଅଭିଯୋଗ ମିଥ୍ୟା ବୋଲି ପ୍ରମାଣିତ ହେଲା ପରେ ସେ ଆମେରିକା ଯାଇଥିଲେ । ଭାରତ ଫେରିଲା ଦିନ ବମ୍ବେରେ ଗୋଟିଏ ବ୍ୟାଙ୍କରୁ ତାଙ୍କ ବାପା ପଠାଇ ଥିବା ଟଙ୍କା ପାଇ ମୁଁ ମୋର ପିଲାମାନଙ୍କ ପାଇଁ ଜିନିଷ ପତ୍ର କିଣିଥିଲି । ସେହିଦିନଠାରୁ ତାଙ୍କ ବାପା, ମାଆ ଓ ଭାଇମାନେ ମୋତେ ବହୁତ ଭଲ ପାଉଥିଲେ ।

ବାପା, ମାଆ ଝିଅର ଏପରି ଦୁର୍ଦ୍ଦଶା ଦେଖି ଅର୍ଦ୍ଧପାଗଳ ପ୍ରାୟ ହୋଇଯାଇଥିଲେ । ମାଆ ଦିନଯାକ ଠାକୁର ଘରେ ବସିଥାନ୍ତି । ବାପା ଆଉ ଗୋଟିଏ ଘରେ ନିଜକୁ ବନ୍ଦ୍ କରି ଖାଲି ଖବରକାଗଜ ପଢୁଥାନ୍ତି । କି ବିଷାଦମୟ ପାରିବାରିକ ଜୀବନ ଏମାନଙ୍କର ହୋଇଗଲା ଏହି ବାବାଙ୍କ ଦୟାରୁ ! ତାଙ୍କର ଶିଷ୍ୟମାନେ ମୋଠାରୁ ଏକଥା ଶୁଣିଲେ ହସି କହନ୍ତି ଯେ ବାବା ହେଉଛନ୍ତି ପୁରୁଷୋତ୍ତମ, ତେଣୁ ବହୁପତ୍ନିକ ହେବାର ତାଙ୍କର ଅଧିକାର ଅଛି ଏବଂ ହିନ୍ଦୁଧର୍ମ ଲାଗି ଏହା ଗୋଟିଏ ଶୁଭଙ୍କର ଘଟଣା । ଅବଶ୍ୟ ଏହି ବାବାଙ୍କର ପୁଅମାନେ ହିନ୍ଦୁ ସମାଜର କି ପ୍ରକାର ଉନ୍ନତି କରିଛନ୍ତି ଜାଣିବାର ଆଗ୍ରହ ମୋର ନାହିଁ । ଗୋଟିଏ ପରିବାରର ତିନୋଟି ପ୍ରାଣୀ କି ଦୟନୀୟ ଅବସ୍ଥାରେ ଜୀବନ କଟାଇଲେ ତା'ର ଗଭୀର ଅନୁଭୂତି ମୋଠାରେ ଏ ପ୍ରକାର ଲୋକଙ୍କ ବିରୁଦ୍ଧରେ ଭୟଙ୍କର ବିଦ୍ରୋହ ସୃଷ୍ଟି କରୁଛି । ସମାଜର ବହୁ ବିଶିଷ୍ଟ ଲୋକମାନେ ପୁଣି ଏମାନଙ୍କର ଶିଷ୍ୟ । ଏହିପରି ବହୁ ଶ୍ରୀ ଶ୍ରୀ ବାବା ଓ ମାଆ ଆମ ଦେଶରେ ଅଗଣିତ ନିରୀହ ଲୋକଙ୍କୁ ଶୋଷଣ କରି ଚାଲିଛନ୍ତି । ଏମାନଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି ସିନା କମିବାରେ କୌଣସି ଲକ୍ଷଣ ନାହିଁ । ଦେଶର

ନେତାମାନେ ଏମାନଙ୍କ ଉପରେ ନିର୍ଭର କରିଥାଆନ୍ତି ଭୋଟ ପାଇଁ । ସେହି ଦିଗରୁ ଆମ ସମାଜ କି ପ୍ରକାର କୁସଂସ୍କାରଗ୍ରସ୍ତ ଏବଂ ଆମ ଲୋକଙ୍କର ପରନିର୍ଭରଶୀଳତା କେତେ ବଦ୍ଧମୂଳ, ତାହା ସହଜରେ ଅନୁମେୟ ।

୧୯୪୫ ଜୁଲାଇରେ ମୁଁ କଲିକତାରୁ ଫେରି ଦର୍ଶନ ବିଭାଗରେ ମନସ୍ତତ୍ତ୍ୱ ପଢ଼ାଇଲି । କିନ୍ତୁ ମନସ୍ତତ୍ତ୍ୱ ହେଉଛି ଗୋଟିଏ ମାତ୍ର ପେପର୍ । ଏହାଛଡ଼ା ଅନ୍ୟ ବିଷୟ ମଧ୍ୟ ପଢ଼ାଉଥାଏ । ବି.ଏ. ସ୍ତରରେ ଏହି ପାଠ୍ୟକ୍ରମରେ କୌଣସି ମୌଳିକତା ନଥିଲା । ତେଣୁ ପ୍ରେରଣାର ବଡ଼ ଅଭାବ ହେଉଥିଲା । ଫଳରେ ଦର୍ଶନ ପଢ଼ାଇବାରେ ମୋର ଆଗ୍ରହ କମି କମି ଆସୁଥିଲା । କିଛିଦିନ ପରେ ମୁଁ ଭାବିଲି ଚାକିରି ଛାଡ଼ିଦେବି । ଓକିଲାତି କରିବି । ଆଇନର ଗୋଟିଏ ଭାଗ ସାରିଥାଏ । ଆଉ ଗୋଟିଏ ଭାଗ ବାକି ଥାଏ । ସରକାରଙ୍କଠାରୁ ଅନୁମତି ମଧ୍ୟ ମିଳିଗଲା ଦ୍ୱିତୀୟ ଭାଷାଟି ପଢ଼ିବା ପାଇଁ ।

ଏହିପରି ଦୋଦୁଲ୍ୟମାନ ଅବସ୍ଥାରେ ଥିବା ସମୟରେ ଦ୍ୱିତୀୟ ମହାଯୁଦ୍ଧ ଶେଷ ହେଲା । ୧୯୪୫ ଶେଷ ବେଳକୁ ଓଡ଼ିଶାରୁ କେତେଜଣ ବିଜ୍ଞାନ ଅଧ୍ୟାପକ ବିଲାତ ଯିବାର ସୁଯୋଗ ପାଇଲେ । ଅନ୍ୟମାନେ ବିଲାତ ଯିବାରେ ମୋର ଭୟଙ୍କର ଈର୍ଷା ହେଲା । ଏହି ଈର୍ଷା ଯୋଗୁହିଁ ମୋଠାରେ ବିଲାତ ଯିବା ପାଇଁ ପ୍ରବଳ ଆକାଙ୍‌କ୍ଷା ହେଲା । କିନ୍ତୁ ଦର୍ଶନ ଶାସ୍ତ୍ର ପଢ଼ି ମୁଁ ବା ବିଲାତ ଯିବି କିପରି ? ଏହି ବିଷୟ ନେଇ ବହୁ ସମୟ କଳ୍ପନା ଜଳ୍ପନାରେ କଟେ । ଏ କଥା ଭାବି ଭାବି ଦିନେ ରାତିରେ ନିଦ ହେଲାନାହିଁ । ହଠାତ୍ ରାତି ଅଧରେ ଉଠି ଗୋଟିଏ ଚିଠି ଲେଖିଲି ଲଣ୍ଡନ ବିଶ୍ୱବିଦ୍ୟାଳୟ ମନସ୍ତତ୍ତ୍ୱ ବିଭାଗର ମୁଖ୍ୟଙ୍କ ପାଖକୁ । ତାଙ୍କ ନାମ ମୋତେ ଜଣାନଥାଏ । ଯୁଦ୍ଧ ସମୟରେ କୌଣସି ପତ୍ରପତ୍ରିକା ବା ପୁସ୍ତକ ସେଆଡୁ ଆସୁନଥିଲା । ତେଣୁ ମୁଁ ବିଦେଶରେ ମନସ୍ତତ୍ତ୍ୱରେ ଉଚ୍ଚଶିକ୍ଷା ବିଷୟରେ ସଂପୂର୍ଣ୍ଣ ଅଜ୍ଞ ଥିଲି । ସେ ଚିଠିରେ କ'ଣ ଲେଖିଥିଲି ତାହା ମଧ୍ୟ ମୋର ମନେରହିଲା ନାହିଁ । ଏହିପରି ଗୋଟିଏ ଅର୍ଦ୍ଧରାତ୍ର ଚିଠି ଲେଖିଥିଲି ୧୯୩୯ରେ ପାଟଣା କଲେଜର ପ୍ରିନ୍‌ସପାଲଙ୍କ ପାଖକୁ ସେଠାରେ ପଢ଼ିବା ପାଇଁ । ତାହା ଫଳପ୍ରଦ ହୋଇଥିଲା । ସେହି କାରଣରୁ ବୋଧହୁଏ ଏପରି ଗୋଟିଏ ଚିଠି ଲେଖିବାରେ ପ୍ରେରଣା ମିଳିଥିଲା ।

ବହୁତଦିନ ପରେ ହଠାତ୍ ଲଣ୍ଡନ ବିଶ୍ୱବିଦ୍ୟାଳୟ ମନସ୍ତତ୍ତ୍ୱ ବିଭାଗର ମୁଖ୍ୟଙ୍କଠାରୁ ଗୋଟିଏ ଉତ୍ତର ଆସିଲା ଯେ ସେ ମୋ ପାଇଁ ତାଙ୍କ ବିଭାଗର ବି.ଏ. ଅନର୍ସରେ ଗୋଟିଏ ସ୍ଥାନ ଦେଇପାରିବେ ଏବଂ ମୁଁ କେବେ ଯିବି ତାଙ୍କୁ ଜଣାଇବାକୁ ହେବ । ମୁଁ ଚିଠି ପଢ଼ି ଅବାକ୍ ହୋଇଗଲି । କାରଣ ଯୁଦ୍ଧ ପରେ ପରେ ଇଂଲଣ୍ଡର ବିଶ୍ୱବିଦ୍ୟାଳୟମାନଙ୍କରେ ଭାରତୀୟଙ୍କ ପାଇଁ ସ୍ଥାନ ମିଳିବା ବହୁ କଷ୍ଟକର ବ୍ୟାପାର ଥିଲା । ଭାରତ ସରକାର ଚେଷ୍ଟା କରି ମଧ୍ୟ ସ୍ଥାନ ଯୋଗାଡ଼ କରିପାରୁ ନଥିଲେ । କାରଣ ଯୁଦ୍ଧ ପରେ ସେହି ଦେଶର ବହୁତ ଅଳ୍ପ ବୟସ୍କ ଲୋକ ସେନା ବାହିନୀରୁ ମୁକ୍ତ ହୋଇ ବିଶ୍ୱବିଦ୍ୟାଳୟରେ ପଢ଼ିବା ପାଇଁ ଭିଡ଼ ଜମାଇଥାନ୍ତି । ନିଜ ଦେଶରେ ସେମାନଙ୍କୁ ଅଗ୍ରାଧିକାର ଦିଆଯାଉଥିଲା । ତେଣୁ ଭାରତୀୟ ଛାତ୍ରଙ୍କୁ ଅପେକ୍ଷା କରିବାକୁ ପଡୁଥିଲା ।

ମୁଁ ପଢ଼ିବା ପାଇଁ ସ୍ଥାନ ପାଇ ଯିବାରେ ଯେତିକି ଆନନ୍ଦିତ ହେଲି, ଯିବାର ସମ୍ଭାବନା କଥା ଭାବି ସେତିକି ମ୍ରିୟମାଣ ହୋଇପଡ଼ିଲି । ମନସ୍ତତ୍ତ୍ୱ ଭାରତରେ ସେପରି ପ୍ରଚଳିତ

ନଥିଲା । କେବଳ କଲିକତା ଓ ମହୀଶୂରରେ ମନସ୍ତତ୍ତ୍ୱ ବିଭାଗ ଥିଲା । ସେପରି ପରିସ୍ଥିତିରେ ମୋତେ ଓଡ଼ିଶା ସରକାର ମନସ୍ତତ୍ତ୍ୱରେ କାହିଁକି ବିଲାତ ପଠାଇବେ ? ଏପରି ସମୟରେ ଭାରତ ସରକାରଙ୍କର ବିଜ୍ଞାପନ ବାହାରିଲା ବିଲାତରେ ପଢ଼ିବା ଲାଗି ବୃତ୍ତି ପାଇଁ । କେବଳ ବିଜ୍ଞାନ ଓ ଶିକ୍ଷା ପାଠ୍ୟକ୍ରମ ପାଇଁ ବୃତ୍ତି ବାହାରିଥାଏ । ସେଥିରେ କଳା ଅନ୍ତର୍ଗତ କୌଣସି ବିଷୟ ନଥିଲା ଏବଂ ଶିକ୍ଷା ବିଷୟରେ ମୋର କୌଣସି ଡିଗ୍ରୀ ମଧ୍ୟ ନଥିଲା । ତଥାପି ଦୁଃସାହସର ସହିତ ଶିକ୍ଷା ପାଇଁ ଗୋଟିଏ ଦରଖାସ୍ତ ପକାଇଲି । ଆଶ୍ଚର୍ଯ୍ୟର କଥା, ମୋର ବି.ଇଡି. କିମ୍ବା ଏମ୍.ଇଡି. ଡିଗ୍ରୀ ନ ଥିଲେ ସୁଦ୍ଧା ମୋତେ ସାକ୍ଷାତ ପାଇଁ ଡାକରା ଆସିଲା । ବୃତ୍ତି ପାଇଁ ବଛାବଛି କାମ ସେତେବେଳକାର ପବ୍ଲିକ୍ ସର୍ଭିସ୍ କମିଶନ ରହିଥାଏ । ତାର ଚେୟାରମ୍ୟାନ୍ ଥିଲେ ଓଡ଼ିଶାର ଭୂତପୂର୍ବ ପୋଲିସ୍ ସାହେବ ପାର୍କିନ୍ । ଏହି କମିଶନ କଟକରେ ସାକ୍ଷାତ ପାଇଁ ମୋତେ ଡାକିଲେ । ମୋତେ ଚେୟାରମ୍ୟାନ୍ ପ୍ରଥମ ପ୍ରଶ୍ନ ପଚାରିଲେ—

"ତୁମର ତ ଶିକ୍ଷାରେ କୌଣସି ଯୋଗ୍ୟତା ନାହିଁ, ତୁମେ କାହିଁକି ଦରଖାସ୍ତ କରିଛ ?"

ମୁଁ ଲଣ୍ଡନ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗର ମୁଖ୍ୟଙ୍କ ଚିଠିଟି ବଢ଼ାଇଦେଲି ଏବଂ କହିଲି ଯେ—

"ପ୍ରକୃତରେ ମୋର ଶିକ୍ଷା ବିଷୟବସ୍ତୁ ପ୍ରତି ମଧ୍ୟ କୌଣସି ଆଗ୍ରହ ନାହିଁ । ମୁଁ ମନସ୍ତତ୍ତ୍ୱରେ ଯିବାକୁ ଚାହେଁ, କିନ୍ତୁ ଯେହେତୁ ମନସ୍ତତ୍ତ୍ୱରେ କୌଣସି ବୃତ୍ତି ନାହିଁ— ତେଣୁ ଶିକ୍ଷା ପାଇଁ ଦରଖାସ୍ତ କରିଛି । ବୃତ୍ତି ପାଇଲା ପରେ ମୁଁ ଲଣ୍ଡନ ଯାଇ ପୁଣି ମନସ୍ତତ୍ତ୍ୱକୁ ବଦଳାଇ ଦେବି । ମୁଁ ଯେତେବେଳେ ସ୍ଥାନ ପାଇ ସାରିଛି, ତେଣୁ ସରକାର ମୋତେ ମନୋବିଜ୍ଞାନରେ ପଠାଇବା ଉଚିତ୍ ବୋଲି ମୋର ଦୃଢ଼ମତ ଉପସ୍ଥାପିତ କଲି ।"

ମୋର ଖୋଲାଖୋଲି ମତ ପ୍ରକାଶରେ ଏବଂ ମୋର ନିଜ ଉଦ୍ୟମରେ ମୁଁ ସ୍ଥାନ ଯୋଗାଡ଼ କରି ପାରିଥିବାରୁ କମିଶନ ମୋ ପ୍ରତି ଖୁସି ହୋଇଗଲେ । ସେମାନେ ଭାରତ ସରକାରଙ୍କୁ ମନୋବିଜ୍ଞାନରେ ଗୋଟିଏ ବୃତ୍ତି ଦେବା ପାଇଁ ସୁପାରିଶ କଲେ । ତାଙ୍କର ମୋ ପ୍ରତି ପ୍ରସନ୍ନତା ମୁଁ ସାଙ୍ଗେ ସାଙ୍ଗେ ଜାଣିପାରିଥିଲି । କାରଣ ଚେୟାରମ୍ୟାନ୍ ମୋତେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ସ୍ଥାନ ଯୋଗାଡ଼ କରି ପାରିଥିବା ଯୋଗୁଁ ଆନନ୍ଦର ସହ ଧନ୍ୟବାଦ ଜଣାଇଥିଲେ ।

ମୁଁ ଶିକ୍ଷାରେ ଦରଖାସ୍ତ କରିଥିଲି ବୋଲି ମୋର ବନ୍ଧୁମାନେ ମୋତେ ବୋକା ବୋଲି ଭାବୁଥିଲେ । ଯାହାହେଉ ମୋର ବୋକାମି ମୋତେ ସାହାଯ୍ୟ କରିଥିଲା । ଅପ୍ରତ୍ୟାଶିତ ଭାବରେ ମୁଁ ଜାତୀୟ ବୃତ୍ତି ପାଇବାରେ ସମର୍ଥ ହୋଇଥିଲି । ସରକାରୀ ଭାବରେ ମଧ୍ୟ ଲଣ୍ଡନ ବିଶ୍ୱବିଦ୍ୟାଳୟ ମନସ୍ତତ୍ତ୍ୱ ବିଭାଗକୁ ଜଣାଇ ଦିଆଗଲା ଯେ ମୋ ପାଇଁ ସେ ସ୍ଥାନ ରଖିବା ପାଇଁ । ମୋର ସ୍ୱପ୍ନ ସାର୍ଥକ ହେଲା । ଆନନ୍ଦରେ ମୁଁ ବିଭୋର ହୋଇଯିବାର ଯଥେଷ୍ଟ କାରଣ ଥିଲା । ଅବଂଶ୍ୟ ତତ୍କାଳୀନ ଓଡ଼ିଶା ସରକାରଙ୍କ ପକ୍ଷରୁ କିଛି ପ୍ରତିବନ୍ଧକ ଯେ ସୃଷ୍ଟି କରା ହୋଇନଥିଲା ତାହାନୁହେଁ । କିନ୍ତୁ ଭାରତ ସରକାରଙ୍କ ପାଖରେ ତାର କିଛି

ମୂଲ୍ୟ ରହିଲା ନାହିଁ । ଓଡ଼ିଶା ସରକାରଙ୍କର ଏ'ପ୍ରକାର ରାଜ୍ୟବିରୋଧୀ ଢଙ୍ଗ ବର୍ତ୍ତମାନ ମଧ୍ୟ ରହିଛି । ଓଡ଼ିଶାର କୌଣସି ଉନ୍ନତି ହେବା ଯେପରି ଏମାନେ ଚାହାଁନ୍ତି ନାହିଁ ।

ଓଡ଼ିଶା କର୍ତ୍ତୃପକ୍ଷଙ୍କର ମୋ ବିଷୟରେ ଏପରି ବିରୋଧ ମନୋଭାବର ଏହା ଦ୍ୱିତୀୟ ଘଟଣା । ପ୍ରଥମରେ ମୋର ଚାକିରିରେ ଯୋଗ ଦେବାରେ ବାଧା ସୃଷ୍ଟି କରିଥିଲେ ଯୁଦ୍ଧକାଳୀନ ଶିକ୍ଷା ମନ୍ତ୍ରୀ ଗୋଦାବରୀଶ ମିଶ୍ର । କାରଣ ସେ କଂଗ୍ରେସୀ ଲୋକ ହୋଇ ସୁଦ୍ଧା ଗାନ୍ଧୀଜୀ ଭାରତଛାଡ଼ ଡାକ ବ୍ରିଟିଶ୍ ସରକାରଙ୍କୁ ଦେଇଥିଲା ବେଳେ ଏବଂ ସବୁ କଂଗ୍ରେସ ନେତା ଜେଲ୍‌ରେ ଥିଲା ବେଳେ ସେ ବ୍ରିଟିଶ ଶାସକ ଅଧୀନରେ ଶିକ୍ଷା ମନ୍ତ୍ରୀ ହୋଇଗଲେ ଏବଂ ବ୍ରିଟିଶ ସରକାରଙ୍କର ଜଣେ ପ୍ରଶଂସକ ହୋଇଯାଇଥିଲେ ! ତେଣୁ ତାଙ୍କୁ ଜଣେ ଦେଶଦ୍ରୋହୀ ହିସାବରେ ଅଭିହିତ କରି ତାଙ୍କୁ ପାଟନା କଲେଜର ଓଡ଼ିଆମାନଙ୍କର ସଭାକୁ ଏହାର ସେକ୍ରେଟେରୀ ହିସାବରେ ବିରୋଧ କରିଥିଲି ଏବଂ ତାହା ବନ୍ଦ ହୋଇଯାଇଥିଲା । ତା ଫଳରେ ସେ ମୋର ଚାକିରି ପାଇବାରେ ବାଧା ସୃଷ୍ଟି କରିଥିଲେ । ତାଙ୍କର ମନ୍ତ୍ରୀତ୍ୱ ଗଲା ପରେ ଯାଇ ମୁଁ ଚାକିରିରେ ଯୋଗ ଦେଇଥିଲି ।

୧୯୪୬ ସେପ୍ଟେମ୍ବର ବେଳକୁ ମୋର ବିଲାତ ଯିବା କଥା । ତା ପୂର୍ବରୁ ବହୁତ କମ୍ ଲୋକ ବିଲାତ ଯାଉଥିଲେ । ତେଣୁ ଯିବାର ପ୍ରସ୍ତୁତି ବିଷୟରେ ମୋର କମ୍ ଜ୍ଞାନ ଥିଲା । ଟମାସ୍ କୁକ୍ ନାମକ ଜାହାଜ କମ୍ପାନୀର ପାଣି ଜାହାଜରେ ମୋର ଯିବା କଥା । ସେମାନେ ସବୁ ଖବର ମୋତେ ଯୋଗାଇ ଦେବା ନିୟମ । ଅନେକ ସମୟରେ ପ୍ରତି ଜାହାଜରେ ଏତେ ସୈନ୍ୟ ନିଜ ଦେଶକୁ ଫେରୁଥିଲେ ଯେ ଭାରତୀୟ ଛାତ୍ରମାନଙ୍କୁ ଜାହାଜରେ ଯାଗା ନ ମିଳିବା ଯୋଗୁଁହିଁ କେତେକ ଯାଇ ପାରୁନଥିଲେ । ସେମାନଙ୍କର ଗୋଟିଏ ବର୍ଷ ନଷ୍ଟ ହୋଇ ଯାଉଥିଲା । ସେପ୍ଟେମ୍ବର ମାସ ଆଡ଼କୁ ଜାହାଜରେ ଯିବା କଥା । କାରଣ ବିଲାତରେ ଅକ୍ଟୋବରରେ ପାଠବର୍ଷ ଆରମ୍ଭ ହୁଏ । ତେଣୁ ଏ ସମୟରେ ଜାହାଜରେ ଯାଗା ନ ମିଳିଲେ ପୂରା ଆଉ ଗୋଟିଏ ବର୍ଷ ଅପେକ୍ଷା କରିବାକୁ ହୁଏ । ସେତେବେଳେ ଉଡ଼ାଜାହାଜ ଯାତ୍ରୀ ନେବା ଆରମ୍ଭ କରି ନଥିଲା । ତେଣୁ ଅନିର୍ଦ୍ଦିଷ୍ଟ ଭାବରେ ଟମାସ୍ କୁକ୍‌ଠାରୁ ଜାହାଜରେ ଯାଗା ମିଳିବା କଥା ନେଇ ବହୁତ ଛାତ୍ର ଉତ୍କଣ୍ଠିତ ଭାବରେ ଅପେକ୍ଷା କରିଥାନ୍ତି ।

■ ■ ■

# ୧୧

# ବିଲାତ ଯାତ୍ରା

# ୧୯୪୬

୧୯୪୬ ଅଗଷ୍ଟ ନ' ତାରିଖ।

ମୁଁ କ୍ଲାସ୍ ସାରି ଦିନ ଦୁଇଟାରେ କମନ୍ ରୁମ୍‌କୁ ଆସିଲି ଏବଂ ସେଠାରେ ପହଞ୍ଚିଲାକ୍ଷଣି ଗୋଟିଏ ତାର ବମ୍ବେର ଟମାସ୍ କୁକ୍ ପାଖରୁ ପାଇଲି ଯେ ଅଗଷ୍ଟ ୧୩ ରେ ଗୋଟିଏ ଜାହାଜ ଇଂଲଣ୍ଡ ଯାଉଛି। ସେଥିରେ ଗୋଟିଏ ସ୍ଥାନ ଖାଲି ଅଛି। ମୁଁ ଯଦି ଯିବାକୁ ରାଜି ହୁଏ, ତା'ହେଲେ ସାଙ୍ଗେ ସାଙ୍ଗେ ତାର କରି ତାଙ୍କୁ ଜଣାଇବାକୁ ହେବ ଏବଂ ୧୨ ତାରିଖରେ ବମ୍ବେରେ ତାଙ୍କ ଅଫିସରେ ପହଞ୍ଚିବାକୁ ହେବ। ମୁଁ ତାର ପାଇ ପ୍ରଥମେ କିଂକର୍ତ୍ତବ୍ୟ ବିମୂଢ଼ ହୋଇପଡ଼ିଲି। ତା'ମାନେ ସେହିଦିନ ସଂଧ୍ୟାରେ ଯଦି ମୁଁ କଟକ ଛାଡ଼ିବି, ତା'ହେଲେ ୧୨ ତାରିଖ ସକାଳେ ବମ୍ବେରେ ପହଞ୍ଚି ପାରିବି। ଯିବି ନା ନାହିଁ... ନଗଲେ ବର୍ଷକ ଭିତରେ ଜାହାଜରେ ସ୍ଥାନ ନ ମିଳିପାରେ। ମୋର ବଂଧୁମାନଙ୍କୁ ଏ ବିଷୟରେ ପଚାରିଲି। କିନ୍ତୁ କେହି ଜଣେ ହେଲେ ବି ମୋତେ ଉତ୍ସାହିତ କଲେ ନାହିଁ ସେହିଦିନ ସଂଧ୍ୟା ସୁଦ୍ଧା ବିଲାତ ଯିବା ପାଇଁ। କିନ୍ତୁ ମୁଁ ଠିକ୍ କଲି ଯେ ଯେତେ ଅସୁବିଧା ହେଉ ପଛକେ ମୁଁ ସେଇ ଦିନହିଁ ଯିବି। ଏପରି ସୁବିଧା ମୋର ଛାଡ଼ିବା ଉଚିତ ନୁହେଁ।

ଡି.ପି.ଆଇ.ଙ୍କୁ ଫୋନ୍‌ରେ ପଚାରିଲି। ସେ କହିଲେ ପ୍ରିନ୍‌ସିପାଲ ମୋତେ ସେହିଦିନ ଛାଡ଼ିଦେବେ ବୋଲି ସେ ସାଙ୍ଗେ ସାଙ୍ଗେ ଆଦେଶ ଦେବେ। ପ୍ରିନ୍‌ସିପାଲ ଥିଲେ ଏସ୍.ସି. ରାଓ। ସେ ବି କହିଲେ ଯେ କିଛି ଅସୁବିଧା ହେବନାହିଁ। ସେ ସବୁ ବନ୍ଦୋବସ୍ତ କରିଦେବେ। ମୁଁ ସେତେବେଳକୁ ପଶ୍ଚିମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ ଥାଏ। ସେ ସେହିକ୍ଷଣି ମୋତେ ସେଥିରୁ ଅବ୍ୟାହତି ଦେଲେ। ହଷ୍ଟେଲ ଭାର ଗ୍ରହଣ କଥା ସେ ପରେ ବୁଝିବେ ବୋଲି ମୋତେ ଆଶ୍ୱାସନା ଦେଲେ। ତା'ପରେ ମୋତେ ଏଣେ ତେଣେ ଦୌଡ଼ିବାକୁ ହେଲା। ମୋ ସ୍ତ୍ରୀ ଭାବିଲେ ଯେ ମୁଁ ଥଟ୍ଟା କରି ଏପରି କହୁଛି। କଲେଜ ଅଫିସ୍‌କୁ ଯାଇ ପୁରୀ ସଦର ଥାନାକୁ ଫୋନ୍ କରି ମୁଁ ଶ୍ୱଶୁରଙ୍କୁ ସେହିଦିନ ପୁରୀ ଏକ୍ସପ୍ରେସ୍‌ରେ ଆସି ପିଲାମାନଙ୍କର ଦାୟିତ୍ୱ ନେବା ପାଇଁ ଅନୁରୋଧ କଲି। ହଷ୍ଟେଲର ପିଲାମାନେ ବିଦାୟ ସମ୍ବର୍ଦ୍ଧନା ଦେବା ପାଇଁ ଜିଦ୍ କଲେ। ସଂଧ୍ୟାରେ ବିଦାୟ ସଭା ଓ ଭୋଜି ମଧ୍ୟ ହେଲା।

ମୁଁ ଘରକୁ ଯାଉଥାଏ ଏବଂ ଆସୁଥାଏ । ମୋ ଦେଢ଼ ବର୍ଷର ପୁଅ ଅମିତାଭ ମୋ ପଛରେ ଖାଲି ଗୋଡ଼ାଇ ଥାଏ । ପଛକୁ ଚାହିଁବାକୁ ମୋର ସମୟ ନଥାଏ । ହଷ୍ଟେଲ ପିଲାମାନେ ଗଲେ ଦରଜୀଠାରୁ ମୋର ଆଗରୁ ବରାଦ ଥିବା ସାର୍ଟ ପ୍ୟାଣ୍ଟକୁ ସଂପୂର୍ଣ୍ଣ କରି ଆଣିବା ପାଇଁ । ପାଞ୍ଚଛଅ ଘଣ୍ଟା ଦୌଡ଼ା ଦୌଡ଼ି ପରେ ଆମେ ସମସ୍ତେ ଯେତେବେଳେ ରେଳ ଷ୍ଟେସନକୁ ଗଲୁ ସେଠାରେ ମୁଁ ମୋ ପୁଅକୁ ଧରି ବହୁତ କାନ୍ଦିଲି । ମୋର ଖାଲି କୋହ ଉଠୁଥାଏ ଯେ ମୁଁ କାହିଁକି ଏପରି ବୋକାମି କଲି ? କେହି କଣ ଦୁଇବର୍ଷ ପାଇଁ ବିଲାତ ଯାଏ ତିନିଚାରି ଘଣ୍ଟା ଭିତରେ ? କଟକ ଷ୍ଟେସନରୁ ସେହି ବିଦାୟ ମୋର ଚିର ସ୍ମରଣୀୟ ହୋଇରହିଛି ।

ଷ୍ଟେସନରେ ମୋତେ ବିଦାୟ ଦେବା ଲାଗି ପଶ୍ଚିମ ଛାତ୍ରାବାସର ପ୍ରାୟ ଶହେ ପିଲା ଆସିଥାନ୍ତି । ସେମାନଙ୍କର ସ୍ନେହ ମୁଁ ଭୁଲି ପାରିବି ନାହିଁ । ମୁଁ ସେତେବେଳକୁ ପଶ୍ଚିମ ଛାତ୍ରାବାସରେ ମାତ୍ର ୨୩ ଦିନ ସୁପରିନ୍‌ଟେଣ୍ଡେଣ୍ଟ୍, ଥିଲି । ତଥାପି ସେମାନଙ୍କର ଏତେ ସ୍ନେହ ! ଛାତ୍ରଛାତ୍ରୀମାନଙ୍କର ଆନ୍ତରିକ ସ୍ନେହ ଶ୍ରଦ୍ଧା ମୋ ଜୀବନରେ ଗୋଟିଏ ବିରାଟ ସ୍ଥାନ ଅଧିକାର କରି ରହିଛି ।

ବିଲାତ ଯିବା ପୂର୍ବରୁ ମାତ୍ର ୨୩ ଦିନ ସୁପରିନ୍‌ଟେଣ୍ଡେଣ୍ଟ ହୋଇ ରହିବାର ରହସ୍ୟ ପ୍ରକାଶଯୋଗ୍ୟ । ଜୁଲାଇ ୧୫ ରେ ମୋତେ ତତ୍କାଳୀନ ପ୍ରିନ୍‌ସପାଲ ଏସ୍.ସି. ରାଓ ତାଙ୍କ ଅଫିସକୁ ଡାକି କହିଲେ ଯେ ପଶ୍ଚିମ ଛାତ୍ରାବାସରେ ସୁପରିନ୍‌ଟେଣ୍ଡେଣ୍ଟ ହେବା ଲାଗି ତାଙ୍କୁ ଅନୁରୋଧ କରି ଗୋଟିଏ ଦରଖାସ୍ତ ସେଠି ବସି ଲେଖିବାକୁ । ସେ ଡାକିଲେ, ମୁଁ ଲେଖିଲି । ଦରଖାସ୍ତ ଉପରେ ସେ ସେହିକ୍ଷଣି ଆଦେଶ ଦେଲେ ଯେ ସେହି ୧୫ ତାରିଖରୁ ମୁଁ ସୁପରିନ୍‌ଟେଣ୍ଡେଣ୍ଟ ହେଲି । ସଂଧ୍ୟାରେ ଦାୟିତ୍ୱ ନେବାକୁ କହିଲେ । ମୁଁ ଅବାକ୍ ହୋଇ ତାଙ୍କୁ ଚାହିଁଥାଏ । କହିଲି ଯେ ମୁଁ ତ ଯେକୌଣସି ଦିନ ବିଲାତ ଯାଇପାରେ, ତେଣୁ ଏତେ ଅଳ୍ପଦିନ ପାଇଁ ସୁପରିନ୍‌ଟେଣ୍ଡେଣ୍ଟ କାହିଁକି ହେବି ? ସେ କହିଲେ –

''ସେଥିରୁ ଆପଣ କଣ ପାଇବେ ? ସପ୍ତାହେ ହେଉ ପଛକେ ଆପଣ ସୁପରିନ୍‌ଟେଣ୍ଡେଣ୍ଟ ହୁଅନ୍ତୁ । ତାଛଡ଼ା କି ସଠିକତା ଅଛି ଯେ ଆପଣ ଜାହାଜରେ ସ୍ଥାନ ପାଇ ଶୀଘ୍ର ଚାଲିଯିବେ ?''

ସେତେବେଳେ ଏହି କଥାଟିର ରହସ୍ୟ ମୁଁ ବୁଝି ପାରିନଥିଲି । ସେ କିନ୍ତୁ ଜାଣିଥିଲେ ଯେ ଓଡ଼ିଶା ସରକାରଙ୍କଠାରୁ ଜାହାଜ ସ୍ଥାନ ପାଇଁ ଯେଉଁମାନଙ୍କର ନାମ ଥିଲା ସେହି ତାଲିକାରେ ମୋର ନାମ ନଥିଲା । ଭିତରେ ଭିତରେ ମୋ ନାମଟିକୁ କିଏ ଉଡ଼ାଇ ଦେଇଥିଲା ! ତେଣୁ ବମ୍ବେର ଟମାସ କୁକ୍‌ଠାରୁ କୌଣସି ନିର୍ଦ୍ଦିଷ୍ଟ ଖବର ମୁଁ ପାଉ ନଥିଲି । କିନ୍ତୁ ଭାରତ ସରକାରଙ୍କ ତାଲିକାରେ ମୋର ନାମ ଆଗରୁ ରହିଥିଲା । ଏକଥା ସେ ମୋତେ ପରେ କହିଥିଲେ । ତାଛଡ଼ା ମୋର ସୁପରିନ୍‌ଟେଣ୍ଡେଣ୍ଟ ହେବାର ରହସ୍ୟ ବିଷୟରେ ସେ କହିଥିଲେ ଯେ ସେ ସମୟର ଜଣେ ଅତି ପରାକ୍ରମଶାଳୀ ଅଫିସର ତାଙ୍କ ପୁଅକୁ ପଶ୍ଚିମ ଛାତ୍ରାବାସରେ ସୁପରିନ୍‌ଟେଣ୍ଡେଣ୍ଟ କରିବାକୁ ଜିଦ୍ ଧରି ବସିଥାନ୍ତି । ସରକାରୀ ସ୍ତରରୁ ପ୍ରିନ୍‌ସପାଲଙ୍କ ଉପରେ ଚାପ ପଡୁଥାଏ । ସେତେବେଳେ ପ୍ରିନ୍ସିପାଲ ରାଓଙ୍କ ଭଳି କେତେକ ଟାଣୁଆ ଅଫିସର ଶିକ୍ଷା ବିଭାଗରେ ଥିଲେ ଯେଉଁମାନେ ଏପରି ଚାପ ଆଗରେ ଦବି

ଯାଉନଥିଲେ । ସେ ମୋତେ ସୁପରିନ୍‌ଟେଣ୍ଡେଣ୍ଟ ପଦରେ ନିଯୁକ୍ତି ଦେଇ ଡି.ପି. ଆଇଙ୍କୁ ଫୋନ୍‌ରେ କହିଲେ ଯେ ମୁଁ ଯେହେତୁ ସେହି ଭଦ୍ରଲୋକଙ୍କଠାରୁ ସିନିୟର ଏବଂ ସୁପ୍ରରିନ୍‌ଟେଣ୍ଡେଣ୍ଟ ପଦ ପାଇଁ ଦରଖାସ୍ତ କରିଛି, ମୋତେ ସେ ନିଯୁକ୍ତି ଦେବାକୁ ବାଧ୍ୟ ହେଲେ । ଏହି ରହସ୍ୟ ଯୋଗୁଁ ବିଲାତ ଯିବା ଆଗରୁ ମାତ୍ର ୨୩ ଦିନ ମୁଁ ପଶ୍ଚିମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ ହୋଇଥିଲି ।

୧୨ ତାରିଖ ଦିନ ବମ୍ବେରେ ପହଞ୍ଚିଲି । ୧୩ ତାରିଖ ଦିନ ୩ଟା ବେଳେ ଜାହାଜରେ ଚଢ଼ିବା ସମୟ ମୋ ପାଇଁ ନିର୍ଧାର୍ଯ୍ୟ ହୋଇଥାଏ । ୧୩ ତାରିଖ ହେଉଛି ଅଳ୍ପ କେତେକ ଅତି ଜରୁରୀ ଯାତ୍ରୀଙ୍କର ଜାହାଜ ପ୍ରବେଶ । କାରଣ ୧୨ ତାରିଖ ଦିନ ପ୍ରାୟ ପାଞ୍ଚ ହଜାର ସୈନ୍ୟ ଜାହାଜରେ ଚଢୁଥାନ୍ତି । ୧୩ ତାରିଖ ଦିନ ୧୦ଟା ବେଳେ ମୋତେ ଯେତେବେଳେ ଜାହାଜ ଟିକଟ୍ ଦିଆଯାଏ, ସେତେବେଳେ ମୋର ପାସ୍‌ପୋର୍ଟ ଓ ଆନ୍ତର୍ଜାତୀୟ ସ୍ୱାସ୍ଥ୍ୟକାର୍ଡ଼ ଯାଞ୍ଚ ହେଲା । ପାସ୍‌ପୋର୍ଟ ମୋର ଥାଏ, କିନ୍ତୁ ମୋ ପାଖରେ ଆନ୍ତର୍ଜାତୀୟ ସ୍ୱାସ୍ଥ୍ୟକାର୍ଡ଼ ନଥିଲା । ଯାହାର ଜାହାଜରେ ଯିବା କଥା ତାକୁ ମାସେ ଦିମାସ ପୂର୍ବରୁ ଟମାସ କୁକ୍ ଜଣାଇଦିଏ କି କି କାଗଜପତ୍ର ବନ୍ଦୋବସ୍ତ କରିବାକୁ ହେବ । ସେହି ତାଲିକାରେ ଆନ୍ତର୍ଜାତୀୟ ସ୍ୱାସ୍ଥ୍ୟ ସାର୍ଟିଫିକେଟ୍ କଥା ଉଲ୍ଲେଖ ଥାଏ । କିନ୍ତୁ ମୁଁ ତ ସାଧାରଣ ଯାତ୍ରୀ ହିସାବରେ ମାସକ ଆଗରୁ କିଛି ଖବର ପାଇ ନଥାଏ । ଜାହାଜରେ ଗୋଟିଏ ସ୍ଥାନ ଖାଲି ହେଲା, ସେମାନେ ଭାରତ ସରକାରଙ୍କର ତାଲିକାଭୁକ୍ତ ନାମ ଭିତରୁ ମୋତେ ତାର କରିଦେଲେ । ମୁଁ ଯାଇ ହଠାତ୍ ସେଠାରେ ପହଞ୍ଚିଗଲି । ତେଣୁ ଆନ୍ତର୍ଜାତୀୟ ସ୍ୱାସ୍ଥ୍ୟକାର୍ଡ଼ର ଆବଶ୍ୟକତା କଥା ମୁଁ ଜାଣିନଥିଲି । ପାସ୍‌ପୋର୍ଟ ଯାଞ୍ଚ୍ ପରେ ସେମାନେ ମୋତେ କହିଲେ ଯେ ସ୍ୱାସ୍ଥ୍ୟକାର୍ଡ଼ ବିନା ମୁଁ କୌଣସି ଉପାୟରେ ମଧ୍ୟ ଜାହାଜରେ ପ୍ରବେଶ କରିପାରିବି ନାହିଁ । ସେଦିନ ୩ଟାବେଳେ ଜରୁରୀକାଳୀନ ପ୍ରବେଶ ଥିଲା । ମୁଁ ଜାହାଜ ଟିକେଟ୍ ପାଇ ସାରିଥିଲି । ମୋତେ ସେଠାରେ ଜଣେ କିରାଣୀ କହିଲେ ଯେ ବମ୍ବେରେ ଚେଷ୍ଟା କରି ଗୋଟିଏ ଆନ୍ତର୍ଜାତୀୟ ସ୍ୱାସ୍ଥ୍ୟକାର୍ଡ଼ ବନ୍ଦୋବସ୍ତ କରିବା ପାଇଁ । ମୋ ଜିନିଷପତ୍ର ଜାହାଜକୁ ମୋର ନିଜର ନେବା କଥା; କାରଣ ସେତେବେଳକୁ ଅନ୍ୟମାନଙ୍କର ଜିନିଷପତ୍ର ସବୁ ଚାଲିଯାଇଥାଏ । କି ଭୟଙ୍କର ଅବସ୍ଥା ମୋର ! ଏତେ କଷ୍ଟରେ, ଏତେ ଉଦ୍‌ବିଗ୍ନତାର ସହ ଆସିଲି, ଅଥଚ ବମ୍ବେରୁ ଜାହାଜ ଟିକଟ୍ ଫେରାଇ ଦେଇ ପୁଣି କଟକ ଫେରିଯିବି ? ତାପରେ ଗୋଟିଏ ଘୋଡ଼ାଗାଡ଼ି କରି ମୋ ଜିନିଷ ସହ ବୁଲିଲି ଏହି ସାର୍ଟିଫିକେଟ୍ ବନ୍ଦୋବସ୍ତ କରିବା ଉଦ୍ଦେଶ୍ୟରେ । ବହୁତ ବୁଲାବୁଲି କରି ଶେଷରେ ବମ୍ବେ କର୍ପୋରେସନର ପିଲାଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ଗୋଟିଏ ସ୍ୱାସ୍ଥ୍ୟ ଟିକା କେନ୍ଦ୍ରକୁ ଗଲି । ଗାଡ଼ିବାଲା ବହୁ ସମୟ ପରେ ବିରକ୍ତ ହୋଇ ମୋର ଜିନିଷ ନେବାକୁ ଆଉ ରାଜି ହେଲା ନାହିଁ । ଫୁଟପାଥିରେ ପକାଇ ଦେଇ ଚାଲିଗଲା । ମୁଁ ଯାଇ ମାଆମାନେ ପିଲାଙ୍କୁ ଧରି ଠିଆ ହୋଇଥିବା ଧାଡ଼ିରେ ଠିଆ ହେଲି । ଦିନ ଦୁଇଟାବେଳେ ଟିକା କେନ୍ଦ୍ର ଖୋଲିବା କଥା । ମୋର କିନ୍ତୁ ଜାହାଜରେ ଶେଷ ଜରୁରୀକାଳୀନ ପ୍ରବେଶ ସମୟ ଦିନ ୩ଟା । ଯାହାହେଉ ଆଉ ତ କିଛି ଉପାୟ ନଥିଲା ।

ଦୁଇଟାବେଳେ ସ୍ୱାସ୍ଥ୍ୟ କର୍ମଚାରୀ ଯେତେବେଳେ ଆସିଲେ, ମୁଁ ଧାଡ଼ି ଆଗକୁ ଯାଇ ଅତି ବିକଳ ଭାବରେ ମୋ କଥା ତାଙ୍କୁ କହିଲି । ସେ ମୋତେ ପାଗଳ କିମ୍ବା ମିଛୁଆ ବୋଲି ଭାବିଲେ । କହିଲେ—

''ତୁମେ ଧାଡ଼ିରେ ଠିଆ ହୁଅ, ତୁମ ପାଳି ପଡ଼ିଲେ ଯାଇ ଟିକା ଦେବି । ତାଛଡ଼ା ଏହା ଛୋଟ ପିଲାଙ୍କ ପାଇଁ ଟିକା କେନ୍ଦ୍ର । ତୁମମାନଙ୍କ ପାଇଁ ନୁହେଁ । ତଥାପି ଧାଡ଼ିରେ ଠିଆ ହେଲେ ଦେଖିବି ।''

ଧାଡ଼ି ଭିତରେ ମୁଁ ତାଙ୍କ ପାଖରେ ପହଞ୍ଚିଲା ବେଳକୁ ସମୟ ପ୍ରାୟ ୪ଟା ହୋଇଥାନ୍ତା । ମୁଁ ଏପରି ଅଧୈର୍ଯ୍ୟ ହୋଇପଡ଼ିଲି ଯେ ମୋତେ କାନ୍ଦ ମାଡ଼ିଲା । ସେହି ପାଖରେ ଜଣେ ମହିଳା କର୍ମଚାରୀ ଥିଲେ । ତାଙ୍କୁ ଯାଇ କହିଲି । ମୋର ଏହି କରୁଣ ଅବସ୍ଥା ଦେଖି ସେ ଦୟା ପରବଶ ହୋଇ ମୋତେ ଟିକା ଦେଲେ ଏବଂ ଆନ୍ତର୍ଜାତୀୟ ସ୍ୱାସ୍ଥ୍ୟ କାର୍ଡ଼ଟିଏ ଷ୍ଟାମ୍ପ ମାରିଦେଲେ । ମୁଁ କୌଣସିମତେ ସେଠାରୁ ଆସି ପ୍ରାୟ ୩ଟା ବେଳେ ଜାହାଜରେ ପ୍ରବେଶ କରିବା ପାଇଁ ଥିବା ଧାଡ଼ିରେ ଠିଆହୋଇ ପାରିଲି । ଖୁବ୍ ଅଳ୍ପ ଲୋକ ଥିଲେ । ୧୦ ମିନିଟ୍ ଭିତରେ ମୋର କାଗଜପତ୍ର ଯାଞ୍ଚ ହୋଇଗଲା । ମୁଁ ଜାହାଜରେ ପ୍ରବେଶ କଲି ।

୯ ତାରିଖ ଦିନ ଦୁଇଟାଠାରୁ ୧୩ ତାରିଖ ଦିନ ୩ଟା ଯାଏ ମୁଁ ଏପରି ବ୍ୟସ୍ତ ବିବ୍ରତ ଓ କ୍ଲାନ୍ତ ହୋଇପଡ଼ିଥିଲି ଯେ, ମୋତେ ଯିଏ ଦେଖିବ ନିଶ୍ଚୟ ଜାଣିପାରିବ ମୁଁ କେତେବେଶି ଉଦ୍‌ବିଗ୍ନ ଓ ପରିଶ୍ରାନ୍ତ ! ଠିକ୍ ସେଇଆ ହେଲା । ମୁଁ ଯାଇ ଜାହାଜର ବାରଣ୍ଡାରେ ଠିଆ ହୋଇଥାଏ, ବମ୍ବେର ଜଣେ ଭଦ୍ରଲୋକ ମୋ ପାଖରେ ଯାଇ ଠିଆହେଲେ ଏବଂ ଅଳ୍ପ ସମୟ ପରେ ଠିକ୍ ଏହିକଥା ପଚାରିଲେ ଯେ ମୁଁ କାହିଁକି ଏପରି କ୍ଲାନ୍ତ ଦେଖାଯାଉଥିଲି । ସେ ମୋର ସ୍ୱାସ୍ଥ୍ୟକାର୍ଡ଼ ଯୋଗାଡ଼ କରିବାର ଦୁଃସାହସିକ ସମ୍ବାଦ ଶୁଣି ଆଚମ୍ବିତ ହୋଇଗଲେ ଏବଂ ଯାହା କହିଲେ ସେଥିରେ ମୋ ଦେହ ହାତ ପୁଣି ଶୀତଳ ହୋଇଉଠିଲା । ସେ କହିଲେ ଯେ ଆର୍ନ୍ତଜାତୀୟ ସ୍ୱାସ୍ଥ୍ୟକାର୍ଡ଼ ଯେଉଁଦିନ ତିଆରି ହେବ— ଅର୍ଥାତ୍ ବସନ୍ତ ଟିକା ଓ କଲେରା ଟାଇଫଏଡ୍ ଇଂଜେକ୍ସନ ନେବାର ଅନ୍ତତଃ ୧୫ ଦିନ ପରେ ହିଁ ଏହା ଗ୍ରହଣଯୋଗ୍ୟ ହୁଏ । କାରଣ ବସନ୍ତ, ହଇଜା ରୋଗର ସଂକ୍ରମଣ ସମୟ ହେଉଛି ଅନ୍ତତଃ ପକ୍ଷରେ ୧୫ଦିନ । ତାଙ୍କ ଭାଇ ଏହି ସାର୍ଟିଫିକେଟ୍ ମାତ୍ର ଚାରିଦିନ ତଳେ ପାଇଥିବା ଯୋଗୁଁ ସେ ତାଙ୍କ ସହିତ ଆସି ପାରିଲେ ନାହିଁ । ସେ ଏକା ଯାଉଛନ୍ତି । ଆସନ୍ତା ସପ୍ତାହରେ ତାଙ୍କ ଭାଇ ଇଂଲଣ୍ଡ ଯିବେ । ସେ ଆଶ୍ଚର୍ଯ୍ୟ ହେଲେ ଯେ ମୋର ସେହି ତାରିଖର ସାର୍ଟିଫିକେଟ୍ ସେମାନେ ଗ୍ରହଣ କଲେ କିପରି ? ସେତିକିବେଳକୁ ଜାହାଜର ଡାକବାଜି ଯନ୍ତ୍ର ସାହାଯ୍ୟରେ ଭିନ୍ନ ଭିନ୍ନ ଯାତ୍ରୀଙ୍କର ନାମ ଡକା ଯାଉଥାଏ ଯେ କାହାର କଣ ଅନିୟମିତତା ଅଛି ? କାହାର ପାସ୍‌ପୋର୍ଟରେ କିଛି ଗୋଳମାଳ, କାହାର ଜିନିଷପତ୍ର ନେଇ ଅସୁବିଧା ଇତ୍ୟାଦି ଘୋଷଣା ପ୍ରତି ପାଞ୍ଚଦଶ ମିନିଟ୍‌ରେ ଶୁଣାଯାଉଥିଲା । ଏ ସଂବାଦ ପାଇଲା ପରେ ମୁଁ ଭାବିଲି— ଯେକୌଣସି ମୁହୂର୍ତ୍ତରେ ମୋର ସ୍ୱାସ୍ଥ୍ୟକାର୍ଡ଼ ପୁଣି ଥରେ ଯାଞ୍ଚ ହେବ, ମୋତେ ଡାକରା ଆସିବ ଏବଂ ଜାହାଜରୁ ମୋତେ ନିଶ୍ଚିତ ଭାବରେ ଓହ୍ଲାଇ ଯିବାକୁ ପଡ଼ିବ । ମୁଁ ଯେତେବେଳେ ଜାହାଜ ଡାକ୍ତରଙ୍କ ଆଗରେ ମୋର ସ୍ୱାସ୍ଥ୍ୟ ସାର୍ଟିଫିକେଟ୍ ପେଶ୍ କଲି ସେ ବୋଧହୁଏ ଭୁଲକ୍ରମେ ସାର୍ଟିଫିକେଟ୍ ତାରିଖଟି ଦେଖି ନଥିଲେ । ସେ ଡାକ୍ତର ତ ଜାହାଜରେ ଯିବେ ଏବଂ ପରେ ତାକୁ ତନଖି କରି ଦେଖିବେ । ତେଣୁ ନିଶ୍ଚିତ ଭାବରେ ମୋତେ ଫେରିଯିବାକୁ ପଡ଼ିବ । କି ଭୟଙ୍କର ଅବସ୍ଥା ମୋର ନ ହେବ ? ମୁଁ ଜାହାଜରୁ ତଡ଼ା ଖାଇ କଟକ ଫେରିଯିବି ? କଟକର ମୋ ବନ୍ଧୁମାନେ

ଆନନ୍ଦ ଉଲ୍ଲାସରେ ନିଶ୍ଚୟ ନାଚି ଉଠିବେ, କାରଣ ଏମାନଙ୍କ ଭିତରୁ କିଏ ମୋ ନାମ ରାଜ୍ୟ ତାଲିକାରୁ ବାଦ୍ ଦେବାରେ ସଫଳ ହୋଇଥିଲା ।

ଏହାଠାରୁ ବଳି ଭୟାନକ ଉଦ୍‌ବିଗ୍ନତା ଆଉ କ'ଣ ହୋଇପାରେ ? ମୁଁ ସେଠାରେ ଖମ୍ଭ ପରି ଠିଆ ହୋଇରହିଲି । ଭଗବତ୍ ବିଶ୍ୱାସ ଥିଲେ ସିନା ଠାକୁରଙ୍କୁ ଲାଞ୍ଚ ଯାଚନ୍ତି କି ପ୍ରାର୍ଥନା କରନ୍ତି, ସେ ବିଶ୍ୱାସ ତ ମୋର ନଥିଲା, ଖାଲି ଜାହାଜ କେତେବେଳେ ଛାଡ଼ିବ ସେହି ଚିନ୍ତାରେ ମିନିଟ୍ ମିନିଟ୍ ଗଣୁଥାଏ । ଜାହାଜ ସେଦିନ ଆଉ ଛାଡ଼ିଲା ନାହିଁ । ପାଞ୍ଚ ହଜାର ଯାତ୍ରୀଙ୍କର ଖାଇବା ପିଇବା ଜିନିଷପତ୍ର ଠିକ୍ କରି ରଖି ଜାହାଜ ଛାଡ଼ିଲା ୧୪ ତାରିଖ ଦିନ ନଅଟାରେ । ସେଦିନ ସାରାରାତି ମୁଁ ଖୋଲା ଡେକ୍ ଉପରେ ଖାଲି ବୁଲୁଥାଏ । ତାପରଦିନ ଜାହାଜ ଯେତେବେଳେ ଲଙ୍ଗର୍ ଟାଣି ଆଗକୁ ଯିବାକୁ ଆରମ୍ଭ କଲା ମୁଁ ଆଶ୍ୱସ୍ତିର ନିଶ୍ୱାସ ମାରିଲି । ଡାକ୍ତରଙ୍କର ତାରିଖଟି ନ ଦେଖିପାରିବା ଯୋଗୁଁ ମୁଁ କେତେବଡ଼ ବିପଦରୁ ମୁକ୍ତ ହେଲି । ସାଧାରଣତଃ ଡାକ୍ତରମାନେ କୁଆଡ଼େ ନାଁ ଓ ତାରିଖ ଉପରେ ଟିକ୍ ଚିହ୍ନ ମାରନ୍ତି । ଏହି ଜାହାଜରେ ମୁଁ ନ ଯାଇଥିଲେ ସେ ବର୍ଷ ମୁଁ ଆଉ ଯାଇ ପାରିନଥାନ୍ତି । କାରଣ ଓଡ଼ିଶା ସରକାର ସେହି ବର୍ଷ ଜାହାଜରେ ଯିବା ପାଇଁ ଭାରତ ସରକାରଙ୍କ ପାଖକୁ ଯେଉଁ ତାଲିକା ପଠାଇଥିଲେ ସେଥିରେ ମୋ ନାମ ନଥିଲା । କିନ୍ତୁ ଭାରତ ସରକାରଙ୍କର ପ୍ରଥମ ବୃତ୍ତି ତାଲିକାଟି ଟମାସ୍ କୁକ୍ ପାଖକୁ ଚାଲିଯାଇଥିଲା । ସେହି ପୁରୁଣା ତାଲିକାରୁ ମୋ ନାଁଟି ବାଛି ଟମାସ କୁକ୍ ମୋ ପାଖକୁ ଏପରି ଜରୁରୀ ତାର କରିଥିଲେ ।

ତାପରେ ସାଙ୍ଗେ ସାଙ୍ଗେ ବାହାରି ପଡ଼ିବାର ମୋର ଯେଉଁ ଦୃଢ଼ ସଂକଳ୍ପ, ତାହା ମଧ୍ୟ ଆଶ୍ଚର୍ଯ୍ୟଜନକ ଘଟଣା । ମୋର ଗୋଟିଏ ସାଧାରଣ ଚିଠି ଫଳରେ ଲଣ୍ଡନ ବିଶ୍ୱବିଦ୍ୟାଳୟ ମନସ୍ତତ୍ତ୍ୱ ବିଭାଗରେ ସ୍ଥାନ ପାଇବା, ଶିକ୍ଷାରେ ଦରଖାସ୍ତ କରି ମନସ୍ତତ୍ତ୍ୱରେ ବୃତ୍ତି ପାଇବା, ସରକାରୀ ତାଲିକାରେ ମୋ ନାଁ ନଥାଇ ଜାହାଜରେ ଯିବା ପାଇଁ ଡାକରା ପାଇବା ଏବଂ ମୋ ସ୍ୱାସ୍ଥ୍ୟକାର୍ଡ଼ରେ ତାରିଖ ଉପରେ ଭୁଲ୍‌ରେ ଡାକ୍ତରଙ୍କ ଆଖିରେ ନ ପଡ଼ିବା– ଏସବୁ ଯେପରି କଳ୍ପନା ରାଜ୍ୟର ଆକସ୍ମିକ ଘଟଣାବଳୀର ରହସ୍ୟମୟ ମାୟାଜାଲ ! ମୋର ପିଲାଦିନର ବାଲିଘର ପରି ଅଦ୍ଭୁତ ଓ ଅବାସ୍ତବ । ଏତିକି ପ୍ରତିବନ୍ଧକ ଅଦ୍ଭୁତ ଭାବରେ ଅତିକ୍ରମ କରି ରାଜ୍ୟସରକାରଙ୍କର କୌଣସି ଶୁଭ ଅଶୀର୍ବାଦ ନ ଥାଇ ଦର୍ଶନ ଶାସ୍ତ୍ରରେ ପାଶ୍ କରିଥିବା ମୋ ପରି ଜଣେ ଅନଭିଜ୍ଞ ଲୋକ ଏତେ ଶୀଘ୍ର ଲଣ୍ଡନ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗରେ ଯୋଗ ଦେବା ପାଇଁ ସୁଯୋଗ ପାଇବା ମୋ ଜୀବନରେ ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା ବୋଲି ଧରିନେବାକୁ ହେବ । ଏହା ପଛରେ ମୋ ନିଜର କୃତିତ୍ୱ କେବଳ ଏତିକି ରହିଛି ଯେ ବିଲାତ ଯିବା ପାଇଁ ମୋର ଆନ୍ତରିକ ନିଷ୍ଠା ଓ ବଳିଷ୍ଠ ଆଗ୍ରହ ଥିଲା । ଲଣ୍ଡନ୍ ବିଶ୍ୱବିଦ୍ୟାଳୟରେ ସ୍ଥାନ ପାଇବା ଲାଗି ମୋର ଚିଠି, ହାତରୁ ଖାଇ ପିଲାପିଲିଙ୍କୁ ଏକୁଟିଆ ଛାଡ଼ି ଯୁଦ୍ଧ ସମୟରେ ନାନା ବାଧାବିଘ୍ନ ଭିତରେ କଲିକତାରେ ଚାରିମାସ କାଳ ମନୋବିଜ୍ଞାନ ପଢ଼ିବା ପରି ନିଷ୍ଠାପର ସାଧନା ସହିତ ବହୁ ଆକସ୍ମିକ ଘଟଣା ମୋତେ ବିଲାତ ଯିବାରେ ସାହାଯ୍ୟ କରିଥିଲା ।

ବମ୍ବେରେ ସ୍ୱାସ୍ଥ୍ୟକାର୍ଡ଼ ତିଆରି କରିବାରେ ଆଉ ଗୋଟିଏ ଆଶ୍ଚର୍ଯ୍ୟଜନକ ରହସ୍ୟ ମଧ୍ୟ ଥାଇପାରେ ବୋଲି ମୋର ପରେ ମନେପଡ଼ିଲା । ମୋର କାର୍ଡ଼ କଥା ନେଇ ଯେପରି

ନିଃସହାୟ ଭାବରେ ବମ୍ବେ ସ୍ୱାସ୍ଥ୍ୟ ବିଭାଗର ସେହି ମହିଳା କର୍ମୀଙ୍କୁ ମୁଁ ଅନୁରୋଧ ଜଣାଇଲି ସେ ହୁଏତ ଅତ୍ୟନ୍ତ ଦୟାପରବଶ ହୋଇ ଯେଉଁ ତାରିଖ ଜାହାଜରେ ଗ୍ରହଣଯୋଗ୍ୟ ହେବ ସେହି ପିଛିଲା ତାରିଖଟି ଦେଇ ମୋର ସ୍ୱାସ୍ଥ୍ୟକାର୍ଡ଼ଟି ତିଆରି କରି ପାରିଥାଆନ୍ତି ମୋତେ ସାହାଯ୍ୟ କରିବା ପାଇଁ । ବମ୍ବେ କର୍ପୋରେସନ୍ କର୍ମଚାରୀ ହିସାବରେ ସେ ନିଶ୍ଚୟ ଜାଣିଥିବେ କେତେଦିନ ପୂର୍ବରୁ ସ୍ୱାସ୍ଥ୍ୟ କାର୍ଡ଼ ତିଆରି କରିବା କଥା । ପରେ ମୋର ବିଶ୍ୱାସ ହେଲା ଯେ ଜାହାଜ ଡାକ୍ତର କଦାପି ତାରିଖକୁ ନ ଦେଖି କାର୍ଡ଼ଟିକୁ ଗ୍ରହଣ କରିବେ ନାହିଁ- ସେ ମଧ୍ୟ ତାରିଖ ତଳେ ଗାର ମାରିଥିଲେ ।

ଏହିପରି କେତେକ ରହସ୍ୟମୟୀ ନାରୀ ମୋ ଜୀବନ କାଳ ଭିତରେ ନାନା ଭାବରେ ସାହାଯ୍ୟ କରିଆସିଛନ୍ତି । ଏହିପରି ଜଣେ ଅଜଣା ଭଦ୍ରମହିଳା ପିଲାଦିନେ ମୁଁ ଜଣଙ୍କ ଘରେ ରହି ପାଠ ପଢୁଥିବାବେଳେ ମୋର ଦୟନୀୟ ଅବସ୍ଥା ବିଷୟରେ ମୋ ବୁଢ଼ୀମାକୁ ଗୋଟିଏ ଲୁଗା ବେପାରୀ ହାତରେ ଖବର ଦେଇ ମୋତେ ଉଦ୍ଧାର କରିଥିଲେ । ସେହିପରି ଏହି ମହିଳା କର୍ମଚାରୀ ନିଶ୍ଚିତ ଭାବରେ ମୋତେ ସାହାଯ୍ୟ କରିବା ପାଇଁ ଚେଷ୍ଟା କରିଥିଲେ ବୋଲି ମୋର ବିଶ୍ୱାସ କ୍ରମେ ଦୃଢ଼ୀଭୂତ ହେଲା ।

ଜୀବନରେ ଏହିପରି ବହୁତ ରହସ୍ୟମୟ ଘଟଣା ଯୌକ୍ତିକ ବିଶ୍ଳେଷଣ ଦ୍ୱାରା ବୁଝିବା କଷ୍ଟକର ହୋଇପଡ଼େ ।

## କ- ପ୍ରବେଶ

୧୯୪୬ ଅଗଷ୍ଟ ୩୦ ।

ଷ୍ଟ୍ରାଟ୍‌ମୋର ଜାହାଜ ସାଉଥ୍ ହାମ୍ପଟନ୍ (ଇଂଲଣ୍ଡ) ବନ୍ଦରରେ ଭୋର୍ ପାଞ୍ଚଟା ବେଳେ ଆସି ପହଞ୍ଚିଲା । ଗୋଟିଏ ଗୋଳମାଳରେ ମୋ ନିଦ ହଠାତ୍ ଭାଙ୍ଗିଗଲା । କାନ ପାତି ଶୁଣିଲି-ବହୁ କଣ୍ଠୋଚାରିତ ଇଂରେଜି ସଂଗୀତର ଅସ୍ପଷ୍ଟ ଶବ୍ଦ ଯୋଜନା । ଘଟଣାଟି ଠିକ୍ ବୁଝି ପାରିଲି ନାହିଁ; କାରଣ ଆଗରୁ ଜାଣି ନଥିଲି ଯେ ଏତେ ଶୀଘ୍ର ଆମ ଜାହାଜ ଇଂଲଣ୍ଡରେ ପହଞ୍ଚିବ । ଇଚ୍ଛା ହେଲା ବାହାରେ ଯାଇ ବୁଲିଆସେ । କିନ୍ତୁ ଉଷୁମ କମ୍ବଳ ଭିତରୁ ବାହାରିବାକୁ ଆଦୌ ଭଲ ଲାଗିଲା ନାହିଁ । ସେହିପରି ପଡ଼ିରହିଲି କିଛିସମୟ । କ୍ରମେ ଚାରିଆଡ଼େ ଗୋଟିଏ ହାଲୋହୋଳର ସୃଷ୍ଟି । ଗୋଳମାଳିଆ ସଂଗୀତ ଆହୁରି ଜୋର୍‌ରେ ଶୁଣାଗଲା । କୌତୂହଳ ଦମନ ନ କରିପାରି ଜାହାଜର ଡେକ୍‌ରେ ଆସି ପହଞ୍ଚିଲି । ପାହାନ୍ତିଆ ଶୀତଳ ପବନରେ ଦେହଟା ଥରିଗଲା । ଚାରିଆଡ଼େ ଗୋଟିଏ ପତଳା କୁହୁଡ଼ି ସୂକ୍ଷ୍ମ ଧଳାଚାଦର ପରି ଘେରି ରହିଛି । ଆଖି ମଳି ଚାରିଆଡ଼କୁ ଚାହିଁ ଦେଖିଲି, କିଛି ଦୂରରେ ଆଉ କେତେଗୁଡ଼ିଏ ଛୋଟ ଜାହାଜ । ଡେଙ୍ଗା ଡେଙ୍ଗା କେତେଗୁଡ଼ିଏ କ୍ରେନ୍ କୁହୁଡ଼ି ଭେଦ କରି ଟିକିଏ ଟିକିଏ ଦେଖାଯାଉଛି । ଦୂରରେ ଗୋଟା କେତେକ ଘରର ଆଭାସ ମିଳୁଛି, ମାତ୍ର ସବୁ ଝାପ୍‌ସା, ସବୁ ଅସ୍ପଷ୍ଟ- ପାହାନ୍ତିଆ ରାତିର ଅଧା ସୁପ୍ତ, ଅଧା ଜାଗ୍ରତ ଅନ୍ଧାରିଆ ମନର କେତୋଟି ଭସା ଭସା ସ୍ୱପ୍ନ ପରି ।

ଭାବିଲି, ଆମେମାନେ ନିଶ୍ଚୟ ଇଂଲଣ୍ଡରେ ପହଞ୍ଚିଯାଇଛୁ । ଡେକ୍‌ର ରେଲିଂ ଧରି ଠିଆ ହେଲି । ଝର୍ ଝର୍ ଝର୍ ଝର୍ ଶବ୍ଦରେ ଜାହାଜ ଚାଲିଛି । ଭିତରେ ସୈନିକମାନଙ୍କର ସଂଗୀତ-ଝଙ୍କାର ଆହୁରି ମୋଟାଳିଆ ସ୍ୱରରେ ଶୁଣା ଯାଉଛି । ବଡ଼ ଇଚ୍ଛା ହେଲା, ଗୀତର

ଶବ୍ଦଗୁଡ଼ିକ ଶୁଣିବାକୁ । ଦଳେ ଉପର ଡେକ୍‌ରେ ଠିଆ ହୋଇ ଗୀତ ଗାଉଥିଲେ । ତାଙ୍କ ପାଖକୁ ଯାଇ ଟିକିଏ ଦୂରରେ ଠିଆ ହେଲି । ସବୁଟା ଧରି ନପାରିଲେ ମଧ୍ୟ ବୁଝିବାକୁ ବାକି ରହିଲା ନାହିଁ ଯେ ଦୀର୍ଘ ସମୟ ପରେ ଘରକୁ ଫେରୁଥିବା ସୈନିକମାନେ ମନ ଆନନ୍ଦରେ ଗୀତ ଗାଉଛନ୍ତି ଇଂଲଣ୍ଡ ବିଷୟରେ । ଇଂଲଣ୍ଡର ପାହାଡ଼, ପର୍ବତ, ନଦୀ, ହ୍ରଦ, ଗାଁ'ଗଣ୍ଡା, ପ୍ରିୟାପ୍ରୀତି ବିଷୟରେ– "Bring back my bonny to me" ବିଷୟରେ । ଯୁଦ୍ଧ ପରେ ଦେଶକୁ ଫେରୁଛନ୍ତି । ବିଜୟୀ ସୈନିକ ହିସାବରେ ଛାତି କୁଣ୍ଢେମୋଟ । ମା, ଭଉଣୀ, ପ୍ରେୟସୀଙ୍କୁ ଦେଖିବା ପାଇଁ ପ୍ରାଣ ତାଙ୍କର ଆନନ୍ଦରେ ଉଲ୍ଲସି ଉଠୁଛି; ତେଣୁ ମନଫୁଲାଣିଆ ଗୀତ ଆରମ୍ଭ କରି ଦେଇଥାନ୍ତି ।

ମୋ ମନରେ କେତେ ପ୍ରକାର ଭାବ ଖେଳିଗଲା । ଏମାନେ ଫେରୁଛନ୍ତି ଦେଶକୁ, ମୁଁ ଆସିଛି ବିଦେଶକୁ । ଆଚ୍ଛା, ମୁଁ ଯେତେବେଳେ ଫେରିଯିବି, ବମ୍ବେ ପାଖରେ ଆମ ଜାହାଜ ପହଞ୍ଚିବ, କି ଗୀତ ଗାଇବି ? ଆମ ଭାରତୀୟମାନେ କି ସଂଗୀତ ଗାଇବେ କାହିଁ କିଛି ତ ମନେପଡୁନାହିଁ; ଯାହାକି ସମସ୍ତେ ମିଳି ଗାଇ ପାରିବୁ ଏପରି ସମସ୍ୱରରେ ? କେତେଜଣ ଏପରି ମୁକ୍ତ ପ୍ରାଣରେ... ପ୍ରାଣର ସମସ୍ତ ଆବେଗ ଓ ଉଚ୍ଛ୍ୱାସ ସହ ମନ ଖୋଲି ଗାଇ ପାରିବେ ? ତାଛଡ଼ା ଆମ ଭିତରେ କଣ ସେପରି ଏକତା ଅଛି ଯେ, ହସିଖୁସିରେ ଗୋଟିଏ ସ୍ୱରରେ ମୁକ୍ତ ପ୍ରାଣରେ ସମସ୍ତେ ଏକାଠି ଗାଇପାରିବୁ, ଧର୍ମଗତ ବିଭିନ୍ନତା, ପ୍ରାଦେଶିକ ଶତ୍ରୁତା ଓ ବିଭିନ୍ନ ଗୋଷ୍ଠୀଗତ ପାର୍ଥକ୍ୟ ଆମମାନଙ୍କୁ ଭିନ୍ନ ଭିନ୍ନ ଶ୍ରେଣୀରେ ବାନ୍ଧି ରଖିଛି । ଏପରି ଅନେକ ପ୍ରକାରର ଭାବ ମନଟାକୁ ଦବାଇ ଦେଲା । ସେ ବିଷୟରେ ଆଉ ବେଶି ନ ଭାବି ଯାହା ଆଖି ଆଗରେ ଆସି ପଡୁଛି ମନଟାକୁ ସେ ବିଷୟରେ ଖେଳାଇବାକୁ ଚେଷ୍ଟା କଲି । ସ୍ୱଦେଶ ଭାବନାରେ ବିଷାଦ ଓ ଗାଢ଼ କାଳିମା ଭରା ମୋଟା ପରଦା ଭିତରୁ ପୁଣି ଥରେ ମନଟା ଧୀରେ ଧୀରେ ମୁକ୍ତ ହୋଇଆସିଲା ପୁଣି ଶୁଣିବାକୁ ପାଇଲି ପ୍ରାଣଉଲ୍ଲସିତ ସଂଗୀତର ଉଚ୍ଛ୍ୱାସ, ଯାହାର ଅବୋଧ ଭାଷା ହୃଦୟର କେଉଁ ସନାତନ ସ୍ୱପ୍ନପୁରୀକୁ ଶିହରାଇ ଦେଲା- ମନୁଷ୍ୟ ହୃଦୟର ସାର୍ବଭୌମ ଜୀବନୀଶକ୍ତିର ବୀଣା ତାରରେ ଏହାର ଅର୍ଥ ଯେପରି ବାଜି ଉଠିଲା...ଦେଶକାଳଗତ ସଂକୀର୍ଣ୍ଣ ଧୀଶକ୍ତି କିଛିକ୍ଷଣ ପାଇଁ ଚେତନାହୀନ ହୋଇପଡ଼ିଲା ।

ଓ ! ଏହି ତାହାହେଲେ ଇଂଲଣ୍ଡ, ଯାହାର ସଭ୍ୟତା ଗଲା ଦୁଇଶହବର୍ଷ ଧରି ସାରା ପୃଥିବୀକୁ ପ୍ରଭାବିତ କରିଛି ଓ ସେଥିସଙ୍ଗେ ସଙ୍ଗେ ସମଗ୍ର ମନୁଷ୍ୟ ସମାଜରେ ଭୟ ଓ ଅତ୍ୟାଚାରର ତାଣ୍ଡବଲୀଳା ବି ସୃଷ୍ଟି କରିଛି ? ଭାରତବର୍ଷ ପରି ବିରାଟ ଦେଶ ପାଞ୍ଚହଜାର ବର୍ଷର ସଭ୍ୟତା ଓ ସଂସ୍କୃତି ନେଇ ଚାଳିଶି କୋଟି ଲୋକ ଧରି ଏହି କ୍ଷୁଦ୍ରଦେଶର ପାଦ ତଳେ ସଲାମ କରୁଛି । ଆଖି ଆଗରେ ବିରାଟ ଶୂନ୍ୟତା ମଧ୍ୟରେ ଦୁଇଟି ଦେଶର ଛବି ଭାସିଗଲା । ଇଂଲଣ୍ଡ କ୍ଷୁଦ୍ର ଅଥଚ ସବଳ, ସୁସ୍ଥ, ସତେଜ, ଜୀବନୀଶକ୍ତି ପରିପୂର୍ଣ୍ଣ, ସଂଘବଦ୍ଧ ଓ ସୁଶୃଙ୍ଖଳିତ ସୈନିକ ପରି ମୁଷ୍ଟିବଦ୍ଧ ତରବାରି ଧରି ଇସ୍ପାତ ପରି ମାଂସପେଶୀ ଦେଖାଇ, ଛାତି ଫୁଲାଇ, ଗର୍ବ ଓ ଗୌରବରେ ମୁଣ୍ଡ ଟେକି ଠିଆ ହୋଇଛି- ଆଉ ଭାରତବର୍ଷ ବିରାଟ ହେଲେହେଁ ଗରିବ, ଦୁର୍ଭିକ୍ଷକ୍ଲିଷ୍ଟ, ବର୍ତ୍ତମାନର ସଭ୍ୟତା ତାର ସଂକୀର୍ଣ୍ଣ,ପୁରାତନ ସଂସ୍କୃତି-ବିସ୍ମୃତ ଓ କୁସଂସ୍କାର ପୂର୍ଣ୍ଣ, କ୍ଷତବିକ୍ଷତ ଜରାବୟବ, ଶିଥିଳ

ହସ୍ତ ଓ ମଥାବନତ ହୋଇ ସଲାମ୍ କରୁଛି । କି ତଫାତ୍ ! ଏହାର କାରଣ କଣ ? ନା, ସେସବୁ ବିଷୟରେ ଭାବିବାର ସମୟ ବର୍ତ୍ତମାନ ନୁହେଁ; କାରଣ କିଏ ନ ଜାଣେ ? ତଫାତ୍ କିଏ ନ ବୁଝିଛି ?

ଏହି ତେବେ ସେହି ପୃଥିବୀ ବିଖ୍ୟାତ କ୍ଷୁଦ୍ର ଦ୍ୱୀପଟି, ଯାହାର ନାମ ଇଂଲଣ୍ଡ ! ଇଂରେଜ ସୈନିକର ବିଜୟମଣ୍ଡିତ ଇଂଲଣ୍ଡ ! କବିର ପ୍ରାଣପ୍ରିୟ England, my England-. କ୍ରମେ କ୍ରମେ କିଛି କିଛି ଗଛପତ୍ର ଦେଖାଗଲା । ଏଠି ସେଠି ଗୋଟାଏ ଦୁଇଟା ବଡ଼ ବଡ଼ ଘରର ଧୂଆଁନଳା କୁହୁଡ଼ି ଭେଦି ଆଖି ଆଗରେ ଦିଶିଲା । ହଠାତ୍ ମନଟା ଏହି ଘର ଗୁଡ଼ିକର ବାସିନ୍ଦାମାନଙ୍କ ପ୍ରତି କୌତୂହଳୀ ହୋଇଉଠିଲା । ଏହି ପୃଥିବୀ ବିଖ୍ୟାତ ଇଂଲଣ୍ଡର ଲୋକେ ତାହେଲେ କିପରି ହୋଇଥିବେ ? ଏହା କଣ ସମ୍ଭବ ଯେ ଏଠାକାର ସମସ୍ତେ ଆମ ଦେଶର ଗୋରା ଆଇ.ସି.ଏସ୍.ଙ୍କ ପରି ଉଦ୍ଧତ ? ଟମି ସୈନିକମାନଙ୍କ ପରି ନିର୍ଦ୍ଦୟ ! ନୀଳଚାଷ, ଚା ବଗିଚା ପ୍ରଭୃତି ବ୍ୟବସାୟୀଙ୍କ ପରି ରକ୍ତ ଶୋଷକ ? ନା...ନା... ସେହି ଦେଶର ତ ପୁଣି ଦୀନବନ୍ଧୁ ସି.ଏଫ୍. ଆଣ୍ଡ୍ରୁଜ, ଆନି ବେସାନ୍ତ ।

କଳ୍ପନା ଚକ୍ଷୁରେ ଦେଖିଲି, ଯେପରି ଗୋଟାଏ ବିରାଟ ଜନସ୍ରୋତ ଶୋଭାଯାତ୍ରା କରି ବାହାରିଛନ୍ତି- ଅସଂଖ୍ୟ ସାଧାରଣ କୁଲି, ମଜୁରିଆ, କ୍ଲର୍କ, ସ୍କୁଲ ମାଷ୍ଟରଙ୍କର ଜନସ୍ରୋତ ଭିତରେ ଚର୍ଚ୍ଚିଲ୍, ଲିନ୍‌ଲିଥଗୋ, ଆଣ୍ଡ୍ରୁଜ୍, ଓ୍ୱାର୍ଡ଼ସୱାର୍ଥ, ସେଲି ଓ ସେକ୍ସପିୟର, କ୍ଲାଇବ୍ ଓ ମୁଷ୍ଟିମେୟ ଇଷ୍ଟଇଣ୍ଡିଆ କଂପାନୀର ବଣିକ ଦସ୍ୟୁ- ସମସ୍ତେ ଚାଲିଛନ୍ତି ସୁବିସ୍ତୃତ ସାଗର ବକ୍ଷରେ ଫେନାୟିତ କେତୋଟି ଜଳ ବୁଦ୍ ବୁଦ୍ ପରି । ଶାସକ ଶ୍ରେଣୀ ଲର୍ଡ଼ ବ୍ୟାରେନଙ୍କ ଦଳ ମଧ୍ୟ ଜନତା ଭିତରୁ ମଝିରେ ମଝିରେ ଭାସି ଉଠୁଛନ୍ତି । ଏମାନେ ସାମାନ୍ୟ କେତେଜଣ ହେଲେ ମଧ୍ୟ ପ୍ରଚୁର ସମ୍ପତ୍ତିରେ ଘନୀଭୂତ ବିଷପାତ୍ରର ଅପ୍ରତିଦ୍ୱନ୍ଦ୍ୱୀ ଅଧିକାରୀ ହୋଇ ସମସ୍ତଙ୍କଠାରୁ ବଳୀୟାନ୍ ହୋଇପଡ଼ିଛନ୍ତି । ଏମାନଙ୍କର ଉଦ୍‌ଗାରିତ ବିଷର ତୀବ୍ର ଜ୍ୱାଳାରେ ନିଜ ଦେଶର ଗରିବ ଭାଇ ଭଉଣୀଙ୍କଠାରୁ ଆରମ୍ଭ କରି ପୃଥିବୀବ୍ୟାପୀ ନିରୀହ ନରନାରୀ ସମସ୍ତେ ଅଚେତନ ହୋଇପଡୁଛନ୍ତି ଓ ସେହି ଅବସରରେ ଏମାନଙ୍କର ଲୁଣ୍ଠନ କ୍ରିୟା ମହା ଉତ୍ସବରେ ଲାଗିରହିଛି । ପୃଥିବୀ ଅତ୍ୟାଚାରରେ ଶିହରି ଉଠିଛି । ଯୁଦ୍ଧ, ମହାମାରୀ, ଦୁର୍ଭିକ୍ଷ, ଗୃହଯୁଦ୍ଧ ପ୍ରଭୃତି ଧ୍ୱଂସଲୀଳା ଏମାନଙ୍କ ଚେଶ୍ ପାଲିର ଅଭିନବ ପରିଚାଳନା ମାତ୍ର । ସଭ୍ୟତା ପ୍ରଚାର ପଛରେ ଲୁଣ୍ଠନର ନିର୍ମମ ଇତିହାସ... ବାଇବେଲ୍ ସାଙ୍ଗରେ ଶଠତାର ତୀକ୍ଷ୍ଣ ଛୁରିକା, ବିଜ୍ଞାନ ପ୍ରସାର ସାଙ୍ଗରେ ଦାସତ୍ୱର ଶୃଙ୍ଖଳ ପୃଥିବୀକୁ ଦୁର୍ବଳ କରି ପକାଇଛି । ସାମାନ୍ୟ କେତେଜଣ ଦୟାଳୁ ଲୋକ ସେବକଙ୍କର ପ୍ରକୃତ ଦାନ ଓ ମାନବିକତା ଏମାନଙ୍କର କ୍ରୂର ଅସିମୁନ ଓ ବନ୍ଧୁକ ଗୁଳିରେ କୁଆଡ଼େ ହଜିଯାଇଛି ।

X X X X X X

ଏଇ ଇଂଲଣ୍ଡର କାର୍ଯ୍ୟକଳାପ କେତେପ୍ରକାର ବା ହୋଇନଥିବ ! ଏପରି ଏକ ପାହାନ୍ତିଆରେ ହୁଏତ କ୍ଲାଇବ୍ ଠିକ୍ ଏହି ସ୍ଥାନରୁ ଭାରତ ଅଭିମୁଖେ ଯାତ୍ରା କରିଥିବେ । ଠିକ୍ ଏପରି ଏକ ପାହାନ୍ତି ପହରରେ ହୁଏତ ଟମାର୍ସ ହାର୍ଡ଼ି, ସେକ୍ସପିୟର ପ୍ରଭୃତି ତାଙ୍କର ସାହିତ୍ୟ ଜଗତର ଅମର ନାୟକ-ନାୟିକାଙ୍କ ସହିତ ମୁହାଁମୁହିଁ ହୋଇ ବସି ମନ ବିଶ୍ଳେଷଣ କରୁଥିଲେ ? ୱାର୍ଡ଼ସୱାର୍ଥ, ସେଲି, ବାଇରନ୍‌ଙ୍କ ପ୍ରାଣ କବିତା ବେଦନାରେ ପୂରି ଉଠିଥିଲା ।

ଏହି ସେ ଇତିହାସ ପ୍ରସିଦ୍ଧ ଇଂଲଣ୍ଡ ଯାହାର ପ୍ରଧାନ ନଗରୀ ଲଣ୍ଡନ ଆଜିପର୍ଯ୍ୟନ୍ତ ପୃଥିବୀର ବାଣିଜ୍ୟ ଓ ସଂସ୍କୃତିର କେନ୍ଦ୍ର ରୂପେ ପରିଗଣିତ ହୋଇଆସୁଛି ଏବଂ ଯାହାର କୂଟନୀତି ଓ ତରବାରି ଭୟରେ ସମଗ୍ର ପୃଥିବୀ ସଙ୍କୁଚିତ ହୋଇରହିଛି । ଦୁଇଟି ପୃଥିବୀ ଯୁଦ୍ଧ ପରେ ତାହାର ପ୍ରଭାବ ଆଜି ବହୁ ପରିମାଣରେ କ୍ଷୁଣ୍ଣ ହୋଇଛି । ଯେଉଁ ଦେଶର ରକ୍ତରେ ପରିବର୍ଦ୍ଧିତ ଓ ପରିପାଳିତ ହୋଇଥିଲା, ସେହି ଦେଶର ଦୁର୍ବଳ, ରୁଗ୍‌ଣ ଓ ନିସ୍ତେଜ ମଣିଷମାନେ ତାକୁ ନୂତନ ସମର ପ୍ରାଙ୍ଗଣରେ ଆହ୍ୱାନ କରିଛନ୍ତି । ଗତ କେତେଶହ ବର୍ଷର ଅବିଚ୍ଛିନ୍ନ ଅଭ୍ୟୁଦୟ ପରେ ଆଜି ଏହି ଦେଶର ଜନସାଧାରଣ ଓ ଚର୍ଚ୍ଚିଲ୍ ପ୍ରଭୃତି ଶାସକଗୋଷ୍ଠୀ କିପରି ଭାବରେ ସମୟ କଟାଉଛନ୍ତି, ଏସବୁ ଦେଖିବାର ଇଚ୍ଛା ପ୍ରବଳ ହୋଇଉଠିଲା । ଗୃହ ପ୍ରତ୍ୟାଗତ ବିଜୟୀ ଯୋଦ୍ଧାଙ୍କର ଗୀତ ଶୁଣି ଯେଉଁ ସ୍ୱଦେଶକାତରତା ମନ ଭିତରେ ଦେଖା ଦେଇଥିଲା, ତାହା କ୍ରମେ କ୍ରମେ ଦୂର ହୋଇଗଲା ଏବଂ ଅନେକ ପ୍ରକାରର କୌତୂହଳରେ ମନ ଆଲୋଡ଼ିତ ହେଲା ।

X X X X X X

ଜାହାଜରୁ ଓହ୍ଲାଇ ରେଳଗାଡ଼ିରେ ଆସି ବସିଲୁ । କିଛି ସମୟ ପରେ ରେଳ ଦ୍ରୁତ ଗତିରେ ଲଣ୍ଡନ ଅଭିମୁଖେ ଛୁଟିବାକୁ ଆରମ୍ଭ କଲା । ରାସ୍ତାର ଦୁଇ କଡ଼ରେ ବହୁତ ରକମର ଛୋଟବଡ଼ ଗଛ ସୂର୍ଯ୍ୟ କିରଣରେ ଚିକ୍ ଚିକ୍ କରୁଥାଏ । ଆମ ଦେଶ ପରି ଅନେକଟା ଲାଗୁଥାଏ; କିନ୍ତୁ କ୍ରମେ କ୍ରମେ ତଫାତଟା ସ୍ପଷ୍ଟ ହୋଇଉଠିଲା । ଯେଉଁଆଡ଼େ ଦେଖିବ କୋଠାଘର, ବଡ଼ସାନ ମିଶାମିଶି । କିନ୍ତୁ ଦୋତାଲାରୁ କେହି ପ୍ରାୟ ଛୋଟ ନୁହେଁ । ଚାରିଆଡ଼େ କଳ କାରଖାନାମାନଙ୍କରୁ ଧୂଆଁ ଅବିରତ ବାହାରୁଛି । ଚିକ୍ ଚିକ୍ ପିଚ୍ ରୋଡ଼ରେ କେତେ ରକମର ଟ୍ରକ୍, ବସ୍, କାର୍ ଅବିରାମ ଗତିରେ ଛୁଟିଛି ।

ଆକାଶରେ ଚିଲ ପଇଁତରା ମାରିଲା ପରି ଦଳଦଳ ହୋଇ ଉଡ଼ାଜାହାଜ ଉଡ଼ି ବୁଲୁଛନ୍ତି.... କେଉଁଠି କ୍ରିକେଟ୍ ଖେଳ ହେଉଛି ତ ଅନ୍ୟ କେଉଁଠି ଫୁଟବଲ୍ ଓ ଟେନିସ୍ ପ୍ରଭୃତି ଖେଳ ଲାଗିଛି । ପାର୍କସବୁ ଲୋକାରଣ୍ୟ । ସ୍ତ୍ରୀ ପୁରୁଷ ମନଖୁସିରେ ବୁଲୁଛନ୍ତି । ଚାରିଆଡ଼େ ବଳିଷ୍ଠ ଜୀବନର ଗୋଟାଏ ବିରାଟ ସ୍ପନ୍ଦନ ଯେପରି ଲାଗିରହିଛି । ଆମ ଦେଶରେ ରେଳରେ ଯାଉଥିବା ବେଳର ଦୃଶ୍ୟଠାରୁ ଏହା ନିଶ୍ଚୟ ବହୁତ ଫରକ । ଅସ୍ଥିକଙ୍କାଳସାର କୃଷକ ଜରାଜୀର୍ଣ୍ଣ ଗୋରୁ ନେଇ କୌଣସିମତେ ମାଟି ଉଖାରୁ ନାହିଁ କି ମ୍ୟାଲେରିଆ ଓ ଅନ୍ୟାନ୍ୟ ରୋଗଗ୍ରସ୍ତ ଦୁର୍ବଳ ଶିଶୁଦଳଙ୍କର କରୁଣ ନଗ୍ନରୂପ ରେଳ ଝରକା ଭିତରୁ ଦେଖାଯାଉନାହିଁ । ମାତୃ ଜାତିର ନିଷ୍ପ୍ରଭ ଚାହାଣୀ ଓ ମଲା ବିରାଡ଼ି ପିଲା ପରି ରକ୍ତହୀନ ବକ୍ଷଦେଶର ସ୍ତନ ଯୁଗଳ, ମଳିନ ବସନ ଭେଦ କରି ସମାଜ ବିରୁଦ୍ଧରେ କରୁଣ ପ୍ରତିବାଦ ଜଣାଉନାହିଁ । ମୋଟାମୋଟି ମନେହୁଏ, ସେମାନେ ଯେପରି ପ୍ରାଣର ସବୁ ସରସତା ନେଇ ଜୀବନ ସ୍ରୋତରେ ଆଗେଇ ଚାଲିଛନ୍ତି; ଆଉ ଆମେମାନେ ଅର୍ଦ୍ଧମୃତ ଭାବରେ କୌଣସିମତେ ଗଡ଼ି ଚାଲିଛୁ ମୃତ୍ୟୁର କବରଆଡ଼େ । ଅବଶ୍ୟ ଆମ ଦେଶର ଅନେକେ କହନ୍ତି ଯେ ଆମ ପଲ୍ଲୀରେ ଯେପରି ଶାନ୍ତି ଅଛି, ତାହା ଆଉ କୌଣସି ଦେଶରେ ନାହିଁ । ହୁଏତ ଆମ ପଲ୍ଲୀରେ ଦିନେ ଶାନ୍ତି ଥିଲା; କିନ୍ତୁ ଆଜି କାହିଁ ସେ ଶାନ୍ତି ! ଯେଉଁ ପୁରପଲ୍ଲୀରେ ବର୍ଷସାରା ହଇଜା, ବସନ୍ତ ଓ ମ୍ୟାଲେରିଆ ପ୍ରଭୃତି ରୋଗ ଲାଗି ରହିଛି, ଯେଉଁ ପଲ୍ଲୀର ଅଧିକାଂଶ

ଲୋକେ ଦୁଇବେଳା ମୁଠାଏ ଖାଇବାକୁ ପାଆନ୍ତି ନାହିଁ; ସେଠି କିପରି ସୁଖଶାନ୍ତି ଥାଇପାରେ ? ସହରବାସୀ ବାବୁ ସାହେବମାନଙ୍କ କବିତାରେହିଁ ଏ ପ୍ରକାର ସୁଖଶାନ୍ତି ଦେଖିବାକୁ ମିଳେ ।

ଏହିପରି ଅନେକ ଚିନ୍ତାଧାରା ମନକୁ ଆଲୋଡ଼ିତ କରୁଥିବାବେଳେ ରେଲଟା କେତେବେଳେ ଆସି ଲଣ୍ଡନ ସହରର ୱାଟରଲୁ ଷ୍ଟେସନରେ ଥମ୍ କରି ଠିଆ ହୋଇଗଲା । ଲୋକଗହଳିରେ ଷ୍ଟେସନ୍ ଯେପରି ଭାଙ୍ଗି ପଡୁଥାଏ । ଚାରିଆଡ଼େ ଖାଲି ଜନତା, ସ୍ତ୍ରୀପୁରୁଷ, ପିଲାପିଲି, କୁଲି ମଜୁରିଆ, କ୍ଲର୍କ, ମାଷ୍ଟର, ପୋଲିସ୍, ଗାଡ଼ିଚାଳକ ଇତ୍ୟାଦି । ଖାଲି ମଣିଷ ଆଉ ମଣିଷ, ଯେଉଁଆଡ଼େ ଦେଖିବ ମଣିଷ ।

ଲଣ୍ଡନ ସହରର ପ୍ରାୟ କୋଟିଏ ଲୋକଙ୍କର ବିରାଟ ସହରର ଉପକୂଳରେ ଆସି ପହଞ୍ଚିଲି । ଏ ବିଶାଳ ଜନତା ଗର୍ଭରେ ଝାମ୍ପ ଦେବାକୁ ନିଜକୁ କାହିଁକି ହଠାତ୍ ଅସହାୟ ମନେକଲି– ବ୍ୟକ୍ତିତ୍ୱର ଅସ୍ତିତ୍ୱ ଯେପରି ହଠାତ୍ ଲୋପ ହୋଇଗଲା । କଟକର ଧୂଳିଧୂସର ରାସ୍ତା ମନେପଡ଼ିଲା । ପ୍ରତ୍ୟେକ ଜରାଜୀର୍ଣ୍ଣ କୋଠା ଯେପରି ମୋ ମନ ଭିତରେ ଆସି ଉଙ୍କି ମାରିଲେ । ଯେଉଁଆଡ଼େ ଯିବ ଗୋଟାଏ ପରିଚିତ ଭାବ-ସମସ୍ତେ ଯେପରି ଅତି ଆପଣାର ? ତେଣୁ ବ୍ୟକ୍ତିତ୍ୱର ଅସ୍ତିତ୍ୱ ଉପଲବ୍ଧି କରିହୁଏ । ଏଠାକାର ଏ ବିରାଟ ଜନତାକୁ ଦେଖି ମନେହେଲା, ଯେପରି ଏହା ଗୋଟିଏ ପ୍ରକାଣ୍ଡ ଲୌହରାକ୍ଷସର ଗତିଶୀଳ କିନ୍ତୁ ପ୍ରାଣହୀନ ଯାନ୍ତ୍ରିକ ଅଙ୍ଗ ପ୍ରତ୍ୟଙ୍ଗ...ହସ ଅଛି, କିନ୍ତୁ ସ୍ନେହ ନାହିଁ; କଥା ଅଛି, କିନ୍ତୁ ଉଷ୍ମତା ନାହିଁ; ଭଦ୍ରତା ଅଛି, ସହାନୁଭୂତି ନାହିଁ...ମନଟା କିଛିକ୍ଷଣ ପାଇଁ ନିଜ ଦେଶ ପ୍ରତି ଆକୃଷ୍ଟ ହୋଇପଡ଼ିଲା- "ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ, ଲଙ୍ଘି ଭୀଷଣ ଗିରି ସମୁଦ୍ରବକ୍ଷ, ଦେଖନ୍ତି ପ୍ରିୟଜନ ମୁଖକମଳ, ହୁଅନ୍ତା ଏ ସନ୍ତପ୍ତ ପ୍ରାଣ ଶୀତଳ ।" କବିତାଟି ମନେପଡ଼ିଗଲା । ନା, ନା, ପଛକୁ ଚାହିଁବା ଅର୍ଥ ପରାସ୍ତ–ଆଗକୁ ଆଗକୁ ମାଡ଼ି ଚାଲିବାହିଁ ଜୀବନର ଧର୍ମ... ।

## (ଖ) ଶିକ୍ଷାଗତ ଅନୁଭୂତି

ମୁଁ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଯେଉଁ ଚିଠି ପାଇଥିଲି, ସେଥିରେ ବି.ଏ. ପାଇଁ ମୋତେ ସ୍ଥାନ ମିଳିଥିଲା । କାରଣ ପାଟଣା ବିଶ୍ୱବିଦ୍ୟାଳୟରେ ଏମ୍.ଏ.ରେ ମାତ୍ର ଦୁଇଟି ମନୋବିଜ୍ଞାନ ପେପର ଥିଲା । ଯଦିଚ ମୁଁ କଲିକତା ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗରେ ଚାରିମାସ କାମ କରିଥିଲି, ତଥାପି ମୁଁ କେବଳ ବି.ଏ. ପାଇଁ ଉପଯୁକ୍ତ ବୋଲି ବିବେଚିତ ହୋଇଥିଲି ।

ସେଠାରେ ପହଞ୍ଚି ମୁଖ୍ୟ ଅଧ୍ୟାପକଙ୍କ ସହିତ ଦେଖା କଲା ପରେ ମୋତେ ସେମାନେ ଏମ୍.ଏ. ପାଇଁ ରେଜିଷ୍ଟ୍ରି କରିଦେଲେ । ଏମ୍.ଏ.ରେ ଅଧା ଭାଗ ଗବେଷଣାତ୍ମକ କାର୍ଯ୍ୟ ଓ ଆଉ ଅଧା ପରୀକ୍ଷାମୂଳକ ବିଷୟବସ୍ତୁ ରହିଛି । ଏମ୍.ଏ.ରେ ପାଇଁ ଗବେଷଣାଲବ୍ଧ ଫଳାଫଳ ବ୍ରିଟିଶ୍ ମନସ୍ତତ୍ତ୍ୱ ପତ୍ରିକାରେ ଏବଂ ଡକ୍ଟରେଟ୍ ଗବେଷଣା ଗୋଟିଏ ପୃଥକ୍ ବହି ଆକାରରେ ପ୍ରକାଶଯୋଗ୍ୟ ହେବାର ମାନ ନିର୍ଦ୍ଦିଷ୍ଟ କରାହୋଇଥାଏ । ମୁଁ ପୁଣି କିଛିଦିନ ପରେ ଲଣ୍ଡନ ବିଶ୍ୱବିଦ୍ୟାଳୟକୁ ଦରଖାସ୍ତ କଲି ଯେ ମୁଁ ଆଗରୁ ଏମ୍.ଏ. ପ୍ରଥମ ଶ୍ରେଣୀ ପାଇସାରିଛି, କଲିକତାରେ ବିଶେଷ ମନୋବିଜ୍ଞାନ ଶିକ୍ଷା ପାଇଛି, ତେଣୁ ମୋତେ ସିଧା ଡକ୍ଟରେଟ୍ କରିବା ପାଇଁ ଅନୁମତି ମିଳୁ । ମୋ କଥା ବିଚାର ପାଇଁ ତିନିଜଣ ଅଧ୍ୟାପକଙ୍କୁ ନେଇ ଗୋଟିଏ ବିଶେଷଜ୍ଞ କମିଟି ଗଢ଼ାଗଲା । ସେମାନେ ମତ ଦେଲେ ଯେ ଶିକ୍ଷାର୍ଥୀ ଯଦି ମନସ୍ତତ୍ତ୍ୱ ବିଷୟରେ ଯଥେଷ୍ଟ

ଜ୍ଞାନ ହାସଲ କରିଛି ବୋଲି ଦାବି କରୁଛି ତାହେଲେ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟର ଉଚ୍ଚମାନର ଗୋଟିଏ ପରୀକ୍ଷା ଦେଉ ଏବଂ ଏଥିରେ ଯଦି ସେ ଫେଲ୍ କରେ ତାହେଲେ ବି.ଏ. ପଢ଼ିବ । ସାଧାରଣ ଭାବରେ ପାଶ୍ କଲେ ଏମ୍.ଏ. ପଢ଼ିବ ଏବଂ ଭଲ ଭାବରେ ପାଶ୍ କଲେ ଡକ୍ଟରେଟ୍ ଛାତ୍ର ଭାବରେ କାମ କରିପାରିବ । ମୋତେ ଏଥିପାଇଁ ତିନିମାସ ସମୟ ଦିଆଗଲା ଏବଂ ଏହି ପରୀକ୍ଷା ପାଇଁ କୌଣସି ପାଠ୍ୟକ୍ରମର ସୂଚନା ମଧ୍ୟ ଦିଆଗଲା ନାହିଁ ଅର୍ଥାତ୍ ମନୋବିଜ୍ଞାନ ବିଷୟରେ ଯେ କୌଣସି ପ୍ରଶ୍ନ ସେମାନେ ପରୀକ୍ଷାରେ ପଚାରି ପାରିବେ । ତାଛଡ଼ା ପଚାଶଟି ପ୍ରାକ୍ଟିକାଲ କରି କମିଟି ଆଗରେ ଉପସ୍ଥାପିତ କରିବା ପାଇଁ ମୋତେ ନିର୍ଦ୍ଦେଶ ଦିଆଗଲା । ତିନିମାସ ପରେ ମୋର ଶେଷ ପରୀକ୍ଷା ହେବ ।

ଏଥିରେ ମୋର ଉଦ୍‌ବିଗ୍ନତା ବହୁତ ବଢ଼ିଗଲା । ଯୁଦ୍ଧ ସମୟରେ ଭାରତକୁ କୌଣସି ମନସ୍ତତ୍ତ୍ୱ ପତ୍ରିକା ଆସୁ ନଥିଲା । ତେଣୁ ଏ କ୍ଷେତ୍ରରେ ଆଧୁନିକ ଯୁଗର ଗବେଷଣାତ୍ମକ ବିଷୟବସ୍ତୁ ବିଷୟରେ ମୋର ବ୍ୟାପକ ଜ୍ଞାନ ନଥିଲା । ତେଣୁ ମୋର ଭୟ ଓ ଉଦ୍‌ବେଗ ହେବା କଥା । ସଠିକ୍ ବିଷୟବସ୍ତୁ ନିର୍ଦ୍ଧାରିତ ହୋଇ ନଥିବାରୁ ଏ ପ୍ରକାର ଭୟର ମାତ୍ରା ଆହୁରି ବଢ଼ିଗଲା । ତା ଅର୍ଥ ମନସ୍ତତ୍ତ୍ୱରେ ଥିବା ସବୁ ବିଭାଗ ବିଷୟରେ ଜ୍ଞାନ ଆହରଣ ବାଞ୍ଛନୀୟ ବୋଲି ଧରି ନିଆଯାଇଥିଲା । ସେ ତିନିମାସ ମୁଁ ଯେ କି ପରିଶ୍ରମ କରିଛି, ସେ କଥା ଭାବିଲେ ବର୍ତ୍ତମାନ ବିଶ୍ୱାସ ହୁଏନା । ସାରା ଲଣ୍ଡନରେ ଥିବା ବିଭିନ୍ନ କଲେଜରେ ମନସ୍ତତ୍ତ୍ୱ ବିଷୟରେ ଯେତେ ପ୍ରକାର କ୍ଲାସ ହେଉଥିଲା ସେ ସବୁକୁ ମୋତେ ଯିବାକୁ ପଡୁଥିଲା । ତାଛଡ଼ା ଲାଇବ୍ରେରୀରେ ଆଠଦଶ ଘଣ୍ଟାକାଳ ବସି ନାନା ବିଷୟରେ ପଢ଼ିବାକୁ ହେଉଥିଲା । ଲଣ୍ଡନରେ ମୋର ଅଢ଼େଇବର୍ଷ ରହଣି ଭିତରୁ ଏହି ତିନିମାସ ଭୟଙ୍କର ଉଦ୍‌ବେଗରେ କଟିଥିଲା । ମୁଁ ଆଉ କୁଆଡ଼େ ନଯାଇ ଖାଲି କ୍ଲାସ୍ ଓ ଲାଇବ୍ରେରୀରେ ପ୍ରତିଦିନ ବାର-ଚଉଦ ଘଣ୍ଟା କଟାଉଥିଲି ।

ଯାହାହେଉ, ତିନିମାସ ପରେ ଯେଉଁ ପରୀକ୍ଷା ହେଲା ସେଥିରେ ମୁଁ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ଡକ୍ଟରେଟ୍ କରିବା ପାଇଁ ଅନୁମତି ପାଇଲି । ସେତେବେଳକୁ ମନସ୍ତତ୍ତ୍ୱ ବିଭାଗରେ ଥିବା ଛାତ୍ରମାନଙ୍କର ପ୍ରିୟ ବିଷୟବସ୍ତୁରେ ଡକ୍ଟରେଟ୍ ଛାତ୍ର ଗ୍ରହଣ ସରିଯାଇଥିଲା । ମୋତେ ଗୋଟିଏ କଷ୍ଟକର ବିଷୟବସ୍ତୁରେ ଡକ୍ଟରେଟ୍ କରିବା ପାଇଁ ପରାମର୍ଶ ଦିଆଗଲା । ସେ ବିଷୟବସ୍ତୁ ଏତେ କଠିନ ତଥା ଅପ୍ରିୟ ଥିଲା ଯେ ବହୁତ କମ୍ ଛାତ୍ର ଏହାକୁ ବାଛିଥାନ୍ତି । ପୁଣି ତାହା ବହୁତ ପରିସଂଖ୍ୟାନ ଜ୍ଞାନ ଉପରେ ପର୍ଯ୍ୟବସିତ । ମୋର ଏଥିରେ ଭଲ ପ୍ରବେଶ ନ ଥିଲା । ତଥାପି ଭାବିଲି ମୋ ପରି ଛାତ୍ର ତ ତାକୁ ଆୟତ୍ତ କରୁଛନ୍ତି, ମୁଁ କାହିଁକି ନ ପାରିବି ? ସେଥିପାଇଁ ମୋତେ ଅଧିକା ବହୁତ ପରିଶ୍ରମ କରିବାକୁ ପଡ଼ିଲା । ମୁଁ ତା'ର ନିଗୂଢ଼ ତତ୍ତ୍ୱକୁ ଆୟତ୍ତ କରିପାରିଲି ଏବଂ କ୍ରମେ ଏଥିରେ ମୋର ଦକ୍ଷତା ହୋଇଗଲା ଏବଂ ସେ ବିଷୟରେ ନୂଆ ଡକ୍ଟରେଟ୍ ଛାତ୍ରଙ୍କୁ ପଢ଼ାଇବା ଭାର ମୋ ଉପରେ ପଡ଼ିଲା । ଅତି ଅଧିକ ପରିମାଣରେ ପରିଶ୍ରମ କରି ମୋ ତତ୍ତ୍ୱାବଧାରକ ଅଧ୍ୟାପକଙ୍କୁ ସନ୍ତୁଷ୍ଟ କରିପାରିଲି । ସେ ଅନ୍ୟମାନଙ୍କ ସହିତ ମୋତେ ଚିହ୍ନା କରି ଦେଉଥିବା ବେଳେ କହୁଥିଲେ ଯେ ମୁଁ ସେହି ବିରକ୍ତିକର କଠିନ ଗବେଷଣା କାମଟିକୁ କରୁଛି । ଏଥିରେ ମୋର କର୍ମନିଷ୍ଠା ଓ ଆତ୍ମବିଶ୍ୱାସ ବହୁତ ବଢ଼ିଗଲା । ମୁଁ ଗବେଷଣା କାମ ଆରମ୍ଭ କରିବାର ଠିକ୍ ଦୁଇବର୍ଷ

ଭିତରେ ଡକ୍ଟରେଟ୍ କାମ ଶେଷ କଲି ଏବଂ ମୌଖିକ ପରୀକ୍ଷାରେ ବହୁତ ପ୍ରଶଂସା ମଧ୍ୟ ପାଇଲି । ମୋ ସହିତ ଏ କ୍ଷେତ୍ରରେ ଯେଉଁମାନେ ଏମ୍.ଏ. ଏବଂ ଡକ୍ଟରେଟ୍ କରୁଥିଲେ, ସେମାନେ ସମସ୍ତେ ଅକୃତକାର୍ଯ୍ୟ ହୋଇଥିଲେ । ସେମାନଙ୍କୁ ଆଉ ଅଧିକା ଛଅମାସରୁ ଦେଢ଼ବର୍ଷ ପର୍ଯ୍ୟନ୍ତ ସମୟ ଲାଗିଯାଇଥିଲା ।

ଅନେକ ସମୟରେ ଡକ୍ଟରେଟ୍ କାମ କରୁଥିବା ଶିକ୍ଷାର୍ଥୀମାନେ ସେମାନଙ୍କର କ୍ଷୁଦ୍ର ପରିସର ଭିତ୍ତିକ କାମରେ ଆବଦ୍ଧ ରହୁଥିବାର ଦେଖାଯାଏ । ମୁଁ ଯେହେତୁ ନିଜେ ଶିକ୍ଷକ, ଜୀବନଯାକ ଶିକ୍ଷକତା କରିବି ଏବଂ ଏହି କାମରେ ମୋର ଅତିଶୟ ଆଗ୍ରହ ଓ ପ୍ରେରଣା ଥିଲା, ତେଣୁ ମୁଁ ଲଣ୍ଡନ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଆଉ ଯେତେକ ଭଲ ଭଲ କ୍ଲାସ୍ ହେଉଥାଏ ସେଥିରେ ମୁଁ ଯୋଗ ଦେଉଥିଲି ଏବଂ ଅପର୍ଯ୍ୟାପ୍ତ ଟିପ୍‌ପଣୀ କରୁଥିଲି– କାରଣ ତାହା ଆମ ଦେଶରେ ପାଠ ପଢ଼ାଇବାରେ ଅନେକ ସାହାଯ୍ୟ କରିବ । ଅନ୍ୟାନ୍ୟ କ୍ଲାସ୍‌ରେ ଯୋଗ ଦେବା ଫଳରେ ମନସ୍ତତ୍ତ୍ୱର ବିଭିନ୍ନ ବିଷୟବସ୍ତୁ ଉପରେ ମୋର ବ୍ୟାପକ ଜ୍ଞାନ ଆହରଣ ସମ୍ଭବ ହେଲା । କେବଳ ମନୋବିଜ୍ଞାନ କ୍ଲାସ୍ ନୁହେଁ, ପରିସଂଖ୍ୟାନ, ନୃତତ୍ତ୍ୱ, ସମାଜତତ୍ତ୍ୱ ପ୍ରଭୃତି ମନୋବିଜ୍ଞାନର ପରିପୂରକ ବିଷୟରେ ଅନେକ ବିଶେଷଜ୍ଞମାନଙ୍କ କ୍ଲାସ୍‌ରେ ମଧ୍ୟ ଯୋଗ ଦେଉଥିଲି । ଏହି ଅଢ଼େଇ ବର୍ଷ ଭିତରେ ଜ୍ଞାନର ପରିସର ବୃଦ୍ଧି ନେଇ ମୋଠାରେ ଗଭୀର ଆତ୍ମସନ୍ତୋଷ ଦେଖା ଦେଇଥିଲା । ମନୋବିଜ୍ଞାନ ତଥା ସମାଜବିଜ୍ଞାନ କ୍ଷେତ୍ରରେ ସାମଗ୍ରିକ ଭାବରେ ଗୋଟିଏ ପ୍ରକାର ଅନ୍ତର୍ଦୃଷ୍ଟି ସମ୍ଭବ ହୋଇପାରିଲା ।

ଏହା ସହିତ ଜନପ୍ରିୟ ବିଜ୍ଞାନ ସାହିତ୍ୟରେ ମୋର ଆଗ୍ରହ ସୃଷ୍ଟି ହୋଇଥିଲା । ଏ ବିଷୟର ଲଣ୍ଡନରେ ନାନା ସ୍ଥାନରେ ବିଶେଷଧରଣର ବକ୍ତୃତାମାଳା, ସେମିନାର ଲାଗି ରହିଥାଏ । ମୁଁ ଏସବୁ ସଭାରେ ଯୋଗ ଦେଉଥିଲି । ଅଧ୍ୟାପକ ହଲ୍‌ଡେନ୍, ବାର୍ଣ୍ଣାଲ୍ଡ, ଲେଭି, ବାର୍ଟଣ୍ଡ ରସେଲ ପ୍ରଭୃତି ବୈଜ୍ଞାନିକମାନଙ୍କର ବକ୍ତୃତା ବଡ଼ ଚିତ୍ତାକର୍ଷକ ହେଉଥିଲା । ସେ ସମୟରେ ଜନପ୍ରିୟ ବିଜ୍ଞାନ ବିଷୟରେ ଯେତେ ବହି ମୁଁ କିଣିଥିଲି ତାହା ମୋ ପିଲାଙ୍କର କାମରେ ଆସିଥିଲା । ଏହାଫଳରେ ମୋର ପୁଅ, ଝିଅ, ନାତିମାନେ ଏ ଦିଗରେ ଆଗ୍ରହ ଦେଖାଇଥିଲେ ଏବଂ ସେମାନଙ୍କର ଜ୍ଞାନର ପରିସର ବହୁତ ବୃଦ୍ଧି ପାଇଥିଲା । ଏଥିରେ ମୁଁ ବିଶେଷ ଭାବରେ ଆନନ୍ଦିତ । ସେମାନଙ୍କ ସହିତ ବହୁତ ବିଷୟରେ ଘଣ୍ଟାଘଣ୍ଟା ଧରି ଆଲୋଚନା କରିବାରେ ମୋର ବହୁ ସମୟ କଟେ ଏବଂ ଏଥିରେ ମୋ ଜୀବନର ସାର୍ଥକତା ଉପଲବ୍ଧି କରିହୁଏ ।

ସେତେବେଳେ ଇଂଲଣ୍ଡର ଭାରତୀୟ ଛାତ୍ରମାନଙ୍କୁ ମୋଟାମୋଟି ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଦଳେ କେବଳ ଦିନରାତି ପଢ଼ନ୍ତି । ଘରକୁ ସଂଧ୍ୟାରେ ଫେରିଆସି ଲୁଙ୍ଗି ପିନ୍ଧି ପରସ୍ପର ଭିତରେ ନିଜ ଚାକିରିରେ ଉନ୍ନତି ଓ ଅନ୍ୟମାନଙ୍କୁ ନିନ୍ଦା କରିବା କଥାକୁ ହଜାର ଥର ଆଉଡ଼ାଇବାରେ ଆନନ୍ଦ ପାଆନ୍ତି । ଆଉ ଦଳେ ଇଂରେଜ ପିଲାଙ୍କ ସହିତ ସମକକ୍ଷ ହେବା ଅଭିଳାଷ ନେଇ ଝିଅମାନଙ୍କ ସହିତ ମିଶିବା, ମଦ ପିଇବା, ନାଚିବା ପ୍ରଭୃତି ହାହଲ୍ଲା ଭିତରେ ନିଜକୁ ବୁଡ଼ାଇ ରଖନ୍ତି । ପଢ଼ାପଢ଼ିରେ ଆଗ୍ରହ ନଥାଏ । ଏହି ଧରଣର ପିଲାମାନେ ଏପରି ବାହୁଙ୍ଗା ହୋଇଯାଆନ୍ତି ଯେ ଅନେକଙ୍କର ବାପ, ମା'

କିମ୍ବା ସ୍ତ୍ରୀ ଶେଷରେ ବାଧ ହୋଇ ଇଂଲଣ୍ଡରେ ଯାଇ ପହଞ୍ଚନ୍ତି ଏମାନଙ୍କୁ ଉଦ୍ଧାର କରିବା ପାଇଁ । ଏମାନେ ସେଠାକାର ସମାଜରେ ପ୍ରବେଶ କରିବା ପାଇଁ ଯେଉଁ ପ୍ରକାରର ଶସ୍ତା ବ୍ୟବହାର ଦେଖାନ୍ତି, ସେଥିପାଇଁ ସେଠାକାର ଛାତ୍ରଛାତ୍ରୀମାନେ ମଧ୍ୟ ଅସନ୍ତୁଷ୍ଟ ହୁଅନ୍ତି ।

ଆଉ କେତେକ ଏ ଦୁଇ ଶ୍ରେଣୀୟ ପିଲାଙ୍କଠାରୁ ତଫାତ୍ । ସେମାନେ ପଢ଼ନ୍ତି, ସାଂସ୍କୃତିକ କାର୍ଯ୍ୟକଳାପରେ ଯୋଗ ଦିଅନ୍ତି, ଇଂରେଜ ସମାଜ ଓ ଏହାର ସଂସ୍କୃତିକୁ ବୁଝିବା ପାଇଁ ଉଦ୍ୟମ କରନ୍ତି, ବକ୍ତୃତା, ସେମିନାର, କନ୍‌ଫରେନ୍‌ସରେ ଯୋଗ ଦିଅନ୍ତି, ମନକୁ ଖୋଲା ରଖନ୍ତି । ଏମାନଙ୍କ ସଂଖ୍ୟା କମ୍ ହେଲେ ମଧ୍ୟ ଏହିମାନେହିଁ ଭାରତୀୟଙ୍କ ବିଷୟରେ ଖୁବ୍ ଭଲ ଧାରଣା ସୃଷ୍ଟି କରିଥାନ୍ତି । ଆମ ଓଡ଼ିଶାରୁ ଯାଇଥିବା ଅଧିକାଂଶ ଛାତ୍ର ପ୍ରଥମ ଶ୍ରେଣୀଭୁକ୍ତ । ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ଇଂଲଣ୍ଡରେ ପ୍ରତିବର୍ଷ ହେଉଥିବା ବିଖ୍ୟାତ ବିଜ୍ଞାନ କଂଗ୍ରେସକୁ ମଧ୍ୟ ବିଜ୍ଞାନରେ ଡକ୍ଟରେଟ୍ କରୁଥିବା ଛାତ୍ରମାନେ ଯାଆନ୍ତି ନାହିଁ ଯଦିଚ ଅନ୍ୟ ଭାରତୀୟ ଛାତ୍ରମାନେ ଏଥିରେ ବହୁ ସଂଖ୍ୟାରେ ଯୋଗ ଦେବାର ଦେଖାଯାଏ । ଗୋଟିଏ ବର୍ଷ ଏହି କଂଗ୍ରେସରେ ସ୍ୱର୍ଗୀୟ ବ୍ରଜ ବିହାରୀ ପଟ୍ଟନାୟକ ଓ ପରବର୍ଷ ସ୍ୱର୍ଗୀୟ ଦୟାନିଧି ପଟ୍ଟନାୟକଙ୍କୁ ଦେଖିଥିଲି । ଏଥିପାଇଁ ଭାରତ ସରକାରଙ୍କ ତରଫରୁ ଅଧିକ ଖର୍ଚ୍ଚ ଦିଆଯାଉଥିଲେ ସୁଦ୍ଧା ଓଡ଼ିଶାର ଛାତ୍ରମାନେ ଯାଆନ୍ତି ନାହିଁ ।

## (ଗ) ରାଜନୈତିକ ଚେତନା ଓ ମହାମାନବୀୟ ଦିଗ୍‌ଦର୍ଶନ

ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଲାଭ କରିବା ନିଶ୍ଚିତ ଭାବେ ମୋ ଜୀବନର ଗୋଟିଏ ବିଶେଷ କୃତିତ୍ୱ । କିନ୍ତୁ ଏହାଛଡ଼ା ଏହି ଲଣ୍ଡନ ରହଣି ସମୟରେ ଆଉ ଗୋଟିଏ ବିରାଟ ଦିଗ୍‌ଦର୍ଶନ ମୋ ଜୀବନରେ ଦେଖାଦେଇଥିଲା । ଯାହାକି ମୋର ଭବିଷ୍ୟତ ଜୀବନକୁ ବଳିଷ୍ଠ ଭାବରେ ପ୍ରଭାବିତ ତଥା ଅନୁପ୍ରାଣିତ କରିପାରିଥିଲା । ଏହି ସମୟରେ ମୁଁ ବିଭିନ୍ନ ରାଜନୀତି ଦଳର ଲୋକମାନଙ୍କ ସହିତ ମିଶିଥିଲି । ସବୁ ପ୍ରକାରର ରାଜନୀତି ସଭାରେ ଯୋଗ ଦେଉଥିଲି । ଯେତେପ୍ରକାର ରାଜନୈତିକ ଆଲୋଚନା, ସମାରୋହ ଓ ଶୋଭାଯାତ୍ରା ହେଉଥିଲା, ମୁଁ ସେଥିରେ ନିଷ୍ଠାର ସହିତ ଯୋଗ ଦେଉଥିଲି ।

ପ୍ରଥମେ ପ୍ରଥମେ ଇଂଲଣ୍ଡର ଟୋରିଦଳ, ଶ୍ରମିକଦଳ ଏବଂ କମ୍ୟୁନିଷ୍ଟମାନଙ୍କର ସଭାରେ ଯୋଗ ଦେଇ ଜାଣିବାକୁ ଚାହୁଁଥିଲି ସେମାନଙ୍କର ରାଜନୈତିକ ଓ ଆନ୍ତର୍ଜାତିକ ଆଭିମୁଖ୍ୟ । ଏ ସମ୍ପର୍କରେ ବହୁତ ବହି, ପତ୍ରପତ୍ରିକା ପଢ଼ିବାରେ ପ୍ରବଳ ଆଗ୍ରହ ଦେଖା ଦେଇଥିଲା । କିନ୍ତୁ କିଛିଦିନ ପରେ ଶ୍ରମିକ ଓ ମାର୍କସ୍‌ବାଦୀୟ ନୀତିରେ ମୋର ଆଗ୍ରହ ବଢ଼ିଉଠିଲା । ରକ୍ଷଣଶୀଳ ଟୋରିଦଳର ଆଦର୍ଶ ମୋତେ ଭଲ ଲାଗିଲାନାହିଁ । ଟୋରିଦଳର ଲୋକେ ଭାରତକୁ ସ୍ୱାଧୀନତା ଦେବାରେ ଭୁଲ୍ ହୋଇଛି ବୋଲି କହନ୍ତି ତ ଶ୍ରମିକଦଳର ଲୋକେ ଭାରତକୁ ସେମାନଙ୍କ ଦଳ ସ୍ୱାଧୀନତା ଦାନ କରିବା ଯୋଗୁ ସ୍ୱାର୍ଥତ୍ୟାଗ ଜନିତ ଗର୍ବରେ ଉଲ୍ଲସିତ ହୁଅନ୍ତି । କମ୍ୟୁନିଷ୍ଟମାନେ ଭାରତକୁ ଅସଲ ଅର୍ଥନୈତିକ ସ୍ୱାଧୀନତା ଇଂରେଜ ସରକାର ଦେଇନାହାନ୍ତି, କେବଳ ରାଜନୈତିକ ସ୍ୱାଧୀନତା ଦେଇ ନିଜ ହାତରେ ଅର୍ଥନୈତିକ ଚାବି ରଖିଛନ୍ତି ବୋଲି କହନ୍ତି । ଫଳରେ କମ୍ୟୁନିଷ୍ଟଙ୍କ ପ୍ରତି ମୋର ସମ୍ମାନ ବଢ଼ିଗଲା । ଏମାନେ ସବୁବେଳେ ଆନ୍ତର୍ଜାତିକ ମନୋଭାବ ପୋଷଣ କରନ୍ତି ଏବଂ ନିଜ ଦେଶର ନୀତିକୁ ସେହି ଦୃଷ୍ଟିକୋଣରୁ ସମାଲୋଚନା କରନ୍ତି । ସେମାନଙ୍କର ସବୁ ପ୍ରକାରର ଲେଖା ଭିତରେ

ବିଶ୍ୱଜନତା ଲାଗି ଗଭୀର ସହାନୁଭୂତି, ସମସ୍ତପ୍ରକାର ସାମ୍ରାଜ୍ୟବାଦୀ ଶୋଷଣ ବିରୁଦ୍ଧରେ ବଳିଷ୍ଠ ଅଭିଯାନ ଓ ଐତିହାସିକ ବିଶ୍ୱମାନବୀୟ ସାମାଜିକ ବିପ୍ଳବର ଆଭିମୁଖ୍ୟ ପ୍ରତିଫଳିତ ହେଉଥିବାରୁ ଏ ବିଷୟରେ ବ୍ୟାପକ ଅନୁଧ୍ୟାନ କରିବାରେ ମୋର ପ୍ରବଳ ଆଗ୍ରହ ଜନ୍ମିଥିଲା ।

ଇଂଲଣ୍ଡରେ ଏ ପ୍ରକାରର ଲେଖା ଛୋଟ ଛୋଟ ପୁସ୍ତିକା ଆକାରରେ ବହୁ ସଂଖ୍ୟାରେ ପ୍ରକାଶିତ ହେଉଥାଏ । ଏସବୁ ଲେଖା ପଢ଼ିବାରେ ମୋର ଏତେ ବେଶି ବ୍ୟଗ୍ରତା ଦେଖାଦେଇଥିଲା ଯେ ମୋ ଓଭର କୋଟ୍ ପକେଟ୍‌ରେ ସେଥିରୁ ଦୁଇ ଚାରିଖଣ୍ଡ ରଖା ହୋଇଥାଏ । ପ୍ରତିଦିନ ବସ୍, ରେଳଗାଡ଼ି, ସିନେମା ଖାଇବା ପ୍ରଭୃତି ସ୍ଥାନରେ ପ୍ରତୀକ୍ଷାମାନ ଅବସ୍ଥାରେ ଠିଆ ହୋଇ ଏହିସବୁ ପଢ଼ିବା ଅଭ୍ୟାସ ହୋଇଗଲା । ଦିନକୁ ପ୍ରାୟ ୪୫ ମିନିଟ୍ ଏପରି ଭାବରେ ଠିଆହେଲା ବେଳେ ଏତେ ପୁସ୍ତିକା ମୁଁ ପଢ଼ିପାରିଥିଲି ଯେ ମୋର ଇଂଲଣ୍ଡର ଅଢ଼େଇବର୍ଷ ରହଣି ଭିତରେ ମୁଁ ପ୍ରାୟ ପନ୍ଦର କୋଡ଼ିଏ ହଜାର ପୃଷ୍ଠା ପଢ଼ିଥିବି । ତା'ଛଡ଼ା ମାର୍କସ୍, ଲେନିନ୍ ପ୍ରଭୃତିଙ୍କର ମୋଟା ବହି ଘରେ ପଢ଼େ । ବହୁ ବିଖ୍ୟାତ ମାର୍କସ୍‌ବାଦୀ ଅଧ୍ୟାପକ ଓ ବୁଦ୍ଧିଜୀବୀମାନଙ୍କର ମାର୍କସ୍ ପାଠ୍ୟକ୍ରମ ଉପରେ ଧାରାବାହିକ ବକ୍ତୃତାମାଳାରେ ମୁଁ ଯୋଗ ଦିଏ । ମୋଟାମୋଟି ଭାବରେ ମାର୍କସବାଦୀ ଆନ୍ତର୍ଜାତିକ ରାଜନୀତି, ଅର୍ଥନୀତି, ସାମ୍ରାଜ୍ୟବାଦୀ ରାଜ୍ୟର କବଳରୁ ସଦ୍ୟ ମୁକ୍ତି ପାଇଥିବା ଅନ୍ୟାନ୍ୟ ସଂଗ୍ରାମଶୀଳ ଜନତା ବିଷୟରେ ବହୁ ଜ୍ଞାନ ଆହରଣ କରିବା ସମ୍ଭବ ହୋଇପାରିଥିଲା । କ୍ରମେ ମୁଁ ଇଂଲଣ୍ଡର କମ୍ୟୁନିଷ୍ଟ ଦଳର ସବୁ ପ୍ରକାର ଅଲୋଚନା ଓ ସମାରୋହରେ ଯୋଗ ଦେବାକୁ ଆରମ୍ଭ କଲି । ସେତେବେଳକାର ପ୍ରସିଦ୍ଧ ମାର୍କସ୍‌ବାଦୀ ନେତା ହାରିପଲିଟ୍, ରଜନୀ ପାମ୍ ଦତ୍ତ, ବୈଜ୍ଞାନିକ ହଲଡ଼େନ, ଲେଭି ବାର୍ଣ୍ଣାଲ୍ ପ୍ରଭୃତିଙ୍କର ଲେଖା ଓ ବକ୍ତୃତା ମୋତେ ବହୁତ ଅନୁପ୍ରାଣିତ କରିପାରିଥିଲା । ଏହି ଶିକ୍ଷା ଫଳରେ ହିଁ ମୋଠାରେ ଗୋଟିଏ ପ୍ରକାର ବଳିଷ୍ଠ ଆନ୍ତର୍ଜାତିକ ମନୋବୃତ୍ତି ଏବଂ ବିଶ୍ୱମାନବୀୟ ଦାର୍ଶନିକ ଦୃଷ୍ଟିକୋଣ ଦେଖା ଦେଇ ପାରିଥିଲା ।

ଲଣ୍ଡନରେ ପୃଥିବୀର ସବୁଦେଶର ଲୋକଙ୍କ ସହିତ ମୋର ବନ୍ଧୁତା ହେବାର ସୁଯୋଗ ମୁଁ ପାଇଥିଲି । ମୁଁ କେତୋଟି କ୍ଲବ୍‌ର ସଭ୍ୟ ଥିଲି ଯେଉଁଠି ଚାଳିଶ-ପଚାଶ ଦେଶର ଲୋକେ ସଭ୍ୟ ଥାଆନ୍ତି । ସେମାନଙ୍କ ସହିତ ପିକ୍‌ନିକ୍‌ରେ ଯିବା, ହପ୍ତା ଶେଷ ଗ୍ରାମ୍ୟ ପରିଭ୍ରମଣରେ ବୁଲି ବାହାରିବା, ୟୁଗୋସ୍ଲୋଭିଆରେ ଯାଇ ବିଶ୍ୱ ଯୁବ ଜନତା ସହ ମିଶି ସାମୂହିକ ଶ୍ରମ, ସାଂସ୍କୃତିକ କାର୍ଯ୍ୟକ୍ରମ ଓ ରାଜନୈତିକ ଆଲୋଚନାରେ ଭାଗ ନେବାରେ ମୋର ଏହି ବିଶ୍ୱମାନବୀୟ ଦୃଷ୍ଟିକୋଣ ବଳିଷ୍ଠ ଭାବରେ ବିକଶିତ ହୋଇପାରିଲା ।

ଇଂଲଣ୍ଡ ଯିବା ପୂର୍ବରୁ ମୁଁ ପଳାୟନପନ୍ଥୀ ଓ ବିଷାଦମୟ ଦର୍ଶନାଭିମୁଖୀ ଥିଲି । ସବୁ ବିଷୟରେ ଗୋଟିଏ ପ୍ରକାର ହତାଶାମୟ ଆଭିମୁଖ୍ୟ ମୋର ରହୁଥିଲା । ଭଗବଦ୍ ବିଶ୍ୱାସ ସ୍ଥାନରେ କେବଳ ଦିଗନ୍ତବ୍ୟାପୀ ଶୂନ୍ୟତା ଥିଲା । ବିଷନ୍ନତା ଭିତରେ ଜୀବନ ଗଡ଼ି ଚାଲିଥିଲା, କିନ୍ତୁ ଇଂଲଣ୍ଡରେ ପୃଥିବୀର ସବୁ ଦେଶର ଲୋକଙ୍କ ସହିତ କାନ୍ଧ ମିଶାଇ ଚାଲିଥିଲା ବେଳେ ଏବଂ ବିରାଟ ମାନବିକତା ଦର୍ଶନରେ ବାରମ୍ବାର ଅନୁପ୍ରାଣିତ ହେଉଥିବା ଫଳରେ ବିଶ୍ୱମାନବୀୟତାର ବିରାଟ ସ୍ପନ୍ଦନ ମୋ ମନ ଓ ପ୍ରାଣକୁ ଉଦ୍‌ବେଳିତ କରିଥିଲା । ଗଭୀର ଆତ୍ମବିଶ୍ୱାସ ଓ ଆଶାପୂର୍ଣ୍ଣ ଭବିତବ୍ୟର ପରିପୂର୍ଣ୍ଣତାର ଉନ୍ମେଷ ମୋ ବ୍ୟକ୍ତିତ୍ୱକୁ ଗୋଟିଏ

ନୂତନ ଆଦର୍ଶରେ ପରିଚାଳିତ କରିପାରିଥିଲା । ମୋର ଅତୀତର ଶୂନ୍ୟତା ଭବିଷ୍ୟତର ରଙ୍ଗିନ୍ ସ୍ୱପ୍ନ ଭିତରେ ବିଲୀନ ହୋଇଯାଇଥିଲା । ମୋର ବାଲ୍ୟକାଳର ବଳିଷ୍ଠ ଭଗବତ୍ ବିଶ୍ୱାସ ନୂତନ ମାନବୀୟ ପ୍ରେମରେ ପରିଣତ ହେଲା । ଏହି ବିରାଟ ଦିଗ୍‌ଦର୍ଶନ ମୋ ଜୀବନରେ ଗୋଟିଏ ପ୍ରଧାନ ଆତ୍ମିକ ଅନୁଭୂତି ଯାହାକି ଆଜି ପର୍ଯ୍ୟନ୍ତ ମୋତେ ଆତ୍ମବିଶ୍ୱାସୀ କରିପାରିଛି ଏବଂ ସାମଗ୍ରିକ ଜୀବନକୁ, ଏହି ସୁନ୍ଦର ପୃଥିବୀକୁ, ଧର୍ମ, ବର୍ଣ୍ଣ, ଜାତି ଓ ଦେଶର ବହୁ ଊର୍ଦ୍ଧ୍ୱରେ ଥିବା ଆଦିମାନବ ଆତ୍ମାକୁ ଭଲ ପାଇବାରେ ଅଫୁରନ୍ତ ଶକ୍ତି ଯୋଗାଇ ପାରିଛି ।

ସବୁ ମନୁଷ୍ୟଙ୍କୁ ଭଲ ପାଇବାରେ ଯେଉଁ ବିରାଟ ପ୍ରତିବନ୍ଧକମାନ ଇତିହାସ ସୃଷ୍ଟି କରିଛି ସେ ବିଷୟରେ ସଚେତନ ହେଲି । ଧର୍ମ, ଦେଶାତ୍ମବୋଧ, ସଂକୀର୍ଣ୍ଣ (ଜାତିଗତ ସଂସ୍କୃତି) ଓ ବ୍ୟକ୍ତିଗତ ବୈଷମ୍ୟ ଯେ କେତେ କ୍ଷୁଦ୍ର ଓ କେତେ ବେଶି ଅମାନବୀୟ ତଥା ମୌଳିକ ଜୀବନୀ ଶକ୍ତିର ବିରୁଦ୍ଧାଚରଣ କରୁଛି– ଏହି ମହାନୁଭବତା ଏଠାରେ ସମ୍ଭବ ହୋଇପାରିଥିଲା । ବେଦାନ୍ତର ସର୍ବେ ଭବନ୍ତୁ ସୁଖୀନଃ ପରି ସନାତନ ଆଭିମୁଖ୍ୟ ମୋ ପରି ନାସ୍ତିକର ମନରେ ଗଭୀର ଆସ୍ଥା ପ୍ରତିଷ୍ଠା କରିପାରିଥିଲା ଏହି ପରିବେଶ ଭିତରେ । ମୋର ନାସ୍ତିକ ଭାଷାରେ ଏହା କୁହାଯାଇପାରେ ଯେ ଯଦି ଭଗବାନ ଥାଆନ୍ତି ତେବେ ମୁଁ ଭଗବାନ, ମନୁଷ୍ୟ ଭଗବାନ– ଯାବତୀୟ ଜୀବଜଗତ ମଧ୍ୟ ଭଗବତ ଶକ୍ତିର ବଳିଷ୍ଠ ପ୍ରତୀକ । ଏମାନଙ୍କୁ ଛାଡ଼ି ନିବୁଜ ଦେଉଳରେ ଭଗବାନଙ୍କୁ ଖୋଜିବା ମୂର୍ଖତା । ଯୁଗ ଯୁଗ ଧରି ବିରାଟ ଶୋଭାଯାତ୍ରାରେ ଚାଲିଥିବା ଜନତା ହେଉଛି ଏହି ବିରାଟ ଭଗବତ୍ ଶକ୍ତିର ସ୍ରୋତ । ଅସୀମ ସମୁଦ୍ରର ଅମାପ ଜଳରାଶିର ଅକଳନ ବୁଦ୍‌ବୁଦ୍ ପରି ଏହି ଜନସ୍ରୋତର ଲୟ ବିଲୟ କୋଟି କୋଟି ଯୁଗ ଧରି ଚାଲିଆସିଛି । ଧର୍ମଗତ ଓ ଅନ୍ୟାନ୍ୟ ପାର୍ଥକ୍ୟ ଏହି ସ୍ରୋତ ଉପରେ ସାମାନ୍ୟ ମଇଳା ପାଣିର ଛିଟା ପରି ଦେଖାଦେଇଛି । ପୂତିମୟ ନର୍ଦ୍ଦମାର କୀଟ ପରି କେତେକ ଲୋକ ଜୀବନ ସ୍ରୋତର ପାର୍ଶ୍ୱଦେଶରେ ଛୋଟ ଛୋଟ ଆବିଳ ଚକ୍ର ଭିତରେ ଧର୍ମ ଓ ଦେଶ ନାମ ଧରି ବୃଥା ଆସ୍ଫାଳନ କରି ଚାଲିଛନ୍ତି - ଅନ୍ଧାରୁଆ କ୍ଷୁଦ୍ର କୂଅ ଭିତରେ ବେଙ୍ଗ ନିଜ ଆତ୍ମ ପ୍ରସାରଣରେ ଫୁଲି ଉଠିଲା ପରି । ଏହିପରି ନାନା ଧରଣର ଭେକଧରି ଆସ୍ଫାଳନ କରୁଥିବା ଲୋକଙ୍କୁ ଦେଖିଲେ ମୋର ଦୟା ହୁଏ । ସେମାନଙ୍କର କଥା ମୋତେ ଆଦୌ ସ୍ପର୍ଶ କରିପାରେ ନାହିଁ ।

ଇଂଲଣ୍ଡରେ ଅଢ଼େଇ ବର୍ଷର ରହଣି ଭିତରେ ମୋର ଡକ୍ଟରେଟ୍ ଉପାଧି ପ୍ରାପ୍ତିଠାରୁ ଏହି ଦାର୍ଶନିକ ଦିଗ୍‌ଦର୍ଶନର ମୂଲ୍ୟ ମୋ ଜୀବନରେ ଅନେକ ବେଶୀ । ତେଣୁ ଇଂଲଣ୍ଡ ମୋତେ ବହୁତ ଭଲ ଲାଗେ । ମୋର ପଢ଼ା ସରିବା ପରଠାରୁ ଆଜି ପର୍ଯ୍ୟନ୍ତ ମୁଁ ଇଂଲଣ୍ଡକୁ ବାରଥର ଯାଇଛି । ମୁଁ ଯେତେବେଳେ ଆମେରିକା, କାନାଡ଼ା ପ୍ରଭୃତି ଦେଶକୁ ଯାଏ, ଇଂଲଣ୍ଡରେ କିଛିଦିନ କଟାଇବାର ଲୋଭ ସମ୍ବରଣ କରିପାରେ ନାହିଁ । ଅନ୍ୟାନ୍ୟ ଦେଶରୁ ଫେରିଆସି ଲଣ୍ଡନରେ ପହଞ୍ଚିଗଲେ ମୋ ନିଜ ସ୍ଥାନକୁ ଫେରିଆସିଲା ପରି ମନେହୁଏ ।

ଲଣ୍ଡନରେ ଥିବା ସମୟରେ ମୋର ଜଣାଶୁଣା ରାସ୍ତାରେ ମୁଁ ବୁଲେ, ସିନେମା, ଥିଏଟର ଦେଖେ । ଇଂରେଜି ଥିଏଟର ମୋତେ ବହୁତ ଭଲ ଲାଗେ, ପିକାଡିଲି ସର୍କସର ଫୁଆରା ପାଖରେ ଘଣ୍ଟା ଘଣ୍ଟା ବସି ମୁଁ ନାନା ପ୍ରକାରର ଜନସ୍ରୋତକୁ ଚାହିଁ ରହିବାରେ

ମୋତେ ବହୁତ ଭଲ ଲାଗେ । ପୃଥିବୀର ସବୁ ପ୍ରକାରର ଫୁଲକୁ ଏକାଠି ମିଶ୍ରଣ କରି ସେଥି ଭିତରୁ ଆଞ୍ଜୁଳାଏ ଫୁଲ ଉଠାଇ ଆଣିଲେ ଯେପରି ନାନା ରଙ୍ଗ ଓ ନାନା ମହକ ଥିବା ମେଞ୍ଚାଏ ଫୁଲ ମିଳିବ ସେହିପରି ସବୁ ଦେଶ, ସବୁ ଧର୍ମ ଓ ସଂସ୍କୃତି ସଂପନ୍ନ ଲୋକଙ୍କର ସମିଶ୍ରିତ ଜନରାଶି ଭିତରୁ ନାନା ଭାବରେ ପୋଷାକ ପରିହତ ଦଳେ ଲୋକକୁ ଯେ କୌଣସି ସମୟରେ ଏଠାରେ ଦେଖିବାକୁ ମିଳିବ । ପୁଣି କିଛି ସମୟ ପରେ ଏହିପରି ଆଉ ଗୋଟିଏ ସମ୍ମିଶ୍ରିତ ଜନସମାଗମ । ଏ ପ୍ରକାର ବିଶ୍ୱଜନତାର ଶୋଭାଯାତ୍ରା ଭିତରେ ନିଜକୁ ହଜାଇ ଦେବାରେ ଗଭୀର ଆତ୍ମତୃପ୍ତି ତଥା ଆତ୍ମୋପଲବ୍ଧି ଅନୁଭବ କରିହୁଏ ।

ଟ୍ରଫଲଗର ବିରାଟ ଛକରେ ବସି ବସି ଆଇସକ୍ରିମ୍ ଖାଏ । ଅନ୍ୟାନ୍ୟ ପ୍ରବାସୀ ଲୋକଙ୍କ ସହିତ କଥାବାର୍ତ୍ତା କରେ । କେଉଁ ଅଜଣା ପରଦେଶୀ ସହିତ କଫି ଖାଏ । କାହା ସହିତ ସିନେମା ଦେଖେ ତ ଆଉ କାହା ସହିତ ଲଣ୍ଡନ ବୁଲିଯାଏ । କିଛି କିଣିବାର ଆବଶ୍ୟକତା ନ ଥାଇ ମଧ୍ୟ ବଡ଼ ବଡ଼ ଡିପାର୍ଟମେଣ୍ଟାଲ ଷ୍ଟୋର ଭିତରେ ଘଣ୍ଟା ଘଣ୍ଟା ବୁଲେ । ଲଣ୍ଡନ ବିଶ୍ୱବିଦ୍ୟାଳୟ ବାରଣ୍ଡା ର ପର୍ଯ୍ୟଟକ ପରି ଘୂରି ବୁଲେ । ମୁଁ ଛାତ୍ର ଥିଲାବେଳେ ଯେଉଁମାନେ ଛାତ୍ରଛାତ୍ରୀ ଥିଲେ, ସେମାନଙ୍କର ବର୍ତ୍ତମାନର ବଂଶଧରଙ୍କୁ ସେଠାରେ ଦେଖିବାରେ ଆନନ୍ଦ ମିଳେ । ସେମାନଙ୍କର ଅବିଶ୍ରାନ୍ତ ଚଳବିଚଳ ଦେଖିବାକୁ ଭଲ ଲାଗେ । କୌଣସି ମନ୍ଦିର, ମସ୍‌ଜିଦ୍ ବା ଗୀର୍ଜା ଭିତରେ ବସି ପ୍ରାର୍ଥନା କରିବା ଅପେକ୍ଷା ଏହା ଯେ କେତେବେଶି ଆନନ୍ଦଦାୟକ, ତାହା ମୁଁ ଏଠାରେ ବସି ବସି ଅନୁଭବ କରେ । ପ୍ରାର୍ଥନା କକ୍ଷ ଭିତରେ ଗୋଟିଏ ମୂର୍ତ୍ତି ବା ତଥାକଥିତ ଭଗବଦ୍ ଦୂତମାନଙ୍କର ବୃଥା ଆସ୍ଫାଳନ ଅପେକ୍ଷା ସୁଖଦୁଃଖ ଅନୁଭୂତିପୂର୍ଣ୍ଣ ଜୀବନ୍ତ ମନୁଷ୍ୟର ଶୋଭାଯାତ୍ରାର ମୂଲ୍ୟ ତଥା ସୌନ୍ଦର୍ଯ୍ୟ ମୋତେ ବହୁତ ବେଶି ଆମୋଦିତ କରେ ।

ମୋଟାମୋଟି କହିବାକୁ ଗଲେ ଏହି ମାନବୀୟ ଦୃଷ୍ଟିକୋଣ ଏପରି କେତୋଟି ମନୋବୃତ୍ତିର ଦୃଢ଼ ସଂଗତି ସୃଷ୍ଟି କରେ ଯେ ସମାଜବାଦ, ଗଣତନ୍ତ୍ର, ଆନ୍ତର୍ଜାତିକତା, ବିଶ୍ୱଶାନ୍ତି, ଜାତି-ବର୍ଣ୍ଣ-ଧର୍ମନିରପେକ୍ଷ ସହୃଦୟତା ଏବଂ ବିଶ୍ୱଜନତା ପ୍ରତି ଗଭୀର କରୁଣାୟିତ ମନୋଭାବ ଛାଏଁ ଛାଏଁ ଉଦ୍‌ଭୂତ ହୋଇଥାଏ । ଜଣେ ଗଣତାନ୍ତ୍ରିକ ସମାଜବାଦୀ ଦର୍ଶନ କିମ୍ବା ଆନ୍ତର୍ଜାତିକ ରାଜନୀତି ବା ବିଶ୍ୱଶାନ୍ତି ଆନ୍ଦୋଳନର ନେତା ହୋଇପାରେ, ତଥାପି ସେ ଏ ବିରାଟ ଦର୍ଶନରେ ଆନ୍ତରିକ ଭାବରେ ଉଦ୍‌ବୋଧିତ ନ ହୋଇପାରେ । କିନ୍ତୁ ଜଣେ ମୌଳିକ ମହାମାନବୀୟତାରେ ବିଶ୍ୱାସ କଲେ ଏହାର ଅଂଶବିଶେଷ ରୂପେ ସମାଜବାଦ, ବିଶ୍ୱଶାନ୍ତି ପ୍ରଭୃତିରେ ଉଦ୍‌ବେଳିତ ହେବା ସ୍ୱାଭାବିକ ହୋଇପଡ଼େ । ଏ ପ୍ରକାର ଗଭୀର ଉପଲବ୍ଧି ମୋର ଏଠାରେ ସମ୍ଭବ ହୋଇଥିଲା ଏବଂ ଆଜି ପର୍ଯ୍ୟନ୍ତ ଏହି ମୂଳ ଦର୍ଶନରେ ସାମାନ୍ୟତମ ପରିବର୍ତ୍ତନ ହୋଇନାହିଁ । ବରଂ ଗତ ପଚାଶ ବର୍ଷ ଧରି ଆସନ, ପ୍ରାଣାୟାମ ଓ ଯୋଗାଭ୍ୟାସ ଏହି ଆନନ୍ଦମୟ ଓ ଆତ୍ମତୃପ୍ତିକର ଦିଗ୍‌ଦର୍ଶନକୁ ମୋଠାରେ ଆହୁରି ବେଶି ଚେତନଶୀଳ ଓ ଶକ୍ତିଶାଳୀ କରିପାରିଛି ।

## (ଘ) ମାନବୀୟ ଆକର୍ଷଣର ଅଭିନବ ଅନୁଭୂତି

ଲଣ୍ଡନରେ ପହଞ୍ଚି ପ୍ରଥମେ ଭାରତୀୟ ଛାତ୍ରମାନଙ୍କର ରହିବା ପାଇଁ ନିର୍ଦ୍ଦିଷ୍ଟ ଗୋଟିଏ ହଷ୍ଟେଲରେ ଯାଇ ରହିଲି । ଭାରତୀୟ ଛାତ୍ର ସଂଗଠନ ନାମରେ ଏହା Y.M.C.A.ର ଗୋଟିଏ ଅଂଶବିଶେଷ । ଆମେମାନେ ଲଣ୍ଡନରେ ପ୍ରଥମ କରି ଗୋଟିଏ ନୂତନ ଭଡ଼ାଘରେ ଏହି

ଅନୁଷ୍ଠାନର ଶୁଭାରମ୍ଭ କଲୁ । ଯୁଦ୍ଧ ସମୟ ' ପୁରୁଣା ହଷ୍ଟେଲଟି ଭାଙ୍ଗିଯାଇଥାଏ । ତେଣୁ ଏହି ଅନୁଷ୍ଠାନଟିକୁ ନୂତନ ଭାବରେ ଗଢ଼ିବ ଦାୟିତ୍ୱ ଆମ ଉପରେ ପଡ଼ିଲା । ମୁଁ ଏହାର ଭାଇସ୍ ପ୍ରେସିଡେଣ୍ଟ ହେଲି । ପରେ ଯେଉଁ ବିରାଟ ନୂଆ ହଷ୍ଟେଲ ତିଆରି ହେଲା, ତାର ସମସ୍ତ ଯୋଜନାରେ ମୁଁ ଅଂଶୀଦାର ହୋଇଥିଲି । ଏହି ହଷ୍ଟେଲରେ ମୁଁ ପ୍ରଥମେ ମାସେଯାଏ ଥିଲି । ଇଂଲଣ୍ଡକୁ ଯାଇ ପୁଣି ଭାରତୀୟମାନଙ୍କ ସହିତ ରହିଲେ ଇଂରେଜୀ ଲୋକଙ୍କର ଚାଲିଚଳନ, ସାମାଜିକ ଓ ସାଂସ୍କୃତିକ ଜୀବନରେ ଘନିଷ୍ଠ ଭାବରେ ଭାଗ ନେବା ସମ୍ଭବ ନୁହେଁ ବୋଲି ମୋର ଧାରଣା । ତାଛଡ଼ା ଇଂଲଣ୍ଡର ଲେଣ୍ଡଲେଡ଼ି ପ୍ରଥାର ପ୍ରଶଂସା ବହୁତ ଶୁଣିଥିଲି । ତେଣୁ ଲଣ୍ଡନର ଗୋଟିଏ ସୁରମ୍ୟ ଅଞ୍ଚଳରେ କୌଣସି ଗୋଟିଏ ଇଂରେଜୀ ପରିବାର ସହିତ ରହିବାକୁ ସ୍ଥିର କଲି । ଇଂରେଜୀ ଉପନ୍ୟାସମାନଙ୍କରେ ହ୍ୟାମ୍ପଷ୍ଟେଡ୍ ହୀଥ ଏବଂ ଗୋଲ୍ଡରସ୍ ଗ୍ରୀନ୍ ଅଞ୍ଚଳର ଚିତ୍ତାକର୍ଷକ ଦୃଶ୍ୟାବଳୀ ବିଷୟରେ ମୁଁ ଆଗରୁ ବହୁତ ପଢ଼ିଥିଲି । ଏଣୁ ଏହି ଅଞ୍ଚଳରେ ରହିବା ପାଇଁ ମୋର ବହୁତ ଆଗ୍ରହ ଥିଲା ।

ଆମ ହଷ୍ଟେଲ ଲଣ୍ଡନ ବିଶ୍ୱବିଦ୍ୟାଳୟଠାରୁ ମାତ୍ର ପାଞ୍ଚମିନିଟ୍ ରାସ୍ତା । କିନ୍ତୁ ଗୋଲଡରସ୍ ଗ୍ରୀନ୍ ଏଠାରୁ ପ୍ରାୟ ଦଶ-ପନ୍ଦର କିଲୋମିଟର । ତଥାପି ସେ ଅଞ୍ଚଳରେ ରହିବାକୁ ମୁଁ ପସନ୍ଦ କଲି । କାରଣ ଘରୁ ବିଶ୍ୱବିଦ୍ୟାଳୟକୁ ଆସିବା ପାଇଁ ମାଟିତଳ ରେଳଗାଡ଼ି ସାହାଯ୍ୟରେ ସର୍ବମୋଟ୍ ୨୦ରୁ ୨୫ ମିନିଟ୍ ସମୟ ଲାଗୁଥିଲା । ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଏଠାରେ ରହିବା ଖର୍ଚ୍ଚ ଟିକିଏ ବେଶି ହେଲେ ମଧ୍ୟ ସୁନ୍ଦର ପରିବେଶ ଯୋଗୁଁ ମୁଁ ଗୋଲଡ଼ରସ୍ ଗ୍ରୀନ୍‌ର ବାସିନ୍ଦା ଗୋଟିଏ ପରିବାର ସହିତ ରହିବାକୁ ସିଦ୍ଧାନ୍ତ ନେଲି ।

ମୁଁ ଯେତେବେଳେ ଘର ଦେଖିବାକୁ ଗଲି ଗୃହକର୍ତ୍ତ୍ରୀ ଶ୍ରୀମତୀ ହାର୍ଭେ ମୋତେ ଘର ବୁଲାଇ ଦେଖାଇଲେ ଏବଂ ଅନ୍ୟାନ୍ୟ ସୁବିଧା କଥା ବୁଝାଇ ଦେଲେ । ହପ୍ତାକୁ ସାଢ଼େ ତିନି ପାଉଣ୍ଡ (ଏକ ପାଉଣ୍ଡ ସେତେବେଳେ ପ୍ରାୟ ଏକୋଇଶି ଟଙ୍କା) ଦେଲେ ସକାଳ ଓ ରାତ୍ରି ଭୋଜନ ସବୁଦିନେ ମିଳିବ ଏବଂ ରବିବାର ଦିନ ମଧ୍ୟାହ୍ନ ଭୋଜନ ମଧ୍ୟ ମିଳିବ । ଆଉ ଗୋଟିଏ ହପ୍ତା ପରେ ଘରକୁ ସଫା କରି ମୋତେ ଦେବେ ବୋଲି ସେ କହିଲେ । ଶ୍ରୀମତୀ ହାର୍ଭେଙ୍କର କଥାବାର୍ତ୍ତା, ସରଳ ହାବଭାବ ଓ ଅମାୟିକ ବ୍ୟବହାର ଦେଖି ମୁଁ ଏତେ ମୁଗ୍ଧ ହୋଇଗଲି ଯେ, ଆଉ ହପ୍ତାଏ ଅପେକ୍ଷା କରିବାକୁ ଇଚ୍ଛା ହେଲାନାହିଁ । ମୁଁ କହିଲି ଯେ ଘର ମୋର ପସନ୍ଦ ଏବଂ ଦିନେ ଦୁଇଦିନ ଭିତରେ ମୁଁ ଆସିବି । ଘର ପରିଷ୍କାର କରିବାରେ ମୁଁ ତାଙ୍କୁ ସାହାଯ୍ୟ କରିବି । ମୋର ଏ ପ୍ରକାର ଆତ୍ମୀୟତାବୋଧ କଥାବାର୍ତ୍ତାରେ ସେ ମଧ୍ୟ ଖୁସି ହେଲେ । ମୁଁ ତା' ଆରଦିନ ଜିନିଷପତ୍ର ନେଇ ସେଠାରେ ପହଞ୍ଚିଲି । ମୋର ଏପରି ପହଞ୍ଚିବା ଭିତରେ ଯେଉଁ ଆନ୍ତରିକତା ଥିଲା, ତାହା ତାଙ୍କୁ ସ୍ପର୍ଶ କରିଥିଲା ବୋଲି ସେ ମୋତେ ପରେ କହିଥିଲେ । ମୋଟାମୋଟି ଭାବରେ ପ୍ରଥମ ଦେଖାରେ ମୋତେ ତାଙ୍କୁ ବହୁତ ଭଲ ଲାଗିଥିଲା । ସେ ଭାରତୀୟ ମାଆମାନଙ୍କ ପରି ମୋତେ ଜଣାଗଲେ ।

ଘରେ ରହିଲା ପରେ ଦେଖିଲି ଯେ ସେ ଏକା ନୁହନ୍ତି । ତାଙ୍କ ସାଥିରେ ତାଙ୍କ ଝିଅ ମଧ୍ୟ ରହୁଥିଲେ । ଗୃହକର୍ତ୍ତ୍ରୀଙ୍କର ବୟସ ୬୦ ଯାଏ ହେବ ଏବଂ ତାଙ୍କ ଝିଅଙ୍କର ବୟସ ୩୦ । କେବଳ ଏହି ଦୁଇଜଣ ଘରେ ରହୁଥିଲେ । ଝିଅଟି ଦେଖିବାକୁ ଖୁବ୍ ସୁନ୍ଦରୀ, କିନ୍ତୁ

ଏପରି ମିଜାଜୀ ଏବଂ ତା ମୁହଁରେ ଏପରି କଠୋରତା ଥାଏ ଯେ ତା ସହିତ ପ୍ରଥମେ କଥା କହିବାକୁ ସଙ୍କୋଚ ଆସେ । ସେ ଉପରଶ୍ରେଣୀ ଇଂରେଜ ପରିବାରର ଲୋକଙ୍କ ପରି ବହୁତ ଆଦବକାଇଦା ପ୍ରିୟ । ସେ ମଧ୍ୟ ନିଜକୁ ଉପର ଶ୍ରେଣୀ ପରିବାରର ଲୋକ ବୋଲି ଭାବେ ଏବଂ ପ୍ରତ୍ୟେକ କଥାବାର୍ତ୍ତା ହାବଭାବରେ ଏ ପ୍ରକାର ଶ୍ରେଣୀଗତ ଗର୍ବ ଓ ଔଦ୍ଧତ୍ୟ ପ୍ରକାଶ କରିବାକୁ ପଶ୍ଚାତପଦ ହୁଏନାହିଁ । ତା ସାଙ୍ଗକୁ ସେ ବ୍ରିଟିଶ୍ ରକ୍ଷଣଶୀଳ ସମ୍ପ୍ରଦାୟଭୁକ୍ତ ବୋଲି ଘୋଷଣା ମଧ୍ୟ କରେ । ପ୍ରଥମେ ପ୍ରଥମେ ତା ସହିତ ରାତ୍ରି ଭୋଜନ ବେଳେ ଘଣ୍ଟାଏ ଦେଖାହୁଏ । ଅନ୍ୟ ସମୟରେ ସେ ଦୂରେଇ ରହେ । ମା' କିନ୍ତୁ ଠିକ୍ ବିପରୀତ । ସେ ବଡ଼ ସରଳ, ସ୍ନେହୀ, ମୋର ସୁବିଧା ଅସୁବିଧା ପ୍ରତି ସବୁବେଳେ ସଚେତନ, ମୋତେ ଖୁସି କରିବା ପାଇଁ ସର୍ବଦା ଆଗ୍ରହୀ, କଥାବାର୍ତ୍ତାରେ ଅତ୍ୟନ୍ତ ଭଦ୍ର, ଭାରତୀୟ ମାଆମାନଙ୍କ ପରି କୋମଳ ଓ ସ୍ନେହମୟୀ । ତେଣୁ ମୋର ପ୍ରଥମରୁ ତାଙ୍କ ପ୍ରତି ଗଭୀର ଆନ୍ତରିକତା ଦେଖା ଦେଇଥିଲା । ଝିଅ ମୋତେ ଯେପରି ଦୂରରେ ରଖୁଥିଲା, ମୁଁ ବି ତାଠାରୁ ଦୂରରେ ରହୁଥିଲି ।

ଅଳ୍ପ କିଛିଦିନ ପରେ ଶ୍ରୀମତୀ ହାର୍ଡେଙ୍କ ପ୍ରତି ମୋର ଶ୍ରଦ୍ଧା ଏପରି ବଢ଼ିଗଲା ଯେ ତାଙ୍କୁ ସବୁବେଳେ ଶ୍ରୀମତୀ ହାର୍ଡେ ବୋଲି ଡାକିବାରେ ମୋର ସଙ୍କୋଚ ଆସିଲା । ତେଣୁ ଦିନେ ସକାଳେ ଭୋଜନ ସମୟରେ ଯେତେବେଳେ ଝିଅ ପାଖରେ ନଥିଲା ମୁଁ ତାଙ୍କୁ କହିଲି ଯେ-

''ଶ୍ରୀମତୀ ହାର୍ଡେ, ଆପଣଙ୍କର ସ୍ନେହଶୀଳ ବ୍ୟବହାର ମୋତେ ଏପରି ସ୍ପର୍ଶ କରିଛି ଯେ ମୁଁ ଆପଣଙ୍କୁ ଆଜିଠାରୁ ଶ୍ରୀମତୀ ହାର୍ଡେ ବୋଲି ନ ଡାକି ମାମୀ ବୋଲି ଡାକିପାରିବି କି ? ମୋର ମାଆ ନାହାନ୍ତି, ଆପଣଙ୍କର ପୁଅ ନାହିଁ । ମୁଁ ଆପଣଙ୍କୁ ମାମୀ ବୋଲି ଡାକିଲେ କ୍ଷତି କ'ଣ ?''

ଭଦ୍ରମହିଳା ତାଙ୍କର ଇଂରେଜୀ ସମାଜରେ ଜୀବନରେ ବୋଧହୁଏ ପ୍ରଥମଥର ପାଇଁ ଏପ୍ରକାର ଅଭିନବ ଅନୁରୋଧର ସମ୍ମୁଖୀନ ହୋଇଥିଲେ । ତାଙ୍କ ମୁହଁ ସ୍ନେହ ଓ ଲାଜରେ ନରମ ହୋଇଉଠିଥିଲା । ସେ ଆନନ୍ଦରେ ଅଭିଭୂତ ହୋଇ କହିଥିଲେ—

''ତୁମେ ଜଣେ ଅତ୍ୟନ୍ତ ଦୟାଳୁ ଯୁବକ । ଏ ପ୍ରକାର ସମ୍ପର୍କଠୁ ବଳି ଆଉ ଅଧିକ ମାନବିକ ସମ୍ପର୍କ କଣ ହୋଇପାରେ ?''

ତା'ପରେ ସେ ମୋତେ ବହୁତ ଧନ୍ୟବାଦ୍ ଦେଇଥିଲେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ମନୁଷ୍ୟର ମନୁଷ୍ୟ ସହିତ ମାନବୀୟ ସମ୍ପର୍କରେ ସନାତନ ଐକ୍ୟ ବିଷୟରେ ଏହା ମୋର ସର୍ବପ୍ରଥମ ସଂପରୀକ୍ଷଣ ।

ତାପରେ ଦିନେ ମୁଁ ତାଙ୍କୁ ମୋର ଗୋଟିଏ ବ୍ୟାଙ୍କ ଚେକ୍ ଦସ୍ତଖତ କରି ତାଙ୍କ ହାତରେ ଦେଇଥିଲି ଏବଂ କହିଥିଲି—

''ମାମୀ, ଆପଣଙ୍କର ତ ମଝିରେ ମଝିରେ ଟଙ୍କାର ଅଭାବ ହୁଏ, ଯେତେବେଳେ ଟଙ୍କା ଦରକାର ଏହି ଚେକ୍‌ଟିରେ ଟଙ୍କାର ପରିମାଣ ଲେଖି ଭଙ୍ଗାଇ ନେବେ ଏବଂ ସୁବିଧା ଅନୁସାରେ ମୋର ଦେୟ ସହିତ ଠିକ୍ କରି ନେବେ । ମୋ ପାଖରେ ତିନି ମାସର ବୃତ୍ତି ଟଙ୍କା ବ୍ୟାଙ୍କ୍‌ରେ ଥାଏ ।''

ମୋର ଏ ପ୍ରକାର ଅଯାଚିତ ଓ ତାଙ୍କ ଉପରେ ଅଗାଧ ବିଶ୍ୱାସଜନକ ବ୍ୟବହାରରେ ସେ ଏତେ ବେଶି ଅଭିଭୂତ ହୋଇଯାଇଥିଲେ ଯେ ଖାଲି କହିଥିଲେ...

''ନା...ନା, ଏପରି କରିବା ଠିକ୍ ନୁହେଁ । ମୋର ଦରକାର ହେଲେ ମୁଁ ମାଗିବି । ଏପ୍ରକାର ଚେକ୍ ରଖିବା ଆଦୌ ଠିକ୍ ନୁହେଁ ।''

ମୁଁ କିନ୍ତୁ ଜବରଦସ୍ତ ସେହି ଚେକ୍‌ଟି ତାଙ୍କ ହାତରେ ଦେଇ ବାହାରକୁ ଚାଲିଗଲି । ମୁଁ ସେଠାରେ ଅଢ଼େଇବର୍ଷ ରହି ଫେରିବାର ମାସକ ପୂର୍ବରୁ ସେ ମୋତେ ସେହି ଅଭଙ୍ଗା ଚେକ୍‌ଟିକୁ ଫେରାଇ ଦେଇଥିଲେ !

ଶ୍ରୀମତୀ ହାର୍ଭେଙ୍କ ସହିତ ମୋର ଏ ପ୍ରକାର ଘନିଷ୍ଠତା ତାଙ୍କର କଡ଼ା ମିଜାଜୀ ଝିଅ ନିଟାର କିନ୍ତୁ ଆଦୌ ପସନ୍ଦ ହୋଇନଥିଲା । ସେ ମାଆଙ୍କୁ ଏପରି ନିଜ ଭିତରେ ଜାବୁଡ଼ି ଧରି ରଖିଥିଲା ଯେ ତା ମାଆ ପ୍ରତି ଆଉ କାହାର ସ୍ନେହ ବା ମନସ୍ତାତ୍ତ୍ୱିକ ସାନିଧ ସେ ବରଦାସ୍ତ କରିପାରୁ ନଥିଲା । ତଥାପି କ୍ରମେ ଶ୍ରୀମତୀ ହାର୍ଭେ ପ୍ରକୃତରେ ମୋତେ ପୁଅ ପରି ଗ୍ରହଣ କରିନେଲେ । ତାଙ୍କ ଝିଅ ଘରେ ନଥିଲା ବେଳେ ଝିଅ ବିରୁଦ୍ଧରେ ଏବଂ ନିଜର ଦୁଃଖ ସୁଖ ଜୀବନ ବିଷୟରେ ସବୁ କଥା ମୋତେ କହିବାକୁ ଲାଗିଲେ । କଥା କହିଲାବେଳେ ତାଙ୍କ ଆଖିରେ ଲୁହ ଆସିଯାଏ । ତାଙ୍କ ସ୍ୱାମୀ ଅନ୍ୟ ଗୋଟିଏ ସ୍ତ୍ରୀ ସାଙ୍ଗରେ ସେହି ଲଣ୍ଡନରେ ଥାଆନ୍ତି । ଶ୍ରୀମତୀ ହାର୍ଭେ ଏଥିପାଇଁ ଅତ୍ୟନ୍ତ ମର୍ମାହତ ହୋଇପଡ଼ିଥିଲେ । ତାଙ୍କ ଜୀବନର କାହାଣୀଟି ବଡ଼ କରୁଣ ।

କିଛିବର୍ଷ ତଳେ କେହିଜଣେ ତାଙ୍କୁ ଚିଠିରେ ଜଣାଇଲା ଯେ ତାଙ୍କ ସ୍ୱାମୀ ବେଳେ ବେଳେ ଆଉ ଜଣେ ସ୍ତ୍ରୀ ଲୋକ ସହିତ ବୁଲୁଛନ୍ତି । ଏହି ଚିଠିଟି ତାଙ୍କ ଝିଅ ନିଟା ପ୍ରଥମେ ପଢ଼ିଲା । ନିଟା ଯେପରି ସୁନ୍ଦରୀ, ସେହିପରି ଗୁଣର ଥିଲା । ସେ ବହୁତ ସୁନ୍ଦର ଗୀତ ଗାଏ । ଲଣ୍ଡନର ପ୍ରସିଦ୍ଧ ଗୀତିନାଟ୍ୟ ମଞ୍ଚରେ ସେ ଅଭିନୟ କରେ । ନିଟାର ବାପା ମଧ୍ୟ ବହୁତ ସୁନ୍ଦର ଏବଂ ନିଟା ବାପାଙ୍କ ପାଖରୁ ଗୀତ ଶିଖିଥିଲା । ତାର ଗୀତ ଓ ଅଭିନୟ ପାଇଁ ବାପା ବହୁତ ପରିଶ୍ରମ କରିଛନ୍ତି । ବାପା ଥିଲେ ତାର ଆଦର୍ଶ ଏବଂ ସମସ୍ତ ପ୍ରେରଣାର ଉତ୍ସ । ତେଣୁ ଚିଠିଟି ପଢ଼ି ସେ ଏପରି ମର୍ମାହତ ଓ ଅପମାନିତ ହୋଇପଡ଼ିଥିଲା ଯେ ସେ ଜୀବନରେ ବାପାଙ୍କୁ କ୍ଷମା କରିପାରି ନଥିଲା । ତା ପରଠାରୁ ବାପାଙ୍କ ସହିତ ତାର କଥାବାର୍ତ୍ତା ବନ୍ଦ ହୋଇଗଲା । ଏବଂ କ୍ରମେ ବାପ ସହିତ ସେ ବହୁତ ଖରାପ ବ୍ୟବହାର ମଧ୍ୟ କଲା । ମା' ବିଚାରୀ ସ୍ୱାମୀଙ୍କ ସହିତ ଆପୋଷ ମିଳାମିଶା କରି ତାଙ୍କ ସହିତ ରହିବାକୁ ଆଗ୍ରହୀ ଥିଲେ, କିନ୍ତୁ ତାଙ୍କ ମତରେ କେବଳ ନିଟାର ଦୁର୍ବ୍ୟବହାର ଯୋଗୁ ତାଙ୍କ ସ୍ୱାମୀ ଘର ଛାଡ଼ି ଚାଲିଗଲେ । ଝିଅ ଘରେ ଥିଲେ ବାପ ଘରକୁ ଆସୁ ନଥିଲେ । କ୍ରମେ ତାଙ୍କର ଘରକୁ ଆସିବା ସଂପୂର୍ଣ୍ଣ ବନ୍ଦ ହୋଇଗଲା । ଶ୍ରୀମତୀ ହାର୍ଭେ ଏଥିରେ ଭାଙ୍ଗି ପଡ଼ିଥିଲେ ସତ କିନ୍ତୁ ଝିଅକୁ ଛାଡ଼ିବେ କୁଆଡ଼େ ? ଝିଅ ତ ମାଆକୁ ସଂପୂର୍ଣ୍ଣ ରୂପେ ଜାବୁଡ଼ି ଧରିଥାଏ । ତେଣୁ ଝିଅ ଯୋଗୁ ନିଜର ଅନିଚ୍ଛା ସତ୍ତ୍ୱେ ସ୍ୱାମୀଙ୍କୁ ଚିରଦିନ ପାଇଁ ଛାଡ଼ିବାକୁ ପଡ଼ିଥିଲା । ଶ୍ରୀମତୀ ହାର୍ଭେ ପ୍ରକୃତରେ ବଡ଼ ନିରୀହା ଏବଂ ସରଳା । ସେ ଝିଅ ପାଇଁ ଜୀବନଯାକ ଏପରି ଭୋଗିଲେ । ଏସବୁ କଥା ସେ ମୋତେ ବିଶଦ ଭାବରେ ଘଣ୍ଟା ଘଣ୍ଟା ଧରି କହନ୍ତି ଏବଂ କାନ୍ଦନ୍ତି । ସେମାନଙ୍କ ସମାଜରେ କାହା ଆଗରେ ନିଜର ଦୁଃଖ କଥା କହିବା ସମ୍ଭବ ନୁହେଁ । କିନ୍ତୁ ମୁଁ ହୋଇଯାଇଥିଲି ତାଙ୍କର ପୁଅ ।

ଶ୍ରୀମତୀ ହାର୍ଭେ ଝିଅକୁ ଘୃଣା କରନ୍ତି ଏବଂ ଭଲ ମଧ୍ୟ ପାଆନ୍ତି । ଏପରି ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତିରେ ସେ ସମୟ କଟାଉଥାନ୍ତି । ମୁଁ ହଠାତ୍ ତାଙ୍କ ଜୀବନରେ ଗୋଟିଏ ଭାରତୀୟ ପୁଅ ହିସାବରେ ଦେଖା ଦେଇଥିଲି । ଥରେ ଥରେ ଦିନ ଦୁଇଟାରେ ସେ ମୋତେ ଫୋନ୍ କରିବେ...

"ନିଟା ଆଜି ନାହିଁ, ରାତିରେ ଫେରିବ, ତୁମର ବେଶି କାମ ନ ଥିଲେ ଘରକୁ ଆସିଲେ ଭଲ ହୁଅନ୍ତା । ତୁମ ପାଇଁ ଗୋଟିଏ ନୂଆ ରକମର କେକ୍ କରି ରଖିଥିବି । କଥାବାର୍ତ୍ତା ହେବା ।"

ମୋ ପକ୍ଷରେ ତାଙ୍କର ଏପରି ଅନୁରୋଧ ଏଡ଼ାଇବା ଅସମ୍ଭବ । ତିନିଚାରି ଘଣ୍ଟାଧରି ସେ ଗପି ଯାଆନ୍ତି । ତାଙ୍କ ଆଖି ପୋଛୁଥାଆନ୍ତି । ମୋତେ ଚା ଓ କେକ୍ ଥରକୁ ଥର ଦେଉଥାନ୍ତି । ନିଟା ଫେରିବା ପରେ ସବୁ ଚୁପ୍‌ଚାପ୍ । ତାର ଜାଣିବାର କଥା ନୁହେଁ ଯେ ମୁଁ ଆଗରୁ ଆସି ମା'ଙ୍କ ସହିତ ଏତେ ସମୟ କଥାବାର୍ତ୍ତା କରିଛି । ନିଟା ସହିତ ପ୍ରତିଦିନର ମନୋମାଳିନ୍ୟର କାହାଣୀ ମୋତେ ନ କହିଲେ ତାଙ୍କର ମନ ଶାନ୍ତ ହୁଏନାହିଁ । ସେ ଏକଥା ବି କହନ୍ତି ଯେ ତାଙ୍କ ଭଉଣୀ ଭିଣୋଇ ବା ଅନ୍ୟାନ୍ୟ ବନ୍ଧୁବାନ୍ଧବମାନଙ୍କ ସହିତ ସେ ଏ ପ୍ରକାର କଥାବାର୍ତ୍ତା ହୋଇପାରିବେ ନାହିଁ । ବଡ଼ ଅଦ୍ଭୁତ ଇଂରେଜ ଜାତି ! ଦୁଃଖ, ଅଶାନ୍ତି ଓ ବିରକ୍ତିରେ ଛାତି ଦୁହିଁ ହୋଇଯାଉଥିବ, ଅଥଚ କାହାରିକି ବ୍ୟକ୍ତିଗତ କଥା କହିବାରେ ସେମାନଙ୍କର ସଙ୍କୋଚ । ସେ ମୋ ସହିତ ପ୍ରଥମ କରି ତାଙ୍କର ଦୁଃଖସୁଖର ଜୀବନ କାହାଣୀ କହି ପାରିଥିଲେ । ଏହିପରି ଭାବରେ ଦିନ ପରେ ଦିନ ମୋର ମାମୀଙ୍କ ସହିତ ଘନିଷ୍ଠତା ବଢ଼ି ଉଠିଥିଲା ।

ନିଟା ଗୋଟିଏ ଅତି ଅଦ୍ଭୁତ ଧରଣର ସ୍ତ୍ରୀଲୋକ ଥିଲା । ସେ ଏକଦା କୌଣସି ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ ପ୍ରଥମ ହୋଇ ହଲିଉଡ୍ ଯାଇଥିଲା । ସେଠାରେ ଗୋଟିଏ ସିନେମାରେ ଅଭିନୟ କରିବାର ଚୁକ୍ତି ହୋଇଥିଲା । କିନ୍ତୁ ସେଠାରେ ଅଭିନୟ କରିବା ବେଳେ ଜଣେ ନିର୍ଦ୍ଦେଶକ ତା ସହିତ ସାମାନ୍ୟ ଅଶୋଭନୀୟ ବ୍ୟବହାର କରିବାରୁ ତାଙ୍କୁ ସାଙ୍ଗେ ସାଙ୍ଗେ ଚଟକଣି ପକାଇ ଅଭିନୟ ଛାଡ଼ିଦେଇ ଲଣ୍ଡନ ଫେରି ଆସିଲା । ଏ ପ୍ରକାର ମିଜାଜୀ ତଥା ପ୍ରତିଭାଶାଳିନୀ ଝିଅ ବାପକୁ ବହୁତ ଭଲ ପାଉଥିଲା । ବାପ ଯୋଗୁଁ ତାର ପ୍ରତିଭା ବିକଶିତ ହୋଇଥିଲା ବୋଲି ସେ ଭାବୁଥିଲା । ତେଣୁ ସେ ବାପାଙ୍କର ପାରିବାରିକ ଓ ଚରିତ୍ରଗତ ବିଚ୍ୟୁତି ପାଇଁ ଏତେ ବେଶି ବିବ୍ରତ ହୋଇପଡ଼ିଥିଲା ଯେ ଏହି ଘଟଣା ପରେ ସେ ବାପାଙ୍କୁ ଭୟଙ୍କର ଭାବରେ ଘୃଣା କରିଥିଲା ।

ଏ ପ୍ରକାର ଅନମନୀୟ କଠୋର ଚରିତ୍ରର ରମଣୀ ନିଟାର ଈର୍ଷା, ରାଗ, ତଥା ବିଦ୍ୱେଷ ମୋ ଉପରେ ଘନୀଭୂତ ହେଉଥିବା ପରି ଜଣାଯାଉଥିଲା । ମୁଁ ଯେ ପ୍ରଥମେ ଏହା ଲକ୍ଷ୍ୟ କରି ପାରିଥିଲି ତା ନୁହେଁ, କେବଳ ଏତିକି ଜାଣିଥିଲି ଯେ ନିଟା ସହିତ ସାମାନ୍ୟ ବନ୍ଧୁତା ଓ ସଦ୍‌ଭାବ ରଖିବା ମଧ୍ୟ କଷ୍ଟକର । ସେ ତାର ମାଆଙ୍କଠାରୁ ସଂପୂର୍ଣ୍ଣ ବିପରୀତ । କେବଳ ଆଦବ କାଇଦାପୂର୍ଣ୍ଣ ଶୁଭରାତ୍ରି, ଧନ୍ୟବାଦ, ଖାଦ୍ୟ ଅତ୍ୟନ୍ତ ରୁଚିକର ଇତ୍ୟାଦି ଶୁଷ୍କ କଥାବାର୍ତ୍ତା । ମୋପ୍ରତି ତାର ବିରକ୍ତିର ଅନ୍ୟ ଏକ କାରଣ ହେଲା ଯେ ସେ ଥିଲା ଭୟଙ୍କର ରକ୍ଷଣଶୀଳ ଓ ସାମ୍ରାଜ୍ୟବାଦୀ ମନୋଭାବାପନ୍ନ । ସବୁ ବ୍ରିଟିଶ୍ ଜିନିଷ ପୃଥିବୀରେ

ଶ୍ରେଷ୍ଠ, ଏପରିକି ଇଂଲିଶ୍ କୁକୁଡ଼ା ଅଣ୍ଡା ମଧ୍ୟ । ସେଠାକାର ବିଲାତି ବାଇଗଣ, କୋବି, ଅଙ୍ଗୁର ଓ ଅନ୍ୟାନ୍ୟ ଫଳସବୁ କୁଆଡ଼େ ପୃଥିବୀ ବିଖ୍ୟାତ ଏବଂ ଶ୍ରେଷ୍ଠ ।' ଏହି କଥା ମୁଁ ଖାଲି ଶୁଣିଯାଏ । ମତାମତ ପ୍ରକାଶ କରିବାର ଦୁଃସାହସ ମୋର ନଥିଲା । ସେ ଥିଲା ଉଗ୍ର କମ୍ୟୁନିଷ୍ଟ ବିରୋଧୀ । କମ୍ୟୁନିଷ୍ଟଙ୍କ ନାଁ ପଡ଼ିଲେ ସେ ଡେଉଁଥିଲା ।

ବି.ବି.ସି. ନିରପେକ୍ଷ ସଂସ୍ଥା ହେଲେ କଣ ହେବ ଏପରି ଭାବରେ ଖବର ପରିବେଷଣ କରନ୍ତି ଯେ ଖବର ଶୁଣିଲା ପରେ ଜଣକର ଧାରଣା ହେବ ଯେ ପୃଥିବୀରେ ଯେତେ ଗଣ୍ଡଗୋଳ ହେଉଛି, ସେ ସବୁ କମ୍ୟୁନିଷ୍ଟମାନେ କରୁଛନ୍ତି ! ବି.ବି.ସି. ଖବର ଶୁଣିଲା ପରେ ନିଟା ଗୋଡ଼କୁ କଚାଡ଼ି କୁହେ— କମ୍ୟୁନିଷ୍ଟମାନେ ହେଉଛନ୍ତି ପୃଥିବୀର ସବୁଠୁ ବେଶି ଭୟଙ୍କର ଜୀବାଣୁ । ହିଟଲର ସେମାନଙ୍କୁ ଶେଷ ନ କରି ଦେବାଟା ହେଉଛି ତାର ସବୁଠୁ ବଳି ଦୋଷ ।

ମୁଁ କିନ୍ତୁ ସେତେବେଳକୁ କାଲ୍‌ମାର୍କସ୍, ଲେନିନ୍ ଓ ଷ୍ଟାଲିନଙ୍କର ଲିଖିତ ବହୁତ ବହି କିଣି ମୋ ଟେବୁଲ୍‌ରେ ଜମାଇ ଥାଏ । ଦୈନିକ ଲଣ୍ଡନ ଟାଇମ୍‌ସ ସହିତ କମ୍ୟୁନିଷ୍ଟ କାଗଜ ଡେଲି ୱାର୍କର ମଧ୍ୟ କିଣେ । ନିଟାର ବଦ୍ଧମୂଳ ଧାରଣା ଯେ ମୁଁ ଜଣେ କମ୍ୟୁନିଷ୍ଟ । ତେଣୁ ସେ ମୋ ଆଗରେ କମ୍ୟୁନିଷ୍ଟମାନଙ୍କ ପ୍ରତି ଏତେ ବିଦ୍ୱେଷ ଦେଖାଏ । ଏପରିକି ମୋ ଶୋଇବା ଘର ଟେବୁଲ୍ ସଜାଇଲା ବେଳେ ସେ ମାର୍କ୍ସିଷ୍ଟ ବହିକୁ ଛୁଏଁ ନାହିଁ । ସେଗୁଡ଼ିକ ଏପାଖ ସେପାଖ ହୋଇ ଥୁଆ ହୋଇଥାଏ, କିନ୍ତୁ ଅନ୍ୟାନ୍ୟ ବହି ଧାଡ଼ି ଧାଡ଼ି କରି ସଜାଇ ରଖେ, ଲଣ୍ଡନ ଟାଇମ୍‌ସ କାଗଜ ତଳୁ ଗୋଟାଇ ଟେବୁଲରେ ରଖେ, କମ୍ୟୁନିଷ୍ଟ କାଗଜ ଡେଲି ୱାର୍କର ସେହିପରି ତଳେ ପଡ଼ିଥାଏ । ନିଟା ପୃଥିବୀର ସବୁ କମ୍ୟୁନିଷ୍ଟଙ୍କ ଉପରେ ଖପ୍‌ପା ହୋଇ ବୈଠକଖାନା ଛାଡ଼ି ଗଲା ପରେ ମାମୀ ମୋତେ କ୍ଷମା ମାଗନ୍ତି ତା ପାଇଁ ।

ମୁଁ ହସି କହେ— "ମାମୀ, ତୁମେ କାହିଁକି ଏତେ ବ୍ୟସ୍ତ ହେଉଛ ? ମୋତେ ତ ନିଟା କଥା ଶୁଣି ବହୁତ ମଜା ଲାଗୁଛି । ମୁଁ କାହିଁକି ନିଜକୁ ଅପମାନିତ ବୋଧ କରିବି ?"

କିନ୍ତୁ ମାମୀଙ୍କର ଦୃଢ଼ ଧାରଣା ଯେ ନିଟା ମୋତେ ଅପମାନିତ କରିବା ପାଇଁ ଏପରି କରୁଛି । ଅବଶ୍ୟ ମାମୀଙ୍କ ଧାରଣାରେ ନିଶ୍ଚିତ ଭାବରେ ସତ୍ୟତା ଥିଲା । ମୁଁ ଯେହେତୁ କମ୍ୟୁନିଷ୍ଟ କାଗଜ ଓ ବହି ପଢୁଛି, ତେଣୁ ନିଶ୍ଚୟ ଜଣେ କମ୍ୟୁନିଷ୍ଟ ଏବଂ ସେ ମୋତେ ଏପରି ଭାବରେ ଦେଖାଇ ଶୁଣାଇ କହିବାରେ ଆନନ୍ଦ ପାଉଥିଲା । ଏହା କିନ୍ତୁ ଇଂରେଜମାନଙ୍କର ସହନଶୀଳତାର ସଂପୂର୍ଣ୍ଣ ପରିପନ୍ଥୀ ଥିଲା ।

ଆଶ୍ଚର୍ଯ୍ୟର କଥା ଯେ ମୋତେ ନିଟା ସବୁବେଳେ ଦୂରେଇ ରଖେ; ତା ମାଆ ସହିତ ମୋର ଭଲ ପଟୁଥିବାରୁ ତାର ମୋ ପ୍ରତି ଭୟଙ୍କର ଈର୍ଷା; ମୁଁ କମ୍ୟୁନିଷ୍ଟ ବୋଲି ସେ ମୋତେ ଘୃଣା କରେ, ତଥାପି ମୁଁ ଯେତେବେଳେ ଫୋନ୍ କରି କହେ ଯେ ମୁଁ ସେଦିନ ସଂଧ୍ୟାରେ ଘରକୁ ଫେରିବି ନାହିଁ, ରାତ୍ରିଭୋଜନ ଖାଇବି ନାହିଁ, ସେତେବେଳେ ନିଟା ଯଦି ଫୋନ୍ ଧରିଥାଏ, ତେବେ ସେ ଅତି ବିରକ୍ତ ହେଲା ପରି ଜଣାଯାଏ । ଫୋନ୍‌କୁ ଧଡ଼୍‌କରି ରଖିଦିଏ । ମୁଁ ଯେ ସଂଧ୍ୟାରେ ବାହାରେ ରହିବି ସେ କଥା ତାର ପସନ୍ଦ ହୁଏ ନାହିଁ । ସେମାନେ ପଇସା ନେଇ ମୋତେ ଖାଇବାକୁ ଦିଅନ୍ତି । ସେଦିନ ତ ତାଙ୍କର ପଇସା ବଞ୍ଚିବ କାରଣ ନ ଖାଇଲେ ପଇସା କଟେ ନାହିଁ, ତାଛଡ଼ା ମୋର ସାନିଧ୍ୟ ତ ତା ପକ୍ଷରେ

ସେପରି ସୁଖଦାୟକ ନୁହେଁ, ତଥାପି ସେ ଯେ କାହିଁକି ମୁଁ ନ ଆସିବାର ଶୁଣିଲେ ବିରକ୍ତ ହୁଏ ସେ କଥା ମୁଁ ବୁଝିପାରେ ନାହିଁ। ବାହାରେ ରାତ୍ରିଭୋଜନ କରି ଫେରିଲା ପରେ ନିଟା ସହିତ ଦେଖା ହେଲେ ମୁଁ ଯଦି କିଛି ପଚାରେ, ତେବେ ସେ ଫିଙ୍ଗା ଫୋପାଡ଼ିଲା ପରି କଥା କହେ, ବୈଠକ ଖାନାରୁ ହଠାତ୍ ଉଠି ଚାଲିଯାଏ, ଯଦି ଶୋଇବାକୁ ଚାଲିଯାଏ ତେବେ ଶୁଭରାତ୍ରି କାମନା ମଧ କରେ ନାହିଁ ଯାହାକି ତା ପରି ଆଦବକାଇଦା ପ୍ରିୟ ଇଂରେଜ ରମଣୀ ପକ୍ଷରେ ଅତ୍ୟନ୍ତ ଅସ୍ୱାଭାବିକ ଏବଂ ଅଶୋଭନୀୟ। ମୁଁ ସଂଧାରେ ଠିକ୍ ସମୟରେ ଘରକୁ ନ ଫେରିଲେ ସେ କାହିଁକି ଏତେ ବେଶି ବିବ୍ରତ ହୋଇପଡ଼େ ? ମୋ ଆଖିରେ ମିଜାଜୀ ନିଟା ଆହୁରି ବେଶି ରହସ୍ୟମୟୀ ହୋଇଉଠେ। ମାମୀ ବାରମ୍ବାର ନିଟାର ବ୍ୟବହାର ଲାଗି ମୋଠାରେ କ୍ଷମାଭିକ୍ଷା କରନ୍ତି।

ଥରେ ଏକାଦିକ୍ରମେ ପାଞ୍ଚଛଅ ଦିନ ଧରି ସଂଧାରେ ମୁଁ ଫେରିଲି ନାହିଁ। କାରଣ ନାନା ପ୍ରକାର ସାଂଧ ସମାରୋହ ଓ ଭଲଭଲ ବକ୍ତୃତା ଲାଗି ମୁଁ ରହିଯାଏ। ପ୍ରତ୍ୟେକ ଦିନର ଅନୁପସ୍ଥିତି ପରେ ତାର ମୋର ସଂପର୍କ ତିକ୍ତ ହୋଇଉଠିଲା ପରି ମନେହେଲା। କଥା ନାହିଁ, ବାର୍ତ୍ତା ନାହିଁ, ସବୁବେଳେ ଏଡ଼େ ମୁହଁ। ରାଗରେ ତାର ସାରା ଦେହ ଯେପରି ଜଳିଉଠୁଛି ଅଥଚ ମୋତେ କିଛି କହେନାହିଁ। ଏହା ମୋଠାରେ ତୀବ୍ର ଦ୍ୱନ୍ଦ ସୃଷ୍ଟି କଲା। ମୁଁ ଭାବିଲି ଏପରି ଅଶାନ୍ତିକର ପରିସ୍ଥିତିର ସମାଧାନ କରିବାକୁ ହେବ। ତାର ରାଗର କାରଣ ବାହାର କରିବାକୁ ହେବ। ମାମୀ ଏଥିପାଇଁ ମଧ ବହୁତ ଦୁଃଖାଭିଭୂତ। ତେଣୁ ମୁଁ ଦିନେ ସକାଳେ ଭୋଜନ ପରେ ସାହସ ବାନ୍ଧି ନିଟା ସହିତ ମୁହାଁମୁହିଁ ହେବାକୁ ସିଦ୍ଧାନ୍ତ କଲି। ସେ ରନ୍ଧାଘର ଭିତରେ କଣ କରୁଥିଲା। ମୁଁ କବାଟରେ ଆଘାତ କରି ଭିତରକୁ ପଶିଲି। ନିଟା ମୋତେ ନ ଚାହିଁ ତା କାମରେ ବ୍ୟସ୍ତ ରହିଲା। ମୁଁ ପଚାରିଲି-

‘‘ନିଟା, କଥା କଣ ? ତୁମେ ମୋ ଉପରେ ଏପରି ରାଗିଛ କାହିଁକି ?’’

ଏତିକି କହୁ କହୁ ନିଟା ବିଷଧର ନାଗୁଣୀ ପରି ଗର୍ଜିଉଠିଲା–

‘‘ତୁମେ କିଏ ମୋତେ ପ୍ରଶ୍ନ ପଚାରିବା ପାଇଁ ? ତୁମର କି ଅଧିକାର ଅଛି ମୋ ଉପରେ ?’’

ଜଣେ କୁଳୀନ ଇଂରେଜ ପରିବାର ଭଦ୍ରମହିଳା ଆଉ ଜଣକ ସହିତ ଏପରି କଥା କହିବ, ଏ କଥା ମୁଁ ସ୍ୱପ୍ନରେ ସୁଦ୍ଧା ଭାବିପାରି ନଥିଲି। ମୁଁ ହତବାକ୍ ହୋଇ କିଛି ସମୟ ତାକୁ ଚାହିଁଲି। ସେ କିନ୍ତୁ ମୋତେ ସିଧା ଚାହୁଁ ନଥାଏ। ତାପରେ କହିଲା–

‘‘ମୁଁ ତୁମର ସେହି ବାଜେ ଦୈନିକ କାଗଜ ଡେଲି ୱାର୍କର (କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର) ଏ ଘରେ ଦେଖିବାକୁ ଚାହେଁନା।’’

ହଠାତ୍ ମୋ ମୁହଁରୁ ବାହାରିଗଲା–‘‘ମୁଁ ଭାବିଥିଲି ଇଂରେଜ ଲୋକେ ବ୍ୟକ୍ତିର ଗଣତାନ୍ତ୍ରିକ ଅଧିକାର ଓ ସ୍ୱାଧୀନତା ପ୍ରତି ବହୁତ ସମ୍ମାନ କରନ୍ତି। ଦେଖ ନିଟା, ଏ କାଗଜ ଯଦି ଏ ଘରକୁ ନ ଆସି ପାରିବ ତା ସହିତ ମୁଁ ମଧ ଆଉ ଏ ଘରକୁ ଆସିବି ନାହିଁ।’’

ମୋର ଏ ପଦକ କଥା ତାକୁ ଏପରି ଆଘାତ ଓ ଅପମାନିତ କଲା ଯେ ସେ ଭୟଙ୍କର ଭାବରେ ରାଗିଯାଇ ସେ ଘରର କବାଟକୁ ଖୁବ୍ ଜୋର୍‌ରେ ବାଡ଼େଇ ଦେଇ କାଠ ଶିଡ଼ିରେ ଧପ୍ ଧପ୍ କରି ଦୋତାଲାକୁ ଦୌଡ଼ି ଚାଲିଗଲା।

ମାମୀ ଉପରେ ଥିଲେ । ନିଟାର ଏ ପ୍ରକାର ପାଟି ଶୁଣି ସେ ସାଙ୍ଗେ ସାଙ୍ଗେ ତଳକୁ ଆସି ମୋତେ ପଚାରିଲେ—

''କ'ଣ ହୋଇଛି ? ନିଟା କାହିଁକି ଏପରି ବ୍ୟବହାର କଲା ଏବଂ କାହିଁକି ଯାଇ ତା ଶେଯରେ ପଡ଼ି କଇଁ କଇଁ ହୋଇ କାନ୍ଦୁଛି ?''

ମୋ ମୁହଁ ଆଗରେ କବାଟ ବାଡ଼େଇ ଚାଲିଯିବା ପାଇଁ ମାମୀ ବହୁତ ଦୁଃଖ କଲେ ଏବଂ ମୋଠାରେ କ୍ଷମାଭିକ୍ଷା କଲେ । କହିଲେ—

''ତୁମେ କେତେଦିନ ଧରି ସଂଧ୍ୟାରେ ନ ଫେରିବାରୁ ତାର କାହିଁକି ମିଜାଜ୍‌ଟା ବିଗିଡ଼ି ଯାଇଛି । ସେ ମଧ୍ୟ ବୁଝିପାରି ନଥିଲେ ନିଟାର କାହିଁକି ଏତେ ବେଶି ରାଗ, ଦୁଃଖ ଓ ମାନସିକ ଯନ୍ତ୍ରଣା । ମୋ ପକ୍ଷରେ ତାହା ବୁଝିବା ଅସମ୍ଭବ ଥିଲା । ନିଟା ହେଉଛି ବିଦେଶିନୀ ଏବଂ ଅଦ୍ଭୁତ ଚରିତ୍ରର ନାରୀ । ଏତେ ବେଶି ପ୍ରତିଭାଶାଳିନୀ ଅଥଚ ଏତେ ବଦ୍‌ରାଗୀ ଓ ଅସହନଶୀଳା । ଅସନ୍ତୁଳିତ ମାନସିକ ଅବସ୍ଥା ଯେପରି ତାର ବ୍ୟକ୍ତିତ୍ୱର ମୁଖ୍ୟ ବୈଶିଷ୍ଟ୍ୟ ।

ତାପରେ ମୁଁ ପ୍ରତିଦିନ ଗଲା ପରି ଘରୁ ବାହାରିଗଲି । ମନେ ମନେ ସଂକଳ୍ପ କଲି ଯେ ଏପରି ଦୁଃଖଦାୟକ ଘଟଣା ପରେ ସେଠାରେ ମୋର ରହିବା ଆଉ ସଂଭବ ନୁହେଁ । ଅନ୍ୟ ଯାଗାରେ ଯାଇ ରହିବି, ବଖରାଏ ଘର ଭଡ଼ା ନେଇ ସେଠାରେ ମୁଁ ରନ୍ଧାରନ୍ଧି କରି ଚଳିଯିବି । ଆଉ କୌଣସି ପରିବାରରେ ରହିବିନାହିଁ । ବଖରାଏ ଘର ନେଇ ରହିବାଟା ମଧ୍ୟ ବଡ଼ ଶସ୍ତା । ପଇସା ବେଶ୍ ବଞ୍ଚିବ । ତାଛଡ଼ା ଡେଲି ୱାର୍କର ପଢ଼ିବା ନ ପଢ଼ିବାରେ ହସ୍ତକ୍ଷେପ ମୋତେ ଅସହ୍ୟ ହେଲା । ମୁଁ କଣ ପଢ଼ିବି, କଣ ପଢ଼ିବି ନାହିଁ ସେ ବିଷୟରେ ଜଣେ ଅଜ୍ଞାତ ବିଦେଶିନୀ ନାରୀ ମୋତେ ନିୟନ୍ତ୍ରଣ କରିବ ? ଏହାକୁ ମୁଁ ବରଦାସ୍ତ କରିପାରିଲି ନାହିଁ । ନିଟା ସହିତ ଗଢ଼ିଉଠିଥିବା ମୋର ସହନଶୀଳତା ଓ ମାନବୀୟ ସମ୍ବେଦନଶୀଳତା ହଠାତ୍ ଏହି କଥା ପଦକରେ ଯେପରି ମଉଳିଗଲା । ମୁଁ ସ୍ଥିର ସଂକଳ୍ପ କଲି ସାତଦିନ ଭିତରେ ମୁଁ ନିଶ୍ଚିତ ଭାବେ ସେ ଘର ଛାଡ଼ିବି । ସେହିଦିନ ମଧ୍ୟ ବୁଲି ବୁଲି ଗୋଟିଏ ବଖରା ଘର ଠିକ୍ କଲି । ସେଠାରେ ଗ୍ୟାସ୍ ଚୁଲୀ ଓ ଗାଧୁଆଘର ଥିଲା । ବେଶ୍ କମ୍ ଦାମ୍, ହପ୍ତାକୁ ମାତ୍ର ଦୁଇ ପାଉଣ୍ଡ, ବିଶ୍ୱବିଦ୍ୟାଳୟକୁ ପାଖ, ଖାଲି ଏତିକି ଏହି ଅଞ୍ଚଳଟିରେ ଗରିବ ଶ୍ରମିକମାନେ ରହନ୍ତି । ବହୁତ ମଇଳା । ମୋର ଗୋଲଡରସ୍‌ଗ୍ରୀନ୍ ଘର ଅତ୍ୟନ୍ତ ସୁନ୍ଦର । ସେ ସାହିର ସବୁ ଘର ଆଗରେ ଓ ପଛରେ ବଗିଚା, ବହୁତ ପରିଷ୍କାର, ସାରା ଅଞ୍ଚଳଟି ବଡ଼ ମନୋରମ, ଏଣୁ ଏହି ଅଞ୍ଚଳଟି ବ୍ୟୟବହୁଳ । ଏଠାରେ ଉପର ଶ୍ରେଣୀର ଲୋକମାନେ ବସବାସ କରନ୍ତି । ଯାହାହେଉ, ବର୍ତ୍ତମାନ ଅବସ୍ଥାରେ ଯେକୌଣସି ଅଞ୍ଚଳ ମୋତେ ଭଲ ଲାଗିବ— ଯେଉଁଠି ମୋର ପୂର୍ଣ୍ଣ ସ୍ୱାଧୀନତା ରହିବ, ସେଠାରେ ମୁଁ ରହିବି । ସେଦିନ ସନ୍ଧ୍ୟାରେ ମୁଁ ଖାଇବାକୁ ଆସିଲିନାହିଁ, ଦୁଃଖ ଓ ଅଭିମାନରେ ମୋ ମନ ଭାରି ହୋଇଯାଇଥିଲା । ରାତିରେ ଫେରିଲା ପରେ ମାମୀଙ୍କୁ ଡାକି କହିଲି ଯେ—

''ମାମୀ, ତୁମକୁ ଛାଡ଼ି ଲଣ୍ଡନର ଅନ୍ୟତ୍ର ରହିବାରେ ମୋର କେତେ ଦୁଃଖ ହେବ ତାହା ତୁମେ ଭଲ ଭାବରେ ଜାଣ । ଘର ଭିତରେ ଅଶାନ୍ତି ସୃଷ୍ଟି କରିବା ଅପେକ୍ଷା ମୁଁ ଚାଲିଯିବା ଠିକ୍ କଲି । କିନ୍ତୁ ପ୍ରତି ହପ୍ତାରେ ଥରେ ଦି'ଥର ମୁଁ ଆସି ତୁମକୁ ଦେଖା କରିବି

କିମ୍ବା ଫୋନ୍ କରି ତୁମକୁ ଡାକି ନେବି । ତୁମେ ମୋ ସାଙ୍ଗରେ ଯାଇ କେଉଁଠି ଏକାଠି ବସି ଖାଇବା, ଗପସପ ହେବା । ମୁଁ ଆସନ୍ତା ତିନିଦିନ ପରେ ଏହି ଘର ଛାଡ଼ି ଚାଲିଯିବି ।''

ମାମୀ ଆଖିରେ ଲୁହ, ମୋ ଆଖିରେ ଲୁହ । କିନ୍ତୁ ମାମୀ କହିଲେ–

''ପ୍ରକୃତରେ ତୁମେ ବହୁତ ଅପମାନିତ ହେଲଣି, ଆଉ ବେଶିଦିନ ଏଠାରେ ରହିବା ତୁମର ଠିକ୍ ନୁହେଁ । ତୁମେ ଏ ଘର ଛାଡ଼ି ଚାଲିଯିବ ଏଥିପାଇଁ ମୋର ବହୁତ କଷ୍ଟ ହେଉଛି । ତୁମର ଦେହପା ହେଲେ କିଏ ଦେଖିବ ? ନିତା ମୋ ସ୍ୱାମୀଙ୍କୁ ଘରୁ ବାହାର କରିଦେଲା, ତା ପରେ ତୁମକୁ ମଧ୍ୟ ।''

ଏହା କହି ସେ କୋହ ସମ୍ଭାଳି ନପାରି ତାଙ୍କ ବଖରାକୁ ଚାଲିଗଲେ । ନିତା ସହିତ ମୋର ସେହି ରାତିରେ ଆଉ ଦେଖାହେଲା ନାହିଁ । କାରଣ ମୋ ସହିତ ତାର ଯେପରି ଦେଖା ନହୁଏ, ସେଥିପାଇଁ ମୋ ଆସିବା ଆଗରୁ ସେ ତାର ଶୋଇବା ଘରକୁ ଚାଲିଯାଇଥିଲା ।

ତା'ପରଦିନ ସକାଳେ ଭୋଜନ ମାମୀ ବାଢ଼ିଦେଲେ । କିଛି ସମୟ ପରେ ମୁଁ ମୋ ବଖରାକୁ ଫେରିଗଲି । ଦେଖିଲି, ମୋର ସେହି ଅଧଘଣ୍ଟାର ଅନୁପସ୍ଥିତିରେ ମୋ ବଖରାର ରୂପ ସଂପୂର୍ଣ୍ଣ ବଦଳିଯାଇଛି । ମୋ ପଢ଼ା ଟେବୁଲ୍‌ରେ ଜମା ହୋଇଥିବା ମୋଟା ମୋଟା ମାର୍କସ ଲେନିନ୍ ବହି ସଜା ହୋଇ ଥୁଆ ହୋଇଛି । ଏହି ବହିଗୁଡ଼ିକର ବ୍ୟକ୍ତିତ୍ୱ ତଥା ମର୍ଯ୍ୟାଦା ଯେପରି ବହୁ ପରିମାଣରେ ବୃଦ୍ଧି ପାଇଛି । ଏହି ବହିଗୁଡ଼ିକୁ ଅନ୍ତତଃ ଏପରି ଭାବରେ ଆଗରୁ କେହି ସଜାଇ ନାହାନ୍ତି । ତା ପାଖ ଟେବୁଲ୍‌ରେ ଗୋଟିଏ ବଡ଼ ଗୋଛା ଲାଇଲାକ୍ ଫୁଲ । ମୋର ଛୋଟ ଟେବୁଲ୍ ଉପରେ ଗୋଲାପ ଫୁଲର ଗୁଚ୍ଛ । ଘର ସବୁ ଚିକ୍ ଚିକ୍ କରୁଛି । ଏପରି ରୁଚିକର ସାଜସଜ୍ଜା ମୁଁ କେବେ ଦେଖି ନଥିଲି । ଏତେ ସକାଳୁ ଫୁଲ କିଏ ଆଣି ଥୋଇଛି ? ସେଠାରେ ଫୁଲର ଯେପରି ଦାମ୍ ଦୁଇଟା ଫୁଲ ଗୁଚ୍ଛର ଦାମ୍ ଅନେକ ବେଶି ହେବ । ସକାଳର କଅଁଳ ଖରା ଖୋଲା ଝରକା ବାଟେ ଝରିପଡୁଛି । ସୁଲୁସୁଲୁ ପବନରେ ଘର ମହକି ଉଠୁଛି । ମୁଁ ଆଶ୍ଚର୍ଯ୍ୟ ହୋଇ ଝରକା ପାଖରେ ଠିଆ ହୋଇ ଫୁଲ ତୋଡ଼ାକୁ ଚାହୁଁଛି । ଏ ସବୁର ରହସ୍ୟ ବୁଝି ହେଉନାହିଁ । ମୋ ମନରେ ଗୋଟିଏ ଗୋଳମାଳିଆ ଭାବ ।

ହଠାତ୍ ମୋ କବାଟରେ ଆଘାତ ଦେଇ ନିତା ମୋ ବଖରାକୁ ପଶି ଆସିଲା । ମୋ ମୁହଁକୁ ସିଧା ନ ଚାହିଁ ଏ ପାଖ ସେପାଖ ଦୌଡ଼ାଦୌଡ଼ି କରି, ଫୁଲ ତୋଡ଼ାକୁ ପୁଣି ଟିକିଏ ହଲଚଲ କରି କହିଲା–

''ତୁମର କଣ ଆଜି କିଛି ଜରୁରୀ କାମ ଅଛି ? ମାଆଙ୍କର ଦେହ ଓ ମନ ଭଲ ନାହିଁ । ତାଙ୍କୁ ବାହାରକୁ ନେଇ ଯିବାକୁ ହେବ । ଗୋଟିଏ ଭଲ ସିନେମା ଦେଖାଇବାକୁ ହେବ । ପାର୍କ ଆଡ଼େ ବୁଲାଇ ଆଣିବା ଦରକାର । ତୁମର ଯଦି ସେପରି ଜରୁରୀ କାମ ନଥାଏ, ଆମ ସାଙ୍ଗରେ ଆସି ପାରିବ ? ମାମୀ ପାଇଁ କିଛି କରିବାକୁ ହେବ । ସେ ଆଦୌ ଭଲନାହିଁ ।''

ନିତା ଏପରି କହୁଥାଏ ଯେ ସେ ଯେପରି ମୋର ଯୁଗ ଯୁଗର ବନ୍ଧୁ । ତା ମାମୀର ମନ ବଦଳାଇବା ପାଇଁ ମୋର ଏକାନ୍ତ ସାହାଯ୍ୟ ଦରକାର । ମୋ ଉପରେ ଯେପରି ତାର ସଂପୂର୍ଣ୍ଣ ଅଧିକାର ଅଛି ! ଅଦ୍ଭୁତ ଏ ରମଣୀ !

ମୁଁ ପ୍ରଥମେ ସ୍ତମ୍ଭୀଭୂତ ହୋଇଗଲି । ଯେଉଁ ନିଟା ଦିନେ ପୂର୍ବରୁ ଏପରି ଖରାପ ବ୍ୟବହାର କରିଥିଲା, ସେ ଯେ ଏପରି ସରଳ ଭାବରେ ନିସଙ୍କୋଚରେ ମୋ ସହିତ ବ୍ୟବହାର କରିପାରିବ— ଏହା ମୋର କଳ୍ପନାର ବାହାରେ ଥିଲା । କିନ୍ତୁ ପର ମୁହୂର୍ତ୍ତରେ ବୁଝିପାରିଲି ଯେ ନିଜ ପାରିବାରିକ ଆଭିଜାତ୍ୟର ଗର୍ବ, ଖଣ୍ଡାଧାରରେ ଚାଲିବାର ଔଦ୍ଧତ୍ୟ, ସ୍ୱକୀୟ ପ୍ରତିଭା ଚେତନାର ସ୍ୱାଭିମାନ ଓ ମା'ଙ୍କୁ ଗଭୀର ଭାବରେ ଭଲ ପାଇବାର ଅଭିମାନରେ ସଦାସର୍ବଦା ଆନ୍ଦୋଳିତ ଏହି ରହସ୍ୟମୟୀ ନାରୀ ଏ ପ୍ରକାର ଆମନ୍ତ୍ରଣ ଛଳରେ ମୋ'ଠାରେ କ୍ଷମାଭିକ୍ଷା କରୁଛି । ବଡ଼ ବଡ଼ ଫୁଲ ତୋଡ଼ାର ସ୍ନିଗ୍ଧତା ମାଧ୍ୟମରେ ମୋ ମନ ଭିତରୁ ଅତୀତର ସକଳ ପ୍ରକାର ଅପମାନ ଅଶାନ୍ତି ଲିଭାଇ ଦେବାକୁ ଚାହୁଁଛି । ଆମ ଦୁଇଜଣଙ୍କର ଅତି ଆଦରର ମାମୀ ମନରେ ଆନନ୍ଦ ଆଣିଦେବା ବାହାନାରେ ମୋର ଏକାନ୍ତ ସାହାଯ୍ୟ ମାଗୁଛି । ସାମାନ୍ୟ ଅନୁରୋଧ ଭିତର ଦେଇ ତାର ସମସ୍ତ ଅଧିକାର ଯେପରି ସେ ସାବ୍ୟସ୍ତ କରୁଛି ! ତା'ପରି ସୁନ୍ଦରୀ, ପ୍ରତିଭାଶାଳିନୀ ରମଣୀ ଏହି ସାମାନ୍ୟ କଥା କେତୋଟି କହିଲାବେଳେ ଆହୁରି ବେଶି ମନୋରମ ଦେଖାଯାଉଛି । ସାର୍ବଜନୀନ ମାନବୀୟ ଆକର୍ଷଣ ଶକ୍ତିର ସେ ଯେପରି ଅସରନ୍ତି ଉତ୍ସ ! ସେହି ଅଗ୍ନି ଉଦ୍‌ଗୀରଣକାରିଣୀ ଭୟଙ୍କର ବିସୁଵୀୟସ (ବିଖ୍ୟାତ ଅଗ୍ନେୟଗିରିର ନାମ) ଆଜି ନାରୀତ୍ୱର ନମନୀୟତାରେ କି ଶାନ୍ତ, କି ଉଦାର ଦେଖାଯାଉଛି ! ନାରୀର ଗୋଟିଏ ମୁହୂର୍ତ୍ତର ଭୟଙ୍କର ବିଶ୍ୱସଂହାରୀ ରୂପ ସହିତ ପରବର୍ତ୍ତୀ କାଳର ପ୍ରେମମୟ ନମନୀୟ ହସର ଅଦ୍ଭୁତ ସମାବେଶ ଯୋଗୁ ବୋଧହୁଏ ନାରୀର ମନ ଅକଳନ ଓ ତାକୁ ରହସ୍ୟମୟୀ ବୋଲି କୁହାଯାଇଥାଏ । ଏପରି ଜଣେ ରହସ୍ୟମୟୀ ନାରୀର ଅନୁନୟ କଣ ସହଜରେ ଉପେକ୍ଷା କରାଯାଇପାରେ ? ଉପେକ୍ଷା କରିବା ଅର୍ଥ ଅନୁତାପ ଅନୁଶୋଚନା ହିଁ ସାର ହେବ । ଅନୁନୟ ପରି ବିରାଟ କରୁଣାଯିତ୍ ମାନବୀୟ ଉନ୍ମେଷକୁ ଅପମାନିତ କରିବା । ମୁଁ ଆତ୍ମବିଭୋର ହୋଇ— "କହିଲି ହଁ ହଁ ।"

ତା'ପରେ ସେ ଯେପରି ଗୋଟିଏ ଶକ୍ତି ଓ ଚଞ୍ଚଳତାର ଡାଇନାମୋରେ ପରିଣତ ହୋଇଗଲା ! ତଳକୁ କାଠ ଶିଡ଼ିରେ ଧପ୍‌ଧପ୍ ହୋଇ ଓହ୍ଲାଇ ଯାଇ ମାଆକୁ ପାଟି କରି ତାଗିଦ୍ କରିଦେଇ ଗଲା—

"ମାଆ, ତୁମେ ନିଶ୍ଚୟ ବାହାରକୁ ଯିବ । ରଥ ଓ ମୁଁ ତୁମକୁ ସାଙ୍ଗରେ ନେଇଯିବୁ । ଖୁବ୍ ଶୀଘ୍ର ଘର କାମ ଶେଷ କର ।"

ତା'ପରେ ପୁଣି ସେ ଧପ୍ ଧପ୍ ହୋଇ ଉପରକୁ ଉଠିଆସିଲା । ମୋତେ କହିଲା, "ଦେଖ, ଆଜିର ସବୁ ଖର୍ଚ୍ଚ ମୁଁ କରିବି, ତୁମେ ମୋର ଅତିଥି ।"

ଏହିପରି ଭାବରେ ଖାଲି ତଳ ଉପର, ଏଘର ସେଘର ସେ ଦୌଡ଼ିବାକୁ ଆରମ୍ଭ କଲା । ସାରା ଘର ତା'ର ଯିବା ଆସିବାରେ ପଡୁଥାଏ ଉଠୁଥାଏ । କେତେବେଳେ ବଡ଼ପାଟି କରି କହୁଥାଏ—

"ରଥ, ଆଜି ଟିକିଏ ଆଗରୁ ମଧ୍ୟାହ୍ନ ଭୋଜନ କରିନେବା । ମୁଁ ସବୁ ବନ୍ଦୋବସ୍ତ କରୁଛି । ତୁମକୁ ମାଂସ ରୋଲ୍ ଭଲ ଲାଗେ ! ତାକୁ କରିଦେବି । ମାମୀ, ତୁମେ ଅମୁକ ପୋଷାକ ପିନ୍ଧିଲେ ତୁମକୁ ଭଲ ଲାଗିବ ।"

ତା'ପରେ ହଠାତ୍ ସାଇକେଲ୍ ଖଣ୍ଡିକ ଧରି କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା, ଫେରିଲା ବୋଝେ ଜିନିଷ ଧରି । ଭଲଭଲ ଫଳ, ପରିବା, ମାଂସ, ଚକ୍‌ଲେଟ, ଅତ୍ୟନ୍ତ ଦାମୀ

ସାଂପେନ୍ ଗୋଟିଏ ବୋତଲ ଇତ୍ୟାଦି । ଦାମ୍ ବେଶ୍ କିଛି ହେବ । କୁଆଡୁ ହଠାତ୍ ଏତେ ଟଙ୍କା ସେ ପାଇଲା ?

ପରେ ମାମୀଙ୍କଠାରୁ ଶୁଣିଲି ଯେ ସେ ତାର ଗୋଟିଏ ହୀରାମୁଦିକୁ (ତା ବାପା ସୁନା ଓ ହୀରା ବ୍ୟବସାୟ କରୁଥିଲେ ଏବଂ ସେ ଇଂଲଣ୍ଡର ରାଜପରିବାରକୁ ଅଳଙ୍କାର ଯୋଗାଉଥିଲେ, ତେଣୁ ଏମାନଙ୍କ ପାଖରେ ସୁନା ଓ ହୀରା ଗହଣା କିଛି ଥିଲା ।) ହଠାତ୍ ଦୋକାନରେ ବନ୍ଧା ପକାଇ ୨୦ ପାଉଣ୍ଡ ଆଣି ଖର୍ଚ୍ଚ କରି ପକାଇଲା । ତା'ପରେ ସାରା ଦିନ ସିନେମା ଦେଖା, ପାର୍କ ବୁଲା, ଆଇସକ୍ରିମ୍ ଖିଆ । ସନ୍ଧ୍ୟାରେ ତାର ସୁମଧୁର କଣ୍ଠରେ ପିଆନୋ ଧରି ଗୀତ । ମୁଁ ସାରା ଦିନ ଅତି ବିହ୍ୱଳ ଭାବରେ ତାକୁ ଲକ୍ଷ୍ୟ କରୁଥାଏ । କି ଅଦ୍ଭୁତ ଭାବରେ ଅସନ୍ତୁଳିତ ଏହି ରମଣୀ !

ତା'ପରେ ମୋର ଆଉ ଘର ଛାଡ଼ିବା ପ୍ରଶ୍ନ ଉଠିଲା ନାହିଁ ।

ନିଟା ତାପରେ ମୋର ଡେଲିଓ୍ୱାର୍କର କାଗଜକୁ ଆଣି ମୋ ଟେବୁଲ୍ ଉପରେ ରଖିବାକୁ ଆରମ୍ଭ କଲା । ତା ପୂର୍ବରୁ କେବଳ ଲଣ୍ଡନ ଟାଇମ୍‌ସ କାଗଜକୁ ଆଣି ମୋ ଟେବୁଲରେ ରଖୁଥିଲା । ମୁଁ ଯାଇ ଡେଲିଓ୍ୱାର୍କର କାଗଜ ତଳୁ ଗୋଟାଇ ଆଣୁଥିଲି । ନିଟା ପୂରାପୂରି ବଦଳିଗଲା । ଆମେ ଉଭୟେ ମାମୀକୁ ଭଲ ପାଇଲେ କିଛି କ୍ଷତି ନାହିଁ । ଏହା ସେ ହୃଦୟଙ୍ଗମ କଲା ।

ତାର ଅତ୍ୟଧିକ ରାଗର ଆଉ ଗୋଟିଏ କାରଣ ଥିଲା । ଆମ ଘରେ ଆଉ ଗୋଟିଏ ବଖରାରେ ଜଣେ ଭାରତୀୟ ଲୋକ ରହୁଥିଲେ । ସେ ଜଣେ ବଡ଼ ଜମିଦାରଙ୍କର ପୁଅ । ବେଶ୍ ବୋକା ଧରଣର ଲୋକ । ତା'ଛଡ଼ା ସେ ଏତେ ଆଦରରେ ବଢ଼ିଥାନ୍ତି ଯେ ଦୁନିଆ ବିଷୟରେ କିଛି ବୁଝି ପାରନ୍ତି ନାହିଁ । ଭଦ୍ର, ଅଭଦ୍ର ବ୍ୟବହାର ବିଷୟରେ ତାଙ୍କର ସମ୍ୟକ୍ ଧାରଣା ନଥିଲା । ତାଙ୍କୁ ଯାହା ଭଲ ଲାଗୁଥିଲା ସେ ତାହା କହୁଥିଲେ ଏବଂ କରୁଥିଲେ । ତାଙ୍କୁ ଚାକୁଳେଇ ଚାକୁଳେଇ ଶବ୍ଦ କରି କରି ଖାଇବାକୁ ଭଲ ଲାଗୁଥିଲା । ଏଠାରେ ଏହା ଭୟଙ୍କର ଅଭଦ୍ରତା ବୋଲି ତାଙ୍କୁ ଯେତେ ବୁଝାଇଲେ ମଧ୍ୟ ସେ ଅଭ୍ୟାସ ଛାଡ଼ିପାରୁ ନଥିଲେ । ସେ ଏପରି ଖାଦ୍ୟପ୍ରିୟ ଥିଲେ ଯେ ଟେବୁଲରେ ଖାଦ୍ୟ ଦେଖିଲେ ତାଙ୍କ ଆଖି ବଡ଼ ହୋଇଯାଏ, ପାଟି ମେଲା ହୋଇଯାଏ । ଆନନ୍ଦରେ ଅଧୀର ହୋଇ ଗାବୁଗାବୁ କରି ଖାଇବାକୁ ଆରମ୍ଭ କରନ୍ତି । କେଉଁ କଣ୍ଟା କେଉଁ ଚାମଚ୍‌ରେ କଣ ଖାଇବାକୁ ହୁଏ, ସେ କଥା କେବେ ତାଙ୍କର ମନେ ରହେନାହିଁ । ଏସବୁ ଦେଖିଲେ ନିଟା ଦାନ୍ତ କଡ଼ମଡ଼ କରେ । ଗମ୍ଭୀର ହୋଇ ବସେ । ବିରକ୍ତିରେ କଥା କହେନାହିଁ । ସେ କିନ୍ତୁ ଏତେ କଥା ବୁଝିପାରନ୍ତି ନାହିଁ । ଏ ଭଦ୍ରଲୋକ ସେଠାକୁ ଆଇନ ପଢ଼ିବାକୁ ଯାଇଥିଲେ । ସେତେବେଳେ ବାରିଷ୍ଟରୀ ପାଶ୍ ସେତେ କଷ୍ଟ ନଥିଲେ ସୁଦ୍ଧା ବହୁବାର ଫେଲ୍ ହୋଇ ଶେଷରେ ପାଶ୍ କରିଥିଲେ । ଏ ଭଦ୍ରଲୋକଙ୍କର ନିଃସହାୟ ଅବସ୍ଥା ଯୋଗୁ ମାମୀ ତା ପ୍ରତି ବହୁତ ସହାନୁଭୂତି ଦେଖାନ୍ତି ।

ଏ ଭଦ୍ର ଲୋକଙ୍କର ସାଧାରଣ ବୁଦ୍ଧି ବେଶ୍ କମ୍ ବୋଲି ଜଣାଯାଏ । ମୁଁ ଯେତେବେଳେ ସନ୍ଧ୍ୟାରେ ଫେରେନାହିଁ ସେ ନିଟା ଓ ମାମୀଙ୍କୁ ମୋର କମ୍ୟୁନିଷ୍ଟ କାର୍ଯ୍ୟକଳାପ ବିଷୟରେ ବହୁତ ମିଛ କଥା ମନରୁ ଫାନ୍ଦି କହନ୍ତି । ନିଟା କମ୍ୟୁନିଷ୍ଟଙ୍କୁ ଏତେ ଘୃଣା କରେ ଓ ଚିଡ଼େ ବୋଲି ଖାଲି ମଜା ଦେଖିବା ପାଇଁ ମୋ ବିଷୟରେ ଏସବୁ

ମନଗଢ଼ା କଥା କହନ୍ତି । ମୋର ପାଞ୍ଚ-ଛଅ ଦିନର ଅନୁପସ୍ଥିତି ସମୟରେ ସେ କହିଥିଲେ ଯେ ମୁଁ କୁଆଡ଼େ ଇଂଲଣ୍ଡର ଜଣେ ବିଖ୍ୟାତ କମ୍ୟୁନିଷ୍ଟ ନେତା ! ସନ୍ଧ୍ୟାରେ ଯାଇ ମୁଁ ଅଣ୍ଡରଗ୍ରାଉଣ୍ଡ୍ (ଅଣ୍ଡରଗ୍ରାଉଣ୍ଡ ଅର୍ଥ ସେ ବୁଝିଥିଲେ ଯେ ଇଂଲଣ୍ଡର ଘରତଳେ ଯେଉଁ ଘର ଥାଏ ।) ଘରେ ପହଞ୍ଚିଲା ପରେ ଲାଲକୁର୍ତ୍ତା ପିନ୍ଧିଥିବା ଲୋକମାନେ କୁଆଡ଼େ ମୋତେ ସାଲ୍ୟୁଟ୍ କରନ୍ତି ! ମୁଁ ବିପ୍ଳବ ପାଇଁ ଜ୍ୱାଳାମୟୀ ବକ୍ତୃତା କରେ । ସେ ଭଦ୍ରଲୋକ କୁଆଡ଼େ ଥରେ ମୋ ସାଥିରେ ଯାଇ ସବୁ ଦେଖିଥିଲେ । ତାଛଡ଼ା ମୁଁ ଭାରତରେ ପହଞ୍ଚିଲାକ୍ଷଣି ମୋତେ ପୋଲିସ୍ ହାତକଡ଼ା ଦେଇ ଜେଲ୍‌ରେ ଭର୍ତ୍ତି କରିଦେବ ! ଭାରତର କମ୍ୟୁନିଷ୍ଟମାନେ ରାସ୍ତାରେ ଯାଇପାରନ୍ତି ନାହିଁ । ମୋର ଚାକିରି ଯିବ ଇତ୍ୟାଦି ଇତ୍ୟାଦି ବହୁ ଭୟଙ୍କର କଥା । ଏଥିରେ ତିଳେମାତ୍ର ସତ୍ୟତା ନଥିଲା । ଏକଥା ଶୁଣି ନିଟା ଓ ମାମୀ ଡରିଗଲେ । ମୋର ପିଲାଛୁଆ ହଇରାଣ ହେବେ, ମୁଁ ଜେଲ୍ ଯିବି, ଏ କଥା ସେମାନଙ୍କୁ ବହୁତ ମର୍ମାହତ କରିଥିଲା । କିନ୍ତୁ ଭରସି କରି ମୋତେ ସେମାନେ ଏକଥା ପଚାରିପାରୁ ନଥିଲେ । ଭୟ, ରାଗ ଓ ଅଭିମାନର ବଶବର୍ତ୍ତୀ ହୋଇ ମୋର ପରିବାରର ଭବିଷ୍ୟତ ବିପଦରେ ବିଚଳିତ ନିଟା ସେଦିନ ରାତିରେ ଏପରି ବ୍ୟବହାର କରିଥିଲା ।

ଆମର ମାନ ଅଭିମାନ ଅବସାନର କିଛିଦିନ ପରେ ଦିନେ ରବିବାର ସକାଳେ ମୁଁ ବଗିଚା କାମ ସାରି ବଗିଚାରେ ଆରମ ଚୌକିରେ ବସି ଗୋଟିଏ ବହି ପଢୁଥାଏ । ସେଠାରେ ଖରାଦିନେ ସୁନ୍ଦର ଖରା ଓ ଥଣ୍ଡା ପବନ । ଚାରିଆଡ଼ ଲାଇଲକ୍ ଓ ଗୋଲାପଫୁଲର ବାସରେ ମହକି ଉଠୁଥାଏ । ନିଟା ମୋ ପାଖକୁ ଆଉ ଗୋଟିଏ ଚଉକି ଟାଣି ଆଣି ବଡ଼ ସମ୍ଭ୍ରମରେ କଥା ଆରମ୍ଭ କଲା-

"ଗୋଟିଏ କଥା ପଚାରିବି କିଛି ମନେ କରିବ ନାହିଁ ? ମୁଁ ତୁମର ସ୍ୱାଧୀନ ମନୋଭାବକୁ ବହୁତ ପସନ୍ଦ କରେ । ତୁମର ଦେଶବିଦେଶ ବିଷୟରେ ଜ୍ଞାନ ଓ ଆନ୍ତର୍ଜାତିକ ମନୋଭାବ ମୋତେ ବହୁତ ଭଲ ଲାଗେ । ମୁଁ ତୁମ କଥାବାର୍ତ୍ତାରୁ ବହୁତ କଥା ଶିଖିଲିଣି । କିନ୍ତୁ ଗୋଟିଏ ବ୍ୟକ୍ତିଗତ କଥା ପଚାରିବି । କିଛି ଭାବିବ ନାହିଁ ତ ?"

ତାର ସମ୍ଭ୍ରମତା, ଅନୁନୟ ସ୍ୱର, କୋମଳ ଭାବଭଙ୍ଗୀ ଓ କରୁଣାଭରା କଥା ଶୁଣି ମୁଁ କୌତୂହଳ ସହ ତାକୁ ଚାହିଁଲି । କହିଲି–

"ନିଟା, ଆମ ଭାରତୀୟମାନଙ୍କର ବ୍ୟକ୍ତିଗତ ପରିସର ବଡ଼ ସଂକୀର୍ଣ୍ଣ । ଆମର ବହୁ ବିଷୟ ବଡ଼ ଖୋଲା । ତୁମର ଏପରି କଣ ପ୍ରଶ୍ନ ଅଛି ଯାହା ମୋତେ ପଚାରିବା ପାଇଁ ତୁମକୁ ଏତେ ସଙ୍କୋଚ ଲାଗୁଛି ?"

ତଳକୁ ମୁହଁ ପୋତି ଆସ୍ତେ ଆସ୍ତେ ନିଟା ପଚାରିଲା–

"ଆଚ୍ଛା, ତୁମେ କମ୍ୟୁନିଜିମ୍ ବିଷୟରେ ବହୁତ ବହି ତ ଠିକ୍ ପଢୁଛ । କିନ୍ତୁ ତୁମେ କ'ଣ କମ୍ୟୁନିଷ୍ଟଙ୍କର ରାଜନୈତିକ ଆନ୍ଦୋଳନରେ ଏପରି ଜଡ଼ିତ ହେବା ଉଚିତ ? ତୁମେ କୁଆଡ଼େ ସଂଧ୍ୟାରେ କମ୍ୟୁନିଷ୍ଟଙ୍କ ସଭାରେ ଭାଷଣ ଦେଉଛ । ତୁମର ସ୍ତ୍ରୀ ଓ ପିଲାମାନେ ଅପେକ୍ଷା କରି ରହିଛନ୍ତି ତୁମକୁ । ତୁମେ ଏଠାକୁ ଆସିଛ ଡକ୍‌ଟରେଟ୍ କରିବା ପାଇଁ । ଅଥଚ ଏଠାରେ ଏପରି ଭାବରେ ରାଜନୀତିରେ ସଂଶ୍ଳିଷ୍ଟ ହୋଇପଡ଼ିଛ ଯେ ଭାରତକୁ ଗଲାକ୍ଷଣି କୁଆଡ଼େ ତୁମର ଜେଲ୍‌ଦଣ୍ଡ ହୋଇଯିବ ?"

ମୁଁ ତା କଥା ଶୁଣି ଅବାକ୍ ହୋଇଗଲି । କହିଲି–

"ନିଟା, ତୁମକୁ ଏକଥା ସବୁ କିଏ କହିଲା ? ମୋତେ ତ ଏସବୁ ଅବାସ୍ତବ କାହାଣୀ ପରି ଶୁଣାଯାଉଛି । ମୁଁ କମ୍ୟୁନିଷ୍ଟ ଆନ୍ଦୋଳନରେ ଆଦୌ ନାହିଁ କି ତାଙ୍କର ଦଳୀୟ ସଭାରେ ବକ୍ତୃତା କରେ ନାହିଁ । ଆମ ବିଭାଗୀୟ ସେମିନାରରେ ବ୍ୟସ୍ତ ଥିଲାବେଳେ ସଂଧ୍ୟାରେ ଘରକୁ ଆସିପାରେ ନାହିଁ ।"

ମୋ କଥା ଶୁଣି ନିଟା ସ୍ତମ୍ଭିତ ହୋଇଗଲା ଯେ ଏହା ସତ ନୁହେଁ । ସେ କହିଲା ଯେ ତାଙ୍କ ଘରେ ଥିବା ସେଇ ଭଦ୍ରଲୋକ ମୋ ବିଷୟରେ ଏତକ କଥା କହିଛନ୍ତି । ସେମାନେ ବିଶ୍ୱାସ କରିପାରି ନଥିଲେ ଯେ ଜଣେ ଭଦ୍ରଲୋକ ବିନା କାରଣରେ ମୋ ନାଁରେ ଲଗେଇ ଜୁଟେଇ ଏତେ ମିଛ କଥା କହିପାରିବ । ସେ ଭଦ୍ରଲୋକ କହିଥିଲେ ଯେ, ଓଡ଼ିଶାର ମନ୍ତ୍ରୀମାନଙ୍କ ସହିତ ତାଙ୍କ ବାପାଙ୍କର ଘନିଷ୍ଠତା ରହିଛି । ସେ ଯଦି ସେମାନଙ୍କୁ ଏହି ଖବର ଦେଇଦେବ ତାହେଲେ ମୋତେ ଭାରତ ସରକାର ଧରିନେବ । ଏକଥା ଶୁଣି ମୋର ଯେତିକି ରାଗ ନ ହେଲା, ସେତିକି ଦୟା ହେଲା ଯେ ଅଳ୍ପ ବୁଦ୍ଧିସମ୍ପନ୍ନ ଏହି ଭଦ୍ରଲୋକଟି ଏପରି କଥା କିପରି କହିପାରିଲେ ? ମା' ଝିଅ ଏତେ ସରଳ ଏବଂ ରାଜନୀତିରେ ଏତେ ଅନଭିଜ୍ଞ ଯେ ତାର ସବୁ କଥାକୁ ସେମାନେ ବିଶ୍ୱାସ କରିଗଲେ । ତା'ଛଡ଼ା ସେମାନେ କାହିଁକି ବା ଭାବିବେ ଯେ ଜଣେ ଲୋକ ଅଯଥା ଏତେ ମିଛ କଥା କହିବ ? ସେମାନେ ସାଧାରଣ ଭାବରେ ଏତେ ମିଛ କଥା କହନ୍ତି ନାହିଁ । ଏହା ତାଙ୍କର ଗୋଟିଏ ଜାତୀୟ ଲକ୍ଷଣ ।

ସେଦିନ ସଂଧ୍ୟାରେ ମୁଁ ସେ ଭଦ୍ରଲୋକଙ୍କୁ ପଚାରିଲି । ସେ ସଙ୍ଗେ ସଙ୍ଗେ ହସି ହସି ରାଜି ହୋଇଗଲେ ଏବଂ କହିଲେ ଯେ–

"ମଜା ଦେଖିବା ପାଇଁ ଏକଥା କହିଛି । ନିଟାଟା କମ୍ୟୁନିଷ୍ଟ କଥା ପଡ଼ିଲେ ଏତେ ରାଗୁଛି ଯେ ତାକୁ ଆହୁରି ରଗେଇବା ପାଇଁ ମଜାରେ କହିଲି ।"

ତା'ପରେ ନିର୍ବୋଧର ଖଲଖଲ ହସ । ଏପରି ଲୋକ ଉପରେ ରାଗିବା ନିରର୍ଥକ । ସେହିଦିନଠାରୁ ନିଟା ସେ ଭଦ୍ରଲୋକଙ୍କ ସହିତ ଆଉ କଥା କହିନାହିଁ । ମାମୀ ବଡ଼ ଦୟାଳୁ । ମାଆର ହୃଦୟ ତାଙ୍କର । ଦୟା ଓ ସହାନୁଭୂତି ଯୋଗୁ ସେ ତାଙ୍କୁ କ୍ଷମା ଦେଲେ । ସେ ମୋତେ କହନ୍ତି–

"ଏପରି ଲୋକ କି ଓକିଲାତି କରିବ ? ଶୁଣୁଛି ତାର ସ୍ତ୍ରୀ ବହୁତ ଶିକ୍ଷିତା ଓ ସୁନ୍ଦରୀ । ସେ କିପରି ଏ ଲୋକ ପାଖରେ ଚଳିବ ?"

ପର ଜୀବନରେ ମୋର ସେ ଭଦ୍ରଲୋକଙ୍କ ସହିତ ଦେଖା ହୋଇଥିଲା । ତାଙ୍କ ସ୍ତ୍ରୀଙ୍କ ସହିତ ଆଳାପ ହୋଇଥିଲା । ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ସେ ଏହି ଘଟଣାଟି ମଜାକଥା ଭାବି କହିଛନ୍ତି । ତାଙ୍କ ସ୍ତ୍ରୀ ତାଙ୍କ ଆଗରେ ତାଙ୍କର ଏହିକଥା ପାଇଁ ମୋଠାରେ କ୍ଷମାଭିକ୍ଷା କରିଛନ୍ତି । ସ୍ତ୍ରୀ ତାଙ୍କର ଉଚ୍ଚ ଶିକ୍ଷିତା, ସୁନ୍ଦରୀ, ବିରାଟ ଧନୀ ଲୋକର ଏକମାତ୍ର କନ୍ୟା । ଶାସ୍ତ୍ରୀୟ ସଙ୍ଗୀତରେ ତାଙ୍କର ଅଗାଧ ଆଗ୍ରହ । ଶୁଣିଲି ସେ ଭଦ୍ରମହିଳା ତାଙ୍କୁ ଛାଡ଼ି ଆମେରିକାରେ ଯାଇ ରହିଗଲେ ।

ମୋର ସେହି ଘରେ ଅଢ଼େଇବର୍ଷର ରହଣିର ପ୍ରଥମ କେତେମାସ ଏପରି ମାନ, ଅଭିମାନ, ରାଗାରାଗି, ଦୁଇଟି ନଛୋଡ଼ବନ୍ଧା ବଳିଷ୍ଠ ବ୍ୟକ୍ତିତ୍ୱ ଭିତରେ ଆପୋଷହୀନ ସଂଘର୍ଷ

ଚାଲିଥିଲା । ତାପରେ ସବୁ ଶାନ୍ତ । ପରସ୍ପର ଭିତରେ ବୁଝାମଣା ହୋଇଗଲା । କେହି କାହାକୁ ନିୟନ୍ତ୍ରଣ କରିବାକୁ ଚାହିଁ ନଥିଲୁ । ଆମମାନଙ୍କ ଭିତରେ ସହୃଦୟତା ବଢ଼ିଉଠିଲା । ମାମୀ ସବୁଠୁ ବେଶି ଖୁସି ହୋଇଥିଲେ । ମୁଁ ତାଙ୍କର ଭାରତୀୟ ପୁଅ ହିସାବରେ ସେ ଅଞ୍ଚଳରେ ଓ ମାମୀଙ୍କ ବନ୍ଧୁବାନ୍ଧବଙ୍କ ଗହଣରେ ପରିଚିତ ହୋଇଗଲି । ମୁଁ, ମାମୀ ଓ ନିଟା ଶନିବାର ଦିନ ବଜାର କରିବାକୁ ଯାଉ । ଭିନ୍ନ ଭିନ୍ନ ଦୋକାନରୁ ନାନା ଜିନିଷ କିଣୁ । ଶ୍ରୀମତୀ ହାର୍ଭେଙ୍କର ଭାରତୀୟ ପୁଅ ବୋଲି ମୁଁ ଦୋକାନ ବଜାରରେ ପରିଚିତ ହେଲି । ଘରର ପୁଅ ହିସାବରେ ମୁଁ ରବିବାର ଦିନ ରନ୍ଧାଘର ଭିତରେ ଲୁଙ୍ଗି ପିନ୍ଧି ବସେ । ଆମ ଭିତରେ କୌଣସି ଆଦବ କାଇଦା କଥାବାର୍ତ୍ତା ଆଉ ହେଲାନାହିଁ କେବଳ ଧନ୍ୟବାଦ ଛଡ଼ା, ତାହା ମଧ୍ୟ ସବୁବେଳେ ନୁହେଁ । ରକ୍ଷଣଶୀଳ ଇଂରେଜ ପରିବାର ବ୍ୟବହାରରେ ଯେ ଏପରି ଲୌକିକତାହୀନ ହୋଇପାରିବେ, ଏ କଥା ମୋର ବିଶ୍ୱାସ ନଥିଲା । ସାଧାରଣ ଘରୋଇ କଥା, ଦେଶଜ ଭାଷାରେ ମନ୍ତବ୍ୟ, ମାନ ଅଭିମାନର କଥା ଅତି ମୁକ୍ତ ଭାବରେ ଆଦାନ ପ୍ରଦାନ ହେଲା । ଦୁଇଟି ସଂପୂର୍ଣ୍ଣ ଅଲଗା ସଂସ୍କୃତିର ଲୋକମାନଙ୍କ ଭିତରେ ଗଢ଼ି ଉଠୁଥିବା ମାନବୀୟ ସଂପର୍କରେ ବାହାରର ଆଦବ କାଇଦା ଛଡ଼ା ଯେ ଗଭୀର ମାନବିକ ଐକ୍ୟ, ସହାନୁଭୂତି ଓ ଆତ୍ମିକ ବୁଝାମଣା ରହିପାରେ; ଏହା ତାର ସ୍ପଷ୍ଟ ଉଦାହରଣ ।

ମୁଁ ନିୟମିତ ଭାବେ ମୋର ସାପ୍ତାହିକ ଖର୍ଚ୍ଚ ଦିଏ ସତ, କିନ୍ତୁ ତା ତୁଳନାରେ ମୁଁ ବହୁତ ଅଧିକ ସୁବିଧା ପାଏ । ସକାଳ ଓ ରାତି ଖିଆ ଏବଂ ରବିବାର ଦିନର ମଧ୍ୟାହ୍ନ ଭୋଜନ ପାଇଁ ମୁଁ ପଇସା ଦିଏ । କିନ୍ତୁ ଅନ୍ୟ ସମୟରେ ଭଲ ଜିନିଷ ରନ୍ଧା ହେଲେ କିମ୍ବା ସିନେମା ଥିଏଟର ଦେଖିବାର ଥିଲେ ମଧ୍ୟ ଭୋଜନ ପାଇଁ ମୋର ବନ୍ଦୋବସ୍ତ ହୋଇଯାଏ । ସନ୍ଧ୍ୟାରେ ସେମାନେ ରାନ୍ଧନ୍ତି, ମୁଁ ରନ୍ଧାଘରେ ବସି ଗପ କରେ ।

ମୁଁ ପତଳା ଥିଲି ବୋଲି ମୋତେ ମୋଟା କରିବା ପାଇଁ ମାମୀ ଓ ନିଟା ମୋତେ ବେଶୀ ଲହୁଣୀ ଦିଅନ୍ତି । ମୁଁ ସେମାନଙ୍କ ସହ ମିଶି ପୁରି ତିଆରି କରେ । ମାଛ ବେସର କରେ । ବଜାରରୁ ଭାରତୀୟ ମସଲା କିଣିଆଣେ । ମୁଁ ଭାରତୀୟ ରନ୍ଧା କିଛି ଜାଣି ନଥାଏ । ତଥାପି ସବୁ ପ୍ରକାର ମସଲା ମିଶାଇ, ପରିବା, ମାଛ କିମ୍ବା ମାଂସ ମିଶାଇ ଅଦ୍ଭୁତ ଧରଣର ଭାରତୀୟ ତରକାରୀ ହୁଏ । ସେମାନଙ୍କୁ ଏହା ଖୁବ୍ ଭଲ ଲାଗେ । ଖ୍ରୀଷ୍ଟମାସ ସମୟରେ ତାଙ୍କର ବନ୍ଧୁବାନ୍ଧବମାନେ ଆସନ୍ତି । ମୁଁ ମଧ୍ୟ ଏମାନଙ୍କ ସହିତ ସେମାନଙ୍କ ଘରକୁ ଯାଏ । ସେଠି ମଧ୍ୟ ଶ୍ରୀମତୀ ହାର୍ଭେଙ୍କର ଭାରତୀୟ ପୁଅ ହିସାବରେ ମୁଁ ବହୁତ ଆଦର ପାଏ ।

କ୍ରମେ କ୍ରମେ ସେମାନଙ୍କ ଘରର ଅନ୍ୟାନ୍ୟ ଗୁପ୍ତ ଇତିହାସ ମୋତେ ମାମୀ କହିବାକୁ ଲାଗିଲେ । ମୋତେ କୌଣସି କଥା ନ କହି ସେ ଯେପରି ରହିପାରନ୍ତି ନାହିଁ । ମୋ ବିନା ପରାମର୍ଶରେ ସେ ଆଗେଇପାରନ୍ତି ନାହିଁ । ନିଟା ବଡ଼ ବଦ୍‌ରାଗୀ ଓ ମିଜାଜୀ ଝିଅ ହୋଇଥିବାରୁ ତା ଆଗରେ ସେ ମନ ଖୋଲି କଥା କହିପାରନ୍ତି ନାହିଁ । ନିଟା ଓ ମାମୀର ଅତୀତ ଶୁଣିଲା ପରେ ସେମାନଙ୍କ ପ୍ରତି ମୋର ଆନ୍ତରିକତା ଓ କାରୁଣ୍ୟ ବହୁତ ବଢ଼ିଗଲା । ନିଟା ତାର କୋଡ଼ିଏ ବର୍ଷ ବୟସରେ ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ ପ୍ରଥମ ହେଲା ପରେ ହଲିଉଡ଼ ଯାଇଥିଲା ଗୋଟିଏ ଫିଲ୍ମରେ ଅଭିନୟ କରିବା ପାଇଁ । ସେଠାରେ ଫିଲ୍ମ ନିର୍ଦ୍ଦେଶକଙ୍କ

ସହିତ ଝଗଡ଼ା କରି ଅଧା ଫିଲ୍ମ କରି ଲଣ୍ଡନ ଫେରି ଆସିଥିଲା । ତାପରେ ଲଣ୍ଡନର ଜଣେ ପୁରୁଣା ଇଂରେଜ ଲର୍ଡ଼ ପରିବାରରେ ବିବାହ କଲା । ବିବାହର ଦୁଇବର୍ଷ ପରେ ସେମାନଙ୍କର କୃତ୍ରିମ ବ୍ୟବହାର ଓ ପାରିବାରିକ ଶଠତା ତଥା ଅଯଥା ବଡ଼ିମାରେ ସେ ଅତିଷ୍ଠ ହୋଇପଡ଼ିଲା ଏବଂ ଛାଡ଼ପତ୍ର ଦେଇ ଚାଲିଆସିଲା । ନିଜେ ଯେହେତୁ ଛାଡ଼ପତ୍ର ଦେଇଥିଲା, ତେଣୁ ସେ କୌଣସି ଭତ୍ତା ପାଇଁ ହକଦାର ନଥିଲା । ସେ ଗୀତିନାଟ୍ୟ ରଙ୍ଗମଞ୍ଚରେ ଅଭିନୟ କରି ବେଶ୍ କିଛି ରୋଜଗାର କରେ । ମାଆକୁ ସାହାଯ୍ୟ କରେ । ଏମାନେ ଜଣେ ଦି'ଜଣ ଅତିଥି ରଖି ସେଥିରେ ଚଳନ୍ତି । ମାମୀର ସମୟ ଏଥିରେ କଟିଯାଏ ।

କିଛିବର୍ଷ ପରେ ନିଟା ଜଣେ କର୍ଣ୍ଣେଲଙ୍କୁ ଭଲପାଇ ବସିଲା । ମୁଁ ସେ ଘରେ ପ୍ରଥମେ ପହଞ୍ଚିଲା ବେଳକୁ ନିଟାର ଏହି ପ୍ରେମ ଖୁବ୍ ଶୀର୍ଷ ସ୍ଥାନରେ ପହଞ୍ଚିଥାଏ । ସେହି କର୍ଣ୍ଣେଲ ଭଦ୍ରଲୋକ ସ୍କଟଲାଣ୍ଡର ଲୋକ । ସେଠାରେ ତାଙ୍କର ସ୍ତ୍ରୀ ଓ ଦୁଇଟି ପୁଅ ଥାଆନ୍ତି । ପୁଅମାନେ ସ୍କୁଲରେ ପଢ଼ନ୍ତି । କର୍ଣ୍ଣେଲଙ୍କ ବୟସ ୪୫ ହେବ । ନିଟାର ବୟସ ତିରିଶ । ସେ ଭଦ୍ରଲୋକ ସେତେବେଳକୁ ମଧ୍ୟ ପ୍ରାଚ୍ୟରେ ଥାଆନ୍ତି । ବର୍ଷରେ ଦୁଇଥର ଇଂଲଣ୍ଡ ଆସନ୍ତି । ନିଟା ଘରେ ରହନ୍ତି । ତା'ପରେ ଅଳ୍ପଦିନ ନିଜ ଘର ସ୍କଟଲ୍ୟାଣ୍ଡକୁ ଯାଇ ପିଲାଙ୍କ କଥା ବୁଝି ପୁଣି ମଧ୍ୟପ୍ରାଚ୍ୟକୁ ଫେରନ୍ତି । ଅଳ୍ପଦିନ ଭିତରେ ସେ ପ୍ରଥମ ସ୍ତ୍ରୀଙ୍କୁ ଛାଡ଼ପତ୍ର ଦେଇ ନିଟାକୁ ବିବାହ କରିବାର କଥା । କିନ୍ତୁ ସେ ଅଳ୍ପଦିନ କେବେ ସରିବ ସେଥିପାଇଁ ମାମୀ ବଡ଼ ବିବ୍ରତ ଥାନ୍ତି । ମୁଁ ଯିବାର ଦୁଇବର୍ଷ ପୂର୍ବରୁ ଏପରି ଚାଲିଛି । ତଥାପି କର୍ଣ୍ଣେଲଙ୍କର ସେ ଅଳ୍ପଦିନ ସରୁନାହିଁ । ଏହା ହେଉଛି ମାମୀଙ୍କର ଅଭିଯୋଗ । କିନ୍ତୁ ଏ ଅଭିଯୋଗ ନିଟା ଆଗରେ ସମ୍ଭବ ନୁହେଁ । ନିଟା ତ ପ୍ରତ୍ୟେକ କାର୍ଯ୍ୟ ଅତି ଗଭୀର ଆବେଗର ସହିତ ବହୁ ଅତିରଞ୍ଜିତ କରି କରେ । ନିଟା ତାଙ୍କୁ ଏପରି ଗଭୀର ଭାବରେ ପ୍ରାଣଦେଇ ଭଲପାଏ ଯେ ସେ ଆସିବାର କିଛିଦିନ ଆଗରୁ ତା ନିଜ ପାଇଁ ନୂଆ ନୂଆ ପୋଷାକ ତିଆରି କରେ, ଘରକୁ ନୂଆ ପ୍ରକାରର ସଜାଏ, କାନ୍ଥରେ ନୂଆ ରଙ୍ଗ ନିଜେ ନିଜେ ଦିଏ । ଆଉ ଜଣଙ୍କ ପାଖରେ ଏ ପ୍ରକାର ଗଭୀର ଭାବରେ ଆତ୍ମସମର୍ପଣ ନିଟା ଯେ କରିପାରେ, ଏହା ମୋ ପକ୍ଷରେ ଗୋଟିଏ ଅତି ଆଶ୍ଚର୍ଯ୍ୟଜନକ ବିଷୟ ହୋଇ ରହିଥାଏ । ନିଟା ତାର ଔଦ୍ଧତ୍ୟ, ଗର୍ବ ଓ ବଦ୍‌ରାଗୀ ବ୍ୟବହାର ସବୁ ସେହି କେତେଦିନ ଭୁଲିଯାଏ । ସେ ଆଉ ଗୋଟିଏ ନୂତନ ବ୍ୟକ୍ତିରେ ପରିଣତ ହୋଇଯାଏ । ଗୁଣ୍ଡୁଚି ମୂଷା ପରି ଖାଲି ଦୌଡ଼ୁଥାଏ । ଏହି ଖୋଲାମନ ଭିତରେ ଆମ ସମସ୍ତଙ୍କୁ ମଧ୍ୟ ଆହୁରି ବେଶି ଆପଣାର କରିନିଏ ।

କୌଣସି ଯୁକ୍ତିଯୁକ୍ତ କାରଣ ନ ଥାଇ ମଧ୍ୟ ମୋତେ କାହିଁକି ଏହି ଭଦ୍ରଲୋକଙ୍କୁ ଆଦୌ ଭଲ ଲାଗିଲା ନାହିଁ । ପ୍ରଥମ ଦେଖାରେ ହିଁ ତାଙ୍କ ପ୍ରତି ମୋର ଭଲ ଧାରଣା ହେଲାନାହିଁ । ସେ ଅତି ବେଶି ଚାଲାକ ତଥା ଧୂର୍ତ୍ତ ବୋଲି ମୋର ମନେହେଲା । ଏଥିରେ ମୁଁ ଓ ମାମୀ ଏକମତ । ମାମୀ ତାକୁ ଘୃଣା କରନ୍ତି । ଏ ବିଷୟରେ ମୁଁ ଓ ମାମୀ ଅନବରତ ଗପ କରୁ । କିନ୍ତୁ ନିଟା ଆଗରେ ତାକୁ ସମାଲୋଚନା କରିବା ସମ୍ଭବ ନୁହେଁ । ସେ ତାଙ୍କୁ ଏତେ ଭଲ ପାଉଥିଲା ଯେ ତା ବିରୁଦ୍ଧରେ ସାମାନ୍ୟ ମାତ୍ର କଥା ସେ ବରଦାସ୍ତ କରିପାରେ ନାହିଁ । ଅଳ୍ପ ସମୟ ଦୁଇ ତିନି ବର୍ଷରେ ପରିଣତ ହୋଇଯାଇଥିଲେ ମଧ୍ୟ ନିଟା ତାଙ୍କୁ ଅବିଶ୍ୱାସ କରିପାରୁନଥିଲା । ମାମୀ ଓ ମୁଁ କିନ୍ତୁ ଭାବୁଥିଲୁ ଯେ ନିଟା ଦିନେ ନା ଦିନେ ଠକାମିରେ ପଡ଼ିବ ।

ସତକୁ ସତ ଏହା ଘଟିଲା । ମୁଁ ରହିବାର ପ୍ରାୟ ଦୁଇବର୍ଷ ପରେ ହଠାତ୍ ନିଟା ମନରେ ତାଙ୍କ ପ୍ରତି ସନ୍ଦେହ ହେଲା । ନିଟାର ସନ୍ଦେହ ଅର୍ଥ ବିଶୁବୀୟସ ଆଗ୍ନେୟଗିରିର ଭୂଗର୍ଭ ଯେପରି ଆନ୍ଦୋଳିତ ହୋଇଉଠିଲା ! କିନ୍ତୁ ସେ ଏତେ ବେଶି ସ୍ୱାଭିମାନିନୀ ଯେ ଏହା ଆମ ଆଗରେ ପ୍ରକାଶ କରିବା ତା ପକ୍ଷରେ ଅସମ୍ଭବ । ମୁଁ ଓ ମାମୀ ଏ ବିଷୟରେ କୌଣସି ମନ୍ତବ୍ୟ ନ ଦେଇ ଗୋପନରେ କେବଳ ମୃଦୁ ହାସ କରି ଅଲଗା ହୋଇଯାଉ । ଅତ୍ୟନ୍ତ ସମ୍ବେଦନଶୀଳ ଓ ବୁଦ୍ଧିମତୀ ନିଟା ଯେ ଆମର ମନୋଭାବ ବିଷୟରେ ନ ବୁଝିଛି ତାହା ନୁହେଁ । କିନ୍ତୁ ସେ କର୍ଣ୍ଣେଲଙ୍କ ବିଷୟରେ କିଛି କହେନାହିଁ କି ଆମେ ତାଙ୍କ ବିଷୟରେ ନିଟା ଆଗରେ କିଛି ଆଲୋଚନା କରୁ ନଥାଉ । ଏ ବିଷୟରେ ଯେପରି ଆମ ଭିତରେ ନୀରବ ବୁଝାମଣା ହୋଇଯାଇଥାଏ । ଆମେମାନେ କିନ୍ତୁ ନିଟାର ଭବିଷ୍ୟତ ବିଷୟରେ ବହୁତ ଉଦ୍‌ବିଗ୍ନ ଥିଲୁ । ଆମର ଦୃଢ଼ ଧାରଣା ହୋଇଥିଲା ଯେ କର୍ଣ୍ଣେଲ ଆଦୌ ଭଲ ଲୋକ ନୁହନ୍ତି ଏବଂ ସେ ନିଟା ପାଇଁ କଦାପି ଉପଯୁକ୍ତ ନୁହନ୍ତି । ଏହି ପ୍ରତିଭାଶାଳିନୀ ତଥା ସରଳ ଭଦ୍ରମହିଳାର ଜୀବନ କଣ ଏପରି ଭାବରେ ନଷ୍ଟ ହୋଇଯିବ ? ଏ ନାରୀ ଯାହାକୁ ଭଲପାଏ ତାକୁ ପ୍ରାଣ ଦେଇ ଭଲପାଏ । ଯେଉଁ ଶକ୍ତି ପୃଥିବୀ ଫଟାଇ ଆଗ୍ନେୟଗିରିର ଉଦ୍‌ଗୀରଣ ସୃଷ୍ଟି କରିପାରେ, ସେହି ଶକ୍ତି ଭଲ ପାଇବାରେ ପରିଣତ ହୋଇଗଲେ କି ଅଦ୍ଭୁତ ପ୍ରେମ ସମ୍ଭବ ହେବ ତାହା ସହଜରେ ଅନୁମେୟ ।

କର୍ଣ୍ଣେଲ ସହଜରେ ନିଟାର ଏହି ଗଭୀର ଆନ୍ତରିକତା ବୁଝିପାରିବ ? ତାର ପ୍ରତିଭାକୁ ପସନ୍ଦ କରିପାରିବ ? ଏ ପ୍ରକାର ସନ୍ଦେହ ମୋ ମନରେ ବରାବର ଥାଏ । ଦିନେ ରାତି ୧୦ଟାରେ ମୋତେ ନିଟା ଡାକିଲା ବାହାରକୁ ବୁଲି ଯିବା ପାଇଁ । ଡିସେମ୍ବର ମାସ, ଚାରିଆଡ଼େ ବରଫ ପଡୁଥାଏ, ରାସ୍ତା ସଂପୂର୍ଣ୍ଣ ଜନଶୂନ୍ୟ । ଏପରି ରାତିରେ ବୁଲିଯିବା ପାଇଁ ବାହାରିବା ନିଶ୍ଚିତ ଭାବରେ ଗୋଟିଏ ଅଦ୍ଭୁତ ଖିଆଲ । ତା'ଛଡ଼ା ରାତିରେ ବୁଲିଯିବା ଅଭ୍ୟାସ ତାର ନଥିଲା । ତେଣୁ ମାମୀ ଓ ମୁଁ ଆଶ୍ଚର୍ଯ୍ୟ ହୋଇଗଲୁ । ସେ ଓ ମୁଁ ମୋଟା ମୋଟା ଓଭର କୋଟ୍ ପିନ୍ଧି ବାହାରକୁ ବାହାରିଲୁ । ସେତେବେଳକୁ ନିଟା ମୁହଁର ଚେହେରା ସଂପୂର୍ଣ୍ଣ ବଦଳି ଯାଇଥିଲା । ତା ମୁହଁକୁ ଦେଖି ମୁଁ ପ୍ରକୃତରେ ଡରିଗଲି । ହଠାତ୍ ଭୂମିକମ୍ପ ଆରମ୍ଭ ହୋଇଯିବ କି ? ମୋ ମନରେ ସନ୍ଦେହ ହେଲା ଯେ ନିଟା ନିଶ୍ଚିତ ଭାବରେ କର୍ଣ୍ଣେଲକୁ ସନ୍ଦେହ କରୁଛି । କିନ୍ତୁ ବାହାରକୁ ଯିବାର ଉଦ୍ଦେଶ୍ୟ କ'ଣ ମୁଁ ବୁଝିପାରୁ ନଥାଏ । ଦୁହେଁ କିଛି ସମୟ ନିରବ ଭାବରେ ତୁଳା କୁଢ଼ ପରି ଜମା ହୋଇଥିବା ବରଫାବୃତ ରାସ୍ତାରେ ଚାଲିଲୁ । କେହି କାହାରିକୁ କଥା କହିବା ଦୂରେ ଥାଉ, କେଜାଣି କାହିଁକି ପରସ୍ପର ମୁହଁକୁ ଚାହିଁବାର ସାହସ ମଧ୍ୟ ଆମ ଦୁଇଜଣଙ୍କର ନଥିଲା ।

କିଛି ସମୟ ପରେ ନିଟା ହଠାତ୍ ରାସ୍ତା କଡ଼ରେ ଥିବା ଗୋଟିଏ ସର୍ବସାଧାରଣ ଟେଲିଫୋନ୍ ବୁଥ୍ ଆଗରେ ଠିଆ ହେଲା । ଅଳ୍ପ ସମୟ ପରେ ସେ ଭିତରକୁ ଗଲା ଏବଂ ମୋତେ ମଧ୍ୟ ତା ଭିତରକୁ ଡାକିଲା । କହିଲା—

''ମୁଁ କର୍ଣ୍ଣେଲର ସ୍କଟ୍‌ଲାଣ୍ଡ ଘରକୁ ଫୋନ୍ କରି ବୁଝିବି ଯେ ସେ ସେଠାରେ ଅଛି କି ନାହିଁ । ମୋର ସନ୍ଦେହ ହେଉଛି ଯେ କର୍ଣ୍ଣେଲ ମୋତେ କିଛି ଖବର ନ ଜଣାଇ ମଧ୍ୟ ପ୍ରାଚ୍ୟରୁ ଆସି ଲଣ୍ଡନ ବାଟେ ସ୍କଟଲାଣ୍ଡ ଯାଇଛି ଏବଂ ସେ ତା ଘରେ ଅଛି ।''

ମୁଁ ଅବାକ୍ ହୋଇ ପଚାରିଲି–

"ତୁମର ଏପରି ସନ୍ଦେହ କାହିଁକି ହେଉଛି ? ତୁମେ ତ କହୁଥିଲ ସେ ଆସନ୍ତା ମାସରେ ଆସିବେ।"

ନିଟା କିନ୍ତୁ ସ୍ଥିର ନିଶ୍ଚିତ ଥିଲା ଯେ ତାର ସନ୍ଦେହ ଠିକ୍। ସେ ଘରେ ମାମୀ ଆଗରେ ଟେଲିଫୋନ୍ ନ କରି ବାହାର ଟେଲିଫୋନ୍ ବୁଥ୍‌କୁ ଆସିଥାଏ ଟେଲିଫୋନ୍ କରିବା ଉଦ୍ଦେଶ୍ୟରେ। ମୁଁ ଖାଲି ମନେ ମନେ ଭାବୁଥାଏ ଯେ ନିଟା ସନ୍ଦେହ କିପରି ଭୁଲ୍ ହୁଅନ୍ତା ! କାରଣ ନିଟାର ମାନସିକ କ୍ରିୟାଶକ୍ତି ରହିତାବସ୍ଥା ପାଇଁ ମୁଁ ଆଦୌ ପ୍ରସ୍ତୁତ ନଥିଲି। ଏ ପ୍ରକାର ଭୟଙ୍କର ପରିସ୍ଥିତିରେ ତାର କ'ଣ ହେବ ଏବଂ ଆମେମାନେ ତାକୁ କିପରି ଶାନ୍ତ କରିବୁ, ଏହା ଆମର ଶକ୍ତିର ବାହାରେ ବୋଲି ମୁଁ ଭାବୁଥାଏ– ଯଦିଚ ମୁଁ ଆନନ୍ଦିତ ହୋଇଥାନ୍ତି ନିଟା ଜୀବନରୁ କର୍ଣ୍ଣେଲ ଯଦି କ୍ରମେ କ୍ରମେ ଅପସରି ଯାଇଥାନ୍ତା।

ନିଟା ଫୋନ୍ କଲା। ତାର ସନ୍ଦେହ ଠିକ୍। କର୍ଣ୍ଣେଲ ଆଠଦିନ ହେଲା ଘରେ ଅଛି ଅଥଚ ନିଟାକୁ ସଂପୂର୍ଣ୍ଣ ଭାବେ ପ୍ରତାରିତ କରିଛି। ତାର ସମସ୍ତ କ୍ରିୟାକଳାପ ନିଟାଠାରୁ ଗୋପନରେ ରଖିଛି। ନିଟା ଏହି ଖବର ପାଇଲା ପରେ ତା ହାତରୁ ଟେଲିଫୋନ୍‌ଟି ଖସିପଡ଼ିଲା। ସେ ଟେଲିଫୋନ୍ ବୁଥ୍ ଭିତରେ ବସିପଡ଼ିଲା। ଗୋଟିଏ ସାମାନ୍ୟ ଶବ୍ଦ ମଧ୍ୟ ତା ପାଟିରୁ ବାହାରିଲା ନାହିଁ। ସେ ନିଶ୍ଚଳ, ନିର୍ବେଦ, ନିର୍ବାକ ପ୍ରାଣହୀନ ସ୍ଥାଣୁଟିଏ ପରି ସେହି ଛୋଟିଆ ବୁଥ୍ ଭିତରେ ସେହିପରି ରହିଲା। ମୋର ମଧ୍ୟ ସାହାସ ନ ଥିଲା ତାକୁ ପ୍ରବୋଧନା ଦେବା ପାଇଁ– ତାକୁ ଶାନ୍ତ କରିବା ପାଇଁ। ସେ ତ ସେତେବେଳେ ଅତ୍ୟଧିକ ପରିମାଣରେ ଶାନ୍ତ। ବାହାରର ସ୍ତୂପୀକୃତ ଧଳା ବରଫ ଗଦା ଭିତରେ ଥିବା ଛୋଟିଆ ଟେଲିଫୋନ୍ ବୁଥ୍ ଭିତରେ ସେ ଯେପରି ବାହାରର ବରଫ ପରି ଜମାଟ୍ ବାନ୍ଧି ଯାଇଥିଲା ! ତେଣୁ ତାର ସାନ୍ତ୍ୱନାର ଆବଶ୍ୟକତା ଯେପରି ନଥିଲା।

ଲଣ୍ଡନର ନିର୍ଜନ ରାସ୍ତାର ଜନ ମାନବଶୂନ୍ୟ ଗୋଟିଏ କାଠ ବାକ୍ସ ଭିତରେ ଏପରି ଗୋଟିଏ ଦୁଃଖରେ ମ୍ରିୟମାଣ ରମଣୀ ପାଖରେ ମୁଁ ଖୁଣ୍ଟି ପରି ଠିଆ ହୋଇଥାଏ। ତାର ଜମାଟବନ୍ଧା ଦୁଃଖ ମୋ ଜୀବନକୁ ସଂକ୍ରମିତ କରିଦେଇଥିଲା। କେତେ ସମୟ ଏପରି ବିତିଗଲା ପରେ ମୁଁ ତାର ହାତ ଧରି ଉଠାଇଲି। ଟେଲିଫୋନ୍ ବୁଥ୍ ଭିତରୁ ବାହାର କରି ଆଣିଲି ଏବଂ ଘରଆଡ଼େ ତା ହାତ ଧରି ଚାଲିଲି। ନିର୍ବୋଧ ଓ ଅସହାୟ ଶିଶୁଟି ପରି ବିନା ବାକ୍ୟରେ, ବିନା ପ୍ରତିରୋଧରେ, ବିନା ପ୍ରଶ୍ନରେ ମୋ ସହିତ ଗୋଟିଏ ହାଲୁକା ଫୁଲଡାଳ ପରି ସେ ଚାଲିଥାଏ। ଘରେ ପହଞ୍ଚିଲା ବେଳକୁ ମାମୀ ଶୋଇଲେଣି। ମୁଁ ନିଟାକୁ ମାମୀର ଶୋଇବା ଘରେ ଛାଡ଼ିଦେଲି। ସେ ବାଧ୍ୟ ଶିଶୁଟି ପରି ବିଛଣାରେ ପଡ଼ିଗଲା। ମୁଁ ଶୋଇବାକୁ ଗଲି। ସେ ରାତିରେ ମୁଁ ଆଦୌ ଶୋଇପାରି ନଥିଲି। ନିଟାର ଏହି ପ୍ରେମ ବ୍ୟାପାରରେ ଭବିଷ୍ୟତରେ ଏପରି କିଛି ହେବ ବୋଲି ମୋର ଦୃଢ଼ ଧାରଣା ଥିଲା। କିନ୍ତୁ ଏପରି ଅପ୍ରତ୍ୟାଶିତ ଓ କରୁଣ ଭାବରେ ଯେ ହଠାତ୍ ଏହାର ଶେଷ ଯବନିକାପାତ ହେବ, ଏହା ମୋ କଳ୍ପନାର ବାହାରେ ଥିଲା।

ପ୍ରାୟ ତିନିଚାରି ମାସ ଧରି ନି ମାନସିକ ନିଷ୍କ୍ରିୟତା ରହିଲା। ସେ କୌଣସି କାମ ମନଦେଇ କରେ ନାହିଁ, କଥା ବେଶି କହେ ନାହିଁ, କାଁ ଭାଁ ହସିଲେ ତାହା ଡାହାଣୀ

ଆଲୁଅ ପରି ମଳିନ ଓ କରୁଣ ଦେଖାଯା । ମାମୀ ଓ ନିଟା ମୋ ଉପରେ ବହୁତ ନିର୍ଭର କଲେ । ନିଟାକୁ ବହୁତ ବୁଝାଇଲି । ତା ସାଙ୍ଗରେ ପାର୍କରେ ବସିଲାବେଳେ, ଖାଇଲାବେଳେ, ଅନ୍ୟାନ୍ୟ ଆଦର୍ଶ କଥା କହି ତା ମନକୁ ବୁଝାଇବାକୁ ଚେଷ୍ଟା କଲି । ତାକୁ ବହୁତ ଦମ୍ଭ ଦେଲି । ତା'ର ପୂର୍ବ ଦର୍ପ ଓ ଔଦ୍ଧତ୍ୟ ଫେରାଇ ଆଣିବାକୁ ଉଦ୍ୟମ କଲି । ଅଦ୍ଭୁତ ନାରୀ ସେ । ସବୁ କ୍ଷେତ୍ରରେ ସେ ବଳିଷ୍ଠ । ଭଲ ପାଇବାରେ ଯେପରି ଶ୍ରେଷ୍ଠ ଓ ମହତ୍, ଜୀବନ ସଂଗ୍ରାମରେ ପରାସ୍ତ ହୋଇଯିବାରେ ତା'ର ସେପରି ଅପରିମେୟ ବେଦନା । ସେ ଯେପରି ତୀବ୍ର ଭାବରେ ଭୂମିକମ୍ପ ସୃଷ୍ଟି କରିପାରେ, ସେହିପରି ସଂପୂର୍ଣ୍ଣ ରୂପେ ନିଜକୁ ଅବଶ ଓ ଶିଥିଳ କରିଦେଇପାରେ । ଅଦ୍ଭୁତ ଶାରୀରିକ ଓ ମାନସିକ ଉପାଦାନରେ ସେ ଯେପରି ତିଆରି । ଜୀବନରେ ଏପରି ଆଉ ଜଣେ ବ୍ୟକ୍ତିକୁ ଦେଖିବା ମୋ ପକ୍ଷରେ ସମ୍ଭବ ହୋଇନାହିଁ ।

x x x x x x x

ବେଳେ ବେଳେ ଆମ ଘରକୁ ଜଣେ ଅତି ଆଦର୍ଶବାଦୀ, ବୁଦ୍ଧିଜୀବୀ ଲେଖକ ଆସନ୍ତି । ସେ ନାଟକ ଲେଖନ୍ତି, ତାଙ୍କର ନାଟକ ରଙ୍ଗମଞ୍ଚରେ ଅଭିନୀତ ହୁଏ । ସେ ଅତ୍ୟନ୍ତ ଭଦ୍ର, ମାର୍ଜିତ ଓ ସଂସ୍କୃତି ସମ୍ପନ୍ନ । କାଳେ ତାଙ୍କ ଭାଷାରେ କେହି ଅପମାନିତ ହୋଇଯିବ ଏପରି ଏକ ଧାରଣା ବୋଧ ହୁଏ ତାଙ୍କ ମନରେ କାମ କରୁଥାଏ । ତେଣୁ ସେ ଅଳ୍ପ କଥା କହନ୍ତି ଏବଂ ତାକୁ ବଡ଼ ମାର୍ଜିତ ଭାଷାରେ ପ୍ରକାଶ କରନ୍ତି । ସେ ଭଦ୍ରଲୋକ ଜଣେ ବାମପନ୍ଥୀ ବୁଦ୍ଧିଜୀବୀ । ସେ ଏପରି ଆଦର୍ଶବାଦୀ ଯେ ତାଙ୍କ ଭଉଣୀ ଅଳ୍ପ ବୟସରେ ବିଧବା ହୋଇଯିବାରୁ ଭଉଣୀଙ୍କୁ ଏବଂ ତାଙ୍କର ପିଲାଙ୍କୁ ଆଣି ପାଖରେ ରଖି ପଢ଼ାନ୍ତି । ସେମାନେ ଜୀବନରେ ଥଇଥାନ ନହେଲା ଯାଏ ସେ ବିବାହ ନ କରିବା ପାଇଁ ସ୍ଥିର କରିଥାନ୍ତି । ଇଂଲଣ୍ଡରେ ଏ ପ୍ରକାର ଆଦର୍ଶବାଦୀ ଲୋକ ବହୁତ କମ୍ ମୁଁ ଦେଖିଛି । ତାଙ୍କୁ ଦେଖି ମୋର ମନେହେଲା ଯେ ସାଂସ୍କୃତିକ ପାର୍ଥକ୍ୟ ସତ୍ତ୍ୱେ ସାର୍ବଜନୀନ ମାନବତ୍ୱ କିପରି କାମ କରୁଛି । ମୋ ଆଖିରେ ସେ ଥିଲେ ଜଣେ ମହାନ୍ ଆଦର୍ଶ ପୁରୁଷ । ମୋତେ ତାଙ୍କୁ ବହୁତ ଭଲ ଲାଗେ । ସେ ନିଟାର ପ୍ରତିଭାକୁ ବହୁତ ପ୍ରଶଂସା କରନ୍ତି । ମୋ ମନ ଭିତରେ ଥାଏ ଯେ ଏ ଭଦ୍ରଲୋକଙ୍କୁ ଯଦି ନିଟା ବାହା ହୁଅନ୍ତା, ତେବେ କେତେ ଭଲ ହୁଅନ୍ତା ଦୁଇଜଣଙ୍କର ! ଜଣେ ନାଟକ ଲେଖନ୍ତା, ଆଉ ଜଣେ ସେଥିରେ ଅଭିନୟ କରନ୍ତା । କେତେ ଆନନ୍ଦରେ ଦୁଇଜଣ ରହନ୍ତେ । ଗୋଟିଏ ପ୍ରତିଭା ସହିତ ଅନ୍ୟ ଏକ ପ୍ରତିଭାର ମିଳନରେ ଅଭିନବ ସୃଜନଶୀଳତାର ପରିପ୍ରକାଶ ଘଟନ୍ତା । ପ୍ରତିଭା ଥିବା ନିଟା ପରି ରମଣୀ ସହିତ ସେନାବାହିନୀର କର୍ଣ୍ଣେଲ ଆଦୌ ଶୋଭା ପାଏନା ବୋଲି ମୋର ଧାରଣା ଥିଲା ।

ମାମୀଙ୍କୁ ନିଭୃତରେ ଏ କଥା ମୁଁ କହିଥିଲି । ମାମୀ ମୋ କଥାକୁ ପସନ୍ଦ କଲେ କିନ୍ତୁ ତାଙ୍କ ମତରେ ଏହା ସମ୍ଭବ ନୁହେଁ— କାରଣ ନିଟା ହେଉଛି ସଂପୂର୍ଣ୍ଣରୂପେ ରକ୍ଷଣଶୀଳ ଦକ୍ଷିଣପନ୍ଥୀ ଅଥଚ ସେ ଭଦ୍ରଲୋକ ହେଉଛନ୍ତି ଜଣେ ଦୃଢ଼ପ୍ରତିଜ୍ଞ ବାମପନ୍ଥୀ । ମୁଁ ଏହା ଜାଣିଥିଲେ ମଧ୍ୟ ମୋ ମନ ଭିତରେ କାହିଁକି ଏ କଥାଟି ସବୁବେଳେ ଉଙ୍କି ମାରୁଥାଏ ।

ଯେତେବେଳେ ସେ ଭଦ୍ରଲୋକଙ୍କ ସହିତ ମୋର ଦେଖାହୁଏ, ମୁଁ ତାଙ୍କ ଆଗରେ ନିଟାର ଉଚ୍ଚ ପ୍ରଶଂସା କରେ ଏବଂ ନିଟା ଆଗରେ ମଧ୍ୟ ବହୁତ ମୋଲାୟମ୍ ଭାବରେ ଭଦ୍ର

ଲୋକଙ୍କର ଗୁଣ ଗାରିମା ବର୍ଣ୍ଣନା କରେ । ଖାଲି କହେ ଯେ ଏହି ଆଦର୍ଶବାଦୀ ନିଃସ୍ୱାର୍ଥପର ଭଦ୍ରଲୋକଙ୍କୁ ଯିଏ ବାହାହେବ ସିଏ ନିଶ୍ଚିତ ଭାବରେ ଜୀବନରେ ସୁଖୀ ହେବ ।

ନିଟାର ପ୍ରେମ ବିଚ୍ଛେଦ ପରେ ସେ ଭଦ୍ରଲୋକଙ୍କ ଘରକୁ ନିଟାକୁ ନେଇଯାଏ, ତାଙ୍କୁ ମଧ ଫୋନ୍ କରି ଆମ ଘରକୁ ଡାକେ । ତାଙ୍କର ଭଉଣୀ ଓ ଭଣଜାମାନଙ୍କ ପ୍ରତି ଚରମ ସ୍ୱାର୍ଥ ତ୍ୟାଗ କଥା ନିଟାକୁ କହେ । କ୍ରମେ ନିଟା ମୋଠାରୁ ତାଙ୍କର ପ୍ରଶଂସା ଶୁଣିବାକୁ ଭଲ ପାଇଲା । ତା'ଛଡ଼ା ବାମପନ୍ଥୀ ଦର୍ଶନ କିପରି ପୃଥିବୀ ପକ୍ଷରେ ଓ ସାରା ବିଶ୍ୱର ଜନତା ପାଇଁ ମଙ୍ଗଳକର, ସେ କଥା ନାନା ଉପାୟରେ ନାନା ଉଦାହରଣ ଦେଇ ମଝିରେ ମଝିରେ ନିଟାକୁ ମୁଁ ବୁଝାଏ । ଏ ଆଦର୍ଶବାଦ ଭିତରେ କିପରି ଆନ୍ତର୍ଜାତିକ ସୌହାର୍ଦ୍ଧ୍ୟ, ମାନବୀୟତା ଯୁଗଯୁଗ ଧରି ମନୁଷ୍ୟ ସ୍ୱପ୍ନର ବିଶ୍ୱଶାନ୍ତି ଇତ୍ୟାଦି ମହତ୍‌ଗୁଣ ରହିଛି ସେ ବିଷୟରେ କୁହେ । ପ୍ରଥମେ ପ୍ରଥମେ ନିଟା ତୀବ୍ର ପ୍ରତିକ୍ରିୟା ପ୍ରକାଶ କରୁଥିଲା, କିନ୍ତୁ ମୁଁ ଏଥିରେ ଦବି ଯାଉନଥିଲି । ପ୍ରସଙ୍ଗକ୍ରମେ ସେହି କଥା ମୁଁ ବାରମ୍ବାର ପକାଏ । ଦେଖିଲି, କାଳକ୍ରମେ ନିଟା ମୋ କଥା ଶୁଣିଲା, ବିଶେଷତଃ ତାର ଏହି ମାନସିକ ବିପର୍ଯ୍ୟୟ ସମୟରେ ମୋ କଥା ମନ ଦେଇ ଶୁଣେ । ନାନା ପ୍ରଶ୍ନ ମଧ ପଚାରେ । ମୋତେ ନ ଜଣାଇ ମୋ ଟେବୁଲ୍‌ରେ ଥିବା ମାନବିକତାବାଦ ବିଷୟରେ ବହିସବୁ ପଢ଼େ । ସେ ମୋ ଆଗରେ ମାନିବାକୁ ସଙ୍କୋଚବୋଧ କଲେ ସୁଦ୍ଧା ତାର ଏଥିରେ ଆଗ୍ରହ ଜନ୍ମିବାର ମୁଁ ଲକ୍ଷ୍ୟ କରିଥିଲି । ମୁଁ ସେତେବେଳକୁ ଡକ୍ଟରେଟ୍ ପାଇଁ ପ୍ରବନ୍ଧ ପଠାଇ ସାରିଥିଲି । କେବଳ ମୌଖିକ ସାକ୍ଷାତ ପାଇଁ ଅପେକ୍ଷା କରିଥାଏ । ତେଣୁ ମୋର ବହୁତ ସମୟ ଥିଲା । ନିଟାକୁ ଆଶ୍ୱାସନା ଦେଲାବେଳେ, ବହୁ ଆଦର୍ଶବାଦ କଥା କହିଲା ସମୟରେ ମୋର ଆନ୍ତରିକ ଇଚ୍ଛା ଥିଲା– ବିଚାରୀ ନିଟା କିପରି ବଦଳି ଯାଆନ୍ତା ଓ ସେହି ବାମପନ୍ଥୀ ଭଦ୍ରଲୋକଙ୍କୁ ବିବାହ କରନ୍ତା ।

ମୋର ଏହି ଆନ୍ତରିକ ଇଚ୍ଛା କିଛିଦିନ ପରେ ଫଳବତୀ ହେଲା । ସେ ବାମପନ୍ଥୀ ଲେଖକଙ୍କୁ ନିଟା ବିବାହ କରିଛି । ବଡ଼ ଆନନ୍ଦରେ ଅଛି । ସେମାନେ ଲଣ୍ଡନର ରିଚ୍‌ମଣ୍ଡ ନଇରେ ଗୋଟିଏ ଡଙ୍ଗା ଘର କିଣିଛନ୍ତି । ସେହିଠାରେ ରହୁଛନ୍ତି । ପ୍ରାୟ ସବୁଦିନେ ମାମୀ ଘରକୁ ଯାଆନ୍ତି । ସେତେବେଳେ ଗୋଲଡରସ୍ ଗ୍ରୀନ୍ ଘରକୁ ବିକ୍ରି କରି ରିଚ୍‌ମଣ୍ଡରେ ନୂଆ ଘର କିଣିଥାନ୍ତି । ସବୁଠୁ ଆଶ୍ଚର୍ଯ୍ୟର ଘଟଣା ଯେ ନିଟା କମ୍ୟୁନିଷ୍ଟ ପାର୍ଟିର ସଭ୍ୟା ହୋଇଛି ଏବଂ ଗୋଟିଏ ଅଞ୍ଚଳର ଦଳୀୟ ସେକ୍ରେଟାରୀ ହୋଇଛି ! ଏହା ହେଉଛି ତା ଜୀବନରେ ନିଶ୍ଚୟ ଗୋଟିଏ ଚରମ ବିପରୀତଧର୍ମୀ ପରିବର୍ତ୍ତନ । ନିଟା ଜୀବନରେ କିନ୍ତୁ ଏହା ସମ୍ଭବ । ତା ଜୀବନ ପ୍ରକୃତରେ ଗୋଟିଏ ଉପନ୍ୟାସ ପରି ଲାଗେ ।ଏପରି ଜଣେ ଅଦ୍ଭୁତ ଧରଣର ଚରିତ୍ର ବିଷୟରେ ଲେଖିବା ଲାଗି ମୋର ଯୁବକ ବନ୍ଧୁ ଗିରିଜା କୁମାର ବଳୀୟାର ସିଂହଙ୍କ ଅନୁରୋଧ ଫଳରେ ମୋ ଦ୍ୱାରା 'ସାଗର ସେପାରେ' ଶୀର୍ଷକ ଗୋଟିଏ ଭ୍ରମଣ ଉପନ୍ୟାସ ଲେଖା ହୋଇ ପ୍ରକାଶ ପାଇଛି ।

X X X X X X

ମୋର ଫେରିବା ସମୟ ଯେତିକି ପାଖେଇ ଆସିଲା ଆମ ସମସ୍ତଙ୍କ ଭିତରେ ଗୋଟିଏ ବିଷଣ୍ଣତାର ଛାଇ ସେତିକି ଘେରି ରହିଲା । କେହି କାହାରିକୁ ଯେପରି ଛାଡ଼ି ଦେବାକୁ ନାରାଜ । ଅଢ଼େଇବର୍ଷର ମମତା—ସେ ପୁଣି ନାନା ଘାତ, ପ୍ରତିଘାତ, ମାନ, ଅଭିମାନ, ସ୍ନେହ, ସହାନୁଭୂତି ଭିତର ଦେଇ ଗଢ଼ି ଉଠିଥିବା ମମତା, ମାନବୀୟ ଆକର୍ଷଣ ବିଦାୟ ସଂଭାବନାରେ ଆମମାନଙ୍କୁ ଉଦାସ କରିଦେଲା । ଫେରିବାର ପନ୍ଦର ଦିନ ପୂର୍ବରୁ ନିଟାର ଆଦେଶ ଯେ ଶେଷ ସପ୍ତାହରେ

ମୁଁ ଆଉ କୁଆଡ଼େ ଯିବି ନାହିଁ, ଖାଲି ଘରେ ରହିବି, ବାହାରର ସବୁ ବିଦାୟକାଳୀନ କାର୍ଯ୍ୟ ତା' ଆଗରୁ ଶେଷ କରିବି । ନିଟା ଘଣ୍ଟା ଘଣ୍ଟା ଧରି ମୋ ପୁଅ ଝିଅ ପାଇଁ ଜାମା, ସ୍ତ୍ରୀଙ୍କ ପାଇଁ ବ୍ଲାଉଜ୍ ତିଆରି କରିବାରେ ବ୍ୟସ୍ତ । ସେମାନଙ୍କୁ ଯାହା ଭଲ ରନ୍ଧା ଆସୁଥିଲା ସେ ସବୁ ମୋପାଇଁ ରନ୍ଧା ହେଲା । ନିଟା ପିଆନୋ ଧରି ବହୁତ ଗୀତ ଶୁଣାଇଲା, ବହୁ ସୁଖ ଦୁଃଖର ଗୀତ ମନପ୍ରାଣ ଦେଇ ଗାଇପାରେ ସେ । ଗୋଟିଏ ଗୀତ ଗାଇଲା ପରେ ଆମେ କିଛି ସମୟ ଚୁପ୍‌ଚାପ୍ ବସୁ । ତା'ପରେ ଆଉ ଗୋଟିଏ ଆହୁରି ବେଶି କରୁଣ ରାଗିଣୀ ତା କଣ୍ଠରୁ ଝରିଆସେ । ପୁଣି ନିରବ ନିଶ୍ଚଳତା ଭିତର ଦେଇ ସଙ୍ଗୀତର ମୂର୍ଚ୍ଛନା ଅନୁଭବ କରୁ । ଏ ଅନୁଭବ ଗଭୀର ମାନବିକତାଭରା ଅନୁଭୂତି । ଏଥିରେ ଦେବାନେବା, ଆଶା ନିରାଶା, ଅଭିଳାଷ, ଅଭିସନ୍ଧି ନାହିଁ, —ଅଛି କେବଳ ମାନବୀୟ କରୁଣା, ଆତ୍ମୀୟତା ଓ ହୃଦୟର ଭାବମୟୀ ଉଦ୍‌ବେଳନ ।

ଆସିବା ଦିନ ହେଲା । ମାମୀ, ନିଟା ଓ ମୁଁ ଗୋଟିଏ ଟ୍ୟାକ୍ସିରେ ରେଳଷ୍ଟେସନକୁ ବାହାରିଲୁ । ମେଘୁଆ ପାଗ । ଆମ ମନ ପରି ଆକାଶଭରା କଳା ବାଦଲ । ନିଟା କହିଲା, ମୁଁ ତାଙ୍କ ଘରେ ପ୍ରବେଶ କଲା ଦିନ କୁଆଡ଼େ ଏପରି କଳା ବାଦଲର ଦିନ ଥିଲା । ସମସ୍ତେ ଚୁପ୍‌ଚାପ୍ ହୋଇ ବସି ରହିଲୁ । ଷ୍ଟେସନ ହେଲା । ସେଠାରେ ତିନିଜଣଯାକ ବସିଲୁ । କାଁ ଭାଁ ପଦେ ଅଧେ କଥା । ଏ ବିଦାୟ ସମୟର ଉଦାସ ଗାମ୍ଭୀର୍ଯ୍ୟ ଭିତରେ କଥା କହିବାଟା ଯେପରି ଅପ୍ରାସଙ୍ଗିକ ଓ ମୂଲ୍ୟହୀନ । ସମସ୍ତଙ୍କ ମନ ଭିତରେ ସେହି ଗୋଟିଏ କଥା, ସୁଖ ଦୁଃଖଭରା ଅଢ଼େଇ ବର୍ଷର ଅଭୁଲା ଅନୁଭୂତିର କଣ କିଛି ସ୍ଥାୟୀତ୍ୱ ନାହିଁ ? ତା'ର ଉତ୍ତର ବୋଧହୁଏ ନାହିଁ ।

ଜାହାଜକୁ ଯିବା ପାଇଁ ରେଳଗାଡ଼ି ଆସିଲା । ମୁଁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ଲାଟ୍‌ଫର୍ମରେ ଠିଆ ହୋଇଥାଏ ସେମାନଙ୍କ ସାଙ୍ଗରେ । ଗାଡ଼ି ହୁଇସିଲ୍ ଦେଲା । ମା ଝିଅ ଦୁଇଜଣଯାକ କାନ୍ଦି ପକାଇଲେ । ଷ୍ଟେସନରେ ଅଭିନବ ଦୃଶ୍ୟ । ଲଣ୍ଡନର ମାମୀ ଓ ନିଟାଠାରୁ ମୁଁ ବିଦାୟ ନେଲି । ଆଜି ପର୍ଯ୍ୟନ୍ତ ଏ ବିଦାୟର କୋମଳସ୍ପର୍ଶ ମୋ ପ୍ରାଣର ଗଭୀରତମ ପ୍ରଦେଶରେ ଗୁମୁରି ଉଠୁଛି । ଏହାକୁ ମୁଁ କହେ ମନୁଷ୍ୟର ଆଧ୍ୟାତ୍ମିକ ଅନୁଭୂତି ।

ମୁଁ ଭାରତ ଫେରିଲି । ନିଟା ମୋ ପାଖକୁ ଲମ୍ବା ଚିଠି ଲେଖେ । ମୁଁ ଆସିବା ପୂର୍ବରୁ ତାଙ୍କ ବଗିଚାରେ ଗୋଟିଏ ମୋ ଉଚ୍ଚର ଆପଲ୍ ଗଛ କିଣି ଆଣି ଲଗାଇଦେଇ ଆସିଥିଲି । ଗୋଟିଏ ଜୀବନ୍ତ ଫଳଗଛ ଉପହାର ଦେବାର ଖିଆଲ ମୋର ହୋଇଥିଲା । ଏହି ଆପଲ୍ ଗଛର ଫୁଲ ବେଳେ, ଫଳ ସମୟରେ ତା ତଳେ ମା' ଝିଅ ଠିଆ ହୋଇ ଫଟୋ ଉଠାଇ ମୋ ପାଖକୁ ପଠାନ୍ତି । ଲମ୍ବା ଲମ୍ବା ଚିଠି, ଘରକୁ କିପରି ନୂଆ ଭାବରେ ସଜାଇଛି, ଲାଇଲକ୍ ଫୁଲ ବଗିଚାରେ କେତେ ଫୁଟିଛି, ସାଇପଡ଼ିଶା ଓ ସେ ଅଞ୍ଚଳର ଲୋକଙ୍କ ବିଷୟ ଇତ୍ୟାଦି ବିଶଦ ବିବରଣୀ ଥାଇ ସୁଦୀର୍ଘ ଚିଠି ସବୁ ସପ୍ତାହରେ ଆସେ ।

## (ଡ) ବିଦାୟ

ସୁଖଦୁଃଖ ଭିତର ଦେଇ ଅଢ଼େଇବର୍ଷ ବିତିଗଲା ଲଣ୍ଡନ ସହରରେ । ଅଢ଼େଇବର୍ଷ ପୂର୍ବେ ଯେତେବେଳେ ଲଣ୍ଡନ ସହରରେ ଏକ କୋଟି ଅଧିବାସୀଙ୍କ ଭିତରେ ହଠାତ୍ ଆସି ପହଞ୍ଚିଥିଲି, ନିଜକୁ ବଡ଼ ଅସହାୟ ମନେ ହେଉଥିଲା...... ବ୍ୟକ୍ତିତ୍ୱର ସତ୍ତା ପର୍ଯ୍ୟନ୍ତ ଲିଭିଗଲା ପରି ମନେ ହେଉଥିଲା... ପ୍ରାଣ ବ୍ୟାକୁଳ ହେଉଥିଲା... ସେହି ଧୂଳିଧୂସର କାଦୁଅ ପାଣି

କଟକ ରାସ୍ତ ଓ ପଚା ନାଳ ପରିବେଷ୍ଟିତ ଘରକୁ ଫେରିଯିବା ପାଇଁ ମନଟା କେମିତିକା କେମିତିକା ଲାଗୁଥିଲା । କ୍ରମେ ଏ ପଶ୍ଚାଦ୍‌ମୁଖୀ ମନୋଭାବ କଟିଗଲା । ଯାହା ପ୍ରାଣହୀନ ଯନ୍ତ୍ରବତ୍ ଦେଖାଯାଉଥିଲା, ତାର ଅନ୍ତରର ମଧୁର ସ୍ପନ୍ଦନ ମୋତେ ସ୍ପର୍ଶ କରିପାରିଥିଲା । ବାହାରର ଚାଲିଚଳଣ, ଆଚାର ବ୍ୟବହାରରେ ହଜାରେ ପାର୍ଥକ୍ୟ ଥିଲେ ସୁଦ୍ଧା ଆଦିମ ଯୁଗରୁ ଚାଲି ଆସିଥିବା ମନୁଷ୍ୟ ହୃଦୟର ଚିରନ୍ତନ ଐକ୍ୟର ଆଭାସ କ୍ରମେ ସାଧାରଣ ଲୋକଙ୍କର ଦୁଃଖସୁଖ ସହିତ ମୋତେ ବାନ୍ଧି ପାରିଥିଲା ।

ଶାସକ ଶ୍ରେଣୀର କୌଶଳପୂର୍ଣ୍ଣ ମିଥ୍ୟା ପ୍ରଚାରର ବେଷ୍ଟନୀ ଭିତରେ ରହି ସୁଦ୍ଧା ଅନେକ ଉଦାରମନା ଇଂରେଜ ଅଛନ୍ତି, ଯେଉଁମାନଙ୍କର କି ଆମ ପ୍ରତି, ଆମ ଦେଶ ପ୍ରତି ଯଥେଷ୍ଟ ସ୍ନେହ ଓ ସହାନୁଭୂତି ଅଛି । କ୍ରମେ ଏପରି ଅନେକଙ୍କ ସହିତ ବନ୍ଧୁତା ହୋଇଥିଲା । ଏମାନଙ୍କୁ ଛାଡ଼ି ଆସିବାରେ ପ୍ରକୃତରେ ବଡ଼ କଷ୍ଟ ହେଲା । ଯେଉଁ ସ୍ଥାନରେ ଦିନ ଦିନ, ମାସ ମାସ ଧରି ଅଢ଼େଇବର୍ଷ ଚଳି ଆସିଛି, ସେସବୁ ପ୍ରତି ଗୋଟିଏ ମମତା ଜାଗି ଉଠିଥିଲା । ଦେଶକୁ ଫେରି ଆସିବାରେ ପ୍ରବଳ ଇଚ୍ଛା ଥିଲେହେଁ ଲଣ୍ଡନ ଛାଡ଼ିବା କଥା ଭାବିଲେ ମନ ଦୁଃଖରେ କମ୍ ଅଭିଭୂତ ହେଉ ନଥିଲା । ଯେଉଁମାନଙ୍କ ସହିତ ଏତେ ଆପଣାର ପରି ଚଳି ଆସିଥିଲି, ସେମାନଙ୍କୁ ଚିରଦିନ ଲାଗି ଛାଡ଼ି ଆସିବାରେ ଦୁଃଖ ହେବା ସ୍ୱାଭାବିକ । ଚିଠି ଛଡ଼ା ଆଉ କେବେ ସେମାନଙ୍କ ସହିତ ଦେଖାହେବାର ସମ୍ଭାବନା ନାହିଁ କି ନା ! ସେତେବେଳେ ତ ଉଡ଼ାଜାହାଜ ଯାତ୍ରା ସଂଭବ ହୋଇନଥିଲା - ଯିବାଆସିବା ପାଣି ଜାହାଜରେ ମାସେ ଲାଗୁଥିଲା । ତେଣୁ ଭବିଷ୍ୟତରେ ଆଉଥରେ ଆସିବାର ସଂଭାବନା ମୋ କଳ୍ପନାର ବାହାରେ ଥିଲା ।

ଆସିବାର ପ୍ରାୟ ସପ୍ତାହ ପୂର୍ବରୁ ମୋର ପରିଚିତ ବନ୍ଧୁମାନଙ୍କଠାରୁ କ୍ରମେ କ୍ରମେ ବିଦାୟ ଆଣିଲି । ପ୍ରତ୍ୟେକ ବିଦାୟ ପରେ ମନଟା ବଡ଼ ଭାରି ଭାରି ଲାଗେ । ଅନେକେ କହନ୍ତି ଯେ ଇଂରେଜମାନେ ବଡ଼ ଉଦାସୀନ ଓ ଅମେଳାପୀ; କିନ୍ତୁ ସେମାନଙ୍କ ସହିତ ଅନେକ ଦିନ ଧରି ଯିଏ ଭଲଭାବେ ମିଶି ପାରିଛି, ସେ ବୁଝିବ ଯେ ଏହା କେତେଦୂର ଭୁଲ୍ । ଅବଶ୍ୟ ପ୍ରଥମେ ପ୍ରଥମେ ସେମାନେ ପ୍ରକୃତରେ ଅମେଳାପୀ ଓ Formal– କିନ୍ତୁ କୌଣସି ସଂକୀର୍ଣ୍ଣତା ନ ରଖି ଯଦି କେହି ଖୋଲାଖୋଲି ଭାବରେ ମିଶିପାରେ, ତା'ହେଲେ ସେମାନେ ଖୁବ୍ ଭଲ ବ୍ୟବହାର କରନ୍ତି । ଯେଉଁ ଅଞ୍ଚଳରେ ମୁଁ ଏକାଦିକ୍ରମେ ଅଢ଼େଇବର୍ଷ ରହିଥିଲି, ସେଠାକାର ରାସ୍ତାର ଝାଡୁଦାରଠାରୁ ଆରମ୍ଭକରି ଖବରକାଗଜ ଦୋକାନ, ଔଷଧ ଦୋକାନ, ପନିପରିବା ବିକାଳି, ପୋଷ୍ଟ ଅଫିସ୍ କ୍ଲର୍କ, ସେ ସାହିର ଛୋଟ ଛୋଟ ପିଲା ଓ ସେମାନଙ୍କର ବାପା ମା ପର୍ଯ୍ୟନ୍ତ ସମସ୍ତଙ୍କର ସ୍ମିତହାସ ଓ "Hallow, How are you? (ହାଲୋ, କିପରି ଅଛ ?)" ସମ୍ବୋଧନ କେବେ ଭୁଲିବାର ନୁହେଁ । ରାସ୍ତାରେ ବାହାରିଲେ ଛୋଟ ଛୋଟ ପିଲାମାନେ ଖେଳ ଛାଡ଼ି Uncle, Uncle କେହି ଦୌଡ଼ି ଆସନ୍ତି ପାଖକୁ... କେତେ କଥା ପଚାରନ୍ତି... ପିଲାଙ୍କର ସେହି ଅସରନ୍ତି ପ୍ରଶ୍ନାବଳୀ- "କୁଆଡ଼େ ଯାଉଛ", "କାହିଁକି ଯାଉଛ ?" ଇତ୍ୟାଦି ଅନେକ ଅତି ଆପଣାର ପ୍ରଶ୍ନ ସବୁ... ଖୁବ୍ ଭଲ ଲାଗେ । କାହିଁ ସେମାନଙ୍କ ମନରେ ତ କୌଣସି ଆବିଳତା ପଶି ନାହିଁ ? ଅନ୍ୟ ଦେଶ ଲୋକଙ୍କୁ ଘୃଣା କରିବାର ପ୍ରବୃତ୍ତି ହୋଇନାହିଁ.... ଅନ୍ୟ ଦେଶ

ଲୋକଙ୍କର ରକ୍ତରେ ନିଜକୁ ଫୁଲାଇବାର ଦୁରାଶା ହୋଇନାହିଁ... ତେବେ ଚେଷ୍ଟା କଲେ ଏହିମାନଙ୍କୁ ଅଖଣ୍ଡ ପୃଥିବୀର ହିଂସା ଦ୍ୱେଷହୀନ ଉପଯୁକ୍ତ ନାଗରିକ ରୂପେ କାହିଁକି ଗଢ଼ା ଯାଇପାରିବ ନାହିଁ ? ସେମାନେ ବଡ଼ ହେଲେ ସଂକୀର୍ଣ୍ଣ ସ୍ୱଜାତି ଭକ୍ତ ଓ ପରଦେଶ ଦ୍ୱେଷୀ ହୋଇପଡ଼ନ୍ତି କାହିଁକି ? ଏଟା କଣ ବର୍ତ୍ତମାନ ସମାଜର ଦୋଷ ନୁହେଁ ? ଉପଯୁକ୍ତ ଯୋଜନା ଅନୁସାରେ କ'ଣ ସେମାନଙ୍କୁ ବିଶ୍ୱପ୍ରେମୀ ନାଗରିକ ରୂପେ ଗଢ଼ାଯାଇପାରିବ ନାହିଁ ? ନିଶ୍ଚୟ ହୋଇପାରିବ । ସେଥିଲାଗି କିନ୍ତୁ ପୃଥିବୀର ସବୁ ଦେଶରେ ଗୋଟିଏ ଆମୂଳଚୂଳ ସାଂସ୍କୃତିକ, ମାନସିକ ତଥା ରାଜନୈତିକ ବିପ୍ଲବ ଆବଶ୍ୟକ ଏବଂ ଏପରି ବିପ୍ଲବ ଅବଶ୍ୟାମ୍ଭାବୀ ବୋଲି ମନେହୁଏ । ବର୍ତ୍ତମାନ ପରିସ୍ଥିତିରେ ଏ ପ୍ରକାର ବିପ୍ଲବ ନ ହେଲେ ମାନବ ସଭ୍ୟତାର ଅସ୍ତିତ୍ୱ ରହିବନାହିଁ ।

ଯେତିକି ଯେତିକି ଲଣ୍ଡନ ଛାଡ଼ିବାର ସମୟ ପାଖେଇ ଆସିଲା, ସେତିକି ସେତିକି ମନଟା ଭାରି ହୋଇ ଉଠିଲା । ପିଟର, ଜେକି, ମେରୀ, ଏଲିଜାବେଥ୍ ପ୍ରଭୃତି ଛୋଟ ଛୋଟ ପିଲାମାନଙ୍କୁ ଗୋଟିଏ ଗୋଟିଏ ଚକୋଲେଟ୍ ହାତରେ ଦେଇ ମୁଣ୍ଡ ଆଉଁସି କହିଲି-

"ଦେଖ ପିଲାମାନେ, ମୁଁ ମୋ ଦେଶକୁ ଫେରିଯାଉଛି ।"

ସମସ୍ତେ କହି ଉଠିଲେ—

"ଆମେ ଯିବୁ ତୁମ ସାଥିରେ, ଦେଖିବୁ ବାଘ, ସାପ, ପାହାଡ଼ ପର୍ବତ"..."ଆଚ୍ଛା, ତୁମେ ଏଠିକି ପୁଣି କେବେ ଆସିବ ?"

ଏ କଥା ଶୁଣି ମୋ ଆଖିରେ ଲୁହ ଆସିଲା । ମୁଁ କହିଲି- "ନା, ଆଉ କେବେ ଆସିବି ନାହିଁ ।"

X X X X X X

ମୋ ସାହିର ଜଣେ ବୁଢ଼ୀ ଖରାଦିନେ ତାଙ୍କ ଘର ସାମନା ବଗିଚାରେ ଫୁଲ ତୋଳୁଥିଲା ବେଳେ ମୁଁ ଯଦି ସେ ରାସ୍ତାରେ ଯାଉଥାଏ, ତା'ହେଲେ ତାଙ୍କୁ ଫୁଲ ତୋଳିବାରେ ସାହାଯ୍ୟ କରିଥାଏ । ସେ ବହୁତ ଖୁସି ହୋଇ ମୋ ବସାକୁ ତୋଡ଼ାଏ ଫୁଲ ପଠାଇ ଦିଅନ୍ତି... ତାଙ୍କଠାରୁ ବିଦାୟ ନେଇ ଆସିଲା ବେଳେ ସେ କହିଲେ—

"Rath, I will miss you very much" ଆଉ ଥରେ ଯଦି କେବେ ଆସ ଏଠାକୁ ତା'ହେଲେ ମୋ ବସାକୁ ନିଶ୍ଚୟ ଆସିବ...ହୁଏତ ମୁଁ ସେତେବେଳକୁ ମରିଯାଇଥିବି ।"

ତାଙ୍କର ସ୍ନେହ ମୁଁ କେବେ ଭୁଲିପାରିବି ନାହିଁ ।

ପଡ଼ିଶା ଘରୁ, ଆଗ ସାମନା ଘରୁ, ଖବରକାଗଜ ବିକାଳି, ପନିପରିବା ବିକାଳିମାନଙ୍କଠାରୁ...ଏପରି ଅନେକ ଲୋକଙ୍କଠାରୁ ବିଦାୟ ନେଲି । ସମସ୍ତଙ୍କଠାରୁ ଶୁଣିଲି ଶୁଭକାମନା ଓ ଚାଲିଆସିବାରେ ଦୁଃଖ ପ୍ରକାଶ । ଘର ଛାଡ଼ିଲା ବେଳେ ମୋର ଯେପରି ଦୁଃଖ ହୋଇଥିଲା, ଠିକ୍ ସେହିପରି ଦୁଃଖ ହେଲା । ବରଂ ତା'ଠାରୁ ଟିକିଏ ବେଶି, ଯେତେବେଳେ ମୁଁ ଭାବିଲି, ଆଉ ଜୀବନରେ କେବେ ଏମାନଙ୍କ ସାଙ୍ଗରେ ଦେଖା ହେବ ନାହିଁ । ମନୁଷ୍ୟର ସ୍ନେହ ଓ ମମତାର ଆକର୍ଷଣ କେତେ ଉଚ୍ଚରେ, ତାହା ମୁଁ ସେଇଦିନ ବୁଝିଲି । ସ୍ନେହ ମମତା ଆଗରେ ଜାତି, ଧର୍ମ, ଦେଶ, ବର୍ଣ୍ଣଭେଦ ନାହିଁ । ହୃଦୟ ଏକ...ସ୍ନେହ

ଅଖଣ୍ଡ...ଆକର୍ଷଣ ସନାତନ; କିନ୍ତୁ ତାହା ସମ୍ଭବ ହୋଇପାରୁ ନାହିଁ ମାତ୍ର କେତେଜଣଙ୍କର ଚକ୍ରାନ୍ତରେ । ଧର୍ମ ନାମରେ, ଦେଶ ନାମରେ ଏମାନେ ଦେଶ ଦେଶ ଭିତରେ ଧ୍ୱଂସ ଲୀଳା ରଚନା କରୁଛନ୍ତି । ହୃଦୟର ସନାତନ ଆକର୍ଷଣକୁ ବିଷଯୁକ୍ତ କରି ଦେଉଛନ୍ତି । ତେଣୁ ଚାରିଆଡ଼େ ଶତ୍ରୁତା... ପୃଥିବୀବ୍ୟାପୀ ନିର୍ମମତା ଛାଇ ହୋଇଯାଇଛି । ମନୁଷ୍ୟ ହୃଦୟ ଏହି ବିଷଜାଲ ମଧ୍ୟରେ ଛଟପଟ ହୋଇ ତାହାର ସ୍ୱଭାବ ନଷ୍ଟ ହୋଇଯାଉଛି । କିନ୍ତୁ ଏ ପ୍ରକାର କୃତ୍ରିମ ଆବରଣ ଛିଣ୍ଡାଇ ଦେଖି ବସିଲେ ତାର ଅସଲ ସ୍ୱଭାବ ପରିସ୍ଫୁଟ ହୋଇପଡ଼େ ଏବଂ ତାର ଉପଯୁକ୍ତ ସଦ୍‌ବ୍ୟବହାର କରିପାରିଲେ ପୃଥିବୀ ଯେ ସଂପୂର୍ଣ୍ଣ ବଦଳିଯିବ, ଏଥିରେ ସନ୍ଦେହ ନାହିଁ । ସୁଖର ବିଷୟ ଯେ କୌଣସି ଜାତି ଦୁଷ୍ଟ ଲୋକଙ୍କଦ୍ୱାରା ସଂପୂର୍ଣ୍ଣ ରୂପେ ପରିଚାଳିତ ନୁହେଁ । କିଏ କହିବ ଯେ ଇଂରେଜ ଜାତି ଆମ ଦେଶର ବ୍ରିଟିଶ ଶାସକବର୍ଗଙ୍କ ପରି ଅତ୍ୟାଚାରୀ ଓ ଉଦ୍ଧତ ? ସେହି ଦେଶର କେତେକ ଲୋକ ତ ପୁଣି ଏପରି ସ୍ନେହପୂର୍ଣ୍ଣ, ଲୋତକଭରା ଆଖିରେ ଆମମାନଙ୍କୁ ବିଦାୟ ଦିଅନ୍ତି... ।

ରେଳ ଲଣ୍ଡନର ଲିଭରପୁଲ୍ ଷ୍ଟେସନ ଛାଡ଼ିଲା । କ୍ରମେ କ୍ରମେ ସମସ୍ତେ ଅଦୃଶ୍ୟ ହୋଇଗଲେ । ରବି ଠାକୁରଙ୍କର ଗୋଟିଏ କବିତା ମନେପଡ଼ିଲା । "ଯେତେ ନାଇ ଦିବ, ଯେତେ ଦିତେ ଇଚ୍ଛା ନାଇଁ...ହାୟ ତବୁ ଯେତେ ଦିତେ ହୟ, ତବୁ ଚଲେଯାଏ... ।" ରାସ୍ତା ଦି କଡ଼ର ସେଇ ପୁରୁଣା ଯାଗାସବୁ.. Lyon's ହୋଟେଲର ସେଇ ହଳଦିଆ ଅକ୍ଷରଗୁଡ଼ାକ 'Burton', 'Express diary' ପ୍ରଭୃତି ପରିଚିତ ଘରଗୁଡ଼ାକ, ଲମ୍ବା ଲମ୍ବା ଦୋତାଲା ବସ୍‌ଗୁଡ଼ାକ ସବୁ ଯେପରି କହୁଛନ୍ତି– "ଯେତେ ଆମି ଦିବ ନା ତୋମାୟା...।" ତଥାପି ମିନିଟ୍ ପରେ ମିନିଟ୍ ଗାଡ଼ିର ଗତି ବଢ଼ି ଚାଲିଛି । ଗାଡ଼ି ଏକ ନିଃଶ୍ୱାସରେ ଏସବୁର ମାୟା ମମତା କଟାଇ ଯେପରି ଆଗେଇ ଚାଲିଛି କର୍ତ୍ତବ୍ୟର ଇସ୍ପାତ୍ ଯାନ୍ତ୍ରିକ ମହାରଥ ପରି । ଅତୀତର ସ୍ନେହ, ମମତା ଓ କରୁଣ ମଧୁର ସ୍ମୃତିର ଜମାଟବନ୍ଧା କୋହ ଭବିଷ୍ୟତର କୁହେଳିକାଛନ୍ନ ଅନିର୍ଦ୍ଦିଷ୍ଟତାର ତୀରଦେଶରେ ନୀରବ ନିଶ୍ଚଳ ଭାବେ ଥମକି ବସିଛି, ବର୍ତ୍ତମାନର ସେକେଣ୍ଡ୍ କଣ୍ଟାର ଟିକ୍ ଟିକ୍ ଶବ୍ଦର ତାଳରେ ଜୀବନର ରଥଚକ୍ର ଭବିଷ୍ୟତର ସେହି ଅସ୍ପଷ୍ଟ ରାଜପଥ ଉପରେ ଆଗକୁ ଆଗକୁ ମାଡ଼ି ଚାଲିଛି । (ବିଲାତ ଡାଏରୀରୁ କିଛି ଅଂଶ : ୧୯୫୦)

ଇଂଲଣ୍ଡର ଅଢ଼େଇବର୍ଷ ରହଣି ଜୀବନର ଗୋଟିଏ ଦିଗ ନିର୍ଦ୍ଦେଶକ ଆଲୋକ ସ୍ତମ୍ଭରରୂପେ ରହିଯାଇଛି । ପଛକୁ ଚାହିଁଲା ବେଳେ ଯେଉଁସବୁ ମାଇଲଖୁଣ୍ଟମାନ ଆଗରେ ପଡ଼େ ଇଂଲଣ୍ଡର ଅନୁଭୂତିମାନ ଗୋଟିଏ ବଳିଷ୍ଠ ମାଇଲଖୁଣ୍ଟି ହିସାବରେ ଦେଖାଯାଏ । ସେହିପରି ପାଟନାର ଚାରିବର୍ଷର ରହଣି ଆଉ ଗୋଟିଏ ମାଇଲଖୁଣ୍ଟି ହୋଇ ରହିଯାଇଛି ।

■■■

## ୧୨

# ବିଲାତରୁ ଫେରିବା ପରେ (୧୯୪୯-୫୩)

ବିଲାତରୁ ମନସ୍ତତ୍ତ୍ୱରେ ଡକ୍ଟରେଟ୍ କରି କଟକ ଫେରିଲି ୧୯୪୯ ମାର୍ଚ୍ଚ ମାସରେ । ସେତେବେଳକୁ ମନସ୍ତତ୍ତ୍ୱ ବିଭାଗ ନଥାଏ । ଦର୍ଶନ ବିଭାଗରେ ଆଇ.ଏ.ରେ ମନସ୍ତତ୍ତ୍ୱ ଓ ବି.ଏ.ର ଗୋଟିଏ ପେପର ମନସ୍ତତ୍ତ୍ୱ ପଢ଼ା ହେଉଥାଏ । ମୁଁ ଫେରିଲା ପରେ ବି.ଏ.ରେ ମନସ୍ତତ୍ତ୍ୱ ଓ ମେଟାଫିଜିକ୍ସ ପଢ଼ାଇଲି । ଦର୍ଶନ ପଢ଼ାଇବାରେ ମୋର ନୂତନ ପ୍ରକାରର ଆଭିମୁଖ୍ୟ ଦେଖା ଦେଉଥିଲା । ମୁଁ ପ୍ରଥମେ ବହିରେ ଯାହା ଥାଏ ଅଧଘଣ୍ଟା ପଢ଼ାଏ ଏବଂ ପରବର୍ତ୍ତୀ ୨୦ ମିନିଟ୍‌ରେ ଆଲୋଚନା କରେ ଯେ ସେ ସବୁ କିପରି ଅଯୌକ୍ତିକ ଓ ଗତାନୁଗତିକ ରୀତିରେ ଲେଖା ହୋଇଛି । ଏପରି ପଢ଼ାଇବାରେ ମୋତେ ନିଜକୁ ଓ ଛାତ୍ରଛାତ୍ରୀମାନଙ୍କୁ ବହୁତ ଭଲ ଲାଗୁଥିଲା । ବିରୁଦ୍ଧମତ ଦେବାରେ ମୁଁ ଅନୁପ୍ରାଣିତ ହୋଇଯାଉଥିଲି । ନୂଆ କଥା ଶୁଣିବା ପାଇଁ ଛାତ୍ରମାନଙ୍କର ଆଗ୍ରହ ହେଉଥିଲା ଏବଂ ଆଲୋଚନାରେ ସେମାନେ ସକ୍ରିୟ ଭାଗ ନେଇପାରୁଥିଲେ । ମନସ୍ତତ୍ତ୍ୱ ତ ଭଲଲାଗିବା କଥା । ମାତ୍ର ସେଥିରେ ମଧ୍ୟ ବହୁତ ପୁରୁଣା ଅଯୌକ୍ତିକ କଥା ଥିଲା । ତାକୁ ସଂଶୋଧନ କରି ପଢ଼ାଇବାରେ ସମସ୍ତଙ୍କର ଆନନ୍ଦ ହେଉଥିଲା । ପଢ଼ାଇବାବେଳେ ମୁଁ ଘଣ୍ଟା ବାଜିବା କଥା ଭୁଲିଯାଏ । ପିଲାମାନେ ନିଜ ନିଜ ଘଡ଼ିକୁ ଚାହିଁଲେ ଯାଇ ମୁଁ ବୁଝିପାରେ ଯେ ମୋର ପଢ଼ା ସମୟ ଶେଷ ହୋଇଛି । ବର୍ଷ ଆରମ୍ଭରେ ମୁଁ ମନସ୍ତତ୍ତ୍ୱକୁ ଲୋକପ୍ରିୟ କରିବା ପାଇଁ ଦଶଟି ବକ୍ତୃତା ଦିଏ । ଯେକୌଣସି ବିଭାଗର ପିଲାଏ ଏବଂ ଯେଉଁମାନେ କି କେଉଁ ବିଷୟ ନେବେ ବୋଲି ମନ ସ୍ଥିର କରି ନଥାନ୍ତି ସେମାନେ ଏହି ବକ୍ତୃତା ମାଳାରେ ଯୋଗ ଦିଅନ୍ତି । ନାନା ବାଦାନୁବାଦ ଯୁକ୍ତିତର୍କପୂର୍ଣ୍ଣ କ୍ଲାସ୍ ହୁଏ । ମୋ ବକ୍ତୃତାରେ ଭଗବାନ ଓ କୁସଂସ୍କାର ବିରୁଦ୍ଧରେ ମୁଁ ପ୍ରଚଣ୍ଡ ଆକ୍ରମଣ କରେ । ଏପରି ଗୋଟିଏ କ୍ଲାସରେ ପରବର୍ତ୍ତୀ କାଳର ଦର୍ଶନ ଅଧ୍ୟାପକ ଏବଂ ସେ ସମୟର ବିଜ୍ଞାନ ଛାତ୍ର ସ୍ୱର୍ଗୀୟ କୃଷ୍ଣପ୍ରସାଦ ମିଶ୍ର ମୋ ସହିତ ବହୁତ ଯୁକ୍ତି କରିଥିଲେ । ମାତ୍ର ସେ ମଧ୍ୟ ପରେ ଦର୍ଶନ ବିଭାଗର ଛାତ୍ର ହେଲେ । ତାଙ୍କର ଗଭୀର ଦାର୍ଶନିକ ଅନୁସନ୍ଧିତ୍ସାର ସଙ୍କେତ ମୁଁ ସେତେବେଳେ ପାଇଥିଲି ।

ଏହି ପ୍ରକାର ଲୋକପ୍ରିୟ ବକ୍ତୃତା ଫଳରେ ଆଇ.ଏ. ମନୋବିଜ୍ଞାନ କ୍ଲାସରେ ପୂରାପୂରି ୧୨୮ ଜଣ ଯାଏ ପିଲା ହୋଇଯାନ୍ତି ।

ସେତେବେଳେ ରେଭେନ୍ସା କଲେଜର ପ୍ରିନ୍ସପାଲ ଡ. ଗୋଲକ ବାନାର୍ଜୀ ଥିଲେ । ସେ ବହୁତ କଠୋର ଓ ଗମ୍ଭୀର ବୋଲି ସମସ୍ତେ ତାଙ୍କୁ ଡରନ୍ତି । କିନ୍ତୁ ମୋ ସହିତ ତାଙ୍କର ଭଲ ପଡ଼ିଲା । ସେତେବେଳକୁ ମୁଁ କଲେଜ ଘର ପାଇ ନଥାଏ । ଜୁଲାଇରେ ଗୋଟିଏ ଘର ଖାଲି ହେଉଥାଏ ଏବଂ ନିୟମ ଅନୁସାରେ ଏହି ଘରଟି ମୋତେ ମିଳିବା କଥା । ଦିନେ ଡ. ବାନାର୍ଜୀ ମୋତେ ଡାକି କହିଲେ ଯେ ସେ ଘରଟିକୁ ଡି.ପି.ଆଇ. ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କର ଅନୁରୋଧକ୍ରମେ ଆଉ ଜଣେ ଅଣଶିକ୍ଷକଙ୍କୁ ଦେବାକୁ ସ୍ଥିର କରିଛନ୍ତି । ଏ କଥା ଶୁଣିଲା ପରେ ମୋ ଦେହ ରାଗରେ ଜଳିଉଠିଲା । ଇଂଲଣ୍ଡରୁ ମୁଁ ସଦ୍ୟ ଫେରିଥାଏ । ସ୍ୱାଧୀନ ଚେତନାରେ ମୁଁ ଉଦ୍‌ବୁଦ୍ଧ । ବ୍ରିଟିଶ୍ ସରକାରଙ୍କର ରାଜଭକ୍ତ ଭାରତୀୟ ଅଫିସରମାନେ ପୁଣି ସ୍ୱାଧୀନ ଦେଶର ଅମଲାତାନ୍ତ୍ରିକ ସଂସ୍ଥା ଚଳାଉଥିବାରୁ ସେମାନଙ୍କ ପ୍ରତି ମୋର କୌଣସି ସମ୍ମାନ ନ ଥିଲା । ମୁଖ୍ୟମନ୍ତ୍ରୀ ଓ ଡି.ପି.ଆଇ.ଙ୍କର ଏପରି ଅବିଚାର ମୋର ଅସହ୍ୟ ହେଲା । ତା'ପରଦିନ ତତ୍କାଳୀନ ଡି.ପି.ଆଇ. ସ୍ୱର୍ଗୀୟ ମହେଶ ପ୍ରଧାନଙ୍କ ପାଖକୁ ଗଲି ଏବଂ ଏ ବିଷୟରେ ପଚାରିଲି । ସେ ମହାଶୟ ମୁଖ୍ୟମନ୍ତ୍ରୀଙ୍କୁ ଏପରି ଡରୁଥିଲେ ଯେ ମୁଁ ମୁଖ୍ୟମନ୍ତ୍ରୀଙ୍କ ନାଁ ଧରୁ ଧରୁ ମୋତେ ମାର୍ ନ ମାର୍ । ସେ ମୋ ସହିତ ଯେପରି ଖରାପ ବ୍ୟବହାର କଲେ, ମୁଁ ମଧ୍ୟ ତାର ଉତ୍ତରରେ ଖୁବ୍ କଡ଼ା କଡ଼ା କଥା କହିବାକୁ ପଶ୍ଚାତପଦ ହୋଇନଥିଲି । ମୁଁ ଯେତେବେଳେ ଡି.ପି.ଆଇ.ଙ୍କୁ କହିଲି ଯେ ମୁଁ ସିଧା ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଇ ଏହାର ତୀବ୍ର ପ୍ରତିବାଦ କରିବି, ସେ ଦବିଗଲେ । ତା'ପୂର୍ବରୁ ସେ ମୋତେ ଠିଆ କରାଇ ଗାଳି ଦେଉଥିଲେ । ତା'ପରେ ହଠାତ୍ କହିଲେ ବସିବାକୁ । ମୁଁ କିନ୍ତୁ ବସିଲି ନାହିଁ । କହିଲି, ମୋତେ ଯେତେବେଳେ ଆପଣ ଏପରି ହୀନ ଭାବରେ ବ୍ୟବହାର କରିଛନ୍ତି ମୁଁ ଆପଣଙ୍କ ଘରେ ଜୀବନ ଥିବାଯାଏ ବସିବି ନାହିଁ । ସେ ଏତେ ଡରୁଆ ଯେ ତା'ପରେ ମୋତେ ବହୁତ ଖୋସାମତ କରିବାକୁ ଲାଗିଲେ । ମୁଁ ତାଙ୍କର କୌଣସି କଥା ନ ଶୁଣି ଚାଲିଆସିଲି । ସାବଧାନ କରାଇଦେଲି ଯେ ମୋତେ ଘର ନ ମିଳିବାଯାଏ ମୁଁ ଏହାର ତୀବ୍ର ପ୍ରତିରୋଧ କରିବି ।

ତା'ପରଦିନ ମୁଁ କଲେଜକୁ ଆସିଲାବେଳକୁ ମୋର ପୂର୍ବ ଛାତ୍ରାବାସରେ ସୁପରିନ୍‌ଟେଣ୍ଡେଣ୍ଟ ହିସାବରେ ନିଯୁକ୍ତି ହୋଇଯାଇଛି । ମୁଁ ପ୍ରଥମେ ଅବାକ୍ ହୋଇଗଲି । ଡି.ପି.ଆଇ.ଙ୍କର ମୁଖ୍ୟମନ୍ତ୍ରୀଙ୍କୁ ଅତ୍ୟଧିକ ଭୟ ଯୋଗୁ ମୋତେ ସନ୍ତୁଷ୍ଟ କରାହୋଇଛି । ଏଥିରେ ଡି.ପି.ଆଇ.ଙ୍କ ପ୍ରତି କୃତଜ୍ଞତା ପରିବର୍ତ୍ତେ ମୋର ପ୍ରକୃତରେ ଦୟା ହେଲା । ଭାବିଲି, ଏପରି ଉଚ୍ଚ ଅଫିସର, ଶିକ୍ଷା କ୍ଷେତ୍ରରେ କଣ କୌଣସି ବଳିଷ୍ଠ ପଦକ୍ଷେପ ନେଇପାରିବେ ? ଡ. ବାନାର୍ଜୀ ମୋତେ ହସି ହସି ପଚାରିଲେ ଯେ ହଠାତ୍ ଏପରି କ'ଣ ହେଲା ? ମୁଁ ସବୁ କହିଲି । ସେ ମୋ କଥା ବେଶ୍ ଉପଭୋଗ କଲେ ।

ମୁଁ ପୂର୍ବ ଛାତ୍ରାବାସରେ ତିନିବର୍ଷ ତିନିମାସ ସୁପରିନ୍‌ଟେଣ୍ଡେଣ୍ଟ ରହିଥିଲି । ଡି.ପି.ଆଇ. ମହୋଦୟ ସବୁବେଳେ ମୋ ପ୍ରତି ଅସନ୍ତୁଷ୍ଟ ଥିଲେ । ମୋ ବିରୁଦ୍ଧରେ ଡ. ବାନାର୍ଜୀଙ୍କୁ

ସବୁବେଳେ କହୁଥିଲେ କିଂତୁ ଡ. ବାନାର୍ଜୀ ମୋତେ ପ୍ରଶଂସା କରୁଥିଲେ । ଡି.ପି.ଆଇ. ପରେ ମୋର ଦରମା ନିଧାର୍ଯ୍ୟ କରିବାରେ ବହୁତ ହଇରାଣ କଲେ । ମୁଁ ଶିକ୍ଷା ସଚିବ ଓ ଶିକ୍ଷାମନ୍ତ୍ରୀଙ୍କୁ ଡି.ପି. ଆଇ.ଙ୍କର ସିଦ୍ଧାନ୍ତ ବିରୁଦ୍ଧରେ ଦରଖାସ୍ତ କରି ଯାହା ଆଇନଗତ ତାହା କରାଇପାରିଥିଲି । ସେଥିପାଇଁ ଅବଶ୍ୟ ବହୁତଥର ଦରଖାସ୍ତ କରିବାକୁ ପଡ଼ିଥିଲା ଏବଂ ବହୁ ବିଳମ୍ବରେ ମୋର ନ୍ୟାଯ୍ୟ ଦାବି ପୂରଣ ହୋଇଥିଲା ।

ଅମଲାତାନ୍ତ୍ରିକ ପଦ୍ଧତି ବିରୁଦ୍ଧରେ ମୋର ଧାରାବାହିକ ଅଭିଯାନ ସେହିଦିନଠାରୁ ଆରମ୍ଭ ହୋଇଥିଲା । କିନ୍ତୁ କଦାପି ଥରେ ସୁଦ୍ଧା ମୋ ବିଷୟ ନେଇ ଡି.ପି.ଆଇ., ଶିକ୍ଷା ସଚିବ କିମ୍ବା ମନ୍ତ୍ରୀଙ୍କ ଘରକୁ ମୁଁ ଯାଇନଥିଲି । କେବଳ ଚିଠିପତ୍ରରେ ଯାହା କାମ । ମୋର ସିଦ୍ଧାନ୍ତ ହେଲା ଯେ ସେମାନଙ୍କ ଘରକୁ ଯାଇ ଗୋଡ଼ ଭାଙ୍ଗି ଠିଆ ହୋଇ ଅନୁନୟ କରିବା ଅର୍ଥ ବ୍ୟକ୍ତିତ୍ୱକୁ ନ୍ୟୂନ କରିବା । ମୋର ଗର୍ବ ଓ ଆନନ୍ଦର ବିଷୟ ଯେ ଆଜିପର୍ଯ୍ୟନ୍ତ ମୋ ନିଜର ସୁବିଧା ସୁଯୋଗ ସୃଷ୍ଟି କରିବା ଉଦ୍ଦେଶ୍ୟରେ ମୁଁ କୌଣସି ସରକାରୀ କର୍ତ୍ତୃପକ୍ଷଙ୍କ ଅଫିସ୍ କିମ୍ବା ଘରକୁ ଯାଇନାହିଁ । ମୋର ଏହି ସିଦ୍ଧାନ୍ତ ବିଷୟରେ ମୋର ଶତ୍ରୁମାନେ ମଧ୍ୟ ମୋତେ ଏଥିପାଇଁ ପ୍ରଶଂସା କରନ୍ତି । ଫଳରେ ଭବିଷ୍ୟତରେ କୁଳପତି ହେବାର ବାସନାକୁ ଚାକିରିର ପ୍ରଥମାବସ୍ଥାରୁ ହିଁ ମୋତେ ପରିତ୍ୟାଗ କରିବାକୁ ହୋଇଥିଲା । ପରବର୍ତ୍ତୀ ଜୀବନରେ ଯେଉଁମାନେ କୁଳପତି ବା ଏପରି କିଛି ଉଚ୍ଚ ପଦବୀର ଅଧିକାରୀ ହୋଇଛନ୍ତି, ଅଧିକାଂଶଙ୍କ ପଛରେ ରାଜନୈତିକ ସମର୍ଥନ ରହିଛି । ତା ଅର୍ଥ, ରାଜନୈତିକ ଲୋକଙ୍କ କଥା ଅନୁସାରେ କାମ କରିବା, ସେମାନଙ୍କ ସହିତ ସବୁ କଥାରେ ସମ୍ମତ ହେବା, ପ୍ରତ୍ୟେକ କଥାରେ ହଁ ଭରିବା, ସେମାନେ ଦିନକୁ ରାତି ବୋଲି କହିଲେ ତାକୁ ସ୍ୱୀକାର କରିବା ବା ଅନ୍ତତଃ ଚୁପ୍ କରି ରହିବା ଅଭ୍ୟାସ ଉଚ୍ଚ ଆକାଂକ୍ଷା ପୋଷଣ କରି ରହିଥିବା ଲୋକଙ୍କର ଅସ୍ଥିମଜ୍ଜାଗତ ହୋଇଯାଇଥିଲା– ସେ ବିଷୟରେ ମୁଁ ସଚେତନ ଥିଲି । ମୁଁ ଯାହା ଯଥାର୍ଥ ବୋଲି ଭାବେ ତାକୁ ସମସ୍ତଙ୍କ ମୁହଁରେ କହୁଥିଲି । ଭବିଷ୍ୟତରେ କେବେ କୁଳପତି ହେବି ବା ହଠାତ୍ କେଉଁ ମନ୍ତ୍ରୀଙ୍କର ଶୁଭ ଦୃଷ୍ଟି ଯୋଗୁଁ ଉଚ୍ଚ ପଦବୀ ଲାଭ କରିବି ସେଥିପାଇଁ ଜୀବନଯାକ ଲୋଚାକୋଚା ହୋଇ ଚଳିବା ମୋର ପସନ୍ଦ ହେଲାନାହିଁ ।

ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗୀୟ ହରେକୃଷ୍ଣ ମହତାବ ପ୍ରତିମାସରେ ଥରେ ଦୁଇଥର ପନ୍ଦରକୋଡ଼ିଏ ଜଣ ବୁଦ୍ଧିଜୀବୀଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କରୁଥିଲେ ମଧ୍ୟାହ୍ନ କିମ୍ବା ରାତ୍ରି ଭୋଜନ ପାଇଁ । ମୁଁ ସେମାନଙ୍କ ଭିତରୁ ଜଣେ ଥିଲି । ସେଥିରେ ଦୁଇ ତିନିଘଣ୍ଟା କୌଣସି ନା କୌଣସି ବିଷୟରେ ଆଲୋଚନା ହୁଏ । ଏ ପ୍ରକାର ଆଲୋଚନା ଦଶ ପନ୍ଦର ଥର ହୋଇଥିବ । ମୁଁ ଏ ଆଲୋଚନାରେ ଲକ୍ଷ୍ୟ କଲି ଯେ ସାମାନ୍ୟ ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ଅଧିକାଂଶ ବୁଦ୍ଧିଜୀବୀଙ୍କର ମୁଖ୍ୟମନ୍ତ୍ରୀଙ୍କର ସବୁ କଥାରେ ହଁ ଭରିବା ମନୋବୃତ୍ତି ରହିଥାଏ । ଆଉ କେତେଜଣ ଏକମତ ନ ହେଲେ ମଧ୍ୟ ଚୁପ୍ ରହନ୍ତି । ଡ. ବଳଭଦ୍ର ପ୍ରସାଦ ଓ ମୁଁ ଆମର ଭିନ୍ନମତ ଦୃଢ଼ତାର ସହିତ ଉପସ୍ଥାପିତ କରୁ । ଅନ୍ୟମାନଙ୍କର ଆତ୍ମସମର୍ପଣାତ୍ମକ ଢଙ୍ଗ ଓ ପ୍ରଶଂସାତ୍ମକ ଅଭିବ୍ୟକ୍ତିର ବାତାବରଣ ଭିତରେ ଆମ ଦୁଇଜଣଙ୍କର ବିରୁଦ୍ଧ ମତ ମୁଖ୍ୟମନ୍ତ୍ରୀଙ୍କର ଯେ କଦାପି ଆନନ୍ଦଦାୟକ ନଥିଲା, ଏହା ସ୍ପଷ୍ଟ ଜଣାପଡ଼େ ।

ଡ. ପ୍ରସାଦ ବୟସ୍କ, ସ୍ଥିତିମାନ, ଅଣଓଡ଼ିଆ ବୁଦ୍ଧିଜୀବୀ ହୋଇଥିବାରୁ ତାଙ୍କର ବିରୁଦ୍ଧମତ ସେପରି ପ୍ରତିକ୍ରିୟା ସୃଷ୍ଟି କରୁ ନଥିଲା । ସାଧାରଣତଃ ଓଡ଼ିଶାର ମନ୍ତ୍ରୀମାନେ ଆଜିପର୍ଯ୍ୟନ୍ତ ଅଣଓଡ଼ିଆ ବୁଦ୍ଧିଜୀବୀ ଓ ଅଫିସରଙ୍କୁ ବହୁତ ଖାତିର କରନ୍ତି ଏବଂ ନିଜ ରାଜ୍ୟର ଲୋକଙ୍କ ପ୍ରତି ହେୟ ଜ୍ଞାନ କରନ୍ତି । ଏକଥା ମୁଁ ବରାବର ଲକ୍ଷ୍ୟ କରିଆସିଛି । ଏମାନଙ୍କର ସ୍ୱଭାବଗତ ହୀନମନ୍ୟତା ଯୋଗୁ ବୋଧହୁଏ ଏପରି ହେଉଛି । ମୋ ପରି ତରୁଣ ବିଶେଷକରି ଓଡ଼ିଆ ଯୁବକର ମତଦ୍ୱୈଧତା ଯେ ଆଦୌ ପସନ୍ଦ ହେଉ ନଥିଲା, ତାହା ମୁଁ ସହଜରେ ବୁଝିପାରୁଥିଲି । ଡ. ପ୍ରସାଦଙ୍କ ଛଡ଼ା ମୋ ମତ ସପକ୍ଷରେ ଅନ୍ୟ ବୁଦ୍ଧିଜୀବୀମାନେ କିଛି କହୁ ନଥିଲେ । କିଛିଦିନ ପରେ ଏ ପ୍ରକାର ଆଲୋଚନା ସଭା ବନ୍ଦ ହୋଇଗଲା । ଅବଶ୍ୟ ଏହି ଆଲୋଚନା ମାଧ୍ୟମରେ ଶ୍ରୀଯୁକ୍ତ ମହତାବ ତାଙ୍କର ଗୁଣଗ୍ରାହୀ ଓ ସ୍ତାବକମାନଙ୍କୁ ବାଛି ନେଉଥିଲେ । ସେମାନଙ୍କ ଭିତରେ ମୋର ସ୍ଥାନ ନଥିଲା ।

ପରବର୍ତ୍ତୀ ସମୟରେ ଥରେ ଶ୍ରୀ ହରେକୃଷ୍ଣ ମହତାବ ତାଙ୍କର ବିଷୁବ ମିଳନରେ ମୋତେ କହିବା ପାଇଁ ଡାକିଥିଲେ । ସାହିତ୍ୟର ପ୍ରଗତିଶୀଳତା ବିଷୟରେ କହୁ କହୁ ମୁଁ ଆମ ସମାଜର ପଶ୍ଚାତ୍‌ମୁଖୀ ଧର୍ମାନ୍ଧତା ବିରୁଦ୍ଧରେ ଖୁବ୍ ଜୋର ଦେଇ କହିଥିଲି । ତା'ପରେ ଶ୍ରୀଯୁକ୍ତ ମହତାବ୍ ସେଠାରୁ ଉଠି ଚାଲିଯାଇଥିଲେ । ତା'ପରବର୍ଷଠାରୁ ବହୁଦିନ ପର୍ଯ୍ୟନ୍ତ ବିଷୁବ ମିଳନ ପାଇଁ ମୋତେ ନିମନ୍ତ୍ରଣ ପତ୍ର ମିଳିନଥିଲା ! ବିଷୁବ ମିଳନରେ ମଧ୍ୟ ଆଉ ଏକ ଘଟଣା ଘଟିଥିଲା । ଡ. ମାୟାଧର ମାନସିଂହ କୁଆଡ଼େ ମହତାବଙ୍କ ବିରୁଦ୍ଧରେ କିଛି ମନ୍ତବ୍ୟ ଲେଖିଥିଲେ । ମୁଁ ହଠାତ୍ ଦେଖିଲି ମହତାବଙ୍କର କେତେକ ସ୍ତାବକ ବିଶିଷ୍ଟ ସାହିତ୍ୟିକ ଡ. ମାନସିଂହଙ୍କୁ ଧକ୍‌କା ମାରି ମାରି ନେଉଛନ୍ତି । ତାଙ୍କ ମୁହଁ କାନ୍ଦ କାନ୍ଦ । ମୁଁ ଏତେ ବିବ୍ରତ ହୋଇପଡ଼ିଲି ଯେ ସିଧା ମହତାବଙ୍କ ଆଗରେ ଆପତ୍ତି କଲି । ମହତାବ୍ କହିଲେ— ଠିକ୍ ହୋଇଛି । କି ଭୟଙ୍କର ସାମନ୍ତବାଦୀ ଅସହନଶୀଳ ଲୋକ ଏମାନେ !

ତା'ପରଠାରୁ ମହତାବଙ୍କ ଅନୁଷ୍ଠାନ ସହିତ ମୋ ଆଉ ସଂପର୍କ ଛିଣ୍ଡିଯାଇ ଥିଲା କିଂତୁ ଶ୍ରୀଯୁକ୍ତ ମହତାବଙ୍କ ସହିତ ମୋର ସଂପର୍କ ଥାଏ । ମୁଁ ଅବଶ୍ୟ ତାଙ୍କ ଘରକୁ କେବେ ବି ଥରେ ଯାଇନାହିଁ କିନ୍ତୁ ବାହାରେ ତାଙ୍କ ସହିତ ଦେଖାହେଲେ ସେ ମୋ ସହିତ ଭଲ ବ୍ୟବହାର କରନ୍ତି । ମୋର ଧାରଣା, ଯିଏ ତାଙ୍କ ପାଖକୁ ଘନଘନ ଯିବ ତାକୁ ସେ ସାହାଯ୍ୟ କରନ୍ତି । ମୁଁ ବିଶ୍ୱବିଦ୍ୟାଳୟରୁ ଅବସର ନେଲାବେଳେ ମୋ ବିଭାଗର କେତେ ସହକର୍ମୀ ବନ୍ଧୁ ମହତାବଙ୍କୁ ଦେଖା କରିଥିଲେ ଯେ ବିଶ୍ୱ ବିଦ୍ୟାଳୟ ମଞ୍ଜୁରୀ କମିଶନଙ୍କ ନିୟମ ଅନୁଯାୟୀ ଆଡ଼ଭାନ୍ସ (ଅଗ୍ରଗାମୀ) କେନ୍ଦ୍ରର ମୁଖ୍ୟ ଅଧ୍ୟାପକ ୬୫ବର୍ଷ ଯାଏ ରହିବା କଥା, କିନ୍ତୁ ବିଶ୍ୱବିଦ୍ୟାଳୟ ତା ଆଗରୁ ମୋତେ ଅବସର ଦେବା ପାଇଁ ଉଦ୍ୟମ କରୁଛି । ମହତାବ୍ କୁଆଡ଼େ ଫୋନ୍ କରି ମୋତେ ରଖିବାକୁ ଅନୁରୋଧ କରିଥିଲେ । କିନ୍ତୁ ଏ ସମ୍ପର୍କରେ ମୁଁ ନିଜେ ତାଙ୍କୁ ଦେଖା କରି ନଥିଲି । କାରଣ ଦେଖାକରିବା ମୋ ଜୀବନ ବ୍ୟାପୀ ନୀତି ବିରୁଦ୍ଧ । ମୋ ନିଜର ଆର୍ଥିକ ବା ଚାକିରିରେ ଉନ୍ନତି ପାଇଁ ମୁଁ ଜୀବନରେ ଥରେ ସୁଦ୍ଧା କାହାରିକୁ ଦେଖା କରିନାହିଁ । ଭବିଷ୍ୟତରେ ମୋର ଉନ୍ନତି ପାଇଁ ମୋତେ ମୋର ବନ୍ଧୁମାନେ ମହତାବ୍ ଓ ଅନ୍ୟାନ୍ୟ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବା ପାଇଁ ଯେତେ

ପ୍ରବର୍ତ୍ତାଇଥିଲେ ମଧ୍ୟ ମୁଁ ସେମାନଙ୍କ ଅନୁରୋଧ ରକ୍ଷା କରି ନଥିଲି । ଶ୍ରୀଯୁକ୍ତ ମହତାବ୍ ଥରେ ଦୁଇଥର ଆମ ଘରକୁ ମଧ୍ୟ ଆସିଥିଲେ ସାହିତ୍ୟିକମାନଙ୍କର ଘରୋଇ ସମାରୋହରେ ଯୋଗ ଦେବା ପାଇଁ ।

ଏହିସମୟରେ ମଧ୍ୟ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀଙ୍କ ସହିତ ମୋର ବନ୍ଧୁତା ହୁଏ । ସେତେବେଳେ ମୁଁ ଦୈନିକ ସମାଜରେ ବିଲାତ ଡାଇରୀ ଲେଖା ପରେ ପରେ ''ଆମର ଭୁଲ୍ କେଉଁଠି'' ଶିରୋନାମାରେ କେତେଗୁଡ଼ିଏ ଲେଖା ଧାରାବାହିକ ଭାବେ ଲେଖୁଥିଲି । ସେଥିରେ ବ୍ରିଟିଶ୍ ଶାସନ ଢାଞ୍ଚାରେ ତିଆରି ଆମର ଅମଲା ତାନ୍ତ୍ରିକ ସଂସ୍ଥା କିପରି ସାଧାରଣ ଲୋକଙ୍କର ସ୍ଥାୟୀ ଉନ୍ନତି କରିବା ପାଇଁ ଅପାରଗ ଏବଂ ଜନତାର ସ୍ୱାଧୀନତା ସ୍ୱପ୍ନ କିପରି ପ୍ରବଞ୍ଚିତ ହୋଇଛି– ଔପନିବେଶିକ ଶାସନ ସଂସ୍କାର କିପରି କୌଣସି ପରିବର୍ତ୍ତନ ହୋଇନାହିଁ ପ୍ରଭୃତି ତୀବ୍ର ସମାଲୋଚନାମୂଳକ ଲେଖା ପ୍ରକାଶ ପାଉଥାଏ । ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ମୋର ବୈପ୍ଲବିକ ଲେଖା ପାଇଁ ମୋତେ ସାଧୁବାଦ ଜଣାଇଥିଲେ । ଏବଂ ତାଙ୍କ ପାଖକୁ ଯେତେକ ଯୁବକ ଓ ଛାତ୍ର ଯାଉଥିଲେ ସେମାନଙ୍କୁ ମୋ ଲେଖା ପଢ଼ିବା ପାଇଁ ପରାମର୍ଶ ଦେଉଥିଲେ ।

ମୁଖ୍ୟମନ୍ତ୍ରୀତ୍ୱ ଛାଡ଼ିବାର ଦୁଇ ଚାରିଦିନ ପରେ ତାଙ୍କର ପୁରୁଣା ସାଇକେଲ୍ ଖଣ୍ଡିକ ଚଢ଼ି ମୋ ଘରେ ଆସି ପହଞ୍ଚିଥିଲେ ମୋଠାରୁ କିଛି ବହି ନେବା ପାଇଁ । ମୁଖ୍ୟମନ୍ତ୍ରୀତ୍ୱ କାହିଁକି ଛାଡ଼ିଲେ ତାହାର କାରଣ ଲୋକଙ୍କୁ ବୁଝାଇବା ପାଇଁ ଟାଉନ ହଲ୍‌ରେ ଗୋଟିଏ ସଭା ମୋ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ତା'ପରେ ସେ ଭୂଦାନରେ ଯୋଗ ଦେଇଥିଲେ । ନବବାବୁ ପ୍ରକୃତରେ ଗଣତାନ୍ତ୍ରିକ ଓ ସମାଜବାଦୀ ଆଦର୍ଶର ଭକ୍ତ ଥିଲେ ଏବଂ ବୈପ୍ଲବିକ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ବୁଦ୍ଧିଜୀବୀ ଥିଲେ । ଭୂଦାନ ଆନ୍ଦୋଳନରେ ଅସନ୍ତୁଷ୍ଟ ହୋଇ ବିପ୍ଳବୀ ଜୟପ୍ରକାଶ ନାରାୟଣଙ୍କ ଆହ୍ୱାନରେ ବିନୋବାଙ୍କୁ ଛାଡ଼ିଲେ । ନକ୍ସଲପନ୍ଥୀଙ୍କୁ ସାହାଯ୍ୟ କଲେ । ରାଉରକେଲା ସାମ୍ପ୍ରଦାୟିକ ଗଣ୍ଡଗୋଳ ସମୟରେ ତାଙ୍କ ସହିତ ରାଉରକେଲା ଓ ଗ୍ରାମାଞ୍ଚଳ ବୁଲିବାର ମୋର ସୌଭାଗ୍ୟ ହୋଇଥିଲା । ନବବାବୁ ଓ ମାଳତୀ ଦେବୀଙ୍କର ପ୍ରଗତିଶୀଳ ମାନବବାଦ ଓ ଆନ୍ତରିକ ସମାଜ ସେବାର ପଟାନ୍ତର ନାହିଁ ବୋଲି ମୋର ହୃଦ୍‌ବୋଧ ହୋଇଥିଲା । ସେମାନଙ୍କର ସ୍ନେହ ଶ୍ରଦ୍ଧା ମୁଁ ଜୀବନରେ ଭୁଲିପାରିବି ନାହିଁ ଏବଂ ସେମାନଙ୍କ ସହିତ ମୋର ବନ୍ଧୁତା ଅତୁଟ ରହି ଆସିଥିଲା ।

ଏ ସମୟରେ ଆଉ ଜଣେ ବିଶିଷ୍ଟ ରାଜନୈତିକ ନେତାଙ୍କ ସହିତ ଗୋଟିଏ ଅପ୍ରୀତିକର ଘଟଣା ଘଟିଗଲା । ସମାଜ ସଂପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ଶିକ୍ଷାମନ୍ତ୍ରୀ ଥିଲେ । ସେ ବିଧାନ ସଭାରେ କହୁ କହୁ ଥରେ କହିଦେଇଥିଲେ ଯେ ରେଭେନ୍ସା କଲେଜ ଅଧ୍ୟାପକମାନେ ମଦ ପିଉଛନ୍ତି । ଏ ଖବର ସମାଜରେ ପ୍ରକାଶ ପାଇଲା । ସବୁ ଅଧ୍ୟାପକମାନେ ତାଙ୍କ ପ୍ରତି ବିରକ୍ତ, କିନ୍ତୁ କେହି ସାହସ କରି ତାଙ୍କୁ ଏ ବିଷୟରେ ମୁହାଁମୁହିଁ ହେବାକୁ ବାହାରନ୍ତି ନାହିଁ । ଥରେ ବିଶ୍ୱବିଦ୍ୟାଳୟର ଗୋଟିଏ ଚା' ଭୋଜିରେ ତାଙ୍କ ସହିତ ମୋର ଏ ସଂପର୍କରେ ଯୁକ୍ତିତର୍କ ହୋଇଗଲା । ସେ କହିଲେ ଯେ ତାଙ୍କ ପାଖରେ ସଠିକ୍ ସମ୍ବାଦ ରହିଛି ଯେ ଜଣେ ଅଧ୍ୟାପକ ମଦ ପିଅନ୍ତି ବୋଲି । ମୁଁ ତାଙ୍କୁ ଉତ୍ତରରେ କହିଥିଲି ଯେ–

''ଜଣେ ଅଧ୍ୟାପକ ଯଦି ମଦ ପିଇ କଲେଜକୁ ଆସିବେ ତା'ହେଲେ ତାଙ୍କ ବିରୁଦ୍ଧରେ କଠୋର ଶାସ୍ତି ବିଧାନ କରିବା ଉଚିତ । କିନ୍ତୁ ସେ ଯଦି ଘରେ ମଦ ପିଅନ୍ତି ଆପଣଙ୍କର କହିବାର ଅଧିକାର ନାହିଁ । ତା'ଛଡ଼ା ସବୁ ଅଧ୍ୟାପକଙ୍କୁ କାହିଁକି ବଦନାମ୍ କରୁଛନ୍ତି ? କେତେକ ଏମ୍.ଏଲ୍.ଏ. ଗଞ୍ଜେଇ ଖାଆନ୍ତି, ମୁଁ କ'ଣ ଖବରକାଗଜରେ ଲେଖିବି ଯେ ଓଡ଼ିଶାରେ ସବୁ ବିଧାୟକମାନେ ଗଞ୍ଜୋଡ଼ ?''

ଏତିକିରେ ରାଧାନାଥ ବାବୁ ବହୁତ ରାଗିଲେ । ସେତିକିବେଳେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ସେଠାରେ ପହଞ୍ଚି ଥିଲେ ଏବଂ ହସି ହସି କହିଲେ ଯେ—

''ଦୁଇ ରାଧାନାଥଙ୍କ ଭିତରେ କ'ଣ ଗରମାଗରମ ଆଲୋଚନା ଚାଲିଛି ?''

ମୁଁ କହିଲି, ''ଅଧ୍ୟାପକମାନଙ୍କର ମଦ ପିଇବା କଥା ପଡ଼ିଥିଲା ।''

ନବବାବୁ ହସି ହସି କହିଲେ—

''କାହିଁକି, ତୁମେ ଟିକେ ଟିକେ ପିଉନ ?''

ମୁଁ କହିଲି—

''ଆପଣ ଅଧ୍ୟାପକଙ୍କୁ ଏତେ କମ୍ ଦରମା ଦିଅନ୍ତି ଯେ ସେମାନେ ଚାହିଁଲେ ବି ମଦ ପିଇ ପାରିବେ ନାହିଁ । ଅଥଚ ଆପଣଙ୍କର ସରକାରୀ ବାସଭବନ ପାଖରେ- (ସେ ସେତେବେଳେ ବାରବାଟୀ ଦୁର୍ଗ ଭିତରେ ଥିବା ସର୍କିଟ୍ ହାଉସ୍‌ରେ ରହୁଥିଲେ) କଟକ କ୍ଲବ୍‌ରେ ବଡ଼ ବଡ଼ ଅଫିସରମାନେ ମାଛ ପାଣି ପିଇଲା ପରି ମଦ ପିଇ ଗଡୁଛନ୍ତି । ସେ ବିଷୟରେ ତ କାହିଁକି ବିଧାନସଭାରେ କାହାରି ଦୃଷ୍ଟି ପଡ଼ିଲାନାହିଁ ? ଆପଣମାନେ ସେମାନଙ୍କୁ ଡରନ୍ତି ଅଥଚ ବିଚରା ଅଧ୍ୟାପକମାନଙ୍କ ଉପରେ ସବୁ କୋରଡ଼ା ମାଡ଼ ।''

ଏତିକିରେ ରାଧାନାଥ ବାବୁ ରାଗରେ ସେଠାରୁ ଚାଲିଗଲେ । ଡ. ବଳଭଦ୍ର ପ୍ରସାଦ, ଡି.ପି.ଆଇ.ଙ୍କ ଆଗରେ ମୋ ବିରୁଦ୍ଧରେ ଆପତ୍ତି କଲେ । ଡ. ପ୍ରସାଦ ଜଣେ ସ୍ୱାଧୀନଚେତା ଲୋକ ଥିଲେ । ସେ ଶିକ୍ଷାମନ୍ତ୍ରୀଙ୍କ କଥାରେ ନଇଁଯିବା ଲୋକ ନୁହନ୍ତି । ସେ କହିଥିଲେ—

''ଆଜ୍ଞା ଆମେ ସମସ୍ତେ ଏଥିରେ ମର୍ମାହତ ହୋଇଛୁ । ରାଧାନାଥ କିନ୍ତୁ କହିଦେଲା,''

ଡ. ପ୍ରସାଦ ଶେଷ ସ୍ୱାଧୀନଚେତା ନିର୍ଭୀକ ଡି.ପି.ଆଇ. ଥିଲେ ବୋଲି ମୋର ଦୃଢ଼ ଧାରଣା । ତା'ପରେ ମୁଁ ଆଉ ବହୁତ ବର୍ଷ ପର୍ଯ୍ୟନ୍ତ ଗୋପବନ୍ଧୁଙ୍କ ଶ୍ରାଦ୍ଧ ଦିବସ ପାଇଁ ନିମନ୍ତ୍ରଣ ପାଇଲି ନାହିଁ କି ମୋର ଲେଖା ସମାଜରେ ଆଉ ପ୍ରକାଶିତ ହେଲାନାହିଁ । ବହୁଦିନ ଯାଏ ମୁଁ ନମସ୍କାର କଲେ ରାଧାନାଥ ବାବୁ ପ୍ରତିନମସ୍କାର କରନ୍ତି ନାହିଁ । ମୋର ଧାରଣା ସାମନ୍ତବାଦୀ ଅହମିକା ଓ ଅସହିଷ୍ଣୁତା ଗଣତାନ୍ତ୍ରିକ ଚିନ୍ତାଧାରାର ସଂପୂର୍ଣ୍ଣ ବିପରୀତ ।

ବହୁବର୍ଷ ପରେ ମୋର ଅବସର ଗ୍ରହଣ ପରେ ରାଧାନାଥ ବାବୁଙ୍କ ସହିତ ମୋର ଘନିଷ୍ଠତା କିନ୍ତୁ ବଢ଼ିଥିଲା । ୧୯୮୨ର ବନ୍ୟା ବାତ୍ୟା ବେଳେ ମୁଁ ତାଙ୍କ ସହିତ କାମ କରିଥିଲି । ଅତି ନିକଟରୁ ଦେଖିଲା ପରେ ମୋର ମନେ ହେଲା ସେ ଜଣେ ବଦ୍‌ରାଗୀ ବ୍ୟକ୍ତି ହେଲେ ମଧ୍ୟ ଅନ୍ୟ ସମୟରେ ଅତି ଦୟାଳୁ ଓ ପ୍ରଶସ୍ତମନା ଥିଲେ । ଗରିବ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କୁ ସାହାଯ୍ୟ ଦେବାରେ ତାଙ୍କ ମନ ଅତି ବିଶାଳ । ହାତ ଖୋଲି ସେ ସେମାନଙ୍କୁ ସାହାଯ୍ୟ କରନ୍ତି । ତାଙ୍କ ସହିତ ମୋର ବନ୍ଧୁତା ହେଲା ପରେ ତାଙ୍କୁ ଭଲ ଭାବରେ

ଚିହ୍ନିବାର ସୁଯୋଗ ମିଳିଲା ଏବଂ ତାଙ୍କ ସହିତ କାମ କରିବାରେ ଓ ଆଲୋଚନା କଲାବେଳେ ମୋତେ ବହୁତ ଆନନ୍ଦ ମିଳିଲା । ମୋର ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ବଢ଼ିଗଲା । ପ୍ରକୃତରେ ଏପରି ମହାନୁଭବ ଓ ଜ୍ଞାନୀ ଲୋକ ଆଧୁନିକ ଓଡ଼ିଶାରେ ବିରଳ କହିଲେ ଚଳେ । ତାଙ୍କୁ ଅନ୍ୟ ଦେଶର ଲୋକଙ୍କ ସହିତ ପରିଚୟ କରାଇ ଦେଲାବେଳେ ମୁଁ ସବୁବେଳେ କହେ ଯେ ତାଙ୍କ ରକ୍ତ ମାଂସ ଶରୀରର ଶକ୍ତି ଅପେକ୍ଷା ତାଙ୍କର ଆତ୍ମିକ ଶକ୍ତି ଏବଂ ମାନବିକତା ମନୋଭାବ ଏତେ ବଳିଷ୍ଠ ଯେ ସେ ଏହି ପରିଣତ ବୟସରେ ମଧ୍ୟ ଯେ କୌଣସି ଯୁବକଠାରୁ ଅଧିକ କାର୍ଯ୍ୟକ୍ଷମ ଓ ଚିନ୍ତନରାଜ୍ୟରେ ଅଧିକ ଅଗ୍ରଧର୍ଶୀ । ମନୁଷ୍ୟ ଆତ୍ମିକ ଶକ୍ତିରେ କିପରି ବଳୀୟାନ ହୋଇପାରେ, ସେ ତାର ଜ୍ୱଳନ୍ତ ଉଦାହରଣ ବୋଲି ମୋର ଦୃଢ଼ ଧାରଣା ହୋଇଛି । ତାଙ୍କର ମାନସିକ ଦକ୍ଷତା ଅତୁଟ ରହିଥିଲା । ତାଙ୍କର ଶତବାର୍ଷିକୀ ପର୍ଯ୍ୟନ୍ତ ତାଙ୍କର ଜ୍ଞାନର ପରିସର ଯେ ଅତୁଟ ରହିଥିଲା ତାହା ସର୍ବଜନବିଦିତ । ଅଦ୍ଭୁତ ପ୍ରତିଭାଶାଳୀ ବ୍ୟକ୍ତି ହେଉଛନ୍ତି ରାଧାନାଥ ବାବୁ ।

ଔପନିବେଶିକ ଓ ସାମନ୍ତବାଦୀ ଶାସନ ସଂସ୍ଥା ତଥା ପଶ୍ଚାତମୁଖୀ ସାମାଜିକ ପ୍ରତିଷ୍ଠାନ ଓ ପ୍ରତିକ୍ରିୟାଶୀଳ ନେତୃତ୍ୱ ବିରୁଦ୍ଧରେ ମୋର ମତାମତ ସ୍ପଷ୍ଟ ଭାବରେ ପ୍ରକାଶ କରିବା ଏବଂ ଯେତେବଡ଼ ପ୍ରତିଷ୍ଠିତ ବ୍ୟକ୍ତି ହୁଅନ୍ତୁ ନା କାହିଁକି ତାଙ୍କ ସହିତ ଯୁକ୍ତି କରିବା ବା ସେମାନଙ୍କର ଜନବିରୋଧୀ କାର୍ଯ୍ୟକଳାପ ବିରୁଦ୍ଧରେ ସର୍ବସାଧାରଣରେ ମତ ପ୍ରକାଶ କରିବାର ଦୃଢ଼ ମନୋବୃତ୍ତି ମୋଠାରେ ଦେଖାଦେଇଥିଲା । ବହୁତ ଭାବିଚିନ୍ତି ଏ ପ୍ରକାର ଆଭିମୁଖ୍ୟ ମୁଁ ଗ୍ରହଣ କରିନେଇଥିଲି । ମୋତେ କେତେକ ବନ୍ଧୁ ପରାମର୍ଶ ଦେଇଥିଲେ ଯେ ମୁଁ ରିଡ଼ର ହେଲା ପରେ ଏପରି କଥା କହିଲେ ଚଳିବ । ବର୍ତ୍ତମାନ ପାଇଁ ଟିକିଏ ଚୁପ୍ ରହିଗଲେ ଭଲ । ମୁଁ କିନ୍ତୁ ଭାବିଲି ଯେ ଚାକିରିରେ ଉନ୍ନତି କରିବାର ଆକାଙ୍‌କ୍ଷାର ସୀମା ନାହିଁ । ରିଡ଼ର ହେଲା ପରେ ପ୍ରଫେସର, ତା'ପରେ କୁଳପତି, ତା'ପରେ ସରକାରୀ ପରାମର୍ଶଦାତା ଇତ୍ୟାଦି ବହୁ ପଦବୀ ପାଇବା ଆକାଙ୍‌କ୍ଷାର ଶେଷ ନାହିଁ । ତେଣୁ ମୂଳରୁ ଜଣେ ସ୍ତାବକ ହୋଇ ରହିବିନାହିଁ, ସ୍ପଷ୍ଟବାଦୀ ହେବି, ତା'ପରେ ଯାହା ହେବ ଦେଖାଯିବ । ଏହି ଆଭିମୁଖ୍ୟକୁ ମୁଁ ଦୃଢ଼ ଭାବରେ ଗ୍ରହଣ କରି ନେଇଥିଲି । ତେଣୁ 'ଆମର ଭୁଲ୍ କେଉଁଠି' ବହି ଲେଖି ପାରିଥିଲି । ପରେ 'ସାମ୍ମୁଖ୍ୟ' ନାମକ ପ୍ରଗତିଶୀଳ ମାସିକ ପତ୍ରିକା ବହୁବର୍ଷଯାଏ ସଂପାଦନ କରିପାରିଲି । ଜରୁରୀକାଳୀନ ସମୟରେ 'ଆଗକୁ ନା ପଛକୁ' ନାମକ ବହି ପ୍ରକାଶିତ ହୋଇଥିଲା । ଭାରତର ନାନା କ୍ଷେତ୍ରରେ, ବିଶେଷତଃ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ ପ୍ରଭୃତି ସର୍ବଭାରତୀୟ ସଂସ୍ଥାଗୁଡ଼ିକରେ ମୋର ଦୃଢ଼ ମତ ପ୍ରକାଶ କରିବା ଲାଗି ମୁଁ ସୁନାମ ଅର୍ଜନ କଲି । ଭାରତରେ ଓ ଭାରତ ବାହାରେ କେବଳ ଏଥିପାଇଁ ବହୁ ସୁବିଧା ସୁଯୋଗ ପାଇଲି । ସେଥିପାଇଁ ମୋର ବହୁତ ଖ୍ୟାତି ହେଲା । ବାରମ୍ବାର ବିଦେଶ ଭ୍ରମଣରେ ଗଲି । ପ୍ରାୟ ପ୍ରତିବର୍ଷ କୌଣସି ନା କୌଣସି ଦେଶକୁ ଯିବାର ସୁବିଧା ପାଇଲି । କିନ୍ତୁ ସବୁଠୁ ବେଶୀ ସାମନ୍ତବାଦୀ ମନୋଭାବାପନ୍ନ ଓଡ଼ିଶାର ଶାସକ ଗୋଷ୍ଠୀଙ୍କର କୋପ ଦୃଷ୍ଟିରେ ମୁଁ ଜୀବନସାରା ରହିଗଲି । ବର୍ତ୍ତମାନ ଜୀବନର ଅପରାହ୍ନରେ ମୋର ଆଦର୍ଶଗତ ଦୃଢ଼ତା ଲାଗି ମୁଁ ନିଜକୁ ଗୌରବାନ୍ୱିତ ମନେକରୁଛି । ଓଡ଼ିଶାରେ କୁଳପତି ନ

ହେବାର ଦୁଃଖ ମୋର ଆଦୌ ନାହିଁ । କାରଣ ତା'ଠାରୁ ବେଶୀ ସମ୍ମାନ ସ୍ୱଦ, 'ଜାତୀୟ ଫେଲୋ' ପରି ପଦବୀ ମୁଁ ଓଡ଼ିଶା ବାହାରର ଲୋକଙ୍କ ଯୋଗୁ ପାଇଛି ।

X X X X X X

ମୁଁ ଇଂଲଣ୍ଡରୁ ଫେରିବାର ପ୍ରଥମ ସପ୍ତାହରେ ହିଁ ଦୁଇଜଣ ବିପରୀତମାର୍ଗୀ ଲୋକଙ୍କ ସହ ଦେଖା ହେଲା । ମୁଁ ଇଂଲଣ୍ଡରେ ଜଣେ ପ୍ରଗତିଶୀଳ ଓ ରାଡ଼ିକାଲ ବ୍ୟକ୍ତି ହିସାବରେ ପରିଚିତ ହୋଇଥିଲି । ଏ ଖବର ଆମ ଭାରତୀୟ ପୋଲିସ୍ ବିଭାଗକୁ ଇଂଲଣ୍ଡରୁ ଗୁପ୍ତ ଭାବରେ ଆସିଥାଏ କାରଣ ବ୍ରିଟିଶ୍ ଗୋଇନ୍ଦାଙ୍କ ଉପରେ ଭାରତୀୟ ପୋଲିସ୍ ସଂପୂର୍ଣ୍ଣ ନିର୍ଭର କରୁଥିଲା । ମୋର ଆସିବାର ଦୁଇଦିନ ପରେ ମୋର ଜଣେ ସହପାଠୀ ପୋଲିସ୍ ଅଫିସର ମୋତେ ଆସି ଦେଖା କଲେ । ମୁଁ ଜାଣି ନଥାଏ ଯେ ସେ ପୋଲିସ୍ ଗୁପ୍ତ ବିଭାଗରେ କାମ କରୁଥାନ୍ତି । ସେ ମୋର ଆଇ.ଏ. ବେଳର ସହପାଠୀ । ତାପରେ ବହୁବର୍ଷ ପର୍ଯ୍ୟନ୍ତ ତାଙ୍କ ସହିତ ମୋର ଦେଖା ମଧ୍ୟ ହୋଇ ନଥାଏ । ସେ ଆସି ମୋ ପାଖରେ ଇଂଲଣ୍ଡ ଓ ପୃଥିବୀର ଅନ୍ୟାନ୍ୟ ଦେଶର ବାମପନ୍ଥୀ ଦଳମାନଙ୍କ ସପକ୍ଷରେ ବହୁତ ପ୍ରଶଂସା ଆରମ୍ଭ କଲେ ଏବଂ ମୋଠାରେ ବିଶ୍ୱାସ ଜନ୍ମାଇଲେ ଯେ ସେ ଜଣେ ବାମପନ୍ଥୀ ଆଭିମୁଖ୍ୟର ବଳିଷ୍ଠ ପୃଷ୍ଠପୋଷକ । ମୁଁ ତ ସଦ୍ୟ ଫେରିଥାଏ, ବାମପନ୍ଥୀ ଆଦର୍ଶରେ ସଂପୂର୍ଣ୍ଣ ରୂପେ ଅନୁପ୍ରାଣିତ ହୋଇଥାଏ । ପୃଥିବୀର ବହୁତ ଖବର ମୋ ପାଖରେ ଥାଏ, ତେଣୁ ସେ ଭଦ୍ରଲୋକଙ୍କ ଆଗରେ ଇଂଲଣ୍ଡର କ୍ଲବମାନଙ୍କରେ ବକ୍ତୃତା କଲା ପରି ଅନର୍ଗଳ ବକ୍ତୃତା ଆରମ୍ଭ କଲି । ତାଙ୍କ ଦ୍ୱାରା ପ୍ରସାରିତ ରାଜନୈତିକ ଜାଲରେ ମୋର ସଂପୂର୍ଣ୍ଣ ଅଜାଣତରେ ମୁଁ ପଡ଼ିଗଲି । ଏହିପରି ବହୁଥର ସେ ମୋ ପାଖକୁ ଆସନ୍ତି । ବହୁଦିନ ପରେ ମୁଁ ବୁଝିଲି ଯେ ସେ କିଏ ?

ସେହି ସପ୍ତାହରେ ମଧ୍ୟ ଦିନେ ରାତି ୧୧ଟା ବେଳେ ଜଣେ ଲୋକ ମୋତେ ଦେଖା କରିଥିଲେ । ସେ ଜଣେ ରେଳବାଇ ବିଭାଗର ଇଞ୍ଜିନିୟର । ସେ ଥିଲେ ଭାରତୀୟ ବାମପନ୍ଥୀ ଆନ୍ଦୋଳନର ଗୁପ୍ତ ସଂଯୋଜକ । ସେ ମଧ୍ୟ ମୋ ଖବର ଆନ୍ତର୍ଜାତିକ ବାମପନ୍ଥୀ ଗୁପ୍ତ ସମ୍ବାଦ ମାଧ୍ୟମରେ ପାଇଥିଲେ । ଏବଂ କେଉଁଦିନ କଟକରେ ପହଞ୍ଚିବି ତାହା ମଧ୍ୟ ସଠିକ୍ ଭାବରେ ସେ ଜାଣିଥିଲେ । ତାଙ୍କର ବହୁ ଗୁପ୍ତ ସମ୍ବାଦ ସବୁ ମୋତେ ଦେଲେ । ବହୁ ପ୍ରକାରର ପୁସ୍ତିକା ଓ ସାଇକ୍ଲୋଷ୍ଟାଇଲ ଲେଖାମାନ ଦେଲେ । କିଛି ଆର୍ଥିକ ସାହାଯ୍ୟ ନେଲେ ଏବଂ ତାପରେ ସେ ମଧ୍ୟ ବହୁତଥର ମୋ ପାଖକୁ ଆସିଥିଲେ ।

ଏହି ସମୟରେ ଭାରତରେ ବାମପନ୍ଥୀ ଆନ୍ଦୋଳନ ସରକାରଙ୍କର କୋପ ଦୃଷ୍ଟିରେ ଥିଲା । ଏ ଦୁଇଟିଯାକ ଘଟଣା ମୋତେ ବଡ଼ ଅଦ୍ଭୁତ ଲାଗୁଥିଲା । ତାପରେ ବହୁଦିନଯାଏ ବାମପନ୍ଥୀ ରାଜନୈତିକ ନେତାମାନଙ୍କ ସହିତ ମୋର ବିଶେଷ ବନ୍ଧୁତା ଥିଲା । ତାପରେ ସେମାନଙ୍କର ରାଜନୈତିକ ଅଧୋଗତି ଓ ପରସ୍ପର କଳହ ଯୋଗୁ ସେମାନଙ୍କ ସହିତ ମୋର ସଂଯୋଗ ଛିନ୍ନ ହୋଇଥିଲା । ସେତେବେଳେ ଇସ୍କସ୍ ଓ ଭାରତୀୟ ଜନତା ରଙ୍ଗମଞ୍ଚ ଆନ୍ଦୋଳନ (I.P.T.A.) ସହିତ ମୋର ଗଭୀର ସଂପର୍କ ରହିଥିଲା । 'ଇପ୍‌ଟା' କଟକରେ ତିନିରାତି ଧରି ଯେପରି ଭାବରେ ଚିତ୍ତାକର୍ଷକ ଅଭିନୟ ପ୍ରଦର୍ଶନ କରିଥିଲେ, ତାହା

କଟକବାସୀଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଜନତା ରଙ୍ଗମଞ୍ଚ ପ୍ରେକ୍ଷାଳୟ ଦର୍ଶକରେ ଭରପୂର ହୋଇଯାଉଥିଲା । ମୁଁ ଏକମାତ୍ର ସରକାରୀ କର୍ମଚାରୀ ସେଠାରେ ଉପସ୍ଥିତ ଥିଲି । ଏ ପ୍ରକାର ଅଭିନୟକୁ ମଧ୍ୟ ସରକାର ବିରୋଧ କରୁଥିବାରୁ ମୋର ଏହି ପୁଞ୍ଜିପତି ଗୋଡ଼ାଣିଆ ସରକାର ପ୍ରତି ଭୟଙ୍କର ରାଗ ହୋଇଥିଲା । ଓଡ଼ିଶାରେ ଏହାର ଶାଖା ଖୋଲିବା ପାଇଁ, ଆର୍ଥିକ ସାହାଯ୍ୟ ଦେବା ପାଇଁ ରଙ୍ଗମଞ୍ଚକୁ ଯାଇ ମୁଁ ଘୋଷଣା କରିଥିଲି । କିନ୍ତୁ ଓଡ଼ିଶାରେ ବାମପନ୍ଥୀ ଆନ୍ଦୋଳନ ସେପରି ବଳିଷ୍ଠ ନଥିବାରୁ ଏହାର ଶାଖା ଏଠାରେ ପ୍ରତିଷ୍ଠିତ ହୋଇପାରିଲା ନାହିଁ । ଇସ୍‌କସ୍‌ର (ଭାରତ ସୋଭିଏତ୍ ମୈତ୍ରୀ ସଂଘ) ସବୁଠୁ ବଡ଼ ଦୁର୍ଦ୍ଦିନ ସମୟରେ ଯେତେବେଳେ ସରକାରଙ୍କର ବିଷ ଦୃଷ୍ଟିରେ ପଡ଼ିଥିଲା ସେତେବେଳେ ମୁଁ ଏହା ସହିତ ଗଭୀର ଭାବରେ ସଂପୃକ୍ତ ଥିଲି, କିନ୍ତୁ ଯେତେବେଳେ ଏହାର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହେଲା, ସରକାରଙ୍କ ଶୁଭ ଦୃଷ୍ଟି ପଡ଼ିଲା ପରେ ଏହା ଉପରେ ସୁବିଧାବାଦୀ ବୁଦ୍ଧିଜୀବୀଙ୍କର ଆଧିପତ୍ୟ ବଢ଼ିବାକୁ ଲାଗିଲା ଏବଂ ଏହା ଧନୀ ଲୋକଙ୍କର କୃପା ଲାଭ କଲା— ତାପରେ ତାହା ସହିତ ମୋର ଦୂରତ୍ୱ ବଢ଼ି ବଢ଼ି ଚାଲିଲା । ବର୍ତ୍ତମାନ କୌଣସି ନିମନ୍ତ୍ରଣ ମଧ୍ୟ ମୁଁ ଏ ସଂସ୍ଥାରୁ ପାଏନାହିଁ । ଭାରତୀୟ ବାମପନ୍ଥୀଙ୍କର ସରକାରୀ କୃପା ଲାଭ କରିବା ସଂଗ୍ରାମଶୀଳ ଭାରତୀୟ ଜନତାଙ୍କ ପାଇଁ କେତେଦୂର ଶୁଭଙ୍କର— ତାହା ସମସ୍ତଙ୍କର ପ୍ରଣିଧାନଯୋଗ୍ୟ ।

ଜଣେ ବୁଦ୍ଧିଜୀବୀ ମାର୍କ୍ସବାଦୀଙ୍କ ପକ୍ଷରେ କୌଣସି ବାମପନ୍ଥୀ ଦଳର ମତାମତ ସହିତ ସବୁବେଳେ ଏକମତ ହେବା ବଡ଼ କଠିନ । ବିଶେଷତଃ ମାର୍କସବାଦୀ ବୁଦ୍ଧିଜୀବୀ ମାର୍କସଙ୍କୁ ସବୁ ପରିସ୍ଥିତିରେ ଜଣେ ନିର୍ଭୁଲ ଭବିଷ୍ୟତ ବକ୍ତା ବୋଲି ଗ୍ରହଣ କରିପାରିବ ନାହିଁ । ମାର୍କସଙ୍କର ଐତିହାସିକ ଡାଇଲେକ୍‌ଟିକ୍ ବିଶ୍ଳେଷଣ ପଦ୍ଧତି ଗ୍ରହଣଯୋଗ୍ୟ । କିନ୍ତୁ ନାନା ଜଟିଳ ସାମାଜିକ ପରିସ୍ଥିତିରେ ତାଙ୍କର ସବୁ ଭବିଷ୍ୟତବାଣୀ ଠିକ୍ ବୋଲି କହିବା, ମାର୍କସୀୟ ବିଶ୍ଳେଷଣ ପଦ୍ଧତିର ପରିପନ୍ଥୀ । ଏ ପ୍ରକାର ପ୍ରଗତିଶୀଳ ବୈଜ୍ଞାନିକ ଆଭିମୁଖ୍ୟ ବହୁ ମାର୍କ୍ସୀୟ ରାଜନୀତି ଦଳଙ୍କର ନ ଥାଏ । ଅନେକଙ୍କ ପକ୍ଷରେ ଭାରତୀୟ ଶ୍ରୀ ଶ୍ରୀ ବାବା ମା'ଙ୍କର ପରି ମାର୍କସ ଓ ଏହାର ତତ୍ତ୍ୱ ବ୍ୟାଖ୍ୟାକାରଙ୍କୁ ଏମାନେ ବିନା ସମାଲୋଚନାରେ ଗ୍ରହଣ କରି ନିଅନ୍ତି । କିନ୍ତୁ ବୁଦ୍ଧିଜୀବୀଙ୍କ ପକ୍ଷରେ ଏହା ସମ୍ଭବ ନୁହେଁ ।

X X X X X X X

ମୋର ପୂର୍ବ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ ଭାବରେ ତିନିବର୍ଷ ତିନିମାସ ରହଣି କାଳଟି ବହୁତ ଭଲ ଲାଗିଥିଲା । ପିଲାମାନଙ୍କ ସହିତ ମିଶି ଘଣ୍ଟା ଘଣ୍ଟା ଧରି ନାନା ବିଷୟରେ ଆଲୋଚନା କରିବାରେ ମୋର ଆନନ୍ଦ ଥିଲା । ସେମାନଙ୍କ ସହିତ ବନ୍ଧୁ ଭାବରେ ଚଳିଲା ପରେ ଆଉ କୌଣସି ଶାସନଗତ ଅସୁବିଧା ରହିଲାନାହିଁ । ପ୍ରତିଦିନ ସନ୍ଧ୍ୟାରେ କୌଣସି ନା କୌଣସି ବିଷୟରେ ପିଲାମାନଙ୍କ ଭିତରେ ଆଲୋଚନା ସଭା ବସେ । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଜୀବ ବିଜ୍ଞାନ, ଅର୍ଥଶାସ୍ତ୍ର, ଦର୍ଶନ, ସାହିତ୍ୟ ପ୍ରଭୃତି ପ୍ରତ୍ୟେକ ବିଷୟ ପାଇଁ ଗୋଟିଏ ଲେଖାଏ ଆଲୋଚନା ଚକ୍ର ଅନୁଷ୍ଠିତ ହେଲା ଏବଂ ପ୍ରତି ସପ୍ତାହରେ ପ୍ରତି ବିଷୟରେ ଅନ୍ତତଃ ଥରେ ଗୋଟିଏ ଆଲୋଚନା ସଭା ଦୁଇଘଣ୍ଟା ଧରି ହୁଏ । ଅନ୍ୟ

ଅଧ୍ୟାପକମାନେ ମଧ୍ୟ ଆସନ୍ତି । ସମସ୍ତେ ବୁଝିଲାଭଳି ଭାଷାରେ ଆଲୋଚନା ହୁଏ, କାରଣ ମୋ ମତରେ କଳା ବିଭାଗର ପିଲାଏ ବିଜ୍ଞାନ ବିଷୟରେ ଜାଣିବା ଉଚିତ ଏବଂ ବିଜ୍ଞାନର ପିଲାଏ କଳା ବିଷୟରେ ସାଧାରଣ ଜ୍ଞାନ ଲାଭ କରିପାରିଲେ ସେମାନେ ଆଧୁନିକ ଯୁଗର ପୂର୍ଣ୍ଣ ବ୍ୟକ୍ତିତ୍ୱରେ ପରିଣତ ହୋଇପାରିବେ । ଦୈନନ୍ଦିନ ଜୀବନରେ ମଧ୍ୟ ଏହା ବହୁତ କାମରେ ଲାଗିବ । ମୁଁ ପ୍ରାୟ ପ୍ରତ୍ୟେକ ସଭାରେ ଉପସ୍ଥିତ ରହୁଥିଲି ଅର୍ଥାତ୍ ଛାତ୍ରାବାସରେ ମାସକଯାକ ପ୍ରତି ସନ୍ଧ୍ୟାରେ କିଛି ନା କିଛି ବିଷୟରେ ଆଲୋଚନା ସଭା ଚାଲିଥାଏ । ଯେ ଚାହିଁଲା ସେ ଆସି ଯୋଗ ଦେଇପାରିବ । ଯାହାର ପଢ଼ାପଢ଼ିରେ ବେଶୀ ସମୟ ଦରକାର ସେ ସବୁ ସଭାକୁ ନ ଆସିପାରେ । ପ୍ରତ୍ୟେକ ସଭାରେ ପ୍ରାୟ ପଚାଶଜଣ ଯାଏ ଉପସ୍ଥିତ ରହନ୍ତି । ଛାତ୍ରାବାସର ଛାତ୍ର ସଂଖ୍ୟା ୨୨୨ ଥିଲା । ବାହାରର ପିଲାଏ ମଧ୍ୟ ଆସନ୍ତି ।

ଛାତ୍ରାବାସରେ ଗୋଟିଏ ବୌଦ୍ଧିକ ବାତାବରଣ ସୃଷ୍ଟି ହୋଇପାରିଲା । ବର୍ଷକ ପାଇଁ ଧାର୍ ସୂତ୍ରରେ ପଢ଼ା ବହି ନେବା ପାଇଁ ଗୋଟିଏ ପୁସ୍ତକାଳୟ ମଧ୍ୟ ସ୍ଥାପିତ ହେଲା ଏବଂ ଯୋଜନା ହେଲା ଯେ ଦୁଇ ତିନିବର୍ଷ ବେଳକୁ ଛାତ୍ରାବାସର ସବୁ ପିଲାଏ ସବୁ ପାଠ୍ୟପୁସ୍ତକ ଯେପରି ଧାର ସୂତ୍ରରେ ପାଇପାରିବେ । ତା'ଛଡ଼ା ପ୍ରଚଳିତ ପୁସ୍ତକାଳୟର ପୁସ୍ତକ ସଂଖ୍ୟା ବହୁ ପରିମାଣରେ ବୃଦ୍ଧି କରାଗଲା । ଏସବୁ ଖର୍ଚ୍ଚ ହଷ୍ଟେଲ ପାଣ୍ଠିରୁ ବହନ କରାଗଲା ।

ଗୋଟିଏ ସାଧାରଣ ଉପାୟରେ ହଷ୍ଟେଲ ପାଣ୍ଠି ବୃଦ୍ଧି କରାଇପାରିଥିଲି । ଆଗରୁ ଅତିଥିମାନଙ୍କ ପାଇଁ ହଷ୍ଟେଲରେ ଖାଦ୍ୟର ବନ୍ଦୋବସ୍ତ କରିବା ବହୁତ କଡ଼ା ନିୟନ୍ତ୍ରଣ ଥିଲା । ମୁଁ ଏ ନିୟନ୍ତ୍ରଣକୁ ଉଠାଇଦେଲି । ଯେ ପିଲା ଯେତେଜଣ ଅତିଥି ଆଣିଲେ ସୁଦ୍ଧା ଖାଦ୍ୟ ବନ୍ଦୋବସ୍ତ କରିବା ପାଇଁ ଆଦେଶ ଦେଲି । ଏଥିରେ ତ ରନ୍ଧନ ପଦ୍ଧତିରେ ବିଶେଷ ଖର୍ଚ୍ଚ ନାହିଁ ଫଳରେ ବର୍ଷକୁ କୋଡ଼ିଏ ପଚିଶ୍ ହଜାର ଟଙ୍କା ବଳକା ହେଲା ।

ସେତେବେଳକୁ ପିଲାଏ ରନ୍ଧାଘର ଆଗରେ ପାଣି ପଚପଚ ବାରଣ୍ଡାରେ ଚଟେଇ ପକାଇ ତଳେ ଖାଉଥିଲେ । ପଛପଟେ ବୁଲା କୁକୁରମାନେ ଭାଉଁ ଭାଉଁ ହେଉଥିଲେ । ମୋତେ ଏହା ବଡ଼ ମଇଳା ଓ ହିନିମାନିଆ ମନେହେଲା । ତା'ପରେ ଏହି ବଳକା ଟଙ୍କାରୁ ଖାଇବା ଟେବୁଲ ବନ୍ଦୋବସ୍ତ କଲି । କିଛିବର୍ଷ ପରେ ଏମାନଙ୍କୁ ଦେଖି ପଶ୍ଚିମ ଛାତ୍ରାବାସରେ ମଧ୍ୟ ଖାଇବା ପାଇଁ ଟେବୁଲର ବ୍ୟବସ୍ଥା ହେଲା । ଏ ସବୁ କାର୍ଯ୍ୟରେ ପିଲାମାନେ ବହୁତ ସାହାଯ୍ୟ କଲେ । ସେମାନଙ୍କର ପରିଶ୍ରମ ଓ ନିଷ୍ଠା ଅତୁଳନୀୟ । ସେମାନଙ୍କ ଭିତରୁ ଦୁଇଜଣଙ୍କର ନିଷ୍ଠା ଆଜିଯାଏ ମୋର ମନେଅଛି । ଶ୍ରୀ ଗୌରଚନ୍ଦ୍ର ଦାସ ଓ ରମାକାନ୍ତ ମିଶ୍ରଙ୍କର ଅବଦାନ ଉଲ୍ଲେଖଯୋଗ୍ୟ । ଶ୍ରୀ ଦାସ ବର୍ତ୍ତମାନ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଇଂରେଜି ବିଭାଗର ପ୍ରଫେସର ଏବଂ ପରବର୍ତ୍ତୀ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହେଲେ । ଶ୍ରୀ ମିଶ୍ର ଓଡ଼ିଶା ସରକାରଙ୍କର ମୁଖ୍ୟ ସେକ୍ରେଟାରୀ ହେଲା ପରେ ଅବସର ନେଲେଣି । ସେହି କଥା ମନେରଖି ଶ୍ରୀ ରମାକାନ୍ତ ମିଶ୍ରଙ୍କୁ କଟକର ଗହ୍ମାଡ଼ିଆଁ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ନୂଆକରି ଅନୁଷ୍ଠିତ ହୋଇଥିବା ପୁସ୍ତକାଳୟ ଉନ୍ମୋଚନ ପାଇଁ ମୁଁ ଡାକିଥିଲି । ସେ ସେତେବେଳକୁ କଟକର ଆର୍.ଡି.ସି. ଥିଲେ ।

ପୂର୍ବ ଛାତ୍ରାବାସରେ ପିଲାଙ୍କ ସହିତ ବହୁ ସମୟ ଆଲୋଚନା ବେଳେ ଶ୍ରୀ ପ୍ରହ୍ଲାଦ ମଲ୍ଲିକ ଓ ଶ୍ରୀ ଭାଗବତ ପ୍ରସାଦ ରଥ ଦେଶସେବାରେ ଆତ୍ମୋତ୍ସର୍ଗ କରିବେ ବୋଲି ଆଗଭର

ହୋଇଥିଲେ । ମୋର ମନେଅଛି, ଥରେ ରାତି ୧୦ଟାରେ ସେ ଦୁହେଁ ମୋ ଘରକୁ ଆସିଥିଲେ ମୋର ଆଶୀର୍ବାଦ ନେଇ ସେହି ରାତିରେ ବାହାରି ପଡ଼ିବେ ଦେଶସେବା ବ୍ରତ ନେଇ—ତାହାହିଁ ହୋଇଥିଲା । ମୁଁ ଯୁବକମାନଙ୍କୁ ଦେଶ ସେବା ଓ ରାଜନୀତିରେ ଭାଗ ନେବା ପାଇଁ ପ୍ରବର୍ତ୍ତାଉ ଥିଲି । ଯେକୌଣସି ଦଳରେ ଯୋଗ ଦିଅନ୍ତୁ ପଛକେ ନୂତନ ଆଦର୍ଶ ନେଇ ଲୋକଙ୍କ ସେବା ତଥା ସ୍ଥିତିଶୀଳ ଶାସନ ସଂସ୍ଥାକୁ ବଦଳାଇବା ପାଇଁ ମୁଁ ସେମାନଙ୍କୁ ବୁଝାଉଥିଲି । ଏହି ପରିପ୍ରେକ୍ଷୀରେ ଶ୍ରୀ ପଦ୍ମଚରଣ ନାୟକଙ୍କ ସହିତ ମୋର ବନ୍ଧୁତା ହୋଇଥିଲା । ପ୍ରହ୍ଲାଦ ବାବୁ କଂଗ୍ରେସରେ, ପଦ୍ମଚରଣ ବାବୁ କମ୍ୟୁନିଷ୍ଟ ଦଳରେ ଏବଂ ଭାଗବତ ବାବୁ ଶିକ୍ଷା କ୍ଷେତ୍ରରେ ପରିବର୍ତ୍ତନ ପାଇଁ ଯୋଗ ଦେଇଥିଲେ ।

X X X X X X X

ହଷ୍ଟେଲରେ ଥିବା ବେଳେ ଆଉ ଗୋଟିଏ ଅବିସ୍ମରଣୀୟ ଘଟଣା ଘଟିଥିଲା । ସରକାରଙ୍କର କଲେଜ ଦରମା ବୃଦ୍ଧି ବିରୁଦ୍ଧରେ ଗୋଟିଏ ବିରାଟ ଛାତ୍ର ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ସବୁ କଲେଜରେ ଛାତ୍ର ଧର୍ମଘଟ ଚାଲିଥାଏ । ସବୁ ଛାତ୍ର ନେତାମାନେ ପୂର୍ବ ଛାତ୍ରାବାସରେ ଆସି ରହନ୍ତି । ଏହା ଯେପରି ସେମାନଙ୍କ ଆନ୍ଦୋଳନର ଅଭେଦ୍ୟ ଦୁର୍ଗ ଥିଲା । ସଂଧ୍ୟାବେଳେ ମୁଁ ସେମାନଙ୍କୁ ଦେଖେ ଏବଂ କହେ ଯେ, ସୁପରିନ୍‌ଟେଣ୍ଡେଣ୍ଟ ହିସାବରେ, ତୁମେମାନେ ଏଠାରେ ଅଛ ବୋଲି ମୁଁ ପ୍ରିନ୍‌ସପାଲଙ୍କୁ ନିଶ୍ଚୟ ରିପୋର୍ଟ କରିବି । କିନ୍ତୁ ଯେହେତୁ ତୁମେମାନେ ନେତା, ଏଥିରେ ତୁମମାନଙ୍କର ଡରିଯିବା କଥା ନୁହେଁ । ତା'ପରେ ଅନେକ ସମୟରେ ରାତି ୧୨ଟା ଯାଏ ସେମାନଙ୍କ ସହିତ ନାନା ବିଷୟରେ ଆଲୋଚନା ଚାଲେ ।

ପ୍ରିନ୍‌ସପାଲ ଡକ୍ଟର ବାନାର୍ଜୀ ପ୍ରତିଦିନ ସନ୍ଧ୍ୟାରେ ମୋ ଘରକୁ ଆସନ୍ତି ଭଲମନ୍ଦ ବୁଝିବା ପାଇଁ । ମୋତେ ଉତ୍ସାହିତ କରନ୍ତି ଏବଂ ବ୍ୟସ୍ତ ନ ହେବା ପାଇଁ କହି ଫେରନ୍ତି । ଥରେ ଡକ୍ଟର ବଳଭଦ୍ର ପ୍ରସାଦ ମୋ ଘରକୁ ଆସି ମୋତେ ବୁଝାଇଲେ ଯେ ପୋଲିସ୍ ହଷ୍ଟେଲରେ ପଶି ନେତାମାନଙ୍କୁ ଗିରଫ କରିବାକୁ ଚାହୁଁଛି । ସରକାରଙ୍କର ମଧ୍ୟ ସେହି ଇଚ୍ଛା । ବର୍ତ୍ତମାନ ପରିସ୍ଥିତିରେ ଏଥିରେ ରାଜି ନହେଲେ ପରିଣତି ଖରାପ ହେବାର ଆଶଙ୍କା ଅଛି । ମୁଁ ଏଥିରେ ରାଜି ହେଲିନାହିଁ । କାରଣ, ହଷ୍ଟେଲରେ ପୋଲିସ୍ ପଶିଲା ପରେ ଯଦି କୌଣସି ଅପ୍ରୀତିକର ଘଟଣା ଘଟେ ଏବଂ ପୋଲିସ୍ ଗୁଳି ଚଳାଏ, ପିଲାମାନେ ମରନ୍ତି ବା ଆହତ ହୁଅନ୍ତି, ତା'ପାଇଁ, ଅଭିଭାବକମାନଙ୍କ ପାଖରେ ମୋତେ ଦାୟୀ ହେବାକୁ ପଡ଼ିବ । ତେଣୁ ମୁଁ ସୁପରିନ୍‌ଟେଣ୍ଡେଣ୍ଟ ଥାଇ ଏହା ହୋଇପାରିବ ନାହିଁ । ଯଦି ସରକାର ବାଧ୍ୟ କରନ୍ତି, ତେବେ ମୁଁ ହଷ୍ଟେଲ ସୁପରିନ୍‌ଟେଣ୍ଡେଣ୍ଟ ପଦରୁ ଇସ୍ତଫା ଦେଇଦେବି । ତା'ପରେ ଯାଇ ପୋଲିସ୍ ପ୍ରବେଶ କରିବ । ଡକ୍ଟର ବାନାର୍ଜୀ ମୋ ସହିତ ଏକମତ ହେଲେ । ଡକ୍ଟର ପ୍ରସାଦଙ୍କର ପ୍ରସ୍ତାବ କାର୍ଯ୍ୟକାରୀ ହେଲା ନାହିଁ ।

ଡକ୍ଟର ବାନାର୍ଜୀ ବାହାରକୁ ଏତେ ରୁକ୍ଷ ଦେଖାଯାନ୍ତି, କିନ୍ତୁ ସେ ବହୁତ ସ୍ନେହଶୀଳ ଓ ସ୍ୱାଧୀନଚେତା ଥିଲେ । ଧର୍ମଘଟ ପରେ ଯେତେବେଳେ ଛାତ୍ରନେତାମାନଙ୍କର ଆତ୍ମସମର୍ପଣ କଥା ଉଠିଲା, ସେ ମୋ ସହିତ ଏକମତ ହେଲେ ଯେ ପୋଲିସ୍ ଗାଡ଼ିରେ ପିଲାଙ୍କୁ ନ

ପଠାଇ ଆମେ ନିଜେ ଗାଡ଼ି ବନ୍ଦୋବସ୍ତ କରି ସେମାନଙ୍କୁ ସିଧା କଲେକ୍ଟରଙ୍କ ଆଗରେ ପହଞ୍ଚାଇ ଦେବା– ତା'ହେଲେ ସେମାନଙ୍କ ଉପରେ ପୋଲିସ୍‌ର ଯେଉଁ ରାଗ ରହିଛି ତାର ପ୍ରତିଶୋଧ ନେବାର ସୁଯୋଗ ପୋଲିସ୍‌କୁ ମିଳିବ ନାହିଁ। ଏପରି ନିର୍ଭୀକ ଓ ସ୍ନେହଶୀଳ ପ୍ରିନ୍‌ସିପାଲ ଖୁବ୍ କମ୍ ଥିବେ। ଆଜିକାଲିର ଅନେକ ପ୍ରିନ୍‌ସିପାଲ ମନ୍ତ୍ରୀମାନେ କଣ ଭାବୁଛନ୍ତି ଏବଂ କଣ କରି ସେମାନଙ୍କୁ ଖୁସି କରି ହେବ ସେହି ଅନୁସାରେ ଯାହା ଇଚ୍ଛା ତାହା କରି ଯାଉଛନ୍ତି। ରାଜନୈତିକ ସମର୍ଥନ ମଧ୍ୟ ସେମାନଙ୍କୁ ମିଳୁଛି, ଫଳରେ ପିଲାଙ୍କୁ ନାନା ଉପାୟରେ ହଇରାଣ ହରକତ କରାଯାଉଛି। ସ୍ୱାଧୀନତାର ଏତେ ଦିନ ପରେ କିପରି ଅଧିକରୁ ଅଧିକ ଚାଟୁକାର, ଭୀରୁ ଓ ମେରୁଦଣ୍ଡ ବିହୀନ ଲୋକେ ଉପର ସ୍ତରକୁ ଉଠି ଚାଲିଛନ୍ତି, ସେ କଥା ଭାବିଲେ ଦୁଃଖ ଲାଗେ। ଏଥିପାଇଁ ସ୍ୱାର୍ଥପର ଓ ନିମ୍ନଧରଣର ବ୍ୟକ୍ତିତ୍ୱର ରାଜନୈତିକ ନେତାମାନେ ସଂପୂର୍ଣ୍ଣ ରୂପେ ଦାୟୀ। ବ୍ରିଟିଶ୍ ଅମଳର ଭୀରୁ, ଚାଟୁକାର, ସରକାରୀ ଅଫିସରଙ୍କ ତୁଳନାରେ ଆଜିକାର ଅଧିକାଂଶ ଅଫିସରମାନେ ଆହୁରି ବେଶି ଖୋସାମତିଆ ଓ ବ୍ୟକ୍ତିତ୍ୱହୀନ ହୋଇଯାଉଛନ୍ତି ବୋଲି ଜଣାଯାଉଛି।

ସେହି ଧର୍ମଘଟ ସମୟର ଆଉ ଗୋଟିଏ ଘଟଣା ଉଲ୍ଲେଖଯୋଗ୍ୟ। ଧର୍ମଘଟ ଚରମ ପର୍ଯ୍ୟାୟରେ ପହଞ୍ଚିଲା ବେଳେ କେତେଜଣ ଛାତ୍ରନେତା ତତ୍କାଳୀନ ବିଧାୟକ ସ୍ୱର୍ଗୀୟ ବିଜୁ ପଟ୍ଟନାୟକଙ୍କ ସହିତ ଆପୋଷ ଆଲୋଚନା କରି ଧର୍ମଘଟ ପ୍ରତ୍ୟାହୃତ ହେଲା ବୋଲି ଘୋଷଣା କଲେ। ସେମାନଙ୍କର ସର୍ତ୍ତ ଥିଲା ଯେ ତା ପରଦିନ ସକାଳ ୧୦ଟା ବେଳେ କଲେଜ ଖୋଲିବ। ଏ ବିଷୟରେ କିନ୍ତୁ ରେଭେନ୍ସା କଲେଜ ପ୍ରିନ୍‌ସିପାଲଙ୍କ ସହିତ କୌଣସି ପରାମର୍ଶ କରା ହୋଇନଥିଲା। ତା'ର ଦୁଇଦିନ ପୂର୍ବରୁ କଲେଜ ବନ୍ଦ କରିଦିଆଯାଇଥିଲା ଏବଂ ବହୁ ପିଲାଙ୍କୁ ପଇସାପତ୍ର ଦେଇ ଘରକୁ ପଠାଇ ଦିଆଯାଇଥିଲା। ଛାତ୍ରନେତାମାନେ ଯେତେବେଳେ ତା' ଆରଦିନ ଧର୍ମଘଟ ପ୍ରତ୍ୟାହାର କଥା ଘୋଷଣା କଲେ ଆଉ କେତେକ ନେତା ଯେଉଁମାନେ ଏ ଗୁପ୍ତ ଆଲୋଚନାରେ ଜାଣିଶୁଣି ଭାଗ ନେଇ ନଥିଲେ ସେମାନେ ବିଦ୍ରୋହ କଲେ। ପ୍ରିନ୍‌ସିପାଲ କହିଥିଲେ ଯେ, ସେଦିନ ସକାଳେ କଲେଜ ଖୋଲିବା ଆଇନତଃ ସମ୍ଭବ ନୁହେଁ। ପୁନର୍ବାର ଖବରକାଗଜରେ ଘୋଷଣା କରି ଦୁଇଦିନ ପରେ କଲେଜ ଖୋଲାଯାଇପାରିବ।

ଏପରି ଗୋଳମାଳିଆ ପରିସ୍ଥିତିରେ ହଠାତ୍ ଶ୍ରୀ ବିଜୁ ପଟ୍ଟନାୟକ ପ୍ରିନ୍‌ସିପାଲଙ୍କ ଅଫିସ୍ ଭିତରକୁ ପଶିଆସି, କଲେଜ କାହିଁକି ଖୋଲା ହୋଇନାହିଁ ବୋଲି ପ୍ରିନ୍‌ସିପାଲଙ୍କୁ ଗାଳିଗୁଲଜ କଲେ। ସେତେବେଳକୁ ମୁଁ ଓ ଡକ୍ଟର ସଦାଶିବ ମିଶ୍ର ପ୍ରିନ୍‌ସିପାଲଙ୍କ ପାଖରେ ବସିଥିଲୁ। ପ୍ରିନ୍‌ସିପାଲ ଡକ୍ଟର ବାନାର୍ଜୀ ଖୁବ୍ ଶାନ୍ତ ଭାବରେ କହୁଥାନ୍ତି ଯେ ସେ ମାନ୍ୟବର ଶିକ୍ଷାମନ୍ତ୍ରୀଙ୍କୁ ସବୁ ବୁଝାଇ କହିଛନ୍ତି। କିନ୍ତୁ ଶ୍ରୀ ବିଜୁ ପଟ୍ଟନାୟକ ବଡ଼ ଅଧୈର୍ଯ୍ୟ ହୋଇ ଇଆଡୁ ସିଆଡୁ କହି ବାହାରିଗଲେ। ଅଫିସ୍ ବାହାରେ ଶହ ଶହ ପିଲା ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ସ୍ଲୋଗାନ୍ ଦେଉଥାନ୍ତି। ତାପରେ ପ୍ରିନ୍‌ସପାଲ, ଡକ୍ଟର ମିଶ୍ର ଓ ମୁଁ ବିଜୁ ପଟ୍ଟନାୟକଙ୍କୁ ପିଲାଙ୍କ ଘେରରୁ ରକ୍ଷା କରି ରେଭେନ୍ସା କଲେଜ ହଲ୍‌ରେ ବସିଥିବା ଓଡ଼ିଶା ବିଧାନସଭାକୁ ନେଇଗଲୁ। ବିଜୁ ପଟ୍ଟନାୟକଙ୍କର ଔଦ୍ଧତ୍ୟ ଯୋଗୁ ମୋର ଏତେ ରାଗ

ହୋଇଥିଲା ଯେ ପିଲାମାନଙ୍କୁ ବଡ଼ପାଟିରେ କହିଥିଲି ପ୍ରିନ୍‌ସପାଲଙ୍କୁ  ସେ କିପରି ଅପମାନ ଦେଇଥିଲେ । ତା'ପରେ ମୋର ସୁପରିନ୍‌ଟେଣ୍ଡେଣ୍ଟ ବାସଭବନକୁ ତତ୍କାଳୀନ ବିଧାୟକ ସ୍ୱର୍ଗୀୟ ଭୈରବ ଚରଣ ମହାନ୍ତିଙ୍କୁ ଡାକିଆଣି ସବୁକଥା କହିଲି ଏବଂ କଂଗ୍ରେସ ଦଳୀୟ ସଭା ଡାକି ତାର ପ୍ରତିକାର ପାଇଁ ଅନୁରୋଧ କରିଥିଲି । ଅପରାହ୍ନରେ କଂଗ୍ରେସ ବିଧାୟକମାନଙ୍କର ସଭା ହେଲା ଏବଂ ସେଥିରେ ବିଜୁ ବାବୁଙ୍କୁ କୁହାଗଲା ପ୍ରିନ୍‌ସପାଲଙ୍କୁ କ୍ଷମା ମାଗିବାକୁ । ସେ କ୍ଷମା ମାଗିଲେ ।

ସେହିଦିନ ସନ୍ଧ୍ୟାରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶିକ୍ଷାମନ୍ତ୍ରୀ ଶ୍ରୀ ଲିଙ୍ଗରାଜ ମିଶ୍ର ଏବଂ ବାଚସ୍ପତି ଶ୍ରୀ ଲାଲମୋହନ ପଟ୍ଟନାୟକ ଏକାଠି ଡକ୍ଟର ବାନାର୍ଜୀଙ୍କ ବାସଭବନକୁ ଯାଇଥିଲେ । ଯାହା ଘଟିଥିଲା ସେଥିପାଇଁ ଦୁଃଖ ପ୍ରକାଶ କରିବା ପାଇଁ । ସେତେବେଳେ ମନ୍ତ୍ରୀମାନଙ୍କର କି ପ୍ରକାର ମର୍ଯ୍ୟାଦାବୋଧ ଭଦ୍ରତା ଓ ଶାଳୀନତା ଥିଲା, ତାହା ଏଥିରୁ ଜଣାଯାଏ । ଏତେଦିନ ଧରି ଗଣତାନ୍ତ୍ରିକ ପଦ୍ଧତି ଚାଲିବା ପରେ ବର୍ତ୍ତମାନର ମନ୍ତ୍ରୀମାନଙ୍କ ପକ୍ଷରେ ଏ ପ୍ରକାର ଦାୟିତ୍ୱବୋଧ ଓ ଶାଳୀନତା ସମ୍ଭବ କି ? ପୋଲିସ୍ ଫାଇଲ୍‌ରେ ଗୁଣ୍ଡା ଓ ଅପରାଧ ଶ୍ରେଣୀର ଲୋକ ହିସାବରେ ନାମ ଥିବା କେତେକ ଲୋକେ ଯଦି ବିଧାୟକ ଓ ମନ୍ତ୍ରୀ ହୁଅନ୍ତି ତା'ହେଲେ ସେମାନଙ୍କଠାରେ ଏ ପ୍ରକାର ଭଦ୍ରତା ଓ କର୍ତ୍ତବ୍ୟ ନିଷ୍ଠା ଆଶା କରିବା ବୃଥା ।

ସେହିଦିନଠାରୁ ବିଜୁବାବୁଙ୍କ ପ୍ରତି ମୋର ବିରୋଧଭାବ ବହୁଦିନ ଧରି ରହିଥିଲା । ସେ ମଧ୍ୟ ଏ କଥା ଜାଣିଥିଲେ । ଦୁଇତିନି ଥର ଏ ବିଷୟ ନେଇ ତାଙ୍କ ସହିତ ମୋର କଳି ତକରାଳ ମଧ୍ୟ ହୋଇଯାଇଥିଲା । ସେ ଯେତେବେଳେ ମୁଖ୍ୟମନ୍ତ୍ରୀ ହେଲେ ଏବଂ ପ୍ରାଥମିକ ଶିକ୍ଷା ସ୍ତରରେ ଉନ୍ନତି ପାଇଁ ଆମମାନଙ୍କ ସହିତ ଆନ୍ତରିକ ସହଯୋଗ କଲେ, ବଳିଷ୍ଠ ନେତୃତ୍ୱ ପ୍ରଦର୍ଶନ କଲେ, ତାଙ୍କ ପ୍ରତି ମୋର ସମ୍ମାନ ବଢ଼ିଗଲା । ସେ ଯେପରି ଭାବରେ ପାରାଦୀପ ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ସାହସର ସହିତ ତ୍ୱରାନ୍ୱିତ କରାଇପାରିଥିଲେ ମାତ୍ର ଦେଢ଼ବର୍ଷ ଭିତରେ, ସେଥିଯୋଗୁ ମୁଁ ତାଙ୍କୁ ପ୍ରଶଂସା ନ କରି ରହିପାରିଲି ନାହିଁ । ତାଙ୍କର ବଳିଷ୍ଠ ଆତ୍ମବିଶ୍ୱାସ, କାର୍ଯ୍ୟ ଦକ୍ଷତା, ନିଷ୍ଠା ଓ ସାହସ ମୋତେ ତାଙ୍କ ପ୍ରତି ଆକର୍ଷିତ କରିଥିଲା । ତାଙ୍କଠାରେ ଜାତିଆଣ ପରି ସଂକୀର୍ଣ୍ଣ ମନୋଭାବ ନଥିଲା । ତାଙ୍କର ପରିବାରର ଲୋକଙ୍କୁ ସେ ରାଜନୀତିରୁ ଦୂରରେ ରଖୁଥିଲେ । ସେ ଜଣେ ବଡ଼ ଉଚ୍ଚମନା ଓ ମହାନୁଭବ ବ୍ୟକ୍ତି ବୋଲି ମୋର ଧାରଣା ଦୃଢ଼ୀଭୂତ ହୋଇଥିଲା । ଏପରି ଜଣେ ଦକ୍ଷ ନେତୃସ୍ଥାନୀୟ ଲୋକଙ୍କୁ ହତଭାଗ୍ୟ ଓଡ଼ିଶା ଭଲଭାବେ ବ୍ୟବହାର କରିପାରିଲା ନାହିଁ । ଅନ୍ୟ କୌଣସି ରାଜ୍ୟର ସେ ନେତା ହୋଇଥିଲେ ଅନେକ କାମ କରିପାରିଥାନ୍ତେ ଏବଂ ପ୍ରଧାନମନ୍ତ୍ରୀ ମଧ୍ୟ ହୋଇପାରି ଥାଆନ୍ତେ ।

X X X X X X X

୧୯୪୯ ମସିହା ଜୁଲାଇ ମାସରେ ବିଜ୍ଞାନ ପ୍ରଚାର ସମିତି ନାମକ ଗୋଟିଏ ଅନୁଷ୍ଠାନ ଆରମ୍ଭ କଲି । ଡକ୍ଟର ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କ ମେଡିକାଲ କଲେଜ ବାସଭବନରେ ଏହାର ପ୍ରାରମ୍ଭିକ ବୈଠକର ଆୟୋଜନ ହୋଇଥିଲା । ସେଥିରେ ଡକ୍ଟର ଗୋକୁଳାନନ୍ଦ

ମହାପାତ୍ର, ଡକ୍ଟର ରାଇକୃଷ୍ଣ ମହାନ୍ତି ଓ ଡକ୍ଟର ଜୟକୃଷ୍ଣ ମହାନ୍ତି ପ୍ରମୁଖ ଯୋଗ ଦେଇଥିବାର ମୋର ମନେପଡୁଛି । ବିଜ୍ଞାନ ଯୁଗରେ ଲୋକମାନଙ୍କ ଭିତରେ ବିଜ୍ଞାନର ବାର୍ତ୍ତା ପହଞ୍ଚାଇବା ଲାଗି ଏ ଅନୁଷ୍ଠାନ ଆରମ୍ଭ ହେଲା । ମୋର ଏହି ପ୍ରସ୍ତାବରେ ସମସ୍ତେ ରାଜି ହୋଇଥିଲେ । ପ୍ରତି ୧୫ ଦିନରେ ଥରେ ରବିବାର ଦିନ ୩ଟା ବେଳେ ଏହାର ବୈଠକ ଜଣେ ସଭ୍ୟଙ୍କ ଘରେ ବସିବା ସ୍ଥିର ହେଲା । ସେ ସାମାନ୍ୟ ଚା'ପାନର ବ୍ୟବସ୍ଥା କରିବେ । ଜଣେ ସଭ୍ୟ ବର୍ଷରେ ଅନ୍ତତଃ ଗୋଟିଏ ପ୍ରବନ୍ଧ ପାଠ କରିବେ । ଆଲୋଚନା ଏବଂ ଯଥାଯଥ ସଂଶୋଧନ ପରେ ପ୍ରବନ୍ଧମାନ ଖବରକାଗଜରେ ବାହାରିବ ଏବଂ ପରେ ପ୍ରବନ୍ଧଗୁଡ଼ିକୁ ଏକାଠିକରି ପୁସ୍ତକ ଆକାରରେ ପ୍ରକାଶିତ ହେବ । କ୍ରମେ ଏହାର ସଭ୍ୟ ସଂଖ୍ୟା ବଢ଼ିବାକୁ ଲାଗିଲା ! କିନ୍ତୁ କୌଣସି ସଭ୍ୟ ଏକାଦିକ୍ରମେ ଚାରିଟି ସଭାରେ ଯୋଗ ନ ଦେଲେ ତାଙ୍କ ନାମ ଛାଏଁ ଛାଏଁ କଟିଯିବାର ବ୍ୟବସ୍ଥା ହେଲା । ଏହି ଆଇନ ଅନୁସାରେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ନାମ ମଧ୍ୟ କଟି ଯାଇଥିଲା । ବର୍ଷକୁ ଗୋଟିଏ ଲେଖାଏଁ ପ୍ରବନ୍ଧ ନ ପଢ଼ିଲେ ସଭ୍ୟଙ୍କର ନାମ କଟି ଯାଉଥିଲା । ଏହିପରି କଡ଼ାକଡ଼ି ନିୟମ ଓ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଅନୁଯାୟୀ ଏହା ଆଜି ପର୍ଯ୍ୟନ୍ତ ପରିଚାଳିତ ହୋଇଆସିଛି ବୋଲି ଏହା ଗୋଟିଏ ବଳିଷ୍ଠ ଓ ପୁରାତନ ସମିତିରେ ପରିଣତ ହୋଇପାରିଛି ।

ଏହାର ସଂପାଦକ ଭାବରେ ମୁଁ ବହୁବର୍ଷ ଧରି ରହିଥିଲି । ସେ ସମୟରେ କେତେଗୁଡ଼ିଏ ବହି ମଧ୍ୟ ପ୍ରକାଶିତ ହୋଇଥିଲା । ଖବରକାଗଜରେ ଏହାର ପ୍ରବନ୍ଧମାନ ନିୟମିତ ବାହାରୁଥିଲା । ଏହା ଏପରି ଖ୍ୟାତି ଅର୍ଜନ କରିଥିଲା ଯେ ଅଧ୍ୟାପକମାନେ ସେମାନଙ୍କର ବାର୍ଷିକ କୃତି ବିବରଣୀ ଦେବା ସରକାରୀ ଫର୍ମରେ ଏହି ବିଜ୍ଞାନ ପ୍ରଚାର ସମିତିର ନାମ ଉଲ୍ଲେଖ ଥିଲା । ଏହାର ଖ୍ୟାତି ବଢ଼ିବା ସଙ୍ଗେ ସଙ୍ଗେ ଶତ୍ରୁ ମଧ୍ୟ ବଢ଼ିଲେ । କାହାରି ଖ୍ୟାତି ବଢ଼ିବା ସଙ୍ଗେ ସଙ୍ଗେ ଶତ୍ରୁ ବଢ଼ିବା ଯେପରି ଓଡ଼ିଶାରେ ଏକ ନୀତି ନିୟମରେ ପରିଣତ ହୋଇଯାଇଥିଲା । ବିଜ୍ଞାନର ଜଣେ ଦୁଇଜଣ ପ୍ରଫେସର ବିଜ୍ଞାନ ପ୍ରଚାର ସମିତିର ନାମ ପଡ଼ିଲେ ଏପରି ବିଗୁଡୁଥିଲେ ଯେ ତାଙ୍କ ବିଭାଗକୁ ଯଦି ଚପରାଶି ସଭାର ନୋଟିସ୍ ଧରି ଯାଉଥିବାର ଦେଖୁଥିଲେ ତେବେ ତାକୁ ଡାକି ତା'ଠାରୁ ନୋଟିସ୍ ନେଇ ଚିରି ଦେଉଥିଲେ ଏବଂ ତାକୁ ତାଙ୍କ ବିଭାଗରୁ ବାହାର କରି ଦେଉଥିଲେ । ତାଙ୍କ ମତରେ ଓଡ଼ିଆରେ ବିଜ୍ଞାନ ଲେଖା ଏକ ପ୍ରହସନ ମାତ୍ର । ସେ ମହାଶୟ ଇଂରେଜୀରେ ମଧ୍ୟ ଜୀବନସାରା ବିଶେଷକିଛି ଲେଖି ପାରିନାହାନ୍ତି । କେବଳ ବଡ଼ବଡ଼ ପଦବୀରେ ରହି ଟଙ୍କା ଉପାର୍ଜନ କରିଛନ୍ତି । ଏହି ଗୋଟିଏ କାରଣରୁ ଜୀବନସାରା ସେ ମୋ ପ୍ରତି ଶତ୍ରୁତା ଆଚରଣ କରି ଆସିଛନ୍ତି । ତଥାପି ସେ ଉଚ୍ଚପଦବୀରେ ଥାଇ ବହୁ ଉଦ୍ୟମ କରି ସୁଦ୍ଧା ମୋର ସେପରି କିଛି କ୍ଷତିସାଧନ କରିପାରି ନାହାନ୍ତି ।

ଏହି ବିଜ୍ଞାନ ପ୍ରଚାର ସମିତି ଫଳରେ ଜନପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟି କରିବାରେ ବହୁ ଖ୍ୟାତିସମ୍ପନ୍ନ ଲେଖକ ବାହାରି ପାରିଲେ । ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ଡକ୍ଟର କୁଞ୍ଜମଣି ସାମଲ, ଡକ୍ଟର ଗଦାଧର ମିଶ୍ର ପ୍ରଭୃତି ବହୁ ଲୋକପ୍ରିୟ ବିଜ୍ଞାନ ଲେଖକଙ୍କୁ ଏହି ସମିତି ସୃଷ୍ଟି କରିଛି କହିଲେ ଅତ୍ୟୁକ୍ତି ହେବନାହିଁ । ୧୯୪୯ ମସିହାଠାରୁ ଆଜିଯାଏ ଏହି

ସମିତି ନିୟମିତ ଭାବେ କାର୍ଯ୍ୟ କରିଆସିଛି ଏବଂ ସାତଶହ କି ଆଠଶହ ପର୍ଯ୍ୟନ୍ତ ବୈଠକ ବସି ସାରିଲାଣି ଏବଂ ଅସଂଖ୍ୟ ବହି ପ୍ରକାଶିତ ହେଲାଣି । ଗୋଟିଏ ମାସିକ ପତ୍ରିକା ମଧ୍ୟ ସଂପାଦିତ ହୋଇଛି । ବହୁ ବୈଜ୍ଞାନିକ ସଂପାନ ଓ ବୈଜ୍ଞାନିକ ବକ୍ତୃତାମାଳା ଏହାର ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଛି । ମୋଟାମୋଟି ଭାବରେ ଓଡ଼ିଶାରେ ବୈଜ୍ଞାନିକ ସାହିତ୍ୟ ସୃଷ୍ଟିରେ ଏହା ପ୍ରଥମ ପଥପ୍ରଦର୍ଶକ ରୂପେ ବିବେଚିତ ହୋଇଛି । ମୁଁ ଏଥିପାଇଁ ବହୁତ ଗର୍ବିତ ।

ବହୁବର୍ଷ ପରେ ମୁଁ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ରହୁଥିବାରୁ ଏହାର ଧାରାବାହିକ ବୈଠକରେ ଯୋଗ ଦେଇ ପାରିଲି ନାହିଁ । ଏହାର ଆଜୀବନ ସଭ୍ୟ ହିସାବରେ ରହିଛି । ଓଡ଼ିଶାର ବୋଧହୁଏ ଏହି ଗୋଟିକ ଅନୁଷ୍ଠାନ ଯାହାକି ଆଜିଯାଏଁ ନିରବଚ୍ଛିନ୍ନ ଭାବରେ କାର୍ଯ୍ୟ କରି ଆସିଛି । ମଝିରେ ମଝିରେ ମୁଁ ଏ ସଭାରେ ଯୋଗ ଦିଏ, କିନ୍ତୁ ଏହି ଅନୁଷ୍ଠାନର କାର୍ଯ୍ୟାବଳୀ ଦୂରରୁ ଲକ୍ଷ୍ୟ କରି ଆସୁଛି ଏବଂ ଏଥିରେ ମୋର ବହୁତ ଆନନ୍ଦ ମିଳେ । ପରେ ଜନପ୍ରିୟ ବିଜ୍ଞାନ ସାହିତ୍ୟ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଗୋଟିଏ ସ୍ୱର୍ଣ୍ଣପଦକର ପ୍ରତିଷ୍ଠା ପାଇଁ ମୁଁ ଟଙ୍କା ଦେଇଥିଲି । ପ୍ରତିବର୍ଷ ଏହି ସ୍ୱର୍ଣ୍ଣପଦକ ଲୋକପ୍ରିୟ ବିଜ୍ଞାନ ସୃଷ୍ଟି କରୁଥିବା ବିଶିଷ୍ଟ ଲେଖକଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରଦାନ କରାଯାଉଛି ।

X X X X X X X

୧୯୪୯ ଜୁଲାଇରୁ ୧୯୫୨ ଅକ୍ଟୋବର ପର୍ଯ୍ୟନ୍ତ ମୁଁ ପୂର୍ବ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ ଥିଲି । ସବୁବେଳେ କିନ୍ତୁ ଡି.ପି.ଆଇ. ମହେଶ ବାବୁ ପ୍ରିନ୍‌ସିପାଲ ଡକ୍ଟର ବାନାର୍ଜୀଙ୍କୁ କହୁଥାନ୍ତି ମୋତେ ହଷ୍ଟେଲରୁ ବାହାର କରିଦେବା ଲାଗି ।

ଡକ୍ଟର ବାନାର୍ଜୀ ମୋତେ ହସି ହସି ପଚାରନ୍ତି-

''କାହିଁକି ଡି.ପି.ଆଇ. ଆପଣଙ୍କ ଉପରେ ଏପରି ରାଗୁଛନ୍ତି ?''

ମୁଁ କହେ ଯେ—

''ମୁଁ ତାଙ୍କ ଘରକୁ କେବେ ଯାଏନାହିଁ କି ଭବିଷ୍ୟତରେ ମଧ୍ୟ ଯିବିନାହିଁ । ଆପଣ ଜାଣନ୍ତି, ସେ ଯେତେକ ସିଦ୍ଧାନ୍ତ ମୋ ବିରୁଦ୍ଧରେ ନେଇଛନ୍ତି ସେ ସବୁକୁ ମୁଁ ଉପର ସ୍ତରରେ ବାତିଲ କରାଇ ଦେଇପାରିଛି । ସେ ରାଗିଯାଇ ଏଣୁ ତେଣୁ ଅଯୌକ୍ତିକ କଥା ଲେଖି ମୋ ଦରଖାସ୍ତକୁ ନାକଚ କରି ଦିଅନ୍ତି । ମୁଁ ଶିକ୍ଷା ସଚିବ ଓ ମୁଖ୍ୟ ଶାସନ ସଚିବ ତଥା ଶିକ୍ଷା ଓ ମୁଖ୍ୟମନ୍ତ୍ରୀଙ୍କ ପର୍ଯ୍ୟନ୍ତ ଦରଖାସ୍ତ କରି ଶେଷରେ ମୋର ଆବେଦନ ମଞ୍ଜୁର ହୁଏ । ତେଣୁ ତାଙ୍କର ମୋ ଉପରେ ରାଗ ଆହୁରି ବେଶି ।''

ଯାହାହେଉ, ମୋର ସୁପରିନ୍‌ଟେଣ୍ଡେଣ୍ଟ ବାସଭବନରେ ପାଣିର ବହୁତ ଅସୁବିଧା ହେଲା । ଫଳରେ ମୋତେ ଅବ୍ୟାହତି ଦେବାପାଇଁ ପ୍ରିନ୍‌ସିପାଲଙ୍କୁ ପ୍ରବର୍ତ୍ତାଇଲି । ପ୍ରିନ୍‌ସିପାଲ ଡକ୍ଟର ବାନାର୍ଜୀ ମୋତେ ଗୋଟିଏ ଭଲ ଘର କଲେଜ ପଡ଼ିଆରେ ଦେଲେ ।

ପ୍ରିନ୍‌ସିପାଲ ଡକ୍ଟର ବାନାର୍ଜୀ ମୋର ଖୋଲାକଥା ଯୋଗୁ ମୋତେ ବହୁତ ପସନ୍ଦ କରୁଥିଲେ । ତାଙ୍କ ମୁହଁରେ ତାଙ୍କର ଦୋଷ ତ୍ରୁଟି ଦେଖାଇଲେ ସେ ହସି ହସି ମୋତେ

ବୁଝାଇ ଦିଅନ୍ତି ଯେ କାମ କରାଇ ନେବା ପାଇଁ ସେ ଅନେକ ସମୟରେ ମିଛରେ ରାଗିବାର ବାହାନା କରନ୍ତି ଇତ୍ୟାଦି । ଏହି ସମୟରେ ମଧ୍ୟ ଡକ୍ଟର ବଳଭଦ୍ର ପ୍ରସାଦଙ୍କ ସହିତ ମୋର ବନ୍ଧୁତା ବହୁତ ବଢ଼ି ଯାଇଥିଲା । ତାଙ୍କ ସହିତ ମଧ୍ୟ ମୁକ୍ତ ଭାବରେ ଆଲୋଚନା କରିହୁଏ । ଡକ୍ଟର ବାନାର୍ଜୀ ମୋତେ ଅନେକ ଦାୟିତ୍ୱ ଦିଅନ୍ତି । ୧୯୫୩ ମସିହାରେ ସେ ଯେତେବେଳେ ଖରା ଛୁଟିରେ ଗଲେ, ମୋତେ ଅଫିସ୍ ଦାୟିତ୍ୱରେ ରଖିଦେଇଗଲେ, କାରଣ ସେହିବର୍ଷ ମୋର ମନସ୍ତତ୍ତ୍ୱ ବିଭାଗ ଖୋଲିବାର ଥିଲା । ଖରା ଛୁଟିରୁ ଆସି ତାଙ୍କର ଅସୁସ୍ଥତା ଯୋଗୁ ସେ ଛୁଟିରେ ଗଲେ । ଛୁଟି ନେବା ଦିନ ମୁଁ ତାଙ୍କ ଅଫିସ୍‌ରେ ବସିଥାଏ । ସେ ଛାତ୍ର ଓ ଅଧ୍ୟାପକମାନଙ୍କ ବିଷୟରେ ଯେତେ ଟିପ୍‌ପଣୀ ରଖିଥିଲେ ତାକୁ ବାହାରକରି ଚିରୁଥାନ୍ତି । କହୁଥାନ୍ତି–

''କିଏ ଜାଣେ, ସେ ଫେରିବେ କି ନାହିଁ ! ଅନ୍ୟମାନଙ୍କ ବିଷୟରେ ତାଙ୍କର ଟିପ୍‌ପଣୀ ସବୁ ଆଗାମୀ ପ୍ରିନ୍‌ସିପାଲଙ୍କ ହାତରେ କାହିଁକି ପଡ଼ିବ ?''

ଶେଷରେ ଟିକିଏ ଭାରି ଗଳାରେ କହିଥିଲେ–

''ଡକ୍ଟର ରଥ, ଆପଣଙ୍କର ପଦୋନ୍ନତି (ରିଡ଼ର) ମୋ ହାତରେ ହୋଇପାରିଲା ନାହିଁ । ମୁଁ ଦୁଃଖିତ ।''

ମୁଁ କହିଥିଲି–

''ଆପଣ ତ ମାସେ ଦୁଇମାସ ପରେ ଫେରିଆସିବେ, ଏପରି କାହିଁକି କହୁଛନ୍ତି ?''

ତା'ପରେ ସେ ଗୋଟିଏ ମ୍ଳାନ ହସ ହସିଥିଲେ ।

ସେ କିନ୍ତୁ ଆଉ ଫେରିଆସିଲେ ନାହିଁ । ପ୍ରାୟ ମାସକ ପରେ ତାଙ୍କର ମୃତ୍ୟୁ ହେଲା ।

■■■

## ୧୩

# ମନୋବିଜ୍ଞାନ ବିଭାଗ ସ୍ଥାପନ (୧୯୫୩-୫୮)

୧୯୪୯ରେ ବିଲାତରୁ ଫେରିବା ପରଠାରୁ ୧୯୫୩ ପର୍ଯ୍ୟନ୍ତ ଦର୍ଶନ ବିଭାଗରେ ମୁଁ ପଢ଼ାଉଥିଲି । କିନ୍ତୁ ଏହା ଭିତରେ ଚେଷ୍ଟା ଚଳାଇଥିଲି ସ୍ୱତନ୍ତ୍ର ମନୋବିଜ୍ଞାନ ବିଭାଗ ଖୋଲିବା ପାଇଁ । ପ୍ରିନ୍‌ସିପାଲ ଡକ୍ଟର ବାନାର୍ଜୀ ଏବଂ ଡି.ପି.ଆଇ. ଡକ୍ଟର ବଳଭଦ୍ର ପ୍ରସାଦଙ୍କ ଉଦ୍ୟମରେ ମନୋବିଜ୍ଞାନ ବିଭାଗ ଖୋଲିବା ସମ୍ଭବ ହୋଇଥିଲା । ପରବର୍ତ୍ତୀ ଅବସ୍ଥାରୁ ଯାହା ଜଣାଗଲା ଏମାନେ ନଥିଲେ ବୋଧହୁଏ ଏହି ବିଭାଗ ସହଜରେ ଏବଂ ଏତେ ଶୀଘ୍ର ମୁଁ ଖୋଲିପାରି ନଥାନ୍ତି । କାରଣ ଅଧିକାଂଶ ଶିକ୍ଷା କର୍ତ୍ତୃପକ୍ଷ ଓ ବରିଷ୍ଠ ସରକାରୀ ଅଧ୍ୟାପକ ମନୋବିଜ୍ଞାନ ବିଭାଗ ଖୋଲିବା ବିରୁଦ୍ଧରେ ଥିଲେ । ସେମାନେ ମୋତେ ଭଲ ପାଉନଥିଲେ । ଫଳରେ ମନୋବିଜ୍ଞାନ ମଧ୍ୟ ସେମାନଙ୍କର ବିଷ ଦୃଷ୍ଟିରେ ପଡୁଥିଲା । ଏମାନେ ଖୋଲାଖୋଲି ଭାବରେ ଏହା ବିରୁଦ୍ଧରେ ପ୍ରଚାର ମଧ୍ୟ କରୁଥିଲେ । ମନୋବିଜ୍ଞାନ ଓ ମୋ ସହିତ ଏ ପ୍ରକାର ସମ୍ପର୍କ ସେମାନଙ୍କର ସାରାଜୀବନ ରହିଯାଇଥିଲା । କିନ୍ତୁ ଏହି ଶିକ୍ଷାବିତ୍‌ମାନେ ନିଜ ବିଭାଗର ମଧ୍ୟ ସେପରି କିଛି ଉନ୍ନତି ସେମାନଙ୍କ ଚାକିରିକାଳ ମଧ୍ୟରେ କରିପାରି ନାହାନ୍ତି । ଅନ୍ୟ ବିଭାଗ ପ୍ରତି ଈର୍ଷାପରାୟଣ ହୋଇ ନିଜ ବିଭାଗର ଉନ୍ନତି କରିପାରିଥିଲେ ହୁଏତ କିଛିଟା ବାହାଦୁରୀ ଥାଆନ୍ତା । ଏହି ସଂକୀର୍ଣ୍ଣତା ତାଙ୍କ ନିଜର ହିଁ କ୍ଷତି କରିଥିଲା ।

୧୯୫୩ରେ ସ୍ନାତକ ଶିକ୍ଷା ଏବଂ ୧୯୫୮ରେ ସ୍ନାତକୋତ୍ତର ମନୋବିଜ୍ଞାନ ବିଭାଗ ଖୋଲିଲା । ଏହି ବିଭାଗ ୧୯୮୦ ବେଳକୁ ଭାରତର ଏକମାତ୍ର ସର୍ବବୃହତ୍ ଓ ଶ୍ରେଷ୍ଠ ବିଭାଗ ରୂପେ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କ ଦ୍ୱାରା ସ୍ୱୀକୃତି ପାଇଲା । ଶିକ୍ଷଣ ଓ ଗବେଷଣା କ୍ଷେତ୍ରରେ ଭାରତର ସର୍ବପ୍ରଥମ ଅଗ୍ରଗାମୀ ବିଭାଗ (Centre of advanced study)ରୂପେ ପରିଚିତ ହେଲା । ଏହାର ଦୁଇବର୍ଷ ପରେ ଆଲାହାବାଦ ଅଗ୍ରଗାମୀ କେନ୍ଦ୍ର ହିସାବରେ ସ୍ୱୀକୃତି ପାଇଲ । କିନ୍ତୁ ଆମ ବିଭାଗ ତୁଳନାରେ ଏହା ସେପରି ବୃହତ୍ ବିଭାଗ ହୋଇପାରିନଥିଲା । ଅନୁଦାନ ମଧ୍ୟ କମ୍ ପାଉଥିଲା । ଆଜିଯାଏ ଭାରତର ଆଉ କୌଣସି ମନୋବିଜ୍ଞାନ ବିଭାଗ ଏବଂ ଓଡ଼ିଶାରେ ମଧ୍ୟ ଆଉ କୌଣସି ବିଭାଗ ଏହି ସମ୍ମାନର ଅଧିକାରୀ ହୋଇପାରିନାହାନ୍ତି ।

ଓଡ଼ିଶାର କେତେକ ପୁରୁଖା ଶିକ୍ଷାବିତ୍‌ଙ୍କର ମୋ ପ୍ରତି ବିରାଗ ଓ ବିଦ୍ୱେଷ ଭାବ ମୋତେ ପ୍ରେରଣା ଯୋଗାଇଥିଲା ଭାରତରେ ଏହାକୁ ସର୍ବବୃହତ୍ ବିଭାଗରେ ପରିଣତ କରିବା ପାଇଁ । ଏମାନେ ମୋ ବିଭାଗ ବିରୁଦ୍ଧରେ ଯେତେ ଶତ୍ରୁତା କରିଛନ୍ତି, ସେତିକି ବେଶୀ ଶୁଭେଚ୍ଛା ଏବଂ ସାହାଯ୍ୟ ମୋତେ ବାହାର ଲୋକଙ୍କଠାରୁ ମିଳିଛି ।

ଯାହାହେଉ, ୧୯୫୩ ମସିହାରେ ପ୍ରଥମ ମନୋବିଜ୍ଞାନ ସ୍ନାତକ ବିଭାଗ ସରକାରୀ ସ୍ତରରେ ରେଭେନ୍ସା କଲେଜରେ ଆରମ୍ଭ ହେଲା । ଡକ୍ଟର ବାନାର୍ଜୀ ମନୋବିଜ୍ଞାନ ପରୀକ୍ଷାଗାର ପାଇଁ ଅଫିସ୍ ପାଖର ବଡ଼ ଘରଟି ମୋତେ ଦେଇଥିଲେ । କଲେଜ ହଲ୍ ବାରଣ୍ଡାରେ ଥିବା ଗୋଟିଏ କାଠପଟା ଘେରା ଛୋଟ ବଖରା ଅଫିସ ଗୃହ ପାଇଁ ଦେଇଥିଲେ । ବିଭାଗର ଆରମ୍ଭ ବେଳକୁ ମୁଁ ଏକମାତ୍ର ବ୍ୟକ୍ତି । ତେଣୁ ଆଇ.ଏ., ବି.ଏ.ର ତିନୋଟିଯାକ କ୍ଲାସରେ ସପ୍ତାହକୁ ୩୦ ଘଣ୍ଟାଯାଏ ମୁଁ ପଢ଼ାଉଥିଲି ଏବଂ ଗୋଟିଏ ମାତ୍ର ଚପରାଶି ମୋ ପାଖରେ ଥିଲା । ଏହାର ଦୁଇମାସ ପରେ ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ, ଲେକଚରର୍ ରୂପେ ମୋ ବିଭାଗକୁ ଆସିଲେ । ତାଙ୍କୁ ବି.ଏ. ଦର୍ଶନ କ୍ଲାସରେ ମୁଁ ପଢ଼ାଉଥିଲି । ସେ ଦର୍ଶନରେ ଏମ୍.ଏ. ପଢ଼ି ଗୋଟିଏ ମଠରେ ସନ୍ନ୍ୟାସ ବ୍ରତ ଅବଲମ୍ବନ କରିବେ ବୋଲି ତାଙ୍କର ଧର୍ମପ୍ରାଣ ବାପା ଠିକ୍ କରିଥିଲେ । କିନ୍ତୁ ମୁଁ ଜଗନ୍ନାଥଙ୍କୁ ବୁଝାଇ ସୁଝାଇ ମନସ୍ତତ୍ତ୍ୱରେ ଏମ୍.ଏ. ପଢ଼ିବା ପାଇଁ ପାଟଣା ପଠାଇଥିଲି । ସେ ଠିକ୍ ସେହିବର୍ଷ ଏମ୍.ଏ. ପାଶ୍ କରି ଆସିଲେ ଏବଂ ସାଙ୍ଗେ ସାଙ୍ଗେ ମନସ୍ତତ୍ତ୍ୱ ବିଭାଗରେ ଲେକ୍‌ଚରର ରୂପେ ଯୋଗ ଦେଲେ । ଶ୍ରୀ ବିଷ୍ଣୁ ଚରଣ ଚୌଧୁରୀ ବୋଲି ଜଣେ ଭଦ୍ରଲୋକ ପାଟଣାରୁ ମନସ୍ତତ୍ତ୍ୱରେ ଏମ୍.ଏ. କରି ଗୋଟିଏ ସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କୁ ରାଜି କରାଇଲି ଆମ ବିଭାଗରେ ପରୀକ୍ଷାଗାର ଆସିଷ୍ଟାଣ୍ଟ ହେବା ପାଇଁ । ଏହିପରି ଭାବରେ ସ୍ନାତକ ବିଭାଗ ଆରମ୍ଭ ହେଲା ।

ସ୍ନାତକ ଶ୍ରେଣୀର ପ୍ରଥମ ଛାତ୍ରଦଳଟି ମୋର ସବୁଠୁ ବେଶି ପ୍ରିୟ ଥିଲେ । ଆମେ ସମସ୍ତେ ନିଷ୍ଠାର ସହ ବିଭାଗର ଉନ୍ନତିରେ ଲାଗିପଡ଼ିଲୁ । ଛାତ୍ର ଓ ଅଧ୍ୟାପକ ଭିତରେ ମୁଁ କୌଣସି ବ୍ୟବଧାନ ରଖିବା ସପକ୍ଷରେ ନ ଥିଲି । ଛାତ୍ର ଓ ଅଧ୍ୟାପକଙ୍କ ଭିତରେ ବ୍ୟବଧାନ ରଖିବା ବିରୁଦ୍ଧରେ ମୁଁ ଜୀବନଯାକ ସଂଗ୍ରାମ କରି ଆସିଛି । ଫଳରେ ମୁଁ ଓ ମୋର ଛାତ୍ରଛାତ୍ରୀଙ୍କ ଭିତରେ ଥିବା ସଂପର୍କ ମୋତେ ବହୁତ ଆନନ୍ଦ ଦେଉଛି । ତେଣୁ ପ୍ରଥମରୁ ହିଁ ଆମେ ସମସ୍ତେ ବନ୍ଧୁ ଭାବରେ ଚଳୁଥିଲୁ । ଛୁଟି ଦିନରେ ଅଧିକ କ୍ଲାସ ନିଆହୁଏ । କ୍ଲାସ୍ ମଝିରେ ହଠାତ୍ ଇଚ୍ଛା ହେଲା କୁଆଡ଼େ ବୁଲି ବାହାରିବା ପାଇଁ । ସମସ୍ତେ ବାହାରିଲୁ ଏକା ସାଙ୍ଗରେ । ହୈଚୈ କରି ସନ୍ଧ୍ୟାରେ ଫେରିଲୁ । ଏହି ପ୍ରଥମ ଦଳର ଛାତ୍ରଛାତ୍ରୀମାନଙ୍କ ଭିତରୁ ଅଧିକାଂଶ ଭାରତରେ ଏବଂ ଭାରତ ବାହାରେ ଖ୍ୟାତି ଅର୍ଜନ କରିପାରିଛନ୍ତି ।ସେମାନଙ୍କ ସହିତ ବର୍ତ୍ତମାନ ପର୍ଯ୍ୟନ୍ତ ଆମର ପାରିବାରିକ ସମ୍ପର୍କ ରହିଆସିଛି । ସେମାନଙ୍କ ଭିତରୁ ଡକ୍ଟର ଶ୍ରୀମତୀ ପୂର୍ଣ୍ଣିମା ମାଥୁର, ଡକ୍ଟର ଅର୍ଜୁନ ପୁରୋହିତ ଓ ଡକ୍ଟର ହେମକାନ୍ତ ମିଶ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ ।

ମନୋବିଜ୍ଞାନ ପାଠ୍ୟକ୍ରମକୁ ସଂପୂର୍ଣ୍ଣ ରୂପେ ବୈଜ୍ଞାନିକ ଭିତ୍ତିରେ ଏବଂ ଆଧୁନିକ ପ୍ରଣାଳୀରେ ପଢ଼ାଇବା ପାଇଁ ଏହି ବିଭାଗରେ ପ୍ରଥମରୁ ହିଁ ଉଦ୍ୟମ ହୋଇଥିଲା । ସମସ୍ତଙ୍କ ପାଇଁ ପରୀକ୍ଷାଗାର ଓ ପରିସଂଖ୍ୟାନ ଶିକ୍ଷା ବାଧ୍ୟତାମୂଳକ ଥିଲା । ତେଣୁ ଭାରତବର୍ଷରେ ଏହି ବିଭାଗ ପ୍ରଗତିଶୀଳ ଓ ଆଧୁନିକ ବୋଲି ପ୍ରଥମରୁ ହିଁ ଖ୍ୟାତି ଅର୍ଜନ କରିପାରିଥିଲା । ଫଳରେ

ସ୍ନାତକୋତ୍ତର ଶିକ୍ଷାରେ ଯେଉଁ ପିଲାମାନେ ଏହି ବିଭାଗରୁ ଉତ୍ତୀର୍ଣ୍ଣ ହେଲେ ସେମାନେ ଭାରତର ଯେକୌଣସି ସ୍ଥାନରେ ସ୍ୱୀକୃତି ଲାଭ କରିପାରୁଥିଲେ । ପ୍ରାୟ ପ୍ରତିବର୍ଷ ଆମ ବିଭାଗର ଶିକ୍ଷକ ଓ ପିଲାମାନେ ମନୋବିଜ୍ଞାନରେ କମନ୍ ୱେଲ୍‌ଥ ବୃତ୍ତି ପାଇବାକୁ ଆରମ୍ଭ କଲେ । ଏପରି ହେଲା ଯେ ୨୦ବର୍ଷ ଭିତରେ ଆମ ବିଭାଗର ୧୩/୧୪ ଜଣ ପିଲା ଏହି ବୃତ୍ତି ପାଇଥିଲାବେଳେ ଆଉ ମାତ୍ର ୬/୭ଟି ବୃତ୍ତି ଭାରତର ଆଉ ସବୁ ବିଶ୍ୱବିଦ୍ୟାଳୟର ପିଲାମାନଙ୍କ ଭିତରୁ ପାଇଥିଲେ । କାରଣ ମନସ୍ତତ୍ତ୍ୱରେ ଏହି ବୃତ୍ତି ବର୍ଷକୁ ଗୋଟିଏ ମାତ୍ର ଥିଲା । ଏହି କାରଣ ଯୋଗୁ ଭାରତବର୍ଷରେ ଆମ ବିଭାଗର ସୁଖ୍ୟାତି ବହୁତ ବଢ଼ିଗଲା । ଭାରତ ବାହାରେ ମଧ୍ୟ ଆମ ପିଲାଙ୍କର ପ୍ରତିଭା ଓ ଶିକ୍ଷାଗତ ଯୋଗ୍ୟତା ଯୋଗୁ ଆମର ମର୍ଯ୍ୟାଦା ବଢ଼ିଲା । କିନ୍ତୁ ଓଡ଼ିଶାରେ ଆମର ଏ ଗୌରବକୁ କେହି ଚିହ୍ନିଲେ ନାହିଁ କି ଏଥିପାଇଁ ପଦେ ପ୍ରଶଂସା ମଧ୍ୟ କରିନାହାନ୍ତି । ଓଡ଼ିଶାର ଏହା ଦୁର୍ଭାଗ୍ୟ ।

ସ୍ନାତକ ମନୋବିଜ୍ଞାନ ବିଭାଗ ଖୋଲିଗଲା ସତ, କିନ୍ତୁ କେତେକ ବିଶିଷ୍ଟ ଶିକ୍ଷାକର୍ତ୍ତାଙ୍କର ଏହା ପ୍ରତି ବିରୋଧ ଭାବ ଯୋଗୁ ଆମର ମଝିରେ ମଝିରେ ଅସୁବିଧା ହେଲା । ପ୍ରଥମବର୍ଷ ବିଶ୍ୱବିଦ୍ୟାଳୟର ସ୍ନାତକ ପରୀକ୍ଷାରେ ଷୋଳ ଜଣଙ୍କ ଭିତରୁ ତିନିଜଣ ଛାତ୍ର ପ୍ରଥମ ଶ୍ରେଣୀରେ ପାଶ୍ କଲେ । ଏହା ସେମାନଙ୍କ ପକ୍ଷରେ ଅସହ୍ୟ ହେଲା । ତେଣୁ ତତ୍କାଳୀନ କୁଳପତି ଡକ୍ଟର ପର୍ଶୁରାମ ମିଶ୍ରଙ୍କୁ ବୁଝାଇ ସୁଝାଇ ପରୀକ୍ଷା ଫଳକୁ ଠିକ୍ ସମୟରେ ପ୍ରକାଶ କରିବା ବନ୍ଦ କରିଦିଆଗଲା । ପରିସଂଖ୍ୟାନ ପେପର୍‌ରେ କେତେକଙ୍କର ବେଶି ନମ୍ବର ଥିବା ଯୋଗୁ ଏହି ଖାତାକୁ ଗୁପ୍ତରେ ଅନ୍ୟ ବିଶ୍ୱବିଦ୍ୟାଳୟର ପରୀକ୍ଷକଙ୍କ ପାଖକୁ ପଠାହେଲା ପରୀକ୍ଷା ନିୟନ୍ତ୍ରଣ କରୁଥିବା କଣ୍ଡକ୍ଟିଙ୍ଗ୍ ବୋର୍ଡ଼ର ଅଜ୍ଞାତସାରରେ । ମୁଁ ତା'ର ଚେୟାରମ୍ୟାନ୍ ଥାଏ । ବାହାରର ଜଣେ ବିଶିଷ୍ଟ ମନୋବିଜ୍ଞାନ ଅଧ୍ୟାପକ ଡକ୍ଟର ମୋହସିନ୍ ଓ ଅଧ୍ୟାପକ ରତ୍ନାକର ପତି ସଭ୍ୟ ଥାନ୍ତି । ପ୍ରାୟ ମାସେକାଳ ଏହିପରି ଭାବରେ ଗଡ଼ାଇ ଦିଆଯାଇଥିଲା । ସିଣ୍ଡିକେଟ୍‌ର ସବୁ ସଭ୍ୟ ମଧ୍ୟ ଏ ବିଷୟ ଜାଣି ନଥିଲେ । ତା'ପରେ କଣ୍ଡକ୍ଟିଙ୍ଗ୍ ବୋର୍ଡ଼ ପାଖକୁ ନୂଆ ପରୀକ୍ଷକଙ୍କର ମୂଲ୍ୟାୟନ ଆସିଲା । ସିଣ୍ଡିକେଟ୍‌ର ଯେଉଁ ବିଶିଷ୍ଟ ଶିକ୍ଷାକର୍ତ୍ତାଙ୍କ ପ୍ରରୋଚନାରେ ଏହି ଖାତାକୁ ବାହାରକୁ ପଠାଯାଇଥିଲା ସେ ମଧ୍ୟ ସିଣ୍ଡିକେଟ୍‌ର ପ୍ରତିନିଧି ହିସାବରେ କଣ୍ଡକ୍ଟିଙ୍ଗ୍ ବୋର୍ଡ଼ ସଭାକୁ ଆସିଲେ । ମୁଁ ଏହି ବ୍ୟକ୍ତିଙ୍କର ଷଡ଼ଯନ୍ତ୍ରରେ ଏତେ ବେଶି ଉତ୍କ୍ଷିପ୍ତ ହୋଇପଡ଼ିଥିଲି ଯେ ସିଣ୍ଡିକେଟ ତରଫରୁ ସେ ଯାହା କହିଥିଲେ ତାକୁ ଲିପିବଦ୍ଧ କରି ତାଙ୍କଠାରୁ ଦସ୍ତଖତ ନେଲା ପରେ କଣ୍ଡକ୍ଟିଙ୍ଗ୍ ବୋର୍ଡ଼ର ପରୀକ୍ଷା ନିରୀକ୍ଷା ସମୟରେ ତାଙ୍କର ଉପସ୍ଥିତିର ପ୍ରୟୋଜନ ନାହିଁ ବୋଲି ତାଙ୍କୁ ଜଣାଇ ଦେଇଥିଲି । ସେ ଭୟଙ୍କର ଭାବରେ ଉତ୍କ୍ଷିପ୍ତ ହୋଇ ଚାଲିଯାଇଥିଲେ ।

ତା'ପରେ ବିଶ୍ୱବିଦ୍ୟାଳୟ ପକ୍ଷରେ ଏପରି ଆଇନ ବିରୁଦ୍ଧ ଓ ପକ୍ଷପାତ କାର୍ଯ୍ୟ କରିବା ଆଦୌ ବିଧେୟ ନଥିଲା ବୋଲି କଣ୍ଡକ୍ଟିଙ୍ଗ୍ ବୋର୍ଡ଼ ଗୋଟିଏ ଖୁବ୍ କଡ଼ା ପ୍ରସ୍ତାବ ସର୍ବସମ୍ମତି କ୍ରମେ ଗ୍ରହଣ କଲା । ସିଣ୍ଡିକେଟ୍‌ର କେତେକ ସଭ୍ୟ ମଧ୍ୟ ଏପ୍ରକାର ଆଇନ ବିରୁଦ୍ଧ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇଥିଲେ ଏବଂ ସିଣ୍ଡିକେଟ୍ ବିରୁଦ୍ଧରେ ଆମର କଡ଼ା ପ୍ରସ୍ତାବକୁ ସମର୍ଥନ କରିଥିଲେ । ସେହି ବିଶିଷ୍ଟ ଶିକ୍ଷାକର୍ତ୍ତାଙ୍କର ପରାଜୟ ହେଲା । ଶେଷରେ ମନୋବିଜ୍ଞାନ ସ୍ନାତକ ଫଳ ପ୍ରଥମରୁ ଯେପରି ଥିଲା ସେହିପରି ଭାବରେ ପ୍ରକାଶ କରିବାକୁ ସେମାନେ ବାଧ୍ୟ ହେଲେ । ତା'ପରଠାରୁ

ଆଉ କୌଣସି କଣ୍ଡକ୍ଟିଙ୍ଗ୍ ବୋର୍ଡ଼ର ସିଦ୍ଧାନ୍ତ ବିରୁଦ୍ଧରେ ସିଣ୍ଡିକେଟ୍ ହସ୍ତକ୍ଷେପ କରିନାହିଁ । ଏହିପରି ଭାବରେ ମନୋବିଜ୍ଞାନ ବିରୋଧୀ ଲୋକମାନଙ୍କ ବିରୁଦ୍ଧରେ ବହୁ ବିଜୟ ହାସଲ କଲା ପରେ ମୋର ଶକ୍ତି ବଢ଼ିବାକୁ ଲାଗିଲା । ତେଣୁ ମନସ୍ତତ୍ତ୍ୱ ବିଭାଗର ଭବିଷ୍ୟତ କୃତିତ୍ୱ ପାଇଁ ଏବଂ ଶିକ୍ଷାକର୍ତ୍ତାଙ୍କର ଅନ୍ୟାୟ ଓ ଅବିଚାର ବିରୁଦ୍ଧରେ ସଂଗ୍ରାମ କରିବାର ମୋର ମନୋବଳ ସକାଶେ ଏହାର ପ୍ରତିରୋଧକାରୀ ତଥା ଈର୍ଷାନ୍ୱିତ ଲୋକଙ୍କ ପ୍ରତି ମୁଁ ସବୁବେଳେ କୃତଜ୍ଞ ରହିଲି । ସେମାନେ ନଥିଲେ ମୋର ଜିଦ୍ ଏବଂ କର୍ମଶକ୍ତି ଏପରି ଭାବରେ ବୋଧହୁଏ ବୃଦ୍ଧି ପାଇପାରି ନଥାନ୍ତା । ମୋତେ ସେମାନେ ଭଲ ପାଇଥିଲେ ସେମାନଙ୍କର ହୁଏତ ମୁଁ ସ୍ତାବକ ହୋଇ ରହିଯାଇଥାନ୍ତି ଏବଂ ସେମାନଙ୍କ ବିଭାଗ ପରି ମନୋବିଜ୍ଞାନ ବିଭାଗ ମଧ୍ୟ ସଙ୍କୁଚିତ ହୋଇରହିଯାଇଥାନ୍ତା ।

ଡକ୍ଟର ବାନାର୍ଜୀ ଆମ ବିଭାଗ ପାଇଁ ଯେଉଁ ଘର ବଖରାଟି ଦେଇଥିଲେ, ତା'ଠାରୁ ବେଶି ଘର ରେଭେନ୍ସା କଲେଜରେ ପାଇବାର ସମ୍ଭାବନା ମୋର ଆଦୌ ନଥିଲା । କାରଣ ରେଭେନ୍ସା କଲେଜରେ ଅନ୍ୟାନ୍ୟ ବିଭାଗରେ ଘର ବହୁତ କମ୍ ଥିଲା । ଅଧ୍ୟାପକମାନଙ୍କର ମଧ୍ୟ ବସିବା ପାଇଁ ଯଥେଷ୍ଟ ସ୍ଥାନ ନଥିଲା । ତା'ଛଡ଼ା ମନୋବିଜ୍ଞାନ ବିଭାଗ ପାଇଁ ଅଧିକ ଘର ସକାଶେ ସରକାରଙ୍କୁ ଲେଖିବା ମନୋବୃତ୍ତି ତତ୍କାଳୀନ କର୍ତ୍ତାମାନଙ୍କର ଆଦୌ ନଥିଲା । ଏହି ସମୟରେ କଲେଜ ହଲ୍ ଏବଂ ଅଫିସ ଆଗରେ ଦୁଇଟି ନୂଆ ବ୍ଲକ୍ ତିଆରି ହୋଇଥାଏ । ଅଫିସ୍ ଓ ଅନ୍ୟାନ୍ୟ କ୍ଲାସ୍ କରିବା ପାଇଁ । କିନ୍ତୁ କର୍ତ୍ତୃପକ୍ଷଙ୍କର ଉଦାସୀନତା ଓ ବିଭାଗୀୟ ସହଯୋଗ ଅଭାବରୁ ଏହି ଦୁଇଟି ବ୍ଲକ୍ ତିଆରି ହୋଇ ବହୁଦିନ ଧରି ଖାଲି ପଡ଼ିଥାଏ । ତାହା ଭିତରେ ଗାଈଗୋରୁ ଶୁଅନ୍ତି । ଧୂଳି, ଇଟା, ଗୋବରରେ ଘରଟିମାନ ପୂର୍ଣ୍ଣ । କବାଟ ଝରକା ଲାଗିଥାଏ, କିନ୍ତୁ ତାଲା ଚାବି ନଲାଗି ଥିବାରୁ ସେସବୁ ଖୋଲା ପଡ଼ିଥାଏ । ସନ୍ଧ୍ୟା ପରେ ଚାରିଆଡ଼ ଅନ୍ଧାର । କିନ୍ତୁ ଆଶ୍ଚର୍ଯ୍ୟର କଥା, ସେ ଘର ବିଷୟରେ କେହି କିଛି ଜାଣିଲା ପରି ମନେ ହେଉନଥିଲା । ପ୍ରତ୍ୟେକ ବ୍ଲକ୍‌ରେ ଦୁଇଟି କରି ଲମ୍ବା ଲମ୍ବା ହଲ୍ ଓ ତଳ ଉପର ତାଲାରେ ଏହିପରି ଭାବରେ ଖାଲି ପଡ଼ିଥାଏ । ମୁଁ ସବୁବେଳେ ହଲ୍ ଆଗରେ ଥିବା ଏହି ନୂଆ ବ୍ଲକ୍‌ଟିକୁ ଚାହିଁ ଚାହିଁ ଯାଉଥାଏ ଏବଂ ଭାବୁଥାଏ ଏହି ବ୍ଲକଟି ଆମ ବିଭାଗକୁ ମିଳିଯାଆନ୍ତା କି ?

କିଛିଦିନ ପରେ ମୁଁ ହାତରୁ ଗୋଟିଏ ବଡ଼ ତାଲା କିଣିଆଣି ସେହି ବ୍ଲକର ପ୍ରଧାନ କବାଟରେ ପକାଇଦେଲି । ଏହିପରି ଭାବରେ କିଛିଦିନ ଗଲା । କେହି ଲକ୍ଷ୍ୟ କଲେନାହିଁ । ତା'ପରେ ଦିନେ ହାତରୁ ପଇସା ଖର୍ଚ୍ଚ କରି ମୂଲିଆ ଲଗାଇ ତଳଘର ହଲ୍ ଦୁଇଟିକୁ ପରିଷ୍କାର କରାଇଲି । ମୁଁ କିନ୍ତୁ ଦିନରେ ସେଠାକୁ ଯାଏନାହିଁ । କିଏ ଜାଣୁଛି କିଏ ସଫା କରାଉଚି ? ତା'ପରେ ଦିନେ ତତ୍କାଳୀନ ଘରବାଡ଼ି ତତ୍ତ୍ୱାବଧାନରେ ଥିବା ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ଯାଇ ଦେଖା କଲି ଏବଂ ଏହି ଘରର ବ୍ୟବହାର ପାଇଁ ନୂଆ ବ୍ଲକର ତଳେ ଥିବା ଦୁଇଟି ହଲ୍ ଭିତରେ ତିନୋଟି କାନ୍ଥ କରିଦେବା ପାଇଁ ଅନୁରୋଧ କଲି । ତାଙ୍କ ହାତରେ ସେ ଘରର ଚାବିଟିକି ଦେଲି । ମୋ'ଠାରୁ ଚାବି ପାଇ ତାଙ୍କର ବୋଧହୁଏ ବିଶ୍ୱାସ ହେଲା ଯେ ହଲ୍ ଦୁଇଟି ମୋ ତତ୍ତ୍ୱାବଧାନରେ ଅଛି । ଯାହାହେଉ, ସେ ରାଜି ହୋଇଗଲେ ଏବଂ ଗୋଟିଏ ହଲ୍‌ରେ ଦୁଇଟି କାନ୍ଥ ଓ ଅନ୍ୟ ହଲ୍‌ରେ ଗୋଟିଏ

କାଛ କରି ଏହି ଦୁଇଟି ହଲ୍‌କୁ ପାଞ୍ଚଟି ବଖରାରେ ପରିଣତ କଲେ । ଘର ଭିତରେ କାନ୍ଥ ତିଆରି ହେଉଥାଏ, କିନ୍ତୁ କେହି କେବେ ଆସି ପଚାରନ୍ତି ନାହିଁ ସେଠାରେ କାହିଁକି କାନ୍ଥ ତିଆରି ହେଉଛି । ବିଦ୍ୟୁତ୍ ସଂଯୋଗ ଥାଏ– କିନ୍ତୁ ଆଲୋକ, ପଙ୍ଖା ନଥାଏ । ଦିନେ ହଠାତ୍ ଆମ ବିଭାଗର ସବୁ ଜିନିଷପତ୍ର ନେଇ ସେହି ବ୍ଲକଟିକୁ ଅଧିକାର କରିନେଲି । ସମସ୍ତେ ବୋଧହୁଏ ଭାବୁଥିଲେ ଯେ ପ୍ରକୃତରେ ମନୋବିଜ୍ଞାନ ବିଭାଗ ପାଇଁ ସେହି ବ୍ଲକଟି ତିଆରି ହୋଇଛି । ସରକାରୀ କଳ କେତେ ଉଦାସୀନ ଓ କର୍ତ୍ତୃପକ୍ଷ କେତେ ବେଶି ଅପାରଗ– ଏଥିରୁ ସ୍ପଷ୍ଟ ଜଣାପଡ଼େ । ଆମେ ଏହି ବ୍ଲକଟି ଦଖଲ କରିବାର ବହୁଦିନ ପରେ ପ୍ରିନ୍‌ସିପାଲ ସ୍ୱର୍ଗୀୟ ବାମାଚରଣ ଦାସ ଆସି ଦେଖନ୍ତି ଯେ ଗୋଟିଏ ବଡ଼ଘରେ ମନୋବିଜ୍ଞାନ ପରୀକ୍ଷାଗାର ଓ ଅନ୍ୟ ଏକ ଛୋଟଘରେ ଷ୍ଟୋର ଏବଂ ଆଉ ଗୋଟିକରେ ଅଧ୍ୟାପକମାନଙ୍କର ବସିବା ଘର, ମୋର ଗୋଟିଏ ଘର, ବିଭାଗୀୟ ଲାଇବ୍ରେରୀ ପାଇଁ ଅଲଗା ବଖରା ଏବଂ ଅଲଗା ଆଉ ଗୋଟିଏ ଘରେ ମନୋବିଜ୍ଞାନ କ୍ଲାସ ଚାଲିଛି ! ସେ ଆଶ୍ଚର୍ଯ୍ୟ ହୋଇଗଲେ ଯେ ଦୁଇଟା ଖାଲିଥିବା ହଲ୍‌ରେ ଏତେ କାମ ହୋଇ ମନୋବିଜ୍ଞାନ ବିଭାଗ ପ୍ରତିଷ୍ଠିତ ହୋଇଗଲାଣି ! ପରସ୍ପରକୁ କେବଳ ଚାହିଁଲୁ । କାରଣ ସେତେବେଳକୁ ଆଉ କିଛି କରିବାର ନଥିଲା । ସେ ଖାଲି କହିଲେ- ଏ ପ୍ରକାର ସ୍ଥାୟୀ କାନ୍ଥ ନ କରିଥିଲେ ଭଲ ହୋଇଥାନ୍ତା । ଆମେ କିନ୍ତୁ ସ୍ଥାୟୀ ଭାବରେ ସେଠାରେ ରହିଗଲୁ ।

ସେହିପରି ସ୍ନାତକୋତ୍ତର କ୍ଲାସ୍ ଖୋଲିବା କଥା । ୧୯୫୮ରେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନର ପରିଦର୍ଶକ ଦଳ ଆସି ଥାଆନ୍ତି ଭିନ୍ନ ଭିନ୍ନ ବିଭାଗକୁ ମଞ୍ଜୁରୀ ଦେବା ପାଇଁ । ବିଶ୍ୱବିଦ୍ୟାଳୟରେ ଆଲୋଚନା ବେଳେ ସେମାନଙ୍କୁ ଧାରଣା ଦିଆଯାଇଥିଲା ଯେ ମନୋବିଜ୍ଞାନ ସ୍ନାତକୋତ୍ତର ବିଭାଗ ପାଇଁ ରେଭେନ୍ସା କଲେଜରେ ଆଦୌ ସ୍ଥାନ ନାହିଁ । ତେଣୁ ବିଶ୍ୱବିଦ୍ୟାଳୟ ବାଣୀବିହାରକୁ ଗଲା ପରେ ୧୯୬୨ ମସିହା ବେଳକୁ ଏହା ଖୋଲାଯିବ । ମୁଁ କିନ୍ତୁ ସେମାନଙ୍କର ଆସିବା ଆଗରୁ ଦିଲ୍ଲୀରେ କହିଥାଏ ଯେ, ରେଭେନ୍ସା କଲେଜରେ ମୁଁ ସ୍ଥାନ ବନ୍ଦୋବସ୍ତ କରିଛି । ତେଣୁ ପରିଦର୍ଶକମାନଙ୍କ ଭିତରୁ ଦୁଇଜଣ ସଭ୍ୟ ଆଗରୁ ମୋ ସହିତ ଆସି ଦେଖା କରି କହିଲେ ଯେ ରେଭେନ୍ସା କଲେଜରେ ସ୍ଥାନ ଅଭାବ ଯୋଗୁ ସେ ବର୍ଷ ମନୋବିଜ୍ଞାନରେ ସ୍ନାତକୋତ୍ତର ବିଭାଗ ଖୋଲାଯାଇ ପାରିବନାହିଁ ବୋଲି କୁହାଯାଉଛି । ସେତେବେଳ ପର୍ଯ୍ୟନ୍ତ ଏହି ବ୍ଲକର ଉପର ମହଲା ଦୁଇଟି ହଲ୍ ବହୁ ବର୍ଷ ଧରି ସେହିପରି ଖାଲି ପଡ଼ିଥାଏ । ଟଙ୍କା ମଞ୍ଜୁର ହେଲେ ଅଧ୍ୟାପକମାନଙ୍କ ପାଇଁ ବସିବା ଘର ଓ ଅନ୍ୟାନ୍ୟ ବଖରା ହେବାର ଯୋଜନା ଚାଲିଥାଏ । ମୁଁ ସେ ଦୁଇଜଣ ସଭ୍ୟଙ୍କୁ ଗୁପ୍ତରେ ଉପର ମହଲା ହଲ ଦୁଇଟିକୁ ଦେଖାଇ ଆଣିଲି ଏବଂ ପରିଦର୍ଶକ ଦଳ କଲେଜକୁ ନ ଆସିବା ପର୍ଯ୍ୟନ୍ତ କାହାରିକୁ ଏକଥା ନ କହିବା ପାଇଁ ଅନୁରୋଧ କଲି ।

ପରେ ପରିଦର୍ଶକମାନେ, କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜା, ପ୍ରିନ୍‌ସିପାଲ ଓ ଡି.ପି.ଆଇ.ଙ୍କ ସହିତ ଯେତେବେଳେ ମୋ' ବିଭାଗକୁ ଆସିଲେ, ମୁଁ କହିଲି–

"ଚାଲନ୍ତୁ କେଉଁ ଘରେ ମନୋବିଜ୍ଞାନ ସ୍ନାତକୋତ୍ତର କ୍ଲାସ ହେବ ଆପଣମାନଙ୍କୁ ଦେଖାଇଦେବି " କହି ସେମାନଙ୍କର ଆଗେ ଆଗେ ଚାଲିଲି । ଡକ୍ଟର ପରିଜା ଓ ବାମାବାବୁ ଆଶ୍ଚର୍ଯ୍ୟ ହୋଇ ସେମାନଙ୍କ ସାଥିରେ ମୋ ପଛେ ପଛେ ଗଲେ । ଉପର ମହଲାରେ ଖାଲି

ପଢ଼ିଥିବା ସେହି ହଲ୍ ଦୁଇଟିକୁ ଦେଖାଇ ଦେଲା ପରେ ପରିଦର୍ଶକ ସଭ୍ୟମାନେ ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । ପ୍ରିନ୍ସିପାଲ ଓ ଡି.ପି.ଆଇ.ଙ୍କର ଏଥିରେ ଆପତ୍ତି କରିବାକୁ ଆଉ ସମୟ ଓ ସୁଯୋଗ ନଥିଲା । ଡକ୍ଟର ପରିଜା ତ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ଏହିପରି ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ମନୋବିଜ୍ଞାନରେ ସ୍ନାତକୋତ୍ତର ବିଭାଗ ଉପର ମହଲାରେ ଆରମ୍ଭ ହେଲା ଏବଂ ୧୯୬୨ ଜୁଲାଇ ପର୍ଯ୍ୟନ୍ତ ସେଠାରେ ରହିଥିଲା । ମୋର ପ୍ରତିରୋଧକାରୀଙ୍କର ରାଗ ଓ ହିଂସା ମୋ ପ୍ରତି ଆହୁରି ବଢ଼ିଗଲା; କାରଣ ରେଭେନ୍ସା କଲେଜରେ ଯାଗାର ଅଭାବ ଥିଲାବେଳେ ବହୁ କଷ୍ଟରେ ହଲ୍ ଆଗରେ ତିଆରି ହୋଇଥିବା ପୂରା ଦୋତାଲା ବ୍ଲକଟି ମନୋବିଜ୍ଞାନ ବିଭାଗରେ ପରିଣତ ହୋଇଗଲା ! ବ୍ଲକର ସାମନାରେ ମନୋବିଜ୍ଞାନ ବିଭାଗ ବୋଲି ଗୋଟିଏ ବିରାଟ ବୋର୍ଡ଼ ଲଗାହେଲା । ସେମାନଙ୍କର ପ୍ରତିରୋଧ ଓ ପ୍ରତିଶୋଧ ମନୋଭାବ ଯେତିକି ବୃଦ୍ଧି ପାଉଥାଏ ମୋର ସାହସ, ଉତ୍ସାହ ଓ ଜିଦ୍ ସେତିକି ବଢ଼ି ଚାଲିଥାଏ ।

ଏ ପ୍ରକାର ସାହସ ଓ ଅଗ୍ରଧର୍ଷୀ କାର୍ଯ୍ୟକଳାପ ଫଳରେ ମୋଠାରେ କାମ କରାଇନେବାର କ୍ଷମତା ତଥା ଦକ୍ଷତା ଛାଏଁ ଛାଏଁ ବଢ଼ିଥିଲା । ଅଭିଜ୍ଞତା ପ୍ରସୂତ ଫଳପ୍ରଦ କାର୍ଯ୍ୟସିଦ୍ଧି ମାଧ୍ୟମରେ ବ୍ୟକ୍ତିର କ୍ଷମତା ବଢ଼େ ବୋଲି ମୋର ବଦ୍ଧମୂଳ ଧାରଣା ହେଲା । ପରେ ବିଭାଗର ଅଗ୍ରଗତି ଓ ମୋର ଅନ୍ୟାନ୍ୟ କୃତିତ୍ୱ ଏହି ଅର୍ଜିତ କ୍ଷମତା ଓ କ୍ରମବର୍ଦ୍ଧିଷ୍ଣୁ ସାହସ ଯୋଗୁଁ ସମ୍ଭବ ହୋଇପାରିଥିଲା । ମୋ ମତରେ କେହି କାହାକୁ କ୍ଷମତା ଦିଏ ନାହିଁ । କ୍ଷମତା ହାସଲ କରିବାକୁ ହୁଏ ନିଜର ସାହସିକ ଓ ଫଳପ୍ରଦ କାର୍ଯ୍ୟକଳାପ ମାଧ୍ୟମରେ । କୁଳପତିମାନଙ୍କର ଏତେ କ୍ଷମତା ଥାଇ ମଧ୍ୟ ଅନେକେ ତାକୁ ବ୍ୟବହାର କରିପାରନ୍ତି ନାହିଁ । ବରଂ ସେମାନଙ୍କର ସାମ୍ବିଧାନିକ କ୍ଷମତାକୁ ବ୍ୟବହାର ନ କରି ଧୀରେ ଧୀରେ ହାତରୁ କ୍ଷମତା ଛାଡ଼ି ଦୁର୍ବଳ ହୋଇଯାନ୍ତି । ଅଥଚ କେତେକ ବ୍ୟକ୍ତିଙ୍କର କୌଣସି ସାମ୍ବିଧାନିକ କ୍ଷମତା ନ ଥାଇ ମଧ୍ୟ ଅଖଣ୍ଡ କ୍ଷମତାର ଅଧିକାରୀ ହୋଇପାରନ୍ତି । ମୋ ନିଜ ଅଭିଜ୍ଞତାରୁ ଏ ପ୍ରକାର ତଥ୍ୟରେ ମୁଁ ଉପନୀତ ହୋଇଛି । ମୁଁ ଜଣେ କ୍ଷମତାବିହୀନ ସାଧାରଣ ଅଧ୍ୟାପକ ହୋଇ ମଧ ବିଶ୍ୱବିଦ୍ୟାଳୟରେ ଓ ସର୍ବଭାରତୀୟ କେତେକ ଅନୁଷ୍ଠାନରେ ପ୍ରଚଣ୍ଡ ଭାବରେ କ୍ଷମତାଶାଳୀ ହୋଇ ପାରିଥିଲି, ଏତେବଡ଼ ବିଭାଗ ସୃଷ୍ଟି କରି ପାରିଥିଲି, ତା'ର ପରିଚାଳନା କରି ପାରିଥିଲି । ଏଥିପାଇଁ ବିଶ୍ୱବିଦ୍ୟାଳୟରୁ ଏବଂ ବେଳେ ବେଳେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନଠାରୁ ମଧ୍ୟ ବହୁ ବାଧାବିଘ୍ନ ସୃଷ୍ଟି ହୁଏ । ସେ ସବୁକୁ ଅତିକ୍ରମ କରିପାରୁଥିଲି । ବ୍ୟକ୍ତିବିଶେଷର ବୈଧାନିକ କ୍ଷମତା ନଥାଇ ମଧ୍ୟ କ୍ଷମତା କିପରି ଅର୍ଜନ କରାଯାଏ ଏବଂ କ୍ଷମତାପ୍ରାପ୍ତ ଲୋକ କିପରି କ୍ଷମତା ତ୍ୟାଗ କରି କରି ଆତ୍ମସମର୍ପଣ କରିଥାଏ, ତାହା ପ୍ରତିପାଦିତ କରିବା ପାଇଁ ଏ ବିଷୟରେ ସୂଚନା ପରେ ଦିଆଯିବ ।

ଆନନ୍ଦର କଥା, ବିଶ୍ୱବିଦ୍ୟାଳୟର କୁଳପତି ମହାନୁଭବ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ସହିତ ମୋର ଖୁବ୍ ଭଲ ପଡୁଥିଲା । ଦିଲ୍ଲୀ ଓ ଅନ୍ୟାନ୍ୟ ସ୍ଥାନରେ ସମାଜ ବିଜ୍ଞାନ ସମ୍ବନ୍ଧୀୟ ଯେତେପ୍ରକାର ସେମିନାର ଓ ସମ୍ମିଳନୀ ହୁଏ ସେଥିରେ ଯୋଗ ଦେବାକୁ ସେ ମୋତେ ପଠାନ୍ତି । ଜାତୀୟ ଐକ୍ୟ, ପୂର୍ବପାଶ୍ଚାତ୍ୟ ସାଂସ୍କୃତିକ ସାମଞ୍ଜସ୍ୟ, ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କର ଶିକ୍ଷାଗତ ଆଦର୍ଶ ଓ ଉତ୍କର୍ଷ, ପରୀକ୍ଷା ପ୍ରଣାଳୀର ପରିବର୍ତ୍ତନ, କେନ୍ଦ୍ରୀୟ ଶ୍ରମିକ ଶିକ୍ଷାକ୍ରମ

ପ୍ରଭୃତି ଯାବତୀୟ ସଭାରେ ମୁଁ ତାଙ୍କ ଯୋଗୁ ଯୋଗ ଦେବାର ସୁଯୋଗ ପାଇଥିଲି । ମୁଁ ଯେତେ ବାହାରକୁ ଗଲି ସର୍ବଭାରତୀୟ ଅନୁଷ୍ଠାନମାନଙ୍କରେ ବିଭିନ୍ନ ବିଶ୍ୱବିଦ୍ୟାଳୟରେ ବିଶେଷତଃ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନରେ ମୋର ପ୍ରତିଷ୍ଠା ଓ ପ୍ରତିପତ୍ତି ସେତେ ବଢ଼ି ଚାଲିଲା । ଏଥିରେ ଡକ୍ଟର ପରିଜା ବଡ଼ ଖୁସି ଥିଲେ । ସେ ମୋର କୃତିତ୍ୱ କଥା ଦିଲ୍ଲୀରୁ ଶୁଣି ଆସି ମୋତେ ଉତ୍ସାହିତ କରନ୍ତି । ତାଙ୍କ ଯୋଗୁ ମୋର ପ୍ରତିରୋଧକାରୀମାନେ ବେଶି କିଛି କ୍ଷତି କରିପାରିନଥିଲେ । ତାଙ୍କ ପାଖକୁ ବହୁତ ବେନାମୀ ଚିଠି ମୋ ନାଁରେ ଓ ବିଭାଗ ନାଁରେ ଯାଏ । ଆମ ବିଭାଗର ଜଣେ ଅଧ୍ୟାପକ ମଧ୍ୟ ଏ ବିଷୟରେ ସଂପୃକ୍ତ ଥିବାର ମୁଁ ଜାଣିଥିଲି । ଡକ୍ଟର ପରିଜା ସବୁ ଚିଠି ମୋତେ ଦେଇଦିଅନ୍ତି ଏବଂ ହସି କହନ୍ତି ଯେ--

''ତୁମ ବିଭାଗର ନିଶ୍ଚୟ କିଛି ଗୌରବ ଅଛି, ତା'ନହେଲେ ତୁମେ କିପରି ଏତେ ବେଶି ଈର୍ଷା ସୃଷ୍ଟି କରିପାରୁଛ ?''

ମୁଁ ସେଥିଯୋଗୁ ସବୁବେଳେ ଆମ ଛାତ୍ରଛାତ୍ରୀ ଓ ଶିକ୍ଷକମାନଙ୍କୁ କହେ ଯେ ଲୋକେ ରାଜକୀୟ ଲୋକଙ୍କ ପ୍ରତି ଈର୍ଷା ପ୍ରଦର୍ଶନ କରନ୍ତି, ଭିକାରୀମାନଙ୍କ ପ୍ରତି ନୁହେଁ । ତେଣୁ ଆମେ ସେଥିପାଇଁ ଗର୍ବ କରିବା କଥା ।

ରେଭେନ୍ସା କଲେଜରେ ଅନ୍ୟାନ୍ୟ ସ୍ନାତକୋତ୍ତର ବିଭାଗର ମୁଖ୍ୟ ଅଧ୍ୟାପକମାନଙ୍କ ପାଇଁ ସ୍ୱତନ୍ତ୍ର ବଖରା ନଥିଲା ଅଥଚ ସେଠାରେ ସ୍ନାତକ ବିଭାଗ ଖୋଲିବା ଦିନଠାରୁ ମୋର ସ୍ୱତନ୍ତ୍ର ବଖରା ଥିଲା । ସେମାନଙ୍କର ଛାତ୍ର ସେମିନାର ପାଇଁ କୌଣସି ସ୍ଥାନ ନଥିଲା ଅଥଚ ଆମର ପ୍ରଥମରୁହିଁ ସେମିନାର ଘର ଥିଲା । ଆମ ବିଭାଗୀୟ ଅଧ୍ୟାପକମାନଙ୍କର ବସିବା ପାଇଁ ଗୋଟିଏ ସ୍ୱତନ୍ତ୍ର କୋଠରୀ ଥିଲା ଯାହାକି ଅନ୍ୟମାନଙ୍କ ପାଇଁ ସ୍ୱପ୍ନ ଥିଲା । ମୋର ବିଭାଗୀୟ କ୍ଲାସ୍ ପାଇଁ ଅଲଗା ଶ୍ରେଣୀଗୃହ ଥିଲା । ଅନ୍ୟମାନେ ଏଣେତେଣେ ବୁଲି କ୍ଲାସ୍ ନେଉଥିଲେ ଏବଂ ସମୟ ସମୟରେ ଆମ ବିଭାଗରେ ଆସି କ୍ଲାସ୍ ନେଉଥିଲେ । ମୋ ବିଭାଗର ଚଉକୀ, ଟେବୁଲ ପ୍ରଭୃତି ଆସବାବପତ୍ର ଅତି ଉତ୍କୃଷ୍ଟ ଧରଣର ଥିଲା । ମୁଁ ସମସ୍ତଙ୍କଠାରୁ ପଛରେ ଆସି ଏତେ ବିଳମ୍ବରେ ମନୋବିଜ୍ଞାନ ବିଭାଗ ଖୋଲି ମଧ୍ୟ ଏପରି ସୁବିଧାର ଅଧିକାରୀ ହୋଇଗଲା ପରେ ଅନ୍ୟମାନଙ୍କର ଈର୍ଷା ତଥା ରାଗ ହେବା ସ୍ୱାଭାବିକ । ମୋ ବିଭାଗର ବୈଶିଷ୍ଟ୍ୟ ଓ ସଂଭ୍ରାନ୍ତୀୟ ରୀତି ମୋର ସହଯୋଗୀ ଅଧ୍ୟାପକ ଓ ଛାତ୍ରମାନଙ୍କର ମର୍ଯ୍ୟାଦା ବଢ଼ାଇବା ସଙ୍ଗେ ସଙ୍ଗେ ମୋର ମାନସମ୍ମାନ ବଢ଼ାଇବାରେ ବହୁତ ସାହାଯ୍ୟ କଲା । ନିଜର କୃତିତ୍ୱରେ ଜଣେ ଯେତେ ଉପରକୁ ଉଠିପାରେ ତା'ଠାରୁ ବେଶି ସେ ମର୍ଯ୍ୟାଦାବନ୍ତ ହୁଏ ତା'ର ବିଭାଗର ସାମୂହିକ ଉନ୍ନତି ତଥା ଖ୍ୟାତି ଯୋଗୁଁ । ତେଣୁ ମୋର ସର୍ବଭାରତୀୟ ପଦମର୍ଯ୍ୟାଦା ପାଇଁ ମୁଁ ମୋର ବିଭାଗର ଛାତ୍ର ତଥା ସହଯୋଗୀ ଅଧ୍ୟାପକମାନଙ୍କ ପ୍ରତି ସବୁବେଳେ କୃତଜ୍ଞ ରହିଲି ।

୧୯୫୩ ମସିହାରେ ସ୍ନାତକ ବିଭାଗ ଖୋଲିଲା ପରେ ମନୋବିଜ୍ଞାନରେ ଗୋଟିଏ ରିଡ଼ର ପଦ ସରକାରୀ ସ୍ତରରେ ସୃଷ୍ଟି ହେଲା । ସ୍ନାତକ ଶ୍ରେଣୀ ପାଇଁ ଗୋଟିଏ ରିଡ଼ରର ଆବଶ୍ୟକତା ବିଷୟରେ ନିୟମ ଥାଏ । ମୁଁ ଏତେ ପରିଶ୍ରମ କରି ମୋ ବିଭାଗ ପାଇଁ ନୂଆ ବ୍ଲକ୍ ଦଖଲ କରି ଆଧୁନିକ ଢାଞ୍ଚାରେ ପାଠ୍ୟକ୍ରମର ପ୍ରବର୍ତ୍ତନ କରି ବିଭାଗୀୟ ମୁଖ୍ୟ ହିସାବରେ ଗଣ୍ୟ ହେଲା ପରେ ମଧ୍ୟ ମୋତେ ରିଡ଼ର ପଦବୀ ନଦେବା ପାଇଁ ଷଡ଼ଯନ୍ତ୍ର ହୋଇଥିଲା ।

ପବ୍ଲିକ୍ ସର୍ଭିସ୍ କମିଶନ ରିଡ଼ର ପଦ ପାଇଁ ବ୍ୟକ୍ତି ନିର୍ଣ୍ଣୟ କରୁଥାଏ । ଏହି କମିଶନକୁ ରିଡ଼ର ପଦବୀ ପାଇଁ ପ୍ରସ୍ତାବ ପଠାଯିବା ପୂର୍ବରୁ ସରକାରୀ ସ୍ତରରେ ମସୁଧା ହେଲା ଯେ

ମୋତେ କୌଣସି ଗୋଟିଏ କଲେଜର ଅଧ୍ୟକ୍ଷ ହିସାବରେ ପଠାଇ ଦିଆଯିବ । ମୁଁ କୁଆଡ଼େ ଅଧ୍ୟାପକ ହିସାବରେ ବହୁତ ସ୍ୱାଧୀନ ହୋଇପଡୁଛି । ନାନା କଥା ଖବରକାଗଜରେ ଲେଖୁଛି । କିନ୍ତୁ ଅଧ୍ୟକ୍ଷ ହୋଇଗଲେ ମୁଁ ସହଜରେ ନିୟନ୍ତ୍ରିତ ହୋଇଯିବି ।

ଅଧ୍ୟକ୍ଷ ପଦବୀ ନିମନ୍ତେ ସାକ୍ଷାତକାର ପାଇଁ ମୋତେ କମିଶନ ଡାକିଲେ । କମିଶନର ଚେୟାରମ୍ୟାନ୍ ଥାଆନ୍ତି ରାୟବାହାଦୂର ସୋମନାଥ ମହାପାତ୍ର । ମେମ୍ବର ଥିଲେ ହରପ୍ରସାଦ ଦେବ ଓ ଅଧ୍ୟାପକ ସୁନ୍ଦରମ୍ । ମୋତେ ସାକ୍ଷାତବେଳେ ଚେୟାରମ୍ୟାନ୍ ପଚାରିଲେ-

"ତୁମେ ଲଣ୍ଡନ ଡକ୍ଟରେଟ୍ ?"

ମୁଁ କହିଲି– ହଁ ।

ତା'ପରେ କହିଲେ–"ଆଚ୍ଛା ଯାଅ ।"

ତା'ପରେ ମୁଁ କହିଲି– "ଆଜ୍ଞା ! ଅଧ୍ୟକ୍ଷ ପଦ ପାଇଁ ମୁଁ ଆଦୌ ଇଚ୍ଛୁକ ନୁହେଁ । ସରକାର ମୋ ପାଇଁ ଏତେ ଟଙ୍କା ଖର୍ଚ୍ଚ କରି ବିଲାତ ପଠାଇଛନ୍ତି । ପଢ଼ାଇବା ଓ ଗବେଷଣା କାର୍ଯ୍ୟରେ ମୋର କିଛିବର୍ଷ କାମ କରିବା ଉଚିତ । ଅଧ୍ୟକ୍ଷ ହେଲେ ମୋର ପଢ଼ାଇବା ଓ ଗବେଷଣା କାମ ତ ଆଦୌ ହୋଇପାରିବ ନାହିଁ ।"

ଏତକ ଶୁଣିଲାକ୍ଷଣି ସେ ଭୟଙ୍କର ରାଗିଗଲେ ଏବଂ କହିଲେ–

"ତୁମର ଡକ୍ଟର ପ୍ରସାଦ ତୁମ ପରି କହୁଥିଲେ । ସେ ତ ଏବେ ପୁଣି ଡି.ପି.ଆଇ. ହେଲେ ।"

ମୁଁ କହିଲି– "ଡକ୍ଟର ପ୍ରସାଦଙ୍କ ପ୍ରତି ମୋର ବହୁତ ସମ୍ମାନ ଅଛି । ସେ ତ ପଚିଶି ବର୍ଷ କାଳ ପଢ଼ାଇବା ଓ ଗବେଷଣା କାର୍ଯ୍ୟ କରି ତା'ପରେ ସିନା ଡି.ପି.ଆଇ. ହେବାକୁ ରାଜି ହେଲେ ।"

ତା'ପରେ ସେ ଆହୁରି ରାଗିଯାଇ କହିଲେ ଯେ- "ତା'ହେଲେ କ'ଣ ତୁମ ଫାଇଲ୍‌ରେ ଲେଖିଦେବି ଯେ ତୁମେ ଶାସନଗତ ଦାୟିତ୍ୱରେ ରହିବାକୁ ରାଜି ନୁହଁ ?"

ମୁଁ କହିଲି– "ହଁ । ଆପଣ ଯଦି ଫାଇଲ୍‌ରେ ଲେଖି ଦିଅନ୍ତି, ତା'ହେଲେ ଭବିଷ୍ୟତରେ ଏପରି ପଦବୀ ପାଇଁ ଯେପରି ମୋତେ ଆଉ ଆସିବାକୁ ପଡ଼ିବନାହିଁ ।"

ସେ ସେହିକ୍ଷଣି ସେକ୍ରେଟେରୀଙ୍କୁ ଡାକି ଫାଇଲ୍‌ରେ ଲେଖାଇଲେ ଯେ- "ସେ ଶାସନଗତ କାର୍ଯ୍ୟରେ ଆଗ୍ରହୀ ନୁହେଁ ।"

ମୁଁ ଧନ୍ୟବାଦ ଦେଇ ଫେରିଆସିଲି । ତା'ପରେ ମୋ ମୁଣ୍ଡରୁ ଯେପରି ଗୋଟିଏ ବୋଝ ଗଲା । ମୋତେ ଭାରି ଭଲ ଲାଗିଲା ଯେ ଚାକିରିର ପ୍ରଥମାବସ୍ଥାରୁ ମଧ୍ୟ ମୁଁ ମୋର ଇଚ୍ଛାଗତ ସିଦ୍ଧାନ୍ତ ନେଇପାରିଥିଲି ।

ଏହି ଘଟଣାର ପ୍ରାୟ ଛଅମାସ ପରେ ମନୋବିଜ୍ଞାନର ରିଡ଼ର ଚାକିରି ପାଇଁ ମୋତେ ପୁଣି ଥରେ କମିଶନ ଆଗକୁ ଯିବାକୁ ପଡ଼ିଲା । ସେତେବେଳକୁ ମୋର ବିଭାଗ ଦୁଇବର୍ଷ ହେଲା ଚାଲିଲାଣି । ମୁଁ ମୁଖ୍ୟ ଭାବରେ କାମ କରୁଥାଏ । କମିଶନକୁ ସାହାଯ୍ୟ କରିବା ପାଇଁ କଲିକତା ବିଶ୍ୱବିଦ୍ୟାଳୟର ମୁଖ୍ୟ ମନୋବିଜ୍ଞାନ ଅଧ୍ୟାପକ ପ୍ରଫେସର ମିତ୍ର ବିଶେଷଜ୍ଞ ହିସାବରେ ଆସିଥାନ୍ତି । ସାକ୍ଷାତ ସମୟରେ ଅଧ୍ୟାପକ ମିତ୍ର ମୋ ସହିତ ଆଲୋଚନା କରିସାରିଲା ପରେ ମୋତେ ପଚରାହେଲା ଯେ ମୁଁ ରିଡ଼ର ପଦବୀ ନ ପାଇଲେ ମଧ୍ୟ କ'ଣ ପ୍ରିନ୍ସିପାଲ ହୋଇଯିବା ପାଇଁ ରାଜି ହେବିନାହିଁ ?

ମୁଁ କହିଥିଲି ଯେ ''ଗୋଟିଏ ନିର୍ଦ୍ଦିଷ୍ଟ ରେଳଗାଡ଼ିରେ ମୋର ଅଭୀଷ୍ଟ ସ୍ଥାନରେ ମୁଁ ପହଞ୍ଚିବାକୁ ଚାହେଁ । ଯେକୌଣସି ରେଳଗାଡ଼ି ବର୍ତ୍ତମାନ ଦ୍ରୁତ ଗତିରେ ଚାଲୁଛି ବୋଲି ସେଥିରେ ବସିଯିବାକୁ ମୁଁ ଚାହେଁନାହିଁ । ତା'ଛଡ଼ା ମୁଁ ଏତେ ପରିଶ୍ରମ କରି ସର୍ବାଧୁନିକ ଢାଞ୍ଚାରେ ମନୋବିଜ୍ଞାନ ବିଭାଗ କରିଛି । ତା'ସତ୍ତ୍ୱେ ମୁଁ ଯଦି ରିଡ଼ର ନହୁଏ, ତଥାପି ମଧ୍ୟ ପ୍ରିନ୍ସିପାଲ ପଦବୀରେ ମୁଁ ଆଗ୍ରହୀ ନୁହେଁ । ମୁଁ ଲେକ୍‌ଚରର ହୋଇ ରହିବି, ପାଠ ପଢ଼ାଇବି, ଗବେଷଣା କରିବି ଏବଂ ବହି ଲେଖିବି ।''

ଯାହାହେଉ, ମୁଁ କେବଳ ଏକମାତ୍ର ଯୋଗ୍ୟ ବ୍ୟକ୍ତି ବୋଲି କମିଶନ ସିଦ୍ଧାନ୍ତ ନେଲେ । ମୁଁ ଯଦି ତାଲିକାରେ ପ୍ରଥମ ହୋଇଥାନ୍ତି ଏବଂ ସାକ୍ଷାତ ପାଇଁ ଆସିଥିବା ପ୍ରିନ୍‌ସପାଲ ଡକ୍ଟର ଦାମୋଦର ମିଶ୍ର ଦ୍ୱିତୀୟ ସ୍ଥାନ ଅଧିକାର କରିଥାଆନ୍ତେ ତା'ହେଲେ ମଧ୍ୟ ମୋତେ ବୋଧହୁଏ ସରକାରୀ ସ୍ତରରେ ରିଡ଼ର ପଦବୀ ମିଳିନଥାନ୍ତା, କାରଣ ସରକାରୀ ସ୍ତରରେ ମୋର ସମସ୍ତେ ବିରୋଧୀ ଥିଲେ ବୋଲି ମୁଁ ଶୁଣିଥିଲି ।

ଏ ସମ୍ପର୍କରେ କିଛିବର୍ଷ ପରେ ଗୋଟିଏ ଅଦ୍ଭୁତ ଘଟଣା ଘଟିଥିଲା । କମିଶନର ଚେୟାରମ୍ୟାନ୍ ସୋମନାଥ ମହାପାତ୍ର ଅବସର ନେଲା ପରେ ତାଙ୍କ ନାତିଙ୍କ ବିଷୟରେ ମନୋବୈଜ୍ଞାନିକ ପରାମର୍ଶ ଛଳରେ ମୋ ଘରକୁ ତାଙ୍କ ନାତିକୁ ଧରି ଆସିଥିଲେ । କଥାବାର୍ତ୍ତାବେଳେ ସେ କହିଥିଲେ ଯେ–

''ଆପଣଙ୍କ ଉପରେ ମୁଁ ବହୁତ ରାଗି ଯାଇଥିଲି କାରଣ କମିଶନ ସାକ୍ଷାତ ବେଳେ ଆପଣ ରୋକ୍‌ଠୋକ୍ ଭାବରେ ପ୍ରିନ୍ସିପାଲ ହେବା ପାଇଁ ମନା କରି ଦେଇଥିଲେ । ତା' ଫଳରେ ଆପଣ ଭବିଷ୍ୟତରେ ଡି.ପି.ଆଇ. ପ୍ରଭୃତି ବଡ଼ ଶାସନ ପଦବୀ ପାଇଁ ବାଦ୍ ପଡ଼ିଯିବେ । କିନ୍ତୁ ଆପଣ ରିଡ଼ର ପଦବୀ ପାଇଁ ସାକ୍ଷାତବେଳେ ଯେପରି ଭାବରେ ଅଧ୍ୟାପନା, ଗବେଷଣା ଓ ମନୋବିଜ୍ଞାନ ବିଭାଗର ଉନ୍ନତି ପାଇଁ ଆଗ୍ରହ, ନିଷ୍ଠା ତଥା ଆତ୍ମବିଶ୍ୱାସ ଦେଖାଇଲେ ସେଥିରେ ଆମେ ସମସ୍ତେ ଖୁସି ହେଲୁ । ତା'ଛଡ଼ା ମନୋବିଜ୍ଞାନ ବିଶେଷଜ୍ଞ, ରିଡ଼ର ପାଇଁ ଆପଣ ଏକାମାତ୍ର ଉପଯୁକ୍ତ ବ୍ୟକ୍ତି ବୋଲି ମତ ଦେଇଥିଲେ । ତା'ପରେ ଆପଣଙ୍କ ପ୍ରତି ମୋର ମତ ସମ୍ପୂର୍ଣ୍ଣ ଭାବେ ବଦଳିଗଲା ।''

ତାଙ୍କର ଏ କଥାରେ ମୁଁ ଅଭିଭୂତ ହୋଇଗଲି । ଏ କଥା କହିବା ପାଇଁ ସେ ଏତେ କଷ୍ଟ ସ୍ୱୀକାର କରି ମୋ ଘରକୁ ଆସିଥିଲେ ସେଥିପାଇଁ ତାଙ୍କଠାରେ ମୁଁ କୃତଜ୍ଞ । ପୁରୁଣାକାଳିଆ ଲୋକଙ୍କ ଭିତରେ ବୋଧହୁଏ ଏ ପ୍ରକାର ମହାନୁଭବତା ରହୁଥିଲା । ମୋ ଜୀବନରେ ଏହା ଗୋଟିଏ ଅଦ୍ଭୁତ ଘଟଣା ଥିଲା । ମୁଁ ଯେହେତୁ ସ୍ୱଚ୍ଛ ମନରେ ଖୋଲାଖୋଲି ଭାବରେ ମୋର ମତ ଜୋର୍ ଦେଇ କହିଥିଲି, ସେଥିରେ ସେମାନେ ଖୁସି ହୋଇଯାଇଥିଲେ । ଗୋଟିଏ ଦାର୍ଶନିକ ତତ୍ତ୍ୱରେ ମୋର ପୂର୍ଣ୍ଣ ବିଶ୍ୱାସ ଥିଲା ଏବଂ ଜୀବନଯାକ ଏହି ବିଶ୍ୱାସ ରହିଆସିଛି ଯେ ଯଦି ନିଷ୍ଠା ଓ ଆନ୍ତରିକତା ସହ ଯେଉଁ କଥା ଖୋଲାଖୋଲି ଭାବରେ ପ୍ରକାଶ କରିବ ସେଥିରେ ତୁମର ଶତ୍ରୁ ତୁମ ସହିତ ଏକମତ ନହେଲେ ମଧ୍ୟ ତୁମର ମତାମତ ପ୍ରତି ତା'ର ଯଥେଷ୍ଟ ସମ୍ମାନ ରହିବ ।

■■■

# ୧୪

## କଟକର ଦୁର୍ଗମ ଅଞ୍ଚଳରେ ବସତି ସ୍ଥାପନ

ମୁଁ ବିଲାତରୁ ଫେରିବା ପରଠାରୁ କଟକରେ ବହୁସ୍ଥାନ ବୁଲିଛି ଘର କରିବା ପାଇଁ ଖଣ୍ଡିଏ ଭଲ ଯାଗା ସନ୍ଧାନରେ । ଅନ୍ତତଃ ଏକ ଚତୁର୍ଥାଂଶ ଏକର ଜମିରେ ଘର କରିବା ମୋର ଇଚ୍ଛା । ଘର ଚାରିପାଖେ ବଗିଚା ଥିବ, ଫୁଲ ଫଳଗଛ ଘାସପଡ଼ିଆ ଯାହାକି ଘରର ସୌନ୍ଦର୍ଯ୍ୟକୁ ବହୁ ମାତ୍ରାରେ ବୃଦ୍ଧି କରୁଥିବ ଏବଂ ଗୋଟିଏ ରୁଚିକର ପରିବେଶ ସୃଷ୍ଟି କରିପାରୁଥିବ । ଏହାଠାରୁ କମ୍ ଯାଗା ଦେଖିଲେ ପସନ୍ଦ ହୁଏନାହିଁ । ଭଲ ଭଲ ଅଞ୍ଚଳରେ ୧୯୪୯-୧୯୫୦ବେଳକୁ ଯାଗା ଦାମ୍ କଟକୀ ଗୁଣ୍ଠ ପ୍ରାୟ ହଜାରେ ଟଙ୍କାଯାଏ ଥାଏ । ମୁଁ ଡକ୍ଟରେଟ୍ କରିଥିବା ଯୋଗୁ ମୋତେ ସେତେବେଳେ ଛଅଟା ଦରମା ବୃଦ୍ଧି ମିଳିଥିଲା । ସେହି ବାବଦରେ ପାଞ୍ଚହଜାର ଟଙ୍କାଯାଏ ବାକିଆ ମିଳିବାର ଥାଏ ।

ବର୍ତ୍ତମାନ ମୁଁ ଯେଉଁ ସାଆନ୍ତସାହିରେ ଘର କରିଛି, ସେ ଅଞ୍ଚଳଟି ଏତେ ଭୟଙ୍କର ଓ ଅଗମ୍ୟ ଥିଲା ଯେ ପ୍ରଥମେ ମୁଁ ଯେତେବେଳେ ୧୯୪୯ରେ ଏହି ଯାଗାଟି ଦେଖିଥିଲି ମୋର ସାହସ ହୋଇନଥିଲା ଏହାକୁ କିଣିବା ପାଇଁ । ବକ୍ସିବଜାରୀ ରାସ୍ତା ସେତେବେଳେ ଭୟଙ୍କର ନିର୍ଜନ ଥିଲା । ବକ୍ସିବଜାରୀ ପୋଲ ପାଖରେ ଗୋଟିଏ ଦେଶୀମଦ ଦୋକାନ ଥିଲା । ସେଠି ଦିନରାତି ତିନିପତିଆ ତାସ୍ ଖେଳାଳିମାନେ ବସିଥାନ୍ତି । ରାସ୍ତାରେ ଯାଉଥିବା ସରଳ ଲୋକଙ୍କୁ ସର୍ବସ୍ୱାନ୍ତ କରନ୍ତି । ସନ୍ଧ୍ୟା ପରେ ଏହି ରାସ୍ତାରେ ଲୋକ ଯିବାକୁ ଡରୁଥିଲେ । ଏହି ରାସ୍ତାର ପୂର୍ବ ଓ ପଶ୍ଚିମ ପଟେ ବହୁ ଜମି ପାଣି ଓ ଜଙ୍ଗଲ ଯୋଗୁ ଦୁର୍ଗମ ହୋଇରହିଥାଏ । ଏହା ଭିତରେ ମଣିଷ ଏକୁଟିଆ ଯିବାଆସିବା ମଧ୍ୟ କଷ୍ଟକର ଥିଲା । ଏପରି ଅବସ୍ଥାରେ ମୋତେ ଜଣେ ଜମି ଦଲାଲ ଏହି ଯାଗାରେ ପହଞ୍ଚାଇଥିଲେ । ସାଇକେଲକୁ ବକ୍ସିବଜାରୀ ରାସ୍ତାରେ ଜଣେ ଜଗିଲା । ତା'ପରେ ଆମେ କିଆବାଡ଼ ଭିତରେ ଗଳି ଗଳି ଏହି ଯାଗାରେ ଆସି ପହଞ୍ଚିଲୁ । ଭାଦ୍ରବ-ଆଶ୍ୱିନ ମାସ, ଚାରିଆଡ଼େ ପାଣି, ଜଙ୍ଗଲ । ବର୍ତ୍ତମାନର ସାଆନ୍ତସାହି ରାସ୍ତା ଗୋଟିଏ ବିଲ ହୁଡ଼ା ଥିଲା । ଏହି ହୁଡ଼ା ଦୁଇପାଖେ ବଡ଼ ବଡ଼ ନିମ, ଡିମ୍ବିରି, ଗିରିଙ୍ଗା ଗଛ । ତା କଡ଼େ କଡ଼େ କିଆବଣ । ସାପ ଅସଂଖ୍ୟ । ବିଶେଷତଃ ଚନ୍ଦ୍ରବୋଡ଼ା ସାପ । ଏହା କଟକର ଜାତୀୟ ସାପ କହିଲେ ଚଳେ । ପାଣି ଚପ

ଚପ ଜଙ୍ଗଲିଆ ଯାଗାରେ ଏମାନେ ରହନ୍ତି । ଏଠାରେ ସ୍ଥାନେ ସ୍ଥାନେ କଇଁଫୁଲ ଫୁଟିଥାଏ । ଗୋଟିଏ ଡିଆଁ ରାସ୍ତା ଦେଇ ଏଠାକୁ ଆସି ଚାରିଆଡ଼େ ଆଖି ବୁଲାଇ ଦେଖିଲା ପରେ ମୁଁ ଏକାବେଳକେ ଡରିଗଲି ।

ଅଧ୍ୟାପକମାନେ ଅବାସ୍ତବ, କଳ୍ପନାପ୍ରିୟ, ସରଳ ନିର୍ବୋଧ ବ୍ୟକ୍ତି ହିସାବରେ ଜନପ୍ରିୟ ଅପବାଦ ଥିଲା । ସେହି ଅନୁସାରେ ଆମମାନଙ୍କର ଆତ୍ମପ୍ରତ୍ୟୟ ଗଢ଼ି ଉଠିଥିଲା । ଆମେ ଅତି କଷ୍ଟରେ ମଧ୍ୟ ବାସ୍ତବ ପରିସ୍ଥିତିକୁ ଆୟତ୍ତ କରିପାରିବୁ, ଏ ପ୍ରକାର ଆତ୍ମପ୍ରତ୍ୟୟ ମୋର ମଧ୍ୟ ନଥିଲା । ତେଣୁ ଅତି ମାତ୍ରାରେ ଭୟ ପାଇ ଏ ଯାଗାଟିକୁ ଛାଡ଼ିଦେଲି । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପୁଅ ଶ୍ରୀ ଲୋକନାଥ ମିଶ୍ର ଏହି ଯାଗାଟିକୁ ୧୯୪୯ରେ କିଣିଥିଲେ । କିନ୍ତୁ ସେ ଏହାର କୌଣସି ଉନ୍ନତି କରିବାରେ ଅସମର୍ଥ ହେବାରୁ ୧୯୫୨ରେ ଏହାକୁ ବିକିଦେବାକୁ ଚାହିଁଲେ । ଜମି ଦଲାଲ୍ ପୁଣି ମୋ ପାଖକୁ ଆସିଲା । ଏସବୁ ଜମି କିଣିବା ପାଇଁ ଗ୍ରାହକ ବିଲକୁଲ୍ ନଥିଲେ । ମୁଁ ପୁଣି ଏଠାକୁ ଆସି ଗୋଟିଏ ଉଚ୍ଚ ଯାଗାରେ ଦୁଇ ଘଣ୍ଟାକାଳ ବସି ଭାବିଲି ଯେ ମୁଁ କାହିଁକି ଏହାକୁ ଆୟତ୍ତ କରିପାରିବି ନାହିଁ ? ଏହା କଟକର ଭୌଗୋଳିକ କେନ୍ଦ୍ରସ୍ଥାନ । ଏହିଠାରୁ କଟକ ସହରର ଦକ୍ଷିଣ ଉତ୍ତର ସୀମା ଯେତିକି ବାଟ, ପୂର୍ବ ପଶ୍ଚିମ ସୀମା ମଧ୍ୟ ସମାନ ବାଟ । ଏଠାରୁ ସବୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନର ଦୂରତା ବହୁତ କମ୍– ରେଭେନ୍ସା କଲେଜ, ମେଡିକାଲ୍ କଲେଜ, ରେଳଷ୍ଟେସନ, ବକ୍ସିବଜାର, ଚୌଧୁରୀବଜାର ଇତ୍ୟାଦି ସବୁ ସ୍ଥାନ ପାଖ । ଅଥଚ ଏହି ଅଞ୍ଚଳରେ ପ୍ରାୟ ପାଞ୍ଚଶହ ଯାଏଁ ଏକର ଜମି ଏପରି ଭାବରେ ଅଗମ୍ୟ ଓ ଜନଶୂନ୍ୟ ହୋଇ ପଡ଼ିରହିଛି । ମୁଁ ଯଦି ପାଠରେ ଭଲ କରିପାରିଲି, ଲଣ୍ଡନରେ ବହୁ କଷ୍ଟ ସ୍ୱୀକାର କରି ନୂତନ ବିଷୟରେ ଡକ୍ଟରେଟ ହାସଲ କରିପାରିଲି – ତାହାହେଲେ ଚାହିଁଲେ ବାସ୍ତବ କ୍ଷେତ୍ରରେ କାହିଁକି କୃତକାର୍ଯ୍ୟ ହୋଇ ନପାରିବି ? ଲୋକଙ୍କର ଉପରଠାଉରିଆ କଥା ଅନୁସାରେ କଣ ନିଜ ବ୍ୟକ୍ତିତ୍ୱର ରୂପରେଖ ଚାଲିଚଳଣି ପରିଚାଳିତ ହେବା ଦରକାର ? ମୁଁ ଚାହିଁଲେ ଏହାକୁ ନିଶ୍ଚୟ ଆୟତ୍ତ କରିପାରିବି ।

ଭାଇନାଙ୍କ ବ୍ୟତୀତ ଆଉ ସମସ୍ତେ ହସି ଉଡ଼ାଇଦେଲେ ଏ ଯାଗା କିଣିବା ପ୍ରସ୍ତାବ ଶୁଣି । ଦୁର୍ଭାଗ୍ୟକୁ ସେତିକିବେଳକୁ ସାଆନ୍ତସାହି ରାସ୍ତା ମୁଣ୍ଡରେ ବର୍ତ୍ତମାନ ଯେଉଁଠି ବୃନ୍ଦାବନ ସିନେମାର ଫାଟକ ହୋଇଛି, ସେଠାରେ ଗୋଟିଏ ଘନ ଜଙ୍ଗଲୀ ବୁଦା ଭିତରେ ଥିବା ନିମ ଗଛରେ ଗୋଟିଏ ଲୋକକୁ ମାରି କେହି ଟଙ୍ଗାଇ ଦେଇଥାଏ । ଏହା ପରେ ମଧ୍ୟ କଣ କୌଣସି ଭଦ୍ରଲୋକ ଏଠାରେ ଯାଗା କିଣିବା ଉଚିତ ? ଏହି କଥା ସମସ୍ତେ ସମସ୍ୱରରେ କହି ମୋତେ ନିରୁତ୍ସାହିତ କଲେ । କିନ୍ତୁ ମୁଁ କାହିଁକି ଦୃଢ଼ ସଙ୍କଳ୍ପ ନେଲି ଯେ ଏହି ଯାଗାକୁ ମୁଁ ନିଶ୍ଚୟ କିଣିବି, ଏହି ଦୁରନ୍ତ ପରିସ୍ଥିତିକୁ ଆୟତ୍ତ କରିବି ଏବଂ ମୋ ଇଚ୍ଛା ଅନୁସାରେ ଏହାକୁ ଏକ ସୁରମ୍ୟ ସ୍ଥାନରେ ପରିଣତ କରିବି ।

୧୯୫୨ ଜାନୁଆରୀ ପ୍ରଥମ ସପ୍ତାହରେ ଏହାକୁ ୧୧ ହଜାର ଟଙ୍କାରେ କିଣିଲି । ପାଖାପାଖି ଦୁଇ ଏକର ଜମି । ମୋର ଏ କଳ୍ପନାକୁ ବାସ୍ତବରେ ରୂପାନ୍ତରିତ କରିବା ପାଇଁ ଗୋଟିଏ ସପ୍ତବାର୍ଷିକ ଯୋଜନା କଲି । ପ୍ରତିବର୍ଷ ଜୀବନ ବୀମା ଓ ପ୍ରୋଭିଡେଣ୍ଟ ଫଣ୍ଡରେ ମୁଁ ପ୍ରାୟ ଦୁଇହଜାର ଟଙ୍କା ସଞ୍ଚୟ କରୁଥିଲି । ସେହି ଯାନୁୟାରୀ ମାସରେ ତାକୁ ବନ୍ଦ କରିଦେଲି । ପ୍ରଥମ ବର୍ଷ ଦୁଇ ହଜାର ଟଂକା ଖର୍ଚ୍ଚ କରି ଗୋଟିଏ ପୋଖରୀ ଖୋଳିଲି ।

ସେହି ମାଟିରେ ଯାଗାର କେତେକାଂଶ ସାତଫୁଟ ଉଚ୍ଚରେ ପୋତାଇଲି । ସେହିବର୍ଷ ଜୁଲାଇରେ ଏଠାରେ ୩୦ଟି ନଡ଼ିଆ ଗଛ ୧୬ଟି ବିଭିନ୍ନ ପ୍ରକାରର ଆମ୍ବ, ଲିଚୁ, ସପେଟା, ପିଜୁଳି ପ୍ରଭୃତି ସ୍ଥାୟୀ ଗଛସବୁ ଲଗାଇଲି । ସାତବର୍ଷ ପରେ ଘର କରି ଆସିଲା ବେଳକୁ ଯେପରି ସବୁ ଗଛ ଫଳୁଥିବ ।

ସେତେବେଳକୁ ରେଭେନ୍ସା କଲେଜରେ ମୁଁ କାମ କରୁଥିଲି । ପ୍ରତିଦିନ ସାଢ଼େ ଚାରିଟାବେଳେ ମୁଁ ଏଠାକୁ ଆସେ ଏବଂ ସଂଧ୍ୟା ସାତଟାଯାଏ ରହେ । ଏଠାରେ ଗୋଟିଏ ମାଳୀ ରଖିଲି । ମୁଁ ଏଠାକୁ ଆସି ହାଫ୍ ପ୍ୟାଣ୍ଟ ପିନ୍ଧି, ରବର ବୁଟ୍ ମାଡ଼ି ଗୋଟିଏ ବଡ଼ ଠେଙ୍ଗା ଧରି ବଗିଚାରେ କାମ କରେ । ସାଲୁ ସାଲୁ କଙ୍କଡ଼ା ବିଛା, ଚନ୍ଦ୍ର ବୋଡ଼ା, ଡାମଣା ସାପ ଏପାଖ ସେପାଖ ହେଉଥାନ୍ତି । ମୁଁ ମନେ କରୁଥିଲି, ମୁଁ ଯେପରି ସେମାନଙ୍କ ଭିତରେ ଅପରିଚିତ ଅନଧିକାରୀ ଆଗନ୍ତୁକ ଏବଂ ସେମାନେ ହେଉଛନ୍ତି ଏଠାକାର ଶତାବ୍ଦୀବ୍ୟାପୀ ସ୍ଥାୟୀ ବାସିନ୍ଦା । ଏଠାରେ ବୁଲିଲାବେଳେ ଆଫ୍ରିକା ଦେଶ କଙ୍ଗୋର ନିଘଞ୍ଚ ଘନଜଙ୍ଗଲ ଭିତରେ ପ୍ରଥମ କରି ବସତି ସ୍ଥାପନ କରିବାକୁ ଯାଉଛି ବୋଲି ମୋର ମନେ ହେଉଥିଲା ।

ମାଳୀ ମାଟି ହାଣେ ମୁଁ ଗଛ ଲଗାଏ । ସେ ପାଣି ତେଣ୍ଟେ ମୁଁ ପାଣି ମଡ଼ାଏ । ପ୍ରତ୍ୟେକ ସ୍ଥାୟୀ ଗଛ ମୁଁ ନିଜେ ଲଗାଇଛି କାରଣ ନିଜେ ଲଗାଇବାରେ ଗଛ ସହିତ ଯେପରି ଗୋଟିଏ ସ୍ଥାୟୀ ସ୍ନେହ ମମତାର ଜୀବନ୍ତ ବନ୍ଧନ ସୃଷ୍ଟି ହୁଏ । ସେମାନେ ମୋ ଦ୍ୱାରା ସୃଷ୍ଟି ବୋଲି ମନରେ ଆନନ୍ଦ ଆସେ । ଆମ ଭିତରେ ପ୍ରତ୍ୟକ୍ଷୀଭୂତ ଆକର୍ଷଣ ରହେ । ଏମାନଙ୍କର ଭବିଷ୍ୟତ ବିଷୟରେ ବହୁ କଳ୍ପନା ଜଳ୍ପନା କରେ । ଭବିଷ୍ୟତର ସଂପୂର୍ଣ୍ଣ ରୂପେ ବୃଦ୍ଧିପ୍ରାପ୍ତ ବୃକ୍ଷରାଜିର ସବୁଜିମା ଓ ଫଳ ଫୁଲର ମାଧୁରୀ ମୋ ଆଖି ଆଗରେ ଭାସି ଯାଉଥାଏ । କଟକ ସହରର ଗଳିକନ୍ଦିରେ ସାଇକେଲ୍ ଧରି ବୁଲିବା, ସିନେମା ଘରେ ଅବାସ୍ତବ ଚିତ୍ର ଦେଖିବା ମୋର ସହକର୍ମୀ ଅଧ୍ୟାପକଙ୍କ ବୈଠକଖାନାରେ ବସି ସମସ୍ତଙ୍କ ବିଷୟରେ ବଦନାମ୍ କରିବା କିମ୍ବା କଲେଜ ପଡ଼ିଆରେ ବୁଲି ବୁଲି ଶାସକବର୍ଗଙ୍କର ସପ୍ତପୁରୁଷ ଉଦ୍ଧାର କରିବା ଅପେକ୍ଷା ସାପବିଛା ପରିବେଷ୍ଟିତ ଏହି ଦୁର୍ଗମ ଅଞ୍ଚଳରେ ଭବିଷ୍ୟତର ସବୁଜ ସ୍ୱପ୍ନ ଦେଖିବାରେ ମୋତେ ଆଧ୍ୟାତ୍ମିକ ଆନନ୍ଦ ମିଳୁଥିଲା ।

ବହୁବର୍ଷ ଧରି ମୁଁ ଏ ଯାଗାରେ ଆଳୁ, କୋବି, କଦଳୀ ଓ ଅନ୍ୟାନ୍ୟ ପରିବା ଲଗାଉଥିଲି । ଏଥିରୁ ଯାହା ଆଦାୟ ହୁଏ ଆମ ଘର ଖରଚ ହୋଇ ଅନ୍ୟମାନଙ୍କୁ ଯଥେଷ୍ଟ ପରିମାଣରେ ବାଣ୍ଟି ସାରିଲାପରେ ମଧ୍ୟ ଯାହା ବିକ୍ରୀ ହୁଏ, ସେଥିରୁ ମାଳୀ ଦରମା ଉଠିଯାଏ । ୧୯୫୨ ଜାନୁଆରୀଠାରୁ ୧୯୫୮ ନଭେମ୍ବର ପର୍ଯ୍ୟନ୍ତ (ଯେତେବେଳେ ମୁଁ ଏଠାରେ ଗୃହପ୍ରବେଶ କଲି) ମୁଁ ପ୍ରତିଦିନ ସାଢ଼େ ଚାରିଟାଠାରୁ ସାତଟାଯାଏ ଏହି ବଗିଚାରେ ରହେ । ଏହି ସାତବର୍ଷ ଭିତରେ ବୋଧହୁଏ ମୁଁ ଥରେ ବି ସନ୍ଧ୍ୟାବେଳେ ସିନେମା ଯାଇନାହିଁ । ବନ୍ଧୁବାନ୍ଧବଙ୍କ ଘରକୁ ଏହି ସମୟରେ କ୍ୱଚିତ୍ ଯାଏ । କୌଣସି ଦିନ ବଗିଚାକୁ ନ ଆସିଲେ ମୋ ମନ ଶାନ୍ତ ହୁଏ ନାହିଁ ।

ଓଡ଼ିଶାର ଅନେକ ଲୋକ ଅପରାହ୍ଣ ଚାରିଟାଠାରୁ ସାତଟା ପର୍ଯ୍ୟନ୍ତ କେବଳ ପରନିନ୍ଦା, ପରଚର୍ଚ୍ଚା ପ୍ରଭୃତି ଫାଲ୍‌ତୁ ଗପସପରେ କଟାଇ ଦେଉଥିଲାବେଳେ ମୁଁ ଏଠାକୁ ଆସି କାୟିକ ପରିଶ୍ରମ କରୁଥିଲି । ପ୍ରତିଦିନ ଦୁଇ ତିନିଘଣ୍ଟା କାମ କରି ସାତବର୍ଷ ଭିତରେ ମୁଁ ଏହାକୁ

ଯେପରି ଭାବରେ ଆୟତ୍ତ କଲି ଏବଂ ଏହାର ରୂପ ସଂପୂର୍ଣ୍ଣ ବଦଳାଇ ଦେଇପାରିଲି ତାହା ମୋ ଜୀବନରେ ଚରମ ସାର୍ଥକତା ଆଣି ଦେଇଥିଲା । ମୋର ଆତ୍ମବିଶ୍ୱାସ ବହୁତ ବଢ଼ିଗଲା । ସାତବର୍ଷ ପୂରିବାକୁ ମାସେ ବାକିଥିଲା, ମୁଁ ୧୯୫୮ ନଭେମ୍ବର ମାସ ୨୮ ତାରିଖ, କାର୍ତ୍ତିକ ପୂର୍ଣ୍ଣିମା ଦିନ ଏ ଘରକୁ ଆସିଲି । ସେଦିନ ଏଠାରେ ଜହ୍ନ କିରଣରେ ବସି ଆମେମାନେ ଗୋଟିଏ ଭୋଜି କଲୁ । ସେତେବେଳକୁ ସବୁ ଗଛରେ ଫଳଫୁଲ ଧରି ଆସିଲାଣି । ମୋର ବନ୍ଧୁମାନେ ଆଶ୍ଚର୍ଯ୍ୟ ହୋଇ ପଚାରନ୍ତି-

"ଏତେକଥା ତମେ କେବେ କଲ ?" ମୁଁ ଖାଲି କହେ-

"ତୁମେମାନେ ବୃଥା ଗପସପରେ ମଜ୍ଜି ଥିଲାବେଳେ ମୁଁ ଏଠାରେ ଆସି ହାଡ଼ଭଙ୍ଗା ପରିଶ୍ରମ କରୁଥିଲି ।"

ଏ ଅଞ୍ଚଳକୁ ସଜାଡ଼ିବାରେ ବହୁ କଷ୍ଟ ସହ୍ୟ କରିବାକୁ ପଡ଼ିଥିଲା । ବହୁ କର୍ତ୍ତୃପକ୍ଷଙ୍କ ସହିତ ଝଗଡ଼ା କରିବାକୁ ପଡ଼ିଥିଲା । ମ୍ୟୁନିସିପାଲିଟି ଅଫିସକୁ ପ୍ରତି ଶନିବାର ଦିନ ମୁଁ ଚାରିଟାବେଳେ ଯାଏ । ମି. କପୁର ବୋଲି ଜଣେ ଭଦ୍ରଲୋକ ମ୍ୟୁନସିପାଲିଟିର ପ୍ରଶାସକ ଅଫିସର ଥିଲେ । ବହୁତ ଭଦ୍ର ଓ ଅମାୟିକ ଲୋକ ସେ ଥିଲେ । ତାଙ୍କ ସହିତ ଲଗାଇ ଲଗାଇ ସାଆନ୍ତ ସାହି ରାସ୍ତାରେ ଥିବା ବହୁ ନିମ୍ବ, ଗିରିଙ୍ଗା ଗଛକୁ କଟାଇଲି । ବକ୍ସିବଜାଟି ରାସ୍ତା କଡ଼ରେ ପୋଲ ନଥାଏ । ବର୍ଷାଦିନେ ପଟା ପକାଇ ଆସିବାକୁ ହେଉଥିଲା । ତା' ଉପରେ ପୋଲ ପାଇଁ ଟଙ୍କା ମଞ୍ଜୁର କରାଇଲି, କିନ୍ତୁ ତା ପରେ ପରେ କପୁର ମହାଶୟ ବଦଳି ହୋଇଗଲେ । ପୋଲ ଅଧା ହୋଇ ଭୁଶୁଡ଼ିଗଲା । କାରଣ କାନ୍ଥ ତିଆରିରେ କମ୍ ସିମେଣ୍ଟ ଓ ବେଶୀ ବାଲି ଭାଗ ଥିଲା । ଏପରି ଭଗ୍ନ ଅବସ୍ଥାରେ ଦୁଇବର୍ଷ କଟିଗଲା । ତାପରେ କଲେକ୍ଟରଙ୍କ ପାଖରେ ମ୍ୟୁନ୍‌ସିପାଲିଟି ବିରୁଦ୍ଧରେ ଅର୍ଥ ତୋଷରପାତ ହୋଇଛି ବୋଲି ଅଭିଯୋଗ କରି ଦରଖାସ୍ତ କଲି । ଶ୍ରୀଯୁକ୍ତ ଅମର ସିଂହ କଲେକ୍ଟର ଥିଲେ । ଏ.ଡି.ଏମ୍. ଶ୍ରୀଯୁକ୍ତ ରାମଚନ୍ଦ୍ର ପାତ୍ରଙ୍କ ଜରିଆରେ ସେ ଅନୁସନ୍ଧାନ କରାଇଲେ ଏବଂ ୩୦ଦିନ ଭିତରେ ପୋଲ ଶେଷ କରିବାକୁ ଆଦେଶ ଦେଲେ । ଏହି କାରଣରୁ ହିଁ ତତ୍କାଳୀନ ମ୍ୟୁନ୍‌ସିପାଲିଟି ପ୍ରଶାସକଙ୍କୁ ସେ ବଦଳି କରାଇଲେ ।

୩୦ଦିନ ଭିତରେ ପୋଲକାମ ଶେଷ ହେଲା । କିନ୍ତୁ ପୋଲର ଦୁଇ ପାଖରେ ୮/୧୦ଫୁଟ ଗହୀର ଖାତ । ପୁଣି ଦୌଡ଼ାଦୌଡ଼ି କରି ରାସ୍ତା କରାଇଲି । ବିଦ୍ୟୁତ୍ ଲାଇନ୍, ପାଣି ପାଇପ୍ ଆଣିବା ପାଇଁ ବହୁ ଆବେଦନ ନିବେଦନ କରି ବ୍ୟର୍ଥ ହେଲା ପରେ ଜୋର ଜବରଦସ୍ତ କରି କାମ କରାଇଥିଲି । ୧୯୫୮ ମସିହା ନଭେମ୍ବର ମାସରେ ଗୃହ ପ୍ରବେଶ କଲି । ସାତବର୍ଷ ପୂରିବାକୁ ଆଉ ଦୁଇମାସ ବାକି ଥିଲା । ସେତେବେଳକୁ କଟକ ଜେଲର ସ୍ୱର୍ଗୀୟ ବିଭୂତିଭୂଷଣ ଦାସ ଏବଂ ସରକାରଙ୍କର ଲୋକସମ୍ପର୍କ ବିଭାଗର ସ୍ୱର୍ଗୀୟ ପରମାନନ୍ଦ ମହାନ୍ତି ଏହି ଅଞ୍ଚଳରେ ଘର କରିବାକୁ ଉଦ୍ୟମ କରୁଥିଲେ । ପ୍ରଥମେ ମୁଁ ଗୋଟିଏ ଆଲ୍‌ସିସିଆନ କୁକୁର ଧରି ଏହି ନିର୍ଜନ ଅଞ୍ଚଳରେ ଏକୁଟିଆ ରହିଥିଲି । ସେତେବେଳ ପର୍ଯ୍ୟନ୍ତ ଯେତେ ଲୋକଙ୍କୁ ମୁଁ ଯାଗା କିଣିବା ପାଇଁ ପ୍ରବର୍ତ୍ତାଇଛି, କେହି ସାହସ କରି ଯାଗା କିଣି ନାହାନ୍ତି । ମୋ ଯାଗାକୁ ଲାଗି ଅଧ ଏକର ଜମି ତିନିହଜାର ଟଙ୍କାରେ ଦେବା ପାଇଁ ମୋ ସାଙ୍ଗରେ ଗୋଟିଏ ଲୋକ ଲାଗିଥାଏ । ମୋର ତ ସବୁ ଟଙ୍କା ଏହି ଜମିର ଉନ୍ନତି, ବଗିଚା, ଘର ତିଆରିରେ ଖର୍ଚ୍ଚ ହେଉଥାଏ । ତେଣୁ

ମୁଁ ଆଉ ଅଧିକ ଜମି କିଣି ଭବିଷ୍ୟତରେ ବିକ୍ରୀ କରି ଲାଭବାନ ହେବା ଲାଗି ମୋର କୌଣସି ପ୍ରଲୋଭନ ନଥିଲା । ମୁଁ କିପରି ଗୋଟିଏ ରୁଚିକର ସୁନ୍ଦର ପରିବେଶ ସୃଷ୍ଟି କରି ସେଠାରେ ରହିବି —ତାହାହିଁ ଥିଲା ମୋର ଏକମାତ୍ର ଲକ୍ଷ୍ୟ । ତେଣୁ ମୋର ବହୁତ ବନ୍ଧୁଙ୍କୁ ଡାକିଆଣି ସେ ଜମିଟିକୁ ଦେଖାଏ ଏବଂ ପ୍ରତିଶ୍ରୁତି ଦିଏ ଯେ ତାର ଉନ୍ନତି ପାଇଁ ମୁଁ ତାଙ୍କୁ ପୂରା ସାହାଯ୍ୟ କରିବି । ତଥାପି ମୋର ଅଧ୍ୟାପକ ବନ୍ଧୁମାନେ ଆସି ଦେଖିଯାଆନ୍ତି, କିନ୍ତୁ କିଣିବା ପାଇଁ ଆଗେଇ ଆସନ୍ତି ନାହିଁ ।

ମୁଁ ଏଠାରେ ରହିବା ପରେ ଜଣେ କିରାଣୀ ଭଦ୍ରଲୋକଙ୍କୁ ଡାକି ତାଙ୍କୁ ବୁଝାଇଲି ଯେ ସେ ଲୋକ ବନ୍ଦୋବସ୍ତ କରି ଏସବୁ ଜମି ବିକ୍ରି କରାଇ ପାରିଲେ ସେଥିରୁ ନିଜେ କିପରି ବହୁତ ଲାଭବାନ ହୋଇପାରିବେ । ସେ ଭଦ୍ରଲୋକ ମୋ କଥାରେ ଉତ୍ସାହିତ ହୋଇ କାର୍ଯ୍ୟ ଆରମ୍ଭ କଲେ ଏବଂ ବହୁ ଜମି ବିକ୍ରି କରାଇଦେଇ ନିଜ ପାଇଁ ପ୍ରାୟ ୧୦ ଗୁଣ୍ଠ ଜମି ବହୁତ ଅଳ୍ପ ଖର୍ଚ୍ଚରେ ଯୋଗାଡ଼ କରି ପାରିଥିଲେ । କ୍ରମେ ଏ ଅଞ୍ଚଳରେ ସବୁ ପ୍ରକାରର ଲୋକ ଆସି ଘର କଲେ । ଅଧ୍ୟାପକ, ଡାକ୍ତର, ବ୍ୟବସାୟୀ, ସରକାରୀ କର୍ମଚାରୀ, କଣ୍ଟ୍ରାକ୍ଟର ପ୍ରଭୃତି ବିଭିନ୍ନ ଲୋକଙ୍କର ଗୋଟିଏ ସୁନ୍ଦର ବସତି ଏ ଅଞ୍ଚଳରେ ପ୍ରତିଷ୍ଠିତ ହୋଇଗଲା । ବର୍ତ୍ତମାନ ଏଠାକାର ଜମି ମୂଲ୍ୟ କଟକରେ ସବୁଠାରୁ ବେଶି ।

ବହୁବର୍ଷ ପରେ ୧୯୭୭-୭୮ ମସିହାରେ କଟକ ଉନ୍ନୟନ ସଂସ୍ଥାରେ ସଭ୍ୟ ଥିଲାବେଳେ ମୁଁ ସାଆନ୍ତସାହି ମୁଣ୍ଡ ବକ୍ସିବଜାର ରାସ୍ତା ପଶ୍ଚିମ ପାର୍ଶ୍ୱରେ ଥିବା ଗୋଟିଏ ପରିତ୍ୟକ୍ତ ଅସୁନ୍ଦର ସ୍ଥାନରେ ଗୋଟିଏ ଆଧୁନିକ ଧରଣର ମାର୍କେଟ କରାଇଥିଲି । ଏହି ମାର୍କେଟଟି ତିନି ମହଲା ହେବାର ଯୋଜନା ଥିଲା । ଦ୍ୱିତୀୟ ମହଲାରେ ଗୋଟିଏ ବଡ଼ ଘରେ ଗୋଟିଏ ଭଲ ରେଷ୍ଟୁରାଣ୍ଟ ହୋଇଥାନ୍ତା, ତା ସାମନାରେ ଥିବା ଖୋଲା ଛାତରେ ଚୌକି ଟେବୁଲ ପକାଇ ଲୋକେ ଚା' ଜଳଖିଆ ଉପଭୋଗ କରିଥାନ୍ତେ । ପଛପଟେ ଦୋକାନ ଘର, ରେଷ୍ଟୁରାଣ୍ଟର ଉପର ଘରେ ତୃତୀୟ ମହଲାରେ ଗୋଟିଏ ପୁସ୍ତକାଳୟ ଏବଂ ପାଠାଗାର ହେବାର ଯୋଜନା ଥିଲା । କିନ୍ତୁ ଦୋତାଲା କାମ ସରୁ ନ ସରୁଣୁ ୧୯୮୦ରେ ନୂଆ କଂଗ୍ରେସ ସରକାର ଗଢ଼ାଗଲା ଏବଂ ଆମେମାନେ ଯେହେତୁ ଜନତା ସରକାର ଅମଳରେ କଟକ ଉନ୍ନୟନ ସଂସ୍ଥାର ସଭ୍ୟ ମନୋନୀତ ହୋଇଥିଲୁ ସେଥିପାଇଁ ପ୍ରଥମେ ଆମମାନଙ୍କୁ ଆମର ତିନିବର୍ଷ ମିଆଦ ନ ପୂରୁଣୁ ସ୍ୱତନ୍ତ୍ର ନୋଟିସ୍ ଦେଇ ବାହାର କରି ଦିଆଗଲା । ତା'ପରେ ଏହି ମାର୍କେଟଟି ଦୁଇ ମହଲାରେ ରହିଗଲା ଏବଂ ବକ୍ସିବଜାର ମାର୍କେଟ ଚାରିମହଲା ବଦଳରେ ଆଜି ପର୍ଯ୍ୟନ୍ତ ଦୁଇମହଲାରେ ରହିଗଲା । ଯଦିଚ ବହୁ ଖର୍ଚ୍ଚ କରି ଚାରିମହଲା ପାଇଁ ଏହାର ପାଇପ୍ ମୂଳଭିତ୍ତି ଦିଆଯାଇଲା । ବକ୍ସିବଜାର ମାର୍କେଟ ପାଇଁ ମଧ୍ୟ ତିନିମହଲାର ମୂଳଦୁଆ ରହିଛି ।

ମୋର ଏହି ଅନୁଭୂତିରୁ ଓଡ଼ିଆମାନଙ୍କର ଭବିଷ୍ୟତ ପ୍ରତି ନଜର ରଖି ସାହସିକ ପଦକ୍ଷେପ ନେବା ପ୍ରବୃତ୍ତି ଖୁବ୍ କମ୍ ବୋଲି ମନେହେଲା । ଏହି ପରିପ୍ରେକ୍ଷୀରେ ଗୋଟିଏ କୌତୂହଳପୂର୍ଣ୍ଣ ଘଟଣା ମନେ ପଡ଼ୁଛି । ମୁଁ ବକ୍ସିବଜାର ରାସ୍ତାରେ ସାଇକେଲ୍‌ରେ ଯାଉଥାଏ । ମୋ ଆଗରେ ଦୁଇଜଣ ଲୋକ ରିକ୍ସାରେ ବସି ଯାଉଥାନ୍ତି । ସେମାନେ ସାଆନ୍ତସାହି ରାସ୍ତାର ପ୍ରତ୍ୟେକ ଖୁଣ୍ଟିରେ ବିଜୁଳି ଆଲୁଅ ଦେଖି ଜଣେ ଅନ୍ୟ ଜଣକୁ କହିଲେ—

''ଦେଖ କେଉଁ ଶଳାଟିଏ ବିଲ ଭିତରେ ବିଜୁଳି ଆଲୁଅ ଧାଡ଼ି ଧାଡ଼ି କରି ଲଗାଇ ଦେଲାଣି ।''

ମୁଁ ସାଇକେଲ୍‌ରେ ଆଉଟିକେ ଆଗକୁ ଯାଇ ସେ ରିକ୍ସାକୁ ଅଟକାଇଲି ଏବଂ କହିଲି–

''ଆଜ୍ଞା ସେ ଶଳାଟି ହେଉଛି ମୁଁ । ଆପଣ ତ ନିଜେ କିଛି ଉଦ୍ୟମ କରିବେ ନାହିଁ । କେହି କଲେ ଆପଣ ତାକୁ ଏପରି ଗାଳି ଦେଉଛନ୍ତି କାହିଁକି ? ପରନିନ୍ଦୁକ ଓଡ଼ିଆ ଜାତିର ଆପଣ ହେଉଛନ୍ତି ଜ୍ୱଳନ୍ତ ପ୍ରତୀକ ।''

ସେମାନେ ବଡ଼ ଅପ୍ରସ୍ତୁତ ହୋଇ କହିଥିଲେ ଯେ, ବହୁ ଚେଷ୍ଟା କରି ମଧ୍ୟ ସେମାନେ ତାଙ୍କ ସାହିକୁ ଆଲୁଅ ଆଣିପାରି ନାହାନ୍ତି, କିନ୍ତୁ ବିଲ ଭିତରେ ଏତେ ଆଲୁଅ ଦେଖି ମନ ଦୁଃଖରେ ଏପରି କହି ପକାଇଲେ । କ୍ଷମା କରିବେ ।

ଏହି ଘର ତିଆରି କରିବାରେ ମୋତେ ବହୁ ପ୍ରକାରର ପରିଶ୍ରମ କରିବାକୁ ପଡ଼ିଥିଲା । ମୁଁ ନିଜେ କଣ୍ଟ୍ରାକ୍ଟରଙ୍କ ପାଖକୁ ଯାଇ ଘର ତିଆରି ବିଷୟରେ ଜ୍ଞାନ ଆହରଣ କରିଥିଲି । ତା'ପରେ ଜଣେ ଇଞ୍ଜିନିୟରଙ୍କ ସହିତ ଏହି ଖବର ସବୁ ଯାଞ୍ଚ କରାଇଥିଲି । ମୁଁ ମୋ ଘରର ଯାବତୀୟ ତିଆରି ଖର୍ଚ୍ଚ ନିଜେ ହିସାବ କରି କାମ ଆରମ୍ଭ କରିଥିଲି । ଘରର ନକ୍‌ସା ମଧ୍ୟ ଡିଜାଇନ୍ ବହି ଦେଖି ନିଜେ ପ୍ରସ୍ତୁତ କରିଥିଲି । ଏହି ସ୍ଥାନରେ ଅଢ଼େଇ ଲକ୍ଷ ଇଟା ତିଆରି କରାଇଥିଲି । ସେତେବେଳେ ବାହାରେ ହଜାରେ ଇଟାର ଦାମ୍ ଷାଠିଏ ସତୁରି ଟଙ୍କା ଥିବାବେଳେ ମୋ ବଗିଚାରେ ତିଆରି ଇଟା ହଜାରକୁ ପ୍ରାୟ ପନ୍ଦର ଟଙ୍କା ପଡ଼ିଥିଲା । ତା'ଛଡ଼ା ବୋହିବା ଟ୍ରକ୍ ଭଡ଼ା ମଧ୍ୟ ପଡ଼ିଲାନାହିଁ । ତେଣୁ ଏତେବଡ଼ ଘରଟିର ତଳ ମହଲା ତିଆରି କରିବା ପାଇଁ ମୋତେ ବଜାର ଦରଠାରୁ ବହୁତ କମ୍ ପଡ଼ିଥିଲା ।

ତଥାପି ଏହି ଘର ପାଇଁ ବହୁତ ଧାର ଉଧାର ହୋଇଗଲା । ତେଣୁ ୧୯୬୨ରେ ମୋ ଜମିରୁ ପ୍ରାୟ ସାତଗୁଣ୍ଠ ଜମି ବିକ୍ରି କରି ସେହି ଟଙ୍କାରେ ଦୁଇମହଲା କୋଠା କଲି । ତଳମହଲା ଭଡ଼ା ଦେଇ ଧାରଉଧାର ଶୁଝିଲି । ଏହି ଘର ଭଡ଼ାରୁ ଯେତେ ଟଙ୍କା ମୋର ଖର୍ଚ୍ଚ ହୋଇଥିଲା ତା'ଠାରୁ ଅନେକ ବେଶି ମୁଁ ପାଇସାରିଛି ଏବଂ ମୋର ଚଳଣି ଏହି ଘରଭଡ଼ା ଯୋଗୁ ସୁଖକର ହୋଇପାରିଛି । ଗୋଟିଏ ମୁଣିରେ ସବୁ ଅଣ୍ଡା ରଖିବା ବାଞ୍ଛନୀୟ ନୁହେଁ ବୋଲି ଅର୍ଥନୈତିକ ତଥ୍ୟ ଥିଲେ ସୁଦ୍ଧା ମୋ ପକ୍ଷରେ ଏହା ବହୁତ ଶୁଭଙ୍କର ହୋଇପାରିଥିଲା ।

ମୁଁ ଚାହିଁଥିଲି ପିଲାଦିନରୁ ଯେ, ମୋର ବଡ଼ ବଗିଚା ଥିବ, ସେ ଭିତରେ ଥିବ ପୋଖରୀ, ଚାରିଆଡ଼େ ଫୁଲ ଫଳ ଗଛ ଥାଇ ରହିବା ଘର । ରୁଚିକର ପ୍ରାକୃତିକ ପରିବେଶ ଭିତରେ ରହିଲେ ଦୈହିକ ଓ ମାନସିକ ଅବସ୍ଥାର ପ୍ରଭୂତ ଉପକାର ହୁଏ । ସ୍ୱାସ୍ଥ୍ୟ ତ ଭଲ ହେବା କଥା– କିନ୍ତୁ ଫଳ ଫୁଲ, ଗଛଲତା, ପାଣି ପବନର ଅପୂର୍ବ ସମାରୋହ ହେଲେ ମନ ପ୍ରଫୁଲ୍ଲିତ ହୁଏ, ପ୍ରାଣ ଉଲ୍ଲସିତ ହୁଏ । ତା'ଛଡ଼ା ଏପ୍ରକାର ରୁଚିକର ପରିବେଶକୁ ତୁମେ ନିଜେ ସୃଷ୍ଟି କରିପାରିଲେ ତୁମ ସ୍ୱପ୍ନର ଅସ୍ପଷ୍ଟ ଚିତ୍ର କ୍ରମେ ବାସ୍ତବରେ ପରିଣତ ହୁଏ । ନିଜ ଇଚ୍ଛା ଅନୁସାରେ ପରିବେଶକୁ ତିଆରି କରିବା ଭିତରେ ସୃଷ୍ଟି କରିବାର ତୃପ୍ତି ଲାଭ ହୁଏ । ତୁମର ସୃଷ୍ଟି ଭିତରେ ତୁମେ ବିଚରଣ କରିପାରିଲେ ମନରେ ସାର୍ଥକତା ଭରିଉଠେ ।

ବର୍ତ୍ତମାନ ମୋ ବଗିଚା, ପୋଖରୀ ଓ ଘର କଟକ ସହର ଭିତରେ ଗୋଟିଏ ବିଶିଷ୍ଟ ଦର୍ଶନୀୟ ସ୍ଥାନ । କଟକ ପରି ସଂକୀର୍ଣ୍ଣ ସହରରେ ଏତେବଡ଼ ଯାଗା, ଫୁଲ-ଫଳ ଗଛଭରା ବଗିଚା ଓ ହ୍ରଦ ପରି ବିରାଟ ପୋଖରୀ ଏହାର ସୌନ୍ଦର୍ଯ୍ୟକୁ ବୃଦ୍ଧି କରୁଛି । ବଡ଼ ଗଛସବୁ ମୁଁ ନିଜେ ହାତରେ ଲଗାଇଥିବା ଯୋଗୁ ସେମାନଙ୍କ ସହିତ ମୋର ଆନ୍ତରିକ ସମ୍ପର୍କ ଯେପରି ସ୍ଥାପିତ ହୋଇପାରିଛି । ଚାରିଆଡ଼େ ଲମ୍ବା ଲମ୍ବା ନଡ଼ିଆ ଓ ପାମ୍ ଗଛର ପତ୍ରସବୁ ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟା ସମୟର ସୂର୍ଯ୍ୟ କିରଣରେ ଭିନ୍ନ ଭିନ୍ନ ରଙ୍ଗରେ ଚକ୍ ଚକ୍ କରେ । ଜହ୍ନ ଆଲୁଅରେ ଏହା ରହସ୍ୟାବୃତ ଦେଖାଯାଏ । ମୁଁ ପ୍ରଥମେ ନଡ଼ିଆଗଛ ଏ ଅଞ୍ଚଳରେ ଲଗାଇଥିଲି । ବର୍ତ୍ତମାନ ମୋ ବାରଣ୍ଡାରେ ବସି ଯେଉଁ ଦିଗ୍‌ମଣ୍ଡଳକୁ ଚାହେଁ ନଡ଼ିଆଗଛର ବାହୁଙ୍ଗା ଦୂର ଦିଗ୍‌ବଳୟରେ ଦୋହଲୁଥାଏ । ଏହା ମୋର ମାନସିକ ରାଜ୍ୟରୁ ଉଦ୍‌ଭୂତ ହୋଇ ଚତୁର୍ଦ୍ଦିଗ ବଡ଼ ବଡ଼ ଗଛରେ ଯେପରି ପରିଣତ ହୋଇଯାଇଛି ! ପୋଖରୀ କୂଳରେ ଲମ୍ବା ଲମ୍ବା ପାମ୍ ଗଛ ଲଗାଇଛି । ଜହ୍ନ ରାତିରେ ଏହା ଦୂରତ୍ୱର ପ୍ରତ୍ୟୟ ସୃଷ୍ଟି କରେ ଏବଂ ଅଦ୍ଭୁତ ଭାବରେ ରହସ୍ୟମୟ ଦେଖାଯାଏ । ଦିନ ଓ ରାତ୍ରିର ବିଭିନ୍ନ ସମୟରେ ଏବଂ ବିଭିନ୍ନ ଋତୁରେ ଏହି ପ୍ରାକୃତିକ ଜଗତର ଅପୂର୍ବ ପରିବର୍ତ୍ତନ ମନପ୍ରାଣକୁ ରସମୟ କରିପାରୁଛି । ଅଗଣିତ ପକ୍ଷୀ ବିଚିତ୍ର ରଙ୍ଗର ପକ୍ଷ ମେଲାଇ ଗଛରୁ ଗଛ ଉଡ଼ି ବୁଲନ୍ତି । ବିଭିନ୍ନ ମନୋମୁଗ୍ଧକର କାକଳିରେ ବଗିଚା ପ୍ରତିଧ୍ୱନିତ ହୁଏ । ଯେତେ ପ୍ରକାରର ପକ୍ଷୀ ଭିନ୍ନ ଭିନ୍ନ ଋତୁରେ ଖେଳାବୁଲା କରନ୍ତି ସେମାନଙ୍କର ନାମ ଜାଣିବା ମୋ ପକ୍ଷରେ ସମ୍ଭବ ନୁହେଁ । ନାମ ଜାଣିବା କ'ଣ ବା ଦରକାର । ସେମାନଙ୍କର ରଙ୍ଗ ଅନୁସାରେ ବା ଶବ୍ଦ ଅନୁସାରେ ମୁଁ ସେମାନଙ୍କର ନାମକରଣ କରିଥାଏ... ନିରିମାଖୀ, ଗୋଲାପିନୀ, ହରିତ୍‌ପକ୍ଷୀ, କାକଳିକା, ଫୋନ୍ ପରି ଶବ୍ଦ କରେ ବୋଲି ତାର ନାମ ଫୋନିକା ଇତ୍ୟାଦି । ବହୁତ ପକ୍ଷୀଙ୍କୁ ଦେଖିଲେ ମୋର ପଡ଼େ ସେମାନଙ୍କର ପରିଚୟ ଲାଗି ମୋ'ଦ୍ୱାରା ନାମକରଣ । ସେମାନଙ୍କର ଅନ୍ୟ ନାମରୁ ମୋତ କ'ଣ ମିଳିବ ? ମୁଁ ସକାଳେ ସନ୍ଧ୍ୟାରେ ବସି ସେମାନଙ୍କୁ ଦେଖୁଥାଏ । ରାତିରେ ନିଦ ଭାଙ୍ଗିଗଲା ପରେ ଚାରିଆଡ଼ର ସୌନ୍ଦର୍ଯ୍ୟ ଦେଖୁ ଦେଖୁ ପୁଣି ଶୋଇପଡ଼େ ।

ତେଣୁ ଆଜିକାଲି ମୋର ଘର ବଗିଚା ଛାଡ଼ି ବେଶି ଦିନ ବାହାରେ ରହିବାକୁ ମୋଟ ଇଚ୍ଛା ହୁଏନାହିଁ । ଏହି ରୁଚିକର ପରିବେଶର ଆକର୍ଷଣ ଯୋଗୁ ହିଁ ମୁଁ ତିରିଶ ବର୍ଷ କାଳ ନିଜେ ଗାଡ଼ି ଚଳାଇ ପ୍ରତିଦିନ ଭୁବନେଶ୍ୱରକୁ ଯିବାଆସିବା କରେ ସିନା ସେଠାରେ ସାତବଖରିଆ ଅଧ୍ୟାପକ ଘରେ ରହିବାକୁ ମନ ହେଲାନାହିଁ । ମୋର ସୁନ୍ଦର ପରିବେଶ ଛାଡ଼ି ବାଣୀବିହାରର ବିଶ୍ୱବିଦ୍ୟାଳୟ କର୍ମଚାରୀଙ୍କ ସଂକୀର୍ଣ୍ଣ ସାମାଜିକ ପରିବେଶ ଭିତରେ ରହିବାକୁ ମୋର ଇଚ୍ଛା ହେଲାନାହିଁ । ବାଣୀବିହାରକୁ ଯାଇଥିଲେ ଏହି କେତେବର୍ଷ ଭିତରେ ମୁଁ ବହୁ ଅଧିକ ଆୟ କରିପାରିଥାନ୍ତି କଟକ ଘର ଭଡ଼ା ଦେଇ, କିନ୍ତୁ ରୁଚିକର ଜୀବନଯାପନକୁ ଆର୍ଥିକ ଲାଭକ୍ଷତିର ବହୁ ଊର୍ଦ୍ଧ୍ୱରେ ମୁଁ ରଖିଆସିଛି । କୌଣସିମତେ ଟଙ୍କା ଉପାର୍ଜନ କରିବାଟା ମୋ ଜୀବନର ଆଭିମୁଖ୍ୟ ବିରୁଦ୍ଧରେ । ଏଥିରେ ମୋର ଅନୁଶୋଚନାହୀନ ଚରମ ସନ୍ତୋଷ ସାଧିତ ହୋଇଛି ।

■ ■ ■

୧୫

# ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ (୧୯୬୨-୭୭)

## (କ) କଟକ କଂଗ୍ରେସ - ୧୯୬୨

ଭାରତୀୟ ବିଜ୍ଞାନ କଂଗ୍ରେସର ବାର୍ଷିକ ଅଧିବେଶନ ବିଭିନ୍ନ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଅନୁଷ୍ଠିତ ହୁଏ । ଭାରତବର୍ଷରେ କାଳକ୍ରମେ ଏହା ଗୋଟିଏ ସର୍ବ ବୃହତ୍ ବିଜ୍ଞାନବିତ୍‌ମାନଙ୍କ ସମାରୋହରେ ପରିଣତ ହୋଇଛି । ଏହାର ସଭ୍ୟ ସଂଖ୍ୟା ବର୍ଷକୁ ବର୍ଷ ବୃଦ୍ଧି ପାଉଥିବାରୁ କ୍ରମେ ଅନେକ ବିଶ୍ୱବିଦ୍ୟାଳୟ ପକ୍ଷରେ ଏହି ସମାରୋହର ଆୟୋଜନ କରିବା ବହୁତ କଷ୍ଟସାଧ ହୋଇଗଲାଣି । ୧୯୬୨ ମସିହା କଟକ ଅଧିବେଶନରେ ପ୍ରାୟ ଅଢ଼େଇ ହଜାର ଏବଂ ୧୯୭୭ ଭୁବନେଶ୍ୱର ବିଜ୍ଞାନ କଂଗ୍ରେସରେ ପ୍ରାୟ ସାଢ଼େ ତିନିହଜାର ସଭ୍ୟ ଯୋଗ ଦେଇଥିଲେ । ପ୍ରତ୍ୟେକ ଥର ବିଦେଶରୁ ନିମନ୍ତ୍ରିତ ହୋଇ ଆସୁଥିବା ପ୍ରାୟ ୧୦୦ଜଣ ବିଶିଷ୍ଟ ବିଜ୍ଞାନୀ ଏଥିରେ ଯୋଗ ଦିଅନ୍ତି ।

୧୯୬୨ ମସିହାରେ କଟକରେ ଏ ଅଧିବେଶନର ଆୟୋଜନ କରିବା ସବୁଠାରୁ ଦୁରୂହ ବ୍ୟାପାର ବୋଲି ମନେ ହୋଇଥିଲା । ସେତେବେଳେ କଟକରେ ବହୁତ ଜିନିଷର ଅଭାବ । ରହିବା ପାଇଁ ଯାଗା ମଧ୍ୟ ଯଥେଷ୍ଟ ନଥିଲା । ଭଲ ହୋଟେଲ ପ୍ରାୟ ନଥିଲା । କିନ୍ତୁ କୁଳପତି ଡକ୍ଟର ପରିଜା ଯେତେବେଳେ ନିମନ୍ତ୍ରଣ କରିଦେଇଥିଲେ ଆମମାନଙ୍କୁ ଏହାର ଆୟୋଜନ କରିବାକୁ ପଡ଼ିଲା । ମୁଁ ଓ ଡକ୍ଟର ବଂଶୀଧର ସାମନ୍ତରାୟ ଏହାର ରାଜ୍ୟ ସମ୍ପାଦକ ହେଲୁ । କିନ୍ତୁ ଡକ୍ଟର ପରିଜା ମୋତେ ଡାକି ବୁଝାଇଥିଲେ ଯେ ଏଥିରେ ମୋତେ ଏକା ଏକା ସବୁ କାମ କରିବାକୁ ପଡ଼ିବ । କଂଗ୍ରେସର ସଂପୂର୍ଣ୍ଣ ଯୋଜନା ତଥା ଆୟୋଜନର ଚୂଡ଼ାନ୍ତ ବ୍ୟବସ୍ଥା ମୁଁ କରିସାରିଲା ପରେ ଶେଷ ବେଳକୁ ଆଳଙ୍କାରିକ ଭାବରେ କେବଳ କମିଟିମାନ ଗଢ଼ାଯିବ । କମିଟି ହାତରେ ଦାୟିତ୍ୱ ନ ଦେଇ ସବୁକାମ ମୋତେ କରିବାକୁ ହେବ ବୋଲି ସେ ମୋତେ ଗୁପ୍ତ ପରାମର୍ଶ ଦେଇଥିଲେ । ଏଥିରେ ମୁଁ ଟିକିଏ ଡରି ଯାଇଥିଲି । ଏହା ମୋ ପକ୍ଷରେ ଗୋଟିଏ ବିରାଟ ଆହ୍ୱାନ ରୂପେ ଦେଖା ଦେଇଥିଲା । ଡକ୍ଟର ପରିଜାଙ୍କର ମୋ ଉପରେ ଏ ପ୍ରକାର ଗଭୀର ଆସ୍ଥା ରହିଥିବାର ଜାଣି ମୁଁ ଗର୍ବ ଅନୁଭବ କରିଥିଲି ।

୧୯୫୦ ମସିହାରୁ ମୁଁ ପ୍ରତିବର୍ଷ ବିଜ୍ଞାନ କଂଗ୍ରେସରେ ଯୋଗ ଦେଉଥିଲି ଏବଂ କାହିଁକି କେଜାଣି ମୋଠାରେ ଗୋଟିଏ ସହଜାତ ଧାରଣା ଜନ୍ମିଥିଲା ଯେ ଭବିଷ୍ୟତରେ ଦିନେ ନା ଦିନେ ମୋ ଉପରେ ଏହାର ଆୟୋଜନର ଭାର ପଡ଼ିପାରେ । ତେଣୁ ପ୍ରତ୍ୟେକ କଂଗ୍ରେସର ସମସ୍ତ ପ୍ରକାର ବ୍ୟବସ୍ଥାକୁ ମୁଁ ଖୁବ୍ ଯତ୍ନର ସହିତ ଲକ୍ଷ୍ୟ କରୁଥିଲି । ଏପରିକି ପ୍ରତ୍ୟେକ ସାଧାରଣ ଅଧିବେଶନରେ କେତେ ଆମନ୍ତ୍ରିତ ବ୍ୟକ୍ତିଙ୍କ ପାଇଁ ଚଉକି ପଡୁଛି, ତାର କଳନା ମଧ୍ୟ କରୁଥିଲି । ଏହିପରି ଭାବରେ ବର୍ଷ ବର୍ଷ ଧରି ମୁଁ ମନେ ମନେ ବିଜ୍ଞାନ କଂଗ୍ରେସର ସମୀକ୍ଷା, ଏହାର ଦୋଷ ତ୍ରୁଟି କଥା କଳନା କରି କରି ଚାଲିଥାଏ । ସତକୁସତ ମୋ ଉପରେ ଏହି ଆୟୋଜନର ସମସ୍ତ ଭାର ପଡ଼ିଲା ।

ମୁଁ ପ୍ରଥମେ ଗୋଟିଏ ଖାତାରେ ବିଜ୍ଞାନ କଂଗ୍ରେସର ପ୍ରତ୍ୟେକ ବିଭାଗ କାର୍ଯ୍ୟକଳାପର ଗୋଟିଏ ବିଶଦ ବିବରଣୀ ଲେଖିଗଲି ଏବଂ ମଝିରେ ମଝିରେ ଏପରିକି ରାତିରେ ହଠାତ୍ ନିଦ ଭାଙ୍ଗିଗଲା ପରେ କୌଣସି ଗୋଟିଏ କଥା ମନେ ପଡ଼ିଗଲେ ଏହି ଖାତାର ଯଥା ସ୍ଥାନରେ ତାକୁ ଲିପିବଦ୍ଧ କରିପକାଏ । ମୋତେ ପୂରା ଛଅମାସ ଲାଗିଗଲା ଏହାର ଆୟୋଜନର ସଂପୂର୍ଣ୍ଣ ରୂପରେଖ ଓ ସମସ୍ତ ପ୍ରକାର ବ୍ୟବସ୍ଥାର ଟିକିନିଖି ତାଲିକା ପ୍ରସ୍ତୁତ କରି ସବୁ ପ୍ରକାର ପଦକ୍ଷେପର ବିଶଦ ବିବରଣୀ ପ୍ରସ୍ତୁତ କରିବା ପାଇଁ ।

ପ୍ରଥମ ଦିବସର ଖୋଲା ଅଧିବେଶନରେ ୧୨ ହଜାର ଲୋକଙ୍କର ବସିବା ପାଇଁ ବ୍ୟବସ୍ଥା କରିବା ସିଦ୍ଧାନ୍ତ ନେଲି । କାରଣ ସେତେବେଳେ ପର୍ଯ୍ୟନ୍ତ ସବୁଠୁ ବଡ଼ ଅଧିବେଶନରେ ୧୦ ହଜାର ଲୋକ ବସିବାର ବନ୍ଦୋବସ୍ତ ହୋଇଥିଲା । ମୁଁ ଚାହିଁଥିଲି ଯେ ସେଦିନ ପର୍ଯ୍ୟନ୍ତ ଯେତେ କଂଗ୍ରେସ ଅଧିବେଶନ ହୋଇଛି ତା'ଠାରୁ କଟକ ଅଧିବେଶନ ଯେପରି ସର୍ବବୃହତ୍ ତଥା ସର୍ବୋତ୍କୃଷ୍ଟ ବୋଲି ଗଣ୍ୟ ହେବ । ୧୨ ହଜାର ଲୋକ ବସିବା ପାଇଁ ମୁଁ ଯେତେବେଳେ ୩୫୦ ଫୁଟ ଲମ୍ବା ଓ ୩୦୦ ଫୁଟ ଚଉଡ଼ାର ସ୍ଥାନ ରେଭେନ୍ସା କଲେଜ ପଡ଼ିଆ ମଝିରେ ଠିକ୍ କଲି, ଆମ କାର୍ଯ୍ୟକାରୀ କମିଟିର ବହୁ ବିଶିଷ୍ଟ ସଭ୍ୟ ଏଥିରେ ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ—

''ତୁମେ କ'ଣ କଳ୍ପନା କରିପାରୁଚ, ଲକ୍ଷେ ବର୍ଗଫୁଟ କେତେବଡ଼ ଯାଗା ହେଲାଣି ?'' ମୁଁ ସେମାନଙ୍କୁ ବୁଝାଇଲି ଯେ ୧୨ ହଜାର ଲୋକ ବସିବା ପାଇଁ ୬୦ ହଜାର ବର୍ଗଫୁଟ ଯାଗା ଦରକାର ଏବଂ ଏତିକି ଲୋକଙ୍କର ଯିବା ଆସିବା ଓ ପ୍ରାୟ ୨୦୦ ସ୍ୱେଚ୍ଛାସେବକମାନଙ୍କର ଯାତାୟାତ ପାଇଁ ଆଉ ୪୦ ହଜାର ବର୍ଗଫୁଟ ଯାଗା ଦରକାର । ଏହି ୪୦ ହଜାର ବର୍ଗଫୁଟ ଭିତରୁ ପ୍ରାୟ ୧୫ ହଜାର ବର୍ଗଫୁଟ ବସିବା ଯାଗାର ଚାରିପଟେ ଖାଲି ରହିବ । ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଯେତେବେଳେ ଆସୁଛନ୍ତି ସାଧାରଣଲୋକଙ୍କର ବହୁତ ଭିଡ଼ ହେବ । ଯଦି କୌଣସି ସ୍ଥାନରେ ଘେର ଭାଙ୍ଗିଯାଏ ତାହେଲେ ମଧ୍ୟ ଲୋକମାନେ ଠିଆ ହୋଇଯିବା ପାଇଁ ଯଥେଷ୍ଟ ସ୍ଥାନ ଥିଲେ ଆଉ ଗୋଳମାଳ ହେବନାହିଁ । ପ୍ରକୃତରେ ଖୋଲା ଅଧିବେଶନ ବେଳେ ଗୋଟିଏ ସ୍ଥାନରେ ଘେର ଭାଙ୍ଗି ଯାଇଥିଲା ଏବଂ ଲୋକମାନଙ୍କର ଠିଆ ହେବା ଯାଗା ଥିବାରୁ କୌଣସି ଗୋଳମାଳ ହୋଇନଥିଲା । ଅଧିକାଂଶ ସଭ୍ୟ ଏହାର ବିରାଟ ଆୟତନ ବିଷୟରେ ସନ୍ଦିହାନ ହୋଇଥିଲେ, କିନ୍ତୁ ଡକ୍ଟର ପରିଜା ମୋତେ ସମର୍ଥନ କଲେ । ସମସ୍ତେ ତାଗିଦା କଲେ ଯେ ଲକ୍ଷେ ବର୍ଗଫୁଟ ତାରପୋଲିନ୍ ଯୋଗାଡ଼ କରିବା ଅସଂଭବ ହେବ । ମୁଁ ତାର ବନ୍ଦୋବସ୍ତ କରୁଛି ବୋଲି କହିଥିଲି ।

ପ୍ରକୃତରେ ଲକ୍ଷେ ବର୍ଗଫୁଟ ତାରପୋଲିନ୍ ଓ ୧୨ ହଜାର ଚଉକି ଯୋଗାଡ଼ କରିବା ସେ ସମୟରେ ବଡ଼ କଠିନ ବ୍ୟାପାର ଥିଲା । ତଥାପି ମୋର କାହିଁକି ସାହସ ଯେ ମୁଁ ଏହାର ବନ୍ଦୋବସ୍ତ କରିପାରିବି । ଶେଷରେ ଏହାର ବ୍ୟବସ୍ଥା ମଧ୍ୟ ହୋଇଥିଲା । ଏ ସମ୍ପର୍କରେ ଆଉ ଗୋଟିଏ ନୂତନ ପ୍ରକାରର ଶିକ୍ଷା ମୋର ହେଲା । ସେତେବେଳକୁ ଶ୍ରୀ ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲେ ଏବଂ ସେ ଜଣେ ବଡ଼ ଟାଣୁଆ ନେତା ଓ ଅଗ୍ରଧର୍ଷୀ ମୁଖ୍ୟମନ୍ତ୍ରୀ ହିସାବରେ ପରିଚିତ ଥିଲେ । ଅଫିସରମାନଙ୍କୁ ସେ ଯେପରି ଧମକେଇ ଚମକେଇ ରଖିଥିଲେ ସେଥିରେ ସମସ୍ତେ ତାଙ୍କୁ ଡରୁଥିଲେ । ମୁଁ କୌଣସି କଥା ଯେଉଁ ଅଫିସରଙ୍କୁ କହେ ଏବଂ ସେ ଯଦି ସେଥିରେ ଅମତ ହୁଅନ୍ତି ବା ଉତ୍ସାହ ଦେଖାନ୍ତି ନାହିଁ, ତା'ହେଲେ ତାଙ୍କୁ ମୁଁ କହେ ଯେ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଏ ବିଷୟରେ ମୁଁ ରିପୋର୍ଟ କରିବି । ତା'ପରେ ତାଙ୍କର ଉତ୍ସାହ ବଢ଼ିଯାଏ ଓ ସବୁ କାମ ହୋଇଯାଏ । ଅଥଚ ଥରେ ହେଲେ ବି ମୁଁ ମୁଖ୍ୟମନ୍ତ୍ରୀଙ୍କୁ କୌଣସି କଥା ପାଇଁ ଅନୁରୋଧ କରିନାହିଁ । କେବଳ ତାଙ୍କ ନାମ ନେଇ ମୁଁ ସବୁ କାମ କରାଇପାରିଥିଲି ।

ଏହି ଅଭିଜ୍ଞତାରୁ ମୋର ଧାରଣା ହେଲା ଯେ ଏ ଦେଶରେ ବହୁ ଯୁଗ ଧରି ସ୍ୱେଚ୍ଛାଚାରୀ ଔପନିବେଶିକ ଶାସନ ଚାଲିଥିବାରୁ ଏଠାକାର ଅଫିସରମାନଙ୍କୁ ଯେତେ ବେଶି ଭୟ ଦେଖାଇବ ସେତେ ବେଶି ସେମାନେ ଫଳପ୍ରଦ ହେବେ । ଏହି ଛଅମାସ ଭିତରେ ଯେତେ ଯେତେ ଅଫିସରଙ୍କଠାରୁ ମୁଁ ସାହାଯ୍ୟ ପାଇଛି, ସେମାନଙ୍କ ଭିତରୁ ଅଧିକାଂଶ ଲୋକଙ୍କୁ ମୁଖ୍ୟମନ୍ତ୍ରୀଙ୍କ ନାମରେ ଡରାଇ ଥରାଇ ମୁଁ ମୋର କାମ ହାସଲ କରାଇ ପାରିଥିଲି । ଉଦାହରଣ ସ୍ୱରୂପ ତତ୍କାଳୀନ ପୁରୀ କଲେକ୍ଟରଙ୍କୁ ମୁଁ ଫୋନରେ କହିଲି ଯେ "ଆପଣଙ୍କୁ ବିଜ୍ଞାନ କଂଗ୍ରେସ ପାଇଁ ଦଶ ହଜାର ବର୍ଗଫୁଟ ତାରପୋଲିନ ଯୋଗାଇବାକୁ ହେବ ।" ମୁ ଖବର ପାଇଥିଲି ଯେ ତାଙ୍କ ପାଖରେ ସେତିକି ତାରପୋଲିନ ରହିଛି । ସେ ଭଦ୍ର ଲୋକମୋତେ ଧମକାଇ ଦେଲେ ଯେ "କଲେକ୍ଟରଙ୍କର କାମ ନୁହେଁ ତୁମକୁ ତାରପୋଲିନ୍ ଯୋଗାଇବା । ଆପଣ କାହା ସହିତ କଥା କହୁଛନ୍ତି ବୋଧହୁଏ ଜାଣନ୍ତି ନାହିଁ । ମୁଁ ପୁରୀର କଲେକ୍ଟର ।"

ମୁଁ ସବୁ ଶୁଣିଲା ପରେ ନରମ ଗଳାରେ କହିଲି—

"ଆଜ୍ଞା ଦେଖନ୍ତୁ, ଓଡ଼ିଶା ସରକାର ବିଜ୍ଞାନ କଂଗ୍ରେସ ଅଧିବେଶନକୁ ନିମନ୍ତ୍ରଣ କରିଛନ୍ତି । ପ୍ରଧାନମନ୍ତ୍ରୀ ଆସୁଛନ୍ତି । ମୋ ଝିଅ ପୁଅ ବାହାଘର ପାଇଁ ତ ମୁଁ ଆପଣଙ୍କୁ ତାରପୋଲିନ୍ ମାଗୁନାହିଁ । ଆପଣ ଯଦି ନ ଦେବେ ତାହାହେଲେ ୧୦ ହଜାର ବର୍ଗଫୁଟ ଯାଗା ଖାଲି ରହିବ ଏବଂ ସେଠାରେ ଲେଖିଦେବି ଯେ ପୁରୀ କଲେକ୍ଟର ତାରପୋଲିନ୍ ଯୋଗାଇବାକୁ ଅସମର୍ଥ ହେବାରୁ ଏହି ଯାଗା ଖାଲି ରହିଲା ଏବଂ ମୁଖ୍ୟମନ୍ତ୍ରୀଙ୍କୁ ଡାକି ସେ ସ୍ଥାନଟି ଦେଖାଇଦେବି । ମୁଁ ଦୁଃଖିତ ଯେ ଆପଣଙ୍କ ପରି ଏତେ ବଡ଼ ଅଫିସରଙ୍କୁ ତାରପୋଲିନ୍ ମାଗି ଅପମାନ କଲି । ପୁରୀ କଲେକ୍ଟର, କମ୍ ପଦସ୍ଥ ଲୋକ ଆପଣ ନୁହନ୍ତି । ଏହା ହୃଦୟଙ୍ଗମ କରିବାରେ ମୋର ଭୁଲ ହୋଇଗଲା ।"

ତା'ପରେ ତାଙ୍କର ସ୍ୱର ସାଙ୍ଗେ ସାଙ୍ଗେ ବଦଳିଗଲା । ସେ କହିଲେ ଯେ ସେ ନିଶ୍ଚୟ ଚେଷ୍ଟା କରିବେ । ମୁଁ କହିଲି—

"ଚେଷ୍ଟା ନାହିଁ, ଧାର ଆଣନ୍ତୁ ବା ଚୋରି କରନ୍ତୁ ଆପଣଙ୍କୁ ୧୦ ହଜାର ବର୍ଗଫୁଟ ତାରପୋଲିନ୍ ଯୋଗାଇବାକୁ ପଡ଼ିବ ।"

ତାପରେ ସେ ବହୁତ ମୋଲାୟମ ଭାଷାରେ କହିଲେ – "ଆଚ୍ଛା ଆଚ୍ଛା ଆପଣ ଗାଡ଼ି ପଠାନ୍ତୁ କିଛିଦିନ ପରେ ।"

ମୁଁ କହିଲି– "ନା, ଡିସେମ୍ବର ୨୫ ତାରିଖ ଦିନ ପୂର୍ବାହ୍ନ ୧୧ଟା ସୁଦ୍ଧା ଆପଣ ଗାଡ଼ି ବନ୍ଦୋବସ୍ତ କରି ମୋ ପାଖରେ ତାରପୋଲିନ୍ ପହଞ୍ଚାଇବାକୁ ହେବ । ତା' ନ ହେଲେ ନାହିଁ କରନ୍ତୁ, ମୁଁ ଅନ୍ୟ ବ୍ୟବସ୍ଥା କରିବି ।"

ସେ ରାଜି ହେବାକୁ ବାଧ ହେଲେ ଏବଂ ଠିକ୍ ସମୟରେ ତାରପୋଲିନ୍ ଆଣି ପହଞ୍ଚାଇଥିଲେ । କଂଗ୍ରେସ ଅଧିବେଶନ ପରେ ତାଙ୍କ ଅଫିସରଙ୍କ ଦ୍ୱାରା ଫେରାଇ ନେଲେ । ପ୍ରତ୍ୟେକ କଥାରେ ଏପରି ଭାବରେ ଜବରଦସ୍ତ କାମ କରାଇଲି ଏବଂ ଆଶ୍ଚର୍ଯ୍ୟର କଥା ଯେ ବହୁତ ବଡ଼ ଓ ଅତି ଉଦ୍ଧତ ଅଫିସର ମଧ୍ୟ ମୋ କଥାରେ ଦବି ଗଲେ । ମୋର ଯାହା ଯାହା ଦରକାର ଥିଲା; ଲକ୍ଷେ ବର୍ଗଫୁଟ ତାରପୋଲିନ୍, ୧୨ ହଜାର ଚଉକି, ତିନି ହଜାର ୪ ଫୁଟିଆ ବାର ଲାଇଟ୍ ଏହିପରି ସମସ୍ତ ଜିନିଷ ଆସି ପହଞ୍ଚିଗଲା । ଏ ସବୁ ଅଧ୍ୟାପକଙ୍କର ନମନୀୟ ମାର୍ଜିତ ଭାଷା ମାଧ୍ୟମରେ ନୁହେଁ, ଉଦ୍ଧତ ଆଦେଶ, ଚୂଡ଼ାନ୍ତ ସତର୍କବାଣୀ ଇତ୍ୟାଦି ଅମାର୍ଜିତ ଭାଷା ବ୍ୟବହାର ଯୋଗୁ ସମ୍ଭବ ହୋଇଥିଲା । ଏଥିରୁ ମୋର ଅଭିଜ୍ଞତା ହେଲା ଯେ ଏ ଦେଶରେ କୌଣସି **ଫଳପ୍ରଦ କାମ ଅମଲାତାନ୍ତ୍ରିକ ଅଫିସରମାନଙ୍କ ଦ୍ୱାରା ଛାଏଁ ଛାଏଁ ହୋଇପାରିବ ନାହିଁ । ସେମାନଙ୍କୁ ସବୁବେଳେ ଭୀତତ୍ରସ୍ତ ଅବସ୍ଥାରେ ରଖାଗଲେ ଯାଇ କାମ ହୁଏ ।** ଖାଲି ଅଫିସର କାହିଁକି, ସମସ୍ତଙ୍କ ପାଇଁ ଏହା ପ୍ରଯୁଜ୍ୟ । ଓଡ଼ିଶାରେ ଆଜିକାଲି ଟାଣୁଆ ମନ୍ତ୍ରୀଙ୍କର ଅଭାବରୁ କୌଣସି ଫଳପ୍ରଦ କାର୍ଯ୍ୟକ୍ରମ ହୋଇପାରୁନାହିଁ ଯଦିଚ ଓଡ଼ିଶାରେ ଅନ୍ୟ ରାଜ୍ୟ ତୁଳନାରେ ବଡ଼ ବଡ଼ ଅଫିସରଙ୍କର ସଂଖ୍ୟା ଅନେକ ବେଶୀ ।

ଏତେବଡ଼ ସଭାମଞ୍ଚ ଯେତେବେଳେ ତାରପୋଲିନ୍‌ରେ ଘୋଡ଼ାଇ ହୋଇଗଲା ମୋତେ କାହିଁକି ବଡ଼ ମଇଳା ଓ ଅନ୍ଧାରୁଆ ଦେଖାଗଲା । ହଠାତ୍ ମୋତେ ବୁଦ୍ଧି ଦିଶିଲା, ତାରପୋଲିନ୍ ତଳେ ତିନିହଜାର ବାରଲାଇଟ୍ ଲଗାଇ ତା ତଳେ ଲମ୍ବା ଲମ୍ବା ଧଳା ଓ ନାଲିକନା ପଟିରେ ଘୋଡ଼ାଇ ଦେଲେ ଭଲ ଦେଖାଯିବ । କିନ୍ତୁ ସେତେବେଳେ ଲକ୍ଷେ ବର୍ଗଫୁଟ ଧଳା ଓ ନାଲିକନା କଟକ ବଜାରରେ କିଣିବାକୁ ମିଳିନଥିଲା ଗୋଟିଏ କଣ୍ଟ୍ରାକ୍ଟରଙ୍କୁ ଆଗତୁରା ଟଂକା ଦେଇ କଲିକତାରୁ ସବୁ କନା ମଗାଇଲି । ସେ ଖୁବ୍ ସୁନ୍ଦର କରି କନା ବାନ୍ଧିଦେଲେ । କଂଗ୍ରେସ ଅଧିବେଶନ ପରେ ଶତକଡ଼ା ୧୦ ଟଙ୍କା ରିହାତିରେ ତାଙ୍କୁ କନାତକ ବିକ୍ରି କରିଦେଇଥିଲି । ତା'ପରେ ସେ ବହୁ ଯାଗାରେ ଏହି ଧଳା ନାଲି କନାରେ ମଞ୍ଚ ତିଆରି କରି ସଜାଇଲେ । ସେତେବେଳକୁ ଏ ପ୍ରକାର ସାଜସଜ୍ଜାରେ କଟକ ଲୋକେ ଅନଭ୍ୟସ୍ତ ଥିଲେ । ତା'ପରଠାରୁ ଧଳା, ନାଲି, ନୀଳ ପ୍ରଭୃତି ରଙ୍ଗିନ୍ କନା ପଟିଦେବା ଗୋଟିଏ ରୁଚିକର ଫେସନରେ ପରିଣତ ହୋଇଗଲା । ମୁଖ୍ୟ ଗେଟ୍ ଉପରେ ଗୋଟିଏ ବିରାଟ କୃତ୍ରିମ ସ୍ପୁଟ୍‌ନିକ୍ ବିଦ୍ୟୁତ୍ ମୋଟର ସାହାଯ୍ୟରେ ବୁଲୁଥିଲା । ସମସ୍ତେ ଏହାକୁ ଉଚ୍ଚ ପ୍ରଶଂସା କରିଥିଲେ ।

ଆମର ଛାତ୍ରଛାତ୍ରୀ ସ୍ୱେଚ୍ଛାସେବୀମାନେ ଏପରି ଆନ୍ତରିକତା ଓ ନିଷ୍ଠାର ସହ କାମ କରିଥିଲେ ଯେ ବିଜ୍ଞାନ କଂଗ୍ରେସ ଅଧିବେଶନର ପ୍ରତ୍ୟେକ ବିଭାଗ ଖୁବ୍ ସୁନ୍ଦର ଓ ଶୃଂଖଳିତ ଭାବରେ ପରିଚାଳିତ ହୋଇଥିଲା । ଅବଶ୍ୟ ଏଥିପାଇଁ ସ୍ୱେଚ୍ଛାସେବୀମାନଙ୍କୁ ଟିକିନିଖି ଟ୍ରେନିଂ ଦିଆହୋଇଥିଲା । ପ୍ରଥମ ଖୋଲା ଅଧିବେଶନ ନିର୍ଦ୍ଧାରିତ ସମୟ ଅନୁସାରେ ଅପରାହ୍ଣ ଠିକ୍ ଚାରିଟାବେଳେ ଆରମ୍ଭ ହୋଇ ଛଅଟାବେଳେ ସରିଥିଲା । ୧୨ ହଜାର ଦର୍ଶକଙ୍କ ଯୋଗୁ ସଭାମଣ୍ଡପ ଅତ୍ୟନ୍ତ ଆଡ଼ମ୍ବରପୂର୍ଣ୍ଣ ଓ ଚିତ୍ତାକର୍ଷକ ଦେଖାଯାଉଥିଲା । ପ୍ରତ୍ୟେକ ଦର୍ଶକର ନିମନ୍ତ୍ରଣ କାର୍ଡ଼ରେ ତାଙ୍କ ପାଇଁ ନିର୍ଦ୍ଦିଷ୍ଟ ବ୍ଲକର ନମ୍ବର ସୂଚିତ ହୋଇଥିଲା । ୧୨ ହଜାର ଦର୍ଶକଙ୍କର ସ୍ଥାନ ୨୪ଟି ବ୍ଲକ୍‌ରେ ବିଭକ୍ତ ହୋଇଥିଲା । ସ୍ୱେଚ୍ଛାସେବକମାନଙ୍କ ସାହାଯ୍ୟରେ ଏମାନେ ଖୁବ୍ କମ୍ ସମୟ ଭିତରେ ଶୃଙ୍ଖଳାର ସହିତ ନିଜ ନିଜ ବ୍ଲକକୁ ଯାଇପାରିଥିଲେ ।

ଯେତେବେଳେ କଂଗ୍ରେସ ପରିଷଦର ସମସ୍ତ ସଭ୍ୟ ଶୋଭାଯାତ୍ରାରେ ଖୋଲା ଅଧିବେଶନ ପରେ ପୋଷାକ ପରିବର୍ତ୍ତନ ସ୍ଥାନକୁ ଫେରିଆସିଲୁ ବିଜ୍ଞାନ କଂଗ୍ରେସର ସଭାପତି ଡକ୍ଟର ମୁଖାର୍ଜୀ, ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଅଭିନନ୍ଦନ ଜଣାଇ କହିଥିଲେ ଯେ–

''ମିଷ୍ଟର ପଟ୍ଟନାୟକ ! ପୂର୍ବରୁ ଯେତେ କଂଗ୍ରେସ ଅଧିବେଶନରେ ମୁଁ ଯୋଗ ଦେଇଥିଲି ସେ ସମସ୍ତଙ୍କଠାରୁ କଟକ ଅଧିବେଶନ ସର୍ବବୃହତ୍ ଓ ସର୍ବଶ୍ରେଷ୍ଠ ବୋଲି ମୋର ମନେ ହେଲା ।''

ଏ କଥା ଶୁଣି ମୋର ସ୍ୱପ୍ନ ସାର୍ଥକ ହୋଇଛି ବୋଲି ମୁଁ ମନେକଲି । ସାଙ୍ଗେ ସାଙ୍ଗେ ବିଜୁବାବୁ ମୋ'ାତ ହାତ ଦେଖାଇ କହିଲେ ଯେ–

''ଡକ୍ଟର ମୁଖାର୍ଜୀ, ମୁଁ ଏ ବିଷୟରେ କିଛି କରିନାହିଁ କି କିଛି ଜାଣିନାହିଁ ମଧ୍ୟ । ଏହି ଯୁବକଙ୍କୁ ଧନ୍ୟବାଦ ଦିଅନ୍ତୁ । ସେ ହେଉଛନ୍ତି ଏହାର ମୁଖ୍ୟ କର୍ଣ୍ଣଧାର (କିଙ୍ଗପିନ୍) । ମୋତେ ନ ପଚାରି ସେ ସବୁ କରିଛନ୍ତି । ମୋର ଏଥିରେ କୌଣସି ଅବଦାନ ନାହିଁ ।''

ଏହା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । କାରଣ ସେତେବେଳକୁ ବିଜୁ ବାବୁଙ୍କ ସହିତ ମୋର ପଡୁ ନଥିଲା । ରେଭେନ୍ସା କଲେଜ ପ୍ରିନ୍‌ସିପାଲଙ୍କ ଅଫିସରେ ଘଟିଥିବା ପୂର୍ବର ସେହି ଅପ୍ରୀତିକର ଘଟଣା ସମୟଠାରୁ ତାଙ୍କ ସହିତ ମୋର ଭୟଙ୍କର ମନୋମାଳିନ୍ୟ ହୋଇଥିଲା । ଏପରି ପରିସ୍ଥିତିରେ ମଧ୍ୟ ସେ ମୋତେ ଏପରି ଭାବରେ ପ୍ରଶଂସା କରିଥିବାରୁ ମୋର ତାଙ୍କ ପ୍ରତି ସମ୍ମାନ ବଢ଼ିଗଲା । ତା'ଛଡ଼ା ଜଣେ ଓଡ଼ିଆ ନିଜ ପ୍ରତି ପ୍ରକାଶ୍ୟ ପ୍ରଶଂସାକୁ ବିଶେଷତଃ ପ୍ରଧାନମନ୍ତ୍ରୀଙ୍କ ଆଗରେ ଗ୍ରହଣ ନ କରି ସେଥିପାଇଁ ନିଜେ ବାହାଦୁରୀ ନ ନେଇ ଅନ୍ୟ ଜଣେ ଓଡ଼ିଆକୁ ବିଶେଷକରି ମୋ'ପରି ତାଙ୍କର ଜଣେ ସମାଲୋଚକଙ୍କୁ ଏ ପ୍ରକାର ସମ୍ମାନ ଦେବା ଓଡ଼ିଶାରେ ବିରଳ ଥିଲା । କାରଣ ଏହି ଗୋଟିକ ଘଟଣା ଛଡ଼ା ମୁଁ ଓଡ଼ିଶାରେ ଓଡ଼ିଶା ଶାସକଙ୍କଠାରୁ ପ୍ରକାଶ୍ୟରେ କୌଣସି ସମ୍ମାନ ଲାଭ କରିପାରି ନାହିଁ । ଯାହାହେଉ ବିଜୁବାବୁଙ୍କର ଖେଳୁଆଡ଼ ମନୋବୃତ୍ତିକୁ ମୁଁ ପ୍ରଶଂସା ନ କରି ରହି ପାରିଲିନାହିଁ ।

ମୁଁ କହିଥିଲି–

''ମୁଖ୍ୟମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀଙ୍କ ନାମ ନେଇ ମୁଁ ସବୁ କରିପାରିଛି । ଆଜିକାଲି ରାଜନୈତିକ ଅଧିକାରୀଙ୍କର ନାମ ନ ନେଇ କଣ କୌଣସି ଗୁରୁତ୍ୱପୂର୍ଣ୍ଣ କାମ ନିଜେ କେହି କରିପାରିବ ?''

ଏ କଥା ଶୁଣି ପ୍ରଧାନମନ୍ତ୍ରୀ ଶ୍ରୀ ନେହରୁ ହସି ଉଠିଲେ ଏବଂ କହିଲେ – ''ଦୁର୍ଭାଗ୍ୟବଶତଃ ଏହା ସତ୍ୟ ଘଟଣା ।''

ତାପରେ ବିଜୁ ପଟ୍ଟନାୟକ ବଡ଼ ଉତ୍ସାହ ସହକାରେ ମୋ ସହିତ କରମର୍ଦ୍ଦନ କରିଥିଲେ । ମୁଖ୍ୟମନ୍ତ୍ରୀଙ୍କ ଆୟୋଜିତ ଚା' ଭୋଜିରେ ବହୁ ବିଜ୍ଞାନୀଙ୍କ ସହିତ ମୁଁ ଯେତେବେଳେ ତାଙ୍କର ପରିଚୟ କରାଇଦେଲି, ସମସ୍ତେ ସମସ୍ୱରରେ କହିଥିଲେ ଯେ ବିଜ୍ଞାନ କଂଗ୍ରେସର ଆୟୋଜନ ଅତ୍ୟନ୍ତ ସୁନ୍ଦର ହୋଇଛି ଏବଂ ଏଥିଲାଗି ଯେଉଁ ବ୍ୟାପକ କାର୍ଯ୍ୟକ୍ରମ ଓ ଦକ୍ଷତା ରହିଛି, ତାହା ନିଶ୍ଚିତଭାବେ ପ୍ରଶଂସନୀୟ । ସେତେବେଳେ ମଧ୍ୟ ବିଜୁ ପଟ୍ଟନାୟକ ମୋ ସହିତ ଦୃଢ଼ ଭାବରେ କରମର୍ଦ୍ଦନ କରି ମୋତେ ଧନ୍ୟବାଦ ଦେଇ କହିଲେ ଯେ,

''ଯେକୌଣସି କାମ ଏପରି ଦକ୍ଷତାର ସହ କରାଯିବା ଉଚିତ୍ । ସେଥିପାଇଁ ମୁଁ ଆଜି ଗର୍ବିତ ।''

କଂଗ୍ରେସ ଅଧିବେଶନ ପରେ ତାଙ୍କ ସହିତ ଦେଖା କରିବା ପାଇଁ ସେ ମୋତେ ଅନୁରୋଧ କରିଥିଲେ । ତାପରେ ମୋର ତାଙ୍କ ସହିତ ବନ୍ଧୁତା ସ୍ଥାପିତ ହୋଇଥିଲା ଏବଂ ତାଙ୍କ ସାହାଯ୍ୟରେ ପ୍ରାଥମିକ ଶିକ୍ଷା ସ୍ତରରେ ବହୁ କାର୍ଯ୍ୟ କରାଯାଇପାରିଥିଲା ।

ଖାଇବାର ଆୟୋଜନ, ଖାଦ୍ୟ କଣ୍ଟ୍ରାକ୍ଟର ଶ୍ରୀ ରାଜକିଶୋର ସାହୁ କରିଥିଲେ । ଏ କ୍ଷେତ୍ରରେ ମଧ୍ୟ ବହୁତ ସୁନ୍ଦର ବ୍ୟବସ୍ଥା ହୋଇଥିଲା । ଡକ୍ଟର ପରିଜା ଓ ଆମେମାନେ ସଭ୍ୟମାନଙ୍କର ଖାଇଲାବେଳେ ବୁଲିବୁଲି ସୁବିଧା ଅସୁବିଧା କଥା ବୁଝୁଥିଲୁ, ପ୍ରତ୍ୟେକ ବିଦେଶୀ ବୈଜ୍ଞାନିକଙ୍କ ପାଇଁ ଜଣେ ସ୍ୱେଚ୍ଛାସେବକଙ୍କର ବନ୍ଦୋବସ୍ତ କରା ହୋଇଥିଲା । ପ୍ରତ୍ୟେକ ସ୍ତରରେ ଛାତ୍ର ସ୍ୱେଚ୍ଛାସେବକମାନେ ଏପରି ଆନ୍ତରିକତାର ସହ କାର୍ଯ୍ୟ କରିଥିଲେ ଯେ ସମସ୍ତେ ମୁଗ୍ଧ ହୋଇଯାଇଥିଲେ । ଏଥିପାଇଁ ସେମାନଙ୍କୁ ବହୁ ସମୟ ଧରି ଟ୍ରେନିଂ ଦିଆହୋଇଥିଲା । ଓଡ଼ିଆ ପିଲାଙ୍କର ନିଷ୍ଠା ଗୋଟିଏ ସହଜାତ ସାମାଜିକ ଗୁଣ ବୋଲି ମୋର ମନେ ହୋଇଥିଲା । ସୁଯୋଗ ଓ ସୁବିଧା ପାଇଲେ ସେମାନେ ଏହିପରି ବହୁ କାମ ମନପ୍ରାଣ ଦେଇକରି ପାରିବେ ଏ ସମ୍ପର୍କରେ ବହୁତ ମଧୁର ଅନୁଭୂତି ମୋର ରହିଛି ।

ସାଂସ୍କୃତିକ କାର୍ଯ୍ୟକ୍ରମ ତ ଅତି ଚିତ୍ତାକର୍ଷକ ହେବା କଥା । କୁମାରୀ ପ୍ରିୟମ୍ବଦା ମହାନ୍ତି (ବର୍ତ୍ତମାନ ଡକ୍ଟର ଶ୍ରୀମତୀ ହେଜମାଦୀ)ଙ୍କର ନୃତ୍ୟ ଏତେ ବେଶୀ ଚମତ୍କାର ହୋଇଥିଲା ଯେ ବହୁବର୍ଷ ଧରି କଂଗ୍ରେସର ସଭ୍ୟମାନେ କଟକ ଅଧିବେଶନର ସାଂସ୍କୃତିକ କାର୍ଯ୍ୟକ୍ରମକୁ ମନେ ପକାନ୍ତି । କେଳୁଚରଣ ମହାପାତ୍ରଙ୍କ ଦ୍ୱାରା ପରିଚାଳିତ ମେଘଦୂତ ନୃତ୍ୟନାଟିକା ସମସ୍ତଙ୍କୁ ମୁଗ୍ଧ କରିଦେଇଥିଲା ।

କଂଗ୍ରେସ ଆୟୋଜନର ଭୂରି ଭୂରି ପ୍ରଶଂସା ପତ୍ର ବହୁ ଲୋକଙ୍କଠାରୁ ଆସିଥିଲା । ଏହି କଂଗ୍ରେସର କୃତିତ୍ୱ ପାଇଁ ଡକ୍ଟର ପରିଜାଙ୍କର ମହାନୁଭବତା ଓ ପ୍ରଶସ୍ତ ମନ ବହୁ ପରିମାଣରେ ଦାୟୀ । ପ୍ରଥମ କିଛିଦିନ ମୋର କାମ ଦେଖିସାରିଲା ପରେ ମୁଁ ଯାହା କହେ

ସେଥିରେ ସେ ରାଜି ହୋଇଯାନ୍ତି । ବୟସ ଓ ଚାକିରିରେ ମୁଁ ଯେହେତୁ ସବୁଠୁ ସାନ ଥିଲି, ପ୍ରତ୍ୟେକ କଥାରେ ମୁଁ ତାଙ୍କଠାରୁ ଲେଖାଇ ନେଉଥିଲି, କାରଣ ମୁଁ ନିଶ୍ଚିତ ଥିଲି ଯେ ଓଡ଼ିଶାରେ ବହୁତ ବେଶୀ କୃତକାର୍ଯ୍ୟତାର ସହ କୌଣସି କାମ ହେଲେ ତୁମର ଶତ୍ରୁ ସଂଖ୍ୟା ବହୁତ ବଢ଼ିଯିବ । ବାହାରେ ଯେତେ ପ୍ରଶଂସା ମିଳିବ, ସେହି ଅନୁପାତରେ ତୁମକୁ ଓଡ଼ିଶାର କେତେକ ଲୋକ ନିନ୍ଦା କରିବେ, ବଦନାମ କରିବେ । ତେଣୁ ମୁଁ କୁଳପତିଙ୍କଠାରୁ ଏବଂ ପରେ କାର୍ଯ୍ୟକାରୀ କମିଟିଠାରୁ ସବୁ ଅନୁମୋଦିତ କରି ରଖେ । ତଥାପି କଂଗ୍ରେସ ସରିଲା ପରେ ଜଣେ ବରିଷ୍ଠ ଅଧ୍ୟାପକ ଦୁର୍ନୀତି ନିବାରଣ ବିଭାଗକୁ ମୋ ବିରୁଦ୍ଧରେ କୁଆଡ଼େ କହିଥିଲେ । ସେମାନେ ପ୍ରାରମ୍ଭିକ ଖବର ନେଲା ପରେ ତାଙ୍କ କଥାରେ ରାଜି ହୋଇନଥିଲେ । ଏଥିରେ ଅକୃତକାର୍ଯ୍ୟ ହେଲାପରେ ସେ ଭଦ୍ରଲୋକ ନିଜର ବାହାଦୂରୀ ଦେଖାଇ ମୋତେ କହିଥିଲେ ଯେ ଦୁର୍ନୀତି ନିବାରଣ ବିଭାଗ ତାଙ୍କୁ ଦେଖା କରିଥିଲେ, କିନ୍ତୁ ସେ ସେମାନଙ୍କୁ ନିବର୍ତ୍ତାଇ ପାରିଥିଲେ । ମୁଁ ତାଙ୍କୁ ଅନୁରୋଧ କରିଥିଲି ଯେ ଦୁର୍ନୀତି ନିବାରଣ ବିଭାଗକୁ ଡାକି ଆମର ସମସ୍ତ କାଗଜପତ୍ର ତାଙ୍କୁ ଦେଖାଇ ଦେଲେ ଆମର ବହୁତ ମର୍ଯ୍ୟାଦା ବଢ଼ିଯାନ୍ତା । ଅବଶ୍ୟ ଏହାସବୁ ମିଛ ଥିଲା । ଏ ବିଷୟରେ ଡକ୍ଟର ପରିଜା ମୋତେ ପରେ କହିଥିଲେ । ଡକ୍ଟର ପରିଜା ପ୍ରଥମରୁ ମୋତେ କହିଥିଲେ ଯେ ତୁମେ ସବୁ କାମ ନିଜେ ନିଜେ କରିଯାଅ । ସେ ଏଥିରେ ମୋତେ ବହୁତ ସାହାଯ୍ୟ କରିଥିଲେ । ତାଙ୍କ ସହିତ କାମ କରିବାରେ ମୋର ଯେତେ ଆନନ୍ଦ ହୋଇଥିଲା ଏବଂ ତାଙ୍କ ସହିତ ଯେତେ ବନ୍ଧୁତା ବଢ଼ିଥିଲା ଆଉ କୌଣସି କୁଳପତିଙ୍କ ସହିତ ଏପରି ସଦ୍‌ଭାବ ହୋଇପାରିନଥିଲା । କଟକ ବିଜ୍ଞାନ କଂଗ୍ରେସର ଆୟୋଜନ ମୋ ଜୀବନର ସାଙ୍ଗଠନିକ କୃତିତ୍ୱର ଗୋଟିଏ ମୁଖ୍ୟ ମାଇଲ୍ ଖୁଣ୍ଟି ହୋଇ ରହିଗଲା ।

୧୯୬୨ ମସିହା ବିଜ୍ଞାନ କଂଗ୍ରେସ ନେଇ ଗୋଟିଏ ମଜା କଥା ଘଟିଥିଲା ୧୯୮୫ରେ । କଂଗ୍ରେସ ପାଇଁ ଆମେସବୁ ଅନୁଷ୍ଠାନରୁ ଚଉକି ଆଣିଥିଲୁ ଏବଂ ସେ ସମସ୍ତ ଫେରାଇ ଦେଇଥିଲୁ । ହଠାତ୍ ୧୯୮୫ରେ କଟକ ଇଞ୍ଜିନିୟରିଂ ସ୍କୁଲରୁ ମୋ ପାଖକୁ ଗୋଟିଏ ଚିଠି ଆସିଥିଲା ଯେ ୧୯୬୨ ମସିହା ବିଜ୍ଞାନ କଂଗ୍ରେସ ପାଇଁ ତାଙ୍କ ଅନୁଷ୍ଠାନରୁ ଯେଉଁ ଚଉକିସବୁ ଯାଇଥିଲା, ସେଥିଭିତରୁ ପାଞ୍ଚଟି ଚଉକି ମିଳିନାହିଁ । ତେଣୁ ଆଉ ଅଧିକ ବିଳମ୍ବ ନ କରି ଏହି ପାଞ୍ଚଟି ଚଉକି ମୋତେ ଫେରାଇ ଦେବାଲାଗି ତାଗିଦ୍ ହୋଇଥିଲା । ମୁଁ ତାର ଉତ୍ତରରେ କେବଳ ଲେଖିଥିଲି ଯେ-

''ଏହି ବର୍ଷର ଏହା ଗୋଟିଏ ସର୍ବୋତ୍କୃଷ୍ଟ ହାସ୍ୟକର ଘଟଣା ରୂପେ ବିବେଚିତ ହେବା ଉଚିତ ।''

ଭାରତୀୟ ଅମଲାତାନ୍ତ୍ରିକ ଶାସନରେ ଏପରି ଘଟଣା ବି ଘଟେ !

## (ଖ) ଭୁବନେଶ୍ୱର କଂଗ୍ରେସ - ୧୯୭୭

୧୯୭୭ରେ ଦ୍ୱିତୀୟ ଥର ପାଇଁ ବିଜ୍ଞାନ କଂଗ୍ରେସ ଅଧିବେଶନ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଥିଲା । ଏହାର ପ୍ରାରମ୍ଭିକ କାର୍ଯ୍ୟ ଯୋଜନାବେଳକୁ ଶ୍ରୀ ଜ୍ଞାନଚାନ୍ଦ ଆଇ.ଏ.ଏସ୍. ବିଶ୍ୱବିଦ୍ୟାଳୟର ପ୍ରଶାସକ ଥିଲେ । ସେ ମୋତେ ଡାକି ପୁଣି ସେହି କଥା କହିଲେ ଯେ ତୁମ ଛଡ଼ା ବିଜ୍ଞାନ କଂଗ୍ରେସକୁ ଆଉ କେହି ସମ୍ଭାଳି ପାରିବେ

ନାହିଁ । ତୁମକୁ ରାଜ୍ୟ ସମ୍ପାଦକ ମଣ୍ଡଳୀର ମୁଖ୍ୟ ହୋଇ କାମ କରିବାକୁ ହେବ । ମୁଁ ତାଙ୍କ ପ୍ରସ୍ତାବରେ ପ୍ରଥମେ ଆଦୌ ରାଜି ହୋଇନଥିଲି । କିନ୍ତୁ ସେ ମୋତେ ବହୁତ ବୁଝାଇଥିଲେ ଯେ ବିଶ୍ୱବିଦ୍ୟାଳୟ ମର୍ଯ୍ୟାଦା ଦୃଷ୍ଟିରୁ ମୋତେ ଏ ଦାୟିତ୍ୱ ନେବାକୁ ପଡ଼ିବ । ଶେଷରେ ମୁଁ ବାଧ୍ୟ ହୋଇ ରାଜି ହୋଇଥିଲି । ବାଣୀବିହାର ବିଜ୍ଞାନ କଂଗ୍ରେସ କାମ କରିବା ମୋ ପକ୍ଷରେ ଅତି ଦୁରୂହ କାର୍ଯ୍ୟ ହେବ ବୋଲି ତାଙ୍କୁ କହିଥିଲି । କାରଣ ଏଠି ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକମାନଙ୍କୁ ନେଇ କାମ କରିବା ବହୁତ ଅପ୍ରୀତିକର ହେବ ବୋଲି ମୋର ଧାରଣା ହୋଇଥିଲା । ସେ ମୋତେ କିନ୍ତୁ ପ୍ରତିଶ୍ରୁତି ଦେଇଥିଲେ ଯେ ଏହି ଦାୟିତ୍ୱ ସେ ନିଜେ ଚଳାଇବେ । କିନ୍ତୁ ଦୁର୍ଭାଗ୍ୟବଶତଃ ବିଜ୍ଞାନ କଂଗ୍ରେସର କିଛିଦିନ ପୂର୍ବାରୁ ଜ୍ଞାନଚାନ୍ଦଙ୍କ ସ୍ଥାନରେ ହଠାତ୍ ପ୍ରଫେସର ଗୌତମ ମାଥୁରଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦରେ ସରକାର ଆଣି ବସାଇ ଦେଲେ ।

ପ୍ରକୃତରେ ମୋର ତାପରେ ବହୁତ ଅସୁବିଧା ହେଲା । ପ୍ରଫେସର ମାଥୁରଙ୍କର ଶାସନ କ୍ଷେତ୍ରରେ ଏତେ କମ୍ ଜ୍ଞାନ ଏବଂ ଯେ କୌଣସି ବିଷୟରେ ନିଷ୍ପତ୍ତି ନେବାରେ ସେ ଏତେ ଦୁର୍ବଳ ଓ ଅସମର୍ଥ ଥିଲେ ଯେ ବିଶ୍ୱବିଦ୍ୟାଳୟର ଅବସ୍ଥା ଅଧିକରୁ ଅଧିକ ଖରାପ ହୋଇଚାଲିଲା । ସେ ଏପରି ସନ୍ଦେହୀ ଓ ଅନିଶ୍ଚିତ ମାନସିକ ଅବସ୍ଥାର ଲୋକ ଥିଲେ ଯେ ତାଙ୍କ ଦ୍ୱାରା ମୁଁ କୌଣସି କାମ କରାଇପାରିଲି ନାହିଁ । ଶେଷରେ ସେ ଏତେ ବେଶୀ ଗୋଳମାଳିଆ ପରିସ୍ଥିତି ସୃଷ୍ଟି କରିଥିଲେ ଯେ ବିଜ୍ଞାନ କଂଗ୍ରେସ ଅଧିବେଶନର ପାଞ୍ଚଦିନ ପୂର୍ବ ପର୍ଯ୍ୟନ୍ତ ସେ ଅନେକ ବିଷୟରେ କୌଣସି ଫଳପ୍ରଦ ପଦକ୍ଷେପ ନେଇପାରିନଥିଲେ । ଶେଷକୁ ଏପରି ହେଲା ଯେ କଂଗ୍ରେସର ପାଞ୍ଚଦିନ ପୂର୍ବ ସନ୍ଧ୍ୟାରେ ମୁଁ ଏତେ ବେଶୀ ବିଚଳିତ ହୋଇପଡ଼ିଲି ଯେ ମୋତେ ଅପ୍ରୀତିକର ସିଦ୍ଧାନ୍ତ ନେବାକୁ ପଡ଼ିଲା । ମୁଁ ଫୋନ୍‌ରେ ତାଙ୍କୁ କହିବାକୁ ବାଧ୍ୟହେଲି ଯେ–

''ପ୍ରଫେସର ମାଥୁର, ଆପଣ ଏପରି ଅପାରଗ ଓ ଅନିଶ୍ଚିତ ମାନସିକ ଅବସ୍ଥାର ଲୋକ ଯେ, ଆପଣ ଓ ଆପଣଙ୍କ ଅଫିସରମାନଙ୍କର କୌଣସି ସାହାଯ୍ୟ ମୋର ଆଉ ଦରକାର ନାହିଁ । ମୁଁ ଓଡ଼ିଶା ସରକାରଙ୍କର ସାହାଯ୍ୟରେ ଆଜିଠାରୁ କାମ କରାଇନେବି ।''

ଫୋନ୍ ଥୋଇଦେଲି । ତାପରେ ଓଡ଼ିଶା ସରକାରଙ୍କର ଘରୋଇ ସଚିବ ଶ୍ରୀଯୁକ୍ତ ବିଘ୍ନରାଜ ପଟେଲଙ୍କୁ ଫୋନ୍‌ରେ ଆସିବାକୁ ଅନୁରୋଧ କଲି ଏବଂ କହିଲି ଯେ ସେ ଜଣେ ପୋଲିସ୍ ଡି.ଆଇ.ଜି. ଓ ଜଣେ ଡେପୁଟି ସେକ୍ରେଟାରୀଙ୍କୁ ଧରି ଆସି ପହଞ୍ଚିଲେ ଆମେ ସମସ୍ତେ ମିଶି କାର୍ଯ୍ୟକ୍ରମ ଠିକ୍ କରିବା । ସେତେବେଳକୁ ୧୦ ହଜାର ଡେଲିଗେଟରୁ ମାତ୍ର ଚାରିହଜାର ଡେଲିଗେଟର ଆୟୋଜନ ହୋଇଛି ବୋଲି ସଭାମଞ୍ଚ ଦାୟିତ୍ୱରେ ଥିବା ଅଧ୍ୟାପକ ଜଣାଇଥିଲେ । ଗୋଟିଏ ନୂଆ ହଷ୍ଟେଲରେ ୨୦୦ ଖଟର ବନ୍ଦୋବସ୍ତ ହୋଇପାରିନଥିଲା । ଛଅମାସ ଆଗରୁ ରେଜିଷ୍ଟ୍ରାର ଖର୍ଚ୍ଚ ବରାଦ କରିଥିଲେ, ତଥାପି ସେ ଖଟ ଯୋଗାଇ ପାରିନଥିଲେ । ସେତେବେଳକୁ ସେ ଖାଲି ଦୌଡ଼ୁଥିଲେ କଣ୍ଟ୍ରାକ୍ଟର ପାଖକୁ ଖଟ ଆଣିବାକୁ । ବିଶ୍ୱବିଦ୍ୟାଳୟର ଅଫିସରମାନେ କି କି ଦାୟିତ୍ୱରେ ରହିବେ ତାହା ବହୁଦିନ ଆଗରୁ ଠିକ୍ ହୋଇଥିଲେ ସୁଦ୍ଧା କୁଳପତିଙ୍କଠାରୁ ଆହୁରି ଆଦେଶ ହୋଇନଥାଏ ।

ଏଣେ କୁଳପତିଙ୍କର ଝିଅ ସାଂସ୍କୃତିକ କାର୍ଯ୍ୟକ୍ରମରେ ସ୍ଥାନ ନ ପାଇଲେ ବହୁତ ଅସୁବିଧା' ସୃଷ୍ଟି ହେଉଛି ବୋଲି ଏହି କାର୍ଯ୍ୟକ୍ରମ ଦାୟିତ୍ୱରେ ଥିବା ଶ୍ରୀମତୀ ପ୍ରିୟମ୍ବଦା ହେଜମାଦୀ କହୁଥାନ୍ତି । ମୁଁ ତାଙ୍କୁ କହି ଦେଇଥାଏ ଯେ ସେହି ଝିଅ ପରି ଜଣେ ଅପରିପକ୍ୱ ନର୍ତ୍ତକୀଙ୍କୁ ଏତେବଡ଼ ସାଂସ୍କୃତିକ ଆୟୋଜନରେ କାମ ଦେଇହେବ ନାହିଁ, ଏହା ଚୂଡ଼ାନ୍ତ ନିଷ୍ପତ୍ତି ବୋଲି ସେ କୁଳପତିଙ୍କୁ ଜଣାଇଦେବେ । ତାଙ୍କୁ ଅନ୍ତତଃ ଏପ୍ରକାର ଅପ୍ରୀତିକର ଘଟଣାରୁ ରକ୍ଷା କରି ହେବ ।

ଶ୍ରୀଯୁକ୍ତ ବିଘ୍ନରାଜ ପଟେଲ ଦୁଇଜଣ ଅଫିସରଙ୍କୁ ଧରି ରାତି ନଅଟାରେ ମୋ ଅଫିସରେ ଆସି ପହଞ୍ଚିଲେ । ରାତି ୧୧ଟା ପର୍ଯ୍ୟନ୍ତ ଆମେ ସମସ୍ତେ ବସି ଯାହା ଯାହା ଅଭାବ ଥିଲା ତାକୁ ଦୂର କରିବା ପାଇଁ ଜରୁରୀ ବ୍ୟବସ୍ଥାମାନ ଗ୍ରହଣ କଲୁ । ଅଧିକ ଚଉକି, ବେଞ୍ଚ ଆଣିବା ପାଇଁ ଶେଷରେ ସ୍କୁଲସବୁ ବନ୍ଦ କରାଗଲା । ସେହି ରାତିରେ ଡି.ପି.ଆଇ.ଙ୍କୁ ଫୋନ୍‌ରେ ଅନୁରୋଧ କରାହେଲା । ପୋଲିସ୍ ବାରାକ୍‌ରୁ ଖଟ ପୋଲିସ୍ ଟ୍ରକ୍‌ରେ ବୋହିବାର ବନ୍ଦୋବସ୍ତ ହେଲା । କାରଣ ରେଜିଷ୍ଟ୍ରାରଙ୍କ ଉପରେ ମୋର ଆଉ ଆସ୍ଥା ନଥିଲା ଖଟ ବ୍ୟବସ୍ଥା ହେବାର । ଏହିପରି ଭାବରେ ଯେଉଁ ଯେଉଁ କ୍ଷେତ୍ରରେ ଯାହା ବାକି ଥିଲା ସରକାରୀ ସାହାଯ୍ୟରେ ଉପଯୁକ୍ତ ପଦକ୍ଷେପ ନିଆଗଲା । ଜଣେ ଡେପୁଟି ସେକ୍ରେଟାରୀ ଓ ଜଣେ ଡି.ଆଇ.ଜି. ମୋତେ ସବୁ କାମରେ ସାହାଯ୍ୟ କରିବା ପାଇଁ ବ୍ୟବସ୍ଥା ହେଲା ।

ଆଶ୍ଚର୍ଯ୍ୟର କଥା ଯେ ଯେଉଁ ଅଧ୍ୟାପକ ବହୁ ଆଗ୍ରହର ସହିତ ସଭାମଞ୍ଚ ସାଜସଜ୍ଜା ଦାୟିତ୍ୱ ନେଇଥିଲେ, ସେ ଚାରିହଜାର ଚଉକି ଛଡ଼ା ଅଧିକ ଚଉକିର ବ୍ୟବସ୍ଥା କରିପାରିବେ ନାହିଁ ବୋଲି ତାଙ୍କର ଅସାମର୍ଥ୍ୟ ଜଣାଇଲେ । ଆଉ ଜଣେ ଅଧ୍ୟାପକ ଅଡ଼ି ବସିଲେ ଯେ ପରିବହନ ବ୍ୟବସ୍ଥା ପାଇଁ ଲକ୍ଷେ କୋଡ଼ିଏ ହଜାରରୁ କମ୍ ବ୍ୟବସ୍ଥା ହେଲେ ସେ ସେହି କାମ ତୁଲାଇ ପାରିବେ ନାହିଁ ଅଥଚ ସେଥିପାଇଁ ବଜେଟ୍‌ରେ ମାତ୍ର ୨୦ ହଜାର ଟଙ୍କାର ବ୍ୟବସ୍ଥା ଥାଏ । ମୁଁ ତାଙ୍କୁ ଯେତେ ଚେଷ୍ଟା କଲି ବୁଝାଇବା ପାଇଁ ଏହି ୨୦ ହଜାର ଟଙ୍କା ଯଥେଷ୍ଟ ହେବ ଏବଂ ତାର ବିଶଦ୍ ବିବରଣୀ ମଧ୍ୟ ମୁଁ ତିଆରି କରି ଦେଇଥିଲି– ତଥାପି ସେ ସେଥିରେ ରାଜି ହେଲେ ନାହିଁ । ଏଣେ କୁଳପତିଙ୍କର କୌଣସି ନିଷ୍ପତ୍ତିରେ ପହଞ୍ଚିବାର ଶକ୍ତି ନଥିଲା । ଶେଷକୁ ମୁଁ ତାଙ୍କୁ କୁଳପତିଙ୍କ ପାଖକୁ ପଠାଇଦେଇ କହିଲି ଯେ,

''ପରିବହନ ବ୍ୟବସ୍ଥା ସେ ନିଜେ ସଂପୃକ୍ତ ଅଧ୍ୟାପକ ସହିତ ମିଶି କରନ୍ତୁ, ଏଥିରେ ମୋର କୌଣସି ଦାୟିତ୍ୱ ନାହିଁ ।''

ସେହିପରି ଶେଷ ବେଳକୁ ସ୍ମରଣିକା ପ୍ରକାଶନ ଦାୟିତ୍ୱରେ ଥିବା ଅଧ୍ୟାପକ ଆସି ଦାବୀ କଲେ ଯେ, ''ତାଙ୍କର ୪୦ ହଜାର ଟଙ୍କା ଦରକାର ଏବଂ ସେ ବିଜ୍ଞାପନ ବାବଦରେ କିଛି ବନ୍ଦୋବସ୍ତ କରିପାରି ନାହାନ୍ତି ।''ସେ ସବୁବେଳେ ବିରକ୍ତି ଭାବ ପ୍ରକାଶ କରି କଥା କହନ୍ତି । ତାଙ୍କୁ ମଧ୍ୟ କୁଳପତିଙ୍କ ପାଖକୁ ପଠାଇଦେଲି । ପରେ ଜାଣିଲି ଯେ ଏ ଦୁଇଟି ବିଭାଗରେ ଅଯଥା ବହୁତ ଟଙ୍କା ବିନର୍ବ୍ୟୟ ହୋଇଗଲା । ଏହିପରି ଭାବରେ ଭୁବନେଶ୍ୱର ବିଜ୍ଞାନ କଂଗ୍ରେସରେ ବହୁତ ପ୍ରଶାସନିକ ଓ ସମନ୍ୱୟ ସମ୍ବନ୍ଧୀୟ ବିଶୃଙ୍ଖଳା ଦେଖା ଦେଇଥିଲା । ଯେଉଁ ମୁଖ୍ୟ ଅଧ୍ୟାପକମାନେ ମୋ ସହିତ ସହଯୋଗ କଲେ ନାହିଁ ସେମାନଙ୍କୁ

ମୁଁ ଛାଡ଼ିଦେଇ ସେହି ବିଭାଗର ଅନ୍ୟାନ୍ୟ ଲେକ୍‌ଚରର ଓ ରିଡ଼ରମାନଙ୍କ ସାହାଯ୍ୟରେ ସମସ୍ତ କାମ କରାଇଲି ।

୧୯୬୨ ମସିହା କଂଗ୍ରେସରେ ଏପରି ଅସୁବିଧା ହୋଇନଥିଲା କାରଣ, ଏ ସବୁର ଦାୟିତ୍ୱ ମୁଁ ନିଜେ ନେଇଥିଲି ଓ ଅନ୍ୟମାନେ ମୋ ସହିତ ଆନ୍ତରିକ ସହଯୋଗ କରିଥିଲେ । କିନ୍ତୁ ବାଣୀବିହାର ଅଧ୍ୟାପକମାନେ ତ ବହୁତ ଦାୟିତ୍ୱପୂର୍ଣ୍ଣ ଲୋକ, ସେମାନଙ୍କ ଭିତରୁ ଜଣକୁ ମୁଖ୍ୟ ସମ୍ପାଦକ ରୂପେ ପ୍ରଶାସକ ଜ୍ଞାନଚାନ୍ଦ ବାଛି ନଥିବାରୁ ସେମାନେ କ୍ଷୁବ୍ଧ ହୋଇଥିଲେ । କିନ୍ତୁ ସେମାନଙ୍କ ନିଜ ନିଜର ସାମର୍ଥ୍ୟ ଓ ଦକ୍ଷତା ବିଷୟରେ ଯଥେଷ୍ଟ ସଚେତନ ନଥାଇ ମଧ୍ୟ ସେମାନେ ବହୁତ ବେଶି ଦାୟିତ୍ୱ ଚାହିଁଥିଲେ ଏବଂ ଶେଷରେ ଭୟଙ୍କର ଭାବରେ ଅକୃତକାର୍ଯ୍ୟ ହୋଇଥିଲେ । କିନ୍ତୁ ଏହି ଆୟୋଜନ ଭିତରେ ମୁଁ ଆଉ ଗୋଟିଏ ଭଲ ଜିନିଷ ଆବିଷ୍କାର କଲି ଯେ ବିଶ୍ୱବିଦ୍ୟାଳୟର ମୁଖ୍ୟ ଅଧ୍ୟାପକମାନଙ୍କୁ ଛାଡ଼ିଦେଲେ ବହୁ ରିଡ଼ର ଏବଂ ଲେକ୍‌ଚର ଅଛନ୍ତି, ଯେଉଁମାନଙ୍କଠାରେ କାର୍ଯ୍ୟଦକ୍ଷତା, କର୍ମକୁଶଳତା, ନିୟମିତତା ପ୍ରଭୃତି ସାମର୍ଥ୍ୟ ରହିଛି । ଏହି ଅଧ୍ୟାପକ ଓ ଛାତ୍ରସ୍ୱେଚ୍ଛାସେବୀମାନଙ୍କ ସାହାଯ୍ୟରେ ବିଜ୍ଞାନ କଂଗ୍ରେସ ଶେଷରେ ସୁନ୍ଦର ଭାବରେ ଆୟୋଜିତ ହୋଇପାରିଥିଲା ।

ସବୁଠାରୁ ବେଶୀ ଅଯୋଗ୍ୟ ଥିଲେ କୁଳପତି ମାଥୁର । ଶେଷ ପାଞ୍ଚଦିନ ମୋ ସହିତ ତାଙ୍କର କଥାବାର୍ତ୍ତା ବନ୍ଦ ଥିଲା । କଂଗ୍ରେସ ଅଧିବେଶନ ପୂର୍ବ ରାତ୍ରି ୧୨ଟା ପର୍ଯ୍ୟନ୍ତ ମୁଁ ପେଣ୍ଡାଲରେ ରହି ଅତିଥିମାନଙ୍କର ବସିବା ପାଇଁ ସେମାନଙ୍କର ନିମନ୍ତ୍ରଣ ପତ୍ର ନମ୍ବର ଓ ବ୍ଲକ୍ ଅନୁସାରେ ବନ୍ଦୋବସ୍ତ କରି ଘରକୁ ଫେରିଲି । ସେମାନେ କେଉଁ କେଉଁ ଫାଟକ ବାଟେ ଭିତରକୁ ପ୍ରବେଶ କରିବେ ତାର ବ୍ୟବସ୍ଥା ମଧ୍ୟ ବହୁ ପୂର୍ବରୁ ଚୂଡ଼ାନ୍ତ ହୋଇଥିଲା । ମୁଁ ଏହି ବ୍ୟବସ୍ଥା କରି ରାତି ୧୨ଟାରେ ଫେରିଲା ବେଳକୁ କୁଳପତି ମାଥୁର ଓ ତାଙ୍କ ସ୍ତ୍ରୀ ସେଠାରେ ଏପାଖ ସେପାଖ ହେଉଥାନ୍ତି । ମୁଁ ସେଠାରେ ଥିବା ପର୍ଯ୍ୟନ୍ତ ସେ ଦୁଇଜଣ ବାହାରେ ବୁଲୁଥିଲେ । ମୁଁ ବୁଝିପାରୁ ନଥିଲି ସେମାନେ ରାତି ଅଧରେ ଏପରି ଲୁଚିଛପି କାହିଁକି ବୁଲୁଛନ୍ତି । ପରେ ଜାଣିଲି ଯେ, ମୁଁ ଚାଲିଗଲା ପରେ ସେ ତାଙ୍କର କେତେକ କର୍ମଚାରୀଙ୍କୁ ଧରି ସାମନା କେତେ ଧାଡ଼ି ଚଉକି ବ୍ୟବସ୍ଥାର ଗଣ୍ଡଗୋଳ କରିଦେଲେ । ଓଡ଼ିଶା ସରକାରଙ୍କର ସବୁ ବଡ଼ ବଡ଼ ଅଫିସର ଓ ବିଧାୟକମାନେ କିପରି କେବଳ ସାମନା ଚଉକିରେ ବସିବେ ତାର ବ୍ୟବସ୍ଥା କଲେ । ଫଳରେ ସାମ୍ବାଦିକ ଓ ଅନ୍ୟାନ୍ୟ ବିଶିଷ୍ଟ ଲୋକଙ୍କର ବସିବାର ନିର୍ଦ୍ଦିଷ୍ଟ ବ୍ଲକ୍‌ରେ ଗଣ୍ଡଗୋଳ ହୋଇଗଲା । ଗୋଟିଏ ବ୍ଲକ୍‌ରେ ବିଧାୟକ ଓ ଅନ୍ୟ ଏକ ବ୍ଲକ୍‌ରେ ସରକାରୀ ଅଫିସରଙ୍କର ବସିବାର ବ୍ୟବସ୍ଥା ହୋଇଥିଲା । ସେହି ଅନୁସାରେ ତାଙ୍କ ନିମନ୍ତ୍ରଣ ପତ୍ରରେ ବ୍ଲକ୍ ଓ ଫାଟକ ନମ୍ବର ଛପା ହୋଇଥାଏ, କିନ୍ତୁ କୁଳପତି ମହାଶୟ ଅଫିସର ଓ ବିଧାୟକମାନଙ୍କୁ କେବଳ ସାମନା ପ୍ରଥମ ଧାଡ଼ିରେ ବସିବାର ଯେଉଁ ଗଣ୍ଡଗୋଳିଆ ବ୍ୟବସ୍ଥା କରିଦେଲେ ସେଥିରେ ସମସ୍ତଙ୍କର ବହୁତ ଅସୁବିଧା ହୋଇଥିଲା । ମୁଁ ସେ କଥା ଜାଣିପାରିନଥିଲି ।

କି ଅଯୋଗ୍ୟ ଓ ଖୋସାମତିଆ ସେ ଥିଲେ— ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସେଥିଲାଗି ବୋଧହୁଏ ଓଡ଼ିଶା ସରକାର ଦିଲ୍ଲୀ ଦରବାରର କର୍ତ୍ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ

ତାଙ୍କୁ କୁଳପତି କରି ଥୋଇ ଦେଇଥିଲେ  ବାଣୀ ବିହାରର ଯେକୌଣସି ଅଧ୍ୟାପକଙ୍କଠାରୁ ସେ ନ୍ୟୁନ ଥିଲେ ବହୁ କ୍ଷେତ୍ରରେ । ହତଭାଗ୍ୟ ଓଡ଼ିଶାର ନେତାମାନେ ଓଡ଼ିଆ ଲୋକଙ୍କ ବିରୁଦ୍ଧରେ ସବୁବେଳେ ଏପରି ଷଡ଼ଯନ୍ତ୍ର କରିବାରେ ଅଭ୍ୟସ୍ତ । ନିଜର ହୀନମନ୍ୟତା ଯୋଗୁ ଅଣଓଡ଼ିଆଙ୍କୁ ବେଶୀ ମର୍ଯ୍ୟାଦା ଦିଅନ୍ତି । ଏହା ଓଡ଼ିଶାର ନେତାମାନଙ୍କର ଚିରାଚରିତ ଚରିତ୍ରଗତ ଦୁର୍ବଳତା । ତା' ନହେଲେ ଓଡ଼ିଶାର ପ୍ରତିନିଧି ହିସାବରେ ରାଜ୍ୟସଭାକୁ ନିର୍ବାଚିତ ହୁଅନ୍ତେ କେରଳର ଜଣେ ଅଜ୍ଞାତ ଅଶ୍ରୁତ, ଅର୍ବାଚୀନ ଲୋକ ପାନିକର ?

ଜରୁରୀକାଳୀନ ଅବସ୍ଥା ଯୋଗୁ ଆହୁରି କେତେକ ପ୍ରତିବନ୍ଧକ ଏହାର ଆୟୋଜନ ଲାଗି ଦେଖା ଦେଇଥିଲା । ପେଣ୍ଡାଲ ତିଆରି କାମ ଓଡ଼ିଶା ପୂର୍ତ୍ତ ବିଭାଗର କରିବା କଥା । ଅନ୍ୟ କଣ୍ଟ୍ରାକ୍ଟର ଦ୍ୱାରା ତିଆରି କରିବା ମନା ହେଲା, କାରଣ ପ୍ରଧାନମନ୍ତ୍ରୀଙ୍କ ନିରାପତ୍ତା ବ୍ୟାହତ ହେବ । ପୂର୍ତ୍ତବିଭାଗ ଏଥିପାଇଁ ବିଶ୍ୱବିଦ୍ୟାଳୟକୁ ଦେଢ଼ଲକ୍ଷ ଟଙ୍କା ମାଗିଲେ । ବିଶ୍ୱବିଦ୍ୟାଳୟର ଏତେ ଟଙ୍କା ବା କୁଆଡୁ ଆସିବ ? ଅଥଚ କୁଳପତି ମୁଖ୍ୟମନ୍ତ୍ରୀ ବା ମୁଖ୍ୟ ସଚିବଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କରିବାକୁ ଅସମର୍ଥ । ଏ ବିଷୟରେ କୌଣସି ନିଷ୍ପତ୍ତି ହୋଇପାରୁନଥାଏ । ଶେଷରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିନାୟକ ଆଚାର୍ଯ୍ୟ ଓ ମୁଖ୍ୟ ସଚିବ ଶ୍ରୀ ଡାଭେଙ୍କ ସହିତ ମୁଁ କଥାବାର୍ତ୍ତା ହେଲି । ମୁଖ୍ୟ ସଚିବ ସେକ୍ରେଟେରୀମାନଙ୍କର ଗୋଟିଏ ସଭା ଡାକିଲେ । ସେଥିରେ ମୁଁ ଓ କୁଳପତି ଥିଲୁ । କୁଳପତି ତ କିଛି କହିବେ ନାହିଁ । ମୁଁ ବହୁତ ଯୁକ୍ତିତର୍କ କଲା ପରେ ମୁଖ୍ୟ ସଚିବ ସମସ୍ତଙ୍କୁ ରାଜି କରାଇ ସେହି ସଭାରେ ସରକାରୀ ନିର୍ଦ୍ଦେଶନାମା ଘୋଷିତ ହୋଇଥିଲା ଯେ ଆଗତୁରା ଡିପୋଜିଟ୍ ବିନା ଆମେମାନେ ଯାହା କହିବୁ ସଂପୃକ୍ତ ସରକାରୀ ବିଭାଗ କାମ କରିଦେବେ ଏବଂ ପରେ ତାର ହିସାବ ନିକାଶ ହେବ । ତା' ନ ହୋଇଥିଲେ କାମ ଆଦୌ ହୋଇପାରିନଥାନ୍ତା । ମୁଖ୍ୟ ସଚିବ ଶ୍ରୀଯୁକ୍ତ ଡାଭେ ଓ ଘରୋଇ ସଚିବ ଶ୍ରୀଯୁକ୍ତ ପଟେଲଙ୍କ ଛଡ଼ା ଆଉ କୌଣସି ସଚିବଙ୍କଠାରୁ  ଆନ୍ତରିକ ସାହାଯ୍ୟ ଆମେ ପାରିପାରି ନଥିଲୁ । ଏହି କେତେମାସର ଅଭିଜ୍ଞତାରୁ ଓଡ଼ିଶା ସରକାରଙ୍କର ସେକ୍ରେଟାରୀମାନଙ୍କର ଦକ୍ଷତା ତଥା ଆନ୍ତରିକତା ବିଷୟରେ ମୋର ଭଲ ଧାରଣା ହେଲା ନାହିଁ । ମୋତେ କାହିଁକି ସେମାନେ ବହୁତ ବେଶୀ ମ୍ରିୟମାଣ, ଉଦାସୀନ ତଥା ଅନାଗ୍ରହୀ ବୋଲି ମନେହେଲେ ।

ଜରୁରୀକାଳୀନ ପରିସ୍ଥିତି ଯୋଗୁ କେନ୍ଦ୍ର ଗୋଇନ୍ଦା ଓ ନିରାପତ୍ତା ବିଭାଗ ଆହୁରି ଗୋଟିଏ ଜଟିଳ ସମସ୍ୟା ସୃଷ୍ଟି କରିଥିଲେ । ଘରୋଇ ସଚିବ ଶ୍ରୀଯୁକ୍ତ ବିଘ୍ନରାଜ ପଟେଲଙ୍କ ଅଧ୍ୟକ୍ଷତାରେ ଏମାନଙ୍କର ସଭା ଆହୂତ ହୋଇଥିଲା ଏବଂ ମୁଁ ସେହି ସଭାରେ ଉପସ୍ଥିତ ଥାଏ । ସେମାନେ ଜିଦ୍ ଧରି ବସିଲେ ଯେ ପ୍ରତ୍ୟେକ ବିଜ୍ଞାନ କଂଗ୍ରେସ ସଭ୍ୟ ଓ ଅତିଥିଙ୍କୁ ସେମାନେ ଯାଞ୍ଚ କରିବେ ସଭା ମଞ୍ଚରେ ପଶିବା ସମୟରେ । ଠିକ୍ ଏହି କାରଣରୁ ତା ପୂର୍ବ ବିଜ୍ଞାନ କଂଗ୍ରେସ ବିଶାଖାପାଟଣାରେ ଅନୁଷ୍ଠିତ ହୋଇଥିବା ବେଳେ ପ୍ରାୟ ଅଧାଅଧି ବିଜ୍ଞାନ କଂଗ୍ରେସ ସଭ୍ୟ ପ୍ରଥମ ଖୋଲା ଅଧିବେଶନରେ ଯୋଗ ଦେଇପାରି ନଥିଲେ । କାରଣ ଏମାନଙ୍କ ଦ୍ୱାରା ଯାଞ୍ଚ ଏତେ ସମୟସାପେକ୍ଷ ହୋଇଥିଲା ଯେ ବହୁ ଲୋକ ବାହାରେ ରହି ଯାଇଥିଲେ ।  ଏହା ସଭ୍ୟମାନଙ୍କୁ ଏପରି ଆନ୍ଦୋଳିତ କରିଥିଲା ଯେ ବିଜ୍ଞାନ କଂଗ୍ରେସ ସଭ୍ୟଙ୍କର ସାଧାରଣ ସଭାରେ ମୁଁ ଗୋଟିଏ ପ୍ରସ୍ତାବ ଆଗତ କରିଥିଲି ଯେ ଭବିଷ୍ୟତରେ

ବିଜ୍ଞାନ କଂଗ୍ରେସକୁ ପ୍ରଧାନମନ୍ତ୍ରୀଙ୍କୁ ନିମନ୍ତ୍ରଣ ନ କରିବା ପାଇଁ । ଏ ପ୍ରସ୍ତାବ ପ୍ରତି ଅଧିକାଂଶ ସଭ୍ୟ ସମର୍ଥନ ଜଣାଇଥିଲେ । କିନ୍ତୁ କେତେକ ଚାଟୁକାର ସରକାରୀ ବିଜ୍ଞାନୀ ହାତଯୋଡ଼ି ଅନୁରୋଧ କରିଥିଲେ ଏପ୍ରକାର ପ୍ରସ୍ତାବ ଆଗତ ନ କରିବା ପାଇଁ । ମୁଁ ପ୍ରସ୍ତାବ ପ୍ରତ୍ୟାହାର କରି କହିଥିଲି ଯେ ଭବିଷ୍ୟତରେ ଯଦି କଂଗ୍ରେସର ସଭ୍ୟମାନଙ୍କର ପ୍ରଥମ ଅଧିବେଶନକୁ ଯିବାରେ ଏପରି ଅସୁବିଧା ସୃଷ୍ଟି କରାଯାଏ ତାହାହେଲେ ମୁଁ ପୁଣି ଆଉ ଥରେ ଏ ପ୍ରସ୍ତାବ ଆଣିବି । ଅଥଚ ଠିକ୍ ତା' ପରବର୍ଷ ମୁଁ ଏହାର ଦାୟିତ୍ୱରେ ରହିଲି ।

ଘରୋଇ ସଚିବଙ୍କ ସଭାରେ ମୁଁ ଏକଥା କହି ଜିଦ୍ ଧରି ବସିଲି ଯେ ପ୍ରଧାନମନ୍ତ୍ରୀଙ୍କ ନିରାପତ୍ତାର ବ୍ୟବସ୍ଥା ସେମାନେ କରନ୍ତୁ, କିନ୍ତୁ ସେଥିପାଇଁ ପ୍ରାୟ ୧୦ ହଜାର ସଭ୍ୟ ଓ ଅତିଥିଙ୍କୁ ଯାଞ୍ଚ କରିବା ଆଳରେ ହଇରାଣ କରିବା ଉଚିତ୍ ନୁହେଁ । ଗୋଇନ୍ଦା ବିଭାଗ ଯଦି ଏଥିରେ ରାଜି ନ ହୁଅନ୍ତି, ତା'ହେଲେ ମୁଁ ଠିକ୍ ଏହି କାରଣରୁ ମୋ ସମ୍ପାଦକ ପଦରୁ ଇସ୍ତଫା ଦେବି ଏବଂ ପ୍ରଧାନମନ୍ତ୍ରୀଙ୍କୁ ମଧ ଏକଥା ଜଣାଇଦେବି ଯେ ତାଙ୍କର ନିରାପତ୍ତା ବିଭାଗ ଜଣଙ୍କର ନିରାପତ୍ତା ବ୍ୟବସ୍ଥା ପାଇଁ ୧୦ ହଜାର ନିମନ୍ତ୍ରିତ ବ୍ୟକ୍ତିଙ୍କୁ ହଇରାଣ କରିବାରେ ବଦ୍ଧ ପରିକର । ମୋ ସହିତ ଘରୋଇ ସଚିବ ଶ୍ରୀଯୁକ୍ତ ପଟେଲ ଏକମତ ହେଲେ । ତା'ପରେ ଠିକ୍ ହେଲା ଯେ ସଭାମଞ୍ଚର ମୁଖ୍ୟ ଫାଟକ ଭିତର ଦେଇ ପ୍ରବେଶ କରୁଥିବା ବିଜ୍ଞାନୀମାନଙ୍କର ଶୋଭାଯାତ୍ରାରେ ପ୍ରଧାନମନ୍ତ୍ରୀ ଯୋଗ ଦେବେ ନାହିଁ । ସେ ପେଣ୍ଡାଲର ପଛପଟୁ ଆଉ ଗୋଟିଏ ସ୍ୱତନ୍ତ୍ର ରାସ୍ତା ଦେଇ ଆସିବେ ଏବଂ ଶୋଭାଯାତ୍ରାରେ ଆସୁଥିବା ବିଜ୍ଞାନୀମାନେ ପେଣ୍ଡାଲ ଉପରକୁ ଆସିବା ପରେ ପ୍ରଧାନମନ୍ତ୍ରୀ ଆସି ପହଞ୍ଚିବେ । ମୋର ଏହି ପ୍ରସ୍ତାବରେ ସମସ୍ତେ ଏକମତ ହେଲେ । କିନ୍ତୁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଏଥିଲାଗି ଦୁଃଖିତ ହୋଇଥିଲେ ଏବଂ ବିଜ୍ଞାନ କଂଗ୍ରେସ ସମୟରେ ତାଙ୍କର ନିରାପତ୍ତାରକ୍ଷୀଙ୍କୁ ମୋ ଆଗରେ ଭର୍ତ୍ସନା କରିଥିଲେ । କାରଣ ମୋତେ ତାଙ୍କୁ ବୁଝାଇବାକୁ ପଡ଼ିଥିଲା ଯେ କି ପରିସ୍ଥିତିରେ ସେ ଶୋଭାଯାତ୍ରାରେ ଯୋଗ ଦେଇପାରି ନଥିଲେ ।

ଏପରି ଭାବରେ ନାନା ବାଧାବିଘ୍ନ ଭିତର ଦେଇ ୧୯୭୭ କଂଗ୍ରେସ ମଧ କୌଣସିମତେ ହୋଇପାରିଥିଲା । କିନ୍ତୁ ୧୯୬୨ର କଂଗ୍ରେସ ପରି ଏତେ ବେଶୀ ଚମତ୍କାର ଓ ସର୍ବୋତ୍କୃଷ୍ଟ ବୋଲି ସମସ୍ତଙ୍କର ସ୍ୱୀକୃତ ହେଲାନାହିଁ । ବେଶୀ କିଛି ଅସୁବିଧା ନ ହୋଇ କୌଣସିମତେ ହୋଇଗଲା । ଏଥିଲାଗି ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟଙ୍କର ଅକୁଣ୍ଠିତ ସହଯୋଗ ଚିରସ୍ମରଣୀୟ ହୋଇ ରହିଥିବ । ସେ ଏପରି ଅମାୟିକ, ସରଳ ଓ ଭଦ୍ର ଥିଲେ ଯେ ଥରେ ଏହି ବିଜ୍ଞାନ କଂଗ୍ରେସ ସମ୍ପର୍କରେ ମୋର ସାକ୍ଷାତ ପାଇଁ ନିର୍ଦ୍ଦିଷ୍ଟ ସମୟର ଅଧଘଣ୍ଟାଏ ପୂର୍ବରୁ ସେ ନିଜେ ମୋତେ ଫୋନ୍‌ରେ କହିଥିଲେ ଯେ ତାଙ୍କର ଟିକିଏ ଅସୁବିଧା ଯୋଗୁ ନିର୍ଦ୍ଦିଷ୍ଟ ସମୟର ଅଧଘଣ୍ଟା ପରେ ମୋତେ ଯିବା ପାଇଁ । ମାତ୍ର ଅଧଘଣ୍ଟାଏ ବିଳମ୍ବ ପାଇଁ କେଉଁ ମୁଖ୍ୟମନ୍ତ୍ରୀ ଏପରି ଅନୁରୋଧ କରିବେ ? ଏହା ତାଙ୍କର ସମୟାନୁବର୍ତ୍ତିତା ତଥା ଅନ୍ୟମାନଙ୍କ ପ୍ରତି ଗଭୀର ସମ୍ମାନର ସୂଚନା ଦେଉଛି । ତାଙ୍କ ପରାମର୍ଶରେ ଏ ସମ୍ପର୍କରେ ମୁଁ କାମ କରିବାରେ ମୋର ବହୁତ ଆନନ୍ଦ ହୋଇଥିଲା ।

■ ■ ■

# ୧୬

# ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ପରିଷଦ

## (କ) ପ୍ରାଥମିକ ଶିକ୍ଷା ପରିଷଦ

୧୯୬୨ ବିଜ୍ଞାନ କଂଗ୍ରେସ ପରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ଓଡ଼ିଶାରେ ଶିକ୍ଷାର ଉନ୍ନତି ଲାଗି ନାନା ଆଲୋଚନା ହୋଇଥିଲା । ମୋ ସହିତ ସେ ଏକମତ ହୋଇଥିଲେ ଯେ ଶିକ୍ଷା କ୍ଷେତ୍ରରେ ପ୍ରଥମେ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ବିକାଶର ଆବଶ୍ୟକତା ରହିଛି । ଏଥିଲାଗି ସେ ଗୋଟିଏ କମିଟି ଗଠନ କଲେ । ସେଥିରେ ସେ ସଭାପତି, ଶିକ୍ଷାମନ୍ତ୍ରୀ, ମୁଖ୍ୟ ସଚିବ, ଶିକ୍ଷା ସଚିବ, ଡି.ପି.ଆଇ. ପ୍ରାଥମିକ ସ୍କୁଲ ବହି ତିଆରି ଲାଗି ବିଶେଷ ଆଗ୍ରହୀ, ଜାତୀୟ କବି ଶ୍ରୀ ବୀରକିଶୋର ଦାସ, ଛାପାଖାନା ବିଶେଷଜ୍ଞ ଶ୍ରୀ ଶକ୍ତି ପ୍ରସାଦ ମିଶ୍ର ଓ ମୁଁ ଏହାର ସଭ୍ୟ ଥିଲୁ । ଆଲୋଚନାବେଳେ ନିଷ୍ପତ୍ତି ହେଲା ଯେ ପ୍ରାଥମିକ ସ୍ତରରେ ପ୍ରଚଳିତ ପାଠ୍ୟପୁସ୍ତକଗୁଡ଼ିକର ଜାତୀୟକରଣ ହେବା ଦରକାର । ପ୍ରଚଳିତ ପାଠ୍ୟପୁସ୍ତକଗୁଡ଼ିକର ବିଶ୍ଳେଷଣ କରି ବିଶିଷ୍ଟ ଲେଖକମାନଙ୍କ ଦ୍ୱାରା ନୂତନ ଆଭିମୁଖ୍ୟ ରଖି ନୂଆ ଧରଣର ବହି ପ୍ରସ୍ତୁତ ହେବା ବାଞ୍ଛନୀୟ । ପିଲାଙ୍କ ମନଲାଖି ଚିତ୍ତାକର୍ଷକ ବହୁମୁଖୀ ରଙ୍ଗିନ୍ ଛବିମାନ ସେଥିରେ ରହିବ ଏବଂ ଏହାର ମୁଦ୍ରଣ ମଧ୍ୟ ଉଚ୍ଚକୋଟୀର ହେବ ।

ଏ ପ୍ରକାର ଜାତୀୟକରଣ ପୁସ୍ତକ ପ୍ରକାଶନ ପାଇଁ ଗୋଟିଏ ବିଶେଷ ଧରଣର ଗୁଣାତ୍ମକ ଆଧୁନିକ ଛାପାଖାନା ସ୍ଥାପନ କରାଯିବାର ନିଷ୍ପତ୍ତି ମଧ୍ୟ ହେଲା । ଏଥିରେ କୋଟିଏ ପର୍ଯ୍ୟନ୍ତ ଟଙ୍କା ଖର୍ଚ୍ଚ ହେବାର ପ୍ରସ୍ତାବକୁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ସାଙ୍ଗେ ସାଙ୍ଗେ ଗ୍ରହଣ କରିନେଲେ । ତା'ଛଡ଼ା ମୁଁ ଆଉ ଗୋଟିଏ ପ୍ରସ୍ତାବ ବିଶେଷ ଜୋର୍ ଦେଇ ଆଗତ କରିଥିଲି ଯେ ପିଲାମାନଙ୍କୁ ବିଜ୍ଞାନ ଓ ଆଧୁନିକଯୁଗ ଆଦର୍ଶରେ ଅନୁପ୍ରାଣିତ ତଥା ଉପଯୁକ୍ତ ଭାବରେ ଶିକ୍ଷାପ୍ରାପ୍ତ କରିବା ପାଇଁ ପ୍ରତ୍ୟେକ ସ୍କୁଲରେ ଗୋଟିଏ ଅଧିକ ବଖରା ତିଆରି କରି ସେଠାରେ ବହୁପ୍ରକାର ଯାନ୍ତ୍ରିକ ଖେଳଣା ରଖାଯାଉ । ଏହି ଘରର କାନ୍ଥରେ ହୀରାକୁଦ, ରାଉରକେଲା, ଜେଟ୍ ଉଡ଼ାଜାହାଜ ପ୍ରଭୃତି ଅତ୍ୟାଧୁନିକ ଇଂଜିନିୟରିଂ କୃତିତ୍ୱ ଓ କଳକାରଖାନା, ଯନ୍ତ୍ରପାତିର ବଡ଼ ବଡ଼ ରଙ୍ଗିନ୍ ଚିତ୍ର ରଖାଯାଉ ଅର୍ଥାତ୍ ଯେଉଁ ପିଲାମାନେ

ଘରେ ଏ ପ୍ରକାର ଖବର ପାଇପାରୁନାହାନ୍ତି ସେମାନଙ୍କଠାରେ ବୈଜ୍ଞାନିକ ମନୋବୃତ୍ତି ଓ ଯନ୍ତ୍ରପାତି ପ୍ରୟୋଗ ବିଜ୍ଞାନରେ ଆଗ୍ରହ ସୃଷ୍ଟି କରିବା ପାଇଁ ସ୍କୁଲରେ ତାହାର ବ୍ୟବସ୍ଥା କରାଯାଉ । ଏହି ଯାନ୍ତ୍ରିକ ଖେଳଣାସବୁ ସରକାରୀ ଦାୟିତ୍ୱରେ ଉତ୍ପାଦନ କରାଯାଉ । ମୋର ଏହି ପ୍ରସ୍ତାବରେ ମଧ୍ୟ ସେ ରାଜି ହୋଇଥିଲେ ।

ତୃତୀୟରେ ପିଲାମାନଙ୍କ ପାଇଁ ଉପଯୁକ୍ତ ଚଳଚ୍ଚିତ୍ର ତିଆରି କରି ଭ୍ରାମ୍ୟମାଣ ଚଳଚ୍ଚିତ୍ର ପ୍ରଦର୍ଶକ ଗାଡ଼ି ସାହାଯ୍ୟରେ ସ୍କୁଲମାନଙ୍କରେ ପ୍ରଦର୍ଶିତ ହେଉ । ଏହିପରି ପ୍ରାଥମିକ ସ୍କୁଲ ପିଲାଙ୍କ ପାଇଁ ବହୁବିଧ ଆଧୁନିକ ଶିକ୍ଷା ପ୍ରଣାଳୀ ପଦ୍ଧତି ବିଷୟରେ ବିଶଦ ଆଲୋଚନା ହୋଇଥିଲା । ବିଜୁବାବୁ ମୋର ସମସ୍ତ ପ୍ରସ୍ତାବରେ ରାଜି ହୋଇ ଏହାର ପୂର୍ଣ୍ଣାଙ୍ଗ ରୂପରେଖ ପ୍ରସ୍ତୁତ କରି ଆସନ୍ତା ସଭାରେ ଉପସ୍ଥାପିତ କରିବା ପାଇଁ ମୋତେ ଅନୁରୋଧ କରିଥିଲେ । ମୁଁ ବିଜୁବାବୁଙ୍କର ପ୍ରଗତିଶୀଳ ଦୃଷ୍ଟିକୋଣ ତଥା ଦୃଢ଼ ନିଷ୍ପତ୍ତିରେ ଅତ୍ୟନ୍ତ ଉତ୍ସାହିତ ହୋଇଥିଲି ।

ମୁଁ ପିଲାମାନଙ୍କର ବୈଜ୍ଞାନିକ ଚିନ୍ତାଧାରାର ବିକାଶ ପାଇଁ ଦୁଇ ତିନି ପୃଷ୍ଠାର ଗୋଟିଏ ଚିଠା ତିଆରି କଲି । ପ୍ରତ୍ୟେକ ସ୍କୁଲରେ ଗୋଟିଏ ଖେଳଘର ରହିବାର ଯୋଜନା ହେଲା । ତାର ନାଁ ରହିଲା 'କଳଘର' । କି ପ୍ରକାର ଚଳଚ୍ଚିତ୍ର ଏବଂ କେଉଁ ବିଷୟରେ ଅତିରିକ୍ତ ପାଠ୍ୟପୁସ୍ତକ ପ୍ରକାଶ କରାଯାଇପାରିବ, କି ପ୍ରକାର ବିଷୟବସ୍ତୁ ଉପରେ ଗଳ୍ପ ଲେଖାଯାଇପାରିବ ତାର ସୂଚନା ରହିଲା ।

ଜାତୀୟ କବି ବୀରକିଶୋର ଦାସ ନୂତନ ଧରଣର ପାଠ୍ୟପୁସ୍ତକ ଲେଖା ଦିଗରେ ବହୁତ ଉତ୍ସାହ ପ୍ରଦର୍ଶନ କରିଥିଲେ । ସେତେବେଳକୁ ଶ୍ରୀ ଶକ୍ତି ପ୍ରସାଦ ମିଶ୍ର ବିଲାତରୁ ଆଧୁନିକ ମୁଦ୍ରଣ ଶୈଳୀ ବିଷୟରେ ବିଶେଷ ଦକ୍ଷତା ଅର୍ଜନ କରି ସରକାରୀ ପ୍ରେସ୍‌ରେ କାର୍ଯ୍ୟ କରୁଥାନ୍ତି । ସେ ଉତ୍କୃଷ୍ଟ ଧରଣର ପାଠ୍ୟପୁସ୍ତକ ପ୍ରକାଶନ ପାଇଁ ଗୋଟିଏ ନୂତନ ଛାପାଖାନାର ବିଶଦ ଯୋଜନା ତିଆରି କଲେ । ଏସବୁ ବିବରଣୀ କମିଟି ଆଗରେ ଉପସ୍ଥାପିତ ହେଲା । ଆମ ପ୍ରସ୍ତାବରେ ତତ୍କାଳୀନ କେତେକ ଶିକ୍ଷାକର୍ତ୍ତା ଭୟଙ୍କର ଆପତ୍ତି ଉଠାଇଥିଲେ । ସେମାନଙ୍କ ଭିତରୁ ଜଣେ ମୋ ପ୍ରସ୍ତାବକୁ ହସି ଉଡ଼ାଇଦେଲେ ଯେ ବର୍ତ୍ତମାନ ଅନେକ ପ୍ରାଥମିକ ସ୍କୁଲରେ ଗୋଟିଏ ବୋଲି ଭଲ ବଖରା ଘର ନାହିଁ ଅଥଚ ମୋ ପ୍ରସ୍ତାବରେ ଅଧିକ ଗୋଟିଏ ଘର ପାଇଁ ବ୍ୟବସ୍ଥା ହୋଇଛି । ତତ୍କାଳୀନ ଶିକ୍ଷାମନ୍ତ୍ରୀ ଆମ ଦେଶରେ ବିଜ୍ଞାନ ବିଷୟରେ ଏତେ ବେଶୀ ଜୋର୍ ଦେବା ଉଚିତ ନୁହେଁ ବୋଲି ଆପତ୍ତି କରିଥିଲେ । କିନ୍ତୁ ବିଜୁବାବୁ ଏମାନଙ୍କର ଆପତ୍ତି ଅଭିଯୋଗ ପ୍ରତି ଭୃକ୍ଷେପ ନ କରି ମୋ ପ୍ରସ୍ତାବକୁ ସଂପୂର୍ଣ୍ଣରୂପେ ଗ୍ରହଣ କରିନେଲେ ଏବଂ କହିଲେ ଯେ ବିନା ଅର୍ଥବ୍ୟୟରେ ଶିକ୍ଷାର ପ୍ରସାର ତଥା ଗୁଣାତ୍ମକ ମାନ ବୃଦ୍ଧି ସମ୍ଭବ ନୁହେଁ । ଏହି ସଭାରେ ବହି ଜାତୀୟକରଣ ନୀତି ଗୃହୀତ ହେଲା ଏବଂ ପୁସ୍ତକ ପ୍ରକାଶନ ପାଇଁ ଗୋଟିଏ ଅତି ଆଧୁନିକ ଛାପାଖାନା ତିଆରିର ଯୋଜନା ହେଲା । ଏଥିପାଇଁ ସମସ୍ତ ଖର୍ଚ୍ଚର ବ୍ୟବସ୍ଥା ହେବ ବୋଲି ମୁଖ୍ୟମନ୍ତ୍ରୀ ଘୋଷଣା କଲେ । ବର୍ତ୍ତମାନ ସୁଦ୍ଧା ସରକାରଙ୍କ ଦ୍ୱାରା ପ୍ରକାଶିତ ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ପୁସ୍ତିକାରେ ମୋର ଏହି ତିନିପୃଷ୍ଠା ସେହିପରି ରହିଛି । ଯଦିଚ ବିଜୁବାବୁଙ୍କ ପରେ ପାଠ୍ୟ ପୁସ୍ତକ ପ୍ରକାଶନ ବ୍ୟତୀତ ଅନ୍ୟ କୌଣସି ପଦକ୍ଷେପ ନିଆ ହୋଇନାହିଁ ।

ଏହି ସିଦ୍ଧାନ୍ତରେ ବୀରବାବୁ, ଶକ୍ତି ପ୍ରସାଦ ବାବୁ ଏବଂ ମୁଁ ବହୁତ ଉତ୍ସାହିତ ହୋଇଥିଲୁ । ଆମେ ଏହାର ଯୋଜନା ବିଶଦ ଭାବରେ କଲୁ । ବିଜୁବାବୁ ସିନା କହିଦେଲେ, କିନ୍ତୁ ତାଙ୍କର ଅମଲା ତାନ୍ତ୍ରିକ ଅଫିସରମାନେ ତାଙ୍କ ଆଦେଶକୁ ଗୁରୁତର ଭାବେ ବିଚାର କରିନଥିଲେ । ତତ୍କାଳୀନ ସରକାରୀ ପ୍ରେସ୍ ସୁପରିନ୍‌ଟେଣ୍ଡେଣ୍ଟ ମୁଖ୍ୟ ସଚିବ ଓ ଶିକ୍ଷା ସଚିବଙ୍କୁ ଧରି ନୂଆ ପାଠ୍ୟପୁସ୍ତକ ପ୍ରକାଶନ ପାଇଁ ନୂଆ ଛାପାଖାନା ବସାଇବା ପ୍ରସ୍ତାବକୁ ବାତିଲ କରାଇଦେଲେ । ପ୍ରଚଳିତ ସରକାରୀ ଛାପାଖାନାରେ ରାତି ୧୦ଟାରୁ ସକାଳ ୬ଟା ସମୟ ଭିତରେ ନୂଆ ପାଠ୍ୟ ପୁସ୍ତକ ଛପାଇବା ସିଦ୍ଧାନ୍ତ ବିଜୁବାବୁଙ୍କ ଅଜ୍ଞାତରେ ଆଦେଶ କରାଇନେଲେ ।

ଆମ ରାଜ୍ୟରେ କୌଣସି ଅଫିସର ମୁଖ୍ୟ କର୍ତ୍ତା ଚାହାନ୍ତି ନାହିଁ ଯେ ତାଙ୍କ ସହଯୋଗୀ ଆଉ ଗୋଟିଏ ଅନୁଷ୍ଠାନ ହେଉ । ଆଉ ଯେ କୌଣସି ସହଯୋଗୀ ଅନୁଷ୍ଠାନକୁ ସେମାନେ ସେମାନଙ୍କର ଅଖଣ୍ଡ କ୍ଷମତାର ପ୍ରତିଦ୍ୱନ୍ଦ୍ୱୀମୂଳକ ସଂସ୍ଥା ହିସାବରେ ଦେଖନ୍ତି । ବର୍ତ୍ତମାନ ମଧ୍ୟ ସେ ପ୍ରକାର ମନୋଭାବ ଓଡ଼ିଶାର ଅଫିସରମାନଙ୍କର ରହିଛି । ଯାହାହେଉ ମୁଁ ଏହା ଶୁଣିଲା ପରେ ସେହି କମିଟି ଆଗରେ ଏ କଥା ଉଠାଇଲି ଏବଂ କହିଲି ଯେ ଓଡ଼ିଶାରେ ପାଠ୍ୟ ପୁସ୍ତକ ଜାତୀୟକରଣ ଏତେ ସହଜସାଧ୍ୟ ନୁହେଁ । ବହୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ତରଫରୁ ଏହା ବିରୁଦ୍ଧରେ ଷଡ଼ଯନ୍ତ୍ର ହେବା ସ୍ୱାଭାବିକ । ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଏ ବିଷୟରେ ସାବଧାନ କରାଇଦେଲି ଏବଂ ମୁଖ୍ୟ ସଚିବ ଏବଂ ଶିକ୍ଷା ସଚିବଙ୍କ ସିଦ୍ଧାନ୍ତ ବିରୁଦ୍ଧରେ ତୀବ୍ର ପ୍ରତିବାଦ କଲି । ମୁଁ ମତ ଦେଲି ଯେ ସରକାରୀ ଛାପାଖାନାରେ ରାତିରେ ଏ ପ୍ରକାର ଗୁଣାତ୍ମକ ପାଠ୍ୟ ପୁସ୍ତକ ପ୍ରକାଶନ ଆଦୌ ସମ୍ଭବ ନୁହେଁ । ନୂଆ ଛାପାଖାନା ନ ହୋଇ ପୁରୁଣା ଛାପାଖାନାରେ ମୁଦ୍ରିତ ହେବା ପ୍ରସ୍ତାବ ଯଦି ସତ୍ୟ ହୋଇଥାଏ ତେବେ ମୁଁ ଏ ଯୋଜନାରୁ ଓହରିଯିବି ।

ସାଙ୍ଗେ ସାଙ୍ଗେ ବିଜୁବାବୁ ଶିକ୍ଷା ସଚିବଙ୍କ ଉପରେ ଖପା ହୋଇ ତାଙ୍କୁ ପଚାରିଥିଲେ ଯେ ମୁଖ୍ୟମନ୍ତ୍ରୀଙ୍କ ସିଦ୍ଧାନ୍ତ ବିରୁଦ୍ଧରେ ଅନ୍ୟ ଆଦେଶ ଦେବା ଅଧିକାର ସେମାନେ କିପରି ପାଇଲେ ? ଶିକ୍ଷା ସଚିବ ଉତ୍ତରରେ କହିଥିଲେ ଯେ-

''ଆପଣ କମିଟିରେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା ସରକାରୀ ସିଦ୍ଧାନ୍ତ ନୁହେଁ ବୋଲି ଆମେ ଅନ୍ୟ ସମ୍ଭାବନାକୁ ପରୀକ୍ଷା କରି ଦେଖିଲୁ ।''

ଏଥିରେ ବିଜୁବାବୁ ଆହୁରି ରାଗିଯାଇ କହିଥିଲେ ଯେ,

''ସେ ଯେଉଁଠି ଏବଂ ଯେଉଁ ଅବସ୍ଥାରେ ଯାହା ଘୋଷଣା କରିବେ ତାହା ମୁଖ୍ୟମନ୍ତ୍ରୀଙ୍କର ଚୂଡ଼ାନ୍ତ ସିଦ୍ଧାନ୍ତ । ଏ ବିଷୟରେ ମୁଁ ଆପଣମାନଙ୍କୁ ବହୁବାର କହିଲିଣି । ତଥାପି ଆପଣମାନେ ସବୁବେଳେ ଟାଳଟୁଳ ନୀତି ଅନୁଯାୟୀ କାମ କରୁଛନ୍ତି ।''

ଏହି କହି ସେ ସେମାନଙ୍କୁ ସାବଧାନ କରାଇ ଦେଲେ ଯେ ଭବିଷ୍ୟତରେ ଏହା ଯେପରି ନ ଘଟେ । ତା'ପରେ ତାଙ୍କର ଆଦେଶ ହେଲା ଯେ ନୂଆ ଛାପାଖାନାର ସମସ୍ତ ଯନ୍ତ୍ରପାତିର ଚୂଡ଼ାନ୍ତ ଯୋଜନା ତାଙ୍କ ପାଖରେ ସାତଦିନ ଭିତରେ ପହଞ୍ଚିବା ଦରକାର ଏବଂ ସେ ନିଜେ ତତ୍କାଳୀନ ଭାରତ ସରକାରଙ୍କ ଅର୍ଥ ମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇଙ୍କଠାରୁ ବୈଦେଶିକ ମୁଦ୍ରା ଅନୁମତି ଆଣି ଯନ୍ତ୍ରପାତି ଅଣାଇବେ । ଛାପାଖାନା ଦେଢ଼ବର୍ଷ ଭିତରେ ସଂପୂର୍ଣ୍ଣ କରିବାକୁ ପଡ଼ିବ ।

ଏ ପ୍ରକାର ବଳିଷ୍ଠ ଓ ନିଷ୍ଠିତ ସିଦ୍ଧାନ୍ତ ଯୋଗୁ ମୋର ବିଜୁବାବୁଙ୍କ ପ୍ରତି ବହୁତ ସମ୍ମାନ ବଢ଼ିଗଲା । ପ୍ରକୃତରେ ତାଙ୍କର ଆଗ୍ରହ ଯୋଗୁ ଦେଢ଼ବର୍ଷ ଭିତରେ ଭୁବନେଶ୍ୱରଠାରେ ନୂତନ ପାଠ୍ୟପୁସ୍ତକ ଛାପାଖାନା ପ୍ରତିଷ୍ଠିତ ହୋଇଗଲା । ମଝିରେ ମଝିରେ ଆମ ଯୋଜନା ବିଷୟରେ ମୁଁ ଯେତେବେଳେ ତାଙ୍କ ପାଖକୁ ଯାଇଛି ସାଙ୍ଗେ ସାଙ୍ଗେ ସମାଧାନ ପାଇଁ ସେ ଅଫିସରମାନଙ୍କୁ ଆଦେଶ ଦେଇଛନ୍ତି । ଫଳରେ ବିଜୁବାବୁଙ୍କ ସହିତ କାମ କରିବାରେ ମୋର ଆନନ୍ଦ ହୋଇଥିଲା । ଉଦାସୀନ ଅମଲାତାନ୍ତ୍ରିକ ଅଫିସରଙ୍କୁ କିପରି ଭାବରେ କାର୍ଯ୍ୟଦକ୍ଷ କରାଯାଏ ତାହା ତାଙ୍କଠାରେ ଅତି ପ୍ରଚଣ୍ଡ ଭାବରେ କାର୍ଯ୍ୟକାରୀ ହେଉଥିବାର ମୁଁ ବହୁବାର ଉପଲବ୍ଧି କରିଛି ।

କଟକରେ ଜାତୀୟକରଣ ପାଠ୍ୟପୁସ୍ତକ ପ୍ରସ୍ତୁତି ପାଇଁ ଅଫିସ୍ ଖୋଲାହେଲା । ଜାତୀୟ କବି ବୀରକିଶୋର ଦାସ ଏହାର ସମ୍ପାଦକ ରହିଲେ । ମାସରେ ଅନ୍ତତଃ ୨୦ ଦିନ ସନ୍ଧ୍ୟା ସମୟରେ ତିନିଚାରି ଘଣ୍ଟା ଧରି ବହି ପ୍ରସ୍ତୁତି ପାଇଁ ସଭା ହୁଏ । ବିଶିଷ୍ଟ ଲେଖକମାନେ ଏଥିରେ ଯୋଗ ଦିଅନ୍ତି । ଲେଖକମାନଙ୍କୁ ପାଣ୍ଡୁଲିପି ପଠାଇବା ପାଇଁ ବିଜ୍ଞାପନ ଦିଆଗଲା । ଗୋଟିଏ ବହିର ସମ୍ପୂର୍ଣ୍ଣ ପାଣ୍ଡୁଲିପି ପାଇଁ ୧୦ ହଜାର ଟଙ୍କା ପାରିଶ୍ରମିକ ଘୋଷଣା ହେଲା । କିନ୍ତୁ ଗୋଟିଏ ବହି ପାଇଁ କାହାର ସମ୍ପୂର୍ଣ୍ଣ ପାଣ୍ଡୁଲିପି ଯୋଗ୍ୟ ବିବେଚିତ ନ ହେବାରୁ ପ୍ରତ୍ୟେକ ପାଣ୍ଡୁଲିପିରୁ ସର୍ବୋତ୍କୃଷ୍ଟ ଅଂଶ ନିଆଯାଇ ବହି ତିଆରି କରାଗଲା । ଲେଖା ଅନୁପାତରେ ୧୦ ହଜାର ଟଙ୍କା ପାରିଶ୍ରମିକକୁ ବାଣ୍ଟି ଦିଆଗଲା । ବହୁ ବିଶିଷ୍ଟ ଲେଖକଙ୍କର ଲେଖା ଏ ବହିରେ ସ୍ଥାନ ପାଇଲା ।

କବି ଶ୍ରୀ ଅନନ୍ତ ପଟ୍ଟନାୟକଙ୍କୁ ନିମନ୍ତ୍ରଣ କରି ବୈଜ୍ଞାନିକ ଚିନ୍ତା ଉପରେ ପର୍ଯ୍ୟବସିତ ସୁନ୍ଦର ସୁନ୍ଦର କବିତା ଲେଖା ହୋଇଥିଲା । ତାଙ୍କର 'ପାଣି ଖେଳେ ଦୋଳି', 'ପୃଥିବୀ ଘୂର୍ଣ୍ଣନ', 'ଇନ୍ଦ୍ରଧନୁ' ପ୍ରଭୃତି କବିତାଗୁଡ଼ିକ ଆଜି ପର୍ଯ୍ୟନ୍ତ ବହୁ ପ୍ରଶଂସିତ ହୋଇ ପାଠ୍ୟପୁସ୍ତକରେ ରହିଛି । ପ୍ରତ୍ୟେକ ବହିର ପ୍ରତ୍ୟେକ ଲେଖା ପାଠ୍ୟପୁସ୍ତକ ପ୍ରସ୍ତୁତି ଓ ପ୍ରକାଶନ ପାଇଁ ଥିବା କମିଟି ଆଗରେ ଉପସ୍ଥାପିତ ହୁଏ । ସମସ୍ତେ ମିଶି ଏହାର ପ୍ରତ୍ୟେକ ଧାଡ଼ି, ପ୍ରତ୍ୟେକ ଶବ୍ଦ ବିଷୟରେ ପରୀକ୍ଷା ନିରୀକ୍ଷା କରନ୍ତି । ଶିକ୍ଷା ସଚିବ ଏହାର ଚେୟାରମ୍ୟାନ୍ । ଅନେକ ସମୟରେ ରାତି ଏଗାରଟା ପର୍ଯ୍ୟନ୍ତ ଏ ପ୍ରକାର କାର୍ଯ୍ୟ ଚାଲେ । ମୁଁ ଏହି କମିଟି ଓ ଅନ୍ୟାନ୍ୟ କମିଟିରେ ଥାଏ ।

ପ୍ରଥମରୁ ସପ୍ତମ ପର୍ଯ୍ୟନ୍ତ ସାତ ଶ୍ରେଣୀର ବହି ଜାତୀୟକରଣ ହୋଇ ପ୍ରକାଶିତ ହେବାକୁ ଯେଉଁ ସାତ ବର୍ଷ ଲାଗିଥିଲା ଏବଂ ସେ ଭିତରୁ ବୋଧହୁଏ ବର୍ଷକୁ ୨୦୦ ସନ୍ଧ୍ୟା ଏ ସମ୍ବନ୍ଧରେ ପାଠ୍ୟ ପୁସ୍ତକ ଅଫିସରେ ମୁଁ କଟାଇଥିବି । ମୋତେ ଏ ପ୍ରକାର କାର୍ଯ୍ୟ ବହୁତ ଆନନ୍ଦଦାୟକ ହୋଇଥିଲା । ପ୍ରଥମ, ଦ୍ୱିତୀୟ ଶ୍ରେଣୀ ବହିଗୁଡ଼ିକ ଚାରୋଟି ରଙ୍ଗ ବିଶିଷ୍ଟ ଛବି ଥାଇ ପ୍ରକାଶିତ ହୋଇଥିଲା । ସାରା ଭାରତବର୍ଷରେ ଏହି ବହିଗୁଡ଼ିକର ଲେଖା ତଥା ମୁଦ୍ରଣର ଉତ୍କର୍ଷ ବିଷୟରେ ପ୍ରଶଂସା ଲାଭ କରିପାରିଥିଲା । ଏହାର ଗୁଣାତ୍ମକ ମୁଦ୍ରଣଶୈଳୀ ପାଇଁ ପାଠ୍ୟ ପୁସ୍ତକ ଛାପାଖାନାର ମୁଖ୍ୟ ଶ୍ରୀ ଶକ୍ତି ପ୍ରସାଦ ମିଶ୍ର ସମ୍ପୂର୍ଣ୍ଣରୂପେ ଦାୟୀ ଥିଲେ ।

ବିଜୁବାବୁ ମୁଖ୍ୟମନ୍ତ୍ରୀତ୍ୱରୁ ଗଲା ପରେ ମଧ୍ୟ ଏହି ପ୍ରକାଶନ ସଂସ୍ଥା ଏବଂ ଏହାର ଆନୁଷଙ୍ଗିକ କମିଟିମାନ ବହୁବର୍ଷ ଯାଏଁ ଥିଲା । କିନ୍ତୁ ଅମଲାତାନ୍ତ୍ରିକ ଷଡ଼ଯନ୍ତ୍ର ଓ ଶିକ୍ଷାମନ୍ତ୍ରୀଙ୍କ

ଉଦାସୀନତା ଫଳରେ ୧୯୭୭-୭୮ ମସିହାରେ ପ୍ରାଥମିକ ଶିକ୍ଷାବୋର୍ଡ଼ ସହିତ ଅନ୍ୟସବୁ କମିଟିଗୁଡ଼ିକୁ ବାତିଲ୍ କରିଦିଆଗଲା । ପ୍ରାଥମିକ ଶିକ୍ଷା ବୋର୍ଡ଼ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଗୋଟିଏ ଅତି ବଳିଷ୍ଠ ସଂଗଠନ ରୂପେ ଠିଆ ହୋଇପାରିଥିଲା । ମୁଖ୍ୟମନ୍ତ୍ରୀ ଏହାର ସଭାପତି, ଶିକ୍ଷାମନ୍ତ୍ରୀ ସହକାରୀ ସଭାପତି ଏବଂ ଶିକ୍ଷା ସଚିବ ସଂପାଦକ ଥିଲେ । ଏଥିରେ ବହୁ କ୍ଷେତ୍ରରୁ ଶିକ୍ଷାବିତ୍‌ମାନେ ମନୋନୀତ ହୋଇ ଆସୁଥିଲେ । ପ୍ରାଥମିକ ଶିକ୍ଷକ ଓ ଆମେମାନେ ମୁଖ୍ୟମନ୍ତ୍ରୀଙ୍କ ଆଗରେ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଦେଖା ଦେଉଥିବା ଅଭାବ ଅସୁବିଧା କଥା କହିପାରୁଥିଲୁ । ଜାତୀୟକରଣ ବହିର ସମୀକ୍ଷା ମଧ୍ୟ ଏଠାରେ ହେଉଥିଲା । ଏହା ବୋଧହୁଏ ପରାକ୍ରମଶାଳୀ ଅଫିସରଙ୍କ ପାଇଁ ଅସହ୍ୟ ହେଲା । ଆଶ୍ଚର୍ଯ୍ୟର କଥା, ବିଜୁବାବୁଙ୍କ ପ୍ରତିଷ୍ଠିତ ସଂସ୍ଥା ପର ଜନତା ସରକାରଙ୍କ ପାଇଁ ଅସହ୍ୟ ହେଲା । ଜନତା ସରକାରଙ୍କ ଶାସନକାଳରେ ଏହା ଲୋପ ପାଇଗଲା । ମୁଁ ବିଜୁବାବୁଙ୍କୁ ଥରେ ଏକଥା କହିଥିଲି । ସେ ଜନତା ମନ୍ତ୍ରୀଙ୍କ ଉପରେ ବିରକ୍ତ ହୋଇଥିଲେ । ତଥାପି ମନ୍ତ୍ରୀଙ୍କ ଅପେକ୍ଷା ଅଫିସରଙ୍କର କ୍ଷମତା ବେଶୀ ହେଲା । ପ୍ରାଥମିକ ଶିକ୍ଷା ପରିଷଦର ସବୁ କାର୍ଯ୍ୟକଳାପ ବନ୍ଦ ହୋଇଗଲା । ମାଧ୍ୟମିକ ଶିକ୍ଷା ପରିଷଦ ହାତରେ ପ୍ରାଥମିକ ପାଠ୍ୟ ପ୍ରସ୍ତୁତି ଦିଆଗଲା ଏବଂ ପାଠ୍ୟପୁସ୍ତକ ଛାପାଖାନା ନିଜ ଇଚ୍ଛାନୁସାରେ ଯାହା ଇଚ୍ଛା ତାହା ଛାପିବାକୁ ଆରମ୍ଭ କଲେ । ବହିଗୁଡ଼ିକର ପୂର୍ବ ଉତ୍କର୍ଷ ଆଉ ରହିଲାନାହିଁ । ଦେଶରେ ସିନା ଏସବୁ କ୍ଷେତ୍ରରେ ଅଗ୍ରଗତି ହୁଅନ୍ତା, କିନ୍ତୁ ଆମ ଓଡ଼ିଶା ରାଜ୍ୟରେ ବହୁ ଶିକ୍ଷା ଅନୁଷ୍ଠାନର ଅଧୋଗତି ହୋଇ ଚାଲିଛି । ଏଥିପାଇଁ ମନ୍ତ୍ରୀମାନଙ୍କର ଅପାରଗତା ଓ ଉଦାସୀନତା ଯେତିକି ଦାୟୀ, ଅଫିସରଙ୍କର ଚକ୍ରାନ୍ତ ସେତିକି ଫଳପ୍ରଦ ।

ପ୍ରାଥମିକ ଶିକ୍ଷା ପାଠ୍ୟପୁସ୍ତକର ଜାତୀୟକରଣ ବିରୁଦ୍ଧରେ ବହୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ବିଜୁବାବୁଙ୍କ ପରେ ବହୁଦିନ ଧରି ନାନା ପ୍ରକାର ଷଡ଼ଯନ୍ତ୍ର କଲେ । ପ୍ରଥମ ପ୍ରଚଣ୍ଡ ଷଡ଼ଯନ୍ତ୍ର ହେଲା ପ୍ରକାଶକମାନଙ୍କ ତରଫରୁ । ସେମାନେ ଏହା ବିରୁଦ୍ଧରେ ନାନା କଥା ଲେଖି ପ୍ରଚାର କଲେ । ପ୍ରତ୍ୟେକ ମନ୍ତ୍ରୀମଣ୍ଡଳ ପରିବର୍ତ୍ତନ ବେଳେ ଏମାନେ ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚିଯାନ୍ତି ଜାତୀୟକରଣ ସଂସ୍ଥାକୁ ବାତିଲ କରିବା ପାଇଁ । ପ୍ରାଥମିକ ଶିକ୍ଷା ପରିଷଦରେ ଏ କଥା ଉଠେ, ବହୁ ତର୍କବିତର୍କ ଚାଲେ । ଆମେ କେତେଜଣ ବହୁ ଯୁକ୍ତି କରି ଜାତୀୟକରଣ ନୀତିକୁ ସମର୍ଥନ କରୁ । ମୋର ନିଜର କୌଣସି ବହି ପ୍ରକାଶନ ନକରିବାକୁ ପ୍ରକାଶକମାନେ ସିଦ୍ଧାନ୍ତ ନେଲେ ଏବଂ ବହୁବର୍ଷ ପର୍ଯ୍ୟନ୍ତ ମୋର କୌଣସି ବହି ପ୍ରକାଶିତ ହେଲାନାହିଁ । 'ପ୍ରଗତି' ନାମରେ ମୋର ଗୋଟିଏ ପ୍ରବନ୍ଧ ବହି ବି.ଏ. ଶ୍ରେଣୀରେ ପାଠ୍ୟପୁସ୍ତକ ଥିଲା । କିନ୍ତୁ ବହି ଅଭାବରୁ ପାଠ୍ୟକ୍ରମରୁ ଏହା ବାଦ୍ ପଡ଼ିଥିଲା । ତେବେ ଯାହା ହେଉ ବହି ବିକ୍ରିରୁ ତ ମୋର ସେପରି କିଛି ଉପାର୍ଜନ ନଥିଲା । ତେଣୁ ଏହା ମୋତେ ଆଦୌ ବିବ୍ରତ କରି ନଥିଲା ।

ପାଠ୍ୟପୁସ୍ତକ ପ୍ରକାଶନ ଛଡ଼ା ମେକାନୋ ଧରଣର ଖେଳଣା ତିଆରିପାଇଁ ପାରଳାଖେମୁଣ୍ଡିରେ ଏକ କାରଖାନା ବସିଲା । ପ୍ରଥମ ବର୍ଷ ଏଥିରେ ଏକହଜାର ପର୍ଯ୍ୟନ୍ତ ମେକାନୋ ସେଟ୍ ତିଆରି ହେଲା । ଶିକ୍ଷା ବିଭାଗ ଲକ୍ଷେ ଟଙ୍କା ଦେଇ ତାକୁ କିଣିଲେ ଏବଂ ତାହା ପ୍ରଥମେ ଟ୍ରେନିଂ ସ୍କୁଲମାନଙ୍କୁ ଦିଆଗଲା । କାରଣ ସେମାନେ ସେଥିରେ ଶିକ୍ଷା

ପାଇଲେ ଶିକ୍ଷକ ହିସାବରେ ପିଲାଙ୍କୁ ତାଲିମ୍ ଦେବେ । 'କଳଘର' ପାଇଁ ସରକାରୀ ସ୍ତରରେ ଉପକରଣ ତିଆରି କ୍ଷେତ୍ରରେ ଏହା ମୋ ଯୋଜନାର ପ୍ରଥମ ପଦକ୍ଷେପ । କିନ୍ତୁ ବିଜୁବାବୁଙ୍କ ପରେ ଏଥିପାଇଁ ଶିକ୍ଷା ବିଭାଗ ଆଉ ଟଙ୍କା ଦେଲେନାହିଁ । କାରଖାନା ବନ୍ଦ ହୋଇଯାଇଥିଲା ।

ଶିଳ୍ପ ସଚିବଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଟି ବସିଥିଲା ପିଲାଙ୍କ ପାଇଁ ଚଳଚ୍ଚିତ୍ର ଖେଳଣା ତିଆରି ଉଦ୍ଦେଶ୍ୟରେ । ତତ୍କାଳୀନ ଶିଳ୍ପ ସଚିବ ବହୁତ ଅନାଗ୍ରହୀ ଢଙ୍ଗରେ ସାମାନ୍ୟ ବିରକ୍ତି ମିଶା ସ୍ୱରରେ ମୋତେ ପଚାରିଥିଲେ– ''କଣ କରାଯିବ କୁହନ୍ତୁ ?''

ମୁଁ ବୁଝାଇଲି । ଅନ୍ୟ ଅଫିସରମାନେ ଟିପି ନେଲେ । ତା'ପରେ ଶିଳ୍ପ ସଚିବ ସମସ୍ତଙ୍କୁ କହିଲେ–

''ଦେଖନ୍ତୁ, ଏ ବିଷୟରେ ଡକ୍ଟର ରଥ ଜଣ କହୁଛନ୍ତି, ସେହି ଅନୁସାରେ ଆପଣମାନେ କିଛି କରନ୍ତୁ । ମୁଖ୍ୟମନ୍ତ୍ରୀଙ୍କର ଇଚ୍ଛା ଯେ ଏପରି କିଛି ହେଉ ।''

ଚରମ ଉଦାସୀନତାର ବାତାବରଣ ଭିତରେ ସଭାକାର୍ଯ୍ୟ ଶେଷ ହେଲା । ମୁଁ ବୁଝିପାରିଲି ଯେ ତାଙ୍କର କିଛି କରାଇ ଦେବାର ଉଦ୍ଦେଶ୍ୟ ନାହିଁ । ମୁଖ୍ୟମନ୍ତ୍ରୀଙ୍କୁ ଏ କଥା କହିଲି । ସେ ଶିଳ୍ପ ସଚିବଙ୍କୁ ଡାକି ଧମକାଇଲେ । ଏହି କାରଣରୁ ସେ ଭଦ୍ରଲୋକ ମୋ ସହିତ ଦେଖା ହେଲେ ବହୁବର୍ଷ ଯାଏ ମୋ ସହିତ କଥାବାର୍ତ୍ତା କରୁନଥିଲେ । ମୁହଁବୁଲାଇ ଅନ୍ୟଆଡ଼େ ଚାହୁଁଥିଲେ । ବିଜୁବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ପରେ ଏହି କମିଟି ତା ମନକୁ ମନ ଉଭେଇ ଯାଇଥିଲା ।

ସେହିପରି ପାଠ୍ୟପୁସ୍ତକ ପ୍ରକାଶନ କ୍ଷେତ୍ରରେ ମଧ୍ୟ ପାଠ୍ୟପୁସ୍ତକ ଛଡ଼ା ପିଲାଙ୍କର ଜ୍ଞାନ ଓ ଆଗ୍ରହର ପରିସର ବୃଦ୍ଧି କରିବା ପାଇଁ ଅନ୍ୟାନ୍ୟ ବହି ପ୍ରକାଶ କରିବାରେ ଯୋଜନା ଗୃହୀତ ହୋଇଥିଲା । ପ୍ରତିବର୍ଷ ଏହି ସଂସ୍ଥା ଦଶ ବାରଟି ବହି ନାନା ଉପାଦେୟ ଜ୍ଞାନ ବିଜ୍ଞାନ ବିଷୟରେ ପ୍ରକାଶ କରି ସେଥିରୁ ଖଣ୍ଡିଏ ଲେଖାଏ ବିନା ମୂଲ୍ୟରେ ପ୍ରତ୍ୟେକ ପ୍ରାଥମିକ ସ୍କୁଲକୁ ପଠାଯିବ ଏବଂ ଏହି ସ୍କୁଲମାନଙ୍କରେ ପିଲାମାନଙ୍କ ପାଇଁ ସ୍କୁଲ ପୁସ୍ତକାଳୟ ସ୍ଥାପିତ ହେବ । ଅବଶିଷ୍ଟ ବହି ବଜାରରେ ବିକ୍ରି ହୋଇ ଗୋଟିଏ ପ୍ରକାଶନ ପାଣ୍ଠି ସୃଷ୍ଟି ହେବ । ଏହି ପାଣ୍ଠିରୁ ପ୍ରତିବର୍ଷ ନୂଆ ନୂଆ ବହି ଛପା ହେବ । ଏହି ପ୍ରସ୍ତାବ ବିରୁଦ୍ଧରେ କେତେକ ଅଫିସର ଆପତ୍ତି ଉଠାଇଥିଲେ ମଧ୍ୟ ବିଜୁବାବୁ ସେମାନଙ୍କୁ ଚୁପ୍ କରାଇଦେଇଥିଲେ । ଏହି ଯୋଜନା ଅନୁଯାୟୀ ୧୦ଟି ପାଣ୍ଡୁଲିପି ପ୍ରସ୍ତୁତ କରାଗଲା । କିନ୍ତୁ ବିଜୁବାବୁ ମୁଖ୍ୟମନ୍ତ୍ରୀତ୍ୱରୁ ଗଲା ପରେ ଏହା ଆଉ ଛପା ହୋଇପାରିଲା ନାହିଁ ।

ଅନେକ ଦିନ ପରେ ବନମାଳୀ ପଟ୍ଟନାୟକ ଶିକ୍ଷାମନ୍ତ୍ରୀ ଥିଲାବେଳେ ତାଙ୍କର ବଳିଷ୍ଠ ସମର୍ଥନ ଯୋଗୁ 'ଶିଶୁଲେଖା' ନାମରେ ଏକ ମାସିକ ପତ୍ରିକା ପିଲାଙ୍କ ପାଇଁ ପ୍ରକାଶିତ ହେଲା । ଖୁବ୍ ସୁନ୍ଦର ଏହି ପତ୍ରିକାଟି ଥିଲା । ପ୍ରତି ସଂଖ୍ୟା ପ୍ରାୟ ୫୦ ହଜାର ଯାଏ ଛାପା ହେଉଥିଲା । ପାଠ୍ୟପୁସ୍ତକ ପ୍ରସ୍ତୁତି ଓ ପ୍ରକାଶନ ସଂସ୍ଥା ଦ୍ୱାରା ଏହା ପ୍ରକାଶିତ ହେଉଥିଲା । ଶ୍ରୀ ଅନନ୍ତ ପଟ୍ଟନାୟକ ଏହାର ସମ୍ପାଦକ ଥିଲେ । କ୍ରମେ ସରକାରୀ କଳର ଉଦାସୀନତା ଯୋଗୁ ଏହା ମଧ୍ୟ କାଳକ୍ରମେ ସଂପୂର୍ଣ୍ଣ ରୂପେ ବନ୍ଦ ହୋଇଗଲା । ସେତେବେଳକୁ ପ୍ରାଥମିକ ଶିକ୍ଷା ପରିଷଦ ତଥା ପାଠ୍ୟପୁସ୍ତକ ପ୍ରସ୍ତୁତି କମିଟିମାନ ଭାଙ୍ଗି ଯାଇଥିଲା । ତେଣୁ ଏ ବିଷୟରେ ପଦକ୍ଷେପ ନେବା ପାଇଁ କେହି ନଥିଲେ । ବହୁବର୍ଷ ଧରି 'ଶିଶୁଲେଖା' ପ୍ରକାଶନ

କମିଟିର ମୁଁ ସଭ୍ୟ ଥିଲି ଏବଂ ବହୁ ଅପ୍ରୀତିକର ପରିସ୍ଥିତି ଦେଇ ଯାଇ ମଧ୍ୟ ମୁଁ ପତ୍ରିକା ପ୍ରକାଶନରେ ସମସ୍ତ ପ୍ରକାରର ପ୍ରତିବନ୍ଧକକୁ ଆୟତ୍ତ କରୁଥିଲି । ଠିକ୍ ଏହି କାରଣରୁ ବୋଧହୁଏ ମୋତେ ଶିଶୁ ସାହିତ୍ୟ କମିଟିରୁ ବାହାର କରିଦିଆଗଲା ଏବଂ ତାହାର କିଛିଦିନ ପରେ ପତ୍ରିକାଟି ବନ୍ଦ ହୋଇଗଲା ।

ଓଡ଼ିଶାରେ କୌଣସି ଗୋଟିଏ ଭଲ କାମ ବହୁଦିନ ଧରି ବଞ୍ଚାଇ ରଖିବା ସମ୍ଭବ ନୁହେଁ ବୋଲି ମୋର ଦୃଢ଼ ଧାରଣା ହେଲା । ଏଥିପାଇଁ ରାଜନୈତିକ ଲୋକମାନେ ଯେତିକି ଦାୟୀ, ବୁଦ୍ଧିଜୀବୀମାନେ ସେମାନଙ୍କଠାରୁ କମ୍ ଦାୟୀ ନୁହନ୍ତି । କାରଣ ବହୁ ବୁଦ୍ଧିଜୀବୀଙ୍କୁ ରାଜନୈତିକ ଲୋକମାନେ ଅତି ସହଜରେ କିଣିନେଇ ପାରୁଛନ୍ତି ।

ବିଜୁବାବୁ ତତ୍କାଳୀନ ପଞ୍ଚାୟତରାଜ ସେକ୍ରେଟାରୀ ମିଷ୍ଟର ମାଥ୍ୟୁସଙ୍କୁ ମୋ ସହିତ ଆଲୋଚନା କରିବାକୁ କହିଥିଲେ । ମୁଁ ତାଙ୍କୁ ଅନୁରୋଧ କରିଥିଲି ଯେ ପ୍ରତ୍ୟେକ ଗ୍ରାମୀଣ ପ୍ରାଥମିକ ସ୍କୁଲକୁ ଦୁଇ ତିନି ଏକର ଜମି ଯୋଗାଇ ଦେଇପାରିଲେ ପିଲାମାନେ ପନିପରିବା ଚାଷ, କୁକୁଡ଼ା ପାଳନ ପ୍ରଭୃତି କାମ ଶିଖି ପାରନ୍ତେ । ଅନେକଗୁଡ଼ିଏ ଗ୍ରାମରେ ଏହା ସମ୍ଭବ ହେବ ବୋଲି ସେ ମୋତେ ପ୍ରତିଶ୍ରୁତି ଦେଇଥିଲେ । ସେ ବଦଳି ହୋଇଗଲେ । ତା'ପରେ ଏ ସମ୍ପର୍କରେ କୌଣସି କାମ ହେଲା ନାହିଁ । ଏହିପରି ଭାବରେ ପ୍ରାଥମିକ ଶିକ୍ଷାର ସର୍ବାଙ୍ଗୀନ ଉନ୍ନତି ପାଇଁ ବହୁତ ଯୋଜନା ହେଲା । ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିଲାଯାଏ ପ୍ରତ୍ୟେକ ବିଷୟରେ ପ୍ରାରମ୍ଭିକ କାର୍ଯ୍ୟାବଳୀର ସୂତ୍ରପାତ ହେଲା । ବହୁ ଅଫିସର ଅନ୍ତତଃ ତାଙ୍କ ଡରରେ ଉତ୍ସାହ ଦେଖାଇଥିଲେ । କିନ୍ତୁ ସେ ଯେହେତୁ ଅଳ୍ପଦିନ ମୁଖ୍ୟମନ୍ତ୍ରୀ ରହିଲେ ତାଙ୍କ ପରେ ପାଠ୍ୟପୁସ୍ତକ ପ୍ରକାଶନ ସଂସ୍ଥା ଛଡ଼ା ଆଉ ସବୁ କାର୍ଯ୍ୟକ୍ରମ ବନ୍ଦ ହୋଇଗଲା । ଏହି ଅଭିଜ୍ଞତାରୁ ଆମର ଔପନିବେଶୀ ଶାସନ ସଂସ୍ଥା କିପରି ଦେଶ ହିତକର କାମ କରିବାରେ ଅପାରଗ, ସେ ବିଷୟରେ ମୋର ଧାରଣା ଦୃଢ଼ୀଭୂତ ହୋଇଥିଲା । ତଥାପି ବଳିଷ୍ଠ ରାଜନୈତିକ ନେତୃତ୍ୱର ଚାପରେ ଅନେକ କାମ ହୋଇପାରନ୍ତ । କିନ୍ତୁ ଦୁର୍ଭାଗ୍ୟବଶତଃ ସେପରି ଅଗ୍ରଧର୍ଷୀ ନେତୃତ୍ୱ ଓଡ଼ିଶାରେ ଆଉ ସମ୍ଭବ ହୋଇପାରିଲା ନାହିଁ ।

## (ଖ) ମାଧ୍ୟମିକ ଶିକ୍ଷା ପରିଷଦ

୧୯୭୧-୭୨ ମସିହାବେଳକୁ ମୁଁ ମାଧ୍ୟମିକ ଶିକ୍ଷା ପରିଷଦର ସଭ୍ୟ ଭାବରେ ଯୋଗ ଦେଇଥିଲି । ୧୯୮୦ ମସିହା ପର୍ଯ୍ୟନ୍ତ ଏହାର କାର୍ଯ୍ୟକାରୀ କମିଟି, ଅର୍ଥ ନିୟନ୍ତ୍ରଣ କମିଟି, କୋଠାବାଡ଼ି ନିର୍ମାଣ କମିଟି, ପାଠ୍ୟପୁସ୍ତକ ପ୍ରକାଶନ କମିଟି ପ୍ରଭୃତି ଅଧିକାଂଶ ଗୁରୁତ୍ୱପୂର୍ଣ୍ଣ କମିଟିରେ ସଭ୍ୟ ହିସାବରେ କାମ କରିଥିଲି । ତିନୋଟି ପ୍ରଧାନ କର୍ଯ୍ୟକ୍ରମ ଆଗେଇ ନେବା ପାଇଁ ମୁଁ ମାଧ୍ୟମିକ ଶିକ୍ଷା ପରିଷଦକୁ ଆସିଥିଲି । ଗୋଟିଏ ହେଲା ପ୍ରାଥମିକ ଶିକ୍ଷା ପାଠ୍ୟକ୍ରମର ଜାତୀୟକରଣ ପୁସ୍ତକ ସହିତ ସମନ୍ୱୟ ରଖି ମାଧ୍ୟମିକ ଶିକ୍ଷା ପରିଷଦ ନିୟନ୍ତ୍ରଣରେ ଥିବା ପାଠ୍ୟକ୍ରମର ସମସ୍ତ ବହିକୁ ଜାତୀୟକରଣ କରାଇବା । ଦ୍ୱିତୀୟଟି ହେଉଛି ମାଧ୍ୟମିକ ଶିକ୍ଷା ପରିଷଦ କାର୍ଯ୍ୟାଳୟ ପାଇଁ ସ୍ଥାୟୀ ଗୃହ ନିର୍ମାଣ କରାଇବା । ଏହି ଅଫିସ ଗୃହ ସବୁ ଏପରି ବିକ୍ଷିପ୍ତ ଓ ଜରାଜୀର୍ଣ୍ଣ ଅବସ୍ଥାରେ ଥାଏ ଯେ ସେଥିଯୋଗୁଁ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦର କୌଣସି ମର୍ଯ୍ୟାଦା ଅଛି ବୋଲି ଜଣାଯାଉନଥିଲା । କୌଣସିମତେ କାର୍ଯ୍ୟ ଚାଲୁଥିଲା । ସରକାରଙ୍କର କୌଣସି ଆଗ୍ରହ ମଧ୍ୟ ଏଥିପ୍ରତି ନଥିଲା ।

ବୋର୍ଡ଼ ମଧ୍ୟ ଏଥିପ୍ରତି ଉଦାସୀନ ଥିଲା ପରି ଜଣାଯାଉଥିଲା । ତୃତୀୟଟି ହେଲା ବୋର୍ଡ଼ ସ୍କୁଲକୁ ଗୋଟିଏ ମଡ଼େଲ ସ୍କୁଲ ଭାବରେ ପ୍ରତିଷ୍ଠିତ କରାଇବା ।

ମୁଁ ଆସିଲା ପରେ ପରେ ପ୍ରଥମେ ପାଠ୍ୟପୁସ୍ତକ ଜାତୀୟକରଣ ଦାୟିତ୍ୱ ହାତକୁ ନେଲି । ଶିକ୍ଷାବିଭାଗ ଡିରେକ୍ଟର ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ବୋର୍ଡ଼ର ସଭାପତି ଥାଆନ୍ତି । ବୋର୍ଡ଼ ପାଠ୍ୟପୁସ୍ତକ ଜାତୀୟକରଣ ପ୍ରସ୍ତାବକୁ ଗ୍ରହଣ କଲେ । ଅଷ୍ଟମ ଶ୍ରେଣୀର ୧୬ ଖଣ୍ଡି ବହି ପ୍ରଥମେ ଜାତୀୟକରଣ ଯୋଜନା ଅନ୍ତର୍ଭୁକ୍ତ ହେଲା । ଏହି କାର୍ଯ୍ୟରେ କାର୍ଯ୍ୟକାରୀ କମିଟିର ସଭ୍ୟ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ ମୋତେ ବହୁତ ସାହାଯ୍ୟ କରିଥିଲେ । ଏହି ୧୬ଖଣ୍ଡି ବହି ବୋର୍ଡ଼ ତରଫରୁ ପ୍ରକାଶ କରାଯିବ ବୋଲି ତା' ପୂର୍ବ ବର୍ଷ ଜୁଲାଇରୁ ଘୋଷଣା କରାଗଲା । ତା'ହେଲେ ଏହାର ଘରୋଇ ପ୍ରକାଶକମାନେ ଯଥେଷ୍ଟ ଆଗରୁ ସାବଧାନ ହୋଇପାରିବେ । କିନ୍ତୁ ପ୍ରକାଶକମାନଙ୍କଠାରୁ ପ୍ରଥମେ ପ୍ରତିବନ୍ଧକ ସୃଷ୍ଟି ପାଇଁ ଉଦ୍ୟମ ହେଲା । ରାଜନୈତିକ ଚାପର ପ୍ରୟୋଗ ପାଇଁ ଚେଷ୍ଟା କରାଗଲା । ଜଣେ ବିଶିଷ୍ଟ ପ୍ରକାଶକ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ପ୍ରବର୍ତ୍ତାଇ ତାଙ୍କଠାରୁ ଖଣ୍ଡେ ଚିଠି ଜୁନ୍ ମାସରେ ସ୍କୁଲ ଡି.ପି.ଆଇ. ଯେ କି ବୋର୍ଡ଼ର ସଭାପତି ଥିଲେ, ତାଙ୍କ ହାତରେ ଦେଇଥିଲେ । ସେତେବେଳକୁ ପୁସ୍ତକ ପ୍ରକାଶନ ପାଇଁ ପ୍ରସ୍ତୁତି ବୋର୍ଡ଼ ଯଥେଷ୍ଟ ଆଗେଇ ଯାଇଥିଲା । ଯେଉଁଦିନ କାର୍ଯ୍ୟକାରୀ କମିଟି ଆଗରେ ଏହି ଚିଠି ଉପସ୍ଥାପିତ ହେବାର କଥା, ସେହି ଦିନହିଁ ଏ ଚିଠି ଲେଖା ହୋଇଥିଲା । ସେଦିନ ଉଡ଼ାଜାହାଜରେ ମୋର ଦିଲ୍ଲୀ ଯିବାର କଥା ଥିଲା । ମୁଁ ନଥିଲା ବେଳେ ଏହି ଚିଠିଟିକୁ କାର୍ଯ୍ୟକାରୀ କମିଟିରେ ଉପସ୍ଥାପିତ କରାଇ ସେହି ବର୍ଷକ ପାଇଁ ଅନ୍ତତଃ ପୁସ୍ତକ ଜାତୀୟକରଣ ଯୋଜନା ସ୍ଥଗିତ ରଖାଯିବାର ସମସ୍ତ ମସୁଧା ହୋଇଥିଲା । ଦୁର୍ଭାଗ୍ୟକୁ ସେଦିନ ଖରାପ ପାଗ ଯୋଗୁ ଉଡ଼ାଜାହଜ ଗଲା ନାହିଁ । ତେଣୁ ମୁଁ ସନ୍ଧ୍ୟାରେ କାର୍ଯକାରୀ କମିଟିରେ ଯଥାରୀତି ଯୋଗ ଦେଲି । ସଭାରେ ସେହି ଚିଠିଟି ପଢ଼ାଗଲା । ସେଥିରେ ଲେଖାଥିଲା, ଏହି ବର୍ଷ ଯଦି ଠିକ୍ ସମୟରେ ସବୁ ବହି ବାହାରି ପାରିବାର ସମ୍ଭାବନା ନାହିଁ ତା'ହେଲେ ଏହାକୁ ଆସନ୍ତା ବର୍ଷ ପର୍ଯ୍ୟନ୍ତ ସ୍ଥଗିତ ରଖାଯାଇପାରେ । ତା'ଛଡ଼ା ବହିର ଗୁଣାତ୍ମକ ଉତ୍କର୍ଷ ବିଷୟରେ ସବୁପ୍ରକାର ଉଦ୍ୟମ ହେବା ଦରକାର । ତେଣୁ ତରବରିଆ ଭାବରେ ସେହିବର୍ଷ ପୁସ୍ତକ ଜାତୀୟକରଣ ନ କଲେ ଚଳିବ ।

ସେହି ଚିଠିର ବିଷୟ ଶୁଣିଲା ପରେ ମୁଁ ପ୍ରକୃତରେ ବିଚଳିତ ହୋଇପଡ଼ିଲି । ବୋର୍ଡ଼ ତରଫରୁ ଏତେ କାମ ଆଗେଇ ଗଲା ପରେ ମଧ୍ୟ ଜୁନ୍ ମାସରେ ଏପରି ଅନୁରୋଧ ହେବା କିପରି ସମ୍ଭବ ହେଲା ତାହା ବୁଝିପାରିଲି ନାହିଁ । ଜାତୀୟକରଣ ବିରୁଦ୍ଧରେ ଏହା ଯେ ଏକ ଗଭୀର ଷଡ଼ଯନ୍ତ୍ର, ତାହା ମୋତେ ବୁଝିବାକୁ ବାକୀ ରହିଲା ନାହିଁ ।

ସଭାପତି କହିଲେ ଯେ-

"ପ୍ରକୃତରେ ଏ ବର୍ଷ ସବୁ ବହି ପ୍ରକାଶ ନ କରି ଆସନ୍ତା ବର୍ଷକୁ କଲେ କ୍ଷତି କ'ଣ ?"

ଚିଠି ଏପରି ଲେଖା ହୋଇଥିଲା ଯେ କୌଣସି ସରକାରୀ କର୍ମଚାରୀ ସେ ବର୍ଷ ଜାତୀୟକରଣ ପୁସ୍ତକ ପ୍ରକାଶନ ପାଇଁ ପଦକ୍ଷେପ ନେବାକୁ ସାହସ କରିବେ ନାହିଁ । ଡି.ପି.ଆଇ. ଓ ଆଉ କେତେକ ସଭ୍ୟଙ୍କର ସନ୍ଦିହାନ ଅବସ୍ଥା ବିଷୟରେ ଅବଗତ ହେଲା ପରେ ମୁଁ କହିଲି—

''ଦେଖ ଡକ୍ଟର ମିଶ୍ର, ପାଠ୍ୟପୁସ୍ତକ ବହି ନେଇ ବହୁ ଦୁର୍ନୀତି ଅତୀତରେ ହୋଇଯାଇଛି । କେତେକ ଡି.ପି.ଆଇ. ଏଥିପାଇଁ କଳଙ୍କିତ ତଥା ସର୍ବସାଧାରଣରେ ନିନ୍ଦିତ ହୋଇଛନ୍ତି । ତୁମେ ମୁଁ ମିଶି ଲକ୍ଷେ ଟଙ୍କା ଲାଞ୍ଚ ନେଇ ସେହି ବର୍ଷ ଜାତୀୟକରଣ ପୁସ୍ତକ ପ୍ରକାଶନ ବନ୍ଦ କରିଦେଇଛୁ ବୋଲି ସାଧାରଣ ମତ ପ୍ରକାଶ ପାଇଲେ ଆମେମାନେ କିପରି ନିଜ ପକ୍ଷ ସମର୍ଥନ କରିପାରିବା ? ମୁଖ୍ୟମନ୍ତ୍ରୀ ଯେଉଁ ସନ୍ଦେହ ପ୍ରକାଶ କରିଛନ୍ତି ତାହା ଯଥାର୍ଥ । ମୁଁ ତାର ଉତ୍ତର ବିଶଦ ଭାବରେ ଲେଖିବି ଏବଂ ତାହାକୁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଦେବା । ଆମ ଚିଠି ପାଇଲା ପରେ ସେ ଯଦି ସେ ବର୍ଷ ଜାତୀୟକରଣ ପୁସ୍ତକ ପ୍ରକାଶନ କାର୍ଯ୍ୟ ବନ୍ଦ କରିବାକୁ କୁହନ୍ତି, ତେବେ ଆମେ ବନ୍ଦ କରିଦେବା । କିନ୍ତୁ ମୁଖ୍ୟମନ୍ତ୍ରୀଙ୍କୁ ସବୁ ଖବର ନ ଜଣାଇ ତାଙ୍କର ଏହି ଚିଠି ଉପରେ ପୁସ୍ତକ ଜାତୀୟକରଣ କାର୍ଯ୍ୟକ୍ରମ ବନ୍ଦ କରିଦେବା ସିଦ୍ଧାନ୍ତ ତୁମେ ଯଦି ନେବ, ତେବେ ମୁଁ ଇସ୍ତଫା ଦେବି ଏବଂ ଜନ ଅପବାଦରୁ ମୁକ୍ତ ରହିବା ପାଇଁ ଏ ବିଷୟରେ ଏକ ପ୍ରେସ୍ ଇସ୍ତାହାର ଦେବି ।''

ସେତେବେଳକୁ ସଭ୍ୟ ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ ସଭାକୁ ସେ ପର୍ଯ୍ୟନ୍ତ ଆସି ନଥାନ୍ତି । ମୋର ଏ ପ୍ରକାର ଦୃଢ଼ ମନୋଭାବ ଯୋଗୁ ସମସ୍ତେ ଦବି ଗଲେ । ୧୬ ଖଣ୍ଡି ବହି ପ୍ରକାଶନର ବିଭିନ୍ନ ଅବସ୍ଥା ବିଷୟରେ ମୁଁ ଗୋଟିଏ ବିଶଦ ବିବରଣୀ ଲେଖିଲି । ସେଥିରୁ ଅଧାଅଧି ବହି ଜୁନ୍ ଶେଷ ସୁଦ୍ଧା ପ୍ରକାଶିତ ହୋଇ ବଜାରରେ ବିକ୍ରି ହେବ । ଆଉ ଚାରିପାଞ୍ଚ ଖଣ୍ଡ ବହି ଜୁଲାଇ ଶେଷ ସୁଦ୍ଧା ପ୍ରକାଶ ପାଇବ । କେବଳ ତିନି ଚାରିଖଣ୍ଡ ବହି ଅଗଷ୍ଟ ଅଧାଅଧି ବେଳକୁ ବାହାରିବ ଏବଂ ଏସବୁ ବହି ଏକ ସମୟରେ ସବୁ ଜିଲ୍ଲାରେ ମିଳିପାରିବ । କୌଣସି ପ୍ରକାଶକ ସବୁ ବହି ଦୂର ଜିଲ୍ଲାମାନଙ୍କରେ ଅକ୍ଟୋବର-ନଭେମ୍ବର ସୁଦ୍ଧା ଦେଇ ନଥାନ୍ତି । ଏହାର ଗୁଣାତ୍ମକ ଉତ୍କର୍ଷ ବିଷୟରେ ଆଉ ଅଧିକ କିଛି ଆସନ୍ତା ବର୍ଷକୁ ମଧ କରିହେବ ନାହିଁ, କାରଣ ଯେଉଁ କମିଟି ଏହାକୁ ପ୍ରସ୍ତୁତ କରିଛି ସେହି କମିଟି ମଧ ଆସନ୍ତାବର୍ଷକୁ ରହିଥିବ । ଏହି ବିବରଣୀଟି ପଢ଼ି ଶୁଣାଇଦେଲି ଏବଂ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଏହାକୁ ପଠାଇ ଦେବାର ପ୍ରସ୍ତାବ ଗୃହୀତ କରାଇ ମୁଁ ପୁରୀ ଏକ୍ସପ୍ରେସ୍ ଯୋଗେ କଲିକତା ବାହାରିଗଲି । ରାସ୍ତାରେ ତ୍ରିଲୋଚନ ସାଙ୍ଗରେ ଦେଖା ହେଲା । ତାକୁ ସବୁ ବୁଝାଇଦେଲି । ପାଞ୍ଚ ଛଅଦିନ ପରେ ମୁଁ ଦିଲ୍ଲୀରୁ ଫେରିଲା ବେଳକୁ ଓଡ଼ିଶାରେ ଗୋଟିଏ ସଙ୍ଗୀନ ରାଜନୈତିକ କୋଳାହଳ ସୃଷ୍ଟି ହୋଇଥିଲା ଯେ ମୁଖ୍ୟମନ୍ତ୍ରୀ ପୁସ୍ତକ ଜାତୀୟକରଣ ବିରୁଦ୍ଧରେ ପଦକ୍ଷେପ ନେଇଥିଲେ । ତା'ପରେ ସବୁ ବଦଳିଗଲା । ସେହିବର୍ଷ ହିଁ ଜାତୀୟକରଣ ବହି ପ୍ରକାଶନ ପାଇଁ ବୋର୍ଡ଼କୁ ଅନୁମତି ମିଳିଲା । ପରପର ଚାରିବର୍ଷ ଭିତରେ ଅଷ୍ଟମରୁ ଏକାଦଶ ପର୍ଯ୍ୟନ୍ତ ସମସ୍ତ ବହି ବୋର୍ଡ଼ ତରଫରୁ ପ୍ରକାଶିତ ହେଲା ।

ସେତେବେଳକୁ ବୋର୍ଡ଼ର ଆର୍ଥିକ ଅବସ୍ଥା ବଡ଼ ଖରାପ ଥିଲା । ପ୍ରାୟ ୨୨ ଲକ୍ଷ ଟଙ୍କା ଯାଏ ନିଅଣ୍ଟ ଥାଏ । ଜାତୀୟକରଣ ପୁସ୍ତକ ଆୟରୁ ଏହି ଟଙ୍କା ଭରଣା ହେଲା । ବ୍ୟାଙ୍କ୍‌ରେ ପଚାଶଲକ୍ଷ ଟଙ୍କାର ଗୋଟିଏ ସ୍ଥାୟୀ ପାଣ୍ଠି ସୃଷ୍ଟି କରାଗଲା । ଏଥିରୁ ଯେଉଁ ସାଢ଼େ ପାଞ୍ଚଲକ୍ଷ ଟଙ୍କା ବର୍ଷକୁ ସୁଧ ଆସେ, ତାହା କେବଳ ମାଧମିକ ଶିକ୍ଷାର ଗୁଣାତ୍ମକ ପ୍ରସାର ଓ ଉନ୍ନତି ପାଇଁ ଖର୍ଚ୍ଚ ହେବ ବୋଲି ଆଇନ ପ୍ରଣୟନ ହୋଇଥିଲା । ମୁଁ ୧୯୮୦ରେ ବୋର୍ଡ଼ ଛାଡ଼ିଲା ବେଳକୁ ଆଉ ୨୦ ଲକ୍ଷ ଟଙ୍କା ଅଲଗା ରଖା ହୋଇଥିଲା ପାଠ୍ୟପୁସ୍ତକ

ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ଘର ତିଆରି ପାଇଁ । ଅଫିସ୍ ଘର ଥିଲା ପରିଷଦର ଗୋଟିଏ ପ୍ରଧାନ ସମସ୍ୟା ।

ମୁଁ ୧୯୭୦-୭୧ରେ ଆସିଲା ବେଳକୁ କେତୋଟି ପୁରୁଣା, ଅସଂଲଗ୍ନ ଛୋଟିଆ ବଖରାରେ ସବୁ ଅଫିସ୍ ବସୁଥିଲା । ସଭା କାର୍ଯ୍ୟ ପାଇଁ ସ୍ଥାନ ନଥିଲା । ବୋର୍ଡ଼ ହେଲା ଦିନୁ ଏହାର ସ୍ଥାୟୀ ଘର ହୋଇପାରି ନଥିଲା । କେତେକ ଲୋକ କଟକରେ ସ୍ଥାୟୀ ଘର କରାଇ ନ ଦେବାପାଇଁ ବହୁତ ଷଡ଼ଯନ୍ତ୍ର କରୁଥିଲେ । ବୋର୍ଡ଼ ଆଇନରେ କୁଆଡ଼େ ଥିଲା ଯେ ସରକାରଙ୍କର ବିନା ଅନୁମତିରେ କଟକରେ ଘର ତିଆରି କରାଯାଇପାରିବ ନାହିଁ । ମୁଁ ବୋର୍ଡ଼କୁ ଆସିଲା ପରେ ବର୍ତ୍ତମାନ ଯେଉଁ ବଡ଼ କୋଠାଟିରେ ପରିଷଦ ଅଫିସ୍ ଅଛି ତାକୁ ତିଆରି କରିବାର ଯୋଜନା କଲି । ଏଣେ ସବୁବେଳେ ପ୍ରତିବନ୍ଧକ ସୃଷ୍ଟି ହେଉଥାଏ ଯେ ସରକାରୀ ଅନୁମତି ନ ମିଳିଲେ କୋଠା ହୋଇପାରିବ ନାହିଁ । ଶେଷରେ ସରକାରଙ୍କ ପାଖକୁ ଚିଠି ଲେଖା ହେଲା ଯେ ମାସେ ଭିତରେ ଏଠାରେ ଘର ତିଆରି ବିଷୟରେ କୌଣସି ଉତ୍ତର ନ ପାଇଲେ ଧରି ନିଆଯିବ ଯେ ଏଠାରେ ଘର ତିଆରି ପାଇଁ ସରକାରଙ୍କର କୌଣସି ଆପତ୍ତି ନାହିଁ । ମୁଁ ଜାଣିଥିଲି ଯେ ସହଜରେ ସରକାରଙ୍କ ପାଖରୁ ଚିଠି ଆସିବ ନାହିଁ । ତେଣୁ ଏହି ଉପାୟରେ ଏଠାରେ ଘର ତିଆରି ଆରମ୍ଭ ହେଲା ଏବଂ ଦୁଇବର୍ଷ ଭିତରେ ତାହା ଶେଷ ହୋଇପାରିଥିଲା । ତା'ପରେ ମାଧ୍ୟମିକ ଶିକ୍ଷା ପରିଷଦର ଭବିଷ୍ୟତ ଯୋଜନା ଅନୁଯାୟୀ କେଉଁଠାରେ କିପରି ଘର ତିଆରି ହେବ ତାର ଚୂଡ଼ାନ୍ତ ଘର ତିଆରି ନକ୍ସା ପ୍ରସ୍ତୁତ ହେଲା । ପାଠ୍ୟପୁସ୍ତକ ପାଇଁ ଗୋଟିଏ ଚାରିମହଲା କୋଠା, ସ୍କୁଲ ଘରର ତୃତୀୟ ମହଲା, କର୍ମଚାରୀମାନଙ୍କର ରହିବା ପାଇଁ କୋଠାବାଡ଼ି ଓ ସ୍କୁଲ ପିଲାଙ୍କ ପାଇଁ ହଷ୍ଟେଲ ସ୍ଥାନ ସୂଚିତ ହୋଇ ନକ୍ସା ତିଆରି ହୋଇଥିଲା ।

ମୁଁ ଥିଲାବେଳେ ସ୍କୁଲର ତୃତୀୟ ମହଲା କରାଇଥିଲି । କିନ୍ତୁ ସେଥିପାଇଁ ବହୁତ ପରିଶ୍ରମ କରିବାକୁ ପଡ଼ିଥିଲା । ଗୋଟିଏ ଅଦ୍ଭୁତ ଅନୁଭୂତି ମୋର ହୋଇଥିଲା ଯେ ପରିଷଦର କୌଣସି ସମ୍ପାଦକ ବୋର୍ଡ଼ ସ୍କୁଲ ସପକ୍ଷରେ ନଥିଲେ । ସବୁ ସେକ୍ରେଟେରୀ ତଥା ଇନ୍ସପେକ୍ଟରମାନେ କାହିଁକି ଯେ ବୋର୍ଡ଼ ସ୍କୁଲ ବିରୁଦ୍ଧରେ ଥିଲେ ମୁଁ ଏହାର ମନସ୍ତାତ୍ତ୍ୱିକ କାରଣ ବୁଝିପାରି ନଥିଲି । ବୋର୍ଡ଼ ସ୍କୁଲର ଉନ୍ନତି ବିଷୟରେ ଯାହା ଆଲୋଚନା ହୁଏ, ସେକ୍ରେଟେରୀମାନେ ଆପତ୍ତି କରନ୍ତି । ସେମାନଙ୍କ ମତ ବିରୁଦ୍ଧରେ ପ୍ରସ୍ତାବ ଗୃହୀତ ହେଲେ ତାକୁ କରାଇ ଦିଅନ୍ତି ନାହିଁ । ସ୍କୁଲର ତୃତୀୟ ମହଲା ଠିକ୍ ଏହି କାରଣରୁ ବୋର୍ଡ଼ ସେକ୍ରେଟେରୀମାନେ ବହୁବର୍ଷ ବିଳମ୍ବ କରାଇଦେଲେ । ଶେଷରେ ମୁଁ ଜିଦ୍ ଧରି ମାସକ ଭିତରେ କାମ ଆରମ୍ଭ କରାଇଲି ଏବଂ କୌଣସିମତେ ତୃତୀୟ ମହଲାଟି ସମ୍ପୂର୍ଣ୍ଣ ହେଲା । ବୋର୍ଡ଼ ସ୍କୁଲ ଗୋଟିଏ ଉନ୍ନତ ଧରଣର ସ୍କୁଲ । ବହୁ ଦକ୍ଷ ଶିକ୍ଷକ ଅଛନ୍ତି । ତେଣୁ ସେଠାରେ ବହୁତ ପ୍ରକାର ଶିକ୍ଷା ସମ୍ବନ୍ଧୀୟ ପରୀକ୍ଷା ନିରୀକ୍ଷା କରାଯାଇପାରନ୍ତା, ବହୁ ନୂତନ କଥା ଏଠାରେ ଆରମ୍ଭ କରାଯାଇପାରନ୍ତା— କିନ୍ତୁ ପରିଷଦର କର୍ତ୍ତାମାନଙ୍କର ସବୁବେଳେ ଏହି ସ୍କୁଲ ପ୍ରତି ବିରୋଧ ମନୋଭାବ ଯୋଗୁଁ ଏହା ଗୋଟିଏ ଆଦର୍ଶ ସ୍କୁଲରେ ପରିଣତ ହୋଇପାରୁନାହିଁ ।

ଆଉ ଗୋଟିଏ ବିଶେଷ ଘଟଣା ମୁଁ ଲକ୍ଷ୍ୟ କରିଛି । ପରିଷଦ ତରଫରୁ ଶିକ୍ଷା କ୍ଷେତ୍ରରେ କୌଣସି ସାହସିକ ପଦକ୍ଷେପ ନେବା ପାଇଁ କେହି ଆଗଭର ହୁଅନ୍ତି ନାହିଁ ।

ଯାହା ଚାଲିଛି ତାକୁ ଚଳେଇ ରଖିବା ଯେପରି ଏମାନଙ୍କର ପ୍ରଧାନ ଲକ୍ଷ୍ୟ । ଏ ପ୍ରକାରର ରକ୍ଷଣଶୀଳ ମନୋବୃତ୍ତି ଶିକ୍ଷାକ୍ଷେତ୍ରକୁ ଅନେକ ସଙ୍କୁଚିତ କରିଦେଉଛି । ପ୍ରାଥମିକ ପାଠ୍ୟପୁସ୍ତକର ଆଭିମୁଖ୍ୟ ଓ ବୈଶିଷ୍ଟ୍ୟ ଆମେମାନେ ଯେପରି ଭାବରେ ବଦଳାଇ ପାରିଥିଲୁ ମାଧ୍ୟମିକ ସ୍କୁଲ ପାଠ୍ୟପୁସ୍ତକଗୁଡ଼ିକର ସେ ପ୍ରକାର ଗୁଣାତ୍ମକ ଉତ୍କର୍ଷ ସାଧନ କରାଇବାରେ ମୁଁ ସମ୍ପୂର୍ଣ୍ଣ ରୂପେ ଅକୃତକାର୍ଯ୍ୟ ହୋଇଥିଲି ।

ପ୍ରାୟ ସାତ ଆଠବର୍ଷ ବୋର୍ଡ଼ର କାର୍ଯ୍ୟକାରୀ କମିଟିରେ ରହିଲା ପରେ ୧୯୮୦ରେ ଯେତେବେଳେ ନିର୍ବାଚନ ହୁଏ, ଗୋଟିଏ ଶକ୍ତିଶାଳୀ ଗୋଷ୍ଠୀ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର କଲେ । କେତେକ ଇନ୍ସପେକ୍ଟର ଓ କେତେକ ଶିକ୍ଷା କର୍ତ୍ତା ମୋତେ କାର୍ଯ୍ୟକାରୀ କମିଟିରୁ ହଟାଇବା ଲାଗି ତା' ପୂର୍ବଦିନ ରାତିରେ ଗୋଟିଏ ସଭା କରି ଠିକ୍ କରିନେଲେ । ମୁଁ ଯେହେତୁ ବହୁତ କାମ ଆଗେଇ ନେଇ ଯାଉଛି, ଅନ୍ୟ କାହାରି ଆପତ୍ତି ଶୁଣୁନାହିଁ, ତେଣୁ ମୋତେ ହଟାଇବା ଦରକାର । ବୋର୍ଡ଼ ହାତରେ ବି ବହୁତ ଟଙ୍କା ହୋଇଗଲା । ଆଉ ମୋର ଆବଶ୍ୟକତା ନଥିଲା । ବୋର୍ଡ଼ ଅଫିସ୍ ଓ ସ୍କୁଲ ମଝିରେ ମୁଁ ଗୋଟିଏ ସୁନ୍ଦର ବଗିଚା କରାଇଲି । ଏଇଟା କୁଆଡ଼େ ଅଯଥା ଖର୍ଚ୍ଚର ଉଦାହରଣ ! ସେ ସ୍ଥାନରେ ଆଉ ଗୋଟିଏ ତିନିମହଲା କୋଠା ତିଆରି କରିବା ପାଇଁ କେତେକଙ୍କର ପ୍ରସ୍ତାବ ମୁଁ କାଟିଦେଲି । ଏପରି ବହୁତ କଥାରେ ମୋ ସହିତ କେତେକଙ୍କର ମତ ମିଳିଲା ନାହିଁ । ଫଳରେ ୧୯୮୦ ନିର୍ବାଚନରେ ମୋତେ ସେମାନେ ଗୋଟିଏ ଅଧିକ ଭୋଟରେ ହରାଇଦେଲେ । ପରେ ଶୁଣିଲି ଯେ ଭୋଟ ଗଣତି ମଧ୍ୟ ଭୁଲ୍‌ରେ ମୋ ବିରୁଦ୍ଧରେ ହୋଇଥିଲା ।

ତା'ପରଠାରୁ ମୁଁ ପରିଷଦର କୌଣସି ସଭାକୁ ଯାଇନାହିଁ । କାରଣ ମୋର ଦୃଢ଼ ମତ ଯେ ମୁଁ ଯେ କୌଣସି ଅନୁଷ୍ଠାନକୁ ଯିବି ସେଠାରେ ମୁଁ କାର୍ଯ୍ୟକ୍ଷମ ହୋଇ କାର୍ଯ୍ୟ କରାଇବି, କିନ୍ତୁ କୌଣସି କାର୍ଯ୍ୟ କରାଇ ନ ପାରିଲେ କେବଳ ବକ୍ତୃତା କରିବା ପାଇଁ ମଝିରେ ମଝିରେ ପରିଷଦରେ ଯୋଗ ଦେବାରେ ମୋର ଇଚ୍ଛା ନଥିଲା । ଯଦିଚ ସାଧାରଣ ବୋର୍ଡ଼ ଓ ଶିକ୍ଷା ପରିଷଦର ସଭ୍ୟ ହିସାବରେ ପାଞ୍ଚବର୍ଷ ଯାଏ ମୋର ନାମ ଥିଲା, ତଥାପି ମୁଁ ଆଉ ଗଲିନାହିଁ । ମୋତେ କେତେକ କହିଲେ ଯେ ଆଉ ଦୁଇମାସ ପରେ ତ ଆପଣ ପୁଣି କାର୍ଯ୍ୟକାରୀ କମିଟିକୁ ଯାଇପାରିବେ । କିନ୍ତୁ ଷଡ଼ଯନ୍ତ୍ର କରି ମୋତେ ହରାଇଦେବା ଯୋଗୁ ମୋର ମନ ଖରାପ ହେଲା । ବୋର୍ଡ଼ ପାଇଁ ଆଠ ଦଶ ବର୍ଷ ଧରି ମୁଁ ଏତେ କାମ କଲି ଅଥଚ ମୋତେ ହଟାଇବା ପାଇଁ ଷଡ଼ଯନ୍ତ୍ର ମୋତେ ବାଧିଲା । ଭାବିଲି, ବହୁତ କାମ ହୋଇ ସାରିଲାଣି । ମୁଁ ଯେଉଁ ତିନୋଟି କାମ କରିବି ବୋଲି ବୋର୍ଡ଼କୁ ଆସିଥିଲି ସେ ସବୁତ ପ୍ରାୟ ହୋଇଗଲାଣି । ତେଣୁ ଏଥିରୁ ଦୂରେଇଗଲି । ଅନ୍ୟାନ୍ୟ ବହୁତ କାମ କରିବାକୁ ଅଛି । ସେହି ଗୋଟିଏ କାମରେ କାହିଁକି ଲାଗି ରହିବି ?

■■■

# ୧୭

## 'ସାମୁଖ୍ୟ'

## ମାସିକ ପତ୍ରିକା

କଟକରେ ବୌଦ୍ଧିକ ବାତାବରଣର ବହୁତ ଅଭାବ । ସର୍ବସାଧାରଣଙ୍କ ପାଇଁ ଭଲ ଲାଇବ୍ରେରୀଟିଏ ନାହିଁ । ବୌଦ୍ଧିକ ଆଲୋଚନା ପାଇଁ ଉପଯୁକ୍ତ ଫୋରମର ଅଭାବ । କୌଣସି ପ୍ରକାର ବ୍ୟାପକ ସାଂସ୍କୃତିକ ଆବହାଓ୍ୱା ସୃଷ୍ଟି ପାଇଁ ନିରବଚ୍ଛିନ୍ନ ଉଦ୍ୟମ ବି ନାହିଁ । ଏଥିରେ ତୁମେ ଯଦି ଗତାନୁଗତିକ ବାତାବରଣ ଭିତରେ ଗଡ଼ି ଗଡ଼ି ଚାଲିଥିବ, ତା'ହେଲେ ତୁମର ଯେଉଁ ଚିନ୍ତନ ଶକ୍ତି ଓ ବୌଦ୍ଧିକ କ୍ଷମତା ଥିବ ତାହା ଅବ୍ୟବହୃତ ହୋଇ କିମ୍ବା ଉଦ୍ଦୀପନା ବିହୀନ ହୋଇ କ୍ରମେ କ୍ରମେ ସଙ୍କୁଚିତ ହୋଇଯିବ । ପାରିପାର୍ଶ୍ୱିକ ପରିସ୍ଥିତି ଅନୁସାରେ ମନୁଷ୍ୟର ବ୍ୟକ୍ତିତ୍ୱ ଓ ମାନସିକ କ୍ରିୟା ପ୍ରକ୍ରିୟା ଗଢ଼ିଉଠେ ସତ, କିନ୍ତୁ ବ୍ୟକ୍ତି ବିଶେଷର ମଧ୍ୟ କ୍ଷମତା ଅଛି ତାର ଅପ୍ରୀତିକର ବା ଅଣଉଦ୍ଦୀପକ ପରିବେଶକୁ ବଦଳାଇ ନିଜ ରୁଚି ଏବଂ ଇଚ୍ଛା ଅନୁସାରେ ନୂଆ ପରିବେଶ ସୃଷ୍ଟି କରିବା । ଏ ପ୍ରକାର ପରିବର୍ତ୍ତିତ ପରିବେଶରେ ନିଜର ଆନନ୍ଦ ଅଛି । ମାନସିକ ଅଭିବୃଦ୍ଧିରେ ଏହା ବହୁତ ସାହାଯ୍ୟ କରେ । ମୁଁ ଗତାନୁଗତିକ ତଥା ଅନୁପ୍ରାଣିତ ପରିବେଶର ଦାସ ହୋଇ ରହିବାକୁ ଚାହେଁ ନାହିଁ । ମୋର ଆଦର୍ଶ ଓ ଇଚ୍ଛା ଅନୁଯାୟୀ ମୁଁ ପରିବେଶକୁ ନୂତନ ରୂପରେ ସଜାଇବା ବା ସମ୍ପୂର୍ଣ୍ଣ ଅଭିନବ ପରିବେଶ ସୃଷ୍ଟି କରିବାରେ ଆଗ୍ରହୀ । ମୁଁ ଘର କରିଥିବା ସେଦିନର ଦୁର୍ଗମ ପରିବେଶକୁ ବଦଳାଇ ନିଜ ରୁଚି ଅନୁସାରେ ଘର, ବଗିଚା, ପୋଖରୀ ସୃଷ୍ଟି କଲି । ନୂତନ ବୌଦ୍ଧିକ ପରିବେଶ ସୃଷ୍ଟି ପାଇଁ ବିଜ୍ଞାନ ପ୍ରଚାର ସମିତି ଆରମ୍ଭ ହୋଇଥିଲା ।

ତା'ପରେ ୧୯୬୬ରେ ଗୋଟିଏ ଆଧୁନିକ ଧରଣର ମାସିକ ପତ୍ରିକା ଓଡ଼ିଆରେ ପ୍ରକାଶ କରିବା ପାଇଁ ସିଦ୍ଧାନ୍ତ ନେଲି । ଏହାର ମୂଳ ଉଦ୍ଦେଶ୍ୟ ହେଲା ଯେ ଜଣେ ପାଠକ ପୂରା ପତ୍ରିକାଟି ପଢ଼ିସାରିଲା ପରେ ଜୀବନର ବହୁ କ୍ଷେତ୍ରରେ ଯେପରି କିଛି ଜ୍ଞାନ ହାସଲ କରିପାରିବ । ଏଥିରେ ଲୋକପ୍ରିୟ ବିଜ୍ଞାନ, କଳା ଓ ସାହିତ୍ୟ, ଜାତୀୟ ଏବଂ ଆନ୍ତର୍ଜାତୀୟ ରାଜନୈତିକ ଖବର, ଖେଳ କସରତ, ମନସ୍ତାତ୍ତ୍ୱିକ ପ୍ରଶ୍ନୋତ୍ତର, ସାଂସ୍କୃତିକ ଓ ସାମାଜିକ ସମସ୍ୟା ଉପରେ ଚିଠିପତ୍ର ପ୍ରଭୃତି ବିଭିନ୍ନ ବିଷୟରେ ଲେଖା ପ୍ରକାଶ ପାଇବ, ତା'ହେଲେ ଜଣେ ବିଜ୍ଞାନୀ ଯେପରି ପୃଥିବୀର ଅନ୍ୟାନ୍ୟ ବିଷୟରେ ଖବର ପାଇପାରିବ, ଜଣେ

ସାହିତ୍ୟିକ ମଧ୍ୟ ବିଜ୍ଞାନ ଓ ଅନ୍ୟାନ୍ୟ କ୍ଷେତ୍ରରେ ଜ୍ଞାନ ହାସଲ କରିପାରିବ । ଅର୍ଥାତ୍ ଆଧୁନିକ ପୃଥିବୀରେ ଜଣେ ପରିପୂର୍ଣ୍ଣ ବ୍ୟକ୍ତିତ୍ୱର ମନୁଷ୍ୟ ହେବାକୁ ହେଲେ ବିଜ୍ଞାନ, ସାହିତ୍ୟ, ଅର୍ଥନୀତି, ରାଜନୀତି ପ୍ରଭୃତି ବିଷୟରେ କିଛି କିଛି ଜ୍ଞାନ ହାସଲ କରିବା ଉଚିତ । ସାହିତ୍ୟିକମାନଙ୍କ ପକ୍ଷରେ ବିଜ୍ଞାନ ବହି ପଢ଼ି ଜ୍ଞାନ ଆହରଣ କରିବା ଯେପରି କଷ୍ଟକର, ଅନ୍ୟମାନଙ୍କର ସବୁ ବିଭାଗରେ ଖବର ସଂଗ୍ରହ କରିବା ସେହିପରି କଷ୍ଟସାଧ । ଗୋଟିଏ ପତ୍ରିକାରେ ଏସବୁ ବିଷୟର ଆଲୋଚନା ରହିଲେ ପାଠକପାଠିକାମାନଙ୍କର ବହୁ ଉପକାର ହେବ ଏବଂ ଆଧୁନିକ ମନୁଷ୍ୟର ବୌଦ୍ଧିକ କ୍ଷେତ୍ର ତିଆରି କରିବାରେ ସାହାଯ୍ୟ କରିବ । ମୋ ନିଜର ମଧ୍ୟ ଏ ସବୁ ବିଷୟରେ ବ୍ୟାପକ ଜ୍ଞାନ ହେବ । ଓଡ଼ିଶାର ସଂକୀର୍ଣ୍ଣ ପରିବେଶରେ ବୌଦ୍ଧିକ ଉଦ୍ଦୀପନାର ସମ୍ଭାବନା ରହିବ ।

ଏହି ଉଦ୍ଦେଶ୍ୟରେ ମାସିକ ପତ୍ରିକା 'ସାମ୍ମୁଖ୍ୟ' ମୋ ସଂପାଦନାରେ ପ୍ରକାଶ ପାଇଲା । ପ୍ରତ୍ୟେକ ସଂଖ୍ୟାର ୮୦ ପୃଷ୍ଠା ଭିତରୁ ୨୪ ପୃଷ୍ଠା ଆଧୁନିକ ବୈଜ୍ଞାନିକ ଖବର, ଆନ୍ତର୍ଜାତୀୟ ଓ ଜାତୀୟ ସମସ୍ୟା ଉପରେ ପ୍ରତ୍ୟେକ ୧୬ ପୃଷ୍ଠା, କଳା ଓ ସାହିତ୍ୟ ୧୬ ପୃଷ୍ଠା, ଖେଳ, ପ୍ରଶ୍ନୋତ୍ତର ପ୍ରଭୃତି ଅନ୍ୟାନ୍ୟ ବିଷୟରେ ଆଉ ୮ ପୃଷ୍ଠାର ଯୋଜନା ହେଲା ।

ଏହି ପତ୍ରିକାର ଲକ୍ଷ୍ୟ ଓ ଆଭିମୁଖ୍ୟ ପ୍ରତ୍ୟେକ ସଂଖ୍ୟାରେ ଛପା ହୋଇଥାଏ । ଏହି ଲକ୍ଷ୍ୟକୁ ଆଖି ଆଗରେ ରଖି ଲେଖକମାନଙ୍କୁ ଲେଖା ପ୍ରସ୍ତୁତ କରିବା ପାଇଁ ଅନୁରୋଧ କରା ହୋଇଥିଲା । ସାମ୍ମୁଖ୍ୟର ଲକ୍ଷ୍ୟ ଥିଲା—

(କ) ସମାଜବାଦ ପ୍ରତିଷ୍ଠା ଲାଗି ବଳିଷ୍ଠ ଚେତନା ଓ କର୍ମ ପ୍ରେରଣା ସୃଷ୍ଟି ।

(ଖ) ଚିନ୍ତାଧାରା ଓ ଦୈନନ୍ଦିନ କାର୍ଯ୍ୟକଳାପରେ ବୈଜ୍ଞାନିକ ଦୃଷ୍ଟିକୋଣ ଓ ଆଭିମୁଖ୍ୟର ବିକାଶ ।

(ଗ) ସାମାଜିକ ଓ ଶିଳ୍ପ କ୍ଷେତ୍ରରେ ବିଜ୍ଞାନର ପ୍ରସାର ଓ ପ୍ରୟୋଗ ।

(ଘ) ସମସ୍ତ ପ୍ରକାର କୁସଂସ୍କାର, ସାଂପ୍ରଦାୟିକତା ପ୍ରଭୃତି ସଂକୀର୍ଣ୍ଣତା ବିରୁଦ୍ଧରେ ଧାରାବାହିକ ଅଭିଯାନ ।

(ଙ) ବିଶ୍ୱଶାନ୍ତି ପ୍ରତିଷ୍ଠା ଲାଗି ବିଶ୍ୱଜନତାର ଐତିହାସିକ ସଂଗ୍ରାମ ସହିତ ସହଯୋଗ ।

(ଚ) ଗଭୀର ମାନବିକତା ଉପରେ ପ୍ରତିଷ୍ଠିତ ସାହିତ୍ୟ ଓ କଳାର ସୃଷ୍ଟି ଓ ପ୍ରସାର ।

'ସାମ୍ମୁଖ୍ୟ' ପୂରା ପାଞ୍ଚବର୍ଷ ଯାଏଁ ପ୍ରକାଶିତ ହୋଇଥିଲା । ଶ୍ରୀଯୁକ୍ତ ରବି ଦାସ ଏହାର ମ୍ୟାନେଜର ହେଲେ । ସେ ଜଣେ ବାମପନ୍ଥୀ, ପ୍ରଗତିଶୀଳ, ନିଷ୍ଠାବାନ ଓ ଆଦର୍ଶବାଦୀ ଯୁବକ ଥିଲେ । ଏହାର ପରିଚାଳନାରେ ତାଙ୍କର ଅଦମ୍ୟ ପରିଶ୍ରମ ଓ ଆନ୍ତରିକ ଉଦ୍ୟମ ଯୋଗୁ 'ସାମ୍ମୁଖ୍ୟ' ଚାଲି ପାରିଥିଲା । ମୁଁ ଚିଠି ଏବଂ ଫୋନ୍‌ରେ ଲୋକଙ୍କ ସାଥିରେ ସମ୍ପର୍କ ସ୍ଥାପନ କଲା ପରେ ଲେଖା, ବିଜ୍ଞାପନ ପ୍ରଭୃତି ସଂଗ୍ରହ କରିବା ପାଇଁ ସେ ଯାଉଥିଲେ । ରବି ଦାସଙ୍କ ଛଡ଼ା ଲେଖକ ଶ୍ରୀ ଲକ୍ଷ୍ମୀ ନାରାୟଣ ରାୟସିଂହ ମଧ୍ୟ କିଛିଦିନ 'ସାମ୍ମୁଖ୍ୟ' କାର୍ଯ୍ୟରେ ନିୟୋଜିତ ହୋଇଥିଲେ । ଏହାର ଅଫିସ୍ ପାଇଁ ଦୋଳମୁଣ୍ଡାଇ ଛକରେ ବଖରାଏ ଘରଭଡ଼ା ନିଆଯାଇଥିଲା, କିନ୍ତୁ ମୋ ଘରେ 'ସାମ୍ମୁଖ୍ୟ' ପାଇଁ ସବୁପ୍ରକାର ସଭା ହେଉଥିଲା । 'ସାମ୍ମୁଖ୍ୟ'ର ଜନପ୍ରିୟତା ବଢ଼ିବା ଫଳରେ ଆମ ସାହି ସାମ୍ମୁଖ୍ୟମାର୍ଗ ନାମରେ

କ୍ରମେ ପରିଚିତ ହେଲା । ଆଜିଯାଏ ସୁଦ୍ଧା କିଛି କିଛି ଚିଠି ମୋ ପାଖକୁ ସାମ୍ମୁଖ୍ୟ ମାର୍ଗ ଠିକଣାରେ ଆସୁଛି ।

ପ୍ରଥମେ ସବୁପ୍ରକାର ଲେଖା ପ୍ରତ୍ୟେକ ସଂଖ୍ୟା ପାଇଁ ପାଇବାରେ ଅସୁବିଧା ହେଉଥିଲା । ବିଜ୍ଞାନ, ସାହିତ୍ୟରେ ଲେଖାମାନ ମିଳିଯାଉଥିଲା, କିନ୍ତୁ ଆନ୍ତର୍ଜାତିକ ଏବଂ ଜାତୀୟ, ରାଜନୈତିକ ଓ ଅର୍ଥନୈତିକ ଲେଖା ମିଳିବାରେ ବିଶେଷ ଅସୁବିଧା ହୁଏ । କୌଣସି ସଂଖ୍ୟା ପାଇଁ ଲେଖା ନ ମିଳିଲେ ମୁଁ ଓ ରବି ଏ ସମ୍ପର୍କରେ ପ୍ରବନ୍ଧ ଲେଖି ଛଦ୍ମନାମ ଦେଇ ପ୍ରକାଶ କରୁ । କିନ୍ତୁ କ୍ରମେ ଏ ବିଷୟରେ ଲେଖା ଆସିଗଲା । କେତେକ ନୂଆ ଲେଖକ ଏ ବିଷୟରେ ଲେଖିବା ପାଇଁ ଆଗ୍ରହୀ ହେଲେ । ତଥାପି ବହୁଦିନ ଯାଏ ଆମକୁ ଅନେକ ଲେଖା ଲେଖିବାକୁ ହୁଏ । ତା'ଛଡ଼ା ଏ ବିଷୟରେ ଯେ କୌଣସି ଲେଖା ତ ଗୃହୀତ ହୁଏନାହିଁ । ଆମ ଲକ୍ଷ୍ୟ ଓ ଆଭିମୁଖ୍ୟର ବିପରୀତାଭିମୁଖୀ ଲେଖା ପ୍ରକାଶିତ ହୁଏ ନାହିଁ ।

'ସାମ୍ମୁଖ୍ୟ'ର ପ୍ରତ୍ୟେକ ବିଭାଗର ଛୋଟିଆ ଛୋଟିଆ ବାକ୍ସ ଭିତରେ କିଛି ଟିପ୍‌ପଣୀ ଦିଆଯାଏ । ଗୋଟିଏ ସଂଖ୍ୟାରେ ଦଶ ବାରଟି ଏପରି ବାକ୍‌ସ ବାହାରେ । ସେଗୁଡ଼ିକୁ ମୁଁ ଲେଖେ । ଏହାକୁ ପ୍ରଥମେ ପାଠକମାନେ ପଢ଼ି ବସନ୍ତି ଏବଂ ଏହା ଗୋଟିଏ ବଳିଷ୍ଠ ଆଭିମୁଖ୍ୟର ସୂଚନା ଦେଉଥିବାରୁ ଟିପ୍‌ପଣୀଗୁଡ଼ିକ ବହୁତ ଆଦୃତ ହୁଏ । ଥରେ ଦୁଇଥର ଏହା ବନ୍ଦ ହୋଇଗଲେ ବହୁ ପ୍ରତିବାଦ ପତ୍ର ମୋ ପାଖକୁ ଆସେ । ଗୋଟିଏ ବାକ୍‌ସ ଟିପ୍‌ପଣୀର ଉଦାହରଣ ହେଉଛି- ''ଅତୀତରେ ଶୋଷଣ ଲାଗି ବର୍ତ୍ତମାନ ପୁରସ୍କାର ।'' ରାଜା ମହାରାଜାମାନଙ୍କର ହାତ ପାଣ୍ଠି ସମ୍ପର୍କରେ ଏହା ଲେଖା ହୋଇଥିଲା । ଏପରି ଟିପ୍‌ପଣୀ ସମ୍ପାଦକୀୟ ଓ କେତେକ ଲେଖା ମାଧ୍ୟମରେ ଅପରିବର୍ତ୍ତିତ, ସ୍ଥିତିଶୀଳ, ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ସଂସ୍ଥା ବିରୁଦ୍ଧରେ ପ୍ରଚଣ୍ଡ ଅଭିଯାନ ଏହି ପତ୍ରିକାର ମୁଖ୍ୟ ଆଭିମୁଖ୍ୟ ହୋଇଥିଲା । ସାମଗ୍ରିକ ବୌଦ୍ଧିକ ବିକାଶ ଲାଗି ଏହାର ଲେଖାଗୁଡ଼ିକ ଉପାଦେୟ ହେଉଥିଲା ବୋଲି ବହୁ ଚିଠିପତ୍ର ମୋ ପାଖକୁ ଆସେ । ଏବେ ବି ମଝିରେ ମଝିରେ ଖଣ୍ଡେ ଖଣ୍ଡେ ଚିଠି ଆସେ ଏହାକୁ ପୁଣି ଥରେ ଆରମ୍ଭ କରିବାକୁ । କିନ୍ତୁ ଲୋକବଳ ଓ ଅର୍ଥବଳ ଅଭାବରୁ ମୁଁ ଏଥିରେ ହାତ ଦେବାକୁ ସାହସ କରିପାରୁ ନାହିଁ । କେହି ଜଣେ ଏହାର ପ୍ରକାଶନା ଓ ବ୍ୟବସାୟିକ ଦିଗଟି ସଂପୂର୍ଣ୍ଣ ରୂପେ ବହନ କଲେ ମୁଁ ପୁଣି ଥରେ ଏହାର ସମ୍ପାଦନା କରିବା ପାଇଁ ଆଗ୍ରହୀ; କିନ୍ତୁ ଏଥିରେ କେହି ରାଜି ନୁହନ୍ତି ।

'ସାମ୍ମୁଖ୍ୟ' ଫୋରମ୍ ପାଇଁ ପ୍ରତିମାସରେ ଥରେ ଲେଖକମାନଙ୍କର ଓ କେତେକ ବିଶିଷ୍ଟ ଲୋକମାନଙ୍କର ବୈଠକ ମୋ ବଗିଚାରେ ଅନୁଷ୍ଠିତ ହୁଏ । ସବୁ ଲେଖକଙ୍କୁ ନିମନ୍ତ୍ରଣ କରାଯାଏ । ଥରେ ଦକ୍ଷିଣ ଆଫ୍ରିକାର ବିଶିଷ୍ଟ ସଂଗ୍ରାମୀ, ବୁଦ୍ଧିଜୀବୀ ଡକ୍ଟର ୟୁସୁଫ୍ ଦାଦୁ ଓ ଆଉ ଜଣେ ନେତାଙ୍କୁ 'ସାମ୍ମୁଖ୍ୟ' ଫୋରମ୍ ତରଫରୁ ଅଭ୍ୟର୍ଥନା ଦିଆଯାଇଥିଲା । ଏଥିରେ ଡକ୍ଟର ମହତାବ, ଶ୍ରୀ ନବକୃଷ୍ଣ ଚୌଧୁରୀ ପ୍ରଭୃତି ବହୁ ରାଜନୈତିକ ବ୍ୟକ୍ତି ଓ ଲେଖକ ଯୋଗ ଦେଇଥିଲେ । ଏ ପ୍ରକାର ବୌଦ୍ଧିକ ଉଦ୍ଦୀପନାଗତ ବାତାବରଣ ଭିତରେ ପାଞ୍ଚବର୍ଷ ଯାଏଁ ସାମ୍ମୁଖ୍ୟ ପ୍ରକାଶ ପାଇଥିଲା । ବର୍ଷର ଶେଷ ସଂଖ୍ୟାରେ ଏହାର ସବୁ ଲେଖା ଓ ଲେଖକଙ୍କର ଗୋଟିଏ ସାମୂହିକ ତାଲିକା ପ୍ରକାଶ କରାଯାଏ । ଏହା ଗୋଟିଏ

ଉଚ୍ଚକୋଟୀର ମାସିକ ପତ୍ରିକାରେ ପରିଣ   ହୋଇଥିଲା । ପତ୍ରିକାଟିର ବିଭିନ୍ନ ବିଭାଗରେ ପ୍ରକାଶିତ ବିଷୟଗୁଡ଼ିକର ବାର୍ଷିକ ସମୀକ୍ଷା ାକେ ଦିଆଗଲା– ଏହାର ସାମଗ୍ରିକ ବୌଦ୍ଧିକ ବିକାଶର ପରିସର ବିଷୟରେ ଗୋଟିଏ ମୋଟାମୋଟି ଧାରଣା ଦେବା ଲାଗି ।

| | ଦ୍ବିତୀୟବର୍ଷ | ତୃତୀୟବର୍ଷ |
|---|---|---|
| ମୋଟ୍ ପୃଷ୍ଠା ସଂଖ୍ୟା | ୯୨୦ | ୯୮୦ |
| ଲେଖକ ସଂଖ୍ୟା | ୧୧୧ | ୧୨୮ |
| ବିଜ୍ଞାନ ଲେଖା | ୪୧ | ୪୬ |
| କଳା ଓ ସାହିତ୍ୟ | | |
| ସମାଲୋଚନା ସାହିତ୍ୟ | ୯୦ | ୧୦୯ |
| କବିତା | | |
| ଜାତୀୟ ସମସ୍ୟା | ୨୭ | ୫୭ |
| ଆନ୍ତର୍ଜାତୀୟ ସମସ୍ୟା | ୨୭ | ୩୩ |
| ଅନ୍ଧାରୀ ମନର କଥା | ୧୦ | ୨୦ |
| ଭାବନା ଚକ୍ର | | |
| (ଚିଠି ଉପରେ ପର୍ଯ୍ୟବସିତ ଆଲୋଚନା) | – | ୧୮ |
| ଟିପଣୀ | ୩୦ | ୪୦ |
| ବିଜ୍ଞାନ ପ୍ରସଙ୍ଗ | ୩୦ | ୪୦ |
| ଜାତୀୟ ପ୍ରସଙ୍ଗ | ୩୬ | ୪୬ |
| ଆନ୍ତର୍ଜାତୀୟ ପ୍ରସଙ୍ଗ | ୩୨ | ୪୪ |

ବାମପନ୍ଥୀ ଲକ୍ଷ୍ୟ ଥାଇ ବହୁ ଲେଖାର ଆବଶ୍ୟକତା ଥିଲାବେଳେ ଏପ୍ରକାର ଅଗ୍ରଧର୍ଷୀ ଲେଖା ବହୁତ କମ୍ ମିଳୁଥିଲା । ପ୍ରଥମେ କିଛିଦିନ ଆର୍ଥିକ କ୍ଷତି ଘଟିଲା । ପରେ ଏହାର ଖର୍ଚ୍ଚ ପ୍ରାୟ ଉଠି ଯାଉଥିଲା । 'ସାମ୍ମୁଖ୍ୟ' ପ୍ରକାଶର ତିନିବର୍ଷ ପରେ ରବି ଦାସ ସକ୍ରିୟ ରାଜନୀତିରେ ଯୋଗ ଦେବା ପାଇଁ ଆଗ୍ରହାନ୍ବିତ ହେଲେ । ଶେଷରେ ସେ ଏହାର ପରିଚାଳନା ଦାୟିତ୍ୱରୁ ଅବ୍ୟାହତି ନେଇଥିଲେ । ସେ ଯିବା ପରେ 'ସାମ୍ମୁଖ୍ୟ'ର ମୁଦ୍ରଣ ଓ ବଣ୍ଟନ କାର୍ଯ୍ୟରେ ବହୁତ ଅସୁବିଧା ହେଲା । ଛାପାଖାନା ଓ ପତ୍ରପତ୍ରିକା ବିକ୍ରି କରୁଥିବା ଅନେକ ଲୋକଙ୍କ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ଲେଖାଲେଖି ବ୍ୟାପାର କଥା ମୁଁ ବୁଝୁଥିଲି । ମୁଦ୍ରଣ ଓ ବ୍ୟାବସାୟିକ ଦିଗଟି ସେ ବୁଝୁଥିଲେ । ତଥାପି ସେ ଗଲା ପରେ ମଧ୍ୟ ଦୁଇବର୍ଷ ଯାଏ 'ସାମ୍ମୁଖ୍ୟ' ପ୍ରକାଶିତ ହେଉଥିଲା । ତା'ପରେ 'ସାମ୍ମୁଖ୍ୟ' ପ୍ରତି ଗୋଟିଏ ଭୟଙ୍କର ଆର୍ଥିକ ବିପତ୍ତି ଦେଖା ଦେଲା । ଓଡ଼ିଶା ସରକାରଙ୍କର ଗୁପ୍ତ ବିଭାଗ ଗୋଟିଏ ରିପୋର୍ଟ ଦେଇଥିଲେ ଯେ ଏହା ଗୋଟିଏ ସରକାରୀ ବିରୋଧୀ ପତ୍ରିକା । ତା' ଫଳରେ ସରକାରୀ ଓ ଅନ୍ୟାନ୍ୟ ଅର୍ଦ୍ଧ ସରକାରୀ ବିଭାଗର ବିଜ୍ଞାପନସବୁ ବନ୍ଦ ହୋଇଗଲା । ସେତେବେଳକୁ ସରକାରଙ୍କଠାରେ ମୋର ଚାରି ପାଞ୍ଚହଜାର ଟଙ୍କାଯାଏଁ ବିଜ୍ଞାପନ ବାବଦରେ ବାକି ପଡ଼ିଥାଏ । ସେତକ ଆଉ ମିଳିଲା ନାହିଁ । ପରେ ଜାଣିଲି ପୋଲିସ୍ ବିଭାଗରେ କାମ କରୁଥିବା ଜଣେ ବରିଷ୍ଠ ଅଫିସର ଏ ପ୍ରକାର ରିପୋର୍ଟ ଦେଇଥିଲେ । ତାଙ୍କର ଲେଖା ମଧ୍ୟ

ଏଥିରେ ପ୍ରକାଶିତ ହୋଇଥିଲା । ତଥାପି ସେ ଏହା କରିଥିଲେ । ପାଞ୍ଚବର୍ଷ ପରେ 'ସାମ୍ମୁଖ୍ୟ' ପତ୍ରିକା ବନ୍ଦ ହୋଇଗଲା । ମୋ ହାତରୁ ଚାରି ପାଞ୍ଚହଜାର ଟଙ୍କା କ୍ଷତି ହେଲା ।

'ସାମ୍ମୁଖ୍ୟ' ଚଳାଇବାରେ ଓଡ଼ିଶା ପରି ରାଜ୍ୟରେ ବହୁ ବାଧାବିଘ୍ନ ଦେଇ ମୋତେ ଯିବାକୁ ପଡ଼ିଥିଲା । 'ସାମ୍ମୁଖ୍ୟ' ପ୍ରକାଶ କରିବା ପୂର୍ବରୁ ଏ ସଂପର୍କରେ କୁଳପତି ଡକ୍ଟର ପରିଜାଙ୍କ ପାଖରୁ ଗୋଟିଏ ଅନୁମତି ପତ୍ର ଆଣି ମୁଁ ରଖିଥାଏ; କିନ୍ତୁ ଏ ବିଷୟ ମୁଁ କାହାରିକୁ ଜଣାଇ ନଥାଏ । କାରଣ ମୋ ବିରୋଧୀ ବ୍ୟକ୍ତିମାନେ ପୁଣି ତାଙ୍କୁ ପ୍ରବର୍ତ୍ତାଇ ଏହା ପ୍ରତ୍ୟାହାର କରି ନେଇପାରନ୍ତି ବୋଲି ମୋର ଆଶଙ୍କା ଥାଏ । ଆଉ କୌଣସି କୁଳପତିଙ୍କ ସମୟରେ ମୋତେ ବୋଧହୁଏ ଏପରି ଅନୁମତି ମିଳିନଥାନ୍ତା ।

ଉତ୍କଳ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍‌ର କେତେକ ସଭ୍ୟ ମୋର ବିରୋଧୀ ଥିଲେ । ସେମାନେ ପ୍ରତି ମାସେ ଦୁଇମାସରେ ଗୋଟିଏ ପ୍ରସ୍ତାବ ଗୃହୀତ କରାଇ ମୋ ପାଖକୁ ଅଭିଯୋଗ ପତ୍ର ପଠାନ୍ତି -

''ତୁମେ 'ସାମ୍ମୁଖ୍ୟ' ନାମରେ ବ୍ୟବସାୟ କରୁଛ ।''

ମୁଁ କେବଳ ଲେଖେ– ''ନାହିଁ ।''

''ତୁମେ ନିଜେ ଗୋଟିଏ ପ୍ରେସ୍ ଚଳାଉଛ ।''

ମୁଁ ସେହିପରି ଲେଖେ– ନାହିଁ ।''

ସେମାନଙ୍କ ଚିଠିର ଜବାବ୍‌ରେ ମୁଁ ହଁ, ନାହିଁର ସଂକ୍ଷିପ୍ତ ଉତ୍ତର ଦିଏ । ଏପରି ଭାବରେ ବହୁ ଚିଠି ଆସିଥିଲା ।

ସେ ସମୟରେ ଥରେ ଓଡ଼ିଶା ଛାତ୍ରମାନଙ୍କର ଆନ୍ଦୋଳନ ହୋଇଥିଲା । ଏ ସମ୍ପର୍କରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ରଙ୍କ ଆଗରେ କେତୋଟି 'ସାମ୍ମୁଖ୍ୟ' ପତ୍ରିକା ଧରି ମୋର ଜଣେ ସହଯୋଗୀ ଅଧ୍ୟାପକ ପହଞ୍ଚିଥିଲେ ଏବଂ ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ ଯେ ଏସବୁ ଛାତ୍ର ବିଦ୍ରୋହ ମୁଁ 'ସାମ୍ମୁଖ୍ୟ' ମାଧ୍ୟମରେ କରାଉଛି । ବୀରେନବାବୁ ମୋତେ ଏକଥା କହିଥିଲେ । ତା'ପରେ 'ନିଆଁ ଖୁଣ୍ଟା'ରେ ମୋର କେତେକ ସଂପାଦକୀୟରୁ ପୂର୍ବାପର ସମ୍ପର୍କ ନଥିବା ବୈପ୍ଲବିକ ଚିନ୍ତା ଥିବା ଲେଖାକୁ ଏକତ୍ର କରି ଗୋଟିଏ ଲେଖା ପ୍ରକାଶିତ ହେଲା ଯେ ଫରାସୀ ବିପ୍ଳବର ଚିନ୍ତାନାୟକ ରୁଷୋ ଯେପରି ଏହାର ପ୍ରକୃତ କର୍ଣ୍ଣଧାର, ସେହିପରି ଓଡ଼ିଶା ଛାତ୍ର ଅଶାନ୍ତିର ମୁଁ ହେଉଛି ତାତ୍ତ୍ୱିକ କର୍ଣ୍ଣଧାର । ଗୋଦାବରୀଶ ମହାପାତ୍ରଙ୍କର ଏହି ଲେଖାଟି ମୋ ବିରୁଦ୍ଧରେ ଯେତେ ନ ଗଲା, ମୋର ବୈପ୍ଳବିକ ଚିନ୍ତାଧାରାର ପ୍ରଶଂସା ସେତେବେଶି ହୋଇଥିଲା ବୋଲି ଅନ୍ୟମାନଙ୍କର ଧାରଣା ହେଲା । ତାଙ୍କୁ ମୋର ଜଣେ ଅଧ୍ୟାପକ ବନ୍ଧୁ ପ୍ରବର୍ତ୍ତାଇ ଏହି ଲେଖାଟିକୁ ପ୍ରକାଶ କରାଇଥିଲେ । ମୁଁ ଗୋଦାବରୀଶ ବାବୁଙ୍କୁ ଏ ବିଷୟରେ ପଚାରିଥିଲି । ସେ ହସି ହସି ମୋତେ କହିଥିଲେ–

''ଆପଣ କ'ଣ ଏଥିଲାଗି ସତରେ ଦୁଃଖିତ ହୋଇଛନ୍ତି ?''

ଆଉ ଗୋଟିଏ ଘଟଣା ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ । ଗୋଟିଏ ସଂଖ୍ୟାରେ ରାଜ୍ୟ ଶାସନରେ ମୁଖ୍ୟ ସଚିବଙ୍କ ଦାୟିତ୍ୱ ବିଷୟରେ ଗୋଟିଏ ତାତ୍ତ୍ୱିକ ଲେଖା ଅଧ୍ୟାପକ ଡକ୍ଟର

ଭ୍ରମରବର ଜେନା ଲେଖିଥିଲେ । ସେ କହିବାକୁ ଚାହିଁଥିଲେ ଯେ ଲୋକ ପ୍ରତିନିଧିମୂଳକ ମନ୍ତ୍ରୀ ପରିଷଦ ଶାସନ ସଂସ୍ଥାରେ ମୁଖ୍ୟ ସଚିବଙ୍କର ସ୍ଥାନ ଓ କାର୍ଯ୍ୟକଳାପ ଅଗଣତାନ୍ତ୍ରିକ । ଏହା ଗୋଟିଏ ତାତ୍ତ୍ୱିକ ଲେଖା । ଏଥିରେ କାହାର ନାମ ନଥିଲା କି କୌଣସି ପ୍ରକାରର ଅସୂୟାମୂଳକ ଉଦ୍ଦେଶ୍ୟ ଏ ଲେଖାର ନଥିଲା । ତଥାପି ବ୍ରିଟିଶ୍ ଅନୁପ୍ରାଣିତ ଔପନିବେଶିକ ଶାସନ ସଂସ୍ଥାର ତତ୍କାଳୀନ ମୁଖ୍ୟ ସଚିବ ଶ୍ରୀ ଶିବରମଣ ଡକ୍ୱର ଜେନାଙ୍କୁ କାର୍ଯ୍ୟରୁ ସସ୍‌ପେଣ୍ଡ କରିବା ପାଇଁ ହଠାତ୍ ଆଦେଶ ଦେଇଥିଲେ । ଆଦେଶ ଆସିବା ପୂର୍ବରୁ ମୁଁ ତାର ସୂଚନା ପାଇ ମୁଖ୍ୟମନ୍ତ୍ରୀ ବୀରେନ ମିତ୍ରଙ୍କୁ 'ସାମ୍ମୁଖ୍ୟ'ର ଲେଖାଟି ଦେଖାଇ ବୁଝାଇ ପାରିଥିଲି ଯେ ଏ ଲେଖାଟି କିପରି ଭାବରେ ତାତ୍ତ୍ୱିକ ଚିନ୍ତାଧାରାର ଆଧାର ଥିଲା । ସେ ମହାଶୟ ସସ୍‌ପେଣ୍ଡ ଆଦେଶକୁ ପ୍ରତ୍ୟାହାର କରି ନେଇଥିଲେ । ସମାଜବାଦୀ ଓ ଗଣତାନ୍ତ୍ରିକ ଢାଞ୍ଚାରେ ଚାଲୁଥିବା କଂଗ୍ରେସ ସରକାର କିପରି ଅସହିଷ୍ଣୁ, ଅଗଣତାନ୍ତ୍ରିକ ଓ ଏକଛତ୍ରବାଦୀ– ତାହା ଏଥିରୁ ଅନୁମିତ ହୁଏ ।

■ ■ ■

## ୧୮

## ବିଶ୍ୱବିଦ୍ୟାଳୟ ଶାସନ ଓ ରାଜନୀତି

### (କ) ସିଣ୍ଡିକେଟ୍ ରାଜନୀତି

୧୯୫୮ ମସିହାରେ ବିଶ୍ୱବିଦ୍ୟାଳୟ ଦ୍ୱାରା ସ୍ନାତକୋତ୍ତର ମନୋବିଜ୍ଞାନ ବିଭାଗ ଖୋଲା ହେବାରୁ ମୁଁ ବିଶ୍ୱବିଦ୍ୟାଳୟରେ ରିଡ଼ର ହିସାବରେ ଯୋଗ ଦେଲି ଏବଂ ୧୯୬୦ରେ ଅଧ୍ୟାପକ ପଦବୀକୁ ଉନ୍ନୀତ ହୋଇଥିଲି । ୧୯୬୦ରେ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍‌କୁ ମୁଁ ନିର୍ବାଚିତ ହେଲି । ସିଣ୍ଡିକେଟ୍ ସଭ୍ୟ ହିସାବରେ ନିର୍ବାଚିତ ହେବାରେ ମୁଁ ହେଉଛି ପ୍ରଥମ ବିଶ୍ୱବିଦ୍ୟାଳୟ ଅଧ୍ୟାପକ । ସିଣ୍ଡିକେଟ୍‌ର ଦୁଇଟି ଶିକ୍ଷକ ସଭ୍ୟ ନିର୍ବାଚନ ପାଇଁ ୪ଜଣ ଶିକ୍ଷକ ପ୍ରତିଦ୍ୱନ୍ଦ୍ୱିତା କରୁଥିଲେ । ସେ ଭିତରୁ ମୁଁ ଜଣେ ଜିତିଥିଲି । ଜଣେ ବରିଷ୍ଠ ସରକାରୀ ଅଧ୍ୟାପକ ଏହି ନିର୍ବାଚନରେ ହାରି ଯାଇଥିଲେ । ସେ ଯେହେତୁ ମୋତେ ଆଗରୁ ଘୃଣା କରୁଥିଲେ, ତେଣୁ ମୁଁ ତାଙ୍କୁ ହରାଇଦେଲି ବୋଲି ଆହୁରି ବେଶୀ ଉତ୍କ୍ଷିପ୍ତ ହୋଇଥିଲେ । ଅନ୍ୟଜଣେ ଘରୋଇ କଲେଜର ପ୍ରିନ୍‌ସିପାଲ ମଧ୍ୟ ମୋ ସହିତ ଜିତିଥିଲେ । କିନ୍ତୁ ସେ କାହିଁକି ତାଙ୍କୁ ହରାଇଲେ ନାହିଁ, ମୁଁ ହରାଇଲି– ସେ କଥା ମୁଁ ବୁଝିପାରିଲି ନାହିଁ !

ଅର୍ଥାତ୍ ଜଣେ ଆଉ ଜଣକୁ ପ୍ରଥମେ ଘୃଣା କରେ । ତା'ପରେ ତା' ବିଷୟରେ ବହୁତ ସତମିଛ ବିବରଣୀ ସଂଗ୍ରହ କରି ତାକୁ ବଦ୍‌ନାମ କରେ । ତାର ଘୃଣା ପଛରେ ଯେ ଗୁରୁତର ବାସ୍ତବ ଘଟଣାମାନ ରହିଛି, ଏହି କଥାଟିକୁ ତା ବିବେକ ଆଗରେ ସବୁବେଳେ ପ୍ରତିବାଦିତ କରିବାକୁ ଯେପରି ସେ ସବୁବେଳେ ଚେଷ୍ଟା କରୁଥାଏ । ଯାହାହେଉ, ମୁଁ ସମସ୍ତଙ୍କଠାରୁ ବୟସ ଓ ଚାକିରିରେ କନିଷ୍ଠ ହୋଇଥିଲେ ମଧ୍ୟ ସିନେଟ୍‌ସଭ୍ୟମାନେ ମୋତେ ନିର୍ବାଚିତ କଲେ । ସେତେବେଳକାର ସିନେଟ୍‌ରେ ବହୁ ବୟସ୍କ ଓ ପ୍ରତିଷ୍ଠାବାନ୍ ଶିକ୍ଷାବିତ୍‌ମାନେ ଥିଲେ । ଏଥିରେ ମୁଁ ନିଜକୁ ବହୁତ ଗୌରବାନ୍ୱିତ ମନେ କରିଥିଲି ।

ମୁଁ ସିଣ୍ଡିକେଟ୍‌ରେ ଦେଖିଲି ଯେ ତିନିଚାରି ଜଣକିଆ ଗୋଟିଏ ଶକ୍ତିଶାଳୀ ଗୋଷ୍ଠୀ ଏକାଠି କାମ କରୁଛନ୍ତି । ସେମାନେ କେଉଁ ପ୍ରସ୍ତାବକୁ ବିରୋଧ କରିବେ, କେଉଁ ପ୍ରସ୍ତାବକୁ ସମର୍ଥନ କରିବେ, ସେ ବିଷୟରେ ଆଗରୁ ଠିକ୍‌ଠାକ୍ କରି ଆସିଥାନ୍ତି । ଗୋଟିଏ ପ୍ରସ୍ତାବ

ଯେତେ ଅଯୌକ୍ତିକ ହେଲେ ସୁଦ୍ଧା ସେମାନେ ତୀବ୍ର ଭାବରେ ତାକୁ ସମର୍ଥନ କରନ୍ତି ଏବଂ ଆଉ ଗୋଟିଏ ପ୍ରସ୍ତାବ ଯେତେ ସମୀଚୀନ ଓ ଯଥାର୍ଥ ହେଲେ ସୁଦ୍ଧା ନାନା ପ୍ରକାର ଆଇନକାନୁନ୍ ବାହାର କରି ତାକୁ ବାତିଲ୍ କରିବାକୁ ଚେଷ୍ଟା କରନ୍ତି । ଏସବୁ ଘଟଣା ପଛରେ ନିର୍ଦ୍ଦିଷ୍ଟ ଗୋଷ୍ଠୀଗତ ମତଲବ କାମ କରୁଥାଏ । ଏହା ଦେଖି ମୁଁ ବଡ଼ ବିବ୍ରତ ହୋଇପଡ଼ିଥିଲି । ଏମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସ୍ଥାୟୀ ସରକାରୀ ସଭ୍ୟ ତଥା କୁଳପତିଙ୍କ ପକ୍ଷରେ ମଧ୍ୟ ସବୁବେଳେ ସମ୍ଭବ ହେଉନଥିଲା । ବରଂ ଏମାନେ କେତେକ ଘଟଣାରେ ଆପୋଷ ମିଳାମିଶା କରିନେବା ପାଇଁ ଆଗେଇଯାନ୍ତି । ଫଳରେ ଅଯଥାରେ ଯୋଗ୍ୟ ବ୍ୟକ୍ତି ପ୍ରତି ଅବିଚାର ଏବଂ ଅଯୋଗ୍ୟ ବ୍ୟକ୍ତିର ସୁବିଧା ହୋଇଯାଏ । ମୋ ପାଇଁ ଏହା ଗୋଟିଏ ଭୟଙ୍କର ପରୀକ୍ଷାମୂଳକ ସଙ୍କଟ ସୃଷ୍ଟି କଲା । ମୁଁ ଠିକ୍ କଲି ଯେ ମୁଁ ଯାହା ଠିକ୍ ବୋଲି ଭାବିବି କରିବି । ମୋ କଥା ନ ରହିଲେ ନାହିଁ । ଯଦି କୌଣସି ଗୃହୀତ ପ୍ରସ୍ତାବ ବେଆଇନ, ଅସଙ୍ଗତ ବା ପକ୍ଷପାତିକ ଦୋଷଯୁକ୍ତ ବୋଲି ମୁଁ ଭାବେ, ତେବେ ମୋର ଅସମ୍ମତି ଲିଖିତ ଭାବରେ ଦିଏ । ମୋର ପ୍ରଥମ ତିନିବର୍ଷ ସିଣ୍ଡିକେଟ୍ ସଭ୍ୟ ହିସାବରେ ବହୁଥର ଅସମ୍ମତି ଲିଖିତ ଆକାରରେ ଦେଇଛି ଏବଂ ସିଣ୍ଡିକେଟ୍ ବିବରଣୀରେ ତାହା ପ୍ରକାଶିତ ହୋଇଛି ।

ସିଣ୍ଡିକେଟ୍‌ରେ ମୋର ଉପସ୍ଥିତି ଏହି ଗୋଷ୍ଠୀର ଅସହ୍ୟ ହେଲା । ସେମାନେ ବହୁଥର ସିଣ୍ଡିକେଟ୍‌ରେ ପ୍ରସ୍ତାବ ଗୃହୀତ କରାଇନେଲେ ଯେ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ହିସାବରେ ସିଣ୍ଡିକେଟ୍‌ରେ ମୋର ରହିବା କେତେଦୂର ଆଇନସଙ୍ଗତ ଏ ବିଷୟରେ କୁଳାଧିପତିଙ୍କୁ ପଚରାଯାଉ । ମୋର ଯୁକ୍ତି ଥିଲା ଯେ ଏହା ଯଦି ଆଇନ୍ ସମ୍ମତ ନୁହେଁ, ତା'ହେଲେ ତ ପ୍ରଥମରୁ ମୋର ନିର୍ବାଚନ ପାଇଁ ପ୍ରାର୍ଥୀପତ୍ର ନାକଚ ହୋଇଯିବା ଉଚିତ ଥିଲା । ଏ ବିଷୟରେ ସ୍ଥାୟୀ ସରକାରୀ ସଭ୍ୟମାନେ ମଧ୍ୟ ମୋ ନିର୍ବାଚନ ବିରୁଦ୍ଧରେ ଆସିଥିବା ପ୍ରସ୍ତାବକୁ ଗ୍ରହଣ କରି ନିଅନ୍ତି । ମୁଁ ଅଲଗା ଭାବରେ ମୋର ମତାମତ କୁଳାଧିପତିଙ୍କୁ ଜଣାଇଦିଏ । ତିନିବର୍ଷ କାଳ ମୋ ବିରୁଦ୍ଧରେ ଏପରି ଉଦ୍ୟମ ଅବ୍ୟାହତ ରହିଲା । ଶେଷରେ ମୁଁ ସରକାରଙ୍କ ସାହାଯ୍ୟରେ ବିଶ୍ୱବିଦ୍ୟାଳୟ ଅଧ୍ୟାପକଙ୍କର ସିଣ୍ଡିକେଟ୍‌ରେ ରହିବାରେ ଯାହା ସାମାନ୍ୟ ଆଇନଗତ ସନ୍ଦେହ ଥିଲା, ତାକୁ ସଂଶୋଧିତ କରାଇପାରିଥିଲି । ସେତିକିବେଳେ ମଧ୍ୟ ଏହି ଆଇନ୍ ସଂଶୋଧନ ବିରୁଦ୍ଧରେ ଷଡ଼ଯନ୍ତ୍ର ହୋଇଥିଲା ଏବଂ ସରକାରଙ୍କ ଉପରେ ଚାପ ପଡ଼ିଥିଲା ଯେ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ସିଣ୍ଡିକେଟ୍ ସଭ୍ୟ ହେବା ଉଚିତ ନୁହେଁ । କିନ୍ତୁ ଶେଷରେ ମୁଁ ଜିତିଥିଲି ।

ମୁଁ ଲକ୍ଷ୍ୟ କଲି ଯେ ସିଣ୍ଡିକେଟ୍‌ର ସ୍ଥାୟୀ ସରକାରୀ ସଭ୍ୟମାନେ ବିଶ୍ୱବିଦ୍ୟାଳୟ କର୍ମଚାରୀ ଓ ଏହାର ଅନ୍ୟାନ୍ୟ ଉନ୍ନତିକର କାର୍ଯ୍ୟରେ ବାଧା ସୃଷ୍ଟି କରୁଥିଲେ । ଏପରି ବହୁ ପ୍ରସ୍ତାବକୁ ହସି ଉଡ଼ାଇ ଦେଉଥିଲେ କିମ୍ବା ସେଥିରେ ନିସ୍ପୃହ ରହୁଥିଲେ । ସେମାନଙ୍କ ଆଖିରେ ରେଭେନ୍ସା କଲେଜ ଥିଲା ଆଦର୍ଶ ଅନୁଷ୍ଠାନ । ସେଠାରେ ଯାହା ନାହିଁ, ବିଶ୍ୱବିଦ୍ୟାଳୟରେ ତାହା ହେବା ଉଚିତ ନୁହେଁ ବୋଲି ଏମାନଙ୍କର ସ୍ପଷ୍ଟ ମତ ପ୍ରକାଶ ପାଉଥିଲା । ଫଳରେ ବିଶ୍ୱବିଦ୍ୟାଳୟଗୁଡ଼ିକ ଓଡ଼ିଶାରେ ଆଗେଇପାରିଲେ ନାହିଁ । ଉତ୍କଳ ବିଶ୍ୱବିଦ୍ୟାଳୟ ଭାରତରେ ଗୋଟିଏ ପୁରାତନ ଶିକ୍ଷାନୁଷ୍ଠାନ ଅଥଚ ତାହାର ପରିସର ତଥା

ପରିବେଶର ଉନ୍ନତି, ବିଭାଗମାନଙ୍କ ଗୁଣାତ୍ମକ ଉତ୍କର୍ଷ, ଛାତ୍ର ଓ କର୍ମଚାରୀମାନଙ୍କ ପାଇଁ ନାନାପ୍ରକାର ସୁଯୋଗ ଓ ସୁବିଧା ସିଣ୍ଡିକେଟ୍ ତଥା କୁଳପତିମାନେ କରାଇପାରିଲେ ନାହିଁ। ଏହି ସମୟରେ ଏବଂ ପରେ ତିଆରି ହୋଇଥିବା ଅନ୍ୟ ରାଜ୍ୟର ବିଶ୍ୱବିଦ୍ୟାଳୟମାନଙ୍କର ବହୁତ ଉନ୍ନତି ହେଉଥିବା ବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଏ ସବୁ କ୍ଷେତ୍ରରେ ଅତି ମାତ୍ରାରେ ସୀମିତ ତଥା ସଙ୍କୁଚିତ ହୋଇ ରହିଗଲା।

କୃତ୍ରିମ ସନ୍ତରଣ ପୁଷ୍କରିଣୀ, ଷ୍ଟାଡିୟମ୍, ଗାନ୍ଧୀ ଭବନ, ଗୀତା ଭବନ, କ୍ୟାଣ୍ଟିନ୍, ହଷ୍ଟେଲ ଓ ଅନ୍ୟାନ୍ୟ ଘରବାଡ଼ି ପାଇଁ ସେତେବେଳେ ପ୍ରଚୁର ଟଙ୍କା ମିଳୁଥିଲା। ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟମାନେ ମଧ୍ୟ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଠାରୁ ବହୁ ଅର୍ଥ ନେଇପାରୁଥିଲେ, କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟ ଶହେବର୍ଷ ତଳର ପୁରୁଣା ରେଭେନ୍ସା କଲେଜକୁ ଚାହିଁ ଚାହିଁ ରହିଗଲା। ମୁଁ ବହୁଥର ମୋର ସ୍ପଷ୍ଟ ମତ ପ୍ରକାଶ କରିଛି ଯେ ଯେତେଦିନ ଯାଏ ସରକାରୀ ଅଫିସରମାନେ ବିଶ୍ୱବିଦ୍ୟାଳୟର କୁଳପତି ହେବେ— ଏହାର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହୋଇପାରିବ ନାହିଁ। ବର୍ତ୍ତମାନ ମଧ୍ୟ ଏହା ଅକ୍ଷରେ ଅକ୍ଷରେ ସତ୍ୟ ହୋଇରହିଛି। ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତିମାନେ ଅବସର ନେଲା ପରେ ଓଡ଼ିଶାରେ ଶିକ୍ଷାର ଉନ୍ନତି ପାଇଁ ବହୁତ ବଡ଼ ବଡ଼ କଥା କହୁଛନ୍ତି, କିନ୍ତୁ ସେମାନଙ୍କ ଅମଳରେ ସେମାନେ ବିଶ୍ୱବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି ପାଇଁ କ'ଣ କରିଛନ୍ତି ତାର ବିବରଣୀ ସର୍ବସାଧାରଣରେ ଦେବା ଉଚିତ। ବର୍ତ୍ତମାନ ତ ଓଡ଼ିଶାର ବିଶ୍ୱବିଦ୍ୟାଳୟମାନଙ୍କର ଅବସ୍ଥା ଆହୁରି ଶୋଚନୀୟ ହୋଇଗଲାଣି।

ସିଣ୍ଡିକେଟ୍ ସବୁବେଳେ ଏହିପରି ଗୋଷ୍ଠୀ ରାଜନୀତିରେ ନିୟନ୍ତ୍ରିତ ହେଉଥିଲା। ଏହି ଗୋଷ୍ଠୀ ଆସନ୍ତା ସିଣ୍ଡିକେଟ୍ ନିର୍ବାଚନକୁ ଆଖିରେ ରଖି ପରୀକ୍ଷକ ତାଲିକାକୁ ନିୟନ୍ତ୍ରଣ କରନ୍ତି। ଅନ୍ୟାନ୍ୟ ସୁବିଧା ସୁଯୋଗ ସେହି ଦୃଷ୍ଟିରୁ ସଭ୍ୟମାନଙ୍କୁ ବାଣ୍ଟନ୍ତି ଏବଂ ପରୀକ୍ଷା ତାଲିକା ହେଲା ପରେ ସେମାନେ କେତେକଙ୍କ ଘରକୁ ଯାଇ ଖବର ଦେଇଆସନ୍ତି ଯେ ସେହି ଅଧ୍ୟାପକମାନଙ୍କୁ ସେମାନେ କିପରି ସାହାଯ୍ୟ କଲେ। ଯେଉଁ ସିଣ୍ଡିକେଟ୍ ସଭ୍ୟ ସେମାନଙ୍କ କଥା ଶୁଣନ୍ତି ନାହିଁ, ସେମାନଙ୍କ ବିରୁଦ୍ଧରେ ମଧ୍ୟ ଏମାନେ କହିବାକୁ ଛାଡ଼ନ୍ତି ନାହିଁ। ଅର୍ଥାତ୍ ସେମାନେ ନିଜେ ଖାଲି ଜିତିବେ ନାହିଁ, ତାଙ୍କର ବିରୋଧୀ ଲୋକ ମଧ୍ୟ ଯେପରି ହାରନ୍ତି— ତାର ଯୋଜନା ଧାରାବାହିକ ଭାବେ ହୁଏ !

ବାହାରର ରାଜନୀତି ଓ ନିର୍ବାଚନ ଢାଞ୍ଚା ଅନୁଯାୟୀ କ୍ରମେ ସିଣ୍ଡିକେଟ୍ ନିର୍ବାଚନ ପରିଚାଳିତ ହେଲା। ୧୯୬୦ରେ ପ୍ରଥମ ଥର ପାଇଁ ମୁଁ ସିଣ୍ଡିକେଟ୍ ସଭ୍ୟ ହେଲା ବେଳକୁ ଏ ପ୍ରକାରର ନୀଚ ଧରଣର ଷଡ଼ଯନ୍ତ୍ର ବେଶି ନଥିଲା କହିଲେ ଚଳେ। ନିର୍ବାଚନ ପୂର୍ବରୁ ଆମେ ଖଣ୍ଡେ ଚିଠି ଦେଉଥିଲୁ କିମ୍ବା ଫୋନ୍‌ରେ ଅନୁରୋଧ କରୁଥିଲୁ। କ୍ରମେ ଏପରି ହେଲା ଯେ ନିର୍ବାଚନ ପାଇଁ କେତେକ ପ୍ରାର୍ଥୀ ଟ୍ୟାକ୍ସି ଭଡ଼ା କରି ପ୍ରତ୍ୟେକ କଲେଜକୁ ଯାଇ ଭୋଟରମାନଙ୍କୁ ଦେଖା କଲେ ଏବଂ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ପ୍ରାର୍ଥୀଙ୍କ ବିରୁଦ୍ଧରେ ନାନାପ୍ରକାର କୁତ୍ସାରଟନା କରିବାକୁ ପଶ୍ଚାତ୍‌ପଦ ହେଲେନାହିଁ। ସେହି ଭୋଟରମାନଙ୍କଠାରୁ ଏହିସବୁ କଥା ପରେ ଜଣାଯାଏ।

କେତେକ ଅଣଶିକ୍ଷକ ପ୍ରାର୍ଥୀ ଆହୁରି ବେଶୀ ତଳକୁ ଖସିଗଲେ । ଭୋଟ କିଣାବିକା ମଧ୍ୟ ଆଜି ପର୍ଯ୍ୟନ୍ତ ହେଉଛି । ଜଣକ ମାର୍ଫତରେ ବହୁତ ଭୋଟରଙ୍କ ନାମ ରହୁଛି । ନିଜ ହାତରୁ ଟଙ୍କା ଦେଇ ଏମାନେ ତାଲିକାର ସଭ୍ୟ କରାଉଛନ୍ତି ଏବଂ ସେମାନଙ୍କଠାରୁ ଭୋଟ କାଗଜ ସଂଗ୍ରହ କରୁଛନ୍ତି । ଯେଉଁମାନେ ଏତେ ଟଙ୍କା ଖର୍ଚ୍ଚ କରି ଭୋଟର ସଂଗ୍ରହ କରୁଛନ୍ତି, ଟ୍ୟାକ୍‌ସି କରି କଲେଜରୁ କଲେଜ ବୁଲୁଛନ୍ତି, ସେମାନେ ତ ପୁଣି ସେତକ ଟଙ୍କା ବିଶ୍ୱବିଦ୍ୟାଳୟରୁ ସଂଗ୍ରହ କରିବେ । ଫଳରେ ବିଶ୍ୱବିଦ୍ୟାଳୟର ପ୍ରଶାସନିକ କ୍ଷେତ୍ରରେ ଦୁର୍ନୀତି ବ୍ୟାପି ଯିବାକୁ ବାଧ୍ୟ । ଏ ବିଷୟରେ ସରକାରୀ କଳ ଓ କୁଳାଧିପତି ସଂପୂର୍ଣ୍ଣ ରୂପେ ଉଦାସୀନ । କାରଣ ରାଜନୈତିକ ଦଳର ଲୋକେ ଏଥିରେ ସଂଶ୍ଲିଷ୍ଟ । ତେଣୁ ପଦକ୍ଷେପ ନେବା ସମ୍ଭବ ହୁଏନାହିଁ । ବରଂ ବିଶ୍ୱବିଦ୍ୟାଳୟର ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ବା ଗୋଷ୍ଠୀ ପଛରେ ଶାସକ ଗୋଷ୍ଠୀଙ୍କର ବଳିଷ୍ଠ ସମର୍ଥନ ରହିଛି । ବିଶ୍ୱବିଦ୍ୟାଳୟକୁ ଏ ପ୍ରକାର ରାଜନୀତିରୁ ସଂପୂର୍ଣ୍ଣ ରୂପେ ଅଲଗା କରି ନପାରିଲେ ଦୁର୍ନୀତି ଓ କୁଶାସନ ବଢ଼ି ବଢ଼ି ଚାଲିବାକୁ ବାଧ୍ୟ । ସେ ସମୟରେ ବିଶ୍ୱବିଦ୍ୟାଳୟ ଶାସନଠାରୁ ବର୍ତ୍ତମାନର ଶାସନ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିଛି । କେତେକ ରାଜନୈତିକ ନେତାଙ୍କର ଗୋଡ଼ାଣିଆ କୁଳପତିଙ୍କ ଯୋଗୁ ଏହା ଦୁର୍ନୀତିର ରସାତଳକୁ ଚାଲିଯାଇଛି । ସେ ସମୟରେ ଯେଉଁ ଗୋଷ୍ଠୀଗତ ଅନ୍ତର୍ବିବାଦ ଆରମ୍ଭ ହୋଇଥିଲା, ତାହା ବର୍ତ୍ତମାନ ମଧ୍ୟ ବହୁ ବ୍ୟାପକ ଭାବରେ କାମ କରୁଛି ।

୧୯୬୩ ସିଣ୍ଡିକେଟ୍ ନିର୍ବାଚନରେ ମୁଁ ଗୋଟିଏ ଗୋଷ୍ଠୀଙ୍କ ଷଡ଼ଯନ୍ତ୍ର ଯୋଗୁଁ ହାରିଗଲି । କେତେବେଳେ କେଉଁ ଗୋଷ୍ଠୀ ବ୍ରାହ୍ମଣ୍ୟ ଆଭିଜାତ୍ୟ ପ୍ରଦର୍ଶନ କରେ ତ ଆଉ କେତେକ କରଣ କିମ୍ବା ଖଣ୍ଡାୟତ ଜାତିଆଣ ମନୋଭାବ ସୃଷ୍ଟି କରନ୍ତି । କିନ୍ତୁ ମୁଁ ଲକ୍ଷ୍ୟ କରିଛି ବ୍ରାହ୍ମଣ, କରଣ କିମ୍ବା ଖଣ୍ଡାୟତ ଦୁଆ ଏମାନଙ୍କଠାରେ କେବଳ ଉପର ଠାଉରିଆ ବାହାନା ମାତ୍ର । ଘଟଣାସ୍ଥଳରେ ନିଜର କିମ୍ବା ନିଜ ଗୋଡ଼ାଣିଆଙ୍କ ସ୍ୱାର୍ଥ ପାଇଁ ଏମାନେ ସମସ୍ତଙ୍କ ସହିତ ହାତ ମିଳାଇ ଦିଅନ୍ତି । ଦରକାର ଅନୁସାରେ ନିଜ ଜାତିର ଲୋକଙ୍କୁ ମଧ୍ୟ ବଳି ଦେଇଦିଅନ୍ତି ।

ମୋର ଦୃଢ଼ ଧାରଣା ଯେ ଯେଉଁ ଲୋକ ସାମ୍ପ୍ରଦାୟିକ କିମ୍ବା ଜାତିଆଣ ଦୁଆ ଉଠାଏ, ସେ ପ୍ରକୃତରେ ଜଣେ ଭୟଙ୍କର ସ୍ୱାର୍ଥପର ଓ ଷଡ଼ଯନ୍ତ୍ରକାରୀ ଲୋକ । ତା' ଉପରେ ସେହି ସମ୍ପ୍ରଦାୟ ବା ଜାତିର ଲୋକେ ମଧ୍ୟ ବିଶ୍ୱାସ କରନ୍ତି ନାହିଁ; ଯଦିଚ ସୁବିଧା ଅନୁସାରେ ସେମାନଙ୍କଠାରୁ କିଛି କିଛି କାମ ହାସଲ କରି ନିଅନ୍ତି । ମୁଁ ସବୁବେଳେ ମୋ କ୍ଲାସରେ କହେ ଯେ ଜଣେ ଜାତିଆଣ ଭାବ୍ ଥିବା ଲୋକ ବିଷୟରେ ତା ନିଜ ଜାତିର ୫୦ଜଣ ଲୋକଙ୍କ ମତ ପଚରା ଗଲେ ଅଧିକାଂଶ ଲୋକ କହିବେ ଯେ ସେ ଲୋକଟି ପ୍ରକୃତରେ ନୀତିହୀନ ଓ ଖଳ ପ୍ରକୃତିର ବ୍ୟକ୍ତି । ଏହି କଥାଟିକୁ ମୁଁ ସବୁବେଳେ ପରୀକ୍ଷା ନିରୀକ୍ଷା କରି ଦେଖି ଆସିଛି । ଏମାନେ ପ୍ରକୃତରେ ଅତ୍ୟନ୍ତ ଭୟଙ୍କର ଜୀବ । ଏମାନଙ୍କୁ ନିଜ ପରିବାରର ଲୋକେ ବିଶ୍ୱାସ କରନ୍ତି କି ନାହିଁ ସନ୍ଦେହ । ମୋ ପରି ମତବାଦ ଘୋଷଣା କରୁଥିବା ଲୋକଙ୍କୁ ଅନେକ ଜାତିଆଣ ମନୋଭାବାପନ୍ନ ବ୍ୟକ୍ତି ଘୃଣା କରନ୍ତି ।

ବ୍ରାହ୍ମଣମାନେ ମୋତେ ଭଲ ପାଆନ୍ତି ନାହିଁ । କାରଣ ମୋର ପଇତା ନାହିଁ ଏବଂ ମୋର ଦୁଇ ପୁଅଙ୍କର ମୁଁ ବ୍ରତ କରିନାହିଁ । ଅବ୍ରାହ୍ମଣ ଜାତିଆଣ ଲୋକେ ରଥ ସଂଜ୍ଞା ଥିବା

ଲୋକକୁ ମଧ୍ୟ ଭଲପାଇ ପାରିବେ ନାହିଁ । ଏହି ଗୋଟିଏ କାରଣରୁ ମୁଁ ସିଣ୍ଡିକେଟ୍ ନିର୍ବାଚନରେ ଅନେକ ଭୋଟ ହରାଇ ଥାଏ । ବେଳେ ବେଳେ ବୋଧହୁଏ ମୁଁ ତିନିଥର ଜିତି ୯ବର୍ଷ ସିଣ୍ଡିକେଟ୍‌ରେ ଥିଲି । ଶେଷଥର ପରାଜୟ ପାଇଁ ମୁଁ ପ୍ରସ୍ତୁତ ଥିଲି । ସେତେବେଳକୁ ବହୁ ପରିଶ୍ରମ କରି ବିଶ୍ୱବିଦ୍ୟାଳୟ ଅଧ୍ୟାପକମାନଙ୍କ ଭିତରୁ ଦୁଇଜଣ ସିଣ୍ଡିକେଟ୍ ସଭ୍ୟ ରହିବେ ବୋଲି ବିଶ୍ୱବିଦ୍ୟାଳୟ ଆଇନ୍‌ରେ ମୁଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଇଥିଲି । ୧୯୭୭ ମସିହା ସିଣ୍ଡିକେଟ୍ ନିର୍ବାଚନ ବେଳକୁ ବିଶ୍ୱବିଦ୍ୟାଳୟର ବହୁ ରିଡ଼ର ଓ ଲେକ୍‌ଚରର ମୁଁ ସିଣ୍ଡିକେଟ୍ ସଭ୍ୟ ହେବା ପାଇଁ ମୋତେ ଅନୁରୋଧ କଲେ । ସେତେବେଳକୁ ମନସ୍ତତ୍ତ୍ୱ ବିଭାଗକୁ ଆଡ୍‌ଭାନ୍‌ସଡ୍ କେନ୍ଦ୍ର କରିବାପାଇଁ ମୁଁ ଏତେ ବ୍ୟସ୍ତ ଥାଏ ଯେ ସିଣ୍ଡିକେଟ୍‌କୁ ଯିବା ପାଇଁ ମୋର ଇଚ୍ଛା ନଥାଏ । ଏମାନେ ଆସି ମୋତେ କହିଲେ ଯେ–

''ଆପଣଙ୍କ ବିଭାଗର ବହୁ କାମ ଆପଣ କରାଇ ସାରିଲେଣି, କିନ୍ତୁ ଆମମାନଙ୍କ ପାଇଁ ତ କିଛି ଆପଣଙ୍କର କରିବା ଉଚିତ ।''

ମୁଁ ସେମାନଙ୍କ କଥାରେ ବାଧ୍ୟ ହୋଇ ରାଜି ହେଲି ଗୋଟିଏ ସର୍ତ୍ତରେ । ଯେହେତୁ ଦୁଇଜଣ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ସିଣ୍ଡିକେଟ୍‌ରେ ରହିପାରିବେ, ତେଣୁ ଆମ ଭିତରୁ ଦୁଇଜଣ ସର୍ବସମ୍ମତି କ୍ରମେ ନିର୍ବାଚିତ ହେବା ଉଚିତ । ତା'ହେଲେ ମୁଁ ସିଣ୍ଡିକେଟ୍‌କୁ ଯିବାପାଇଁ ରାଜି । ମୁଁ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବା ପାଇଁ ରାଜି ନଥିଲି । ମୁଁ ନାମ ପ୍ରତ୍ୟାହାର କରିବା ତାରିଖ ପୂର୍ବରୁ ଦିଲ୍ଲୀ ଚାଲିଯାଇଥିଲି । ଗଲାବେଳେ ପ୍ରତ୍ୟାହାର ପତ୍ର ମୋର ସହଯୋଗୀ ଅଧ୍ୟାପକ ଡକ୍ଟର ସରୋଜ କୁମାର ମିଶ୍ରଙ୍କୁ ଦେଇଯାଇଥିଲି ଯେ ସେ ପ୍ରଫେସର ମନ୍ମଥନାଥ ଦାସଙ୍କ (ଯେ କି ଜଣେ ପ୍ରାର୍ଥୀ ଥିଲେ) ସହିତ ଆଲୋଚନା କରି ଯଦି ପ୍ରତିଦ୍ୱନ୍ଦିତା ନ ହୁଏ ତାହେଲେ ମୋ ନାମ ରହିବ, ନୋହିଲେ ମୋ ପ୍ରତ୍ୟାହାର ପତ୍ରଟି ପଠାଇଦେବ । କିନ୍ତୁ ପ୍ରତିଦ୍ୱନ୍ଦିତା ହୋଇ ସୁଦ୍ଧା ମୋର ପ୍ରତ୍ୟାହାର ପତ୍ରଟିକୁ ଏମାନେ ପଠାଇଲେନାହିଁ । ଏ ସମ୍ପର୍କରେ ଗୋଟିଏ ଷଡ଼ଯନ୍ତ୍ର ହୋଇଥିଲା ବୋଲି ମୁଁ ପରେ ଜାଣିଲି । ମୋତେ ପରାସ୍ତ କରି ସେମାନେ ପ୍ରତିପାଦିତ କରିବାକୁ ଚାହୁଁଥିଲେ ଯେ ମୋତେ ସିନେଟ୍ ସଭ୍ୟମାନେ ଚାହାନ୍ତି ନାହିଁ । ଏହା ଭବିଷ୍ୟତରେ ମୁଁ କୁଳପତି ନ ହେବାରେ ସାହାଯ୍ୟ କରିବ । ଉତ୍କଳ ବିଶ୍ୱବିଦ୍ୟାଳୟର ଅଧିକାଂଶ ବିଭାଗୀୟ ମୁଖ୍ୟମାନେ ମୋ ପ୍ରତି ବିରକ୍ତ ହୋଇଥିଲେ, କାରଣ ସେତେବେଳକୁ ମୋ ବିଭାଗରେ ତିନିଜଣ ଅଧ୍ୟାପକ । ମୁଖ୍ୟ ଅଧ୍ୟାପକମାନେ ସେମାନଙ୍କ ବିଭାଗରେ ଅଧିକ ଅଧ୍ୟାପକ ପଦବୀ ଚାହୁଁ ନଥିଲେ । କିନ୍ତୁ ଠିକ୍ ଏହି କାରଣରୁ ହିଁ ଅନ୍ୟ ବିଭାଗର ରିଡ଼ର ଓ ଲେକ୍‌ଚରରମାନେ ମୋତେ ପ୍ରଶଂସା କରୁଥିଲେ ଏବଂ ମୁଁ ସିଣ୍ଡିକେଟ୍ ସଭ୍ୟ ହେବା ପାଇଁ ସେମାନେ ଚହୁଁଥିଲେ । ମୁଖ୍ୟ ଅଧ୍ୟାପକମାନଙ୍କ ଭିତରୁ କେତେକ ମସୁଧା କରି ମୋର ପ୍ରତ୍ୟାହାର ପତ୍ରଟି ପଠାଇ ନଥିଲେ ।

ମୁଁ ଦିଲ୍ଲୀରୁ ଫେରିଲା ପରେ ଏଥିପାଇଁ ବହୁତ ବ୍ୟସ୍ତ ହେଲି । ପ୍ରଫେସର ମନ୍ମଥନାଥ ଦାସ ମୋତେ ଜୋର୍ ଦେଇ କହିଲେ ଯେ, ମୁଁ କିଛି ଚେଷ୍ଟା ନ କଲେ ମଧ୍ୟ ନିଶ୍ଚୟ ଜିତିବି । ସେ ଓ ମୁଁ ଏକାଠି ନ ଜିତିଲେ କୁଆଡ଼େ ସେ ସିଣ୍ଡିକେଟ୍‌ରେ କାମ କରିପାରିବେ ନାହିଁ । ମୋର ନିର୍ବାଚନ ଦାୟିତ୍ୱ ସେ ନେବେ, ତେଣୁ ପ୍ରତ୍ୟାହାର ପତ୍ର ପଠାଯାଇ ନଥିଲା । ଏହା ତାଙ୍କର ଥିଲା ଇତିହାସରୁ ଶିଖିଥିବା କୂଟନୈତିକ ପରାମର୍ଶ । ତା'ପରେ ସେ ମଧ୍ୟ

ଅନ୍ୟମାନଙ୍କ ସହ ମିଶି ମୋ ବିରୁଦ୍ଧରେ ପ୍ରଚାର କରିଥିଲେ ବୋଲି ମୁଁ ପରେ ଶୁଣିଲି ! ମୁଁ କିନ୍ତୁ ନିର୍ବାଚନ ଲାଗି ସଂପୂର୍ଣ୍ଣ ନୀରବ ତଥା ଉଦାସୀନ ରହିଲି । ଭୁଲ୍‌ରେ ସୁଦ୍ଧା କାହାରିକି ଏ ବିଷୟରେ ପଦେ କହିଲି ନାହିଁ କି ଚିଠି କିମ୍ବା ଫୋନ୍ ମଧ୍ୟ କଲିନାହିଁ । ମୋର ବହୁ ଶୁଭେଚ୍ଛୁ ବନ୍ଧୁ ଏ ବିଷୟରେ ମୋତେ ବହୁତ ପ୍ରବର୍ତ୍ତାଇଲେ, କିନ୍ତୁ ମୁଁ ଗୋଟିଏ ପରୀକ୍ଷା କରିବାକୁ ଚାହିଁଲି ଯେ କିଛି ନ କରି, କାହାକୁ ନ କହି ମଧ୍ୟ ମୁଁ କେତେ ଭୋଟ ପାଇବି । ଏହି ଭୋଟରମାନଙ୍କୁ ହିଁ ମୁଁ ମୋର ପରମ ବନ୍ଧୁ ବୋଲି ଭାବିବି । ମୋର ତ ସିଣ୍ଡିକେଟ୍‌କୁ ଯିବା ପାଇଁ ଆଦୌ ଇଚ୍ଛା ନଥିଲା, କାରଣ ଏହାର ପୂର୍ବ ଶାଳୀନତା ଆଉ ନଥିଲା । ନାନାପ୍ରକାର ଲୋକ ସେଥିରେ ଭର୍ତ୍ତି ହୋଇଥିଲେ । ତା'ଛଡ଼ା ସିଣ୍ଡିକେଟ୍ ସାହାଯ୍ୟରେ ମୋ ବିଭାଗର ଆଉ ଅଧିକ କିଛି ହେବାର ନଥିଲା । କେବଳ ଅନ୍ୟ ବିଭାଗର ରିଡ଼ର, ଲେକ୍‌ଚରର୍‌ଙ୍କର ସ୍ୱାର୍ଥ ପାଇଁ ମୁଁ ଯିବାକୁ ରାଜି ହୋଇଥିଲି ।

ନିର୍ବାଚନ ହେଲା । ଅନ୍ୟ ଜରୁରୀ କାମ ଯୋଗୁ ମୁଁ ଭୋଟ ଗଣତି ପର୍ଯ୍ୟନ୍ତ ମଧ୍ୟ ରହିପାରି ନଥିଲି । ମୁଁ ୭୦-୭୫ ଭୋଟ୍ ପାଇଲି । ପ୍ରଫେସର ମନ୍ମଥନାଥ ଦାସ ୧୦୫ କିମ୍ବା ୧୧୦ ଏବଂ ଡକ୍ଟର ଲକ୍ଷ୍ମଣ କୁମାର ମହାପାତ୍ର ୮୦-୮୫ ଭୋଟ୍ ପାଇଲେ । ସେ ଦୁଇଜଣ ଜିତିଲେ । କିଛି ନ କରି ୭୦-୭୫ ଭୋଟ ପାଇ ମୁଁ ବହୁତ ଖୁସି ହେଲି । ସେହି ସିଣ୍ଡିକେଟ୍ ନିର୍ବାଚନବେଳେ ଯିଏ ଯାହା ମୋ ବିରୁଦ୍ଧରେ ପ୍ରଚାର କରିଥିଲେ, ସବୁ ଖବର ମୋତେ ମିଳିଥିଲା ମୋର ଏହି ୭୦-୭୫ ଜଣ ଭୋଟର ବନ୍ଧୁଙ୍କଠାରୁ । କାହା ପାଖରେ ମୁଁ ଥିଲି ବ୍ରାହ୍ମଣ ଏବଂ ଆଉ କାହା ପାଖରେ ମୁଁ ବଡ଼ ଗର୍ବୀ, ତେଣୁ ତାଙ୍କ କଥା ଆଦୌ ବୁଝିବି ନାହିଁ । ଆଉ କାହାକୁ କୁହାଗଲା ଯେ ମୁଁ ଭୁବନେଶ୍ୱରରେ ବହୁତ କମ୍ ସମୟ ରହେ । ଖାଲି ବାହାରକୁ ଯାଏ । ତେଣୁ ସିଣ୍ଡିକେଟ୍‌ରେ କାମ କିଛି କରିପାରିବି ନାହିଁ ଇତ୍ୟାଦି ଇତ୍ୟାଦି ବହୁ କଥା ଭୋଟରଙ୍କୁ ଚାହିଁ କୁହାଯାଇଥିଲା । ଅନ୍ୟଥର ନିର୍ବାଚନରେ ହାରିଲେ ମୋର ଦୁଃଖ ହୁଏ । ଏଥର କିନ୍ତୁ ମୁଁ ଖୁସି ହେଲି । ମୋ ଇଚ୍ଛାମତେ ଅନେକ କାମ ସେତେବେଳକାର ସିଣ୍ଡିକେଟ୍‌ରେ ମୁଁ କରାଇ ପାରିଥାନ୍ତି କି ନା ମୋର ସନ୍ଦେହ ଥିଲା । ଏହିପରି ଭାବରେ ସିଣ୍ଡିକେଟ୍ ନିର୍ବାଚନରେ ମୋର ହାରଜିତ୍‌ର ଅନୁଭୂତି ।

ମୁଁ ଯେତେଦିନ ସିଣ୍ଡିକେଟ୍‌ରେ ଥିଲି, ବିଶ୍ୱବିଦ୍ୟାଳୟର ଶିକ୍ଷକ ସଂଘର ସଭାପତି ହିସାବରେ ସଂଘର ପ୍ରସ୍ତାବମାନ ସିଣ୍ଡିକେଟ୍ ଆଗରେ ରଖେ ଏବଂ ତାକୁ ଗୃହୀତ କରାଏ । ପ୍ରଥମ ସିଣ୍ଡିକେଟ୍‌ରେ ସରକାରୀ ସଭ୍ୟଙ୍କ ବିରୋଧ ସତ୍ତ୍ୱେ ବିଶ୍ୱବିଦ୍ୟାଳୟ କର୍ମଚାରୀଙ୍କ ଲାଗି ସେକ୍ରେଟେରୀଏଟ୍ ଦରମାହାର ପ୍ରବର୍ତ୍ତନ କରାଇଥିଲି । ଏହି ଗୋଟିକ ପ୍ରସ୍ତାବ ନେଇ ଏତେ ଅପ୍ରୀତିକର ଘଟଣା ଘଟିଥିଲା ଯେ ମୁଁ ସିଣ୍ଡିକେଟ୍ ସଭ୍ୟପଦରୁ ଇସ୍ତଫା ଦେବା ପାଇଁ ଧମକ ଦେଇଥିଲି । ଏହି ପ୍ରସ୍ତାବକୁ ଗ୍ରହଣ କରିବାରେ ବହୁ ସମୟ ବିତି ଯାଇଥିଲା । ବହୁତ ରକମର ଟାଳଟୁଳ ନୀତି ଚାଲିଥିଲା । ତଥାପି ଶେଷରେ ଏହା ଗୃହୀତ ହୋଇଥିଲା । ବିଶ୍ୱବିଦ୍ୟାଳୟ ଅଫିସ୍ କର୍ମଚାରୀଙ୍କ ପାଇଁ ଦୁଇଟି ସହକାରୀ ରେଜିଷ୍ଟ୍ରାର ପଦବୀ ମଧ୍ୟ ସୃଷ୍ଟି ହୋଇଥିଲା । ସିଣ୍ଡିକେଟ୍‌ରେ ବିଶ୍ୱବିଦ୍ୟାଳୟ ଅଫିସ୍ କାମ ତ୍ୱରାନ୍ୱିତ କରିବା ଏବଂ ସିଣ୍ଡିକେଟ୍‌ରେ ଗୃହୀତ ପ୍ରସ୍ତାବ ଅନୁଯାୟୀ ବିହିତ ପଦକ୍ଷେପ ନେବା ଉଦ୍ଦେଶ୍ୟରେ କୁଳପତି ଓ ରେଜିଷ୍ଟ୍ରାରଙ୍କ ବିରୋଧ ସତ୍ତ୍ୱେ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆ ହୋଇଥିଲା ।

ସିଣ୍ଡିକେଟ୍‌ର ଗୋଷ୍ଠୀଗତ ରାଜନୀତି ଯୋଗୁଁ ଆଉ ଗୋଟିଏ ଅପ୍ରୀତିକର ଘଟଣା ଘଟିଥିଲା । ଥରେ ଗୋଟିଏ ଗୋଷ୍ଠୀ ପକ୍ଷରୁ ସମାଜ ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ, ଜଷ୍ଟିସ୍ ଲିଙ୍ଗରାଜ ପାଣିଗ୍ରାହୀ ଓ ଭୂତପୂର୍ବ ଡି.ପି.ଆଇ. ଶ୍ରୀ ମହେଶ ଚନ୍ଦ୍ର ପ୍ରଧାନଙ୍କୁ ବିଶ୍ୱବିଦ୍ୟାଳୟ ତରଫରୁ ସମ୍ମାନ ସୂଚକ ଡକ୍ଟରେଟ୍ ଉପାଧି ଦେବା ପାଇଁ ପ୍ରସ୍ତାବ ସିଣ୍ଡିକେଟ୍‌ରେ ଗୃହୀତ ହୋଇଗଲା । ସିଣ୍ଡିକେଟ୍‌ର ଏହି ସଭାରେ ବହୁ ପ୍ରତିଷ୍ଠିତ ସରକାରୀ ସଭ୍ୟ ଯୋଗ ଦେଇ ନଥିଲେ । ସେମାନେ ଏକାଥରକେ ତିନିଜଣଙ୍କୁ ଡକ୍ଟରେଟ୍ ଉପାଧି ଦେବା ସପକ୍ଷରେ ନଥିଲେ । କିନ୍ତୁ ସିଣ୍ଡିକେଟ୍‌ରେ ଏହାକୁ ବିରୋଧ କରିବାର ସାହାସ ମଧ୍ୟ ସେମାନଙ୍କର ନଥିଲା । ଏପରି ଲୋକେ ସବୁବେଳେ ବଡ଼ ଚତୁର ଓ କୌଶଳୀ ବୋଲି ପ୍ରଶଂସିତ ହୁଅନ୍ତି । ଏହି ପ୍ରସ୍ତାବର ଆଲୋଚନା ବେଳେ କୁଳପତି ଡକ୍ଟର ପରିଜା ହୁଏତ ଅପ୍ରତିଭ ହୋଇ ମୋତେ ଚାହୁଁଥିଲେ । କିନ୍ତୁ ମୁଁ ଦେଖିଲି ଯେ ଯେତିକି ସଭ୍ୟ ଅଛନ୍ତି ସେଥିରେ ସେ ପ୍ରସ୍ତାବ ନିଶ୍ଚିତ ଭାବରେ ଗୃହୀତ ହୋଇଯିବ, ତେଣୁ ମୁଁ ମୋର ଅସମ୍ମତି ଲିଖିତ ଆକାରରେ ଦେଲି । ପ୍ରଧାନ ଉଦ୍ଦେଶ୍ୟ ହେଲା ଏକାବେଳକେ ତିନିଜଣଙ୍କୁ ଡକ୍ଟରେଟ୍ ଉପାଧି ଦେବା ଫଳରେ ଏହି ଉପାଧିର ମାନ ଓ ବିଶ୍ୱବିଦ୍ୟାଳୟର ମର୍ଯ୍ୟାଦା କ୍ଷୁଣ୍ଣ ହୋଇଯିବ । ଏହାଦ୍ୱାରା ସମ୍ମାନିତ ବ୍ୟକ୍ତିମାନଙ୍କର ମଧ୍ୟ ସେହିପରି କିଛି ସମ୍ମାନ ବଢ଼ିପାରିବ ନାହିଁ । ଏହି କାରଣରୁ ବୋଧହୁଏ ପ୍ରସ୍ତାବଟି ସିନେଟ୍‌ରେ ନାକଚ ହୋଇଥିଲା । ଏକାଥରକେ ତିନିଜଣଙ୍କୁ ସମ୍ମାନ ସୂଚକ ଡକ୍ଟରେଟ୍ ଦେବାକୁ ସିନେଟ୍ ଆଦୌ ରାଜି ହେଲେ ନାହିଁ । ସେମାନଙ୍କ ଭିତରୁ କାହାକୁ ବା ବାଦ୍ ଦିଆଯିବ । ବର୍ଷକୁ ଜଣେ ଦୁଇଜଣ ଡକ୍ଟରେଟ୍ ପାଇଲେ ସିନା ସୁନ୍ଦର ଦେଖାଯାନ୍ତା । ଏହାଫଳରେ ବହୁବର୍ଷ ଯାଏଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଆଉ ସମ୍ମାନ ସୂଚକ ଡକ୍ଟରେଟ୍ ଉପାଧି ଦିଆ ହୋଇ ନଥିଲା । ଏହା ବୋଧହୁଏ ୧୯୬୧-୬୨ରେ ଘଟିଥିଲା । ତା'ପରେ ୧୯୬୭ରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଅଧ୍ୟାପକ ମାଥୁର୍ ତତ୍କାଳୀନ ଭାରତ ସରକାରଙ୍କ ଶିକ୍ଷାମନ୍ତ୍ରୀ ଅଧ୍ୟାପକ ନୁରୁଲ୍ ହାସାନଙ୍କୁ ଡକ୍ଟରେଟ୍ ଉପାଧିରେ ଭୂଷିତ କରିଥିଲେ । କାରଣ ଅଧ୍ୟାପକ ନୁରୁଲ୍ ହାସାନଙ୍କ ରାଜନୈତିକ ଚାପ ଯୋଗୁଁ ଅଧ୍ୟାପକ ମାଥୁର ଓଡ଼ିଶାରେ କୁଳପତି ହୋଇଥିଲେ । ସେତେବେଳକୁ ଅଧ୍ୟାପକ ମାଥୁରଙ୍କୁ ଉସ୍‌ମାନିଆ ବିଶ୍ୱବିଦ୍ୟାଳୟରୁ ବିତାଡ଼ିତ କରିବା ପାଇଁ ବ୍ୟବସ୍ଥା ହେଉଥିଲା । ଏହି ଅବସ୍ଥାରେ କେନ୍ଦ୍ର ଶିକ୍ଷାମନ୍ତ୍ରୀଙ୍କ ପ୍ରସ୍ତାବ ଆମ ସରକାର ଆନନ୍ଦର ସହିତ ଗ୍ରହଣ କରିନେଲେ । ଓଡ଼ିଶା ମନ୍ତ୍ରୀମାନେ ସବୁବେଳେ କେନ୍ଦ୍ରର ବୋଲକରା ଅଧସ୍ତନ କର୍ମଚାରୀ ପରି ନିର୍ବିଚାରରେ ଓଡ଼ିଶାର ସ୍ୱାର୍ଥ ବିରୁଦ୍ଧରେ କାମ କରିଆସିଛନ୍ତି । ପରେ ମଧ୍ୟ କେରଳର ଜଣେ ଅର୍ବାଚୀନ ବ୍ୟକ୍ତି ଶ୍ରୀ ପାନିକର ଓଡ଼ିଶାରୁ ରାଜ୍ୟସଭା ସଦସ୍ୟ ହୋଇ ପାରିଥିଲେ । ତାଙ୍କ ପରି ଲୋକ ଓଡ଼ିଶାର ନେତାମାନେ ସାରା ଓଡ଼ିଶାରେ ପାଇପାରିଲେ ନାହିଁ !

## (ଖ) ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାନ ନିରୂପଣ

ଉତ୍କଳ ବିଶ୍ୱବିଦ୍ୟାଳୟ କଟକରେ କି ଭୁବନେଶ୍ୱରରେ ପ୍ରତିଷ୍ଠିତ ହେବ— ତା ନେଇ ବହୁ ବାଦାନୁବାଦ ଲାଗିଥାଏ । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଚାହୁଁଥିଲେ, ଏହା ଭୁବନେଶ୍ୱରରେ ହେଉ । ତାଙ୍କୁ ସମର୍ଥନ କରୁଥିଲେ ତତ୍କାଳୀନ ଡି.ପି.ଆଇ. ଶ୍ରୀ ବାମାଚରଣ ଦାସ ଓ ରେଭେନ୍ସା କଲେଜ ପ୍ରିନ୍‌ସିପାଲ ଡକ୍ଟର ସଦାଶିବ ମିଶ୍ର । କଟକରେ ହେବା ପାଇଁ

ମୁଁ ଯୁକ୍ତି କରୁଥାଏ । ମୋ ସହିତ କୁଳପତି ଡକ୍ଟର ପରିଜା ଏକମତ ଥିଲେ । ସ୍ୱର୍ଗୀୟ ସୂରଯମଲ୍ଲ ସାହା କଟକ ସପକ୍ଷରେ ଥିଲେ । କିନ୍ତୁ ସେ ମହାଶୟ ମହତାବଙ୍କ ଗୋଷ୍ଠୀ ଲୋକ ହୋଇଥିବାରୁ ତାଙ୍କ ଆଗରେ ବଳିଷ୍ଠ ଭାବରେ କଟକ ସପକ୍ଷରେ କହିବାକୁ ସେ କୁଣ୍ଠାବୋଧ କରୁଥିଲେ । ଏପରି ପରିସ୍ଥିତିରେ ଏସବୁ ବିଷୟରେ ଆଲୋଚନା ଲାଗି ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ ଚେୟାରମ୍ୟାନ ଡକ୍ଟର ସି.ଡି. ଦେଶମୁଖ କଟକ ଆସିଥାନ୍ତି । କଟକରେ ସେତେବେଳକୁ ବିଶ୍ୱବିଦ୍ୟାଳୟ ଅଫିସ୍ ଥାଏ । ଏ ବିଷୟରେ ନିଷ୍ପତ୍ତି ନେବା ଲାଗି ସେଠାରେ ଗୋଟିଏ ସଭା ହୋଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହତାବ୍, ରାଜସ୍ୱ ମନ୍ତ୍ରୀ ଶ୍ରୀ ସତ୍ୟପ୍ରିୟ ମହାନ୍ତି, ଡକ୍ଟର ଦେଶମୁଖ୍, କୁଳପତି ଡକ୍ଟର ପରିଜା ଓ ଅନ୍ୟାନ୍ୟ ସିଣ୍ଡିକେଟ୍ ସଭ୍ୟ ଉପସ୍ଥିତ ଥିଲେ ।

ମୁଁ ପ୍ରସ୍ତାବ କଲି ଯେ କଟକରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଉ, କାରଣ ଏହା ଓଡ଼ିଶାର ଶିକ୍ଷା, ସଂସ୍କୃତି ଓ ବାଣିଜ୍ୟ କେନ୍ଦ୍ର ରୂପେ ଯୁଗ ଯୁଗ ଧରି ଭାରତରେ ପରିଚିତ । ଏଠାରେ ବହୁ କଲେଜ ରହିଛି । ବିଶେଷତଃ ରେଭେନ୍ସା କଲେଜ ପରି ସ୍ୱନାମଧନ୍ୟ କଲେଜ ଏଠାରେ ଅଛି । କାଳିଆବୋଦା ପାଖରେ ମହାନଦୀ କୂଳରେ ଉଡ଼ାଜାହାଜ ଓହ୍ଲାଇବା ଲାଗି ୧୦୦ରୁ ୧୫୦ ଏକର ଯାଏ ସରକାରୀ ଜମି ରହିଛି । ତା'ପାଖକୁ ଆଉ ୧୦୦ରୁ ୧୫୦ ଯାଏ ଘରୋଇ ଜମି ଅଛି । ତାକୁ ସରକାର ନେଇପାରନ୍ତି । ପାଖରେ ଥିବା କୁଷ୍ଠାଶ୍ରମକୁ ଅନ୍ୟତ୍ର ଉଠାଇ ଦିଆଯାଇପାରେ । ମହାନଦୀ କୂଳରେ ୨୦୦ରୁ ୨୫୦ ଏକର ଜମିରେ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲେ କଟକ ପରି ସ୍ୱନାମଧନ୍ୟ ସହରରେ ଶିକ୍ଷା, ସଂସ୍କୃତି ପ୍ରସାର ପାଇଁ ଏହା ଗୋଟିଏ ଅତ୍ୟନ୍ତ ଉପାଦେୟ ଅନୁଷ୍ଠାନ ହେବ । ଲାଇବ୍ରେରୀ ପ୍ରତିଷ୍ଠା ପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆସି ସାରିଥାଏ । ଏଠାରେ ସାଙ୍ଗେ ସାଙ୍ଗେ ଲାଇବ୍ରେରୀ କୋଠା ତିଆରି ହୋଇପାରିବ । କଟକ କଲେଜର ପିଲା ଓ ଶିକ୍ଷକମାନେ ଏହାକୁ ଅଳ୍ପଦିନ ମଧ୍ୟରେ ବ୍ୟବହାର କରିପାରିବେ । ଭୁବନେଶ୍ୱରରେ ଗୋଟିଏ ପାର୍ଶ୍ୱରେ ୪୦୦ ଏକର ଜଙ୍ଗଲିଆ ଜମି ମିଳିବା ଛଡ଼ା ସେଠାରେ ଆଉ କୌଣସି ସୁବିଧା ନଥିଲା । ସେତେବେଳକୁ ଭୁବନେଶ୍ୱର ଆଦୌ ପ୍ରସାରିତ ହୋଇନଥାଏ । ଅଧ୍ୟାପକ, ଛାତ୍ର ଓ ଅନ୍ୟ କର୍ମଚାରୀମାନଙ୍କର ହାଟ, ବଜାର ଓ ଯାତାୟାତ ପ୍ରଭୃତିର ବିକାଶ ପାଇଁ ବହୁ ବର୍ଷ ଲାଗିଯିବ । ସବୁ ପିଲାଙ୍କ ପାଇଁ ହଷ୍ଟେଲ ଏବଂ ବହୁ କର୍ମଚାରୀଙ୍କ ପାଇଁ ଘରବାଡ଼ି ତିଆରି ନ ହେଲାଯାଏ ବିଶ୍ୱବିଦ୍ୟାଳୟ ସେଠାକୁ ସ୍ଥାନାନ୍ତରିତ ହୋଇପାରିବ ନାହିଁ । କଟକ ସପକ୍ଷରେ ମୁଁ ଏ ପ୍ରକାର ଯୁକ୍ତି ବାଢ଼ିଲି ।

ଭୁବନେଶ୍ୱର ସପକ୍ଷରେ ଯେଉଁମାନେ ଥିଲେ, ସେମାନେ ଖାଲି ବିଶ୍ୱବିଦ୍ୟାଳୟର ଭବିଷ୍ୟତ ସଂପ୍ରସାରଣ କଥା କହୁଥାନ୍ତି । ୪୦୦ ଏକର ଜମି ନ ହେଲେ ଭବିଷ୍ୟତ ବିଶ୍ୱବିଦ୍ୟାଳୟ ସଙ୍କୁଚିତ ହୋଇଯିବ ଇତ୍ୟାଦି କଥା କହି ଶ୍ରୀଯୁକ୍ତ ମହତାବଙ୍କୁ ସମର୍ଥନ କରୁଥାନ୍ତି । ତା ଉତ୍ତରରେ ମୁଁ କହିଥିଲି ଯେ ଭବିଷ୍ୟତରେ ଖୁବ୍ ବଡ଼ ବଡ଼ ବିଶ୍ୱବିଦ୍ୟାଳୟର ଆବଶ୍ୟକତା ନାହିଁ । ଉତ୍କଳ ବିଶ୍ୱବିଦ୍ୟାଳୟର ୨୫୦ ଏକର ଜମି ପ୍ରସାରଣ ପାଇଁ ନିଅଣ୍ଟ ହେଲେ ଭୁବନେଶ୍ୱରରେ ଆଉ ଗୋଟିଏ ବିଶ୍ୱବିଦ୍ୟାଳୟ ହୋଇପାରିବ । ଭବିଷ୍ୟତ ପ୍ରସାରଣ ପାଇଁ ଆମେ ବର୍ତ୍ତମାନର ଅନ୍ୟାନ୍ୟ ଶିକ୍ଷା ଓ ସଂସ୍କୃତିଗତ ସୁବିଧା ସୁଯୋଗ ହରାଇବା ଉଚିତ ନୁହେଁ ।

ଏହିପରି ବହୁ ଆଲୋଚନା ପରେ ଠିକ୍ ହେଲା ଯେ ଆମେ ସମସ୍ତେ ସେଠାକୁ ଯାଇ ଯାଗା ଦେଖିବା ଏବଂ ତା'ପରେ ସିଦ୍ଧାନ୍ତ ନେବା ।

ସମସ୍ତେ ସେଠାରେ ପହଞ୍ଚିଲେ । ମହାନଦୀ କୂଳରେ ଥିବା ୧୫୦ ଏକର ସରକାରୀ ଜମି ମଝିରେ ଯାଇ ଠିଆ ହେଲୁ । ମହାନଦୀ କୂଳରେ କୋଠାବାଡ଼ି ହେଲେ କେଡ଼େ ସୁନ୍ଦର ଦେଖାଯିବ ଏବଂ କିପରି ରୁଚିକର ପରିବେଶ ସୃଷ୍ଟି ହେବ, ସେ ବିଷୟରେ ମୁଁ ପୁଣି ଯୁକ୍ତିତର୍କ ଆରମ୍ଭ କରିଥିଲି । ଶେଷରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ମହତାବ୍ ଓ ଡକ୍ଟର ସି.ଡି. ଦେଶମୁଖ ରାଜି ହେଲେ ଯେ ସେହିଠାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ସବୁ ଦିଗରୁ ବାଞ୍ଛନୀୟ ହେବ । ମୁଖ୍ୟମନ୍ତ୍ରୀ, ରାଜସ୍ୱ ମନ୍ତ୍ରୀ ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କ ପାଖରେ ଥିବା ଘରୋଇ ଜମିର ସମସ୍ତ ବିବରଣୀ ତାଙ୍କ ପାଖରେ ସାତଦିନ ମଧ୍ୟରେ ପହଞ୍ଚାଇବା ପାଇଁ ଆଦେଶ ଦେଲେ । ସୂରଯ ମଲ୍ଲ ସାହାଙ୍କୁ ମଧ ଏହାର ଦାୟିତ୍ୱ ଦିଆଗଲା । ଆମେ ସମସ୍ତେ ସେଠାରେ ବିଶ୍ୱବିଦ୍ୟାଳୟ ତିଆରି ହେବ ବୋଲି ଶେଷ ସିଦ୍ଧାନ୍ତ ନେଇ ଫେରିଲୁ ।

କିନ୍ତୁ କିଛିଦିନ ପରେ ମୁଁ ଶୁଣିବାକୁ ପାଇଲି ଯେ ସରକାର ଭୁବନେଶ୍ୱରର ଝାରପଡ଼ା ଅଞ୍ଚଳରେ ବିଶ୍ୱବିଦ୍ୟାଳୟ ତିଆରି ପାଇଁ ଶେଷ ସିଦ୍ଧାନ୍ତ ନେଲେ ! ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ୍‌କୁ ମଧ ଆଉ ପଚରା ଗଲା ନାହିଁ । ଡକ୍ଟର ପରିଜା ପରେ ମୋତେ କହିଥିଲେ ଯେ ଆମର ବଡ଼ ବଡ଼ ଶିକ୍ଷାକର୍ତ୍ତାମାନେ ତ ମୁଖ୍ୟମନ୍ତ୍ରୀଙ୍କ ସବୁ କଥାରେ ହଁ ଭରିବେ, ଏ ଦେଶରେ ଆଉ କ'ଣ ହେବ ! ସିଣ୍ଡିକେଟ୍ ଓ ସିନେଟକୁ ନ ପଚାରି କେବଳ ଯେଉଁମାନେ ଭୁବନେଶ୍ୱର ସପକ୍ଷରେ, ସେମାନଙ୍କ ସହିତ କଥାବାର୍ତ୍ତା କରି, ବିଶ୍ୱବିଦ୍ୟାଳୟ ପାଇଁ ସ୍ଥାନ ସ୍ଥିର ହୋଇଗଲା । କଂଗ୍ରେସୀ ଗଣତାନ୍ତ୍ରିକ ସରକାରଙ୍କର ଏହା ହେଲା ସିଦ୍ଧାନ୍ତ ନେବାର ପଦ୍ଧତି ! ଏଥିରେ ଏ ଦେଶରେ ସ୍ୱୟଂଚାଳିତ ବିଶ୍ୱବିଦ୍ୟାଳୟର ସ୍ଥାନ କାହିଁ ? ପ୍ରଥମରୁ ବିଶ୍ୱବିଦ୍ୟାଳୟର ନିଷ୍ପତ୍ତି ନେବାର ଏ ପ୍ରକାର ଢାଞ୍ଚାରେ ଶେଷ ପରିଣତି ବର୍ତ୍ତମାନ ବିଶ୍ୱବିଦ୍ୟାଳୟମାନଙ୍କରେ ଦେଖା ଦେଇଛି । ଏହା ସରକାରଙ୍କର ଶିକ୍ଷା ବିଭାଗର ଗୋଟିଏ ଅଧସ୍ତନ ବିଭାଗରେ କାଳକ୍ରମେ ପରିଣତ ହୋଇଯାଇଛି । ସରକାରଙ୍କର ସବୁଠୁ ବିଶ୍ୱସ୍ତ ଲୋକେ କୁଳପତି ହୋଇଛନ୍ତି ଏବଂ ଏମାନେ ନିଜ ହାତରେ ବିଶ୍ୱବିଦ୍ୟାଳୟର ଯେତେକ ସ୍ୱାତନ୍ତ୍ର୍ୟ ଥିଲା ତାକୁ ମଧ ସରକାରଙ୍କ ହାତରେ ସମର୍ପି ଦେଇଛନ୍ତି ।

ଯେଉଁମାନେ ବିଶ୍ୱବିଦ୍ୟାଳୟର ଭବିଷ୍ୟତ ପ୍ରସାର ପାଇଁ କଟକରେ ୨୫୦ ଏକର ଜମି ଛାଡ଼ି ଭୁବନେଶ୍ୱର ଜଙ୍ଗଲରେ ୪୦୦ ଏକର ଜମି ପାଇଁ ବ୍ୟାକୁଳ ଥିଲେ, ସେମାନେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦିଆଯାଇଥିବା ୪୦୦ ଏକର ଜମିକୁ ରଖିପାରିଲେ ନାହିଁ । ଏମାନଙ୍କ ଯୋଗୁହିଁ ବିଶ୍ୱବିଦ୍ୟାଳୟକୁ କ୍ରମେ କ୍ରମେ ବହୁ ଜମି ହରାଇବାକୁ ପଡ଼ିଲା । ଉତ୍କଳ ବିଶ୍ୱବିଦ୍ୟାଳୟରେ ଏହି ୪୦୦ ଏକର ପରିମିତ କ୍ୟାମ୍ପସ୍‌ର ପୂର୍ବ ଦିଗର ସୀମା ରେଳଲାଇନ୍ ପର୍ଯ୍ୟନ୍ତ ଥିଲା । ବର୍ତ୍ତମାନ ସୁଦ୍ଧା ଏ ଭିତରୁ କେତେ ସ୍ଥାନ ଅନ୍ୟାନ୍ୟ ସରକାରୀ କୋଠାବାଡ଼ି ତିଆରି ପାଇଁ ଦଖଲ ହୋଇସାରିଲାଣି । ବିଶ୍ୱବିଦ୍ୟାଳୟର କୁଳପତି ଓ ସିଣ୍ଡିକେଟ୍ ଏହି ସୀମା ସଙ୍କୋଚନକୁ କାହିଁକି ରୋକି ପାରିଲେ ନାହିଁ ? କାରଣ ଏମାନେ ସମସ୍ତେ କ୍ରମେ ସରକାରଙ୍କର ଚାଟୁକାର ହୋଇଗଲେ ।

## (ଗ) ଓଡ଼ିଶା ବିଶ୍ୱବିଦ୍ୟାଳୟମାନଙ୍କର ଗୁଣାତ୍ମକ ବୈଶିଷ୍ଟ୍ୟ ଲାଗି ପ୍ରସ୍ତାବିତ ଯୋଜନା

୧୯୬୬ ମସିହାରେ ଓଡ଼ିଶାରେ ଆଉ ଦୁଇଟି ବିଶ୍ୱବିଦ୍ୟାଳୟ ହେବା ପାଇଁ ସରକାରୀ ସ୍ତରରେ ମସୁଧା ହେଲା । ସେତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟର ଆର୍ଥିକ ଅବସ୍ଥା ଆଦୌ ଭଲ ନଥିଲା । ଶିକ୍ଷାଗତ ପ୍ରସାର ମଧ୍ୟ ଯଥେଷ୍ଟ ହୋଇନଥିଲା କିମ୍ବା ପ୍ରଚଳିତ ବିଭାଗଗୁଡ଼ିକ ଅତି ଉନ୍ନତ ଧରଣର ହୋଇନଥିଲା । ସରକାର ଏହାର ଉନ୍ନତି ପାଇଁ ଯଥେଷ୍ଟ ଅର୍ଥ ଯୋଗାଇ ପାରୁ ନଥିଲେ ଅଥଚ ଏପରି ଅବସ୍ଥାରେ ଆଉ ଦୁଇଟି ବିଶ୍ୱବିଦ୍ୟାଳୟ ହେଲେ ପରୀକ୍ଷା ପରିଚାଳନା ତଥା ଶାସନଗତ କାମରେ କେବଳ ଅଯଥା ବହୁତ ପଇସା ଖର୍ଚ୍ଚ ହେବ ଏବଂ ତିନୋଟିଯାକ ବିଶ୍ୱବିଦ୍ୟାଳୟ ଶିକ୍ଷାର ମାନ ଦୃଷ୍ଟିରୁ ଅନୁନ୍ନତ ଓ ଆର୍ଥିକ ଦୃଷ୍ଟିରୁ ଗରିବ ହୋଇ ରହିଯିବ । ଗୋଟିଏ ଗରିବ ବିଶ୍ୱବିଦ୍ୟାଳୟ ଆଉ ଦୁଇଟି ଦରିଦ୍ରତର ବିଶ୍ୱବିଦ୍ୟାଳୟକୁ ଜନ୍ମ ଦେବା କେତେ ବଡ଼ ଶିକ୍ଷାଗତ ବିଭ୍ରାଟ, ତାହା ଆମମାନଙ୍କୁ ବିବ୍ରତ କରିଥିଲା । ଏ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ମୁଁ ସୁଚିନ୍ତିତ ମତ ବ୍ୟକ୍ତ କରିବା ପାଇଁ ମୋର ବନ୍ଧୁ ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ ଓ ମୁଁ ଗୋଟିଏ ଅନୁଷ୍ଠାନ ଆରମ୍ଭ କଲୁ । ତାହାର ନାଁ ହେଲା 'ଓଡ଼ିଶା ଏଡୁକେଶନ ଇମ୍ପ୍ରୁଭମେଣ୍ଟ ଫାଉଣ୍ଡେସନ୍' (ଓଡ଼ିଶା ଶିକ୍ଷା ବିକାଶ ସଂସ୍ଥା) । କୁଳପତି ଡକ୍ଟର ପରିଜା ଓ ସମାଜ ସଂପାଦକ ଶ୍ରୀଯୁକ୍ତ ରାଧାନାଥଙ୍କ ସହ ପରାମର୍ଶ କରି ଏହି ଅନୁଷ୍ଠାନଟି ଆରମ୍ଭ ହେଲା । ଡକ୍ଟର ପରିଜା ଏହାର ସଭାପତି ହେଲେ, ଶ୍ରୀ ସାମୁଏଲ୍ ଦାସ ଉପ-ସଭାପତି ଏବଂ ମୁଁ ସଂପାଦକ ହେଲି । ଏହି ଅନୁଷ୍ଠାନରେ ୫୫ଜଣ ବିଶିଷ୍ଟ ବ୍ୟକ୍ତି ସଭ୍ୟ ରହିଲେ । ପାଠକମାନଙ୍କର ଅବଗତି ନିମିତ୍ତ ସେମାନଙ୍କର ନାମ ଏହି ପରିଚ୍ଛେଦର ଶେଷରେ ଦିଆଗଲା । ବହୁ ଆଲୋଚନା ପରେ ଏହି ଅନୁଷ୍ଠାନର ଆନୁକୂଲ୍ୟରୁ ସରକାରଙ୍କ ଆଗରେ ଉପସ୍ଥାପିତ କରିବା ପାଇଁ ଏକ ମେମୋରାଣ୍ଡମ୍ ତିଆରି ହେଲା । ଏହାକୁ ମୁଦ୍ରିତ କରି ସରକାରଙ୍କ ସହିତ ଆଲୋଚନା କରିବା ପୂର୍ବରୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଓ ଶିକ୍ଷାମନ୍ତ୍ରୀଙ୍କ ପାଖକୁ ପଠାଯାଇଥିଲା ।

ଏହି ମେମୋରାଣ୍ଡମରେ ଆମେ ପ୍ରସ୍ତାବ କରିଥିଲୁ ଯେ ଓଡ଼ିଶାରେ ତିନୋଟି କାହିଁକି, ଚାରୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଉ– କିନ୍ତୁ ସେ ସବୁ ଉତ୍କଳ ବିଶ୍ୱବିଦ୍ୟାଳୟ ପରି କେବଳ (ଆଫିଲିଏଟେଡ୍) ବହୁ ବାହାର କଲେଜର ପରୀକ୍ଷାକାରୀ ବିଶ୍ୱବିଦ୍ୟାଳୟ ନ ହେଉ । କାରଣ ସେହି ଏକା ପରୀକ୍ଷା ଚଳାଇବା ପାଇଁ ପ୍ରସ୍ତାବିତ ତିନୋଟି ବିଶ୍ୱବିଦ୍ୟାଳୟରେ ବହୁ ଖର୍ଚ୍ଚ କରିବାକୁ ପଡ଼ିବ ଏବଂ ଏହା ଫଳରେ ବିଦ୍ୟାଳୟର ପରୀକ୍ଷା ମାନ ବୃଦ୍ଧି ହେବା ପରିବର୍ତ୍ତେ କମିଯିବାର ସମ୍ଭାବନା । ତା'ଛଡ଼ା ଗୋଟିଏ ବିଶ୍ୱବିଦ୍ୟାଳୟ ଓଡ଼ିଶାର ସବୁ କଲେଜର ପରୀକ୍ଷା କାମ ଚଳାଇ ପାରୁଥିଲା ବେଳେ ଆଉ ଦୁଇଟି ବିଶ୍ୱବିଦ୍ୟାଳୟ ଭିତରେ ସେହି କାମକୁ ବାଣ୍ଟି ଦେବାରେ ଶିକ୍ଷାଗତ ସୁବିଧା କିଛି ନାହିଁ ।

ଆମ ପ୍ରସ୍ତାବରେ କହିଲୁ ଯେ, ଉତ୍କଳ ବିଶ୍ୱବିଦ୍ୟାଳୟ ଯେପରି ସମଗ୍ର ରାଜ୍ୟର କଲେଜଗୁଡ଼ିକର ପରୀକ୍ଷା ପରିଚାଳନା ପାଇଁ ରହିଛି, ସେହିପରି ଥାଉ । ତା'ଛଡ଼ା ବ୍ରହ୍ମପୁର, ସମ୍ବଲପୁର ଏବଂ କଟକରେ ଆଉ ତିନୋଟି ଉତ୍କୃଷ୍ଟ ଧରଣର ନିର୍ଦ୍ଦିଷ୍ଟ ଉଚ୍ଚଶିକ୍ଷା ପ୍ରଦାନ ଉଦ୍ଦେଶ୍ୟରେ ଆବାସିକ ବିଶ୍ୱବିଦ୍ୟାଳୟ ହେଉ । ବ୍ରହ୍ମପୁର ଓ ଗୋପାଳପୁରକୁ ନେଇ ଏହି

ସ୍ଥାନରେ ଯେଉଁ ଆବାସିକ ବିଶ୍ୱବିଦ୍ୟାଳୟ ହେବ— ସେଥିରେ ଜୀବବିଜ୍ଞାନ, ସାମୁଦ୍ରିକ ବିଜ୍ଞାନ ସମ୍ବନ୍ଧୀୟ ଶିକ୍ଷା ଓ ଗବେଷଣାକୁ ପ୍ରାଧାନ୍ୟ ଦିଆଯାଉ ଏବଂ ଅନ୍ୟ ବିଷୟଗୁଡ଼ିକୁ ଗୌଣ ବିଷୟ ହିସାବରେ ଆରମ୍ଭ କରାଯାଉ । ଏହା ସମ୍ପୂର୍ଣ୍ଣ ରୂପେ ଶିକ୍ଷାଦାନ ଓ ଗବେଷଣା କାର୍ଯ୍ୟରେ ନିୟୋଜିତ ହେବ ଏବଂ ସେ ଅଞ୍ଚଳର କଲେଜ ସହିତ ଏହାର କୌଣସି ସମ୍ପର୍କ ରହିବ ନାହିଁ । କେବଳ ଉଚ୍ଚତର ଶିକ୍ଷା ଓ ଗବେଷଣାର ଗୁଣାତ୍ମକ ଅଭିବୃଦ୍ଧି ପାଇଁ ଏହାର ସମସ୍ତ ପାଣ୍ଠି ବିନିଯୋଗ ହେବ ।

ସେହିପରି ସମ୍ବଲପୁର ଓ ବୁର୍ଲାକୁ ନେଇ ଯେଉଁ ବିଶ୍ୱବିଦ୍ୟାଳୟ ହେବ, ସେଠାରେ ଇଞ୍ଜିନିୟରିଂ ଓ ଅନ୍ୟାନ୍ୟ ବୈଷୟିକ ଶିକ୍ଷା ଓ ପ୍ରୟୋଗାତ୍ମକ ବିଜ୍ଞାନର ମୁଖ୍ୟ କେନ୍ଦ୍ର ହେବ, ଅନ୍ୟାନ୍ୟ ବିଷୟ ଗୌଣ ହେବ । ସେହିପରି କଟକରେ ମୌଳିକ ବିଜ୍ଞାନ ବିଷୟଗୁଡ଼ିକ ମୁଖ୍ୟ ହେବ, ଅନ୍ୟାନ୍ୟ ବିଷୟ ଗୌଣ ରହିବ । ବାଣୀବିହାରରେ ସମାଜ ବିଜ୍ଞାନ ବିଭାଗ ମୁଖ୍ୟ ହେବ ଓ ଅନ୍ୟାନ୍ୟ ବିଷୟ ଗୌଣ ରହିବ । କାଳକ୍ରମେ ଅଧ୍ୟାପନା ଓ ଗବେଷଣାର ଉତ୍କର୍ଷ ଅନୁସାରେ ଗୌଣ ବିଷୟଗୁଡ଼ିକର ମଧ୍ୟ ଗୁରୁତ୍ୱ ବଢ଼ି ପାରେ ।

କିନ୍ତୁ ପ୍ରଥମରୁ ମୁଖ୍ୟ ବିଷୟଗୁଡ଼ିକ ଉପରେ ଗୁରୁତ୍ୱ ଦେଇ ଚାରୋଟି ବିଶ୍ୱବିଦ୍ୟାଳୟ ଗଢ଼ି ଉଠିଲେ କାଳକ୍ରମେ କଟକ ବିଶ୍ୱବିଦ୍ୟାଳୟ କେମ୍ବ୍ରିଜ୍, ବାଣୀବିହାର ଅକ୍ସଫୋର୍ଡ଼, ସମ୍ବଲପୁର ଏମ୍.ଆଇ.ଟି. ପରି ଏବଂ ବ୍ରହ୍ମପୁର ଜୀବ ଓ ସାମୁଦ୍ରିକ ବିଜ୍ଞାନରେ ସାରା ଭାରତରେ ପ୍ରସିଦ୍ଧି ଲାଭ କରିପାରିବ । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଶାର ସବୁ କଲେଜର ପରୀକ୍ଷା କରାଇବ । ତା'ହେଲେ ଅଯଥା ଖର୍ଚ୍ଚ ହେବନାହିଁ ଏବଂ ଉଚ୍ଚ ଶିକ୍ଷାଗତ ଉତ୍କର୍ଷ ପାଇଁ ମୂଳଭିତ୍ତି ସ୍ଥାପିତ ହେବ ।

ଏହି ପ୍ରସ୍ତାବଗୁଡ଼ିକ ଚୂଡ଼ାନ୍ତ ଭାବରେ ଲିପିବଦ୍ଧ ହେଲା ପରେ ସମାଜ ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥ ଏହାକୁ ଛପାଇ ଦେଇଥିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀଙ୍କ ପାଖକୁ ଏହି ପ୍ରସ୍ତାବ ନେଇ ଗୋଟିଏ ପ୍ରତିନିଧି ମଣ୍ଡଳୀ ଯିବାର ଠିକ୍ ହେଲା । ଏହି ସଂସ୍ଥାର କାର୍ଯ୍ୟକାରୀ କମିଟିର ନିମ୍ନଲିଖିତ ସଭ୍ୟମାନେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଇଥିଲେ । ସେମାନେ ହେଲେ ସଭାପତି ଡକ୍ଟର ପ୍ରାଣକୃଷ୍ଣ ପରିଜା, ଶ୍ରୀଯୁକ୍ତ ସାମୁଏଲ୍ ଦାସ (ଉପସଭାପତି), ସଭ୍ୟ, ସମାଜ ସଂପାଦକ ଡକ୍ଟର ରାଧାନାଥ ରଥ, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋଚାନ୍ସେଲର ଶ୍ରୀ ଗୋପାଳଚନ୍ଦ୍ର ଦାସ, ଶ୍ରୀ ଲଳିତ କୁମାର ଦାସଗୁପ୍ତ, ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ଶ୍ରୀ ସୂରଯମଲ୍ଲ ସାହା, ଡକ୍ଟର ମାୟାଧର ମାନସିଂହ ଏବଂ ମୁଁ ଥିଲି ଏହାର ସଂପାଦକ ।

ଦିନେ ଶୀତଦିନେ ସକାଳ ୭ଟା ବେଳେ ଓଡ଼ିଶାର ଏହି ପ୍ରତିଷ୍ଠିତ ବୟୋବୃଦ୍ଧ ଶିକ୍ଷାବିତ୍‌ଙ୍କୁ ନେଇ ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖରେ ପହଞ୍ଚାଇଲି । ଆମର ପ୍ରସ୍ତାବ ବିଷୟରେ ମୁଖ୍ୟମନ୍ତ୍ରୀଙ୍କ ସହିତ ବହୁତ ଆଲୋଚନା ହେଲା । କିନ୍ତୁ ଶେଷରେ ସେ କହିଲେ ଯେ— 'ଆପଣମାନଙ୍କର ପ୍ରସ୍ତାବଗୁଡ଼ିକୁ ଯଦି ଓଡ଼ିଶା ସରକାରଙ୍କ ତରଫରୁ ଭାରତ ସରକାର ତଥା ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କ ନିକଟକୁ ପଠାଇ ଦିଆଯିବ, ସେମାନେ ଆପଣମାନଙ୍କ ପ୍ରସ୍ତାବକୁ ଗ୍ରହଣ କରିନେବେ, କିନ୍ତୁ ଆମେମାନେ ଠିକ୍ ଉତ୍କଳ ବିଶ୍ୱବିଦ୍ୟାଳୟ ପରି ବହୁ କଲେଜ ସମନ୍ୱିତ ଆଉ ଦୁଇଟି ବିଶ୍ୱବିଦ୍ୟାଳୟ ବ୍ରହ୍ମପୁର ଓ ସମ୍ବଲପୁରରେ

ସ୍ଥାପିତ କରିବାକୁ ରାଜନୈତିକ ସିଦ୍ଧାନ୍ତ ନେଇସାରିଛୁ ।' ଏଣୁ ସେ ଦୁଃଖିତ ହେଲେ ଯେ ତାହାର ଅନ୍ୟଥା ହେବା ସମ୍ଭବ ନୁହେଁ ।

ମୁଁ ଶେଷରେ କ୍ଷୋଭର ସହିତ କହିଥିଲି ଯେ ଏପରି ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାରେ ସରକାରଙ୍କର କୌଣସି ବୌଦ୍ଧିକ ବିଚାର କିମ୍ବା ଆୟାସସାଧ ଯୋଜନାର ଆବଶ୍ୟକତା ନାହିଁ । ଖାଲି ଜଣେ କୁଳପତି ଓ ଜଣେ ରେଜିଷ୍ଟ୍ରାରଙ୍କୁ ନିଯୁକ୍ତି ଦେଇ ଗୋଟିଏ ଭଡ଼ାଘର ନେଇଗଲେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇଯିବ । ବର୍ଷେ ଦୁଇବର୍ଷ ଯାଏ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରଶ୍ନପତ୍ର କିଣି ବିଶ୍ୱବିଦ୍ୟାଳୟ ପରୀକ୍ଷା ପରିଚାଳନା କରିହେବ । ସରକାରଙ୍କୁ ଆଉ କିଛି ଭାବିବାକୁ ପଡ଼ିବ ନାହିଁ ।

ସଦାଶିବ ବାବୁ ହସି କହିଥିଲେ—

'ଆପଣ ଆମକୁ ଯେତେ ଗାଳି ଦିଅନ୍ତୁ ପଛକେ ଆମେ ରାଜନୈତିକ ସିଦ୍ଧାନ୍ତ ନେଇସାରିଛୁ ।'

ଆମେ ଫେରିଆସିଲୁ । ରାଜନୈତିକ ସିଦ୍ଧାନ୍ତ ଫଳରେ ଆଉ ଦୁଇଟି ରକ୍ତହୀନ ବିଶ୍ୱବିଦ୍ୟାଳୟ ଜନ୍ମଲାଭ କଲା । ସମସ୍ତେ ଅନୁଭବ କରୁଥିବେ ଯେ ବର୍ତ୍ତମାନ ମଧ୍ୟ ସେଗୁଡ଼ିକ କିପରି ଦୟନୀୟ ଅବସ୍ଥାରେ ବଞ୍ଚି ରହିଛି । ସେତେବେଳେ ଉଚ୍ଚଶିକ୍ଷା ପାଇଁ ବହୁତ ଟଙ୍କା ମିଳୁଥିଲା । ଗୁଣାତ୍ମକ ଚାରୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇପାରିଥିଲେ ଭାରତରେ ଓଡ଼ିଶାର ଶିକ୍ଷାଗତ ମର୍ଯ୍ୟାଦା କେତେ ବେଶୀ ବଢ଼ିଯାଇ ନଥାନ୍ତା ?

ଏହି ଓଡ଼ିଶା ଶିକ୍ଷା ବିକାଶ ଅନୁଷ୍ଠାନର ସଭ୍ୟମାନଙ୍କର ନାମ ନିମ୍ନରେ ଦିଆଗଲା । ସେମାନେ ହେଲେ, ସର୍ବଶ୍ରୀ ଡକ୍ଟର ପ୍ରାଣକୃଷ୍ଣ ପରିଜା (ସଭାପତି), ସାମୁଏଲ୍ ଦାସ (ଉପସଭାପତି), ଡକ୍ଟର ରାଧାନାଥ ରଥ (ସଂପାଦକ), ଗୋପାଳ ଚନ୍ଦ୍ର ଦାସ, ସୂରଯ ମଲ୍ଲ ଶାହା, ସମାଜ ସଂପାଦକ ରାଧାନାଥ ରଥ, ଲଳିତ କୁମାର ଦାସଗୁପ୍ତ, ମାୟାଧର ମାନସିଂହ, ଶ୍ୟାମସୁନ୍ଦର ମିଶ୍ର, ବାଞ୍ଛାନିଧି ମହାପାତ୍ର, ବିଜୟ କୁମାର ମହାନ୍ତି, ଶରତ ଚନ୍ଦ୍ର ମୁଖାର୍ଜୀ, ଶ୍ରୀକାନ୍ତ ପଣ୍ଡା, ସୁରେନ୍ଦ୍ର ମହାନ୍ତି, ଜାନକୀ ବଲ୍ଲଭ ପଟ୍ଟନାୟକ, ରାମହରି ମିଶ୍ର, ଗୁରୁଚରଣ ପଟ୍ଟନାୟକ, ବିଚିତ୍ରାନନ୍ଦ କର, ଡାକ୍ତର ସୁଧାକର ଆଚାର୍ଯ୍ୟ, ପ୍ରବୀର ପାଲିତ, ରମାକାନ୍ତ ମହାପାତ୍ର, ଗୋବିନ୍ଦ ଦାସ, ମହମ୍ମଦ ୟୁସୁଫ୍, ଲକ୍ଷ୍ମୀନାରାୟଣ ଚୌଧୁରୀ, ଜୟକୃଷ୍ଣ ମିଶ୍ର, ପ୍ରଭାମୟୀ ଦେବୀ, ସୁଧାଂଶୁମାଳୀ ରାୟ, ନଳିନୀ ଦେବୀ ରାଉତରାୟ, ରାମକୃଷ୍ଣ ନନ୍ଦ, ଗଙ୍ଗାଧର ରଥ, ଭଗବାନ ମିଶ୍ର, ଭୈରବ ଚନ୍ଦ୍ର ମହାନ୍ତି, ଗୌରଚନ୍ଦ୍ର ରାଉତ, ଚିନ୍ତାମଣି ମିଶ୍ର, ବଂଶୀଧର ମହାନ୍ତି, ଗିରିଜା ଶଙ୍କର ରାୟ, ବିନୋଦ କାନୁନ୍‌ଗୋ, ଖଟୁଆ ସୁନ୍ଦର ଦାସ, ସୂରଯମଲ୍ଲ ଅଗ୍ରୱାଲ୍, ଜି. ରଙ୍ଗାରାଓ, ବିବେକାନନ୍ଦ ଦାସ, ମନମୋହନ ମିଶ୍ର, ଗିରିଜା ଭୂଷଣ ପଟ୍ଟନାୟକ, ବୈଦ୍ୟନାଥ ରଥ, ସଚ୍ଚିନ୍ଦ୍ର ନାଥ ଦତ୍ତ, ମୁରଲୀଧର ମହାନ୍ତି, ସଚ୍ଚି ରାଉତରାୟ, ଡକ୍ଟର କାଶୀନାଥ ମିଶ୍ର, ଗଜାନନ ଅଗ୍ରୱାଲ୍ଲ, ମନମୋହନ ଚୌଧୁରୀ, ରତ୍ନାକର ପତି, ଡକ୍ଟର ଜର୍ଜ ପଟ୍ଟନାୟକ, ଶ୍ରୀଧର ମହାପାତ୍ର, ଶ୍ରୀହର୍ଷ ମିଶ୍ର, ଗୋପାଳଚନ୍ଦ୍ର ପଟ୍ଟନାୟକ । ବର୍ତ୍ତମାନ ସୁଦ୍ଧା ଏମାନଙ୍କ ଭିତରୁ ଅନେକଙ୍କର ପରଲୋକ ହୋଇଗଲାଣି । ଜୀବିତ ବ୍ୟକ୍ତିମାନେ ଏହାର ସାକ୍ଷୀ ।

## (ଘ) ଉତ୍କଳ ବିଶ୍ୱବିଦ୍ୟାଳୟର ଅନଗ୍ରସରତା

ଭାରତବର୍ଷରେ ଉତ୍କଳ ବିଶ୍ୱବିଦ୍ୟାଳୟ ଗୋଟିଏ ପୁରାତନ ଶିକ୍ଷା ଅନୁଷ୍ଠାନ। ଏହି ସମୟରେ ଏବଂ ପରେ ପ୍ରତିଷ୍ଠିତ ହୋଇଥିବା ବହୁ ବିଶ୍ୱବିଦ୍ୟାଳୟ ଯେପରି ଭାବରେ ଶିକ୍ଷାର ପ୍ରସାର, ବିଭାଗୀୟ ଉନ୍ନତି, ଛାତ୍ର ଅଧ୍ୟାପକଙ୍କର ସୁବିଧା ସୁଯୋଗ ଓ ଅନ୍ୟାନ୍ୟ କ୍ଷେତ୍ରରେ ଯେପରି ଅଗ୍ରଗତି କରିପାରିଛନ୍ତି, ଉତ୍କଳ ବିଶ୍ୱବିଦ୍ୟାଳୟ ସେହିପରି ଭାବରେ ଆଗେଇ ପାରିନାହିଁ। ଡକ୍ଟର ପରିଜାଙ୍କ ପରି ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ବୈଜ୍ଞାନିକଙ୍କର ଭାରତରେ ଯେତେ ପ୍ରକାର ସମ୍ମାନ ତଥା ପ୍ରତିଷ୍ଠା ଥିଲା, ସେ ଚାହିଁଥିଲେ ତାଙ୍କର ୧୫-୧୭ ବର୍ଷର କୁଳପତି ସମୟରେ ଏହି ବିଶ୍ୱବିଦ୍ୟାଳୟର ବହୁ ଉନ୍ନତି କରିପାରିଥାନ୍ତେ। ସେ ଏତେବଡ଼ ମହାନୁଭବ ଓ ପ୍ରଶସ୍ତ ମନର ବ୍ୟକ୍ତି ଥିଲେ ସୁଦ୍ଧା କାହିଁକି କେଜାଣି ଉତ୍କଳ ବିଶ୍ୱବିଦ୍ୟାଳୟର ସେପରି କିଛି ଆଖି ଦୃଷ୍ଟିଆ ଉନ୍ନତି କରାଇପାରିଲେ ନାହିଁ। ସେ ଅବସର ନେବା ବେଳକୁ ପ୍ରତ୍ୟେକ ବିଭାଗରେ ସେହି ପ୍ରାରମ୍ଭିକ ସ୍ତରରେ ନିଯୁକ୍ତ ଗୋଟିଏ ପ୍ରଫେସର, ଗୋଟିଏ କି ଦୁଇଟି ରିଡ଼ର, ଦୁଇ, ତିନିଜଣ ଲେକଚରର ରହି ଥିଲେ। ଆଉ ଅଧିକା ପ୍ରଫେସର ବା ରିଡ଼ର ପଦବୀ ସୃଷ୍ଟି ହୋଇପାରିଲା ନାହିଁ।

ତାଙ୍କର ନିଜ ବିଭାଗ ଉଦ୍ଭିଦ ବିଜ୍ଞାନର ମଧ୍ୟ କୌଣସି ଗୁଣାତ୍ମକ ଅଭିବୃଦ୍ଧି ହୋଇନଥିଲା। ଏହା ମୋ ପକ୍ଷରେ ଗୋଟିଏ ରହସ୍ୟମୟ ଘଟଣା ହୋଇ ରହିଗଲା। ଅନ୍ୟ କୁଳପତିଙ୍କ ଶାସନ ସମୟରେ ମଧ୍ୟ ସେମାନଙ୍କର ନିଜ ବିଭାଗରେ କିମ୍ବା ଅନ୍ୟାନ୍ୟ ବିଭାଗରେ ଗୁଣାତ୍ମକ ପ୍ରସାରଣ ସମ୍ଭବ ହେଲାନାହିଁ। ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟମାନଙ୍କରେ ଛାତ୍ର ଓ ଅଧ୍ୟାପକମାନଙ୍କ ପାଇଁ ଯେତେପ୍ରକାର ଶିକ୍ଷାଗତ ଓ ବହୁ ପ୍ରକାରର ସୁବିଧା ରହିଛି, ସେପରି କିଛି ଉନ୍ନତି ଏଠାରେ ହେଲାନାହିଁ। ବାଣୀବିହାରରେ ଛାତ୍ରୀମାନଙ୍କର ହଷ୍ଟେଲମାନ ଏତେ ଛୋଟ ଯେ ଗୋଟିଏ ଗୋଟିଏ ଦି'ଜଣିଆ ବଖରାରେ ତିନି ଚାରିଜଣ ଛାତ୍ରୀ ରହନ୍ତି। କମନ୍ ରୁମ୍‌ରେ ଧାଡ଼ି ଧାଡ଼ି ହୋଇ ୩୦-୪୦ ଜଣ ଯାଏ ଛାତ୍ରୀ ଶୁଅନ୍ତି। ଭାରତବର୍ଷର କୌଣସି ବିଶ୍ୱବିଦ୍ୟାଳୟରେ ଏ ପ୍ରକାର ସଂକୀର୍ଣ୍ଣ ଛାତ୍ରୀ ନିବାସ ନାହିଁ କହିଲେ ଚଳେ। ଅଧ୍ୟାପକ ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କ ପାଇଁ ଯଥେଷ୍ଟ ପରିମାଣରେ ଘର ହୋଇପାରିଲା ନାହିଁ। ଏ କ୍ଷେତ୍ରରେ ମଧ୍ୟ ପ୍ରାରମ୍ଭିକ ସମୟର ତିଆରି କୋଠାବାଡ଼ି ବ୍ୟତୀତ ଆଉ ବହୁତ କମ୍ ଘର ପରେ ତିଆରି ହୋଇଛି। ସବୁ ଦିଗରୁ ଏହା ଗୋଟିଏ ଦରିଦ୍ର ବିଶ୍ୱବିଦ୍ୟାଳୟ ହୋଇ ରହିଗଲା। କୌଣସି କୁଳପତିଙ୍କ ପକ୍ଷରେ ଏସବୁ କ୍ଷେତ୍ରରେ ସାହସିକ ପଦକ୍ଷେପ ନେବା ସମ୍ଭବ ହୋଇପାରିଲା ନାହିଁ। ଅଧିକାଂଶ କୁଳପତି ଅବସର ଗ୍ରହଣ ପରେ କୁଳପତି ହୋଇଥିବାରୁ ସେମାନଙ୍କର ବିଶ୍ୱବିଦ୍ୟାଳୟ ପ୍ରତି କୌଣସି ନିଷ୍ଠା ଥିଲା ପରି ଜଣାଯାଏ ନାହିଁ। ଅନେକ ସମୟରେ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଠାରୁ ପ୍ରାପ୍ୟ ଟଙ୍କା ଠିକ୍ ସମୟରେ ଖର୍ଚ୍ଚ ହୋଇପାରେନାହିଁ। ଯୋଜନା ଶେଷ ଆଡ଼କୁ କମିଶନଙ୍କ ପାଖରେ ବଳକା ବହିଯାଉଥିବା ଟଙ୍କାରୁ ଅନ୍ୟ ବିଶ୍ୱବିଦ୍ୟାଳୟମାନେ ଆଣି ଖର୍ଚ୍ଚ କରନ୍ତି, କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟ ଏ କ୍ଷେତ୍ରରେ ନିଷ୍କ୍ରିୟ ରହିଯାଏ। ଅଥଚ ଏପରି ପରିସ୍ଥିତିରେ ମୋ ବିଭାଗ ପାଇଁ ମୁଁ କମିଶନଠାରୁ ବହୁତ ଟଙ୍କା ଆଣି ପାରିଥିଲି। ଅନେକ କୁଳପତି ବିଶ୍ୱବିଦ୍ୟାଳୟର ଛୋଟ ଛୋଟ ଚକ୍ରାନ୍ତୀୟ କାର୍ଯ୍ୟରେ ଲିପ୍ତ ରହିଯା'ନ୍ତି– ଫଳରେ ଆଉ

ଉର୍ଦ୍ଧ୍ୱକୁ ଯାଇପାରନ୍ତି ନାହିଁ । ଗତ କେତେବର୍ଷ ମଧ୍ୟରେ ଏହି ଗୋଷ୍ଠୀ ରାଜନୀତି ଏତେ ବେଶୀ ବଢ଼ିଗଲା ଯେ ଏ ପ୍ରକାର ଚକ୍ରାନ୍ତ ଛଡ଼ା ଆଉ କୌଣସି ଶିକ୍ଷାଗତ ଉନ୍ନତି ସମ୍ଭବ ହେଲାନାହିଁ । ଏଥିରେ ଓଡ଼ିଶା ସରକାରଙ୍କର ଦାୟିତ୍ୱ ମଧ୍ୟ କମ୍ ନୁହେଁ ।

ଶ୍ରୀ ପବିତ୍ରମୋହନ ପ୍ରଧାନ ସହକାରୀ ମୁଖ୍ୟମନ୍ତ୍ରୀ ଥିଲାବେଳେ ମୁଁ ତାଙ୍କ ସହିତ ଆଲୋଚନା କରି ତାଙ୍କୁ ରାଜି କରାଇଥିଲି ଯେ ବିଶ୍ୱବିଦ୍ୟାଳୟ କର୍ମଚାରୀମାନେ ନିଜ ନିଜର ଘର ତିଆରି କରିବା ପାଇଁ ପ୍ରାୟ ୧୦୦ ଏକରର ଗୋଟିଏ ଯାଗା ଭୁବନେଶ୍ୱରରେ ସେ ଯୋଗାଇ ଦେବେ । ୨୦ ଲକ୍ଷ ଟଙ୍କାର ଗୋଟିଏ ଘର ତିଆରି ପାଣ୍ଠି ପାଇଁ ମଧ୍ୟ ଗୋଟିଏ ପ୍ରସ୍ତାବ ଦେଇଥିଲି । ସେଥିଲାଗି ସେ କିଛି ଟଙ୍କା ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଏହି ସ୍ଥାନରେ ବିଶ୍ୱବିଦ୍ୟାଳୟ କର୍ମଚାରୀଙ୍କୁ ଘର ତିଆରି ପାଇଁ ଯାଗା ଯୋଗାଇ ଦେଇ କିଛି ଋଣ ଦେଲେ ସେମାନେ ଘର କରନ୍ତେ ଏବଂ ଯେଉଁମାନେ ଋଣ ନେବେ ସେମାନଙ୍କ ପାଇଁ ବିଶ୍ୱବିଦ୍ୟାଳୟ ହତାରେ ତିଆରି ଘର ମିଳିବ ନାହିଁ । ତା'ହେଲେ ବିଶ୍ୱବିଦ୍ୟାଳୟକୁ ମଧ୍ୟ ବହୁ ଟଙ୍କା ଖର୍ଚ୍ଚ କରି ସମସ୍ତଙ୍କ ପାଇଁ ଘର କରିବାର ଆବଶ୍ୟକତା ହୁଅନ୍ତା ନାହିଁ । ଘର ତିଆରିରେ ଯେତିକି ଖର୍ଚ୍ଚ ହୁଏ, ତାର ବହୁ କମ୍ ଅଂଶ ଘର ଭଡ଼ାରୁ ମିଳେ । ଏ ପ୍ରକାର ପ୍ରସ୍ତାବ ମୁଁ ତତ୍କାଳୀନ କୁଳପତିଙ୍କୁ ଦେଲି । ମୁଁ ସେତେବେଳକୁ ସିଣ୍ଡିକେଟ୍‌ରେ ନଥିଲି କିନ୍ତୁ କୁଳପତି ଓ ସିଣ୍ଡିକେଟ୍ ଏ ସମ୍ବନ୍ଧରେ କୌଣସି ସକ୍ରିୟ ପଦକ୍ଷେପ ନେଲେ ନାହିଁ । ଫଳରେ ସରକାରଙ୍କଠାରେ ଏହି ବିଧିବଦ୍ଧ ଯୋଜନା ପହଞ୍ଚି ପାରି ନଥିଲା ।

ସେହିପରି ଆଉ ଗୋଟିଏ ପ୍ରସ୍ତାବ ବିଷୟରେ ମୁଁ ତତ୍କାଳୀନ ରାଜ୍ୟମନ୍ତ୍ରୀ ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କ ସହିତ କଥାବାର୍ତ୍ତା ହୋଇଥିଲି ଯେ ସରକାରୀ ଖର୍ଚ୍ଚରେ ବାଣୀବିହାରଠାରେ ବର୍ତ୍ତମାନ ଥିବା ନାଳବନ୍ଧକୁ ଆହୁରି ଉଚ୍ଚା କରାଇଦେଲେ ସେଠାରେ ଗୋଟିଏ ହ୍ରଦ ସୃଷ୍ଟି ହୋଇପାରିବ । ତା' ଚାରିପାଖରେ ଗଛ ଲଗାଇ ଦେଲେ ବିଶ୍ୱବିଦ୍ୟାଳୟ ପରିବେଶର ଶ୍ରୀବୃଦ୍ଧି ହେବ । ପିଲାମାନେ ରାସ୍ତାକଡ଼ ପୋଲ ଉପରେ ନ ବସି ଏଠାରେ ନୌକା ବିହାର କରିପାରିବେ । ଏଠାରେ ମାଛ ଚାଷ ମଧ୍ୟ ହୋଇପାରିବ । କିନ୍ତୁ ଏ ପ୍ରସ୍ତାବକୁ ମଧ୍ୟ ବିଶ୍ୱବିଦ୍ୟାଳୟ ତରଫରୁ ସରକାରଙ୍କ ପାଖରେ ଉପସ୍ଥାପିତ କରାଯାଇପାରିଲା ନାହିଁ । ମୋଟାମୋଟି ଭାବରେ ବିଶ୍ୱବିଦ୍ୟାଳୟ ଶାସନ ଅତ୍ୟନ୍ତ ଗତାନୁଗତିକ ଢଙ୍ଗରେ କେବଳ ପରୀକ୍ଷା ପରିଚାଳନା ଛଡ଼ା ଅନ୍ୟ କୌଣସି ଉନ୍ନତିକର କାର୍ଯ୍ୟ ପାଇଁ ଆଗ୍ରହୀ ହେଲେନାହିଁ । ୧୯୭୦-୭୧ ମସିହାରେ ଯେତେବେଳେ ମୋର କୁଳପତି ହେବାର ସମ୍ଭାବନା ହୋଇଥିଲା, ମୁଁ ଏପରି କେତୋଟି ଯୋଜନା କାର୍ଯ୍ୟକାରୀ କରାଇବା ପାଇଁ ମନେ ମନେ ଭାବିଥିଲି ।

କେତେକ ବିଭାଗୀୟ ମୁଖ୍ୟ ବିଭାଗର ଶିକ୍ଷକ ଓ ଛାତ୍ରମାନଙ୍କୁ ନିୟନ୍ତ୍ରଣ ପରି ଛୋଟ ଛୋଟ ଶାସନ କାର୍ଯ୍ୟରେ ଯେପରି ଆଗ୍ରହ ଦେଖାଇଲେ, ସେମାନଙ୍କ ଭିତରେ ଥିବା ଗୋଷ୍ଠୀଗତ କଳି ତକରାଳ ଓ ଷଡ଼ଯନ୍ତ୍ରରେ ଯେପରି ଲିପ୍ତ ରହିଲେ ଏବଂ ନିର୍ବାଚନ ରାଜନୀତିରେ ଅତ୍ୟଧିକ ଉତ୍ସାହ ଦେଖାଇଲେ, ବିଭାଗର ଗୁଣାତ୍ମକ ପ୍ରସାର ଲାଗି ସେପରି ଦୃଷ୍ଟି ଦେଇପାରିଲେ ନାହିଁ । ଆମ ଦେଶ ସାମନ୍ତବାଦୀ ଶାସନ ପଦ୍ଧତିରେ ପରିଚାଳିତ । ସାମନ୍ତବାଦୀ ମନୋଭାବ ଫଳରେ ଅଧିକାଂଶ ମୁଖ୍ୟ ଅଧାପକ, ଶାସନ, ଆଇନ ଓ ନିର୍ବାଚନ ପ୍ରଭୃତି ବିଷୟରେ ବେଶୀ ଆଗ୍ରହୀ । ଅଧିକାଂଶ ବିଭାଗୀୟ ମୁଖ୍ୟ ନିଜକୁ ଯେପରି ଜଣେ

ଜମିଦାର କିମ୍ବା ଜିଲ୍ଲା କଲେକ୍ଟର ପରି ମନେ କଲେ ଏବଂ ସେହି ମନୋଭାବ ନେଇ ଅନ୍ୟମାନଙ୍କ ସାଙ୍ଗରେ ବ୍ୟବହାର କଲେ । ବିଭାଗୀୟ ସହଯୋଗ ଅଭାବରୁ ଶିକ୍ଷା ଓ ଗବେଷଣାଗତ ଉନ୍ନତି ବାଧାପ୍ରାପ୍ତ ହେଲା ।

ପ୍ରତ୍ୟେକ ପଞ୍ଚବାର୍ଷିକ ଯୋଜନା ପାଇଁ ଚିଠା ତିଆରିବେଳେ ମୁଖ୍ୟ ଅଧ୍ୟାପକମାନେ ତାଙ୍କ ବିଭାଗ ପାଇଁ କେବଳ ଅଧିକ ରିଡ଼ର ଓ ଲେକ୍‌ଚରର ଦାବି କରନ୍ତି । ଆଉ ଜଣେ ଅଧିକ ଅଧ୍ୟାପକ ସେମାନେ ଚାହାନ୍ତି ନାହିଁ । ପ୍ରତ୍ୟେକ ବିଭାଗରେ କେବଳ ଜଣେ ଲେଖାଏଁ ଅଧ୍ୟାପକ ରହିବାରେ ଯେପରି ସେମାନଙ୍କର ଗୌରବ । ପଞ୍ଚମ ଯୋଜନାର ମୁଖ୍ୟ ଆଭିମୁଖ୍ୟ ବିଶ୍ୱବିଦ୍ୟାଳୟ ବିଭାଗଗୁଡ଼ିକର ଗୁଣାତ୍ମକ ଉନ୍ନତି ପାଇଁ ବୋଲି ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କ ଠାରୁ ନିର୍ଦ୍ଦେଶନା ଆସିଥିଲେ ମଧ୍ୟ ବିଶ୍ୱବିଦ୍ୟାଳୟ ଯୋଜନା ଚିଠାରେ ଅତିରିକ୍ତ ଅଧ୍ୟାପକ ପାଇଁ କୌଣସି ପ୍ରସ୍ତାବ ନ ଥିଲା ।

ଅନୁଦାନ କମିଶନରଙ୍କର ପରିଦର୍ଶକ ଦଳ ବିଶ୍ୱବିଦ୍ୟାଳୟକୁ ଆସିବା ଆଗରୁ ମୁଖ୍ୟ ଅଧ୍ୟାପକମାନଙ୍କର ଗୋଟିଏ ସଭା ପ୍ରଶାସକ ଶ୍ରୀ ଜ୍ଞାନଚାନ୍ଦ ଡକାଇଥିଲେ । ସେଠାରେ ମୁଁ ଏକଥା ଜୋର୍ ଦେଇ କହିଥିଲି ଯେ ଅନୁଦାନ କମିଶନ ପରିଦର୍ଶକବୃନ୍ଦ ଆସୁଛନ୍ତି ଅଧିକା ଅଧ୍ୟାପକ ଓ ରିଡ଼ର ପଦବୀ ପାଇଁ । ତା'ବ୍ୟତୀତ କେତେକ ବିଭାଗ ମିଶି ଯଦି କୌଣସି ବହୁମୂଲ୍ୟ ଯନ୍ତ୍ରପାତି ଚାହିଁବେ ତା'ହେଲେ ମଧ ସେମାନେ ଅର୍ଥ ଯୋଗାଇଦେବେ । ତା' ପୂର୍ବରୁ ମୁଁ ବହୁତ ବିଶ୍ୱବିଦ୍ୟାଳୟକୁ ପରିଦର୍ଶକ ଦଳରେ ଯାଇଥିଲି ଏବଂ ଏପରି ଅଧିକ ଅଧ୍ୟାପକ ପଦବୀ ଏବଂ ଯନ୍ତ୍ରପାତି ପାଇଁ ପ୍ରଚୁର ଟଙ୍କା ସେମାନେ ପାଇଥିଲେ । ଏହାର ଉଦାହରଣ ଦେଇ ମୁଁ ସମସ୍ତଙ୍କୁ ଅନୁରୋଧ କଲି ଯେ ଆଗରୁ ବିଶ୍ୱବିଦ୍ୟାଳୟ ଯୋଜନା ଚିଠାରେ ଅଧିକ ଅଧ୍ୟାପକ ପଦବୀ ନଥିଲେ ସୁଦ୍ଧା ବିଭାଗୀୟ ମୁଖ୍ୟ ଅଧ୍ୟାପକମାନଙ୍କର ବିଶେଷ ଭାବରେ ଏହା ଦାବୀ କରିବା ଉଚିତ । ପ୍ରଶାସକ ଶ୍ରୀ ଜ୍ଞାନଚାନ୍ଦ ପ୍ରତିଶ୍ରୁତି ଦେଲେ ଯେ ଅନୁଦାନ କମିଶନ ଯେତେ ଅଧିକ ପଦବୀ ଦେବେ ସେ ଓଡ଼ିଶା ସରକାରଙ୍କଠାରୁ ସେଥିପାଇଁ ସମ୍ମତି ଓ ଭବିଷ୍ୟତ ଆର୍ଥିକ ଅନୁଦାନ ଆଣି ପାରିବେ । ତେଣୁ ଏ ବିଷୟରେ ସେ ଅଧ୍ୟାପକମାନଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଲେ । କିନ୍ତୁ ଦୁଃଖର ବିଷୟ ଯେ ପରିଦର୍ଶକ ଦଳର ନେତା ଅଧ୍ୟାପକ ରାଇସ୍ ଅହମ୍ମଦ ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ମୋତେ କହିଥିଲେ ଯେ-

'ଆପଣଙ୍କ ବିଭାଗରେ ଦୁଇଟି ଅଧ୍ୟାପକ ଥାଇ ମଧ ଆପଣ ତୃତୀୟ ଅଧ୍ୟାପକ ପାଇଁ ଦାବି କରୁଛନ୍ତି । ଅଥଚ ଅନ୍ୟମାନେ କେହି ଦ୍ୱିତୀୟ ଅଧ୍ୟାପକ ମଧ ଚାହୁଁ ନାହାନ୍ତି !'

ତା'ଛଡ଼ା ତାଙ୍କ ମତରେ ଆମ ଅଧ୍ୟାପକମାନଙ୍କ ଭିତରେ କୌଣସି ସହଯୋଗମୂଳକ ମନୋବୃତ୍ତି ଥିବାର ଜଣାଯାଉ ନଥିଲା । ପରସ୍ପରଙ୍କ ବିରୁଦ୍ଧରେ ବହୁ ଆପତ୍ତି ଅଭିଯୋଗ ପରିଦର୍ଶକଙ୍କ ଆଗରେ ହୋଇଥିଲା । ଫଳରେ ଅନ୍ତଃର୍ବିଭାଗୀୟ ସହଯୋଗୀ କାର୍ଯ୍ୟ ପାଇଁ ସେମାନେ କୌଣସି ଯନ୍ତ୍ରପାତି ମାଗି ନଥିଲେ । କେବଳ ନିଜ ନିଜ ବିଭାଗ ପାଇଁ ବହୁ ମୂଲ୍ୟର ଯନ୍ତ୍ରପାତି ଚାହୁଁଥିଲେ ଯାହା ଦେବା କମିଶନଙ୍କ ପକ୍ଷରେ କେବେ ସମ୍ଭବ ନଥିଲା । ପ୍ରତ୍ୟେକଙ୍କର ନିଜର ସାମ୍ରାଜ୍ୟ ବିସ୍ତାର ଲାଗି ବିରାଟ ଆକାଙ୍‌କ୍ଷା ଥିଲା । ଅନ୍ୟ ବିଭାଗର

ଉନ୍ନତିରେ ଈର୍ଷା ଓ ସେମାନଙ୍କ ପ୍ରତି ଶତ୍ରୁତା ବହୁ ମୁଖ୍ୟ ଅଧ୍ୟାପକ ପ୍ରକାଶ୍ୟରେ ଦେଖାଉଥିଲେ ।

ମୋ ବିଭାଗ ପାଇଁ ମୁଁ ତୃତୀୟ ଅଧ୍ୟାପକ ପାଇଲି । ଇତିହାସ ବିଭାଗ ପ୍ରାଚୀନ ଇତିହାସ ଓ ପ୍ରତ୍ନତତ୍ତ୍ୱରେ ଗୋଟିଏ ଅଧ୍ୟାପକ ପାଇଲା । କାରଣ ଓଡ଼ିଶା ସରକାରଙ୍କର ତତ୍କାଳୀନ ମନ୍ତ୍ରୀ ଶ୍ରୀ ମତଲୁବ୍ ଅଲ୍ଲୀ ଉତ୍କଳ ବିଶ୍ୱବିଦ୍ୟାଳୟରେ ଗୋଟିଏ ସ୍ୱତନ୍ତ୍ର ପ୍ରତ୍ନତତ୍ତ୍ୱ ବିଭାଗ ପାଇଁ କମିଶନଙ୍କୁ ପ୍ରସ୍ତାବ ଦେଇଥିଲେ । ଆଉ କୌଣସି ବିଭାଗ ଦ୍ୱିତୀୟ ଅଧ୍ୟାପକ ଚାହିଁ ନଥିଲେ । ତେଣୁ ପାଇଲେ ନାହିଁ । ଅଥଚ ସେ ସବୁ ବିଭାଗରେ ବହୁ ଦକ୍ଷ ଗବେଷକ ଅନେକ ବର୍ଷ ଧରି ରିଡ଼ର ଭାବରେ କୃତିତ୍ୱର ସହ କାର୍ଯ୍ୟ କରୁଥିଲେ । ଫଳରେ ଅଧିକାଂଶ ବିଭାଗରେ ଏଥିପାଇଁ ବହୁତ ଦ୍ୱନ୍ଦ୍ୱ ଓ ତିକ୍ତତା ଲାଗି ରହିଲା । ମୁଁ ଯେତେବେଳେ ଅନୁଦାନ କମିଶନଙ୍କ ଦ୍ୱାରା ଅନୁମୋଦିତ ମୋର ବିଭାଗର ତୃତୀୟ ଅଧ୍ୟାପକ ପଦ ସୃଷ୍ଟି ପାଇଁ ଏକାଡେମିକ୍ କାଉନ୍‌ସିଲ ସଭାରେ ପ୍ରସ୍ତାବ ଆଗତ କଲି, ବିଶ୍ୱବିଦ୍ୟାଳୟର ଜଣେ ବରିଷ୍ଠ ମୁଖ୍ୟ ଅଧ୍ୟାପକ ଏହା ବିରୁଦ୍ଧରେ ଭୟଙ୍କର ଭାବରେ ଆପତ୍ତି ଉଠାଇଲେ । ଅନ୍ୟ ମୁଖ୍ୟ ଅଧ୍ୟାପକଙ୍କ ପ୍ରରୋଚନାରେ ସେ ଏପରି ଆପତ୍ତି କରିଥିଲେ । ଇତିହାସ ବିଭାଗ ପାଇଁ ଯେଉଁ ଦ୍ୱିତୀୟ ଅଧ୍ୟାପକ ପଦବୀ ପ୍ରାଚୀନ ଇତିହାସ ଓ ପ୍ରତ୍ନତତ୍ତ୍ୱ ପାଇଁ ଦିଆ ହୋଇଥିଲା ସେହି ପଦବୀ ଏହାର ତତ୍କାଳୀନ ମୁଖ୍ୟ ଅଧ୍ୟାପକଙ୍କର ବିରୋଧ ଯୋଗୁ ସେ ଏହି ଅଧ୍ୟାପକ ପଦବୀ ବିଷୟରେ ପ୍ରସ୍ତାବ ଆଣିଲେ ନାହିଁ । ଶେଷରେ ମୁଁ ପ୍ରସ୍ତାବ ଆଣିଥିଲି ଏବଂ ବହୁ ବର୍ଷଯାଏ ଏହି ବିଭାଗଟି ମଧ୍ୟ ସୃଷ୍ଟି ହୋଇ ପାରିଲା ନାହିଁ । ପ୍ରଶାସକ ଶ୍ରୀ ଜ୍ଞାନଚାନ୍ଦ୍ ସେମାନଙ୍କ ଆପତ୍ତି ନଶୁଣି ମୋର ପ୍ରସ୍ତାବ ଦୁଇଟିକୁ ଗ୍ରହଣ କଲେ । କାରଣ ଅଧ୍ୟାପକମାନଙ୍କର ଏ କ୍ଷେତ୍ରରେ ସଂକୀର୍ଣ୍ଣ ମନୋବୃତ୍ତି ବିଷୟରେ ତାଙ୍କର ସ୍ପଷ୍ଟ ଧାରଣା ହୋଇଯାଇଥିଲା । ଏହା ଗୋଟିଏ ଅଦ୍ଭୁତ ଘଟଣା ଯେ ପ୍ରଶାସକ ଜ୍ଞାନଚାନ୍ଦ୍ ଅନ୍ୟ ଶିକ୍ଷାବିତ୍‌ମାନଙ୍କଠାରୁ ନାନା ଭାବରେ ପ୍ରଗତିଶୀଳ ଥିଲେ ।

ଖାଲି ନିଜ ନିଜ ବିଭାଗର ପ୍ରସାରଣ କାହିଁକି, ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କର ଯେତେ ଯେତେ ପ୍ରଗତିଶୀଳ ଯୋଜନା, ତାହା ଉତ୍କଳ ବିଶ୍ୱବିଦ୍ୟାଳୟରେ ଆଗେଇ ପାରିନାହିଁ । ଉଦାହରଣ ସ୍ୱରୂପ, କମିଶନ ବହୁତ ଟଙ୍କା ସାହାଯ୍ୟ ଦେଇ ପରୀକ୍ଷା ସଂସ୍କାର ପାଇଁ ବହୁବିଧ ପଦକ୍ଷେପ ନେଲେ । ସେଥିପାଇଁ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟକୁ ତିନିଲକ୍ଷ ଟଙ୍କା ବାର୍ଷିକ ଅନୁଦାନ ଦେଉଥିଲେ । କମିଶନଙ୍କ ପରୀକ୍ଷା ସଂସ୍କାର କମିଟିରେ ମୁଁ ସଭ୍ୟ ଥାଏ । ମୋତେ ଦାୟିତ୍ୱ ଦିଆଗଲା ଉତ୍କଳ ବିଶ୍ୱବିଦ୍ୟାଳୟରେ ପରୀକ୍ଷା ସଂସ୍କାର କ୍ଷେତ୍ରରେ ପଦକ୍ଷେପ ନେବା ପାଇଁ । ସେ ସଂପର୍କରେ ଶିକ୍ଷକ, ଛାତ୍ର, ପ୍ରିନ୍‌ସିପାଲ ଓ ଅନ୍ୟାନ୍ୟ ପ୍ରଶାସକମାନଙ୍କର ସେମିନାର ଆୟୋଜିତ ହୋଇଥିଲା ଏବଂ ସର୍ବସମ୍ମତିକ୍ରମେ ସ୍ଥିର ହେଲା ଯେ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶ୍ରେଣୀରେ ସେମିଷ୍ଟାର ପଦ୍ଧତି ଓ ଗ୍ରେଡ୍ ମୂଲ୍ୟାୟନ ପ୍ରଣାଳୀ ପ୍ରଚଳିତ ହେବ । ତା'ଛଡ଼ା କଲେଜମାନଙ୍କରେ ବି.ଏ. ପରୀକ୍ଷା ପର୍ଯ୍ୟନ୍ତ ଶତକଡ଼ା ୨୦ ନମ୍ବର ପର୍ଯ୍ୟନ୍ତ ଆଭ୍ୟନ୍ତରୀଣ ମୂଲ୍ୟାୟନ ପ୍ରବର୍ତ୍ତନ ହେବ ।

ଏସବୁ ହେଲା ସତ, କିନ୍ତୁ ମୁଖ୍ୟ ଅଧ୍ୟାପକ ଓ ପ୍ରିନ୍‌ସିପାଲମାନଙ୍କର ଆନ୍ତରିକ ଇଚ୍ଛା ଏ ଯୋଜନାରେ ନଥାଏ । ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ କହୁଛନ୍ତି ଏବଂ ମାଗଣା ଟଙ୍କା ମିଳୁଛି, ତେଣୁ କାର୍ଯ୍ୟକ୍ରମ ଆରମ୍ଭ ହେଲା । କିନ୍ତୁ ସିନେଟ୍ ସଭାରେ ଜଣେ ବରିଷ୍ଠ ଅଧ୍ୟାପକ କହିବାର ଶୁଣାଗଲା ଯେ–

'ଏସବୁ ତଥାକଥିତ ସଂସ୍କାର ଡକ୍ଟର ରଥଙ୍କ ଯୋଗୁ ଆମ ଉପରେ ଲଦି ଦିଆହେଉଛି । ସେ ଅବସର ନେବା ପରେ ଏ ସବୁ ବାତିଲ କରାଯିବ ।'

ସତକୁ ସତ ବର୍ତ୍ତମାନ ସେ ସବୁ କିଛି ନାହିଁ । ଆମେ ପଢ଼ିଲାବେଳେ ଯେପରି ଦୁଇ ବର୍ଷରେ ଥରେ ଏମ୍.ଏ. ପରୀକ୍ଷା ହେଉଥିଲା ପୁଣି ସେହିପରି ଚାଲିଲା । ସେମିଷ୍ଟର ଯୋଗୁ ଛାତ୍ରମାନଙ୍କର ବହୁତ ଉପକାର ହେଉଥିଲା, କିନ୍ତୁ ଅଧ୍ୟାପକ ଓ ପ୍ରଶାସକମାନଙ୍କୁ ଅଧିକ ପରିଶ୍ରମ କରିବାକୁ ପଡୁଥିଲା । ଆଭ୍ୟନ୍ତରୀଣ ପରୀକ୍ଷା ନମ୍ବର ପ୍ରିନ୍‌ସିପାଲମାନେ ଠିକ୍ ସମୟରେ ନ ପଠାଇବାରୁ ବିଶ୍ୱବିଦ୍ୟାଳୟର ପରୀକ୍ଷା ଫଳ ଠିକ୍ ସମୟରେ ପ୍ରକାଶ ପାଇବାରେ ଅସୁବିଧା ହେଲା । ଅଥଚ ପ୍ରିନ୍‌ସିପାଲଙ୍କୁ ଏ ବିଷୟରେ ନିୟନ୍ତ୍ରଣ ନ କରି ନାନାପ୍ରକାର ତାତ୍ତ୍ୱିକ ଆଳ ଦେଖାଇ ଆଭ୍ୟନ୍ତରୀଣ ମୂଲ୍ୟାୟନ ପଦ୍ଧତିକୁ ସମ୍ପୂର୍ଣ୍ଣ ରୂପେ ଉଠାଇ ଦିଆଗଲା ।

ଅମଲାତାନ୍ତ୍ରିକ ଅଫିସରମାନଙ୍କ ଯୋଗୁ ଯେପରି ଦେଶରେ ଅଗ୍ରଗତି ହୋଇପାରୁନାହିଁ, ସେହିପରି ଅମଲା ତାନ୍ତ୍ରିକ ଅଧ୍ୟାପକ, ପ୍ରିନ୍‌ସପାଲ ତଥା ଶିକ୍ଷା ଶାସକବର୍ଗଙ୍କ ଆନ୍ତରିକତା ଅଭାବରୁ ବିଶ୍ୱବିଦ୍ୟାଳୟ ସ୍ତରରେ ମଧ୍ୟ ଶିକ୍ଷାଗତ ଉନ୍ନତି କିମ୍ବା ପରୀକ୍ଷା ସଂସ୍କାର ସମ୍ଭବ ହୋଇପାରୁନାହିଁ । କ୍ରମେ ଶିକ୍ଷା କ୍ଷେତ୍ରରେ ଏପରି ଅଧୋଗତି ଦେଖାଦେଇଛି ଯେ ଉତ୍କଳ ବିଶ୍ୱବିଦ୍ୟାଳୟ ଡିଗ୍ରୀର ଭାରତବର୍ଷରେ ଆଗେ ଯେପରି ଖ୍ୟାତି ଥିଲା ତାହା ଆଉ ନାହିଁ । ପ୍ରତ୍ୟେକ ପରୀକ୍ଷାରେ ଗଦାଗଦା ପ୍ରଥମ ଶ୍ରେଣୀ ପିଲାମାନେ ପାଉଛନ୍ତି । କଲେଜ କଲେଜ ଓ ବ୍ୟକ୍ତି ବ୍ୟକ୍ତି ଭିତରେ ପ୍ରତିଯୋଗିତା ଚାଲିଛି କାହାର କେତେ ପିଲା ପ୍ରଥମ ଶ୍ରେଣୀ ପାଇବ । ଫଳରେ ପ୍ରଥମ ଶ୍ରେଣୀ ସଂଖ୍ୟା ବଢ଼ି ବଢ଼ି ଚାଲିଛି ଏବଂ ବିଶ୍ୱବିଦ୍ୟାଳୟ ପରୀକ୍ଷାର ମାନ ସର୍ବଭାରତୀୟ ସ୍ତରରେ କମି କମି ଯାଉଛି । ଶେଷରେ ମୋ ଦ୍ୱାରା ତିଆର ଅଗ୍ରଗାମୀ ମନସ୍ତତ୍ତ୍ୱ ବିଭାଗରେ ମଧ୍ୟ ଷାଠିଏ ଜଣ ପରୀକ୍ଷାର୍ଥୀଙ୍କ ଭିତରୁ ଚାଳିଶ-ପଚାଶ ଜଣ ଯାଏ ପ୍ରଥମ ଶ୍ରେଣୀ ପାଉଛନ୍ତି । ମୋ ସମୟରେ ଏହା ସାତ ଆଠରେ ସୀମିତ ଥିଲା ।

କିଛିବର୍ଷ ତଳେ ବିଶ୍ୱବିଦ୍ୟାଳୟ ବିଭାଗମାନଙ୍କରେ ବହୁତ କ୍ଲାସ୍ ହେଉଥିଲା । କିନ୍ତୁ ବର୍ତ୍ତମାନ ଶୁଣାଯାଏ ବେଶୀ ଦିନ କ୍ଲାସ୍ ବାତିଲ୍ କରିଦିଆଯାଉଛି । ଏ ବିଷୟରେ କୁଳପତି, କୁଳାଧିପତି କିମ୍ବା ସରକାରଙ୍କର କୌଣସି ଉଦ୍‌ବିଗ୍ନତା ଥିଲା ପରି ମନେହେଉନାହିଁ । ଆମ ଦେଶରେ ହଜାର ହଜାର କଲେଜ ଅଧ୍ୟାପକ ବର୍ଷସାରା ବହୁତ କମ୍ କ୍ଲାସ୍ ନିଅନ୍ତି ବୋଲି ଜଣାଯାଏ । ଅଥଚ ସ୍ୱିଡେନ୍ ପରି ଧନୀ ଦେଶରେ ଜଣେ ଅଧ୍ୟାପକଙ୍କୁ ବର୍ଷକୁ ହାରାହାରି ୪୦୦ ଘଣ୍ଟାଯାଏ କ୍ଲାସ୍ ନେବାକୁ ପଡ଼ିଥାଏ । ଓଡ଼ିଶା ପରି ଗରିବ ରାଜ୍ୟରେ ହଜାର ହଜାର ଅଧ୍ୟାପକ ବର୍ଷକୁ କ'ଣ ଏତେ କମ୍ କାମ କରିବା ଉଚିତ ? ଅଧ୍ୟାପକମାନେ ଯେ ଜାଣିଶୁଣି କମ୍ କ୍ଲାସ୍ ନେଉଛନ୍ତି ତାହା ନୁହେଁ, କିନ୍ତୁ ଶିକ୍ଷା ଶାସନ ପ୍ରଣାଳୀ ଏପରି ହୋଇଗଲାଣି ଯେ କଲେଜରେ ନାମଲେଖା, ପରୀକ୍ଷା, ସାଂସ୍କୃତିକ କାର୍ଯ୍ୟକ୍ରମ, ମନ୍ତ୍ରୀଙ୍କ

ଅଭିନନ୍ଦନ, ବିଶିଷ୍ଟ ବ୍ୟକ୍ତିଙ୍କର ମୃତ୍ୟୁ ପ୍ରଭୃତି ଅବସରରେ ଏତେ ପରିମାଣରେ କ୍ଲାସ୍ ବନ୍ଦ କରିଦିଆଯାଏ ଯେ ଜଣେ ଚାହିଁଲେ ମଧ୍ୟ ଅଧିକ କ୍ଲାସ୍ ନେଇପାରିବ ନାହିଁ। ଶିକ୍ଷା କ୍ଷେତ୍ରରେ ଏ ପ୍ରକାର ଭୟଙ୍କର ଅରାଜକତା ପ୍ରତି ଶିକ୍ଷାବିତ୍ ଓ ଶାସକବର୍ଗଙ୍କର କୌଣସି ନଜର ଥିବାର ଜଣାଯାଏ ନାହିଁ। କ୍ରମେ କଲେଜମାନଙ୍କରେ ଏପରି ଅବସ୍ଥା ହେଲାଣି ଯେ ପିଲାମାନେ ଆଉ କଲେଜ ଯାଉନାହାନ୍ତି। ବହୁ ଟଙ୍କା ଦେଇ କୋଚିଂ କ୍ଲାସ୍‌ରେ ଯାଇ ପଢୁଛନ୍ତି। ଏହାକୁ ରୋକିବା ପରିବର୍ତ୍ତେ କେବଳ ରାଜନୈତିକ ଅଭିସନ୍ଧି ଯୋଗୁ ଆହୁରି ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ କରିବାକୁ ସରକାରୀ ଆଗ୍ରହୀ।

## (ଡ) ମୋର କୁଳପତି ହେବା ନୋହିଲା

ମୁଁ ଚାକିରି ଆରମ୍ଭ କରିବା ସମୟରୁ ଦୃଢ଼ ସଂକଳ୍ପ ନେଇଥିଲି ଯେ ଭବିଷ୍ୟତରେ ଯେ କୌଣସି ଉଚ୍ଚ ପଦବୀ ଲୋଭରେ କର୍ତ୍ତୃପକ୍ଷ ଓ ଶାସକବର୍ଗଙ୍କ ଆଗରେ ଲୋଚାକୋଚା ହୋଇ ଚଳିବି ନାହିଁ। ଯାହା ଠିକ୍ ବୋଲି ଭାବିବି, ଯେତେବଡ଼ ପଦସ୍ଥ ବ୍ୟକ୍ତି ହେଉ ପଛକେ ତା ଆଗରେ ତାହା ଭଦ୍ରଭାବରେ ପ୍ରକାଶ କରିବାରେ କୁଣ୍ଠାବୋଧ କରିବି ନାହିଁ। ଦେଶରେ ପ୍ରଚଳିତ ପ୍ରତିକ୍ରିୟାଶୀଳ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସଂସ୍ଥା ବିରୁଦ୍ଧରେ ମୁକ୍ତ ଭାବରେ ଆଲୋଚନା କରିବି। ମନ୍ତ୍ରୀ ଓ ଉଚ୍ଚପଦସ୍ଥ ଅଫିସରଙ୍କ ଘରକୁ ଅଯଥାରେ ବାରମ୍ବାର ଯିବା ଓ ଖୋସାମତିଆ କଥା କହିବା ଅତ୍ୟନ୍ତ ଅମର୍ଯ୍ୟାଦାବନ୍ତ ବୋଲି ମୋର ଦୃଢ଼ ବିଶ୍ୱାସ ଥିଲା। କିନ୍ତୁ ମୋ ନିଜ କର୍ତ୍ତବ୍ୟରେ ମୁଁ କୌଣସି ପ୍ରକାରର ଅବହେଳା ଦେଖାଇବି ନାହିଁ। ଏପରି ପରିସ୍ଥିତିରେ ମୋର କୁଳପତି ହେବାର ସମ୍ଭାବନା ନାହିଁ ବୋଲି ମୁଁ ଆଗରୁ ଠିକ୍ କରି ସାରିଥିଲି। ତେଣୁ ମୋ ବିଭାଗର ଉନ୍ନତି ଓ ମୋର ବ୍ୟକ୍ତିଗତ ମର୍ଯ୍ୟାଦା ବୃଦ୍ଧି ଲାଗି ମୁଁ ଓଡ଼ିଶା ବାହାରେ ହିଁ ବେଶୀ କାମ କରୁଥିଲି। ତଥାପି ମଝିରେ ମଝିରେ କୁଳପତି ପଦ ପାଇଁ ମୋ ନାଁ ଉଠେ।

୧୯୭୧ ମସିହାରେ ଯେଉଁ କୁଳପତି ନିର୍ବାଚନ କମିଟି ଗଠିତ ହେଲା, ସେଥିରେ ଶ୍ରୀ ନବକୃଷ୍ଣ ଚୌଧୁରୀ ଜଣେ ସଭ୍ୟ ଥିଲେ। ସେ କୁଆଡ଼େ ଜିଦ୍ କରି ବସିଥିଲେ ଯେ, ମୁଁ ଏକମାତ୍ର ବ୍ୟକ୍ତି ଯେ କି କୁଳପତି ହେବା ଉଚିତ। ତେଣୁ ସେ ମୋ ନାମ ପ୍ରସ୍ତାବ କରିଥିଲେ। ଡକ୍ଟର ସଦାଶିବ ମିଶ୍ରଙ୍କୁ ଦ୍ୱିତୀୟଥର ପାଇଁ ଓ ଡକ୍ଟର ରଘୁନାଥ ସାହୁଙ୍କର ନାମ ମଧ୍ୟ ଏହି ତାଲିକାରେ ଥିଲା। ସେତେବେଳେ ଓଡ଼ିଶାର ଗଭର୍ଣ୍ଣର ଥିଲେ ଡକ୍ଟର ଆନ୍‌ସାରି। ସେ କୁଆଡ଼େ ଏହି ତିନିଜଣଙ୍କ ଭିତରୁ ମୋତେ ହିଁ କୁଳପତି ପଦ ପାଇଁ ବାଛିଲେ। ଏ କଥା ଗୋଟିଏ ଶନିବାର ସଂଧ୍ୟାରେ ସେ ଫାଇଲ୍‌ରେ ଲେଖିଲେ। ସେଦିନ ରାତି ୧୦ଟାରେ ଜଣେ ହାଇକୋର୍ଟ ବିଚାରପତି ରାଜଭବନରୁ ଏ କଥା ଶୁଣି ଆସି ଫୋନ୍‌ରେ ମୋତେ ଅଭିନନ୍ଦନ ଜଣାଇ କହିଥିଲେ ଯେ–

'ଆପଣଙ୍କଠାରୁ ଉଚ୍ଚଶିକ୍ଷା କ୍ଷେତ୍ରରେ ଗୋଟିଏ ନୂତନ ଦିଗ୍‌ଦର୍ଶନ ଆମେ ଆଶା କରୁଛୁ।'

ତା'ପର ଦିନ ରବିବାର। ସାରାଦିନ ମୋତେ ବହୁଲୋକ ଫୋନ୍‌ରେ ବଧେଇ ଜଣାଇଲେ, ଏପରିକି ମୋର ବିରୋଧୀ ଲୋକମାନେ ମଧ୍ୟ। ଏମାନେ ସବୁ ଯେପରି ଭାବରେ ଉଚ୍ଚ ଆଶା ମୋ ପ୍ରତି ପୋଷଣ କରୁଥିଲେ, ସେଥିରେ ମୁଁ ପ୍ରକୃତରେ ଡରି

ଯାଇଥିଲି । ବହୁ ଲୋକଙ୍କର ଉଚ୍ଚ ଧାରଣା ନେଇ ମୁଁ କୁଳପତି ହେଲା ପରେ ମୋ ତ୍ରୁଟି ବିଚ୍ୟୁତି ବହୁତ ବେଶୀ ମାତ୍ରାରେ ଜଣାଯିବା ସ୍ୱାଭାବିକ । ଲୋକଙ୍କର ଏତେ ବେଶୀ ଆସ୍ଥା ମୋ ଉପରେ ରହିବା ଠିକ୍ ନୁହେଁ ବୋଲି ଭାବି ମୁଁ ପ୍ରକୃତରେ ଟିକିଏ ଦବି ଯାଇଥିଲି ।

କୁଳପତି ହେଲେ କି କି ଯୋଜନା ସାଙ୍ଗେ ସାଙ୍ଗେ ହାତକୁ ନେଇ ହେବ, ସେ ବିଷୟରେ କଳ୍ପନା ଜଳ୍ପନା କରୁଥିଲି । ଆନନ୍ଦ ଓ ଭୟ ମିଶ୍ରିତ ଭାବାବେଗରେ ମୁଁ ଆନ୍ଦୋଳିତ ହେଉଥାଏ । ଏପରି ସମୟରେ ମୋ ପାଖକୁ ମୋର ଦୁଇଜଣ ଯୁବକ ବନ୍ଧୁ ଆସିଲେ ଏବଂ ଅନୁରୋଧ କଲେ ଯେ ମୁଁ ସେମାନଙ୍କ ସହିତ ଶ୍ରୀଯୁକ୍ତ ମହତାବଙ୍କ ଘରକୁ ଯିବାକୁ । ମୁଁ ଆଶ୍ଚର୍ଯ୍ୟ ହୋଇ ଏହାର କାରଣ ପଚାରିଲି । ସେତେବେଳକୁ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଚାଲିଥାଏ । ଶ୍ରୀଯୁକ୍ତ ମହତାବ୍ କୁଆଡ଼େ ଏହି କୁଳପତି ନିଯୁକ୍ତି ନେଇ କୁଳାଧିପତିଙ୍କୁ ଦେଖା କରିଥିଲେ ଏବଂ ତାଙ୍କୁ କହିଥିଲେ ଯେ ମୁଁ କୁଳପତି ହେଲେ ବିଶ୍ୱବିଦ୍ୟାଳୟରେ ବହୁତ ପ୍ରଚଣ୍ଡ ପରିବର୍ତ୍ତନ ଆଣିବାକୁ ଉଦ୍ୟମ କରିବି । ଫଳରେ ଅଶାନ୍ତି ସୃଷ୍ଟି ହେବ । ତେଣୁ ରାଷ୍ଟ୍ରପତି ଶାସନ ସମୟରେ ମୋର କୁଳପତି ନ ହେବା ଉଚିତ ବୋଲି ସେ ମତ ଦେଇଥିଲେ ।

ଏକଥା ସେମାନେ ରାଜଭବନରୁ ଶୁଣି ଆସି ମୋତେ ମହତାବଙ୍କ ଘରକୁ ଯାଇ ଏ ବିଷୟରେ ଆଲୋଚନା କରିବାକୁ ଅନୁରୋଧ କରିଥିଲେ । ମୁଁ କିନ୍ତୁ ସାଙ୍ଗେ ସାଙ୍ଗେ ନିଷ୍ପତ୍ତି ନେଲି ଯେ କାହାକୁ ଖୋସାମତି କରି କୁଳପତି ହେବା ଠିକ୍ ହେବ ନାହିଁ । ମୁଁ ମହତାବଙ୍କ ଭୁବନେଶ୍ୱର ଘର ଦେଖି ନଥିଲି, ଆଜିଯାଏ ବି ଦେଖିନାହିଁ । ମୁଁ ଯାଇ ତାଙ୍କୁ ଦେଖା କଲେ ହୁଏତ ସେ ରାଜି ହୋଇଯିବେ ମୋତେ ସାହାଯ୍ୟ କରିବା ପାଇଁ । କିନ୍ତୁ ତାଙ୍କ ଅନୁଗ୍ରହରୁ କୁଳପତି ହେଲା ପରେ ସେ ଯଦି ବିଶ୍ୱବିଦ୍ୟାଳୟ ସଂପର୍କରେ କୌଣସି କଥା କରିବାକୁ ମୋତେ ଅନୁରୋଧ କରନ୍ତି ଓ ତାହା କରିବା ଉଚିତ ନୁହେଁ ବୋଲି ମୁଁ ଭାବିବି, ତଥାପି କ'ଣ ମୁଁ ନାହିଁ କରିପାରିବି ? ତା'ଛଡ଼ା, ଏ ପଦବୀ ପାଇଁ ମୁଁ ଯୋଗ୍ୟ ନୁହେଁ ବୋଲି ମହତାବ ଏବଂ କୁଳାଧିପତିଙ୍କର ଯଦି ମତ ହୁଏ, ତା'ହେଲେ ସେମାନଙ୍କଠାରୁ ଅଯଥା ଅନୁଗ୍ରହ ପାଇବା ପାଇଁ ଉଦ୍ୟମ କରିବା ଉଚିତ ନୁହେଁ ।

ମୋ ପାଇଁ ଉଦ୍‌ବିଗ୍ନ ଥିବା ମୋର ଯୁବକ ବଂଧୁଙ୍କୁ ମୁଁ ପଚାରିଲି ଯେ ସେମାନେ କଅଣ ପ୍ରକୃତରେ ଖୁସି ହେବେ ମୁଁ ମହତାବଙ୍କ ଅନୁଗ୍ରହରୁ କୁଳପତି ହେଲେ ? ତା'ଛଡ଼ା ମହତାବଙ୍କ କଥା ଯଦି ସତ ହୋଇଥାଏ ଯେ ତାଙ୍କ ମତରେ ମୁଁ ବିଶ୍ୱବିଦ୍ୟାଳୟରେ ପ୍ରଚଣ୍ଡ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିବି– ତା'ହେଲେ ସେ ତ ଠିକ୍ କଥା କହିଛନ୍ତି । ମୁଁ ଯଦି ପରିବର୍ତ୍ତନ ନ ଆଣିପାରିବି, ତେବେ ବିଶ୍ୱବିଦ୍ୟାଳୟର ଜଣେ ରବରଷ୍ଟାମ୍ପ କୁଳପତି ହେବାରେ ମୋର ଆନନ୍ଦ ନାହିଁ । ବରଂ ମୋ ବିଭାଗର ଗୁଣାତ୍ମକ ପରିବର୍ତ୍ତନ ପାଇଁ ମୁଁ ଚେଷ୍ଟା କରିବି ।

ଯାହାହେଉ, ଏଥିପାଇଁ ମୁଁ କାହା ପାଖକୁ ଗଲିନାହିଁ । ତା'ପରେ ମହତାବଙ୍କର ପ୍ରରୋଚନା ଯୋଗୁ କିଛିଦିନ ଧରି କୌଣସି ନିଷ୍ପତ୍ତି ନିଆଯାଇପାରି ନଥିଲା । କାରଣ ସେତେବେଳେ ଆଇନ ଥାଏ ଯେ ଜଣେ ପାଞ୍ଚବର୍ଷ ପାଇଁ କୁଳପତି ନିଯୁକ୍ତି ପାଇବ ଏବଂ ୬୫ ବର୍ଷରେ ଅବସର ଗ୍ରହଣ କରିବ । ସେତେବେଳକୁ ଡକ୍ଟର ମିଶ୍ରଙ୍କର ବୟସ ପ୍ରାୟ

୬୨ । ତେଣୁ ପାଞ୍ଚ ବର୍ଷରୁ କମ୍ ସମୟ ପାଇଁ ନିଯୁକ୍ତି ହୋଇପାରିବ କି ନାହିଁ— ସେ ବିଷୟରେ ଆଇନ୍ ସ୍ପଷ୍ଟ ନଥିଲା । ଯାହାହେଉ ଆଇନ ବିଭାଗକୁ ପଚରାଯାଇ ଶେଷରେ ଡକ୍ଟର ମିଶ୍ର ଦ୍ୱିତୀୟ ଥର ପାଇଁ କୁଳପତି ରୂପେ ନିଯୁକ୍ତି ପାଇଲେ । ଡକ୍ଟର ମିଶ୍ର ଜଣେ ଅତି ସଂବେଦନଶୀଳ ବ୍ୟକ୍ତି ହୋଇଥିବାରୁ ତାଙ୍କୁ ନେଇ ତର୍କ ବିତର୍କ ସେ ପସନ୍ଦ କରିନଥିଲେ । ସେ ତିନି ଚାରିମାସ ପରେ କୁଳପତି ପଦରୁ ଇସ୍ତଫା ଦେଇଥିଲେ ।

କିଛିଦିନ ପରେ ଜଣେ ବରିଷ୍ଠ ଅଧ୍ୟାପକ ମୋ ପାଖକୁ ଆସି ମୋତେ କହିଥିଲେ ଯେ, ସେ ଓ ଆଉ ଜଣେ ଅଧ୍ୟାପକ କୁଳପତି ନିଯୁକ୍ତି ସମୟରେ ଶ୍ରୀଯୁକ୍ତ ମହତାବଙ୍କ ପାଖକୁ ଯାଇ ଅନୁରୋଧ କରିଥିଲେ ଡକ୍ଟର ସଦାଶିବ ମିଶ୍ରଙ୍କୁ ଆଉ ତିନିବର୍ଷ ପାଇଁ କୁଳପତି ପଦରେ ରଖିବାକୁ । କାରଣ ତାଙ୍କ ମତରେ ମୋର ତ ବହୁତ ସମୟ ଅଛି କୁଳପତି ହେବା ପାଇଁ କିନ୍ତୁ ଡକ୍ଟର ମିଶ୍ର ତିନିବର୍ଷ ପରେ ଅବସର ନେବେ । ମୁଁ ତାଙ୍କଠାରୁ ଏ କଥା ଶୁଣି ତାଙ୍କର ମୋତେ ଏ କଥା ଜଣାଇବାର ଉଦ୍ଦେଶ୍ୟ ହଠାତ୍ ବୁଝିପାରିନଥିଲି । ସେମାନଙ୍କ ଭିତରୁ ଜଣେ କୌଣସି କୂଟନୈତିକ ଉଦ୍ଦେଶ୍ୟ ନଥାଇ ଗୁରୁତ୍ୱପୂର୍ଣ୍ଣ କଥା କହନ୍ତି ନାହିଁ । ମୁଁ ତାଙ୍କୁ ଏତିକି କହିଥିଲି ଯେ ଭବିଷ୍ୟତରେ ମୋତେ କୁଳପତି ହେବାକୁ ହେଲେ ଆପଣଙ୍କ ସାହାଯ୍ୟ ଅବଶ୍ୟମ୍ଭାବୀ ବୋଲି ଆପଣ ମୋତେ ଏ କଥା କହିଲେ କି ? ଭବିଷ୍ୟତରେ କୁଳପତି ହେବାର ବାସନା ମୋର ଆଦୌ ନାହିଁ । ତେଣୁ ଆପଣଙ୍କର ସାହାଯ୍ୟ ନେବାର ଆବଶ୍ୟକତା ରହିବ ନାହିଁ । ବରଂ ଆପଣ କୁଳପତି ହୁଅନ୍ତୁ । ସେ ପରେ କୁଳପତି ହେଲେ, କିନ୍ତୁ ଦୁଇବର୍ଷରୁ ବେଶି ରହିପାରିଲେ ନାହିଁ । ଶେଷରେ ସେ ରାଜନୀତି କଲେ ।

କିଛି ବର୍ଷ ପରେ ଡକ୍ଟର ବିଦ୍ୟାଧର ମିଶ୍ର କୁଳପତି ଥିବାବେଳେ ମୋତେ ଥରେ ସୁଦ୍ଧା ବି ଅସ୍ଥାୟୀ ଭାବରେ କୁଳପତି କାର୍ଯ୍ୟ ତୁଲାଇବା ପାଇଁ ଅନୁରୋଧ କରି ନଥିଲେ । ମୁଁ ସେତେବେଳକୁ ବିଶ୍ୱବିଦ୍ୟାଳୟରେ ସମସ୍ତଙ୍କଠାରୁ ବୟୋଜ୍ୟେଷ୍ଠ ଅଧ୍ୟାପକ ଥିଲି । କୁଳପତି ଡକ୍ଟର ମିଶ୍ର ଛୁଟିରେ ଗଲାବେଳେ ବୟସ ଓ ଚାକିରିରେ ମୋ'ଠାରୁ କନିଷ୍ଠ ଡକ୍ଟର ମନ୍ମଥନାଥ ଦାସଙ୍କୁ ସିନା ଅସ୍ଥାୟୀ କୁଳପତି ପଦରେ ରଖାଯାଇଥିଲା, ମୋତେ ନୁହେଁ । ଅନ୍ୟମାନେ ମୋତେ ଆସି ଏ କଥା କହିଲେ ମୁଁ ହସି ଉଡ଼ାଇଦିଏ ଯେ, ସ୍ୱପ୍ନରେ ରାଜଯୋଗର ଆକାଂକ୍ଷା ମୋର ନାହିଁ । ବରଂ ଡକ୍ଟର ଦାସ ପ୍ରାଣପଣେ ଚେଷ୍ଟା କଲେ ପ୍ରମାଣ କରିବା ପାଇଁ ଯେ ସେ ହେଉଛନ୍ତି ମୋ'ଠାରୁ ବହୁତ ଲୋକପ୍ରିୟ ଅଧ୍ୟାପକ । ସେ କୁଳପତି ହେବା ପାଇଁ ବହୁ ଆଗରୁ ରାସ୍ତା ତିଆରି କରୁଥିଲେ । ମୁଁ ତାଙ୍କୁ କହିଥିଲି ଯେ ଏ କ୍ଷେତ୍ରରେ ସେ ଛାଇ ସହିତ କୁସ୍ତି କରିବା ପାଇଁ ଅଯଥା ଉଦ୍ୟମ କରୁଛନ୍ତି । ତାଙ୍କ ସହିତ କିମ୍ବା ଅନ୍ୟ କାହାରି ସହିତ କୁଳପତି ହେବା ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ମୋର ଆଦୌ ଇଚ୍ଛା ନଥିଲା । ଏମାନେ ମୋତେ କାମଚଳା କୁଳପତି କରାଇ ଦେଉ ନଥିଲେ କାରଣ ମୁଁ ଆଗରୁ ଘୋଷଣା କରୁଥିଲି ଯେ ମୁଁ ଚାରିଦିନ କୁଳପତି ହେଲେ ମଧ୍ୟ ଯେତେ ଯେତେ ନୀତିଗତ ଜରୁରୀ କାର୍ଯ୍ୟକୁ କୁଳପତି ଓ ମୁଖ୍ୟ ଅଧ୍ୟାପକମାନେ ଚକ୍ରାନ୍ତ କରି ଚାପି ରଖୁଥିଲେ, ସେ ସବୁକୁ ମୁଁ କାର୍ଯ୍ୟକାରୀ କରାଇଦେବି । ଉଦାହରଣସ୍ୱରୂପ ବିଶ୍ୱବିଦ୍ୟାଳୟ ଆୟୋଗ କମିଶନ ରିଡ଼ରମାନଙ୍କର କୃତିତ୍ୱ ଅନୁସାରେ ପ୍ରଫେସର ପଦବୀ ଦେବା ପାଇଁ ନୀତି ଗ୍ରହଣ କରିଥିଲେ

ସୁଦ୍ଧା ଏବଂ ସେଥିପାଇଁ ଅନୁଦାନ ଦେବା ପାଇଁ ଚାହୁଁଥିଲେ ମଧ୍ୟ ଏମାନେ ତାହା କରାଇ ଦେଉନଥିଲେ ।

ଦ୍ୱିତୀୟ ଓ ତୃତୀୟ ଅଧ୍ୟାପକ ପଦବୀ ମୋ ବିଭାଗରେ ସୃଷ୍ଟି ହେଲା ଦିନଠାରୁ ଅନେକ ମୁଖ୍ୟ ଅଧ୍ୟାପକ ମୋ ବିରୁଦ୍ଧରେ । କେତେକ ଅଧ୍ୟାପକ କୁଳପତି ମନୋନୟନ ସମୟରେ ମୋ ବିରୁଦ୍ଧରେ ନବକୃଷ୍ଣ ଚୌଧୁରୀଙ୍କୁ କହିଥିଲେ । ନବବାବୁ ତାଙ୍କର ବିରକ୍ତିମିଶା ହସ ହସି ଏକଥା ବହୁଲୋକଙ୍କୁ କହିଥିଲେ ଯେ ମୋ ବିରୁଦ୍ଧରେ ତାଙ୍କୁ ଯାଇ କହିବାର ଆସ୍ପର୍ଦ୍ଧା ସେମାନଙ୍କର କିପରି ହେଲା । ଏହା ମଧ୍ୟ ଆଉ ଗୋଟିଏ ଅଦ୍ଭୁତ ଘଟଣା ଯେ ସେମାନଙ୍କ ଭିତରୁ ଜଣକୁ ମୁଁ ତାଙ୍କର ପ୍ରଥମ ନିଯୁକ୍ତି ତଥା ପଦୋନ୍ନତିରେ ବହୁତ ସାହାଯ୍ୟ କରିଥିଲି । ମୋ ବିନା ସାହାଯ୍ୟରେ ସେ ହୁଏତ ପ୍ରଥମରୁ ବିଶ୍ୱବିଦ୍ୟାଳୟକୁ ଆସିପାରି ନଥାନ୍ତେ ଏବଂ ତାଙ୍କର ଅଧ୍ୟାପକ ପଦୋନ୍ନତି ନିଶ୍ଚିତ ଭାବରେ ବିଳମ୍ବିତ ହୋଇଯାଇଥାନ୍ତା । ତାଙ୍କର ପଦୋନ୍ନତି କଥା ନେଇ ମୁଁ ମୋର କେତେକ ବନ୍ଧୁଙ୍କର କୋପଦୃଷ୍ଟିରେ ମଧ୍ୟ ପଡ଼ିଥିଲି । ଏପରି ଅଧ୍ୟାପକମାନଙ୍କୁ ନେଇ କୁଳପତି ହୋଇ ବିଶ୍ୱବିଦ୍ୟାଳୟର ଶାସନ କରିବା ପାଇଁ ମୋର ଆଗ୍ରହ କମି କମି ଆସୁଥିଲା । କିନ୍ତୁ ବିଶ୍ୱବିଦ୍ୟାଳୟର ପ୍ରାୟ ସବୁ ରିଡ଼ର, ଲେକ୍‌ଚରର୍ ଓ ଅନ୍ୟାନ୍ୟ କର୍ମଚାରୀ ମୋ ସପକ୍ଷରେ ଥିଲେ । ମୁଁ କୁଳପତି ହେବା ବିଷୟରେ ଜନରବ ହେଲେ ସେମାନେ ବହୁତ ଖୁସି ହୋଇ ମୋ ପାଖକୁ ଆସନ୍ତି ।

ଥରେ ମୋର ବନ୍ଧୁ ଓ ହିତାକାଂକ୍ଷୀ ରାଜ୍ୟ ଅର୍ଥମନ୍ତ୍ରୀ ବିନାୟକ ଆଚାର୍ଯ୍ୟ ମୋତେ ପଚାରିଥିଲେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ହେବା ବିଷୟରେ । ମୁଁ ରାଜି ହୋଇନଥିଲି । କାରଣ ସେତେବେଳକୁ ମୋ ବିଭାଗ ଆଡ଼ଭାନ୍ସ କେନ୍ଦ୍ର ହେବାକୁ ଥାଏ । ମୁଁ ଚାଲିଯାଇଥିଲେ ଏହା କେବେହେଲେ ଏପରି ସମ୍ମାନର ଅଧିକାରୀ ହୋଇପାରିନଥାନ୍ତା । ମୁଁ ଭାବୁଥିଲି ଯେ ଭାରତବର୍ଷରେ ଓ ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟରେ ଆଡ଼ଭାନ୍‌ସ ସେଣ୍ଟରର ଜନକ ହିସାବରେ ମୋର ଯେତେ ସମ୍ମାନ ହେବ, କୁଳପତି ହିସାବରେ ସେପରି ଖ୍ୟାତି ସମ୍ଭବ ନୁହେଁ । ଅବଶ୍ୟ ଓଡ଼ିଶା ପରି ସାମନ୍ତବାଦୀ ରାଜ୍ୟରେ କୁଳପତି ହେବା ଏବଂ ପରେ ଜୀବନଯାକ ପୂର୍ବତନ କୁଳପତି ପଦବୀ ବ୍ୟବହାରର ବହୁତ ମୂଲ୍ୟ ଅଛି । ଏଠାରେ ଆଡ଼ଭାନ୍‌ସ ସେଣ୍ଟରର ମର୍ଯ୍ୟାଦା କଥା କିଏ ବୁଝୁଛି ?

କୁଳପତି ପଦବୀ ନେଇ ଆଉ ଗୋଟିଏ ଅଦ୍ଭୁତ ଅନୁଭୂତି ମୋର ହୋଇଥିଲା । ୧୯୭୧ ମସିହା କୁଳପତି ମନୋନୟନ ସମୟରେ ମୋର କେତେକ ଯୁବକ ବନ୍ଧୁ ଅତ୍ୟନ୍ତ ଉତ୍ସାହର ସହିତ ମୋର କୁଳପତି ପଦବୀ ପାଇଁ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀଙ୍କ ପାଖକୁ ଯାଇଥିଲେ । ତାଙ୍କର ମତ ନେଇ ସେମାନେ ତାଙ୍କୁ ଏହି ମନୋନୟନ କମିଟି ପାଇଁ ନିର୍ବାଚିତ କରାଇଲେ । ନବକୃଷ୍ଣ ଚୌଧୁରୀ ମୋତେ କୁଳପତି କରିବା ପାଇଁ ଏପରି ଉତ୍ସାହିତ ହୋଇପଡ଼ିଲେ ଯେ ସେ ଏହି କମିଟିର ଆଉ ଜଣେ ସଭ୍ୟଙ୍କୁ ତାଙ୍କ ଘରକୁ ଯାଇ ବୁଝାଇଥିଲେ ଯେ ମୋ ଛଡ଼ା ଆଉ କେହି କୁଳପତି ପାଇଁ ଯୋଗ୍ୟ ନୁହଁନ୍ତି । ତେଣୁ ମୋ ସାଙ୍ଗକୁ ଆଉ ଏପରି ଦୁଇଜଣ ବ୍ୟକ୍ତିଙ୍କର ନାମ ରହିବ, ଯେଉଁମାନଙ୍କର କୁଳପତି ହେବାର

ସଂଭାବନା ମଧ୍ୟ ନଥିବ ! ସେ ଭଦ୍ର ଲୋକ ମୋର ଜଣେ ନିକଟ ସଂପର୍କୀୟ ଆତ୍ମୀୟ ଏବଂ ମୋର ପ୍ରଚଣ୍ଡ ସମର୍ଥକ ମଧ୍ୟ । ତଥାପି କାଳେ ସେ ଆଉ କେହି ଟାଣୁଆ ଲୋକଙ୍କର ନାମ ପ୍ରସ୍ତାବିତ କରିଦେବେ, ସେଥିପାଇଁ ତାଙ୍କୁ ଆଗରୁ ନବ ବାବୁ ବୁଝାଇଥିଲେ । ସେ ମଧ୍ୟ ନବବାବୁଙ୍କ ସହିତ ଏକମତ ହୋଇଥିଲେ ।

ତାଙ୍କ ପୁଅ ଉତ୍କଳ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ ଥିଲେ । ତାଙ୍କ ପୁଅ ମାଧ୍ୟମରେ ଉତ୍କଳ ବିଶ୍ୱବିଦ୍ୟାଳୟର ଭବିଷ୍ୟତରେ କୁଳପତି ହେବାର ଦୁଇଜଣ ଆଶାୟୀ ଅଧ୍ୟାପକ ତାଙ୍କୁ ବୁଝାଇ ଡକ୍ଟର ସଦାଶିବ ମିଶ୍ରଙ୍କ ନାମକୁ ଏହି ତିନିଜଣ ପ୍ରାର୍ଥୀଙ୍କ ଭିତରେ ରଖିବା ପାଇଁ ଅନୁରୋଧ କଲେ । ନବବାବୁ  ଡକ୍ଟର ମିଶ୍ର ଦ୍ୱିତୀୟ ଥର ପାଇଁ କୁଳପତି ନ ହେବା ସପକ୍ଷରେ ଥିଲେ । କିନ୍ତୁ  ନବ ବାବୁଙ୍କର ଏହି ପରାମର୍ଶକୁ ସେ ଭଦ୍ରଲୋକ ଗ୍ରହଣ ନକରି ନବବାବୁ ମୋ ନାମ ପ୍ରସ୍ତାବ ପରେ ସେ ଡକ୍ଟର ମିଶ୍ରଙ୍କର ନାମକୁ ତାଲିକାରେ ଯୋଡ଼ିଦେଲେ । ଏଥିରେ ନବବାବୁ ବହୁତ ଅସନ୍ତୁଷ୍ଟ ହୋଇଥିଲେ । କିନ୍ତୁ ତାଙ୍କର ଅନ୍ୟ ଉପାୟ ନଥିଲା ।

ଏହା ନିଶ୍ଚିତ ଭାବରେ ଅଦ୍ଭୁତ ଯେ ନବବାବୁ ମୋତେ ଏପରି ଭାବରେ ସମର୍ଥନ କରୁଥିଲା ବେଳେ ମୋର ହିତାକାଂକ୍ଷୀ ନିକଟ ସଂପର୍କୀୟ ଆତ୍ମୀୟ ଜଣକ ମୋ ବିଷୟରେ ତାଙ୍କ ସହିତ ଏକମତ ହୋଇପାରିନଥିଲେ ! ସେହିପରି ମଧ୍ୟ ଆଉ ଥରେ ବହୁଦିନ ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ମନୋନୟନ ପାଇଁ ମୋର ଆଉ ଜଣେ ଅତି ନିକଟ ସଂପର୍କୀୟ ଆତ୍ମୀୟ ମୋ ବିରୁଦ୍ଧରେ ଯାଇଥିଲେ । ଫଳରେ ମୋ ନାମ ମଧ୍ୟ ସେ ତାଲିକାରେ ରହିପାରି ନଥିଲା । ଏହି ଆତ୍ମୀୟ ଦୁଇଜଣ ବ୍ରାହ୍ମଣ, ଅଥଚ ନବବାବୁ ଏବଂ ତିନିଜଣଯାକ ଯୁବକ ବନ୍ଧୁ ଯେଉଁମାନେ ମୋ ସପକ୍ଷରେ ଏହିପରି ଭାବରେ ଆନ୍ତରିକ ଭାବରେ ଲାଗିଥିଲେ ସେମାନେ ହେଲେ କରଣ । ତେଣୁ ମୋ ମତରେ ବ୍ରାହ୍ମଣ କରଣ ଜାତିଗତ ଆଚରଣ ପରିବର୍ତ୍ତେ ଅଧିକାଂଶ କ୍ଷେତ୍ରରେ ବ୍ୟକ୍ତିଗତ ଈର୍ଷା ଏବଂ ବିଦ୍ୱେଷ ହିଁ କାମ କରୁଥାଏ । ଏପରି ଅନୁଭୂତି ଯୋଗୁ ମୋର ଧାରଣା ଯେ ଜାତିଗତ କିମ୍ବା ବ୍ୟକ୍ତିଗତ ସଂପର୍କ ଅପେକ୍ଷା ପାରସ୍ପରିକ ବ୍ୟାବହାରିକ କ୍ରିୟା ଅନୁକ୍ରିୟା ହିଁ ଆମମାନଙ୍କର ସଂବନ୍ଧକୁ ପ୍ରଭାବିତ କରିଥାଏ ।

ଏହିପରି କେତେକେ ମୋର କୁଳପତି ମନୋନୟନ ବିରୁଦ୍ଧରେ କାମ କରିଥିଲେ ସୁଦ୍ଧା ମୋର କାହିଁକି ମନେହୁଏ ସେମାନେ ପରୋକ୍ଷରେ ମୋତେ ସାହାଯ୍ୟ କରିଥିଲେ । ମୁଁ କୁଳପତି ହୋଇଥିଲେ ପାଞ୍ଚବର୍ଷ ଯାଏଁ ଏପରି ଭାବରେ ବିଶ୍ୱବିଦ୍ୟାଳୟ ରାଜନୀତିରେ ବାନ୍ଧି ହୋଇଯାଇଥାଆନ୍ତି ଯେ ଓଡ଼ିଶା ଏବଂ ଭାରତ ବାହାରେ ଏପରି ଭାବରେ ପାରଦର୍ଶିତା ଲାଭ କରିପାରି ନଥାଆନ୍ତି । ଜଣେ ଅବସରପ୍ରାପ୍ତ କୁଳପତି ବୋଲି ଓଡ଼ିଶାରେ ଆଖ୍ୟାୟିତ ହୋଇଥାଆନ୍ତି ସତ, କିନ୍ତୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ମୁଁ ପରିଚିତ ହୋଇ ପାରିନଥାନ୍ତି । ତା'ଛଡ଼ା କୁଳପତି ହୋଇଥିଲେ ବରିଷ୍ଠ ଅଧ୍ୟାପକମାନଙ୍କର ଗୋଷ୍ଠୀଗତ ଚକ୍ରାନ୍ତ ଓ ରାଜନୈତିକ ହସ୍ତକ୍ଷେପ ଫଳରେ ମୁଁ କେତେଦୂର ସବୁ କ୍ଷେତ୍ରରେ କୃତକାର୍ଯ୍ୟ ହୋଇପାରିଥାଆନ୍ତି କହିବା କଷ୍ଟ । କିନ୍ତୁ ବର୍ତ୍ତମାନ ମଧ୍ୟ ଯେତେବେଳେ କୌଣସି ସଂକଟ

ବିଶ୍ୱବିଦ୍ୟାଳୟରେ ଦେଖାଯାଏ ସେତେବେଳେ ବହୁ ଅଧ୍ୟାପକ ଓ ବିଶ୍ୱବିଦ୍ୟାଳୟ କର୍ମଚାରୀମାନେ ମୋ କଥା ମନେ ପକାନ୍ତି- କହନ୍ତି ଯେ ମୁଁ କୁଳପତି ହୋଇପାରିଲେ ଏ ସମସ୍ତ ସମସ୍ୟାର ସମାଧାନ କରିଦେଇପାରନ୍ତି । କୁଳପତି ନ ହୋଇଥିବା ଯୋଗୁ ମୋ ପ୍ରତି ସେମାନଙ୍କର ଏ ପ୍ରକାରର ଉଚ୍ଚ ଧାରଣା ରହିଯାଇଛି ବୋଲି ମୋର ବିଶ୍ୱାସ ।

ତେଣୁ ସବୁ ଦୃଷ୍ଟିରୁ ମୋର କୁଳପତି ନୋହିବା ମୋ ପକ୍ଷରେ ଗୋଟିଏ ବିରାଟ ଆଶୀର୍ବାଦ ବୋଲି ମୋର ମନେହୁଏ । ଯେଉଁମାନେ ମୋତେ କରାଇଦେଲେ ନାହିଁ ସେମାନେ ମୋର ପ୍ରକୃତ ଉପକାର ସାଧନ କରିପାରିଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

କୁଳପତି ନହୋଇ ମଧ୍ୟ କୁଳପତି ଦରମାଠାରୁ ଅଧିକ ଗବେଷଣା ବୃତ୍ତି ମୋତେ ମୋର ଅବସର ପରେ ପରେ ଜାତୀୟ ଫେଲୋ ହିସାବରେ ମିଳିଲା । ଏହି ମର୍ଯ୍ୟାଦାବନ୍ତ ପଦବୀ ଲାଭ କରିବାରେ ଓଡ଼ିଶାରେ ମୁଁ ପ୍ରଥମ ଥିଲି ଏବଂ ସାରା ଦେଶରେ ମନୋବିଜ୍ଞାନୀଙ୍କ ଭିତରେ ମଧ୍ୟ ମୁଁ ପ୍ରଥମ । ପ୍ରଥମରୁ ମୋର ଯେଉଁ ସଂକଳ୍ପ ଥିଲା, ତାହାହିଁ ଶେଷ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେଲା । ସର୍ବ ଭାରତୀୟ ସ୍ତରରେ ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ସମ୍ମାନ ପାଇବାର ସ୍ୱପ୍ନ ସାର୍ଥକ ହେଲା । ଓଡ଼ିଶାରେ ମୁଁ ପୂର୍ବତନ କୁଳପତି ହିସାବରେ ପରିଗଣିତ ନ ହେବାରେ ମୋର ତିଳେମାତ୍ର ଗ୍ଳାନି ନାହିଁ । ଓଡ଼ିଶାରେ ଏକେଲା ଚାଲିବାରେ ମୁଁ ସଂପୂର୍ଣ୍ଣ ରୂପେ ଅଭ୍ୟସ୍ତ ହୋଇଯାଇଥିଲି ବହୁବର୍ଷ ଧରି । ତେଣୁ ସେଥିରେ ମୋର କୌଣସି ଅଶାନ୍ତି ନାହିଁ ।

■■■

୧୯

# ବିଶ୍ୱଭ୍ରମଣ

## (କ) ଆମେରିକା ଅନୁଭୂତି

'ଗାଁ' ପରିମଳ ଧୋବା ତୁଠରୁ ଜଣାଯାଏ ।' ଏହି ପ୍ରବଚନଟି ପଛରେ ଗୋଟିଏ ମୂଳ ସମାଜତତ୍ତ୍ୱ ରହିଛି । ଗାଁ'କୁ ପଶିଗଲା ବେଳକୁ ପ୍ରଥମେ ଧୋବା ତୁଠଟି ଦେଖାଯାଏ ଏବଂ ଏହି ସ୍ଥାନଟି ଯଦି ଖୁବ୍ ପରିଷ୍କାର ପରିଚ୍ଛନ୍ନ ଥାଏ, ତା'ହେଲେ ଗାଁ'ଟି ପରିଷ୍କାର ରହିବାର ସମ୍ଭାବନା ବେଶି । ସେହିପରି ଗୋଟିଏ ଦେଶକୁ ପ୍ରଥମକରି ଗଲେ ଏବଂ କିଛିସମୟ କଟାଇଲା ପରେ କେତେଗୁଡ଼ିଏ ସାମାଜିକ ଓ ସାଂସ୍କୃତିକ ବୈଶିଷ୍ଟ୍ୟ ଆଖିରେ ପଡ଼େ । ଏଗୁଡ଼ିକ ପଛରେ ମଧ୍ୟ କେତେକ ବିଶିଷ୍ଟ ସାମାଜିକ କାରଣ ରହିଥାଏ । ଅତି ସାବଧାନତାର ସହିତ ସେଗୁଡ଼ିକୁ ଲକ୍ଷ୍ୟ କଲେ, କେତେକ ସାଧାରଣ ନୀତି ମଧ୍ୟ ଦୃଷ୍ଟିଗୋଚର ହୁଏ । ଏହାର ବିଶଦ ବିବରଣୀ ଦେବା ପାଇଁ ଆହୁରି ବେଶି ଗବେଷଣା ଓ ପର୍ଯ୍ୟବେକ୍ଷଣର ଆବଶ୍ୟକତା ରହିଛି । ତଥାପି ଏ ଦେଶ ବିଷୟରେ ଗୋଟିଏ ମୋଟାମୋଟି ସ୍ଥୂଳଚିତ୍ର ମନ ଭିତରେ ଆସିଥାଏ । ନାନା ଦେଶକୁ ଗଲା ପରେ ପ୍ରତ୍ୟେକ ଦେଶ ବିଷୟରେ ଏ ପ୍ରକାର ମୋଟାମୋଟି ଚିତ୍ର ଓ ମୋର ବ୍ୟକ୍ତିଗତ ଅଭିଜ୍ଞତା ବିଷୟରେ ଲେଖୁଛି ।

୧୯୫୭ ମସିହାରେ ଭାରତ ସରକାର ଶିକ୍ଷାବିତ୍‌ମାନଙ୍କର ଗୋଟିଏ ୩୦ଜଣିଆ ପ୍ରତିନିଧି ଦଳ ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରଚଳିତ ଉଚ୍ଚଶିକ୍ଷା ପ୍ରଣାଳୀର ଆଭିମୁଖ୍ୟ ବିଷୟରେ ଜ୍ଞାନ ଆହରଣ ପାଇଁ ପଠାଇବା ସ୍ଥିର କରିଥିଲେ । ଆମେରିକାର କଲେଜମାନଙ୍କରେ କଳା ବିଭାଗ ପିଲାଙ୍କ ସାଧାରଣ ବିଜ୍ଞାନ ଓ ବିଜ୍ଞାନ ଛାତ୍ରଙ୍କୁ କଳା ଓ ସମାଜ ବିଜ୍ଞାନ ବିଷୟରେ କିଛି ଶିକ୍ଷା ଦିଆଯାଏ । ଇଂଜିନିୟରିଂ ଓ ମେଡିକାଲ କଲେଜରେ ମଧ୍ୟ ବୈଷୟିକ ଶିକ୍ଷା ବ୍ୟତୀତ ଅନ୍ୟାନ୍ୟ ବିଷୟରେ ପାଠ୍ୟକ୍ରମର ଗୁରୁତ୍ୱ ରହିଛି । ଗୋଟିଏ ଶିକ୍ଷାର୍ଥୀକୁ ଆଧୁନିକ ଦୁନିଆର ପୂର୍ଣ୍ଣାଙ୍ଗ ବ୍ୟକ୍ତି ରୂପେ ଗଢ଼ିବା ଉଦ୍ଦେଶ୍ୟରେ ଏ ପ୍ରକାର ବିଶେଷ ଶିକ୍ଷା ବ୍ୟବସ୍ଥା ସେଠାରେ ରହିଛି । ଜଣେ କେବଳ ଇଂଜିନିୟରିଂ କିମ୍ବା ଭେଷଜ ବିଦ୍ୟାରେ ପାରଙ୍ଗମ ହୋଇଗଲେ ଯଥେଷ୍ଟ ହେବନାହିଁ । ତାକୁ ଆଧୁନିକ ଜଟିଳ ସମାଜ ସହିତ କୃତକାର୍ଯ୍ୟତା ସହ ପ୍ରତିଯୋଜନ କରିବାକୁ ହେଲେ ସମାଜ ବିଜ୍ଞାନ, ମନୋବିଜ୍ଞାନ, ରାଜନୀତି ଓ

ଅର୍ଥନୀତିଗତ ତଥ୍ୟାବଳୀ ପ୍ରଭୃତି ବିଷୟରେ ମଧ୍ୟ ତାର ମୋଟାମୋଟି ଜ୍ଞାନ ଥିବା ଦରକାର ବୋଲି ଆମେରିକାର ଶିକ୍ଷାବିତ୍‌ମାନେ ଭାବନ୍ତି । ଶିକ୍ଷା ପ୍ରଣାଳୀର ଏହି ଆଭିମୁଖ୍ୟ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ କିପରି ପ୍ରବର୍ତ୍ତନ କରାଯାଇପାରିବ– ସେ ବିଷୟରେ ଅଧ୍ୟୟନ କରି ଭାରତ ସରକାରଙ୍କୁ ଗୋଟିଏ ରିପୋର୍ଟ ଦେବା ପାଇଁ ଏହି ପ୍ରତିନିଧିଦଳକୁ ପଠାହୋଇଥିଲା । ସେମାନଙ୍କ ଭିତରୁ ମୁଁ ଥିଲି ଜଣେ ।

୩୦ଜଣ ଶିକ୍ଷାବିତ୍ ଦିଲ୍ଲୀରେ କିଛିଦିନ ରହି ଆମେରିକା ଅଭିମୁଖେ ଯାତ୍ରା କରିବା କଥା । ଶେଷଦିନ ଉଡ଼ାଜାହାଜରେ ବସିଲା ବେଳକୁ ଦେଖାଗଲା ଆମ ଭିତରୁ ତିନିଜଣ ଅଧ୍ୟାପକଙ୍କୁ ଆମେରିକା ଦୂତାବାସ ତାଙ୍କ ଦେଶ ପାଇଁ ପ୍ରବେଶପତ୍ର ନ ଦେବାରୁ ସେମାନେ ଆମ ସାଙ୍ଗରେ ଯାଇପାରିଲେ ନାହିଁ । ଏହି ତିନିଜଣଙ୍କ ଭିତରୁ ଜଣେ ଥିଲେ ଓଡ଼ିଶା ଓ ପଶ୍ଚିମ ବଙ୍ଗଳାର ପୂର୍ବତନ ଗଭର୍ଣ୍ଣର ଅଧ୍ୟାପକ ନୁରୁଲ୍ ହୁସେନ୍ । ବୁଝିବାରେ ଜଣାଗଲା ଯେ ଏହି ତିନିଜଣଯାକ ଶିକ୍ଷାବିତ୍ ଆଲିଗଡ଼ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ଏବଂ ଏମାନେ ହେଉଛନ୍ତି ବାମପନ୍ଥୀ ବୁଦ୍ଧିଜୀବୀ । ଭାରତ ସରକାର ଯାହାଙ୍କୁ ପ୍ରତିନିଧି ହିସାବରେ ଆମେରିକା ପଠାଇବା ସ୍ଥିର କଲେ ତାଙ୍କୁ ଆମେରିକା ସରକାର ଭିସା ନଦେବା ନିଶ୍ଚିତ ଭାବରେ ଏକ ଗୁରୁତର ରାଜନୈତିକ ଘଟଣା । କିନ୍ତୁ କାହିଁକି କେଜାଣି ଭାରତ ସରକାର ଏହାର ପ୍ରତିବାଦ କରିନଥିଲେ ।

ଦିଲ୍ଲୀରୁ ଉଡ଼ାଜାହାଜରେ ସିଧା ୱାଶିଂଟନ ଗଲୁ । ମଝିରେ କେବଳ ଦୁଇ ତିନି ଯାଗାରେ ଉଡ଼ାଜାହାଜ ଅଟକିଥିଲା । ସେତେବେଳେ ଉଡ଼ାଜାହାଜର ଗତି ଏତେ ବେଶି ନଥିଲା । ତେଣୁ ଏକାଦିକ୍ରମେ ପ୍ରାୟ ୨୬ ଘଣ୍ଟାଯାଏ ଆମମାନଙ୍କୁ ଉଡ଼ାଜାହାଜରେ ବସିବାକୁ ପଡ଼ିଥିଲା । ଆମର ବିରାଟ ଉଡ଼ାଜାହାଜଟି ବହୁପଥ ଅତିକ୍ରମ କରି ଶେଷରେ ଆଟଲାଣ୍ଟିକ୍ ମହାସାଗର ଉପରେ ଏକାଦିକ୍ରମେ ୧୨ ଘଣ୍ଟା ଯାଏଁ ଅବିରାମ ଗତିରେ ଘୁଁ ଘୁଁ ଶବ୍ଦ କରି ଉଡ଼ି ଚାଲିଥାଏ ।

ଆଦିକବି ବାଲ୍ମୀକିଙ୍କର କଳ୍ପନାପ୍ରସୂତ ପୁଷ୍ପକ ବିମାନ ବର୍ତ୍ତମାନ ବାସ୍ତବରେ ପରିଣତ ହୋଇଛି । ଦେବଯାନ ପୁଷ୍ପକ ବିମାନରେ କେବଳ ଦେବତାମାନେ ବସି ପାରୁଥିଲେ; କିନ୍ତୁ ଆଜିକାଲି ଯେ କୌଣସି ଲୋକ ବସି ଆକାଶମାର୍ଗରେ ଘଣ୍ଟାରେ ଆଠଶହ କିଲୋମିଟର ବେଗରେ ଗତି କରିପାରୁଛି । ଆମର ଉଡ଼ାଜାହାଜଟି ସେହିପରି ଗତିରେ ପ୍ରାୟ ୧୦ ହଜାର ମିଟର ଉଚ୍ଚରେ ଉଡୁଥାଏ । ରାତିରେ କେତେଘଣ୍ଟା ଏପରି ଭାବରେ ଚାଲିଲା ପରେ ସକାଳ ହେଲା । ସୂର୍ଯ୍ୟୋଦୟ ବେଳେ ଆକାଶମାର୍ଗରେ ମେଘ ଉପର ଦେଇ ଗଲାବେଳେ କି ଅପୂର୍ବ ଦୃଶ୍ୟ ! ତଳେ ମେଘଖଣ୍ଡମାନ ବିରାଟ ବିରାଟ ତୁଳାର ପାହାଡ଼ ପରି ଜମା ହୋଇଥାଏ, ତା'ଉପରେ ଉଡ଼ାଜାହାଜଟି ଚାଲିଥାଏ, କିନ୍ତୁ ପାଖରେ କୌଣସି ଗତିଶୀଳ ବା ସ୍ଥାଣୁ ବସ୍ତୁ ନଥିବାରୁ ବିମାନଟି ଏତେ ବେଗରେ ଉଡୁଥିଲେ ସୁଦ୍ଧା ଭିତରେ ବସିଥିବା ଲୋକକୁ ଏହାର ଗତି ଆଦୌ ଜଣାପଡୁନଥାଏ ।

ଉପରେ ସୀମାହୀନ ଗାଢ଼ ନୀଳ ଆକାଶ–ତଳେ ଅପରିମିତ ମେଘମାଳା ଧଳା ଧଳା ତୁଳା ପାହାଡ଼ ପରି ଦିଗ୍‌ବଳୟ ପର୍ଯ୍ୟନ୍ତ ଆଚ୍ଛାଦି ରହିଥାଏ । ସେ ଅଦ୍ଭୁତ ଦୃଶ୍ୟ ଭିତରେ ସୂର୍ଯ୍ୟ ହଠାତ୍ ମେଘମାଳା ଭିତରୁ ଉଙ୍କି ମାରିବାକୁ ଆରମ୍ଭ କଲା । ସାରା

ମେଘମଣ୍ଡଳ ଅଦ୍ଭୁତ ଆଲୋକରେ ଉଦ୍‌ଭାସିତ ହୋଇଉଠିଲା । ବିଭିନ୍ନ ତୁଳାକୁଣ୍ଡ ସବୁ ନାନାରଙ୍ଗରେ ରଞ୍ଜିତ ହୋଇଉଠିଲା । ଉପରେ ମେଘହୀନ ଆକାଶର ସୀମାହୀନ ନୀଳିମା ତଳେ ବିଭିନ୍ନ ରଙ୍ଗର ତୁଳା ପାହାଡ଼ର ଲହରୀ-ତା' ମଝିରେ ଆମର ପାର୍ଥିବ ବିମାନଟି । ଏ ସମସ୍ତ ଯେପରି ଦିଗ୍‌ମଣ୍ଡଳବ୍ୟାପୀ ଗୋଟିଏ ବିରାଟ ଛବି—ଉପରେ ଆକାଶ ଯେପରି ସ୍ଥିର—ତଳର ରଙ୍ଗବେରଙ୍ଗୀ ମେଘମାଳା ସେହିପରି ଅଚଞ୍ଚଳ- ମେଘ ଫାଙ୍କଦେଇ ଠାଏ ଠାଏ ନୀଳ ସମୁଦ୍ର ଦେଖାଯାଉଛି—ତା'ର ପାଣି ମଧ୍ୟ ନିସ୍ତବ୍ଧ ଓ ନିଶ୍ଚଳ । ପ୍ରଶାନ୍ତ ମହାସାଗରରେ ଫେନାୟିତ ଉତ୍ତାଳ ଲହରୀମାଳା ଯେପରି ହଠାତ୍ ଥମକିପଡ଼ି ସୁନୀଳ ଆକାଶ ଆଡ଼କୁ ନିର୍ନିମେଷ ନୟନରେ ଚାହିଁ ରହିଛି । ଅସୀମ ପ୍ରକୃତିର ମୁଗ୍ଧତା ଓ ଆତ୍ମବିଭୋରତା ଭିତରେ ଯେପରି କୌଣସି ଚଞ୍ଚଳତା ନାହିଁ । ଏହି ବିରାଟ ନୈସର୍ଗିକ ପ୍ରଚ୍ଛଦପଟ ଭିତରେ ଆମର ଆପାତତଃ ଗତିହୀନ ବିମାନଟି ମଧ୍ୟ ଗୋଟିଏ ସ୍ପନ୍ଦନହୀନ କ୍ଷୁଦ୍ରବିନ୍ଦୁ । ସେହି କ୍ଷୁଦ୍ର ବିନ୍ଦୁଟି ଭିତରେ ମୋର ନିଜର ସତ୍ତା ଅନୁଭବ କରିବା ଅସମ୍ଭବ । ବିସ୍ମୟ ବିହ୍ୱଳତାର ମୁଁ ଯେପରି ଗୋଟିଏ ଜମାଟବନ୍ଧା ବିନ୍ଦୁ । ଏହି ନୈସର୍ଗିକ ବିରାଟ ସୌନ୍ଦର୍ଯ୍ୟ ଯୋଗୁହିଁ କବିମାନେ ମେଘଲୋକକୁ ଦେବତାମାନଙ୍କର ବାସସ୍ଥାନ ବୋଲି କଳ୍ପନା କରିଥିଲେ । ପିଲାଦିନେ ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟ ସମୟରେ ଯେଉଁ ବିଚିତ୍ର ମେଘମାଳାକୁ ବହୁ ସମୟ ଧରି ଚାହିଁ ଚାହିଁ କଳ୍ପନା କରି ଆସୁଥିଲି, ଆଜି ସେହି ମେଘଲୋକରେ ନିଜକୁ ଏପରି ଭାସମାନ ଅବସ୍ଥାରେ ଅନୁଭବ କରି ଅଭୁତପୂର୍ବ ଆନନ୍ଦ ମନପ୍ରାଣକୁ ଆଲୋଡ଼ିତ କରିଥିଲା ।

କେତେବେଳେ ବିମାନଟି ବିରାଟ ବରଫାବୃତ ପ୍ରାନ୍ତର ଉପରେ ବିଶାଳ କଳ୍ପ ଲଙ୍ଗଳରେ ଶିଆର କାଟିଲା ପରି ଧଳାମେଘ ପାହାଡ଼ମାଳାର ଅସୀମ ବିସ୍ତୃତି ଭିତରେ ଛୁଟିଛି ତ ହଠାତ୍ କେତେବେଳେ ମେଘ ପାହାଡ଼ ଭେଦ କରି ତୀର ପରି ହଠାତ୍ ନିଜକୁ ମୁକ୍ତ କରି ନୀଳ ଆକାଶ ଆଡ଼କୁ ମୁହାଁଉଛି । କେତେବେଳେ ଆଗପଛ, ଉପର ତଳସବୁ ସମାନ । ଗୋଟିଏ ଅନିର୍ଦ୍ଦିଷ୍ଟ ଦିଗନ୍ତବ୍ୟାପୀ ତରଳ ଆଲୋକ ଉପରେ ମହାଶୂନ୍ୟ ତଳେ ମଧ୍ୟ ପ୍ରଶାନ୍ତ ମହାସାଗରର ଗଭୀର ଶୂନ୍ୟତା । ଏହି ଅନନ୍ତ ଶୂନ୍ୟତା ଭିତରେ ମନୁଷ୍ୟ ତିଆରି ଯନ୍ତ୍ରଟି ଗୋଟିଏ ଧୂଳିକଣା ପରି ଭାସି ଭାସି ଚାଲିଛି । ତା' ଭିତରେ କେତୋଟି ନିରାଶ୍ରୟ ମନୁଷ୍ୟ । ବିମାନଟିର ସାମାନ୍ୟ ଗୋଟିଏ ପ୍ରକାର ଘର୍ଘର ଶବ୍ଦ ଛଡ଼ା ଜୀବନର ଅନ୍ୟ କୌଣସି ଚିହ୍ନ ନାହିଁ—ଯେପରି ସମଗ୍ର ମାନବ ଜାତିର ଆଗେଇ ଯିବାର ଦୃଢ଼ ଉଦ୍ୟମ ଏହି ସାମାନ୍ୟ ଶବ୍ଦ ଭିତର ଦେଇ ପ୍ରକାଶ ପାଉଛି । ଏହି ନିରାଶ୍ରୟ ମନୁଷ୍ୟ ନିଜ ବୁଦ୍ଧି ବଳରେ କିପରି ଦୁର୍ଦ୍ଧର୍ଷ ଓ ବଳୀୟାନ ହୋଇପାରିଛି ଭାବି ଆଶ୍ଚର୍ଯ୍ୟ ଲାଗିଲା । ମାନବ ଜାତିର ବିଜୟ ଗୌରବରେ ପ୍ରାଣ ଉଲ୍ଲସି ଉଠିଲା ।

X X X X X X X X

ଯୁକ୍ତରାଷ୍ଟ୍ର ଆମେରିକାରେ ଆମେ ସମସ୍ତେ ୱାଶିଂଟନରେ ଏକ ସପ୍ତାହ କଟାଇ ଶିକ୍ଷା ବିଷୟରେ ବହୁତ ପ୍ରକାର ସେମିନାରରେ ଯୋଗ ଦେଲୁ । ତାପରେ ଠିକ୍ ହେଲା ସମସ୍ତେ ଗୋଟିଏ ଗୋଟିଏ ଛୋଟିଆ ଦଳରେ ଭିନ୍ନ ଭିନ୍ନ ବିଶ୍ୱବିଦ୍ୟାଳୟରେ ପ୍ରାୟ ୬ମାସ ଯାଏଁ ବୁଲି ଅଭିଜ୍ଞତା ହାସଲ କରିବୁ । ପ୍ରତ୍ୟେକ ଦଳ ଗୋଟିଏ ବିଶିଷ୍ଟ ବିଶ୍ୱ ବିଦ୍ୟାଳୟରେ

୬ ସପ୍ତାହ କଟାଇ ଶିକ୍ଷା କାର୍ଯ୍ୟକୁ ଖୁବ୍ ଭଲ ଭାବରେ ଅଧ୍ୟୟନ କଲାପରେ, ସେମାନଙ୍କ ଇଚ୍ଛା ଅନୁସାରେ ଆଉ ପ୍ରାୟ ୫ ମାସ ଆମେରିକାର ବିଭିନ୍ନ ବିଶ୍ୱବିଦ୍ୟାଳୟକୁ ଯାଇପାରିବେ । ଆମର ସମସ୍ତ ରହଣି କାଳ ଥିଲା ୬ ମାସ । ଶେଷ ସପ୍ତାହରେ ଆମେ ସମସ୍ତେ ୱାଶିଂଟନ ଫେରି ଆସିବୁ ଏବଂ ଶେଷ ରିପୋର୍ଟ ତିଆରି କରି ଭାରତ ଫେରିବୁ ।

ମୁଁ ଠିକ୍ କଲି ଯେ ମୁଁ ଏକା ଚାରିଆଡ଼େ ବୁଲିବି । ଅନ୍ୟ କାହାରି ସାଙ୍ଗରେ ଯିବାକୁ ମୁଁ ପସନ୍ଦ କଲିନାହିଁ । କାରଣ ଆମ ପ୍ରତିନିଧି ଦଳରେ ବହୁ ଅଦ୍ଭୁତ ଧରଣର ଲୋକ ଥିଲେ । ସେମାନଙ୍କ ସାଙ୍ଗରେ ନେଇ ମନଖୋଲା କଥା ସମ୍ଭବ ନଥିଲା । ସେମାନଙ୍କ ଭିତରୁ ଅଧିକାଂଶ ଆମେରିକାର କୋଠାବାଡ଼ି, ରାସ୍ତାଘାଟ ଦେଖି ଏପରି କୃତ୍ୟକୃତ୍ୟ ହୋଇଯାଉଥିଲେ ଯେ ସେ ଦେଶର ମାଟିକୁ ଚୁମ୍ବନ ଦେବା ଲାଗି ସେମାନେ ଯେପରି ପ୍ରସ୍ତୁତ ଥିଲେ । ମୋର ବ୍ୟକ୍ତିଗତ ସ୍ୱାଧୀନତାରେ ଏମାନେ ପ୍ରତିବନ୍ଧକ ହେବେ ଭାବି ମୁଁ ଏକା ଏକା ପାଞ୍ଚମାସ କାଳ ଯୁକ୍ତରାଷ୍ଟ୍ର ଆମେରିକାର ପୂର୍ବ ସମୁଦ୍ରକୂଳଠାରୁ ପଶ୍ଚିମ ଭାଗର ପ୍ରଶାନ୍ତ ମହାସାଗର କୂଳ କାଲିଫର୍ଣ୍ଣିଆ ପର୍ଯ୍ୟନ୍ତ ଏବଂ ଦକ୍ଷିଣ-ଉତ୍ତରରେ ମଧ୍ୟ ଏହାର ଶେଷସୀମା ପର୍ଯ୍ୟନ୍ତ ଯାଇଥିଲି । ମୋର ଏହି ଭ୍ରମଣ ସମୟରେ ଏମାନଙ୍କର ସମାଜକୁ ଘନିଷ୍ଠ ଭାବରେ ଆବିଷ୍କାର କରିବାର ସୁଯୋଗ ମୋତେ ମିଳିଥିଲା । ମୋର ମୌଳିକ ମାନବୀୟ ଐକ୍ୟ ଅନ୍ୟାନ୍ୟ ପାର୍ଥକ୍ୟ ତୁଳନାରେ ବହୁତ ଆକର୍ଷଣୀୟ ତଥା ମୂଲ୍ୟବାନ । ଏହି ଆଭିମୁଖ୍ୟ ନେଇ ତୁମେ ପୃଥିବୀର ଯେ କୌଣସି ସ୍ଥାନକୁ ଗଲେ ମଧ୍ୟ ଏବଂ ତୁମର ସେମାନଙ୍କ ସହିତ ଭାଷା, ସଂସ୍କୃତି ଓ ଶିକ୍ଷାଗତ ବହୁତ ପ୍ରଭେଦ ଥିଲେ ମଧ୍ୟ ତୁମେ ସେମାନଙ୍କ ଭିତରେ ଆନନ୍ଦରେ ଚଳିପାରିବ । ଏହି ମୌଳିକ ମାନବୀୟ ଐକ୍ୟ ଯୋଗୁଁ ପରସ୍ପରକୁ ଭଲ ପାଇପାରିବ । ଏହି ତତ୍ତ୍ୱର ପରୀକ୍ଷଣ ଉଦ୍ଦେଶ୍ୟରେ ବାହାରିଥିବା ଲୋକ ପକ୍ଷରେ ଅନ୍ୟର ଉପର ଠାଉରିଆ ଅନୁଭୂତି ବିରାଟ ପ୍ରତିବନ୍ଧକ ହେବ ଭାବି ମୁଁ ଏକା ଏକା ବାହାରିଲି ।

ସେହି ସମୟରେ ଆମେରିକାରେ ମାକଆର୍ଥିଙ୍କ ରାଜନୈତିକ ପ୍ରଭାବ ଏପରି ସାଙ୍ଘାତିକ ଥିଲା ଯେ ବାମପନ୍ଥୀ ଚିନ୍ତାଧାରା ତେଣେ ଥାଉ, ତୁମେ ଯଦି ବିଶ୍ୱଶାନ୍ତି, ସାର୍ବଜନୀନ ଭ୍ରାତୃଭାବ, ମାନବୀୟ ଐକ୍ୟ ପ୍ରଭୃତି କଥା କହିବ ତେବେ ତୁମେ ତାଙ୍କ ଗୁପ୍ତ ବିଭାଗ ଲୋକଙ୍କ ସନ୍ଦେହରେ ପଡ଼ିବ । ମୁଁ କଲେଜମାନଙ୍କରେ ଶିକ୍ଷକ ଓ ପିଲାମାନଙ୍କ ସହିତ ମିଶିଥିଲି ଏବଂ ଏହି ଆନ୍ତର୍ଜାତିକ ଭ୍ରାତୃଭାବ ଆମ ଭାରତର ବେଦାନ୍ତିକ ଦର୍ଶନ 'ସର୍ବେ ଭବନ୍ତୁ ସୁଖିନ' ତଥା ବୁଦ୍ଧଙ୍କର କରୁଣା, ମୈତ୍ରୀ, ମହାମାନବୀୟତା, ଭାରତୀୟ ପାରିବାରିକ ସଂସ୍କାର ମୌଳିକ ମନସ୍ତାତ୍ତ୍ୱିକ ତୃପ୍ତି, ଭାରତୀୟ ଗଣତାନ୍ତ୍ରିକ ସଂସ୍ଥା ପ୍ରଭୃତି ବିଷୟରେ କଥାବାର୍ତ୍ତା ଓ ବକ୍ତୃତା ଆରମ୍ଭ କରି ଦେଇଥିଲି । କଲେଜ ପିଲାଏ ସାଧାରଣତଃ ଏପ୍ରକାର କଥା ଶୁଣିବାର ସୁଯୋଗ ପାଆନ୍ତି ନାହିଁ । ତେଣୁ ସେମାନେ ବହୁ ଆଗ୍ରହର ସହିତ ମୋ କଥା ଶୁଣନ୍ତି । ରାତି ବାରଟା-ଗୋଟାଏ ଯାଏ ସେମାନଙ୍କ ହଷ୍ଟେଲରେ, କାହାରି ଫ୍ଲାଟ୍‌ରେ ଏପରି କଥା ଜମେ । ସେମାନେ ମଧ୍ୟ କିଛି ମଦ୍ୟପାନ ପରେ ବହୁତ ଖୋଲାଖୋଲି ଭାବରେ ସେମାନଙ୍କର ସାମାଜିକ ବିଭ୍ରାଟ ତଥା ସରକାରଙ୍କର ରାଜନୈତିକ ଅସହିଷ୍ଣୁତା ଓ ସଂକୀର୍ଣ୍ଣ ମନୋଭାବ, କଳା ଗୋରା ବୈଷମ୍ୟ, ପ୍ରାଚୁର୍ଯ୍ୟ ଭିତରେ ଦାରିଦ୍ର୍ୟର ବୀଭତ୍ସତା ପ୍ରଭୃତି

ବିଷୟରେ ଅନର୍ଗଳ କହିଯା'ନ୍ତି । ଆମମାନଙ୍କ ଭିତରେ ଗଭୀର ଆନ୍ତରିକତା ବଢ଼ିଉଠେ । ମୁଁ ପ୍ରତି ସଂଧ୍ୟାରେ କାହାରି ନା କାହାରି ଘରେ ରାତ୍ରି ଭୋଜନ କରେ । ଗୋଟିଏ କଲେଜରେ ମୁଁ ଏପରି ଜନପ୍ରିୟ ହୋଇଗଲି ଯେ ତାଙ୍କ କଲେଜ କାଗଜରେ ମୋର ଫଟୋ ଓ ମତାମତ ପ୍ରକାଶ ପାଇଲା । କଲେଜର ଶାସନ ମୁଖ୍ୟ 'ପ୍ରେସିଡେଣ୍ଟ' ଥରେ ମୋତେ ଥଟ୍ଟାରେ କହିଥିଲେ-'ଦେଖ, ତୁମେ ଏଠାରେ କଲେଜ ଛାତ୍ରଙ୍କର ସଭାପତି ନିର୍ବାଚିତ ହୋଇଯାଇପାର ।'

ଏ ସଂପର୍କରେ ଦୁଇଟି ଅଦ୍ଭୁତ ଘଟଣା ଘଟିଥିଲା । ଥରେ ବହୁଦିନ ଧରି ମୋ ସହିତ ବନ୍ଧୁତା କରିଥିବା ଜଣେ ଛାତ୍ର ମୋତେ ଦେଖା କଲେ ଏବଂ କହିଲେ ଯେ ସେ ଜାପାନରେ କିଛିଦିନ ଯୁଦ୍ଧ ସମୟରେ ସୈନ୍ୟବାହିନୀରେ ଥିଲେ । ତେଣୁ ବୁଦ୍ଧଙ୍କ ବିଷୟରେ ଶୁଣିବାକୁ ତାଙ୍କୁ ବହୁତ ଭଲ ଲାଗୁଥିଲା । ମୁଁ ଯେହେତୁ ବୁଦ୍ଧଙ୍କ ବିଷୟରେ କହୁଥିଲି, ମୋ ପ୍ରତି ତାଙ୍କର ଶ୍ରଦ୍ଧା ହେଲା । ତେଣୁ ସେ ଆସି ମୋତେ ସାବଧାନ କରିଦେଲେ ଯେ ମୋ ବିରୁଦ୍ଧରେ ତାଙ୍କର ରିପୋର୍ଟ କରିବା କଥା; କାରଣ ସେ ହେଉଛନ୍ତି ଛାତ୍ରମାନଙ୍କ ଭିତରୁ ଜଣେ ଗୁପ୍ତ ସମ୍ବାଦଦାତା । କିନ୍ତୁ ତାଙ୍କୁ ମୋ କଥା ଏତେ ଭଲ ଲାଗିଥିଲା ଯେ ସେ ମୋ ବିରୁଦ୍ଧରେ ରିପୋର୍ଟ ନ କରି ମୋତେ ସାବଧାନ କରାଇଦେଲେ । ମୁଁ ଏ ବିଷୟରେ ବେଶିଦିନ ଏପରି ଭାବରେ ବକ୍ତୃତା କରି ଚାଲିଲେ ମୋତେ ସେ ଦେଶରୁ ବହିଷ୍କାର କରି ଦିଆଯାଇପାରେ । ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ କହିଲି– ଏହି କଥା ଲାଗି ଯଦି ମୋତେ ତୁମ ଦେଶରୁ ବହିଷ୍କୃତ ହେବାକୁ ପଡ଼େ, ମୁଁ ସେଥିରେ ବହୁତ ଖୁସି ହେବି । ମୋ ବିଷୟରେ ତୁମେ ତୁମର କର୍ତ୍ତବ୍ୟ କର ।

ସେ କିନ୍ତୁ ନାହିଁ କଲେ ଏବଂ ସେ ସ୍ଥାନ ଛାଡ଼ିବା ପର୍ଯ୍ୟନ୍ତ ମୋ ସହିତ ଅତି ଘନିଷ୍ଠତା ରଖିଥିଲେ । ସାର୍ବଜନୀନ ମାନବୀୟ ଐକ୍ୟ ଓ ସୌହାର୍ଦ୍ଦ୍ୟର ଗଭୀର ଆକର୍ଷଣ ଯୋଗୁ ସେ ଭଦ୍ରଲୋକ ମୋ ପାଖରେ ଆସି ଏପରି ଖୋଲାଖୋଲି ଭାବରେ କଥା କହିପାରିଥିଲେ ।

ତା'ର କିଛିଦିନ ପରେ ଭାରତୀୟ ଦୂତାବାସରେ ଜଣେ ପୁରୁଖା ଶିକ୍ଷା ଅଫିସର ଶ୍ରୀଯୁକ୍ତ ସୁନ୍ଦରମଙ୍କ ସହିତ ଗୋଟିଏ ବିଶ୍ୱବିଦ୍ୟାଳୟରେ ମୋର ଦେଖା ହୋଇଥିଲା । ସେ ମୋ ନାଁ ଶୁଣି ସାଙ୍ଗେ ସାଙ୍ଗେ ପଚାରିଥିଲେ–

'ତୁମେ ସେହି ଡକ୍ଟର ରଥ ଯେ କି ସବୁ ବିଶ୍ୱବିଦ୍ୟାଳୟରେ ପିଲାଙ୍କ ସହିତ ବହୁତ ମିଶ ।'

ମୁଁ ପଚାରିଥିଲି-'ଆପଣଙ୍କୁ ମୋ ବିଷୟରେ ଏ ପ୍ରକାର ସାଧାରଣ ଖବର ଏତେ ବଡ଼ ଦେଶରେ କିପରି ମିଳିଲା ?'

ସେ ଅବଶ୍ୟ ମୋର ଏହି ପ୍ରଶ୍ନରେ ଅପ୍ରତିଭ ହୋଇଗଲେ । କହିଲେ- 'ନାହିଁ ମୁଁ ଏମିତି ପଚାରୁଥିଲି ।'

ତା'ପରେ ସେ ମୋ ପାଖରୁ ତରତର ହୋଇ ଚାଲିଯାଇଥିଲେ । ତା ଅର୍ଥ ଆମେରିକାର ଗୁପ୍ତ ବିଭାଗ ମୋ ବିଷୟରେ ଭାରତୀୟ ଦୂତାବାସକୁ ଖବର ଦେଉଥିଲା । ଅଥଚ ମୁଁ ରାଜନୀତି କଥା ଜାଣି ଜାଣି ଆଲୋଚନା କରୁନଥିଲି । ମାକ୍‌ଆର୍ଥିଙ୍କ ଅନ୍ତନିଷ୍ଠ ରାଜନୈତିକ ଆଭିମୁଖ୍ୟ ଯୋଗୁ ସେତେବେଳେ ଆମେରିକାରେ ବିଶେଷତଃ ବୁଦ୍ଧିଜୀବୀଙ୍କ

ମଧ୍ୟରେ ଗୋଟିଏ ପ୍ରକାର ଆତଙ୍କ ଖେଳିଯାଇଥିଲା । ବହୁ ଅଧ୍ୟାପକ ଭୀତତ୍ରସ୍ତ ଅବସ୍ଥାରେ ଥିଲେ ଏବଂ ଏ କଥା ସେମାନେ ଘରେ ଖାଇବାବେଳେ ଚୁପ୍ ଚୁପ୍ କରି କହନ୍ତି । ମୁଁ ନିଗ୍ରୋମାନଙ୍କ ବାସସ୍ଥାନ, ଚାକିରି ପ୍ରଭୃତି ବିଷୟରେ ପଚାରିଲେ ସେମାନେ ବିବ୍ରତ ହୋଇପଡ଼ନ୍ତି । ପରେ ନିକାଞ୍ଚନରେ ସେମାନଙ୍କ ପ୍ରତି ଘଟିଯାଉଥିବା ବହୁତ ଅତ୍ୟାଚାର କଥା କହନ୍ତି ।

୧୯୭୩ରେ ମୁଁ ଯେତେବେଳେ ପୁଣି ଥରେ ଆମେରିକା ଯାଇଥିଲି ସେତେବେଳକୁ ଏପରି ରାଜନୈତିକ ବାତାବରଣ ନଥିଲା । ବିଶ୍ୱବିଦ୍ୟାଳୟମାନଙ୍କରେ ବହୁତ ସ୍ୱାଧୀନତା ଦେଖାଦେଇଥିଲା । ଆମେରିକା ପରି ଗଣତାନ୍ତ୍ରିକ ସଂସ୍ଥାରେ ଯେଉଁଠି ମାନବିକ ଅଧିକାର, ସ୍ୱାଧୀନ ଚିନ୍ତା ପ୍ରଭୃତି ବିଷୟରେ ଏତେ ବେଶି ଗର୍ବ କରାଯାଉଛି ମାକ୍‌ଆର୍ଥି ସମୟରେ ଯେ ଏପରି ଆତଙ୍କଜନକ ପରିସ୍ଥିତି ସୃଷ୍ଟି ହୋଇପାରିଥିଲା, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଯାହାହେଉ ଆମେରିକାରେ ମୋର ଅଣଆମେରିକୀୟ ବ୍ୟବହାର ଠିକ୍‌ଠିକ୍ ଭାବରେ ଆମେରିକାରୁ ଦିଲ୍ଲୀ ଦୂତାବାସକୁ ଆସି ଯାଇଥିଲା । କାରଣ ତା'ପରେ ଦୂତାବାସରୁ ଆଗରୁ ମୋ ପାଖକୁ ଆସୁଥିବା ସମସ୍ତ ପ୍ରକାର କାଗଜପତ୍ର, ବହି, କ୍ୟାଲେଣ୍ଡର ଆଉ ଆସିଲା ନାହିଁ । ଆଜି ପର୍ଯ୍ୟନ୍ତ ବନ୍ଦ ଅଛି ।

ତାପରେ ଆଉ ଗୋଟିଏ କୌତୂହଳ ପ୍ରଦ ଘଟଣା ଘଟିଥିଲା । ମୁଁ ରେଭେନ୍ସା କଲେଜ ପ୍ରିନ୍‌ସପାଲ ଡକ୍ଟର ସଦାଶିବ ମିଶ୍ରଙ୍କ ଅଫିସରେ ବସିଥାଏ । ସେଠାରେ ଦେଖା ହେଲା ଆମେରିକା କଲିକତା ଦୂତାବାସ ଭାଇସ୍ କନସଲଙ୍କ ସାଙ୍ଗରେ । ଡକ୍ଟର ମିଶ୍ର ମୋତେ ଚିହ୍ନାଇ ଦେଲେ ଏବଂ କହିଲେ ଯେ ମୁଁ ଆମେରିକା ଯାଇଥିଲି ଅଳ୍ପଦିନ ତଳେ । ଭାଇସ୍ କନ୍‌ସଲ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ସେଦିନ ସନ୍ଧ୍ୟାରେ କଟକ ହୋଟେଲରେ ଯେତେଜଣ କଟକ, ଭୁବନେଶ୍ୱରରୁ ଆମେରିକା ଯାଇଥିଲେ ସେମାନଙ୍କ ପାଇଁ ଗୋଟିଏ ରାତ୍ରି ଭୋଜନର ବନ୍ଦୋବସ୍ତ ହୋଇଥାଏ । ସେଥିରେ ସେ ମୋ ନାମ ଦେଖି ନଥିଲେ । ତେଣୁ ଖାଲି ବାରମ୍ବାର ପଚାରୁଥାନ୍ତି, ମୁଁ କେବେ ଯାଇଥିଲି, କେବେ ଫେରିଲି । ମଝିରେ ମଝିରେ ମୋତେ ଖାଲି ଚାହୁଁଥାନ୍ତି । ମୁଁ ପ୍ରଥମେ କିଛି ବୁଝିପାରି ନଥିଲି । ପରେ ଶୁଣିଲି ଯେ ଏ ପ୍ରକାର ଭୋଜି ବର୍ଷରେ ଥରେ ଦୁଇଥର ଆମେରିକା ଫେରନ୍ତା ଲୋକଙ୍କ ପାଇଁ କଟକରେ ହୁଏ । କିନ୍ତୁ ମୁଁ ସେଥିରୁ ବାଦ୍ ପଡ଼ିଥିଲି । ଗଣତାନ୍ତ୍ରିକ ଯୁକ୍ତରାଷ୍ଟ୍ରରେ ଏ ପ୍ରକାର ଅସହିଷ୍ଣୁତା ଓ ସଂକୀର୍ଣ୍ଣ ମନୋଭାବ ରହିଛି ଭାବି ମୋତେ କେବଳ ମଜା ଲାଗିଥିଲା । ମୁଁ ସେ ଭୋଜିରେ ଯୋଗ ଦେବା ପାଇଁ ଉପଯୁକ୍ତ ଭକ୍ତ ହୋଇପାରିନଥିଲି ।

ବହୁ ସହର, ବହୁ ବିଶ୍ୱବିଦ୍ୟାଳୟରେ ଏକା ଏକା ବୁଲିବା ସମୟରେ ଅନେକ ପ୍ରକାରର ଅଦ୍ଭୁତ ଅଭିଜ୍ଞତା ଓ ମଧୁର ଅନୁଭୂତି ହୋଇଥିଲା । ସାନ୍‌ଫ୍ରାନ୍‌ସିସ୍କୋ ସହରରେ ଅନତି ଦୂରରେ ଗୋଟିଏ ଧନୀ ପରିବାରର ଅତି ସୁନ୍ଦର ଘରେ ମୋର ଅତିଥି ହେବାର ସୁଯୋଗ ମିଳିଥିଲା । ଘର ଚାରିଆଡ଼େ ବିରାଟ ବଗିଚା—ଫୁଲ ଫଳଭରା ଗଛ—ସନ୍ତରଣ ପୋଖରୀ, ଟେନିସ୍ ଓ ଅନ୍ୟାନ୍ୟ ଖେଳ ପାଇଁ ସୁବିଧା । ତାଙ୍କର ଦୁଇଟି ଛୋଟ ଛୋଟ ଝିଅ ମୋତେ ସବୁ ବୁଲାଇ ଦେଖାଉଥା'ନ୍ତି । ମୋତେ ଅଙ୍କଲ୍ ବୋଲି ଡାକୁଥିଲେ । ପରେ ସେମାନେ

ମୋ ଝିଅ ପାଖକୁ ବହୁଦିନ ଧରି ଚିଠି ଲେଖୁଥିଲେ । ଏହି ପରିବାରର ଲୋକେ ମୋତେ ସେଠାରେ ମାସେ ରହିବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ ମୋର କାର୍ଯ୍ୟ ନିର୍ଘଣ୍ଟ ଏପରି ଥିଲା ଯେ ତାଙ୍କ ଘରେ ଦିନେ ଦୁଇ ଦିନରୁ ବେଶି ରହିବା ସମ୍ଭବ ହୋଇନଥିଲା । କି ସୁନ୍ଦର ଭାବରେ ସେ ମୋତେ ନିଜର କରିପାରିଥିଲେ !

ୟୁଶୋମିଟ୍ ପାର୍କର ଘନ ପାଇନ୍ ଜଙ୍ଗଲରେ ମୁଁ ସପ୍ତାହର ଶେଷ ଶନି-ରବିବାର କଟାଇବା ପାଇଁ ଯାଇଥାଏ । ଜଙ୍ଗଲ ଭିତରେ ଝରଣା ପାଖରେ ଛୋଟ ଛୋଟ କୁଟୀର କାଠ ଗଣ୍ଡିରେ ତିଆରି । ସେଥିରୁ ଗୋଟିଏ କୁଟୀରରେ ମୁଁ ଥାଏ । ମୋ ଘରର ଗୋଟିଏ ପାର୍ଶ୍ୱରେ ଆକାଶଛୁଆଁ ତୀକ୍ଷ୍ଣ ପାହାଡ଼ । ଲହୁଣୀ ଗଦାକୁ ଛୁରୀରେ କାଟିଦେଲେ ଯେପରି ସିଧାସଳଖ କଟା ଅଂଶ ରହିବ ବରଫ ଯୁଗରେ ବରଫର ଓଜନିଆ ସ୍ରୋତ ଦୁଇକଡ଼ର ପାହାଡ଼କୁ ସେହିପରି ସିଧାସଳଖ ଭାବେ କାଟି ବୋହିଯାଇଥିବା ଯୋଗୁ ପାହାଡ଼ର ପାଦଦେଶରୁ ଶିଖର ପର୍ଯ୍ୟନ୍ତ ସିଧାସଳଖ କଟା ହୋଇଥିଲା ପରି ଦେଖାଯାଏ ।

ସନ୍ଧ୍ୟାରେ ପାହାଡ଼ର ଶିଖର ଦେଶରେ ରହୁଥିବା ବଣଭୋଜି ଯାତ୍ରୀଦଳ ଗୋଟିଏ ବିରାଟ ନିଆଁହୁଳା ପାହାଡ଼ର ଶିଖର ଦେଶରୁ ସେହି ସିଧାସଳଖ ପାହାଡ଼ ଧାରରେ ଆଣି ଛାଡ଼ନ୍ତି ଏବଂ ଏହି ନିଆଁ ହୁଳାଟି ଶୂନ୍ୟ ଶୂନ୍ୟରେ ପାହାଡ଼ କଡ଼ ଦେଇ ଉଲ୍କା ପରି ତଳକୁ ଖସେ । ପାହାଡ଼ ତଳେ କାଠ କୁଟୀରରେ ଥିବା ଲୋକେ ରାତ୍ରିଭୋଜନ ପରେ ଗୋଟିଏ ନିର୍ଦ୍ଦିଷ୍ଟ ସମୟରେ ଆସି ରୁଣ୍ଡ ହୁଅନ୍ତି ଏହି ନିଆଁହୁଳା ଦେଖିବା ପାଇଁ । ଏହା ଗୋଟିଏ ଅଭିନବ ଦୃଶ୍ୟ । ନିଆଁହୁଳା ଖସିଲା ପରେ ସମସ୍ତେ ତାଳି ମାରି ଗୀତ ଗାଇବାକୁ ଲାଗିଲେ । ତା'ପରେ ଜହ୍ନପକ୍ଷ ରାତିରେ ସମସ୍ତେ ଚାରିଆଡ଼େ ବିକ୍ଷିପ୍ତ ଭାବରେ ବୁଲି ବାହାରିଲେ । କିଛି ସମୟ ପରେ ମୁଁ ଗୋଟିଏ ବଡ଼ ପଥର ଉପରେ ବସି ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥାଏ । ନିଘଞ୍ଚ ପାଇନ୍ ଗଛର ଅରଣ୍ୟ ଜହ୍ନ ଆଲୁଅରେ ବଡ଼ ଅଦ୍ଭୁତ ଭାବରେ ରହସ୍ୟମୟ ଦେଖାଯାଉଥାଏ । କଳ୍ପନାର ପରୀରାଜ୍ୟ ପରି ଦେଖାଯାଉଥିବା ଏହିପରି ପରିବେଶ ଭିତରେ ହଠାତ୍ ଅନତିଦୂରରେ ଗୋଟିଏ ରମଣୀର ସଙ୍ଗୀତ ଲହରୀ ଭାସି ଆସିଲା । ମୁଁ ବସି ଶୁଣିଲି । ସଙ୍ଗୀତ ପରେ ସଙ୍ଗୀତ । ପ୍ରତ୍ୟେକ ଗୀତଟି ଅନ୍ୟଠାରୁ ଯେପରି ଆହୁରି ବେଶି ମଧୁର ଓ ବିଷାଦପୂର୍ଣ୍ଣ ଶୁଣାଯାଉଥାଏ । ସେ ମୋଠାରୁ ଅତି ଅଳ୍ପ ଦୂରରେ ବସିଥାଏ । କିନ୍ତୁ ଗଛଲତା ଯୋଗୁ ଆମେ ପରସ୍ପରକୁ ଦେଖିପାରୁନଥିଲୁ । ଚାରିଆଡ଼ ଜନହୀନ । କେବଳ ଗଛ, ଜହ୍ନ ଓ ତାର ପ୍ରାଣମୂର୍ଚ୍ଛା ସଙ୍ଗୀତର କରୁଣ ରାଗିଣୀ । ପ୍ରାୟ ଘଣ୍ଟାଏ ଯାଏ ସେ ଏପରି ଗାଇ ଚାଲିଥାଏ । ମୁଁ ନୀରବ, ନିଶ୍ଚଳ ଭାବରେ ଶୁଣୁଥାଏ । ଯେତେବେଳେ ତା'ର ସଙ୍ଗୀତ ଲହରୀ ବନ୍ଦ ହୋଇଗଲା, ମୁଁ ତା' ପାଖକୁ ଗଲି । ତା'ର ଗୀତକୁ ବହୁତ ତାରିଫ୍ କରି ପଚାରିଲି ଯେ ସେ ଏପରି ନିର୍ଜନ ସ୍ଥାନରେ ନିଃସଙ୍ଗ ଭାବରେ ବିଷାଦର ସଙ୍ଗୀତ କାହିଁକି ଗାଉଛି ! ସ୍ୱର୍ଗପରି ଏପରି ମନୋମୁଗ୍ଧକର ପାର୍କରେ ସେ ଏକୁଟିଆ କାହିଁକି ? ଆମେରିକା ପରି ଦେଶରେ ତ ଏପରି ନିଃସଙ୍ଗ ଜୀବନ ବଡ଼ ବିରଳ । ସେ ଥିଲା ଜଣେ ୨୫-୨୬ ବର୍ଷୀୟା ତରୁଣୀ । ମୋ କଥା ଶୁଣି ତାକୁ ହଠାତ୍ କାନ୍ଦ ଲାଗିଲା । ଆମେ ଦୁହେଁ ମୁହାଁମୁହିଁ ହୋଇ କିଛିସମୟ ଠିଆହେଲୁ । ତା'ପରେ ଜଙ୍ଗଲ ଭିତରେ କିଛିସମୟ ନୀରବରେ ଚାଲିଲୁ ।

ତା'ପରେ ସେ ମୋତେ ପଚାରିଲା-

'ଆପଣ କଣ ଭାରତରୁ ଆସିଛନ୍ତି ?'

ମୁଁ କହିଲି ହଁ ।

ସେ ପୁଣି କହିଲା-'ଭାରତୀୟମାନେ ବହୁତ ବିଜ୍ଞ ବୋଲି ଶୁଣିଛି । ଆପଣ ମୋତେ ଗୋଟିଏ ବିଷୟରେ ପରାମର୍ଶ ଦେଇପାରିବେ ?'

ତା'ପରେ ପୁଣି ସେ କହିଲା-

'ମୁଁ ଯାହାକୁ ଭଲପାଏ ସେ ମୋ'ଠାରୁ ଚାରିବର୍ଷ ସାନ ଓ ସେ ଟିକେ ମଦ୍ୟପ । ମୁଁ କିନ୍ତୁ ତାଙ୍କୁ ବହୁତ ଭଲପାଏ । ଆମ ଘରେ ତାଙ୍କ ସହିତ ମୋର ବିବାହ ଲାଗି କେହି ରାଜି ନୁହନ୍ତି । ମୁଁ ବାପା ମାଆଙ୍କୁ ଏତେ ଭଲପାଏ ଯେ ସେମାନଙ୍କ ମତ ବିରୁଦ୍ଧରେ ଯିବାକୁ ମୋର ଇଚ୍ଛା ନାହିଁ । ମୁଁ କିନ୍ତୁ ମୋ ପ୍ରେମିକଙ୍କୁ ଛାଡ଼ିପାରୁ ନାହିଁ କି ତାଙ୍କୁ ମଧ ମଦ୍ୟପାନରୁ ନିବୃତ୍ତ କରାଇପାରୁନାହିଁ । ଏହି ସଂଘର୍ଷମୟ ଜୀବନରୁ ମୁଁ ଏଠାକୁ ଚାଲି ଆସିଛି । ଏଠାକାର ରେଷ୍ଟୋରାଁରେ ସାମୟିକ କାମ କରି ନିଜର ଖର୍ଚ୍ଚ ଚଳାଉଛି । ଦୁଇମାସ ପରେ ଫେରି ଏ ବିଷୟରେ ସିଦ୍ଧାନ୍ତ ନେବି । ଆପଣଙ୍କର ପରାମର୍ଶ କ'ଣ ?''

ମୁଁ କିଛି ସମୟ ଭାବି କହିଥିଲି-'ତୁମେ ଗୋଟିଏ ବର୍ଷଯାଏ ଏହି ବିବାହ ସିଦ୍ଧାନ୍ତକୁ ଡେରି କରିଦିଅ, ତା'ପରେ ଦେଖିବ ଅନେକ କଥା ଠିକ୍ ହୋଇଯିବ । ଏତେ ବଡ଼ କଠିନ ସମସ୍ୟାର ସମାଧାନ ଏତେ ଶୀଘ୍ର କରିବା ହୁଏତ ଠିକ୍ ହେବନାହିଁ । ତୁମର ପ୍ରେମିକକୁ ସମୟ ଦେଇ ଦେଖ, କମ୍ ବୟସର ଯୁବକର ବର୍ଷକ ପରେ ସିଦ୍ଧାନ୍ତ କ'ଣ ହେଉଛି ।'

ତା'ପରେ ବୁଲି ବୁଲି ବହୁତ କଥା ହେଲା । ସାପ, ବାଘର ତ ଭୟ ନାହିଁ ତେଣୁ ଅମଡ଼ା ଜଙ୍ଗଲରେ ନିର୍ଭୟରେ ଏଣେ ତେଣେ ବୁଲିପାରିଲୁ । ତା'ପରେ ମଧ ସେ ଦୁଇ ତିନୋଟି ଗୀତ ଗାଇଲା । ଅସମ୍ଭବ ଧରଣର ମଧୁର ସ୍ୱର ତା'ର ଥିଲା । ସେହି ରହସ୍ୟମୟ ପରିବେଶକୁ ଏହି ରମଣୀର ସ୍ୱର ଆହୁରି ବେଶି ରମଣୀୟ ଓ ରହସ୍ୟମୟ କରିପକାଉଥିଲା ।

ତା' ଆରଦିନ ସକାଳ ଖାଇବାବେଳେ ଭୋଜନ ହଲର ଅନ୍ୟ ଦିଗରୁ ମୋତେ ଲକ୍ଷ୍ୟ କରି ସେହି ତରୁଣୀଟି ମୋ ଟେବୁଲ୍ ପାଖକୁ ଆସିଥିଲା ଏବଂ ମୋ ସାମନାରେ ପ୍ରଚୁର ବଛା ବଛା ଖାଦ୍ୟ ସାମଗ୍ରୀ ଆଣି ଥୋଇଥିଲା । ତା'ର ଏପରି ଅପ୍ରତ୍ୟାଶିତ ଅତିଥି ସତ୍କାରରେ ମୁଁ ଅପ୍ରତିଭ ହୋଇପଡ଼ିଥିଲି ।

ସେ କହିଲା– 'ଦୟା କରି ସବୁ ଖାଇ ଦିଅନ୍ତୁ, ରାସ୍ତାରେ ଭୋକ ହେବ ।' ମୋର ଠିକଣା ନେଲା । ମୁଁ ଖାଇବା ପରେ ସେହି ସ୍ଥାନ ଛାଡ଼ିଥିଲି । ପ୍ରାୟ ବର୍ଷକ ପରେ ତା'ଠାରୁ ଗୋଟିଏ ଛୋଟିଆ ଦୁଇଧାଡ଼ି ଚିଠି ପାଇଥିଲି–

'ମୋର ବିବାହ ହେଲା, କିନ୍ତୁ ଆଉ ଜଣକ ସାଙ୍ଗରେ । ଆପଣ ସତରେ ଜଣେ ବିଜ୍ଞ ବ୍ୟକ୍ତି ।'

ମାତ୍ର ଏତିକି । ତା'ପରେ ମନୁଷ୍ୟର ଜୀବନଯାତ୍ରାର ଦୀର୍ଘ ରାଜପଥର ବାଲୁକା ରାଶି ଭିତରେ ତା'ପରି ବହୁ ସାମୟିକ ଚିହ୍ନା ନରନାରୀଙ୍କର ପଦଚିହ୍ନ ସହିତ ତା' ସ୍ମୃତି ମଧ ବିଲୀନ ହୋଇଯାଇଥିଲା । ଯଦିଚ ସ୍ମୃତିର ମଧୁର ଆଭାସ ଜୀବନସାରା ମନ ଭିତରେ

ରହିଯାଇଛି-ମାନବୀୟ ଆଦିମ ଐକ୍ୟ ଓ ସହୃଦୟତାର ସାର୍ବଜନୀନ ଅଭୁଲା ଅନୁଭୂତି ଫୁଲର ସୁଗନ୍ଧି ପରି ମନ ଆକାଶରେ ସଞ୍ଚରି ଯାଉଛି ।

x x x x x x x x x

୧୯୭୩ ମସିହା ଜାନୁୟାରୀ ୨୩ ତାରିଖରେ ମୁଁ ହାୱାଇ ଦ୍ୱୀପପୁଞ୍ଜର ରାଜଧାନୀ ହନୋଲୁଲୁ ଯିବା ଉଦ୍ଦେଶ୍ୟରେ କଲିକତାରେ ଉଡ଼ାଜାହାଜ ଚଢ଼ିଲି । ହାୱାଇ ଦ୍ୱୀପପୁଞ୍ଜ ଆମେରିକାର ୫୦ଟି ଷ୍ଟେଟ ଭିତରୁ ଗୋଟିଏ ଷ୍ଟେଟ୍ । ପ୍ରଶାନ୍ତ ମହାସାଗର ବକ୍ଷରେ ଅବସ୍ଥିତ ରୋମାଞ୍ଚକର ହାୱାଇ ଦ୍ୱୀପପୁଞ୍ଜର ଖୁବ୍ ପ୍ରଶସ୍ତି ଆଗରୁ ଶୁଣିଛି । ବହୁତ ଉପନ୍ୟାସ ଓ ପର୍ଯ୍ୟଟକମାନଙ୍କର ଭ୍ରମଣ କାହାଣୀରେ ଏହାର ଚିତ୍ତାକର୍ଷକ ଦୃଶ୍ୟ, ଏଠାକାର ଆଦିମ ବାସିନ୍ଦାଙ୍କର ସରଳ ଓ ସରସ ଜୀବନ, ପ୍ରାଣଖୋଲା ହସ, ଖୁସି ଭାବ ବିଷୟରେ ବହୁତ ପଢ଼ିଛି । ତେଣୁ ହନୋଲୁଲୁ ଯିବା ପାଇଁ ମୋର ଅସୀମ ଆଗ୍ରହ ହେବା ସ୍ୱାଭାବିକ ।

ହନୋଲୁଲୁରେ ଥିବା ଇଷ୍ଟୱେଷ୍ଟ ସାଂସ୍କୃତିକ କେନ୍ଦ୍ରରେ ଗୋଟିଏ ଆନ୍ତର୍ଜାତିକ ଆଲୋଚନା ସଭାରେ ଯୋଗ ଦେବା ପାଇଁ ମୁଁ ନିମନ୍ତ୍ରଣ ପାଇଥାଏ । ଏହି ସଭାରେ ବିଭିନ୍ନ ସାଂସ୍କୃତିକ ପରିବେଶରୁ ଆସିଥିବା ଲୋକଙ୍କ ଭିତରେ କିପରି ଭାଷା ଓ ସଂସ୍କୃତିର ଆଦାନ ପ୍ରଦାନ କ୍ଷେତ୍ରରେ ଅସୁବିଧା ଉପୁଜେ, ସେ ବିଷୟରେ ଗବେଷଣା ପ୍ରସୂତ ପ୍ରବନ୍ଧମାନ ଆଲୋଚିତ ହେବା କଥା । ପୃଥିବୀର ବିଭିନ୍ନ ଦେଶରୁ ୨୨ଜଣ ଗବେଷକ ନିମନ୍ତ୍ରିତ ହୋଇଥିଲେ । ସେ ଭିତରୁ ମୁଁ ଜଣେ । ମୁଁ ମଧ ଗୋଟିଏ ପ୍ରବନ୍ଧ ପଠାଇଥିଲି । ଆମର ପ୍ରାଥମିକ ସ୍କୁଲ ଶିକ୍ଷଣରେ ଆଦିବାସୀ ଓ ହରିଜନ ପିଲାଙ୍କର ବୌଦ୍ଧିକ ବିକାଶ ସମସ୍ୟା ବିଷୟରେ ମୋର ଗବେଷଣାପ୍ରସୂତ ପ୍ରବନ୍ଧଟି ଏଥିପାଇଁ ପଠାଇଥିଲି ।

ହନୋଲୁଲୁରେ ମୋର ଦଶଦିନ ରହିବା କଥା । ପୃଥିବୀ ଗୋଲାର୍ଦ୍ଧର ଏକ ତୃତୀୟାଂଶରୁ କିଛି ଦୂରତ୍ୱ ଅତିକ୍ରମ କରି ହନୋଲୁଲୁ ଯିବା ସୁବିଧା ମିଳିଲା ପରେ ମୁଁ ଏହ ସୁଯୋଗରେ ପୂର୍ବଦିଗ ଦେଇ ଏହି ଗୋଲ୍ ପୃଥିବୀର ଚତୁଃପାର୍ଶ୍ୱରେ ଥରେ ସଂପୂର୍ଣ୍ଣରୂପେ ପରିକ୍ରମା କରି ପୁଣି ପଶ୍ଚିମ ଦିଗ ବାଟେ କଲିକତାରେ ପହଞ୍ଚିବା ପାଇଁ ଗୋଟିଏ ଉଡ଼ାଜାହାଜ ଟିକେଟ୍ କିଣିଥାଏ । ତା' ପୂର୍ବ ବର୍ଷ ହଂକଂରେ ଦଶଦିନ, ଟୋକିଓରେ ଏକ ସପ୍ତାହ ରହିଥିଲି, ତଥାପି ହଂକଂରୁ ଅତି ଶସ୍ତାରେ ମିଳୁଥିବା କିଛି ଜାମାପଟା କିଣି ଓ ବିଭବଶାଳୀ ଜାପାନର ସର୍ବଶ୍ରେଷ୍ଠ ସହର ଟୋକିଓରେ ପୁଣି ଥରେ ଦିନେ ଦୁଇଦିନ ରହି ହନୋଲୁଲୁ ଯିବା ପାଇଁ ଠିକ୍ କରିଥାଏ । ହନୋଲୁଲୁ ପରେ ଆମେରିକାର କାଲିଫର୍ଣ୍ଣିଆ ଷ୍ଟେଟରେ ଥିବା ପୃଥିବୀ ବିଖ୍ୟାତ ବାର୍କଲେ ବିଶ୍ୱବିଦ୍ୟାଳୟରେ ଏକମାସ କଟାଇବା ପାଇଁ ନିମନ୍ତ୍ରଣ ମଧ ପାଇଥାଏ । ସେଠାରୁ ସିକାଗୋ ବାଟଦେଇ ହାରଭାର୍ଡ଼ ବିଶ୍ୱବିଦ୍ୟାଳୟରେ କିଛିଦିନ କଟାଇ ନିଉୟର୍କରେ ଦୁଇ ସପ୍ତାହ ରହିବା ପାଇଁ ମଧ ନିମନ୍ତ୍ରଣ ମିଳିଥାଏ । ତା'ପରେ ଲଣ୍ଡନରେ ବ୍ରିଟିଶ୍ କାଉନସିଲ୍‌ର ଅତିଥି ହିସାବରେ ଦୁଇ ସପ୍ତାହ ରହିବା କଥା- ତା'ପରେ ମଧ୍ୟପ୍ରାଚ୍ୟର ବେରୁଟ୍, ବାଗଦାଦ୍ ଓ ବେବିଲୋନ୍ ପରିଦର୍ଶନ କରି ପଶ୍ଚିମ ଦିଗରୁ ପ୍ରାୟ ଅଢ଼େଇମାସ ପରେ କଲିକତାରେ ପହଞ୍ଚିବା ପାଇଁ ଗୋଟିଏ ବିଶ୍ୱ ପରିକ୍ରମା ପର୍ଯ୍ୟାୟଭୁକ୍ତ ଟିକେଟ୍ କିଣିଥିଲି ।

ବିଂଶ ଶତାବ୍ଦୀର ଅତି ଦ୍ରୁତଗାମୀ ଉଡ଼ାଜାହାଜ ଯୋଗୁ ଆମର ଏହି ବିରାଟ ପୃଥିବୀଟି ଯେପରି ଗୋଟିଏ କ୍ଷୁଦ୍ର ଗୋଲକରେ ପରିଣତ ହୋଇଛି । ପୃଥିବୀ ଗୋଲ୍ ବୋଲି

ଭୂଗୋଳରେ ପଢ଼ିଥିବା ଏହି ତଥ୍ୟଟିକୁ ବାସ୍ତବରେ ହୃଦୟଙ୍ଗମ କରିବା ପାଇଁ ଏବଂ ପୃଥିବୀକୁ ପ୍ରକୃତ ପରିକ୍ରମା କରିବାର ଆନନ୍ଦ ଅନୁଭବ କରିବା ପାଇଁ ଅତ୍ୟଧିକ ଆଗ୍ରହ ଦେଖା ଦେବା ସ୍ୱାଭାବିକ । ପୂର୍ବଦିଗକୁ ମୁହଁ କରି ଉଡ଼ି ଉଡ଼ି ଗଲେ ପୁଣି ଥରେ ଯେଉଁ ସ୍ଥାନରୁ ବାହାରିଥିବ, ଠିକ୍ ସେହି ସ୍ଥାନରେ ପହଞ୍ଚିବ- ଏକଥା ଅଙ୍ଗେ ନିଭାଇବା ପାଇଁ ବିନା ଖର୍ଚ୍ଚରେ ସୁବିଧା ପାଇବା ନିଶ୍ଚୟ ଗୋଟିଏ ରୋମାଞ୍ଚକର ଅନୁଭୂତି । ତା'ଛଡ଼ା ୧୯୫୭ରେ ଦେଖିଥିବା ଯୁକ୍ତରାଷ୍ଟ୍ର ଆମେରିକାକୁ ପୁଣି ଥରେ ଦେଖିବାକୁ ପ୍ରବଳ ଇଚ୍ଛା ଥାଏ । ବିଶେଷତଃ ଏହି ଦୀର୍ଘ ୧୬ବର୍ଷ ଭିତରେ ସୋଭିଏତ୍ ୟୁନିୟନ ଦୁଇଥର ବୁଲି ଆସିବା ପରେ ପୁଣି ଥରେ ଯୁକ୍ତରାଷ୍ଟ୍ର ଆମେରିକା ଦେଖିବାର ଅଭିଳାଷ ପୂର୍ଣ୍ଣ ହେବାର ସମ୍ଭାବନା ଯୋଗୁ ମନ ଆନନ୍ଦରେ ଉଲ୍ଲସିତ ହୋଇଉଠୁଥିଲା ।

ପୃଥିବୀ ପରିକ୍ରମାର ଏହି ବିରାଟ ରୋମାଞ୍ଚକର ପରିକଳ୍ପନାର ବୁଢ଼ିଆଣୀ ଜାଲ ମୋ ମନ ଭିତରେ ନାନା ଭାବରେ ପ୍ରସାରିତ ହୋଇ ଚାଲିଥାଏ । ମୁଁ ୧୯୭୩ ମସିହା ଜାନୁୟାରୀ ୨୩ ତାରିଖରେ କଲିକତାରେ ଉଡ଼ାଜାହାଜ ଚଢ଼ିଲି ହଂକଂ ଉଦ୍ଦେଶ୍ୟରେ । ବିରାଟ ବୋଇଙ୍ଗ୍ ଉଡ଼ାଜାହାଜ-ପ୍ରାୟ ୪୦୦ ଲୋକ ବସିପାରିବା ଭଳି ବିରାଟକାୟ ଆକାଶଯାନକୁ ଦେଖିଲା କ୍ଷଣି ହଠାତ୍ ମନରେ ଭୟ ହେଲା ଯେ ଏତେବଡ଼ ଜିନିଷଟି କିପରି ଘଣ୍ଟାରେ ୮୦୦ କିଲୋମିଟର ବେଗରେ ପ୍ରାୟ ୧୦ ହଜାର ମିଟର ଉଚ୍ଚରେ ଉଡ଼ିବ ? ଉଡ଼ାଜାହାଜଟିର ପ୍ରତ୍ୟେକ ଧାଡ଼ିରେ ୧୦ଟି ଲେଖାଏଁ ସ୍ଥାନ ଏହିପରି ୪୦-୫୦ ଧାଡ଼ି ଆଗରୁ ପଛଯାଏ ଲମ୍ବିଛି । ସେ ଭିତରେ ଖାଇବା, ପିଇବା, ସିନେମା ଦେଖିବା ପାଇଁ ସମସ୍ତ ପ୍ରକାର ଆୟୋଜନ କରାଯାଇଛି । ଅତି ଭଲ ଧରଣର ଖାଦ୍ୟପେୟ ଯୋଗାଇ ଦିଆଯାଏ । ସେ ଭିତରେ ବସି ଆକାଶରେ ଉଡ଼ିଲା ବେଳେ ଅଧିକାଂଶ ସମୟରେ ତୁମେ ଉଡୁଛ ବୋଲି ଜଣାଯାଏନାହିଁ । ଏହା ଏପରି ସ୍ଥିର ରହି ଉଡ଼େ ଯେ ଦେହ ହଲିବାର ସମ୍ଭାବନା ନାହିଁ ।

ତା' ଆରଦିନ ମୋ ପୂର୍ବ ପରିଚିତ ଦୋକାନକୁ ଯାଇ କିଛି ଜାମାପଟା କିଣିଲି । ଏଠାରେ ସବୁ ଜିନିଷ ଅତ୍ୟନ୍ତ ଶସ୍ତାରେ ମିଳେ । ଟ୍ୟାକ୍ସମୁକ୍ତ ଏହି ସହରଟି ପ୍ରାଚ୍ୟ ଅଞ୍ଚଳରେ ବାଣିଜ୍ୟ ପାଇଁ ପ୍ରସିଦ୍ଧ । ଆମେରିକା ଓ ଜାପାନରେ ତିଆରି ଜିନିଷ ଏଠାରେ ସେ ଦେଶ ଅପେକ୍ଷା ଶସ୍ତାରେ ମିଳେ- ତେଣୁ ଲୋକେ କେବଳ କିଣାବିକା କରିବାକୁ ହଂକଂ ଯାଆନ୍ତି । ଏଠାରେ ବହୁ ଭାରତୀୟ ବ୍ୟବସାୟୀ ଅଛନ୍ତି—ଏମାନଙ୍କର ବହୁ ଦୋକାନ ହଂକଂ ସହରରେ ଦେଖିବାକୁ ମିଳେ ।

ତା'ଆରଦିନ ଟୋକିଓ ଅଭିମୁଖେ ଯାତ୍ରା କଲି- ଗତଥର ଟୋକିଓରେ ତିନି ସପ୍ତାହ ଥିଲି- ତେଣୁ ଏଥର ମୋଟେ ଦୁଇଦିନ ରହିବା ପାଇଁ ସ୍ଥିର କରିଥିଲି । ଟୋକିଓ ପୃଥିବୀର ଯେ ସର୍ବବୃହତ ସହର ତାହା ନୁହେଁ, ଏହା ମଧ୍ୟ ଖୁବ୍ ସୁନ୍ଦର ସହର । ସହରର ଜାକଜମକ, ସାଜସଜ୍ଜା, ଦୋକାନ ବଜାରର ଆଲୋକସଜ୍ଜା ପୃଥିବୀର ଅନ୍ୟାନ୍ୟ ସହରଠାରୁ ମଧ୍ୟ ବଳି ପଡ଼ିବ । ଏଠାକାର ହୋଟେଲ, ସିନେମା ଓ ଅନ୍ୟାନ୍ୟ ସାଂସ୍କୃତିକ ଅନୁଷ୍ଠାନ ସବୁ ଦେଖିବାର କଥା । ଟୋକିଓ ସହରର ଜୀବନଯାପନ ବହୁତ ବ୍ୟୟବହୁଳ । ତା'ସାଙ୍ଗକୁ କଳକାରଖାନାରୁ ବାହାରୁଥିବା ଧୂଆଁ ଓ ଅସଂଖ୍ୟ ଗାଡ଼ିରୁ ଉଦ୍‌ଗାରିତ ବାଷ୍ପ ଯୋଗୁ ଏହି ସହରଟିର ବାୟୁମଣ୍ଡଳ

ଅତ୍ୟନ୍ତ ଦୂଷିତ । ଏହା ଏତେ ଦୂଷିତ ଯେ ବର୍ତ୍ତମାନ ଟୋକିଓରେ କେତେକ ସ୍ଥାନରେ ଶୁଦ୍ଧ ଅମ୍ଳଜାନ ବାୟୁ ମୁଣି ବିକ୍ରି ହେବା ପାଇଁ ଆୟୋଜନ ହେଲାଣି । ରାସ୍ତା ରକ୍ଷକ ପୋଲିସ୍‌ମାନେ ମଝିରେ ମଝିରେ କୁଆଡ଼େ ଏପରି ଶୁଦ୍ଧ ବାୟୁ ମୁଣିରୁ କିଛି କିଛି ବାୟୁ ସେବନ ନକଲେ ଖୁବ୍ ଶୀଘ୍ର କ୍ଳାନ୍ତ ହୋଇପଡ଼ନ୍ତି । ଏତେ ସୁନ୍ଦର ସହର ଭିତରେ ଅତ୍ୟଧିକ ଶିଳ୍ପ ପ୍ରସାର ଯୋଗୁ କିପରି ଅସ୍ୱାସ୍ଥ୍ୟକର ପରିସ୍ଥିତି ସୃଷ୍ଟି ହୋଇପାରେ– ତାହା ଟୋକିଓ, ଲସ୍‌ଆଞ୍ଜେଲସ୍, ନିଉୟର୍କ ପ୍ରଭୃତି ସହର ନ ଦେଖିଲେ କଳ୍ପନା କରିହେବନାହିଁ । ବର୍ତ୍ତମାନ ଦିଲ୍ଲୀ, କଲିକତା ସହରମାନ ଏହିପରି ଭାବରେ ପ୍ରଦୂଷିତ ।

ତଥାପି ପୃଥିବୀର ସର୍ବବୃହତ ଓ ମନୋରମ ସହରଟିରେ କିଛିଦିନ କଟାଇବାର ଲୋଭ ସମ୍ବରଣ କରିହେଲାନାହିଁ । ମୋର ପୂର୍ବପରିଚିତ ବନ୍ଧୁମାନଙ୍କ ସହ ଆଳାପ ଆଲୋଚନା ପରେ ଦୁଇଦିନ ମଧ୍ୟରେ ବାହାରିଲି ହାୱାଇ ଦ୍ୱୀପପୁଞ୍ଜର ରାଜଧାନୀ ହନୋଲୁଲୁ ଅଭିମୁଖେ । ଜାନୁଆରୀ ୨୭ ତାରିଖ ସନ୍ଧ୍ୟା ୮ଟାରେ ଟୋକିଓ ଛାଡ଼ିଲି ଏବଂ ସେହି ୨୭ ତାରିଖ ଦିନ ୧୦ଟାରେ ସେଠାରୁ ପ୍ରାୟ ୧୦ ହଜାର କିଲୋମିଟର ପୂର୍ବରେ ଥିବା ହନୋଲୁଲୁ ସହରରେ ପହଞ୍ଚିଲି । ତା'ଅର୍ଥ ପୂରା ଗୋଟିଏ ଦିନ ଆଗରୁ ଏତେ ବାଟ ଅତିକ୍ରମ କରି ହନୋଲୁଲୁରେ ଯାଇ ପହଞ୍ଚିଲି-ଏହା ସମ୍ଭବ ହେଲା ପୃଥିବୀର ପୂର୍ବପଶ୍ଚିମ ସୀମାରେଖା ଧାର୍ଯ୍ୟ କରୁଥିବା ଆନ୍ତର୍ଜାତିକ ଦିବସ (ତାରିଖ) ରେଖାପାର ହେବା ଯୋଗୁଁ ।

ହାୱାଇ ଦ୍ୱୀପପୁଞ୍ଜ ଯୁକ୍ତରାଷ୍ଟ୍ର ଆମେରିକାର ପଚାଶଟି ରାଷ୍ଟ୍ର ଭିତରୁ ଗୋଟିଏ । ପ୍ରଶାନ୍ତ ମହାସାଗରର ବକ୍ଷରେ ଏହି ଦ୍ୱୀପପୁଞ୍ଜ ଅତ୍ୟନ୍ତ ମନୋହର । ଜାନୁଆରୀ ମାସରେ ଆମ ପୁରୀର ଜଳବାୟୁଠାରୁ ସାମାନ୍ୟ ଥଣ୍ଡା, କିନ୍ତୁ ସମସ୍ତେ ଖରାଦିନର ପୋଷାକ ପିନ୍ଧନ୍ତି । ହନୋଲୁଲୁ ସହରଟି ସମୁଦ୍ରକୂଳରେ ଅବସ୍ଥିତ । ଚାରିଆଡ଼େ ଧାଡ଼ି ଧାଡ଼ି ନଡ଼ିଆ ଗଛ ସଜା ହୋଇ ଲଗାହୋଇଛି । ନଡ଼ିଆଗଛ ସାହାଯ୍ୟରେ ସହରଟିକୁ କିପରି ସୁନ୍ଦର କରି ସଜାଯାଇ ପାରେ, ତାହା ହନୋଲୁଲୁ ନ ଦେଖିଲେ ବିଶ୍ୱାସ କରି ହେବନାହିଁ । ଆମ ଦେଶର ସମୁଦ୍ର କୂଳେ ନଡ଼ିଆ ଗଛର ଦେଖା ନାହିଁ । ପୁରୀ ସମୁଦ୍ରକୂଳ ରାସ୍ତାରେ ନଡ଼ିଆ ଗଛକୁ କ'ଣ ଏପରି ଭାବରେ ଲଗାଯାଇପାରନ୍ତା ନାହିଁ ? ଆମମାନଙ୍କର ସୌନ୍ଦର୍ଯ୍ୟବୋଧ ଓ ସାଂସ୍କୃତିକ ମନୋଭାବ ଅଭାବରୁ ଏହା ସମ୍ଭବ ହୋଇପାରୁ ନାହିଁ । ଏମାନଙ୍କର ଗଛପତ୍ର ଲଗାଇବାରେ ଯେତେ ଆଗ୍ରହ ଆମ ଦେଶରେ ପ୍ରତିବର୍ଷ ବନ ମହୋତ୍ସବ ସତ୍ତ୍ୱେ ଏପ୍ରକାର ଆଗ୍ରହ ସୃଷ୍ଟି ହୋଇପାରିନାହିଁ, ଅଥଚ ପ୍ରାଚୀନ ଭାରତର ଗୋଟିଏ ପ୍ରଧାନ ଐତିହ୍ୟ ଥିଲା ରାସ୍ତା କଡ଼ରେ ବୃକ୍ଷ ରୋପଣ କରିବା । ଭାରତୀୟ ଐତିହ୍ୟ ବିଷୟରେ ଅନର୍ଗଳ ବକ୍ତୃତାକାରୀମାନେ ଏ ବିଷୟରେ ଆଗ୍ରହ ଦେଖାଇବାର ଦୃଷ୍ଟାନ୍ତ ଅତ୍ୟନ୍ତ ବିରଳ ।

ବିଭବଶାଳୀ ଆମେରିକାର ଏହା ଗୋଟିଏ ସହର ହୋଇଥିବାରୁ ଅନ୍ୟାନ୍ୟ ଆମେରିକାନ ସହର ପରି ଏଠାରେ ମଧ୍ୟ ନଭଶ୍ଚୁମ୍ବୀ ପ୍ରାସାଦମାନ ଦେଖିବାକୁ ମିଳେ । ବହୁତ ସୁନ୍ଦର ସୁନ୍ଦର ହୋଟେଲ ଏହାର ସମୁଦ୍ର କୂଳରେ ଅବସ୍ଥିତ । ହଜାର ହଜାର ଲୋକ ସାରାଦିନ ସମୁଦ୍ରରେ ଗାଧୋଉଥା'ନ୍ତି କିମ୍ବା ସମୁଦ୍ରକୂଳ ବାଲିରେ ଖରାରେ ପଡ଼ିଥା'ନ୍ତି । ପାଶ୍ଚାତ୍ୟ ଦେଶର ସାଧାରଣ ଲୋକେ ଜୀବନକୁ ଯେପରି ଭାବରେ ଉପଭୋଗ କରିପାରନ୍ତି, ତାହା ଆମ ଦେଶର ଧନୀ ଓ ଶିକ୍ଷିତ ଲୋକଙ୍କ ପକ୍ଷରେ ମଧ୍ୟ ସମ୍ଭବ ହୁଏନାହିଁ । ହନୋଲୁଲୁ

ସହର ଭିତରେ କେତୋଟି ସୁନ୍ଦର ଛୋଟ ଛୋଟ ପାହାଡ଼ । ସବୁଜ ଗାଢ଼ ବନାନୀରେ ପାହାଡ଼ଗୁଡ଼ିକ ପରିପୂର୍ଣ୍ଣ । ହନୋଲୁଲୁର ଚାରିଆଡ଼େ ଗଛ ଓ ପାହାଡ଼—ସେ ଭିତରେ ସୁନ୍ଦର ସୁନ୍ଦର ଘର– ସହରଟି ଏଭଳି ମନୋରମ ଯେ ପର୍ଯ୍ୟଟକମାନେ ବହୁ ସଂଖ୍ୟାରେ ବର୍ଷସାରା ଏଠାକୁ ଆସନ୍ତି ।

ହାୱାଇ ଦ୍ୱୀପପୁଞ୍ଜର ପୁରାତନ ଅଧିବାସୀଙ୍କୁ ପଲିନେସିଆନ ବୋଲି କୁହାଯାଏ । ସେମାନେ ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ, ଦକ୍ଷିଣ-ପୂର୍ବ ଏସିଆ ଏବଂ ଚୀନ୍‌ରୁ ଆସି ବହୁ ପୂର୍ବେ ଏହି ଦ୍ୱୀପପୁଞ୍ଜ ଅଧିକାର କରି ରହିଥିଲେ । ଏମାନଙ୍କର ସଭ୍ୟତା ବହୁତ ପୁରୁଣା । ଏମାନେ ଏବେ ସୁଦ୍ଧା ସେଠାକାର ସ୍ଥାୟୀ ବାସିନ୍ଦା । କିନ୍ତୁ ଆମେରିକାନ୍‌ମାନଙ୍କ ତୁଳନାରେ ଏମାନେ ଗରିବ । ସହରରେ ଏମାନଙ୍କ ସଂଖ୍ୟା ବହୁତ କମ୍—ମଫସଲ ଅଞ୍ଚଳରେ ଆଖୁ ଓ ସପୁରୀ ଚାଷ ଏମାନେ ବହୁତ କରନ୍ତି । ସେଠାରେ ମଧ ମାଲିକମାନେ ଆମେରିକାର ଧନିକଶ୍ରେଣୀର ଲୋକ । ଆମେରିକାନ୍ ଓ ପଲିନେସିଆନମାନଙ୍କ ମଧ୍ୟରେ ଅର୍ଥନୈତିକ ବୈଷମ୍ୟ ବର୍ତ୍ତମାନ ସୁଦ୍ଧା ବହୁ ପରିମାଣରେ ରହିଛି । ସେଥିପାଇଁ ମଝିରେ ମଝିରେ ସଂଘର୍ଷ ଓ ମନୋମାଳିନ୍ୟ ମଧ୍ୟ ଘଟିଥାଏ ।

ଏହି ପଲିନେସିଆନମାନେ ବର୍ତ୍ତମାନ ସୁଦ୍ଧା ବଡ଼ ସରଳ ଜୀବନଯାପନ କରନ୍ତି । ପ୍ରକୃତିକୁ ସେମାନେ ଖୁବ୍ ଭଲ ପାଆନ୍ତି । ଏମାନଙ୍କ ମୁହଁରେ ସବୁବେଳେ ହସ ଲାଗି ରହିଥାଏ । ସ୍ତ୍ରୀ ଓ ପୁରୁଷମାନେ ସବୁବେଳେ ଫୁଲ ବ୍ୟବହାର କରନ୍ତି । ପର୍ଯ୍ୟଟକମାନଙ୍କୁ ଡଙ୍ଗାରେ ବସାଇ ବୁଲାନ୍ତି । ନାନାପ୍ରକାର ଜିନିଷ ହାତରେ ତିଆରି କରି ବିକନ୍ତି । ଏମାନେ ଗୋଟିଏ ଉତ୍କୃଷ୍ଟ ଧରଣର ସାଂସ୍କୃତିକ କେନ୍ଦ୍ର ସ୍ଥାପନ କରିଛନ୍ତି । ଏହା ଗୋଟିଏ ବିସ୍ତୃତ ଅଞ୍ଚଳରେ ପ୍ରତିଷ୍ଠିତ । ଏମାନଙ୍କର ପୁରାତନ ଯୁଗର ସମସ୍ତ ପ୍ରକାର ଜୀବନଯାପନ ପ୍ରଣାଳୀ ଏଠାରେ ସ୍ଥାୟୀ ଭାବରେ ପ୍ରଦର୍ଶିତ ହୋଇଛି । ପୂର୍ବ କାଳରେ ସେମାନେ ଯେପରି ଘରେ ରହୁଥିଲେ, ଯେ ପ୍ରକାର ଲୁଗା ବୁଣୁଥିଲେ, ଯେ ପ୍ରକାରର ହାତ ତିଆରି ଜିନିଷ ତିଆରି କରୁଥିଲେ, ଯେ ପ୍ରକାର ଡଙ୍ଗାରେ ଚଢ଼ି ମାଛ ମାରୁଥିଲେ, ସେ ସମସ୍ତ ଠିକ୍ ସେହିପରି ପ୍ରାକୃତିକ ପରିବେଶ ଭିତରେ ରଖାଯାଇଛି । ସେ ଭିତରେ କେନାଲ୍ ତିଆରି ହୋଇଛି, ଡଙ୍ଗା ଚାଲୁଛି, ଠିକ୍ ସେହିପରି ଘରେ ଲୋକେ କାମ କରୁଛନ୍ତି, ସେହିପରି ନଡ଼ିଆଗଛ ଓ ଅନ୍ୟାନ୍ୟ ଗଛ ଲଗା ହୋଇଛି । ପର୍ଯ୍ୟଟକମାନେ ଏହା ଭିତରେ ଘଣ୍ଟା ଘଣ୍ଟା ଧରି ବୁଲନ୍ତି, ଫଟୋ ଉଠାନ୍ତି । ପଲିନେସିଆନ୍ ସ୍ୱେଚ୍ଛାସେବକ ସ୍ୱେଚ୍ଛାସେବିକାମାନେ ଏମାନଙ୍କୁ ହସ ହସ ମୁହଁରେ ସବୁ ବୁଲାଇ ଦେଖାନ୍ତି । ପୂରା ଗୋଟିଏ ଦିନ ଏହି କଲୋନୀ ଭିତରେ କଟାଇପାରିବା ଭଳି ଦର୍ଶନୀୟ ସ୍ଥାନମାନ ରହିଛି ।

ତା'ପରେ ସଂଧ୍ୟାରେ ପଲିନେସିଆନମାନଙ୍କର ଗୀତ ଓ ଗଣ ନୃତ୍ୟ ପ୍ରଦର୍ଶିତ ହୁଏ । ଏହା ଏତେ ବେଶି ମନୋମୁଗ୍ଧକର ଯେ ମୁକ୍ତାକାଶ ତଳେ ଗୋଟିଏ ବିରାଟ ଦର୍ଶକ ମଞ୍ଚ ସବୁବେଳେ ଦର୍ଶକରେ ଭରପୂର । ପ୍ରାୟ ୧୦ ହଜାର ଲୋକ ବସିପାରିବା ଭଳି ଦର୍ଶକମଞ୍ଚ ଲୋକରେ ଭର୍ତ୍ତି ହୋଇଯାଏ—ତା' ଆଗରେ ଗୋଟିଏ ବିରାଟ ମୁକ୍ତାକାଶ ରଙ୍ଗମଞ୍ଚ । ତା' ପଛରେ କୃତ୍ରିମ ଉପାୟରେ ଜଳ ପ୍ରପାତ ଅହରହ ବିରାଟ ଜଳଧାରା ସୃଷ୍ଟି କରି ଚାଲିଛି । ସାରା ରଙ୍ଗମଞ୍ଚଟିକୁ ଗୋଟିଏ ସୁନ୍ଦର କେନାଲ ପରିବେଷ୍ଟନ କରି ରହିଛି । ସେଥିରେ ଡଙ୍ଗାରେ

ଚଢ଼ି କଳାକାରମାନେ ରଙ୍ଗମଞ୍ଚକୁ ଆସନ୍ତି । ମୁକ୍ତାକାଶ ତଳ ରଙ୍ଗମଞ୍ଚରେ ଏମାନେ ବହୁ ସଂଖ୍ୟାରେ ଗଣନୃତ୍ୟ ପ୍ରଦର୍ଶନ କରନ୍ତି—ସେହି ଅତୀତ ଯୁଗର ରଙ୍ଗବେରଙ୍ଗ ପୋଷାକ ପିନ୍ଧି । ଭିନ୍ନ ଭିନ୍ନ ରଙ୍ଗିନ୍ ଆଲୋକରେ ପ୍ରତିଫଳିତ ଜଳପ୍ରପାତକୁ ପୃଷ୍ଠଭୂମିରେ ରଖି ଏମାନେ ଯେପରି ଭାବରେ ମନମତାଣିଆ ସଙ୍ଗୀତର ମୂର୍ଚ୍ଛନାରେ ନୃତ୍ୟବିଭୋର ହୋଇଯା'ନ୍ତି, ତାହା ଦେଖିଲେ ଦର୍ଶକ ଦେହରେ ଶିହରଣ ସୃଷ୍ଟି ହୁଏ—ଗୋଟିଏ ଅଦ୍ଭୁତ ଧରଣର କାଳ୍ପନିକ ରାଜ୍ୟ ଭିତରକୁ ଦର୍ଶକମଣ୍ଡଳୀ ଯେପରି ଭାସିଯାନ୍ତି । ଆଧୁନିକ ବୈଜ୍ଞାନିକ କଳାକୌଶଳ ସହିତ ସେମାନଙ୍କର ସାବଲୀଳ ନୃତ୍ୟକଳା ମିଶି ଏପରି ଗୋଟିଏ ଅଭୂତପୂର୍ବ ରୋମାଞ୍ଚକର ପରିବେଶ ସୃଷ୍ଟି କରେ ଯେ ଏତେ ବଡ଼ ଦର୍ଶକମଣ୍ଡଳୀ ବିସ୍ମୟ ବିସ୍ତାରିତ ଚକ୍ଷୁରେ ନୀରବନିଶ୍ଚଳ ଭାବରେ ବସିରହି ଏହି ନୈସର୍ଗିକ ଦୃଶ୍ୟ ଉପଭୋଗ କରୁଥାନ୍ତି । ଆମର ପୁରାଣ ବର୍ଣ୍ଣିତ ସ୍ୱର୍ଗରାଜ୍ୟର ଅପ୍‌ସରାମାନଙ୍କ ନୃତ୍ୟ ନିଶ୍ଚୟ ଏପରି କଳ୍ପନା ଚକ୍ଷୁରେ ସୃଷ୍ଟି ହୋଇଥିବ । ମୋର ମନେହେଲା, କେବଳ ଏହି ଗୋଟିକ ଅନୁଭୂତି ଯୋଗୁ ଯେପରି ମୋର ହାୱାଇ ଯାତ୍ରା ସମ୍ପୂର୍ଣ୍ଣ ରୂପେ ସଫଳ ହୋଇଗଲା । ସୁବିଧା ପାଇଥିଲେ ମୁଁ ବୋଧହୁଏ ବହୁଥର ଏହି ମନୋରମ ଦୃଶ୍ୟ ଦେଖିବାକୁ ଯାଇଥାନ୍ତି ।

ଜୀବନର ଫେନାୟିତ ଅଗ୍ରଗାମୀ ସମୟର ସ୍ରୋତ ଭିତରେ କାଳହୀନ ଓ ଛନ୍ଦମୟ ଆଦି ଜୀବନର ମଦିରାରେ ଆତ୍ମବିଭୋର ପଲିନେସିୟାନ୍ ଯୁବକ-ଯୁବତୀଙ୍କର ସଙ୍ଗୀତମୂର୍ଚ୍ଛନା ଓ ସେମାନଙ୍କର ଗଣନର୍ତ୍ତନର ଚଳଚଞ୍ଚଳ ପଦଧ୍ୱନି କ୍ରମେ ଲିଭି ଆସିଲା । ମୁଁ ଏହି ମନୋରମ ଦ୍ୱୀପ ଛାଡ଼ି ଯୁକ୍ତରାଷ୍ଟ୍ର ଆମେରିକାର କାଲିଫର୍ଣ୍ଣିଆ ଷ୍ଟେଟର ରାଜଧାନୀ ସାନ୍‌ଫ୍ରାନ୍ସିସ୍କୋ ସହର ଅଭିମୁଖେ ଯାତ୍ରା ଆରମ୍ଭ କଲି । ପ୍ରଶାନ୍ତ ମହାସାଗର ଉପରେ ପ୍ରାୟ ୬ ହଜାର କିଲୋମିଟର ଆକାଶପଥ ଅତିକ୍ରମ କଲେ ସାନ୍‌ଫ୍ରାନ୍‌ସିସ୍କୋରେ ଯାଇ ପହଞ୍ଚିବାକୁ ହେବ ।

ପ୍ରଶାନ୍ତ ମହାସାଗରର ନିଃଶବ୍ଦ, ନିଃସଙ୍ଗ, ତରଙ୍ଗାୟିତ ମେଘମାଳା ଭିତରେ ବିରାଟ ବୋଇଂ ଉଡ଼ାଜାହାଜରେ ପାଞ୍ଚ ଘଣ୍ଟା ବସି କେବଳ ଆକାଶକୁ ଚାହିଁ ଚାହିଁ ମୁଁ ଅତି ଦ୍ରୁତ ଗତିରେ ଉଡ଼ି ଚାଲିଥାଏ । ଏହି ବିଭୋରତା ଭିତରେ ହଠାତ୍ ମଣିଷ ସ୍ୱର ଶୁଣାଗଲା- 'ଚୌକି ବେଲ୍‌ଟ ବାନ୍ଧ । ଆମ ବିମାନଟି ସାନ୍‌ଫ୍ରାନ୍‌ସିସ୍କୋ ବିମାନ ବନ୍ଦରରେ ଅଳ୍ପ ସମୟ ଭିତରେ ଓହ୍ଲାଇବ ।' ୧୦ ମିନିଟ୍ ପରେ ଆମେ ଉଡ଼ାଜାହାଜରୁ ଓହ୍ଲାଇଲୁ । ମୁଁ ବିଶ୍ରାମ କକ୍ଷକୁ ଯାଉ ଯାଉ ଦେଖିଲି ମୋର ବଡ଼ପୁଅ ଅମିତାଭ୍ ଯେ କି ବାର୍କଲେ ବିଶ୍ୱବିଦ୍ୟାଳୟର ଇଞ୍ଜିନିୟରିଂ ବିଭାଗରେ ଅପରେସନ୍ ରିସର୍ଚ୍ଚରେ ଡକ୍ଟରେଟ୍ କରୁଛି—ମୋ ପାଇଁ ଅପେକ୍ଷା କରିଛି । ଆମେ ଦୁହେଁ ତା' ଗାଡ଼ିରେ ସାନ୍‌ଫ୍ରାନ୍ସିସ୍କୋ ସହର ପାରହୋଇ ବାର୍କ୍‌ଲେ ଗଲୁ । ତା' ପାଖରେ ମୋର ମାସେ ରହିବା କଥା । ବାର୍କ୍‌ଲେ ବିଶ୍ୱବିଦ୍ୟାଳୟରେ ମୁଁ ଅତିଥି ଅଧ୍ୟାପକ ଭାବରେ ବକ୍ତୃତା ଦେବା ପାଇଁ ନିମନ୍ତ୍ରଣ ପାଇଥାଏ ।

ବାର୍କ୍‌ଲେ ସହରଟି ଅତ୍ୟନ୍ତ ସୁନ୍ଦର । ସମୁଦ୍ରକୂଳଠାରୁ ଆରମ୍ଭ କରି ଗୋଟିଏ ପାହାଡ଼ର ଶିଖର ପର୍ଯ୍ୟନ୍ତ ସହରଟି ବ୍ୟାପି ରହିଛି । ପ୍ରାୟ ୨୦୦୦ ଫୁଟ ଉଚ୍ଚ ପାହାଡ଼ର ଶୀର୍ଷ ଦେଶରେ ଥିବା ଗୋଟିଏ ଅତି ରମଣୀୟ ଅଞ୍ଚଳରେ ମୋ ପୁଅର ବସାଘର । ସେ ଘର ଆଗରେ ଥିବା ନିଘଞ୍ଚ ବୃକ୍ଷରାଜି ଭିତରେ ମେଘସବୁ ଭାସୁଥାଏ । ଘର ଛାତରେ ନରମ ସୂର୍ଯ୍ୟକିରଣ ଝଲମଲ୍ କରୁଥାଏ । ଚାରିଆଡ଼େ ଛୋଟିଆ ଛୋଟିଆ ବଗିଚାଘେରା ଘରଟିମାନ

ଅତି ଲୋଭନୀୟ ଦେଖାଯାଉଥାଏ । ଏପରି ଏକ ମନୋରମ ପରିବେଶ ଭିତରେ ମୋ ପୁଅ ସହିତ ଗୋଟିଏ ମାସ କଟାଇବା କଥା ଭାବି ମନ ଉତ୍‌ଫୁଲ୍ଲିତ ହୋଇଉଠିଲା । ମୋ ପୁଅ ଏପରି ଏକ ଚିତ୍ତାକର୍ଷକ ସ୍ଥାନରେ ଘରଟିଏ ନେଇଥିବା ଯୋଗୁ ମୁଁ ମୋର ନିଜର ଏପରି ସ୍ୱପ୍ନକୁ ସାକାର କରୁଥିବାର ଉପଲବ୍ଧି ମୋତେ ବହୁତ ଆନନ୍ଦ ଦେଇଥିଲା । ତା ମାଧ୍ୟମରେ ମୁଁ ନିଜକୁ ଯେପରି ପରିପ୍ରକାଶ କରୁଥିଲି ।

ସାନ୍‌ଫ୍ରାନ୍‌ସିସ୍କୋରୁ ସିକାଗୋ ଗଲି । ତା'ପରେ ନିଉୟର୍କ ବିଶ୍ୱବିଦ୍ୟାଳୟରେ କିଛିଦିନ ରହି ଗୋଟିଏ ସେମିନାର ନେଲି । ଆଉ କେତୋଟି ଯାଗା ମଧ୍ୟ ବୁଲିଲି । କିନ୍ତୁ ୧୯୫୭ ମସିହାରେ ଆମେରିକାରେ ମୁଁ ପାଞ୍ଚ ଛଅମାସ ଧରି ଯେପରି ବୁଲିଥିଲି ଏଥର ଆଉ ସେପରି ବୁଲିବାରେ ମୋର ଆଗ୍ରହ ନଥିଲା । ତା'ପରେ ଲଣ୍ଡନ, ତେହେରାନ୍‌, ବାଗଦାଦ୍‌ ଓ ବେରୁଟ୍‌ରେ କିଛିଦିନ କଟାଇ ଭାରତ ଫେରିଲି ।

ଯୁକ୍ତରାଷ୍ଟ୍ର ଆମେରିକାରେ ଅଳ୍ପ ସମୟ ରହିଲା ପରେ ଏହି ଯେଉଁ ସ୍ଥୂଳ ଚିତ୍ରଟି ଲେଖକର ମନକୁ ଆସିଥିଲା, ସେ ବିଷୟରେ ଗୋଟିଏ ମୋଟାମୋଟି ଧାରଣା ଦେବା ଉଦ୍ଦେଶ୍ୟରେ 'ଆମେରିକା ଡାଏରୀ' ନାମରେ ମୁଁ ଗୋଟିଏ ବହି ଲେଖିଛି, ଏ ସଂପର୍କରେ ମୋର କିଛି ମତାମତ ନିମ୍ନରେ ଦେଲି ।

ପୁଞ୍ଜିପତି ଆମେରିକାର ଅତି ଶକ୍ତିଶାଳୀ ସାମରିକ ବିଭାଗ ଓ ଶାସନ ବିଭାଗ କିପରି ଜନସାଧାରଣଙ୍କର ମତାମତ ବିରୁଦ୍ଧରେ କାମ କରୁଛି, ଏହା ଆମେରିକାରେ ଅଳ୍ପଦିନ ବୁଲିଲେ, ବୁଦ୍ଧିଜୀବୀଙ୍କ ସହିତ ଆଲୋଚନା କଲେ ଏବଂ ଯତ୍ନସହକାରେ କେତେକ ବିଶିଷ୍ଟ ସାମ୍ବାଦିକଙ୍କ ଲେଖାକୁ ଅନୁଧ୍ୟାନ କଲେ ତାହା ସହଜରେ ଉପଲବ୍ଧି କରିହୁଏ । ଯେକୌଣସି ଗଣତାନ୍ତ୍ରିକ ଦେଶରେ ଯେ ଏହା ଗୋଟିଏ ବିପଦ୍‌ଜନକ ପରିସ୍ଥିତି ସୃଷ୍ଟି କରୁଛି, ତାହା ଏମାନଙ୍କଠାରୁ ଅତି ସ୍ପଷ୍ଟ ଭାବରେ ଜଣାଯାଏ । ଆମେରିକା ପ୍ରେସିଡେଣ୍ଟଙ୍କ ବେପରୁଆଭାବ ଓ ମୁଷ୍ଟିମେୟ ପୁଞ୍ଜିପତିଙ୍କର ସ୍ୱାର୍ଥସାଧନ ପାଇଁ ତାଙ୍କର ବହୁ ଅଗଣତାନ୍ତ୍ରିକ ମନୋଭାବ ବିଷୟରେ ଅତି ସ୍ପଷ୍ଟ ଚିତ୍ର ପ୍ରେସିଡେଣ୍ଟ ନିକ୍‌ସନଙ୍କର ପଦତ୍ୟାଗ ପୂର୍ବରୁ ଏବଂ ପରେ ଏଠାକାର ପତ୍ରପତ୍ରିକାରେ ମିଳୁଥିଲା । ଏ ବିଷୟରେ ବହୁ ଚିନ୍ତାଶୀଳ ବ୍ୟକ୍ତି ଗଭୀର ଉଦ୍‌ବିଗ୍ନ ବୋଲି ମଧ୍ୟ ଜଣାଯାଏ ।

ଅବ୍ୟାହତ ଗତିରେ ଯୁକ୍ତରାଷ୍ଟ୍ର ଆମେରିକାରେ ଅସାମାଜିକ କାର୍ଯ୍ୟାବଳୀର ପରିମାଣ ଯେ କ୍ରମେ କ୍ରମେ ବଢ଼ି ଚାଲିଛି, ତାହାର ସ୍ପଷ୍ଟ ଆଭାସ ଲେଖକକୁ ମିଳିଥିଲା । ଲେଖକ ୧୯୫୭ରେ ଥରେ ଯୁକ୍ତରାଷ୍ଟ୍ର ଆମେରିକା ଯାଇଥିଲା । ତା'ପରେ ୧୯୭୩ରେ ଦ୍ୱିତୀୟ ଥର ପାଇଁ ଯିବାର ସୁଯୋଗ ମିଳିଲା । ଏହି କେତେବର୍ଷ ଭିତରେ ଏ କ୍ଷେତ୍ରରେ ବହୁ ପରିମାଣରେ ଯେ ଦୁରବସ୍ଥା ଦେଖାଯାଇଛି, ଏଥିରେ ସନ୍ଦେହ ନାହିଁ । ନିଉୟର୍କ, ସିକାଗୋ ପରି ସହରରେ ରାତିରେ ଯିବା ପାଇଁ ବିପଦ ବଢ଼ି ଚାଲିଛି । ଯୌନ ଅପରାଧର ମାତ୍ରା ବଢ଼ିଛି- ଯୌନ ସିନେମା ଚିତ୍ରାବଳୀର ନଗ୍ନତା ବଢ଼ିଛି । ପାରିବାରିକ ଦୁଶ୍ଚିନ୍ତା ଏବଂ ଅଶାନ୍ତି ବହୁ ପରିମାଣରେ ବୃଦ୍ଧି ପାଇଛି । ଅଳ୍ପ ବୟସ୍କ ପିଲାଙ୍କର ମାନସିକ ଅସ୍ଥିରତା ତଥା ଅଗ୍ରଧର୍ଷିତା, ଅସାମାଜିକ ବ୍ୟବହାରର ମାତ୍ରା ମଧ୍ୟ ବଢୁଛି । ମୋଟାମୋଟି ଭାବରେ ସାମାଜିକ ଅସ୍ଥିରତା ତଥା ଅସ୍ୱାଭାବିକ ପରିସ୍ଥିତିର ସୁଦୂରପ୍ରସାରୀ ପ୍ରଭାବ ସମସ୍ତଙ୍କୁ ବିବ୍ରତ କରୁଥିବାର ପ୍ରମାଣ ମଧ୍ୟ ଅତି ସ୍ପଷ୍ଟ ।

ବିଭିନ୍ନ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କ ଭିତରେ ଗତ କେତେକ ବର୍ଷ ତଳର ବିରାଟ ବିକ୍ଷୋଭ ପରେ ଯେ ଗୋଟିଏ ପ୍ରକାର ଗଭୀର ବ୍ୟର୍ଥତା ଦେଖାଦେଇଛି, ତାହା ସେମାନଙ୍କ ଆଲୋଚନାରୁ ଜଣାଯାଏ । ଗତ କେତେବର୍ଷ ଭିତରେ ଯୁକ୍ତରାଷ୍ଟ୍ର ଆମେରିକାରେ ହିପ୍‌ପୀଗୋଷ୍ଠୀ, ହରେକୃଷ୍ଣ ସମ୍ପ୍ରଦାୟ ଓ ନାନାପ୍ରକାର ରହସ୍ୟାବୃତ ଦାର୍ଶନିକ ଚିନ୍ତାଧାରାର ଅଭ୍ୟୁଦୟ ଏବଂ ନାନାପ୍ରକାର ମାଦକଦ୍ରବ୍ୟ ସେବନ ବହୁ ପରିମାଣରେ ବଢ଼ିଯାଇଛି । ଏହି ଗୋଷ୍ଠୀର ଯୁବକ ଯୁବତୀମାନଙ୍କ ସହିତ ଆଲୋଚନାରୁ ଏହା ଜଣାଗଲା ଯେ ଏହିସବୁ ଗୋଷ୍ଠୀ ବିରାଟ ସାମାଜିକ ଓ ରାଜନୈତିକ ବ୍ୟର୍ଥତା ଯୋଗୁ ଉଦ୍‌ଭବ ହେଉଛି । ଏ ପ୍ରକାର ଅଣସାମାଜିକ ବ୍ୟାପାର ସମୂହ ଯୁକ୍ତରାଷ୍ଟ୍ର ଆମେରିକାରେ ବହୁ ପ୍ରକାର ସାମାଜିକ ବିଭ୍ରାଟ ସୃଷ୍ଟି କରୁଛି । ଏହା ମଧ୍ୟ ଯେକୌଣସି ଆଗନ୍ତୁକ ଲକ୍ଷ୍ୟ କଲେ ଜାଣିପାରିବ ।

ଏସବୁ ସାମାଜିକ ବିଭ୍ରାଟ ସତ୍ତ୍ୱେ ଏ ଦେଶର ଜନସାଧାରଣଙ୍କଠାରେ ଗୋଟିଏ ବିରାଟ ଜୀବନୀଶକ୍ତି ରହିଛି । ଏମାନେ ଯେ କୌଣସି ବିପଦର ସମ୍ମୁଖୀନ ହେବାରେ ପଛାଇବେ ନାହିଁ, ଯେ କୌଣସି ଅଭାବ ଅସୁବିଧା ଏମାନଙ୍କୁ ଦବାଇ ପାରିବ ନାହିଁ । ଏମାନଙ୍କର ବ୍ୟକ୍ତିଗତ ତଥା ଜାତୀୟ ଧୈର୍ଯ୍ୟ ଓ ସାହସ ଏତେ ବେଶି ଯେ, ଯେକୌଣସି ବାଧା ବିଘ୍ନର ସମ୍ମୁଖୀନ ହେବା ପାଇଁ ଏମାନଙ୍କର ଅପରିମେୟ ନୈତିକ ତଥା ମାନସିକ ବଳ ରହିଛି । ଉଦାହରଣ ସ୍ୱରୂପ ୧୯୫୭ରେ ସୋଭିଏତ୍ ରୁଷ୍ ଯେତେବେଳେ ପ୍ରଥମେ ସ୍ପୁଟ୍‌ନିକ୍ ଛାଡ଼ିଲା, ଏମାନେ ହଠାତ୍ ଦବିଗଲେ—ରୁଷ୍‌ର ଅଭୂତପୂର୍ବ ସାଫଲ୍ୟରେ ଏମାନେ ନିଜର ବୈଜ୍ଞାନିକ କୃତିତ୍ୱକୁ ହେୟ ମନେକଲେ; କିନ୍ତୁ ଏମାନଙ୍କ ଅଫୁରନ୍ତ ଜୀବନୀଶକ୍ତି ଏହି ପରିସ୍ଥିତିର ମୁକାବିଲା କଲା । କିଛି ବର୍ଷ ପରେ ଏମାନେ ମଣିଷକୁ ଚନ୍ଦ୍ରପୃଷ୍ଠରେ ଓହ୍ଲାଇ ଦେଇ—ଚରମ ସାଫଲ୍ୟ ଅର୍ଜନ କରିପାରିଲେ, ଅର୍ଥାତ୍ ଏ ଦେଶ ଲୋକଙ୍କଠାରେ ବିରାଟ ଆତ୍ମପ୍ରତ୍ୟୟ ରହିଛି—ଜନସାଧାରଣଙ୍କଠାରେ ଗଭୀର ମାନବିକତାବୋଧ ରହିଛି; କିନ୍ତୁ ପୁଞ୍ଜିପତିଙ୍କର ଅପରିମିତ ଶକ୍ତି ଓ ଅର୍ଥବଳ ଯୋଗୁ ଏବଂ ପରମ ଶକ୍ତିଶାଳୀ ପେଣ୍ଟାଗନର କୁପ୍ରଭାବ ଯୋଗୁ ଜନସାଧାରଣଙ୍କର ଏହି ବିରାଟ ମାନବିକ ଶକ୍ତି ଉପଯୁକ୍ତ ମାର୍ଗରେ ପରିସ୍ଫୁଟିତ ହୋଇପାରୁନାହିଁ । ଫଳରେ ଏହି ଦୁଇଟି ବିରାଟ ଶକ୍ତିର ସଂଘର୍ଷ ଯୋଗୁ ନାନାପ୍ରକାର ଅସାମାଜିକ ଘଟଣା ଓ ବ୍ୟର୍ଥତା ଏତେ ପରିମାଣରେ ଦେଖାଯାଉଛି । ଏହି ଦୁଇଟି ପରସ୍ପର ବିରୋଧୀ ଶକ୍ତିର ଜୀବନୀଶକ୍ତି ଅତ୍ୟନ୍ତ ବଳିଷ୍ଠ ହୋଇଥିବାରୁ ସାମାଜିକ ଅବକ୍ଷୟର ମାତ୍ରା ମଧ୍ୟ ଏତେ ବେଶି ପରିମାଣରେ ଦେଖାଦେଉଛି । ଦୁଇଟି କ୍ଷୀଣସ୍ରୋତା ଦୁର୍ବଳ ଝରଣାର ମୁହାଁମୁହିଁ ସଂଘର୍ଷ ଅପେକ୍ଷା ଦୁଇଟି ବିରାଟ ପ୍ରଖର ସ୍ରୋତା ସ୍ରୋତସ୍ୱତୀର ଏ ପ୍ରକାର ସଂଘର୍ଷ ନିଶ୍ଚୟ ଅତି ଭୟାବହ ହେବ । ଯୁକ୍ତରାଷ୍ଟ୍ର ଆମେରିକାରେ ବର୍ତ୍ତମାନ ଏହି ଦୁଇଟି ଶକ୍ତିର ପରୀକ୍ଷା ନାନା କ୍ଷେତ୍ରରେ ଅତି ଭୟଙ୍କର ଭାବରେ ଦେଖାଦେଇଛି । ଏହି ସଂଘର୍ଷରୁ ଅନ୍ୟାନ୍ୟ ଗଣତାନ୍ତ୍ରିକ ଦେଶର ନାଗରିକମାନଙ୍କର ବହୁତ ଶିଖିବାର ଅଛି । ଦିନେ ନା ଦିନେ ଯେ ଏହାର ସମାଧାନ ହେବ— ଏଥିରେ ସନ୍ଦେହ ନାହିଁ, କାରଣ କୌଣସି ଗୋଟିଏ ବିରାଟ ଶକ୍ତି ସଂଘର୍ଷମୟ ପରିସ୍ଥିତି ଭିତର ଦେଇ ବେଶି ସମୟ ଚାଲିପାରିବ ନାହିଁ । ସମାଧାନ ଉପରେ ହିଁ ଏହାର ଭବିଷ୍ୟତ ନିର୍ଭର କରେ ।

## (ଖ) ସୋଭିଏତ୍ ରୁଷ୍

କୌଣସି ଦେଶ ବିଷୟରେ ଲେଖିବା ଅତ୍ୟନ୍ତ କଷ୍ଟକର ବ୍ୟାପାର । ବହୁତ ବର୍ଷ ଧରି ଗୋଟିଏ ଦେଶରେ ରହିଲେ ମଧ୍ୟ ଏହା ସମ୍ଭବ ହୁଏନାହିଁ । ତେଣୁ ସୋଭିଏତ୍ ରୁଷ୍ ଦେଶ ବିଷୟରେ ମୋର ଯେଉଁ ସ୍ୱଳ୍ପ ଅନୁଭୂତି– ସେଥିରୁ ଏହି ବିରାଟ ଦେଶ ବିଷୟରେ ଲେଖିବା ନିଶ୍ଚୟ ଧୃଷ୍ଟତା । ତଥାପି ଏହି ଅଭିନବ ଦେଶର ନୂତନ ସଭ୍ୟତା ମତେ ଏତେ ଗଭୀର ଭାବରେ ସ୍ପର୍ଶ କରିଛି ଯେ ଏ ବିଷୟରେ ଯତ୍‌ସାମାନ୍ୟ ଲେଖିବାର ଆଗ୍ରହକୁ ଯେ କୌଣସିମତେ ଚାପିଦେଇ ପାରିଲିନାହିଁ । ସେହି ଦୃଷ୍ଟିରୁ ଏହି ଉଦ୍ୟମର ଅସଂପୂର୍ଣ୍ଣତାକୁ ପାଠକମାନେ ସହୃଦୟତାର ସହିତ ବିଚାର କରିବେ ବୋଲି ଆଶା ।

କୌଣସି ଗୋଟିଏ ନୂତନ ଦେଶକୁ ଗଲେ ସେହି ଦେଶର କେତୋଟି ବୈଶିଷ୍ଟ୍ୟ ଆଖିରେ ପଡ଼େ । ସେ ବିଷୟରେ ସଂପୂର୍ଣ୍ଣ ଜ୍ଞାନ ହାସଲ କରିବାକୁ ହେଲେ ବହୁତ ବେଶି ଅଧ୍ୟବସାୟ କରିବା ଦରକାର; ତଥାପି ସେହି ଦେଶର ପ୍ରଥମ ପରିଚୟ ଯେପରି ଭାବରେ ହୁଏ, ତାର ମୂଲ୍ୟ କମ୍ ନୁହେଁ । ଗୋଟିଏ ସୁବାସିତ ଫୁଲ ବିଷୟରେ ବିଶେଷ ଜ୍ଞାନ ହାସଲ କରିବା ସମୟ ସାପେକ୍ଷ ହୋଇପାରେ, କିନ୍ତୁ ତା'ର ସୌରଭରେ ବିମୁଗ୍ଧ ହେବା ପାଇଁ ବେଶି ସମୟ ଲାଗେନାହିଁ ।

୧୯୬୫ରେ ସୋଭିଏତ୍ ରୁଷ୍‌କୁ ପ୍ରଥମଥର ପାଇଁ ଗଲେ ସୁଦ୍ଧା ମୋ ପାଇଁ ସୋଭିଏତ୍ ରୁଷ୍ ଏକାବେଳକେ ଅଜ୍ଞାତ ନୁହେଁ । ବିଂଶ ଶତାବ୍ଦୀର ଅଗ୍ରଗାମୀ ସମାଜବାଦୀ ରୁଷ୍ ବିଶ୍ୱଜନତାର ମନରେ ଏପରି ଏକ ବଳିଷ୍ଠ ଆଶା ସୃଷ୍ଟି କରିଛି ଏବଂ ସମସ୍ତଙ୍କ ଉପରେ ଏପରି ଗଭୀର ପ୍ରଭାବ ପକାଇଛି ଯେ ପୃଥିବୀର ଯେ କୌଣସି ଶିକ୍ଷିତ ଲୋକର ସୋଭିଏତ୍ ରୁଷ ବିଷୟରେ କିଛି ନା କିଛି ଧାରଣା ରହିଛି । ତେଣୁ ସୋଭିଏତ୍ ରୁଷ ଦେଖିଲା ପରେ ତା' ବିଷୟରେ ମୋର ଯେଉଁ ତାତ୍ତ୍ୱିକ ଧାରଣା ଥିଲା, ସେଥିରେ ପ୍ରାଣ ସଞ୍ଚାର ସମ୍ଭବ ହେଲା । ଇଂଲଣ୍ଡ, ଆମେରିକା ଓ ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶର ଅଭିଜ୍ଞତା ପରେ ସୋଭିଏତ୍ ରୁଷ୍‌ର ନୂତନ ସଭ୍ୟତା ବିଷୟରେ ହୃଦୟଙ୍ଗମ କରିବା କେତେକାଂଶରେ ସହଜ ହେଲା । ତିରିଶି, ବତିଶି ତାଲା ଘର, ଚଉଡ଼ା ରାସ୍ତା, ମାଟିତଳ ରେଳଗାଡ଼ି, ସ୍ୱୟଂକ୍ରିୟ ଯନ୍ତ୍ରପାତି ପ୍ରଭୃତି ଦେଖିବା ଅପେକ୍ଷା ସେମାନଙ୍କ ପଛରେ କାମ କରୁଥିବା ମଣିଷକୁ ଦେଖିବା ସହଜ ହୋଇପାରିଲା । ତା'ଛଡ଼ା ସାରାଦେଶ ଗୋଟିଏ ସୁନିର୍ଦ୍ଦିଷ୍ଟ ପଥରେ ସମାଜବାଦ ଲକ୍ଷ୍ୟ ରଖି ଆଗେଇ ଚାଲୁଥିବା ହେତୁ ନୂତନ ମଣିଷ ତିଆରି କରିବାର ଯୋଜନା ସାରା ଦେଶରେ ସମାନ ଭାବରେ ଦେଖିବାକୁ ମିଳେ । ତେଣୁ ଏହି ବିରାଟ ନବ ସଭ୍ୟତା ବିଷୟରେ ମୋଟାମୋଟି ଗୋଟାଏ ଧାରଣା କରିବାରେ ଅସୁବିଧା ହେଲାନାହିଁ ।

ଇଂଲଣ୍ଡ, ଫ୍ରାନ୍ସ, ବେଲ୍‌ଜିୟମ, ନେଦରଲାଣ୍ଡ ଓ ଇଟାଲି ପ୍ରଭୃତି ୟୁରୋପୀୟ ପୁରାତନ ସାମ୍ରାଜ୍ୟବାଦୀ ଏବଂ ବିଂଶ ଶତାବ୍ଦୀର ଧନକୁବେର ପୁଞ୍ଜିପତି ଯୁକ୍ତରାଷ୍ଟ୍ର ଆମେରିକାକୁ ଦେଖିଲା ପରେ ସମଗ୍ର ପୃଥିବୀର ନିଷ୍ପେଷିତ ସର୍ବହରା ସମାଜର ଅଫୁରନ୍ତ ପ୍ରେରଣାର ଉତ୍ସ ଓ ଆଗାମୀ ଯୁଗ ମାନବ ସଭ୍ୟତାର ପ୍ରାଣକେନ୍ଦ୍ର ସୋଭିଏତ୍ ରୁଷ୍‌କୁ ଦେଖିବା ଲାଗି ଉଦ୍ଦାମ ଆକାଂକ୍ଷା ବହୁ ଦିନରୁ ରହି ଆସିଥିଲା । ସାମାଜବାଦୀ ରୁଷ୍‌କୁ ନ ଦେଖିଲେ ବିଂଶ ଶତାବ୍ଦୀର ଦୁନିଆରେ ସାମାଜିକ ଓ ନୈତିକ ଆଭିମୁଖ୍ୟ ବିଷୟରେ ହୃଦୟଙ୍ଗମ କରିବା

ଅସମ୍ଭବ ବୋଲି ଯେଉଁ ମାନସିକ ଅପୂର୍ଣ୍ଣତା ୟୁରୋପ, ଆମେରିକା ବୁଲିଲାବେଳେ ମନ ଭିତରେ ବରାବର ଦେଖାଯାଉଥିଲା, ତାର ଦୂରୀକରଣ ଲାଗି ହଠାତ୍ ସୁବିଧା ମିଳିବାରେ କାହାର ମନ ଆନନ୍ଦରେ ପୁଲକି ନ ଉଠିବ ! ଯେତେବେଳେ ୟୁରୋପର ସାମ୍ରାଜ୍ୟବାଦୀ ଦେଶସମୂହ ଓ ପୁଞ୍ଜିପତି ଆମେରିକା ସାରା ପୃଥିବୀରୁ ଧନ ଆହରଣ କରି ସୁଖ-ସ୍ୱାଚ୍ଛନ୍ଦ୍ୟ ଓ ଧନ-ସମ୍ପଦର ପ୍ରାଚୁର୍ଯ୍ୟରେ ବୁଡ଼ି ରହିଥିଲା, ସେତେବେଳେ ପୃଥିବୀର ଏକଷଷ୍ଠାଂଶ ଏହି ରୁଷ୍ ଦେଶର ଜନସାଧାରଣ ଅତି ଅନୁନ୍ନତ, ଅସଭ୍ୟ ଏବଂ ସାମନ୍ତବାଦୀ ସମ୍ରାଟମାନଙ୍କର କ୍ରୀତଦାସ ରୂପେ ନିଷ୍ପେଷିତ ହୋଇରହିଥିଲେ—ରାସ୍ତାରେ ଯାଉଥିବା କୃଷକ ଓ ମଜ୍‌ଦୁରଙ୍କୁ ଗୁଳି କରିବା ସମ୍ରାଟ୍ ଜାର୍ ପୋଲିସ୍‌ର ଗୋଟିଏ ପ୍ରକାର ମଉଜିଆ ଖେଳ ଥିଲା । ବିଶ୍ୱବିଖ୍ୟାତ ଲେଖକ ଗର୍କିଙ୍କ ପରି ଅଗଣିତ ପ୍ରତିଭାଶାଳୀ ଲେଖକ ଓ ଚିନ୍ତାଶୀଳ ବ୍ୟକ୍ତିଙ୍କୁ ଅନ୍ଧାର ଓ ଥଣ୍ଡା ଘରେ ବନ୍ଦୀ କରି ରଖାହେଉଥିଲା । ସେହି ରୁଷ୍ ବର୍ତ୍ତମାନ କେତେବର୍ଷ ଭିତରେ ସମଗ୍ର ପୃଥିବୀକୁ କଳା ଓ ସାହିତ୍ୟ, ବିଜ୍ଞାନ ଓ ଶିକ୍ଷା ସଭ୍ୟତା ଓ ସଂସ୍କୃତିରେ ଟପି ଯିବାକୁ ବସିଛି ଏବଂ ଆଉ କେତେଟା ବର୍ଷ ଭିତରେ ଶତାଧିକ ବର୍ଷବ୍ୟାପୀ ଉତ୍ପାଦନରେ ଅଗ୍ରଣୀ ଓ ଚରମ ବିତ୍ତବଶାଳୀ ପୁଞ୍ଜିପତି ଆମେରିକାକୁ ମଧ ପଛରେ ପକାଇ ଆଗେଇ ଯିବାକୁ ବସିଛି—ସେହି ଦେଶକୁ ଦେଖିବାରେ ସମାଜବାଦର ସ୍ୱପ୍ନ ଦେଖୁଥିବା କେଉଁ ଭାରତୀୟ ମନରେ ଅଦମ୍ୟ ଆଗ୍ରହ, ଉତ୍ସାହ ଓ ପ୍ରେରଣାର ଉତ୍ସ ଦେଖା ନ ଦେବ ?

ସୋଭିଏତ୍ ରୁଷ ପାଇଁ ଏହି ଦୁର୍ଦ୍ଦମନୀୟ ଆଗ୍ରହ ଓ ଚଞ୍ଚଳତା ହେଲିଶିଙ୍କି ବିଶ୍ୱଶାନ୍ତି ସମ୍ମିଳନୀରେ ଯୋଗ ଦେବାକୁ ଯାଉଥିବା ପ୍ରତ୍ୟେକ ଭାରତୀୟ ପ୍ରତିନିଧିଙ୍କ ମୁହଁରେ ପରିସ୍ଫୁଟ ହୋଇଉଠୁଥିଲା । ପ୍ରାୟ ଶହେଜଣ ଭାରତୀୟ ପ୍ରତିନିଧିଙ୍କ ଭିତରେ ବିଭିନ୍ନ ଧର୍ମାବଲମ୍ବୀ ଲୋକ, ବିଭିନ୍ନ ରାଜନୈତିକ ଦଳର ସଭ୍ୟ, ପାର୍ଲିଆମେଣ୍ଟ ଓ ରାଜ୍ୟ ବିଧାନସଭାର ସଦସ୍ୟ, ଅଧ୍ୟାପକ, ଡାକ୍ତର, ବ୍ୟବସାୟୀ, ଟ୍ରେଡ୍‌ୟୁନିୟନ ଓ କୃଷକ ନେତା—ଏହିପରି ସବୁ ଶ୍ରେଣୀର ଲୋକ ଥିଲେ । କିନ୍ତୁ ସମସ୍ତଙ୍କ ମନରେ ସେହି ଗୋଟିଏ ପ୍ରକାର ଅପରିସୀମ ଆନନ୍ଦ ସୋଭିଏତ୍ ରୁଷ୍ ଦେଖିବା ଲାଗି । ଏହିପରି ଦଳେ ଭାରତୀୟ ଦିଲ୍ଲୀ ପାଲାମ ଉଡ଼ାଜାହାଜ ଷ୍ଟେସନରେ ୧୯୬୫ ମସିହା ଜୁଲାଇ ୪ ତାରିଖ ସକାଳ ୮ଟା ବେଳେ ଗୋଟିଏ ସ୍ୱତନ୍ତ୍ର ବିମାନରେ ଯାଇ ବସିଲୁ ସୋଭିଏତ୍ ରୁଷ୍ ଯିବା ଉଦ୍ଦେଶ୍ୟରେ ।

ଆମର ଏହି ଉଡ଼ାଜାହାଜଟି ପ୍ରାୟ ଘଣ୍ଟାକ ପରେ ପାକିସ୍ତାନର ଲାହୋରରେ କିଛି ସମୟ ରହି ଆଫଗାନିସ୍ତାନର ରାଜଧାନୀ କାବୁଲ୍ ଅଭିମୁଖେ ଯାତ୍ରା କଲା । ଆମେ ଦୁଇଘଣ୍ଟା ପରେ କାବୁଲ୍‌ରେ ପହଞ୍ଚିଲୁ । ଶୁଣିଲୁ ଏହି ବିମାନ ବନ୍ଦରଟି ଏବଂ ତା' ଆଖପାଖ ରାସ୍ତାଗୁଡ଼ିକ ସୋଭିଏତ୍ ସରକାର ଆଫାଗାନିସ୍ତାନର ଲୋକଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ବନ୍ଧୁତାର ନିଦର୍ଶନ ସ୍ୱରୂପ ତିଆରି କରି ଦେଇଛନ୍ତି । ବିଂଶ ଶତାବ୍ଦୀର ଅଗ୍ରଗାମୀ ସଭ୍ୟତାର ପ୍ରଥମ ଦ୍ୱାର ସ୍ୱରୂପ ଉଡ଼ାଜାହାଜ ବନ୍ଦରଟିଏ ଉପହାର ଦେବାରେ ବିଶେଷ ତାତ୍ପର୍ଯ୍ୟ ରହିଛି ବୋଲି ମନେହେଲା । କାବୁଲ୍ ସହରରେ ମଧ ଗୋଟିଏ ବିରାଟ ଆଧୁନିକ ହୋଟେଲ ଏବଂ ଅନ୍ୟାନ୍ୟ କେତେଗୁଡ଼ିଏ ଆଧୁନିକ ଧରଣର ସୁରମ୍ୟ ପ୍ରାସାଦ ଏମାନଙ୍କ ଦ୍ୱାରା ତିଆରି କରାହୋଇଛି । ତେଣୁ ସୋଭିଏତ୍ ରୁଷ୍‌ର ପଡ଼ୋଶୀ ଦେଶ ପ୍ରତି ବନ୍ଧୁତାର ପ୍ରଥମ ପରିଚୟ ଆମକୁ

ଏଠାରେ ମିଳିଲା ଏବଂ ସେହି ଘରଗୁଡ଼ିକ ତିଆରି କରିବାରେ ଯେ ପ୍ରକାର ଆନ୍ତରିକତା ପ୍ରକାଶ ପାଇଛି, ତାହା ସମସ୍ତଙ୍କୁ ସ୍ପର୍ଶ କଲା ।

କାବୁଲ୍‌ରେ ମଧ୍ୟାହ୍ନ ଭୋଜନ ସାରି ଆମେ ବାହାରିଲୁ ଉଜ୍‌ବେକିସ୍ତାନର ରାଜଧାନୀ ତାସଖନ୍ଦ ସହର ଉଦ୍ଦେଶ୍ୟରେ । ପ୍ରାୟ ଚାରିଘଣ୍ଟାର ରାସ୍ତା—କିନ୍ତୁ ଏହି ଚାରିଘଣ୍ଟାରୁ ପ୍ରାୟ ତିନିଘଣ୍ଟା କାଳ ପାମିର ମାଳଭୂମିର ଯେ ପ୍ରକାର ଭୟଙ୍କର ତଥା ମନୋମୁଗ୍ଧକର ଦୃଶ୍ୟ ଦେଖିଲୁ, ତାହା ଭୁଲିବାର ନୁହେଁ । ଦିଗ୍‌ବଳୟ ପର୍ଯ୍ୟନ୍ତ ଲମ୍ବିରହିଛି ଉତ୍ତାଳ ତରଙ୍ଗମାଳା ପରି ପର୍ବତମାଳାର ଅଗଣିତ ଗିରିଶୃଙ୍ଗ; ବୃକ୍ଷଲତାହୀନ ବରଫାବୃତ ଅସୁମାରି ରୁକ୍ଷ ପାହାଡ଼ ପର୍ବତର ଦିଗନ୍ତବ୍ୟାପୀ ଶୋଭାଯାତ୍ରା-ଏହି ସୀମାହୀନ ଭୀମକାନ୍ତ ପର୍ବତମାଳା ଉପରେ ମୋର ମନେହେଲା ଆମ ଉଡ଼ାଜାହାଜଟି ନିଃସହାୟ ସାଥୀହୀନ ପକ୍ଷୀଟିଏ ପରି କେଉଁ ଦିଗହୀନ ପଥରେ ଚାଲିଛି-ଯୁଗ ଯୁଗ ଧରି ଏହିପରି ଅନିର୍ଦ୍ଦିଷ୍ଟ ଭାବରେ ସତେଯେପରି ସେ ଚାଲିଥିବ ଏବଂ ଆମେମାନେ ସେହିପରି ଅପଲକ ନେତ୍ରରେ ପ୍ରକୃତିର ଅସୀମ ଯାତ୍ରାପଥର ଯାତ୍ରୀରୂପେ କାଳ କାଳ ଧରି ଚିତ୍ର ପରି ଚାହିଁ ବସିଥିବୁ—ଉଡ଼ିବାର ଶେଷ ନାହିଁ କି ପାହାଡ଼ ପର୍ବତ ଧୂଳିବାଲି ତରଙ୍ଗରେ ଆଦି ଅନ୍ତ ନାହିଁ । ତଥାପି ଏହି ନିର୍ଜନ, ନିର୍ଜଳ ଓ ନିର୍ମମ ମରୁପର୍ବତ ଉପର ଦେଇ କେତେ କେତେ ନିଷ୍ଠୁର ଐତିହାସିକ ସାମରିକ ଅଭିଯାନ ଭାରତବର୍ଷ ଉପରେ ଅମାନୁଷିକ ଝଡ଼ଝଞ୍ଜା ସୃଷ୍ଟି ନ କରିଛି ! ସ୍ୱର୍ଣ୍ଣପ୍ରସୂ ଭାରତକୁ ଉପଭୋଗ କରିବା ପାଇଁ ହଜାର ହଜାର ସୈନ୍ୟସାମନ୍ତ, ଗଧ, ଘୋଡ଼ା, ଖଚର, ଓଟ ଉପରେ ଭୋକ ଶୋଷ ସହି ଦିନ ଦିନ ମାସ ମାସ ଏହି ଭୀମକାନ୍ତ ପାର୍ବତ୍ୟ ମରୁଭୂମି ଉପରେ ପିମ୍ପୁଡ଼ିଧାର ପରି ଚାଲିଥିଲେ— କେତେ ସୈନ୍ୟସାମନ୍ତ, ଜୀବଜନ୍ତୁ ଏହି ପାହାଡ଼ ପର୍ବତ କଡ଼େ କଡ଼େ ରାତିର ହିମଶୀତଳ ଓ ଦିନର ଉତ୍ତପ୍ତ ବାଲୁକା ଶଯ୍ୟାରେ ଅସହନୀୟ କ୍ଳାନ୍ତିର ଚରମ ବିନୋଦନ ପାଇଁ ଜୀବନ୍ତ କବର ପାଇ ନଥିବେ— ଇତିହାସ ତା'ର ଖବର ରଖିନାହିଁ—ଯେଉଁମାନେ ଏମାନଙ୍କର କଙ୍କାଳର ସ୍ତୂପ ଉପରେ ଠିଆ ହୋଇ ଭାରତକୁ ଅଧିକାର କଲେ, ସେହିମାନଙ୍କର ଜୟଗାଥାରେ ଇତିହାସ ମୁଖରିତ ହୋଇଉଠିଛି—କାରଣ ଅତୀତ ସଭ୍ୟତାର ଇତିବୃତ୍ତି ମନୁଷ୍ୟ-ରକ୍ତ-ପିପାସୁ ସମ୍ରାଟମାନଙ୍କର ସ୍ୱର୍ଣ୍ଣମୁଦ୍ରା ପ୍ରାପ୍ତ ଚାଟୁକାରଙ୍କ ଦ୍ୱାରା ଲିଖିତ ।

ଏହିପରି ଭାବରେ ଘଣ୍ଟା ଘଣ୍ଟା ଧରି କେନ୍ଦ୍ର ଏସିଆର ମାଳଭୂମି ଦୃଶ୍ୟ ଦେଖୁ ଦେଖୁ ତାସଖନ୍ଦ ସହର ଉପକଣ୍ଠରେ ପହଞ୍ଚିଲୁ ବୋଲି ଘୋଷଣା ଶୁଣିଲୁ । ସୋଭିଏତ୍ ରୁଷ୍‌ର ଆକାଶମାର୍ଗରେ ପହଞ୍ଚିଲା ପରେ ଆଉ ଗୋଟିଏ ଅଭିନବ ଦୃଶ୍ୟ ଦେଖିବାକୁ ପାଇଲୁ । ଶସ୍ୟ-ଶ୍ୟାମଳା ସୋଭିଏତ୍ ଦେଶ ଆମ ଦେଶର ବିଲମାଳ ପରି ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ ହୋଇନାହିଁ—ଆଗେ ଯେଉଁସବୁ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଛୋଟିଆ କ୍ଷେତ୍ର ଚାରିପାଖେ ମାଟିହୁଡ଼ା ସବୁ ଉଠିଥିଲା—ସେ ସବୁକୁ କେହି ଯେପରି ଅତିମାନବ ଶକ୍ତି ଦ୍ୱାରା ହାତରେ ଲିଭାଇ ପକାଇଛି ଏବଂ ତା' ଯାଗାରେ ସିଧାସିଧା ଗାର ଟାଣି ଅତି ପ୍ରକାଣ୍ଡ ପ୍ରକାଣ୍ଡ ନୂତନ ଜ୍ୟାମିତିକ କ୍ଷେତ୍ରରେ ପରିଣତ କରିଦେଇଛି । ଯୁଗ ଯୁଗ ଧରି ଯେଉଁ ବ୍ୟକ୍ତିଗତ କ୍ଷୁଦ୍ର ସ୍ୱାର୍ଥ ଯୋଗୁଁ ସାମାଜିକ ସଂକୀର୍ଣ୍ଣତା ମନୁଷ୍ୟ ଜୀବନକୁ କଳୁଷିତ କରିଦେଇଥିଲା, ତାକୁ ଯେପରି ସବୁଦିନ ପାଇଁ ପୋଛି ଦିଆହୋଇଛି—ତା' ଯାଗାରେ ହଜାର ହଜାର ଏକର

ଜମିକୁ ନେଇ ଗୋଟିଏ ଗୋଟିଏ ପ୍ରକାଣ୍ଡ କୋଠଚାଷ କ୍ଷେତ୍ରରେ ପରିଣତ କରାହୋଇଛି ଏବଂ ତାର ଚାରିଆଡ଼େ ଫଟୋ ଫ୍ରେମ୍ ପରି କେନାଲ ଛନ୍ଦି ହୋଇରହିଛି । କ୍ଷୁଦ୍ର ଆୟତନର ଖଣ୍ଡିଏ ଦଶହାତିଆ ଜମି ଉପରେ ଆଦିମ ଯୁଗରୁ ଆଜିପର୍ଯ୍ୟନ୍ତ ସେହି ହଳେ ବଳଦ କିମ୍ବା ଘୋଡ଼ାଟଣା ଲଙ୍ଗଳ ଧରି ଭାରତୀୟ କୃଷକ ନଖରେ ମାଟି ଚିରିଲା ପରି ଏବଂ ପଶୁ ସାଙ୍ଗରେ ନିଜ ନାକ ଚାରିପଖେ ଯୁଗଯୁଗ ଧରି ଧୀରମନ୍ଥର ଗତିରେ ବୁଲିଲା ପରି ରୁଷିଆର ଚାଷୀ ବୁଲୁନାହିଁ—ଦିଗନ୍ତବ୍ୟାପୀ ଗୋଟିଏ ଗୋଟିଏ ବିରାଟ ଚାଷଭୂମିରେ ଦୁର୍ଦ୍ଧର୍ଷ କଳଲଙ୍ଗଳ ଧାଡ଼ି ଧାଡ଼ି ହୋଇ ଚାଲିଛି—ବିରାଟ ଜାହାଜ ଦ୍ୱାରା ସାଗରଗର୍ଭ ମନ୍ଥିହେଲା ପରି ଭୂମି ବିଦୀର୍ଣ୍ଣ ହୋଇଚାଲିଛି । ଘଣ୍ଟା ଘଣ୍ଟାକେ ଏକର ଏକର ଜମି ବିଦାରି ଗୁଣ୍ଡ କରିଦେବାର ଯେଉଁ ବିରାଟ ସାର୍ଥକତା ଓ ଆତ୍ମବିଶ୍ୱାସ ମନୁଷ୍ୟର ମାଂସପେଶୀକୁ ଇସ୍ପାତ ଶକ୍ତ କରିପାରିବ, ଘଣ୍ଟା ଘଣ୍ଟା ଧରି ହଡ଼ା ବଳଦ ପଛରେ ଟୋଳେଇ ଟୋଳେଇ ଚାଲି ଚାଲି ମାଟି ଉଖାରିଲେ କ'ଣ ତାହା ସମ୍ଭବ ହେବ—ବର୍ଷା, ପବନ, ଭୋକଶୋଷ, ଗୋଡ଼ ପାଦ ଓ ହାତମୁଠାର କ୍ଳାନ୍ତିରେ ମଣିଷ ମନ ତଥା ତା'ର ସମଗ୍ର ଦେହରେ ମାଂସ, ଚମ ଲୋଟାକୋଟା ହୋଇଯିବାକୁ ବାଧ୍ୟ ।

ସୋଭିଏତ୍ ରୁଷିଆର ବୈପ୍ଳବିକ ସାମାଜିକ ପଦ୍ଧତିର ଈଷତ୍ ସଙ୍କେତ ଏହିପରି ଭାବରେ ଅଳ୍ପ ଉଚ୍ଚରେ ଉଡୁଥିବା ଉଡ଼ାଜାହାଜରୁ ମିଳିପାରିଲା—କୋଠଚାଷ, ଘରଦ୍ୱାର, ନାଳ କେନାଲ, ଫଳଫୁଲ ବଗିଚା, ଅସ୍ତଗାମୀ ସୂର୍ଯ୍ୟର ଆଲୋକରେ ବିଭିନ୍ନ ରଙ୍ଗରେ ପ୍ରତିଫଳିତ ହୋଇଉଠୁଥିଲା—ସତେ ଯେପରି ମଣିଷ ହାତ ତିଆରି ନାନା ରଙ୍ଗର ଗୋଟିଏ ବିସ୍ତୀର୍ଣ୍ଣ ଗାଲିଚା ପୃଥିବୀର ମାଟି ଉପରେ ରୁଷିଆର ସମାଜବାଦୀ କୃଷକଶ୍ରେଣୀ ବିଛାଇଦେଇଛି । ଏହିପରିଭାବରେ ନାନାପ୍ରକାର ଭାବନାର ଉଦ୍‌ବେଳନ ଚାଲିଥିବାବେଳେ ଅସ୍ତଗାମୀ ସୂର୍ଯ୍ୟର ସୁନେଲି ଆଲୋକ ସ୍ରୋତ ଭିତରୁ ତାସଖନ୍ଦର ଗୋଧୂଳି ଧୂସର ବିମାନଘାଟିର ସିମେଣ୍ଟ ଚଟାଣ ଉପରେ ହଠାତ୍ ଆମ ଉଡ଼ାଜାହାଜଟି ଯେପରି ପର ଝାଡ଼ି ଠିଆହେଲା । ଉଡ଼ାଜାହାଜରୁ ଓହ୍ଲାଇବା ମାତ୍ରେ ତାସଖନ୍ଦ ସହରବାସୀଙ୍କ ତରଫରୁ ଯେଉଁ ପ୍ରକାର ଅଭ୍ୟର୍ଥନା ପାଇଲୁ, ତାହା ଜୀବନରେ ଭୁଲିବାର ନୁହେଁ ।

ତାସଖନ୍ଦ ସହରର ମୁଖ୍ୟ ଶାସନକର୍ତ୍ତା, ବହୁ ସଂଖ୍ୟକ ଗଣ୍ୟମାନ୍ୟ ବ୍ୟକ୍ତି, ଶତାଧିକ ଛୋଟ ଛୋଟ ସ୍କୁଲ ପିଲାଙ୍କ ସହିତ ଆମମାନଙ୍କର ଅଭ୍ୟର୍ଥନା ପାଇଁ ଆଗରୁ ଅପେକ୍ଷା କରି ରହିଥିଲେ- ଉଡ଼ାଜାହାଜରୁ ଓହ୍ଲାଇବା କ୍ଷଣି ଆମମାନଙ୍କ ହାତରେ ଗୋଟିଏ ଗୋଟିଏ ଫୁଲତୋଡ଼ା ଦେଇ ସେମାନେ କରମର୍ଦ୍ଦନ କଲେ ଏବଂ ଛୋଟ ଛୋଟ ପିଲାଟିମାନ ବିମାନ ବନ୍ଦରର ବିଶ୍ରାମାଳୟ ପାଖରେ ବ୍ୟାଣ୍ଡବାଜା ବଜାଇ ହାତରେ ନାନା ରଙ୍ଗରେ ଫୁଲତୋଡ଼ା ଧରି ନାଚି ନାଚି ଆମମାନଙ୍କୁ ଅଭ୍ୟର୍ଥନା ଜଣାଇଲେ । ରାସ୍ତାର ଦୁଇକଡ଼େ ଅସଂଖ୍ୟ ସ୍ତ୍ରୀ ପୁରୁଷ ହାତ ହଲାଇ ତାଳି ମାରି ଆମମାନଙ୍କୁ ଅଭିବାଦନ ଜଣାଉଥା'ନ୍ତି । ତାସଖନ୍ଦ ସହରର ମୁଖ୍ୟ ଶାସନକର୍ତ୍ତା ଆମମାନଙ୍କର ଅଭ୍ୟର୍ଥନା ଭାଷଣରେ କହିଥିଲେ ଯେ ବିଶ୍ୱଶାନ୍ତି ଓ ପ୍ରଗତି ପାଇଁ ଭାରତ ଓ ରୁଷ୍ ପୃଥିବୀରେ ଯେପରି ଭାବରେ ହାତ ମିଳାଇ ଚାଲିଛନ୍ତି, ତାହା ବିଶ୍ୱ ଇତିହାସରେ ଗୋଟିଏ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଘଟଣା ଏବଂ ସେଥିଲାଗି ରୁଷ୍‌ବାସୀ ଭାରତୀୟ ଜନତା ଏବଂ ତାର ପ୍ରଗତିଶୀଳ ସରକାରଙ୍କୁ ଆନ୍ତରିକ ଶୁଭେଚ୍ଛା ଜଣାଉଛି

ଏବଂ ବିଶ୍ୱଶାନ୍ତି ଓ ରୁଷ-ଭାରତ ମୈତ୍ରୀର ନିର୍ମାତା ଶ୍ରୀ ଜବାହାରଲାଲ୍ ନେହରୁଙ୍କ ଅବିସ୍ମରଣୀୟ ଅବଦାନ ରୁଷ୍‌ବାସୀ ସବୁବେଳେ କୃତଜ୍ଞତାର ସହ ମନେରଖିଥିବେ। ତାସଖନ୍ଦବାସୀଙ୍କ ତରଫରୁ ଏ ପ୍ରକାର ଆନ୍ତରିକତାପୂର୍ଣ୍ଣ ଅଭ୍ୟର୍ଥନାରେ ଆମେ ସମସ୍ତେ ଅଭିଭୂତ ହୋଇପଡ଼ିଥିଲୁ । ସୋଭିଏତ୍‌ବାସୀଙ୍କର ଭାରତୀୟ ପ୍ରତି ଆଦର ଓ ସମ୍ମାନ ବିଷୟରେ ପ୍ରଥମ ନିଦର୍ଶନ ଏହି ପ୍ରାଣସ୍ପର୍ଶୀ ଅଭ୍ୟର୍ଥନା ଉତ୍ସବରେ ଆମକୁ ମିଳିଥିଲା ।

ସେତିକିରେ ଆମର ଅଭ୍ୟର୍ଥନା ସରିଲାନାହିଁ । ଆମେ ତାସଖନ୍ଦ ସହରରେ ତିନିଦିନ ଏବଂ ସେଠାରୁ କିଛି ଦୂରରେ ଥିବା ସମରଖନ୍ଦରେ ଦିନେ କଟାଇଲୁ । ଏହି ଚାରିଦିନ ଧରି ଆମକୁ ଯେଉଁ ପ୍ରକାର ଆତିଥ୍ୟ ଅଭ୍ୟର୍ଥନା ସହରର ସାଧାରଣ ନରନାରୀ ତଥା ବିଭିନ୍ନ ଅନୁଷ୍ଠାନରୁ ମିଳିଲା, ତାହା ଆମେ ଆଗରୁ କେବେ କଳ୍ପନା କରିପାରି ନଥିଲୁ । ଆମେ ତାସଖନ୍ଦ ସହରର ନାନା ସ୍ଥାନ ବୁଲି ଦେଖିଲୁ– ତିନୋଟି ଅତ୍ୟନ୍ତ ଆରାମଦାୟକ ସୌଖିନ ବସ୍‌ରେ ଆମେ ସହର କିମ୍ବା ସହର ବାହାରକୁ ଯେଉଁଆଡ଼େ ଯାଉ, ଆମ ଆଗେ ଆଗେ ଦୁଇଟି ମୋଟର ସାଇକେଲ୍ ଆରୋହୀ ପୋଲିସ୍ ରାସ୍ତା ଦେଖାଇ ଦେଖାଇ ପାଇଲଟ୍ କାର୍ ହିସାବରେ ଚାଲିଥାନ୍ତି—ସହରର ରାସ୍ତାଘାଟର ସାଧାରଣ ଗାଡ଼ି ମୋଟର ସବୁକୁ ସେମାନେ ହାତ ଦେଖାଇ ବନ୍ଦ କରି ଦେଉଥାନ୍ତି, ସେମାନଙ୍କ ଗତିପଥ ନିୟନ୍ତ୍ରଣ କରୁଥା'ନ୍ତି ଏବଂ ଆମ ଗାଡ଼ି ତିନୋଟି କୌଣସିଠାରେ ମୁହୂର୍ତ୍ତେ ସୁଦ୍ଧା ନ ଅଟକି ଚାଲିଥାଏ । ଏତେ ବଡ଼ ବଡ଼ ଗହଳି ରାସ୍ତାର ଯାନବାହନ ଆମ ପାଇଁ ରାସ୍ତା ଛାଡ଼ି ଦିଅନ୍ତି ଓ ରାସ୍ତା ଦୁଇପାଖରେ ଯାଉଥିବା ଅଗଣିତ ନରନାରୀ ହାତ ହଲାଇ କିମ୍ବା ତାଳି ମାରି ଆମମାନଙ୍କୁ ଅଭ୍ୟର୍ଥନା ଜଣାଉଥା'ନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇ ମୋର ଅନୁବାଦକଙ୍କୁ ପଚାରିଲି ଯେ ସେମାନେ କିପରି ଜାଣିଲେ ଆମେ ଭାରତରୁ ଆସିଛୁ ବୋଲି ? ଶୁଣିଲି, ଆମେ ଆସିଲାଦିନ ରେଡ଼ିଓରେ ଖବର ଦିଆ ହୋଇଥିଲା ଯେ ବିଶ୍ୱଶାନ୍ତି ସମ୍ମିଳନୀକୁ ଭାରତୀୟ ପ୍ରତିନିଧି ଦଳ ତାସଖନ୍ଦ ସହରରେ ଓହ୍ଲାଇଛନ୍ତି ଏବଂ ସେଠାରେ ଆମେ ଚାରିଦିନ ରହିବୁ । ତେଣୁ ସହରବାସୀ ପାଇଲଟ୍ ପୋଲିସ୍ ଓ ନାଗରିକବର୍ଗ ଆମ ବସ୍‌କୁ ଦେଖିଲାକ୍ଷଣି ବୁଝିପାରନ୍ତି ଯେ, ଆମେ ସେହି ଭାରତୀୟ ପ୍ରତିନିଧି ଦଳ । ବେସରକାରୀ ପ୍ରତିନିଧି ଦଳକୁ ଏପ୍ରକାର ରାଜକୀୟ ସମ୍ମାନ ଦେଖାଇବାର ଦୁଇଟି କାରଣ ଥିଲା । ଗୋଟିଏ ହେଉଛି ଯେ, ଆମେ ବିଶ୍ୱଶାନ୍ତି ସମ୍ମିଳନୀର ପ୍ରତିନିଧି ଦଳ ଏବଂ ସୋଭିଏତ୍ ସରକାର ସେଠାକାର ଲୋକଙ୍କ ମନରେ ବିଶ୍ୱଶାନ୍ତି ଲାଗି ଏତେ ଆଗ୍ରହ ଓ ପ୍ରେରଣା ସୃଷ୍ଟି କରିପାରିଛନ୍ତି ଯେ, ସାଧାରଣ ନାଗରିକ ଏ ବିଷୟରେ ଅତ୍ୟନ୍ତ ଚେତନଶୀଳ ଓ ଉଦ୍‌ବୁଦ୍ଧ । ଦ୍ୱିତୀୟରେ ଭାରତୀୟଙ୍କ ପ୍ରତି ସେମାନଙ୍କର ଗଭୀର ସ୍ନେହ ଓ ଶ୍ରଦ୍ଧା ରହିଛି ।

ଯେଉଁ ପାର୍କରେ କିମ୍ବା ସାଧାରଣ ଅନୁଷ୍ଠାନରେ ଆମେ ପହଞ୍ଚୁ, ରାସ୍ତାର ଲୋକେ ଆସି ସେଠାରେ ଜମା ହୋଇଯାଆନ୍ତି ଓ ଆମମାନଙ୍କ ସାଙ୍ଗରେ ଅତ୍ୟନ୍ତ ଆନନ୍ଦର ସହିତ କରମର୍ଦ୍ଦନ କରନ୍ତି । ସମରଖନ୍ଦରେ ଆମ ଭିତରୁ ତିନିଜଣ ଜଣେ ଅନୁବାଦକାରିଣୀଙ୍କୁ ନେଇ ସହର ବୁଲି ଦେଖିବା ପାଇଁ ଚାଲି ଚାଲି ବୁଲି ବାହାରିଲୁ । ସେଠାକାର ଦରଦାମ ବିଷୟରେ ଜାଣିବା ପାଇଁ ମୁଁ ଗୋଟିଏ ବଡ଼ ଷ୍ଟୋରକୁ ଗଲି । ସେଠାରେ ପ୍ରତ୍ୟେକ ଜିନିଷ ଉପରେ ଦାମ ଲେଖା ହୋଇ କାଗଜ ମରା ହୋଇଥାଏ । ସେହି ଦୋକାନରେ ବିକୁଥିବା, କିଣୁଥିବା

ଲୋକେ ତାଙ୍କ କାମ ବନ୍ଦ କରି ଆମକୁ ଘେରିଗଲେ; ପ୍ରଶ୍ନ ଉପରେ ପ୍ରଶ୍ନ ପଚାରିବାକୁ ଆରମ୍ଭ କଲେ– ଆମ ଦେଶର ଲୁଗାପଟା ଗାଡ଼ି ମଟରର ଦାମ୍‌ଠୁ ଆରମ୍ଭ କରି ସ୍ୱର୍ଗତ ଜବାହାରଲାଲ୍ ନେହରୁ ଏବଂ ସିନେମା ଅଭିନେତା ରାଜକପୁରଙ୍କ ବିଷୟ ପର୍ଯ୍ୟନ୍ତ ଅଗଣିତ ପ୍ରଶ୍ନ । ସେମାନେ ଏହି ଦୁଇଜଣ ଭାରତୀୟଙ୍କୁ ବହୁତ ଭଲପା'ନ୍ତି । କେବଳ ସମରଖନ୍ଦରେ ନୁହେଁ, ରୁଷର ଅନ୍ୟ ସ୍ଥାନରେ ମଧ୍ୟ ଏମାନଙ୍କ ବିଷୟରେ ସେମାନଙ୍କର ଅଖଣ୍ଡ ଶ୍ରଦ୍ଧା ଓ ସମ୍ମାନ । ତା'ପରେ ପାର୍କ ଭିତରେ ଆମେ ଯେଉଁଆଡ଼େ ଗଲୁ, ଦଳ ଦଳ ଲୋକ ଆମ ସାଙ୍ଗରେ ଯାଉଥାନ୍ତି– କିଏ ଆମ ପାଖରେ ଠିଆ ହୋଇ ତା' ବନ୍ଧୁକୁ କହେ ଫଟୋ ଉଠାଇବା ପାଇଁ– କିଏ ଆମର ଦସ୍ତଖତ ତା'ର ଛୋଟ ବହିରେ ଦେବାକୁ ଆମକୁ ଅନୁରୋଧ କରେ । ବିରାଟ ପାର୍କରେ ଅଗଣିତ ପାଣିର ଫୁଆରା–ନାନା ରଙ୍ଗର ପୁଷ୍ପକୁଞ୍ଜ–ସୁନ୍ଦର ସୁନ୍ଦର ମାର୍ବଲ ଓ ପଥର ପ୍ରତିମୂର୍ତ୍ତି–ଏପରି ପରିବେଶ ଭିତରେ ହଜାର ହଜାର ସ୍ୱାସ୍ଥ୍ୟବାନ ଯୁବକ ଓ ସ୍ୱାସ୍ଥ୍ୟବତୀ ଯୁବତୀ ଜୀବନର ଅଫୁରନ୍ତ ଆନନ୍ଦରେ ଉଲ୍ଲସିତ ଓ ବଞ୍ଚିବାର ପରମ ସାର୍ଥକତାରେ ଉଜ୍ଜୀବିତ ହୋଇ ପ୍ରଜାପତି ପରି ଉଡ଼ି ବୁଲୁଥା'ନ୍ତି ।

ପାର୍କରେ ବୁଲି ବୁଲି ଆମେ ଫେରୁଥାଉ–ରାସ୍ତାରେ ଆମ ଅନୁବାଦକାରିଣୀଙ୍କ ଭଉଣୀଙ୍କ ସହିତ ଦେଖାହେଲା । ସେ ଜଣେ ଡାକ୍ତର । ସେ ଆମକୁ କିଛି ନଖୁଆଇ କୌଣସି ମତେ ଛାଡ଼ିବା ପାଇଁ ରାଜିହେଲେ ନାହିଁ । ଆମେ ତାଙ୍କର ନିମନ୍ତ୍ରଣ ରକ୍ଷା କରି ଗୋଟିଏ ରେଷ୍ଟୋରାଁକୁ ଗଲୁ । ଆମେ କେବଳ ଆଇସ୍‌କ୍ରୀମ୍ ଖାଇବାକୁ କହିଲୁ, କାରଣ ତା'ପରେ ଆମର ରାତ୍ରି ଭୋଜନକୁ ଯିବା କଥା । ଦେଖିଲା ବେଳକୁ ଧୋବ ଫର ଫର ମଲ୍ଲୀଫୁଲ ପରି ଗୋଟିଏ ବଡ଼ ଥାଳିରେ ଥାଳିଏ ଆଇସ୍‌କ୍ରିମ୍– ସେଥିରୁ ଅଧେ ବି ଖାଇବା ଆମ ପକ୍ଷରେ କଷ୍ଟକର । ଆମେ ବସି ଖାଉଛୁ, ଏହି ସମୟରେ ଦୁଇଜଣ ଯୁବକ-ଶ୍ରମିକ ପାଖକୁ ଆସି ଆମକୁ ରୁଷ୍ ଭାଷାରେ ସ୍ୱାଗତ ଜଣାଇ କରମର୍ଦ୍ଦନ କଲେ ଏବଂ ମିନିଟିଏ ଭିତରେ କପେ ଲେଖା କଫି ଆଣି ଆମ ଆଗରେ ଥୋଇଦେଲେ ଏବଂ କରମର୍ଦ୍ଦନ କରି ପୁଣି କୁଆଡ଼େ ଅଦୃଶ୍ୟ ହୋଇଗଲେ । ହୋଟେଲକୁ ଫେରିଲା ପରେ ଏହିପରି ବହୁ ଅଭିଜ୍ଞତା ଅନ୍ୟମାନଙ୍କଠାରୁ ଶୁଣିବାକୁ ମିଳିଲା । ରାସ୍ତାରେ ଓ ପାର୍କରେ କିଏ କାହାକୁ ଖାଇବାକୁ ଡାକିଛି ତ' କିଏ ବହୁତ ଅନୁନୟ ବିନୟ କରି କାହାକୁ ଗୋଟିଏ ଟୋପି ଉପହାର ଦେଇଛି । ଆଉ ଜଣେ ଗୋଟିଏ ହାତବନ୍ଧା ଘଡ଼ି ପାଇଛି । ରୁଷ୍‌ବାସୀଙ୍କର ଭାରତୀୟଙ୍କ ପ୍ରତି ଏ ପ୍ରକାର ଉଚ୍ଛ୍ୱସିତ ଆଦର ଅଭ୍ୟର୍ଥନା ଓ ଆନ୍ତରିକ ସ୍ନେହଶ୍ରଦ୍ଧାର କାରଣ କ'ଣ ବୋଲି ଜାଣିବାର ପ୍ରବଳ ଆଗ୍ରହ ହେଲା । ଶୁଣିଲି, ସମାଜବାଦୀ ଦର୍ଶନ ଅନୁସାରେ ରୁଷ୍‌ବାସୀଙ୍କଠାରେ ଅନ୍ୟ ଦେଶର ଲୋକଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧା ସୃଷ୍ଟି କରିବା ହେଲା ଗୋଟିଏ ପ୍ରଧାନ କର୍ତ୍ତବ୍ୟ-ଆନ୍ତର୍ଜାତିକ ମନୋଭବ ସୃଷ୍ଟି କରିବା ସେଠାର ପାଠ୍ୟକ୍ରମର ଗୋଟିଏ ନିର୍ଦ୍ଦିଷ୍ଟ ନୀତି । ପ୍ରତ୍ୟେକ ଦେଶର ଭାଷା, ସାହିତ୍ୟ ଓ ସଂସ୍କୃତି ବିଷୟରେ ଶିକ୍ଷା ଦିଆହୁଏ । ବିଶ୍ୱବିଦ୍ୟାଳୟମାନଙ୍କରେ ହିନ୍ଦୀ ଓ ଅନ୍ୟାନ୍ୟ ଭାରତୀୟ ଭାଷା ଶିକ୍ଷା ଦିଆଯାଏ । ରବି ଠାକୁର, ନେହରୁ ଓ ମୁଲକ୍‌ରାଜ ଆନନ୍ଦ ପ୍ରଭୃତି ପ୍ରସିଦ୍ଧ ଭାରତୀୟ ଲେଖକଙ୍କର ବହି ସବୁ ଅନୂଦିତ ହୋଇ ଲକ୍ଷ ଲକ୍ଷ ସଂଖ୍ୟାରେ ପ୍ରକାଶିତ ହୋଇଛି । ଆମ ସାଙ୍ଗରେ ଭାରତର ବିଖ୍ୟାତ ଲେଖକ ମୁଲକରାଜ ଆନନ୍ଦ ଥିଲେ । ତାଙ୍କୁ ଦେଖା କରିବା ପାଇଁ ଏବଂ ତାଙ୍କର

ହସ୍ତଲିପି ପାଇବା ପାଇଁ ବହୁତ ଲୋକ ଆସୁଥିବାର ଦେଖିଲୁ । ତା'ଛଡ଼ା ଶୁଣିବାକୁ ପାଇଲୁ ଯେ ପୃଥିବୀର ଅନ୍ୟ ଦେଶର ଲୋକଙ୍କ ଅପେକ୍ଷା ସାମ୍ରାଜ୍ୟବାଦୀଙ୍କ କବଳରୁ ସଦ୍ୟ ମୁକ୍ତି ଲାଭ କରିଥିବା ଆଫ୍ରିକା ଓ ଅନ୍ୟାନ୍ୟ ଦେଶର ପ୍ରଗତିଶୀଳ ଜନତା ପ୍ରତି ସେମାନଙ୍କର ବିଶେଷ ସ୍ନେହ ଓ ଶ୍ରଦ୍ଧା ଥିବାର ଜଣାଯାଏ । ଏହା ସେମାନଙ୍କର ସାଧାରଣ ପାଠ୍ୟକ୍ରମ ତଥା ସାଂସ୍କୃତିକ ଅନୁଷ୍ଠାନମାନଙ୍କର ଗୋଟିଏ ମୌଳିକ ବୈଶିଷ୍ଟ୍ୟ ହୋଇଥିବାରୁ ଜନସାଧାରଣଙ୍କଠାରେ ଏ ପ୍ରକାର ଅକୃତ୍ରିମ ଆନ୍ତରିକତା ପ୍ରକାଶ ପାଉଛି ।

କେବଳ ତାସଖନ୍ଦ ଓ ସମରଖନ୍ଦରେ ନୁହେଁ, ମସ୍କୋ, ଲେନିନ୍‌ଗ୍ରାଡ୍ ଓ ଅନ୍ୟାନ୍ୟ ସ୍ଥାନରେ ସିନେମା, ଥିଏଟର, ସ୍କୁଲ କଲେଜରେ, ରାସ୍ତାଘାଟରେ ସବୁଠି ସେହି ପ୍ରକାର ଅକୃତ୍ରିମ ସୌହାର୍ଦ୍ଦ୍ୟ ଦେଖାଗଲା । ଲେନିନ୍‌ଙ୍କର ମୃତ ଦେହକୁ ଦେଖିବା ପାଇଁ ମାଇଲିଏ ବ୍ୟାପୀ ଦର୍ଶନାଭିଳାଷୀ ଲୋକଙ୍କ ଧାଡ଼ି ପଛରେ ଆମେ ଠିଆ ହୋଇଥିଲେ ଆମକୁ ଗୋଟିଏ ପୂରା ଦିନ ଲାଗି ଯାଇଥାନ୍ତା ସେହି ଗୋଟିଏ ଜିନିଷ ଦେଖିବା ପାଇଁ । କିନ୍ତୁ ଭାରତୀୟ ପ୍ରତିନିଧିଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା—ଆମମାନଙ୍କୁ ଆଗରେ ନେଇ ଠିଆ କରାଗଲା ଏବଂ ଦଶ ମିନିଟ୍ ଭିତରେ ଆମେ ଲେନିନ୍ ସ୍ମୃତିସୌଧ ଦେଖିପାରିଲୁ ।

ଭାରତୀୟଙ୍କ ପ୍ରତି ଏ ଯେଉଁ ଆନ୍ତରିକ ସ୍ନେହ-ଶ୍ରଦ୍ଧା, ଏହା ସରକାରୀ ନିୟନ୍ତ୍ରିତ କେତେକ ମୁଷ୍ଟିମେୟ ଲୋକ ବା ଅନୁଷ୍ଠାନ ଯୋଗୁଁ ନୁହେଁ, ତାହା ସୋଭିଏତ୍‌ବାସୀଙ୍କର ଶିକ୍ଷା ଓ ସଂସ୍କୃତିର ଗୋଟିଏ ମୌଳିକ ବୈଶିଷ୍ଟ୍ୟ ବୋଲି ଜଣାଗଲା । କୌଣସି ଦେଶର ସରକାରଙ୍କ ସହିତ ରୁଷ୍ ସରକାରଙ୍କର ଅ'ଡ଼ ହେଲେ ମଧ୍ୟ ସେଠାକାର ଜନସାଧାରଣଙ୍କ ପ୍ରତି ଏ ପ୍ରକାର ସୌହାର୍ଦ୍ଦପୂର୍ଣ୍ଣ ମନୋଭାବ ରହେ ବୋଲି ଜଣାଯାଏ । ପୃଥିବୀର ଅନ୍ୟାନ୍ୟ ଦେଶ ତୁଳନାରେ ସୋଭିଏତ୍ ରୁଷର ବିଶ୍ୱମାନବିକତା ଓ ଆନ୍ତର୍ଜାତିକତା ଯେ ଗୋଟିଏ ବିଶିଷ୍ଟ ଜାତୀୟଗୁଣ, ଏଥିରେ ଆମର ସନ୍ଦେହ ରହିଲା ନାହିଁ ।

ବୈଦିକ ଯୁଗର ଆର୍ଯ୍ୟମାନେ "ସର୍ବେ ଭବନ୍ତୁ ସୁଖିନଃ ସର୍ବେସନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିଦ୍ ଦୁଃଖଭାଗ ଭବେତ୍" ଯେତେବେଳେ କହିଥିଲେ, ସେତେବେଳେ ସେମାନେ ସମଗ୍ର ମନୁଷ୍ୟ ସମାଜ ପାଇଁ ସର୍ବେଶ୍ରେଷ୍ଠ ମାନବିକ ସୁଖସ୍ୱପ୍ନ ଦେଖିଥିଲେ । ପ୍ରତ୍ୟେକ ଯୁଗରେ ଓ ପ୍ରତ୍ୟେକ ଦେଶରେ ମହାମାନବୀୟ ସୁଖ ଶାନ୍ତିରେ ଉଦ୍‌ବୁଦ୍ଧ ହୋଇ ବହୁ ମହାପୁରୁଷ ଦୁଃଖ ଶୋକ ପ୍ରପୀଡ଼ିତ ମାନବ ଜାତିର ଉଦ୍ଧାର ପାଇଁ ପ୍ରୟାସ କରି ଆସିଛନ୍ତି । ବୁଦ୍ଧ, ଖ୍ରୀଷ୍ଟ, କନ୍‌ଫୁସିଅସ୍ ପ୍ରଭୃତି ମନୀଷୀମାନେ ମାନବ ସମାଜର ଅଗଣିତ ଜନତାର ଅସହନୀୟ ଦୁଃଖ ଦୈନ୍ୟରେ ବ୍ୟଥିତ ହୋଇ ଏହାର ସର୍ବବିଧ କଲ୍ୟାଣ ଲାଗି ବହୁ ଉପଦେଶ ଦେଇଯାଇଛନ୍ତି । କିନ୍ତୁ ଏ ସବୁ ସ୍ୱପ୍ନରେ ହିଁ ରହିଯାଇଥିଲା । ଏହି ବିରାଟ ଐତିହାସିକ ସ୍ୱପ୍ନକୁ ବାସ୍ତବ କ୍ଷେତ୍ରରେ ରୂପାୟିତ କରିବା ପାଇଁ ଅର୍ଥନୈତିକ, ରାଜନୈତିକ ଓ ସାମାଜିକ କ୍ଷେତ୍ରରେ ଯେଉଁ ବ୍ୟାପକ ବୈପ୍ଲବିକ ପରିବର୍ତ୍ତନର ଆବଶ୍ୟକତା ରହିଛି ତାହା ବିଂଶ ଶତାବ୍ଦୀର ସମାଜବାଦୀ ବିପ୍ଳବ ପୂର୍ବରୁ ସମ୍ଭବ ହୋଇପାରିନଥିଲା ।

ଟଲଷ୍ଟୟଙ୍କ ଭାଷାରେ ପାଶ୍ଚାତ୍ୟ ଦେଶରେ ସ୍ୱାଧୀନତା, ସମାନ ସାମାଜିକ ସୁଯୋଗ ଓ ସୁବିଧା ଥିବା କଥା ଦୁଇଜଣ ମଲ୍ଲଯୋଦ୍ଧାଙ୍କ ସହିତ ତୁଳନା କରାଯାଇପାରେ । ସେମାନଙ୍କ ଭିତରୁ ଜଣଙ୍କର ହାତଦୁଇଟି ବନ୍ଧା, ଆଉ ଜଣକର ହାତରେ ଗୋଟିଏ ଅସ୍ତ୍ର-ଅଥଚ ଅନ୍ୟାନ୍ୟ ସମସ୍ତ କଥା ସମାନ । ସେହିପରି ପ୍ରତ୍ୟେକ ଭିକାରୀର କାଶ୍ମୀର ଉପତ୍ୟକାରେ ଗ୍ରୀଷ୍ମ ଛୁଟି

କଟାଇବାର ଅଧିକାର ଓ ସ୍ୱାଧୀନତା ଥିବା ଯାହା ଯେପରି ହାସ୍ୟାସ୍ପଦ, ପୁଞ୍ଜିପତି ଦେଶରେ ସମସ୍ତଙ୍କର ସମାନ ସୁବିଧା ଥିବା କଥା ସେହିପରି ଅବାସ୍ତବ ।

ପୁଞ୍ଜିପତି ଉତ୍ପାଦନର ପ୍ରଚୁରତା ଭିତରେ ପୃଥିବୀର ଅଧିକ ସଂଖ୍ୟକ ଲୋକ ଗରିବ । ବର୍ଦ୍ଧନଶୀଳ ମାନବିକ ଶକ୍ତିର ବ୍ୟାପକ ପ୍ରୟୋଗରେ ଅଭୂତପୂର୍ବ ସାଫଲ୍ୟ ମଧ୍ୟରେ ଏହି ଶକ୍ତିର ପ୍ରକୃତ ଆଧାର ଶ୍ରମିକ ଶ୍ରେଣୀ ଶକ୍ତିହୀନ, ଭଗ୍ନ, ଆଦର୍ଶହୀନ, ନୈରାଶ୍ୟବାଦୀ ଓ ଅମନୁଷ୍ୟ । କୋକିଲା କୁକୁରଙ୍କ ଭିତରେ ଅହରହ ସଂଗ୍ରାମ ଲାଗିଥିଲା ପରି ସର୍ବହରା ଶ୍ରମିକ ଓ କୃଷକ ମଧ୍ୟରେ ଅନବରତ କଳହ–ପୁଞ୍ଜିପତିର ବାସଗୃହ, ହୋଟେଲ୍, କ୍ଲବ୍ ପ୍ରଭୃତି ନଭଶ୍ଚୁମ୍ବୀ ପ୍ରାସାଦର ଅଦୂର ଦେଶରେ ଜରାଜୀର୍ଣ୍ଣ କୁଡ଼ିଆ ଘରର ଶୋଭାଯାତ୍ରା । ପୁଞ୍ଜିପତି ସମାଜର ଏହା ଏକ ଅଲଘନୀୟ ବୈଶିଷ୍ଟ୍ୟ । ଏହି ଅସଂସ୍କୃତ ଓ ଅମାନୁଷିକ ପରିବେଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରେ ରୁଷ୍ ଦେଶର ସମାଜବାଦୀ ବିପ୍ଳବ । ଏହି ଯୁଦ୍ଧ ଘୋଷଣା ପଛରେ ଅତୀତ ଯୁଗର ମାନବ ଜାତିର ଆଶା ଆକାଂକ୍ଷା ପରିସ୍ଫୁଟ ହୋଇଉଠିଥିଲା । ତେଣୁ ବହୁବର୍ଷ ଧରି ପୃଥିବୀର ପୁଞ୍ଜିପତି ଦେଶମାନେ ଏହି ବିପ୍ଳବକୁ ନିଃଶେଷ କରିବାକୁ ଲାଗିପଡ଼ିଲେ, କିନ୍ତୁ ବିଂଶ ଶତାବ୍ଦୀର ଅପରାଜେୟ ସର୍ବହରା ଶକ୍ତି ଆଗରେ ସେମାନଙ୍କୁ ହାର୍ ମାନିବାକୁ ହେଲା । କିଛି ବର୍ଷ ପରେ ହିଟଲ୍‌ର ତା'ର ଦୁର୍ଦ୍ଧର୍ଷ ଅମାନୁଷିକ ଶକ୍ତି ସୋଭିଏତ୍ ରୁଷ୍ ବିରୁଦ୍ଧରେ ପ୍ରୟୋଗ କଲା କିନ୍ତୁ ତାର ମଧ୍ୟ ସମସ୍ତ ଶକ୍ତି ରୁଷର ଚାଷୀ ମୂଲିଆଙ୍କ ବଜ୍ରମୁଷ୍ଟି ଆଘାତରେ ବିଲୀନ ହୋଇଗଲା । ସୋଭିଏତ୍ ରୁଷର ଏହି ସମାଜବାଦୀ ମାନବ ସମାଜ କେବଳ ଯୁଦ୍ଧ କ୍ଷେତ୍ରରେ ଚାଷୀ ମୂଲିଆଙ୍କର ଐତିହାସିକ ଶତ୍ରୁକୁ ଯେ ପରାସ୍ତ କରିଛି ତା ନୁହେଁ ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ, ବୈଜ୍ଞାନିକ ଓ ଶିକ୍ଷା କ୍ଷେତ୍ରରେ ମଧ୍ୟ ଅନ୍ୟାନ୍ୟ ପୁଞ୍ଜିପତି ଦେଶ ତୁଳନାରେ ଏହା ଅତି ଦ୍ରୁତଗତିରେ ଆଗେଇ ଚାଲିଛି-ବିଗତ ଶତାବ୍ଦୀଗୁଡ଼ିକର ସମଗ୍ର ନିଷ୍ପେଷିତ ମନୁଷ୍ୟଜାତି ଯେପରି ତାର ସମସ୍ତ ବନ୍ଧନ ମୁକ୍ତ କରି ଚାରିଆଡ଼େ ମାଡ଼ିଚାଲିଛି । ପ୍ରତିବନ୍ଧକ ସବୁ ଦୂରେଇ ଯାଉଛି- ବିଜ୍ଞାନର ଅସୀମ ଜ୍ଞାନ ବଳରେ ପ୍ରାକୃତିକ ଶକ୍ତିକୁ ସେ ଏପରି ଭାବରେ ପ୍ରୟୋଗ କରିପାରୁଛି ଯେ ଯୁଗ ଯୁଗର ଅଜ୍ଞାନାନ୍ଧକାରାଚ୍ଛନ୍ନ ପ୍ରାକୃତିକ ରହସ୍ୟ ଉଦ୍‌ଘାଟନ କରି ସେ ଅତିମାନବ ବଳର ଅଧିକାରୀ ହୋଇପାରୁଛି- ଏହା ଆଶ୍ଚର୍ଯ୍ୟର କଥା ନୁହେଁ ଯେ ପ୍ରଥମ ରୁଷ୍ ଅନ୍ତରୀକ୍ଷ ଯାନ ମହାଶୂନ୍ୟର ବୁକୁ ଚିରି ପୃଥିବୀକୁ ଚମତ୍କୃତ କରିଦେଲା– ଚନ୍ଦ୍ରଲୋକରେ ପୃଥିବୀ ସମାଜବାଦୀ ଜନତାର ଜୟଧ୍ୱନି ଉଡ଼ାଇ ଆସିଲା । ପୃଥିବୀର ସବୁଠାରୁ ବଡ଼ ମନୁଷ୍ୟକୃତ ଉପହ୍ରଦ, କେନାଲ୍, ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର, ଆଣବିକ ଶକ୍ତିଚାଳିତ ବିରାଟ ବରଫ ଭଙ୍ଗା ଜାହାଜ ଇତ୍ୟାଦି ଅଗଣିତ ମାନବ କଲ୍ୟାଣକର ଉଦ୍‌ଭାବନ ଓ ଅତିମାନବ ସଂପାଦନ ଏହି ସୃଜନଶୀଳ, ସମାଜବାଦୀ ଆଦର୍ଶ ଅନୁପ୍ରାଣୀତ ବୈଜ୍ଞାନିକମାନଙ୍କ ଦ୍ୱାରା ସମ୍ଭବ ହୋଇଛି । ଏହି ଅତିମାନବ ଶକ୍ତି ଓ ଅସାଧାରଣ ପ୍ରେରଣାର ଉତ୍ସ ଏତେ ଅଳ୍ପ ସମୟ ମଧ୍ୟରେ କିପରି ସମ୍ଭବ ହେଲା ? ବିରାଟ ମାନବ ଇତିହାସରେ ପଚାଶ ବର୍ଷର ସୋଭିଏତ୍ ଇତିହାସ ଗୋଟିଏ ମାତ୍ର ସାମାନ୍ୟ କାଳିବିନ୍ଦୁ ପରି; କିନ୍ତୁ ଏହି ବିନ୍ଦୁଏ କାଳିରେ ଯେଉଁ ଅସାମାନ୍ୟ କାହାଣୀ ଓ ଲୋକ ପ୍ରତିଭା ଲିପିବଦ୍ଧ ହୋଇଛି ତାହା ସମଗ୍ର ମାନବ ଇତିହାସରେ ସମ୍ଭବ ହୋଇନଥିଲା । ତା'ର କାରଣ କ'ଣ ? ଏହି ଦୁର୍ଦ୍ଦମନୀୟ ଲୋକଶକ୍ତିର ଲୁକ୍‌କାୟିତ ପ୍ରାଣକେନ୍ଦ୍ର କେଉଁଠି ?

ସୋଭିଏତ୍ ସମାଜ ଲୋକଙ୍କଠାରେ ସୁନ୍ଦର ରୁଚି, ବ୍ୟବହାରରେ ଭଦ୍ରତା ପରିମାର୍ଜିତ ଓ ପରିବର୍ତ୍ତିତ ପରିବେଷ୍ଟନୀ ସାହାଯ୍ୟରେ ସୌନ୍ଦର୍ଯ୍ୟବୋଧ ସୃଷ୍ଟି କରିବା ପାଇଁ ଯେଉଁ ନିରବଚ୍ଛିନ୍ନ ଉଦ୍ୟମକରି ଆସୁଛି ତାହା ଅତ୍ୟନ୍ତ ପ୍ରଶଂସନୀୟ । ପରିବେଶ ବଦଳାଇ ଲୋକଙ୍କର ଚରିତ୍ରକୁ କିପରି ବଦଳାଇ ଦିଆଯାଇପାରେ ସେହି ଦର୍ଶନର ଜ୍ୱଳନ୍ତ ଉଦାହରଣ ସୋଭିଏତ୍ ସମାଜର ପ୍ରଚଳିତ ସୌନ୍ଦର୍ଯ୍ୟ ଓ ରୁଚିବୋଧରୁ ପ୍ରୀତିକର ରୂପାୟନରେ ପ୍ରତିଫଳିତ ହୋଇପାରିଛି ।

ରୁଷ୍‌ବାସୀ ବିଶ୍ୱାସ କରନ୍ତି ଯେ ନିକଟ ଭବିଷ୍ୟତରେ ପୃଥିବୀର ଶାନ୍ତିକାମୀ ଜନତାଦ୍ୱାରା ସ୍ଥାୟୀ ଶାନ୍ତି ସମ୍ଭବ ହୋଇପାରିବ । ଏହି ବିରାଟ ଆଶା ଓ ଆଗାମୀ ଯୁଗର ଅଭିନବ ସ୍ୱପ୍ନକୁ ଆଖି ଆଗରେ ନ ଦେଖିଲେ ସମ୍ପୂର୍ଣ୍ଣ ରୂପେ ଅନୁଭବ କରିବା ସହଜ ନୁହେଁ । ନୂଆ ମଣିଷ ଗଢ଼ି ନୂତନ ମାନବିକ ସଭ୍ୟତା ଓ ସଂସ୍କୃତି ସମ୍ପନ୍ନ ପରିବେଶ ସୃଷ୍ଟି କରିବାର ଯେଉଁ ଐତିହାସିକ କଳ୍ପନା, ତାହା ବିଂଶ ଶତାବ୍ଦୀର ଶେଷ ଭାଗରେ ସମ୍ଭବ ହେବାକୁ ଯାଉଛି ।

## ହେଲିଶିଙ୍କି ବିଶ୍ୱଶାନ୍ତି ସମ୍ମିଳନୀ - ୧୯୬୫

ମସ୍କୋରୁ ଲେଲିନ୍‌ଗ୍ରାଡ୍ ଦେଇ ଆମେମାନେ ଫିନ୍‌ଲାଣ୍ଡର ରାଜଧାନୀ ହେଲିଶିଙ୍କି ସହରରେ ପହଞ୍ଚିଲୁ । ହେଲିଶିଙ୍କି ସହରଟି ଅତ୍ୟନ୍ତ ମନୋମୁଗ୍ଧକର ପରିବେଶ ଭିତରେ ହଜାର ହଜାର ଦ୍ୱୀପପୁଞ୍ଜର ସମଷ୍ଟି । ଏହି ସହରଟି ଯେପରି ପାଣିରେ ଭାସୁଛି । ଚାରିଆଡ଼େ ବହୁ ପ୍ରକାରର ପୋଲ ଦ୍ୱୀପମାନଙ୍କୁ ସଂଯୋଗ କରୁଛି । ଖରାଦିନେ ମାତ୍ର ଘଣ୍ଟାଏ ଦି'ଘଣ୍ଟା ପାଇଁ ରାତି ହୁଏ କିନ୍ତୁ ସେହି ସମୟ ଟିକକ ଏତେ ଚମତ୍କାର ଯେ ହ୍ରଦ କୂଳରେ ବସି ଗାଢ଼ ନୀଳ ରଙ୍ଗର ଆକାଶ ଓ ଜଳରାଶିକୁ ଦେଖିବାକୁ ମୋତେ ବହୁତ ଭଲ ଲାଗିଲା । ଏ ସମୟଟି ରାତି ନୁହେଁ କି ଦିନ ନୁହେଁ । ଗଭୀର ନୀଳ ରଙ୍ଗର ଆଲୋକ ବଡ଼ ଅପ୍ରାକୃତିକ ଦେଖାଯାଏ । ଦୂର ଦିଗ୍‌ବଳୟର ଗଛ, ପାହାଡ଼, ଡଙ୍ଗା, ଜାହାଜ ଆଖେପାଖେ ବୁଲୁଥିବା ଲୋକେ ସ୍ୱପ୍ନରାଜ୍ୟର ଅସ୍ପଷ୍ଟ ଛାଇ ପରି ଦେଖା ଯାଉଥାନ୍ତି । ଏ ଅନୁଭୂତି ଭୁଲିବାର ନୁହେଁ । ଏହା ଇନ୍ଦ୍ରିୟାନୁଭୂତ ହେଲେ ମଧ୍ୟ ମନକୁ ଅତୀନ୍ଦ୍ରିୟ ସ୍ତରକୁ ନେଇଯାଏ । ଅଦ୍ଭୂତ ଧରଣର ଭାବାବେଗ ତଥା ଆତ୍ମିକ ଶିହରଣ ଦେଖାଯାଏ ।

ହେଲିଶିଙ୍କି ବିଶ୍ୱଶାନ୍ତି ସମ୍ମିଳନୀରେ ପୃଥିବୀର ସବୁ ଦେଶରୁ ପ୍ରାୟ ପାଞ୍ଚ ହଜାର ଲୋକ ଆସିଥିଲେ । ପ୍ରାୟ ଚାରିଦିନ ଧରି ବିଶ୍ୱଶାନ୍ତି ବିଷୟରେ ବହୁତ ଆଲୋଚନା ହୋଇଥିଲା । ଏହା ସମସ୍ତଙ୍କ ପାଇଁ ପ୍ରବଳ ପ୍ରେରଣା ଯୋଗାଇ ପାରୁଥିଲା । ମୁଁ ଏଥିରେ ଆଲୋଚନା ପାଇଁ ଗୋଟିଏ ପ୍ରସ୍ତାବ ଆଣିଥିଲି ଯେ ବର୍ତ୍ତମାନ ବିଶ୍ୱଶାନ୍ତି କ୍ଷେତ୍ରରେ ଦେଖା ଦେଇଥିବା ସଙ୍କଟ ସମୟରେ ସମଗ୍ର ପୃଥିବୀର ବୈଜ୍ଞାନିକମାନେ ଐକ୍ୟବଦ୍ଧ ହେବା ଉଚିତ ଏବଂ ଯୁଦ୍ଧାସ୍ତ୍ର ବା ଗବେଷଣା କାର୍ଯ୍ୟରେ ସମସ୍ତେ ଅସହଯୋଗ କରିବା ଉଚିତ । ଶତାଧିକ ବର୍ଷ ତଳେ ସାମ୍ରାଜ୍ୟବାଦୀ ଓ ପୁଞ୍ଜିବାଦୀ ଦେଶମାନଙ୍କରେ ଯେପରି ଐତିହାସିକ ଆହ୍ୱାନ ଦିଆ ହୋଇଥିଲା- ''ବିଶ୍ୱ ସର୍ବହରାଦଳ ଏକଜୁଟ୍ ହୁଅ'' । ବର୍ତ୍ତମାନ ସମୟ ଆସିଛି ସେହିପରି ଗୋଟିଏ ବିରାଟ ମାନବିକ ଆହ୍ୱାନର- ''ବିଶ୍ୱ ବୈଜ୍ଞାନିକ ବୃନ୍ଦ ଏକଜୁଟ୍ ହୁଅ, ମାରଣାସ୍ତ୍ର ତିଆରି ବନ୍ଦକର ।'' କିନ୍ତୁ ପ୍ରାଥମିକ ଆଲୋଚନା ପରେ ମୋ ପ୍ରସ୍ତାବଟି ଗୃହୀତ ହୋଇନଥିଲା ।

## ଶିକ୍ଷାବିତ୍‌ଙ୍କ ପ୍ରତିନିଧି ହିସାବରେ ୧୯୬୭ରେ ପୁଣି ରୁଷ୍ ଭ୍ରମଣ

ମୁଁ ୧୯୬୫ରେ ସୋଭିଏତ୍ ରୁଷ୍‌ରୁ ଫେରି ମୋର ସୋଭିଏତ୍ ରୁଷ୍ ଅନୁଭୂତି ନେଇ ନବ ସଭ୍ୟତାର ଦେଶ' ଶିରୋନାମାରେ ଗୋଟିଏ ବହି ଲେଖିଲି। ଏହି ବହିଟି ୧୯୬୬ ମସିହାରେ ଭାରତରେ ପ୍ରଚଳିତ ନେହେରୁ ପୁରସ୍କାର ପାଇଥିଲା। ତାର ସାରାଂଶ ରୁଷ୍ ଭାଷାରେ ଅନୁଦିତ ହୋଇଥିଲା ବୋଲି ଶୁଣିଲି। ୧୯୬୭ରେ ଗୋଟିଏ ତିନିଜଣିଆ ଭାରତୀୟ ବୁଦ୍ଧିଜୀବୀ ଦଳର ସଭ୍ୟ ହିସାବରେ ମୋତେ ସୋଭିଏତ୍ ରୁଷ୍ ଯିବା ପାଇଁ ପୁଣି ନିମନ୍ତ୍ରଣ ମିଳିଲା। ମୋ ସହିତ ଅନ୍ୟ ଦୁଇଜଣ ହେଲେ ମହାରାଷ୍ଟ୍ରର ଅବସରପ୍ରାପ୍ତ ସ୍ୱାସ୍ଥ୍ୟ ଡିରେକ୍ଟର ଡକ୍ଟର ଶାହା ଏବଂ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ହିନ୍ଦି ଅଧ୍ୟାପକ ଓ ସାହିତ୍ୟ ସମାଲୋଚକ ଅଧ୍ୟାପକ ଡକ୍ଟର ନଗେନ୍ଦ୍ର। ଭାରତ-ରୁଷ୍ ମୈତ୍ରୀ ସଂସଦର କେନ୍ଦ୍ର ପରିଷଦ ମୋତେ ଏଥିପାଇଁ ନିମନ୍ତ୍ରଣ କରିଥିଲେ।

ଆମେ ତିନିଜଣଯାକ ଶିକ୍ଷାବିତ୍ ଥିଲୁ ତେଣୁ ଆମେ ବହୁତ ବିଶ୍ୱବିଦ୍ୟାଳୟ ଓ ଗବେଷଣା କେନ୍ଦ୍ରମାନ ପରିଦର୍ଶନ କଲୁ। ଏହିଥର ରୁଷ୍ ଦେଶର ଶିକ୍ଷା ଓ ଗବେଷଣାଗତ ବିଷୟମାନ ଆମେମାନେ ଗଭୀର ଭାବରେ ଅନୁଧ୍ୟାନ କରିପାରିଥିଲୁ। ରୁଷ୍ ଦେଶ ସାର୍ବଜନୀନ ଶିକ୍ଷା ପ୍ରତି ବିଶେଷ ଗୁରୁତ୍ୱ ଦିଏ ଏବଂ ଏହାର ଶିକ୍ଷା ପଦ୍ଧତି ଯେ ପୃଥିବୀର ସର୍ବଶ୍ରେଷ୍ଠ ସାମାଜିକ ଅନୁଷ୍ଠାନ, ଏଥିରେ ମୋର ସନ୍ଦେହ ରହିଲା ନାହିଁ। ତା'ପରେ ମୁଁ ଯେତେବେଳେ ପାଶ୍ଚାତ୍ୟ ଦେଶରେ ବିଶ୍ୱବିଦ୍ୟାଳୟମାନଙ୍କରେ ବକ୍ତୃତା ଦିଏ ସୋଭିଏତ୍ ରୁଷ୍‌ର ଶିକ୍ଷା କାର୍ଯ୍ୟକର୍ମର ବହୁଳ ଉଦାହରଣ ଦେଇ ପ୍ରତିପାଦିତ କରେ ଯେ ଏହା କିପରି ସେମାନଙ୍କ ଦେଶର ଶିକ୍ଷା ଯୋଜନାଠାରୁ ଉତ୍କୃଷ୍ଟତର। ସେମାନେ ମଧ୍ୟ ମୋ ସହିତ ଏ ବିଷୟରେ ପ୍ରାୟ ଏକମତ ହୁଅନ୍ତି।

ଗୋଟିଏ ବିଶେଷ ସାମାଜିକ ତ୍ରୁଟି ଏଠାରେ ମୁଁ ଲକ୍ଷ୍ୟ କରିଥିଲି। ମୁଁ ଯେଉଁ ମନୋବିଜ୍ଞାନୀମାନଙ୍କ ସହିତ ଆଲୋଚନା କରୁଥିଲି ସେମାନଙ୍କ ସହିତ ଚିଠିପତ୍ର ଆଳାପ ପାଇଁ ଠିକଣା ମାଗିଲେ ସେମାନେ ସବୁବେଳେ ତାଙ୍କ ଡିରେକ୍ଟର କିମ୍ବା ବିଭାଗୀୟ ମୁଖ୍ୟର ଠିକଣା ଦିଅନ୍ତି। ମୁଁ ବୁଝିଲି, ସେମାନଙ୍କ ପାଖକୁ ସିଧାସଳଖ ଚିଠିପତ୍ର ଆଦାନପ୍ରଦାନ କରିବା ସମ୍ଭବ ନୁହେଁ। ଏଥିରେ ମୋର ଗଭୀର ଦୁଃଖ ହେଲା। ଏ ପ୍ରକାର ଅନୁଭୂତି ମୋର ପୃଥିବୀର କୌଣସି ସ୍ଥାନରେ ହୋଇନଥିଲା। ଏହା ସୋଭିଏତ୍ ରୁଷ୍‌ର ଗୋଟିଏ ଦୁଃଖଦାୟକ ଦିଗ ବୋଲି ମୋର ମନେହେଲା। ଏତେବର୍ଷର ଅଗ୍ରଗତି ପରେ ମଧ୍ୟ ଏପରି ପ୍ରଗତିଶୀଳ ଦେଶରେ ଏ ପ୍ରକାର ନିୟନ୍ତ୍ରଣ ଅସମୀଚୀନ ମନେହେଲା। ସୋଭିଏତ୍ ରୁଷରେ ବିଦେଶୀମାନଙ୍କର ସ୍ୱାଧୀନ ଭ୍ରମଣ ସମ୍ଭବ ନଥିବା କଥା ମଧ୍ୟ ଅନୁଭବ କଲି। ସୋଭିଏତ୍ ରୁଷ୍‌ର ପ୍ରତ୍ୟେକ ନାଗରିକଙ୍କଠାରେ ନିଜର ଚିହ୍ନଟ କାର୍ଡ଼ ଥାଏ। ହୋଟେଲରେ ରହିଲେ ଆମମାନଙ୍କଠାରୁ ପାସ୍‌ପୋର୍ଟ ନେଇଗଲା ପରି ସେମାନଙ୍କର ଚିହ୍ନଟ କାର୍ଡ଼ଟିକୁ ମଧ୍ୟ ହୋଟେଲ୍ କର୍ତ୍ତୃପକ୍ଷ ନେଇଯା'ନ୍ତି। ଆମ ଦେଶରେ ଏପରି କାର୍ଡ଼ ପ୍ରଚଳିତ ନଥିବା କଥା ଶୁଣି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ। ବିପ୍ଳବର ପ୍ରାରମ୍ଭିକ ପରିସ୍ଥିତିରେ ବ୍ୟକ୍ତିଗତ ସ୍ୱାଧୀନତାରେ ଯେପରି କଟକଣା ଥିଲା ତାହା ଆଜିପର୍ଯ୍ୟନ୍ତ ରହିବା କେତେ ନିରର୍ଥକ ଏହା ବୋଧହୁଏ ଏମାନେ ହୃଦୟଙ୍ଗମ କରିପାରିନାହାନ୍ତି।

ଯେକୌଣସି ସଭ୍ୟ ଦେଶରେ ଶିକ୍ଷା ଲାଗି ପ୍ରଚୁର ଅର୍ଥ ବ୍ୟୟ କରାଯାଏ, ଶିକ୍ଷକ ପ୍ରତି ପ୍ରଗାଢ଼ ସମ୍ମାନ ଦେଖାଯାଏ, ବିଜ୍ଞାନ ଶିକ୍ଷାର ପ୍ରସାର ଲାଗି ଅଦମ୍ୟ ଚେଷ୍ଟା କରାଯାଏ। କିନ୍ତୁ ସୋଭିଏତ୍ ରୁଷ୍‌ର ଶିକ୍ଷା ପଦ୍ଧତି ଓ ଶିକ୍ଷକମାନଙ୍କ ପ୍ରତି ସାମାଜିକ ତଥା ସରକାରୀ ସମ୍ମାନ ପଛରେ ଯେଉଁ ବିରାଟ ଆଦର୍ଶ ଓ ସାମାଜିକ ଦର୍ଶନ କାମ କରୁଛି ତାହା ଆଉ କେଉଁଠି ଦେଖିବାକୁ ମିଳେ ନାହିଁ। ଏହି ଆଦର୍ଶର ଦ୍ୱିଧାହୀନ ଦିଗ୍‌ଦର୍ଶନ ଓ ସାରା ସମାଜର ଏକନିଷ୍ଠ ଏକାଗ୍ରମନ୍ୟତା ଯୋଗୁଁ ଶିକ୍ଷାର ଏହି ବୈପ୍ଲବିକ କାର୍ଯ୍ୟକ୍ରମ ନିର୍ଦ୍ଦିଷ୍ଟ ମାର୍ଗରେ ପରିଚାଳିତ ହୋଇପାରୁଛି। ଏଥିରେ ବ୍ୟକ୍ତିଗତ ବ୍ୟର୍ଥତା କି ସାମାଜିକ ବିଦ୍ରୋହର ଆତ୍ମଘାତୀ ଅରାଜକତା ନାହିଁ। ଆସନ୍ତା ୨୦ବର୍ଷ କିମ୍ବା ୫୦ବର୍ଷ ପରେ ଶିକ୍ଷାର ରୂପରେଖ କ'ଣ ହେବ ସେ ବିଷୟରେ ପ୍ରତ୍ୟେକ ରୁଷ୍ ଶିକ୍ଷାବିତ୍ ତଥା ନାଗରିକର ପରିଷ୍କାର ଧାରଣା ରହିଛି। ସମାଜବାଦୀ ଚେତନାରେ ସେମାନେ ଏପରି ଉଦ୍‌ବୁଦ୍ଧ ଯେ ଆଗାମୀ ଯୁଗର ବୈପ୍ଲବିକ ଆଦର୍ଶ ସେମାନଙ୍କୁ ବିଚଳିତ କରିପାରୁନାହିଁ। ଫଳରେ ଶିକ୍ଷାର ରୂପରେଖ ବିଷୟରେ କାହାରି ସନ୍ଦେହ ନାହିଁ। ସମାଜବାଦୀ ନୈତିକତା, ବୈଜ୍ଞାନିକ ଦୃଷ୍ଟିକୋଣ; ଆନ୍ତର୍ଜାତିକ ମନୋଭାବ ଓ ବିଶ୍ୱଶାନ୍ତି ଲାଗି ଆନ୍ତରିକ ପ୍ରତ୍ୟୟ ସୃଷ୍ଟି କରିବାର ମୌଳିକ ନୀତି ଉପରେ ଶିକ୍ଷା ପଦ୍ଧତିକୁ ପ୍ରତିଷ୍ଠିତ କରି ସାମ୍ୟବାଦ ପ୍ରତିଷ୍ଠା ପାଇଁ ଯେପ୍ରକାର ବଳିଷ୍ଠ ପ୍ରେରଣା ଓ ଆତ୍ମବିଶ୍ୱାସର ଆବଶ୍ୟକତା ରହିଛି ତାହା ସୋଭିଏତ୍ ସମାଜର ଶିକ୍ଷା କାର୍ଯକ୍ରମରେ ଯେ ଅତି ସ୍ପଷ୍ଟ ଭାବରେ କାର୍ଯ୍ୟ କରୁଛି ଏହା ଯେ କୌଣସି ପର୍ଯ୍ୟଟକର ଆଖିରେ ପଡ଼େ। ସୋଭିଏତ୍ ଶିକ୍ଷାର ଏହି ବିରାଟ ମୂଲ୍ୟବୋଧ ଓ ମହାନ୍ ଐତିହାସିକ ଉଦ୍ଦେଶ୍ୟ ଯୋଗୁଁ ଏହା ଅଗ୍ରଗାମୀ ବିଶ୍ୱ-ଜନତାର ସଂସ୍କୃତି ଓ ବିଶ୍ୱଶାନ୍ତି ପାଇଁ ଅମୂଲ୍ୟ ଅବଦାନ ରୂପେ ଆନ୍ତର୍ଜାତିକ ଦରବାରରେ କ୍ରମେ ସ୍ୱୀକୃତି ଲାଭ କରୁଛି।

ବିଜ୍ଞାନ ଓ ଅନ୍ତରୀକ୍ଷ ଯାନ ସମ୍ବନ୍ଧୀୟ ଗବେଷଣା ସମଗ୍ର ବିଶ୍ୱକୁ ଚମକୃତ କରିଦେଇଛି। ଆମେରିକାର ବୈଜ୍ଞାନିକମାନେ ୧୯୫୭ ଅକ୍ଟୋବର ୪ ତାରିଖରେ ରୁଷ୍‌ର ପ୍ରଥମ ଅନ୍ତରୀକ୍ଷଯାନର ଅଭୂତ କୃତିତ୍ୱ ପାଇଁ ସୋଭିଏତ୍ ବିଜ୍ଞାନକୁ ଅତ୍ୟନ୍ତ ପ୍ରଶଂସା କରିଥିଲେ। ସେତେବେଳେ ସେମାନେ ରୁଷ୍ ଗବେଷଣାର ବହୁ ପଛରେ ଥିଲେ ବୋଲି ସ୍ୱୀକାର କରିଥିଲେ। ବର୍ତ୍ତମାନ ସୁଦ୍ଧା ଅନ୍ତରୀକ୍ଷ ଗବେଷଣା କ୍ଷେତ୍ରରେ ରୁଷ୍ ଅନ୍ୟମାନଙ୍କଠାରୁ ଆଗରେ ରହିଛି ବୋଲି ପାଶ୍ଚାତ୍ୟ ବୈଜ୍ଞାନିକମାନେ କହନ୍ତି। ପ୍ରଥମ ଅନ୍ତରୀକ୍ଷଚାରୀ ୟୁରି ଗାଗାରିନ୍‌ଙ୍କୁ ସମ୍ମାନ ଦେଖାଇବା ପାଇଁ ଏବଂ ଦେଶବାସୀଙ୍କୁ ଏଥିରେ ଉଦ୍‌ବୁଦ୍ଧ କରିବାପାଇଁ ଏପ୍ରିଲ୍ ୧୨ ତାରିଖ 'କସ୍ମୋନଟ୍ ଦିବସ' ନାମରେ ସର୍ବସାଧାରଣ ଛୁଟି ଦିବସ ରୂପେ ପ୍ରତିବର୍ଷ ପାଳିତ ହେଉଛି। ଏହାଦ୍ୱାରା ସୋଭିଏତ୍ ସମାଜ ଅନ୍ତରୀକ୍ଷଚାରୀମାନଙ୍କୁ ସର୍ବଶ୍ରେଷ୍ଠ ସାମାଜିକ ସମ୍ମାନ ଦେଖାଇଛି। ସମ୍ମାନିତ ନାଗରିକ ରୂପେ ଏମାନେ ସୋଭିଏତ୍ ରାଷ୍ଟ୍ର ପକ୍ଷରୁ ଦେଶ ବିଦେଶକୁ ପରିଭ୍ରମଣରେ ଯାଉଛନ୍ତି। ଏହି ବିଶିଷ୍ଟ ଅନ୍ତରୀକ୍ଷ ଯାତ୍ରୀମାନେ ରୁଷ୍ ପିଲାଙ୍କୁ ତାଙ୍କ ଅଭିଜ୍ଞତା ବିଷୟରେ ଶିକ୍ଷା ଦେଉଛନ୍ତି।

ସମାଜବାଦୀ ଦେଶର ସାମାଜିକ ସଂସ୍ଥା, ବୈଜ୍ଞାନିକ ଦୃଷ୍ଟିକୋଣ ଓ ବଳିଷ୍ଠ ଦର୍ଶନ ଫଳରେ ମାତ୍ର କେତେବର୍ଷ ଭିତରେ ବିଜ୍ଞାନ ଯେପରି ଆଗେଇ ପାରିଛି, ଏହି ଶତାବ୍ଦୀର ଶେଷ ବେଳକୁ ବିଜ୍ଞାନ କ୍ଷେତ୍ରରେ ସୋଭିଏତ୍ ଯେ ରୁଷ୍ ପୃଥିବୀରେ ସର୍ବଶ୍ରେଷ୍ଠ ଆସନ ଅଧିକାର କରିପାରିବ, ଏଥିରେ କାହାରି ସନ୍ଦେହ ନାହିଁ । ବିଜ୍ଞାନ ଯୁଗରେ ଯେଉଁ ଦେଶ ବିଜ୍ଞାନରେ ଶୀର୍ଷସ୍ଥାନ ଅଧିକାର କରିପାରିବ ସେହି ଦେଶ ଅର୍ଥନୈତିକ, ଶୈକ୍ଷିକ ଓ ସାଂସ୍କୃତିକ କ୍ଷେତ୍ରରେ ମଧ୍ୟ ଯେ ଶ୍ରେଷ୍ଠ ସ୍ଥାନ ଅଧିକାର କରିବ, ଏହା କହିବା ବାହୁଲ୍ୟ ମାତ୍ର ।

୧୯୧୭ ବିପ୍ଳବ ପରେ ଯେତେବେଳେ ଲୋକେ ନାନା ଅସୁବିଧାରେ ଥିଲେ, ଲେନିନ୍ ସେମାନଙ୍କୁ ଏପରି ଭାବରେ ନିବେଦନ କରିଥିଲେ– ''ଆମେ ବୟସ୍କ ଲୋକେ କଷ୍ଟରେ ଚଳିପାରିବା ଏବଂ ଆମର ଲହୁଣି ଟିକକ, ଚିନି ଏବଂ ଅଟା ଗଣ୍ଡିକ ଆମ ପିଲାଙ୍କୁ ପ୍ରଥମେ ଦେବାକୁ ହେବ ।''

ଏଠାରେ ଯେପରି ସର୍ବସମ୍ମତ ସାମାଜିକ ଆଇନ୍ ଗୃହୀତ ହୋଇଯାଇଛି ଯେ, ସୋଭିଏତ୍ ଦେଶର ଯାହା ସବୁଠୁ ଭଲ, ସବୁଠୁ ସୁନ୍ଦର ଓ ଆନନ୍ଦଦାୟକ, ତାହା ଶିଶୁମାନଙ୍କ ପାଇଁ ଛାଡ଼ି ଦିଆଯିବ । ଗୋଟିଏ ଅଞ୍ଚଳର ସବୁଠୁ ଭଲ ଘର, ସ୍କୁଲ କିମ୍ବା କ୍ଲବ ପାଇଁ ଛାଡ଼ି ଦିଆହୁଏ-ଦେଶର ବିଭିନ୍ନ ରମଣୀୟ ସ୍ଥାନମାନଙ୍କରେ ଶିଶୁମାନଙ୍କର ଅବସର ବିନୋଦନ ପାଇଁ ଅତି ସୁନ୍ଦର ବ୍ୟବସ୍ଥା ହୋଇଛି । ଖରା ଛୁଟିରେ ମାସେ ଦି'ମାସ କାଳ ଏଠାରେ ନାନାପ୍ରକାର ଆମୋଦଦାୟକ କାର୍ଯ୍ୟ ଭିତରେ ସେମାନେ ସମୟ କଟାନ୍ତି । ସେମାନଙ୍କ ପାଇଁ ବହୁତ ପ୍ରକାର ପତ୍ରପତ୍ରିକା, ବହି ସିନେମା, ଥିଏଟର୍ ବିଶେଷ ଯତ୍ନର ସହିତ ବନ୍ଦୋବସ୍ତ କରାହୋଇଥାଏ । ପ୍ରତି ଜୁନ୍ ପହିଲାଦିନ ସାରା ଦେଶରେ ଶିଶୁ ଦିବସ ପାଳିତ ହୁଏ ଏବଂ ଏହା ଏପରି ଜାକଜମକରେ ପାଳିତ ହୁଏ, ଯେ ଶିଶୁମାନେ ବର୍ଷର ସେହି ଦିନଟି ପାଇଁ ଆଗ୍ରହର ସହିତ ଅପେକ୍ଷା କରି ରହିଥାନ୍ତି ।

ଶିଶୁମାନଙ୍କର ସର୍ବବିଧ ଉନ୍ନତି, ସେମାନଙ୍କଠାରେ ମୌଳିକ ପ୍ରତିଭାର ବିକାଶ ଓ ସେମାନଙ୍କୁ ନୂତନ ମଣିଷ କରି ଗଢ଼ିବା ଲାଗି ଯେଉଁ ବ୍ୟାପକ ଉଦ୍ୟମ ସୋଭିଏତ୍ ରୁଷରେ ହେଉଛି ତାହା ଦେଖିଲେ ସହଜରେ ବୁଝିହେବ ଯେ ଏହି ଜାତି କାହିଁକି ଏତେ ଅଳ୍ପ ବର୍ଷ ଭିତରେ ଶିକ୍ଷା, ସଂସ୍କୃତି, ବୈଜ୍ଞାନିକ ଉଦ୍ଭାବନ, ନାଚଖେଳ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ପୃଥିବୀରେ ଶୀର୍ଷସ୍ଥାନ ଅଧିକାର କରିବାକୁ ଯାଉଛି । ଗର୍କୀଙ୍କ ଭାଷାରେ ଶିଶୁମାନେ ଜୀବନର ପୁଷ୍ପଗୁଚ୍ଛ ଏବଂ ଏହି ପୁଷ୍ପଗୁଚ୍ଛର ମହକ ପାଇବାକୁ ହେଲେ ବଗିଚାର ମାଳୀକୁ ଯେପରି ଅକ୍ଳାନ୍ତ ପରିଶ୍ରମ କରିବାକୁ ହୁଏ, ସୋଭିଏତ୍ ଜନସମାଜ ସେହିପରି ଭାବରେ ଶିଶୁମାନଙ୍କଠାରେ ଗଭୀର ସୃଜନଶୀଳତାର ସୌରଭ ବିକଶିତ କରିବା ପାଇଁ ସୋଭିଏତ୍ ସମାଜର ପ୍ରତ୍ୟେକ ଅଂଶକୁ ପିଲାଙ୍କ ପାଇଁ ଉପଯୁକ୍ତ ଭାବରେ ସଜାଡ଼ି ସେମାନଙ୍କ ଜୀବନରେ ସମାଜବାଦୀ ଜୀବନୀକା ସଞ୍ଚାର କରିପାରିଛି । ତେଣୁ ଭବିଷ୍ୟତରେ ସୋଭିଏତ୍ ସମାଜ ଯେ ପ୍ରତିଭାର ଦିଗନ୍ତ ପ୍ରସାରୀ ସୌରଭରେ ଉଲ୍ଲସି ଉଠିବ ଏବଂ ସାରା ପୃଥିବୀର ଜନ ସମାଜକୁ ତାର ସୌରଭର ମାଦକତାରେ ମୁଗ୍ଧ କରିବ ଏଥିରେ ସନ୍ଦେହ ନାହିଁ ।

# ଚୀନ୍

୧୯୮୦ ମସିହାରେ ଭାରତ-ଚୀନ୍ ମୈତ୍ରୀ ସଂଘ ତରଫରୁ ଓଡ଼ିଶାରୁ ଗୋଟିଏ ପ୍ରତିନିଧି ଦଳ ଚୀନ୍ ଯାଇଥିଲା । ସେମାନଙ୍କ ମଧ୍ୟରେ ମୁଁ ଜଣେ । ଅନ୍ୟମାନେ ହେଲେ ସର୍ବଶ୍ରୀ ମନମୋହନ ମିଶ୍ର, ଗିରିଜା ଭୂଷଣ ପଟ୍ଟନାୟକ, ରବୀନ୍ଦ୍ରନାଥ ପାଣିଗ୍ରାହୀ ଓ ଅବିର ପାଢ଼ୀ । ପୃଥିବୀର ସାମ୍ରାଜ୍ୟବାଦୀ, ପୁଞ୍ଜିପତି ଦେଶ, ପାଶ୍ଚାତ୍ୟ ଜନମଙ୍ଗଳ ରାଷ୍ଟ୍ର ଓ କମ୍ୟୁନିଷ୍ଟ ସୋଭିଏତ୍ ରୁଷ୍ ଦେଖିଲା ପରେ ଏସିଆ ମହାଦେଶର ଶତାଧିକ କୋଟି ଅଧିବାସୀଙ୍କର ବିରାଟ ସମାଜବାଦୀ ଭୂଖଣ୍ଡ ଦେଖିବା ପାଇଁ ଆଗ୍ରହ ରହିବା ସ୍ୱାଭାବିକ । ଭାରତ ୧୯୪୭ରେ ସ୍ୱାଧୀନ ହେଲା । ଚୀନ୍ ଭୟଙ୍କର ଗୃହଯୁଦ୍ଧ ଭିତର ଦେଇ ଅଗଣିତ ଜନତାର ଚରମ ସ୍ୱାର୍ଥତ୍ୟାଗ ଫଳରେ ୧୯୪୯ ରେ ସମାଜବାଦୀ ଦେଶ ହିସାବରେ ଜନ୍ମଲାଭ କଲା । ଭାରତ-ଚୀନ୍ ମଧ୍ୟରେ ଗୋଟିଏ ତୁଳନାତ୍ମକ ବିଶ୍ଳେଷଣ କରିବା ମୋର ଅଭିପ୍ରାୟ ଥିଲା । ଅବଶ୍ୟ ଭାରତ ଓ ଚୀନ୍‌ର ସ୍ୱାଧୀନତା ପରର ଯୋଜନାରେ ବହୁତ ତଫାତ୍ ରହିଛି । ଏ ସଂପର୍କରେ ଗୋଟିଏ କଥା ମନେପଡୁଛି । ଆମେ ଗଲାବେଳେ କଟକ ଷ୍ଟେସନରେ ବହୁ ବନ୍ଧୁ ଆମମାନଙ୍କୁ ଶୁଭେଚ୍ଛା ଜଣାଇବା ପାଇଁ ଏକତ୍ରିତ ହୋଇଥିଲେ । ସେମାନଙ୍କ ଭିତରୁ ଜଣେ ଓକିଲ ବନ୍ଧୁ ମୋତେ କହିଥିଲେ—

'ଆପଣ ତ ଭାରତରେ ଗୋଟିଏ ବିପ୍ଳବ ଦେଖିଛନ୍ତି, ଚୀନ୍‌ରେ ଆଉ ଗୋଟିଏ ବିପ୍ଳବର ଫଳାଫଳ ଦେଖିବେ ।'

ଏହାଶୁଣି ମୋର ଏଗାର-ବାର ବୟସର ନାତି ସିଦ୍ଧାର୍ଥ ଯେ କି ବହୁତ ଇତିହାସ ବହି ସବୁବେଳେ ପଢ଼େ, ମୋତେ କହିଥିଲା—'ଅଜା ଭାରତରେ ତ ବିପ୍ଳବ ହୋଇନଥିଲା, କେବଳ ମାତ୍ର କ୍ଷମତା ହସ୍ତାନ୍ତର ହୋଇଥିଲା । ତାହାତ ବିପ୍ଳବ ନୁହେଁ ।' ମୋର ଓକିଲ ବନ୍ଧୁ ମୋତେ ଆଶ୍ଚର୍ଯ୍ୟ ହୋଇ ପଚାରିଥିଲେ ଯେ, ସେ ପିଲା କିପରି ଏତେ ବଡ଼ କଥା କହୁଛି ? ସେ ଠିକ୍ ସାର କଥାଟିଏ କହିଥିଲା । ମୁଁ ମଧ୍ୟ ମୋ ନାତି ସହିତ ଏକମତ । ଭାରତରେ ବିପ୍ଳବ ନ ହୋଇ ଦିଲ୍ଲୀରେ କେବଳ ରାଜନୈତିକ କ୍ଷମତା ହସ୍ତାନ୍ତର ହୋଇଥିବାରୁ ଭାରତୀୟ ଜନତାର ସ୍ୱପ୍ନ ଓ ସ୍ୱାର୍ଥତ୍ୟାଗ ସମ୍ପୂର୍ଣ୍ଣ ଭାବରେ ପ୍ରତାରିତ ହୋଇଥିଲା ।

ଆମମାନଙ୍କୁ ରେଙ୍ଗୁନ୍ ବାଟଦେଇ ଯିବାକୁ ହୋଇଥିଲା । ରେଙ୍ଗୁନ୍ ଉଡ଼ାଜାହାଜ ଘାଟିରେ ଏବଂ ସହର ଭିତରେ ବହୁ କଟକଣା ଦେଖିବାକୁ ମିଳିଲା । ବର୍ମା ଦେଶଟି ସାରା ପୃଥିବୀରୁ ପୂରାପୂରି ବିଚ୍ଛିନ୍ନ ହୋଇ ଗୋଟିଏ କ୍ଷୁଦ୍ର ଶାସକଗୋଷ୍ଠୀଙ୍କ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ଆୟତ୍ତ ହୋଇରହିଥିବା କଥା ଜଣାଗଲା । ସେଠାକାର କେତେକ ଲୋକ ବର୍ମାର ଚରମ ରାଜନୈତିକ ଓ ଅର୍ଥନୈତିକ ଦୁରବସ୍ଥା କଥା ବର୍ଣ୍ଣନା କରିଥିଲେ । ରେଙ୍ଗୁନ୍ ସହରର ପ୍ରାଚୁର୍ଯ୍ୟ ଭିତରେ ଭାରତ ପରି ଦାରିଦ୍ର୍ୟର ବିକଟାଳ ରୂପ ଆଖିରେ ପଡ଼ିଥିଲା । ରେଙ୍ଗୁନ୍ ସହରଟି ଅବଶ୍ୟ ବହୁତ ସୁନ୍ଦର । ସେଠାର ବିଶ୍ୱବିଖ୍ୟାତ ପାଗୋଡ଼ାର ଦୃଶ୍ୟ ମନରୁ ଲିଭିବାର ନୁହେଁ । ଅତି ସୁନ୍ଦର ପରିବେଶ ଭିତରେ ଏହି ପାଗୋଡ଼ାଟି ଗୋଟିଏ ପାହାଡ଼ ଉପରେ ନିର୍ମିତ । ଏହା ବହୁ ମନ୍ଦିରର ସମଷ୍ଟି । ଏହାର ବେଢ଼ା ଭିତର ଏତେ ପରିଷ୍କାର ଯେ, ଯେ କୌଣସି ଲୋକ ଏହାର ପ୍ରଶସ୍ତ ଅଗଣାମାନଙ୍କରେ ଯେ କୌଣସି ସ୍ଥାନରେ ତଳେ ପଦ୍ମାସନରେ ବସି ଧ୍ୟାନ କରୁଥାଏ । କୌଣସି ସ୍ଥାନରେ ଟିକେ ଧୂଳିମଳି ଦେଖିବାକୁ ନାହିଁ ।

ମୋର ଜଗନ୍ନାଥ ଓ ଲିଙ୍ଗରାଜ ମନ୍ଦିରର ଧୂଳିଧୂସର ମଇଳା ବେଢ଼ା କଥା ମନେପଡ଼ିଗଲା । ପାଗୋଡ଼ା ଭିତରେ ପଶିଗଲାକ୍ଷଣି ଚାରିଆଡ଼େ ଏ ପ୍ରକାର ପରିଷ୍କାର ପରିଚ୍ଛନ୍ନତା ଯୋଗୁ ମନରେ ଗୋଟିଏ ଆଧ୍ୟାତ୍ମିକ ଅନୁଭୂତି ଜାଗେ । ସେଠାରେ ବହୁତ ଲୋକ ବୁଦ୍ଧଙ୍କ ପରି ପଦ୍ମାସନରେ ବସି ଧ୍ୟାନ କରୁଥାନ୍ତି । ଶହ ଶହ ବୁଦ୍ଧମୂର୍ତ୍ତି ଚତୁର୍ଦ୍ଦିଗରେ ସଜ୍ଜାହୋଇ ରଖା ହୋଇଥାଏ । ଗୋଟିଏ ସ୍ଥାନରେ ହଠାତ୍ ଆଶ୍ଚର୍ଯ୍ୟ ହୋଇ ଚାହିଁ ଦେଖିଲି ଯେ ବୁହ୍ହ ବୁଦ୍ଧମୂର୍ତ୍ତି ନିକଟରେ ଦୁଇଜଣ ଲୋକ ବୁଦ୍ଧମୂର୍ତ୍ତିପରି ନିଶ୍ଚଳ ହୋଇ ପଦ୍ମାସନରେ ବସିଛନ୍ତି । ପ୍ରଥମେ ସେମାନଙ୍କୁ ମୁଁ ବୁଦ୍ଧମୂର୍ତ୍ତି ବୋଲି ଭ୍ରମ କରିଥିଲି । ଠିକ୍ ଧଳା ମାର୍ବଲ୍ ପଥର ମୂର୍ତ୍ତିପରି ସେମାନେ ଦେଖା ଯାଉଥିଲେ । ଏ ପ୍ରକାର ସର୍ବବ୍ୟାପୀ ନୀରବତା ଆମ ମନ୍ଦିରମାନଙ୍କରେ କ'ଣ ସମ୍ଭବ ? ବରଂ ବର୍ତ୍ତମାନ ପ୍ରତ୍ୟେକ ମନ୍ଦିରରେ ଡାକବାଜି ଯନ୍ତ୍ର ସାହାଯ୍ୟରେ ଭଗବତ୍ ପ୍ରାର୍ଥନା ଆରମ୍ଭ ହୋଇଯାଇଛି । ଆମ ଦେଶର ଦେବଦେବୀମାନେ ଶାସକବର୍ଗଙ୍କ ପରି ବୋଧହୁଏ କାଲ ହୋଇଗଲେଣି । ମୋଟାମୋଟି ଭାବରେ ରେଙ୍ଗୁନ୍ ସହରଟି ଖୁବ୍ ଭଲ ଭାବରେ ରକ୍ଷଣାବେକ୍ଷଣ ହୋଇପାରିଛି ।

ତା'ପରଦିନ ଚୀନ୍‌ର କୁନ୍‌ମିଙ୍ଗ୍ ସହର ଦେଇ ବେଜିଂରେ ପହଞ୍ଚିଲୁ । ସେଠାରେ ପହଞ୍ଚିଲାବେଳକୁ ରାତ୍ରି ପ୍ରାୟ ଏଗାରଟା । ଆମମାନଙ୍କୁ ପାଛୋଟି ନେବାପାଇଁ ଚୀନ୍ ସରକାରଙ୍କର ସାଂସ୍କୃତିକ ଉପ-ପ୍ରଧାନମନ୍ତ୍ରୀ ଆସିଥାନ୍ତି । ବିମାନ ବନ୍ଦରଠାରେ ଦେଖାଗଲା ଯେ ଆମ ଜିନିଷପତ୍ର କୁନ୍‌ମିଙ୍ଗଠାରୁ ଆମ ସହିତ ଆସିପାରି ନାହିଁ । କୁନ୍‌ମିଙ୍ଗ୍‌ରେ ଆମେ ଯେତେବେଳେ ଉଡ଼ାଜାହାଜ ବଦଳାଇଲୁ ଆମକୁ ସେଠାରେ ମହାସମାରୋହରେ ସମ୍ବର୍ଦ୍ଧନା ଦିଆ ହୋଇଥିଲା । ମୁଁ କିନ୍ତୁ ବାରମ୍ବାର ଚୀନ୍ କର୍ତ୍ତୃପକ୍ଷଙ୍କୁ ପଚାରୁଥାଏ ଆମ ଜିନିଷପତ୍ର କଥା । ସେମାନେ ନିର୍ଭର ପ୍ରତିଶ୍ରୁତି ଦେଇଥିଲେ ଯେ ଏ ଜିନିଷ ଆମମାନଙ୍କ ସାଥିରେ ଯିବ କିନ୍ତୁ ଶେଷରେ ଜିନିଷ ଆସିପାରିନଥିଲା । ଏଥିରେ ସାଂସ୍କୃତିକ ଉପ-ପ୍ରଧାନମନ୍ତ୍ରୀ ବଡ଼ ଅପ୍ରତିଭ ହୋଇପଡ଼ିଥିଲେ । ସେ ବହୁଥର କ୍ଷମା ପ୍ରାର୍ଥନା କରି କହିଥିଲେ ଯେ ଚବିଶ ଘଣ୍ଟା ଭିତରେ ଆମ ଜିନିଷ ଆମକୁ ମିଳିଯିବ । ମୋର ତାଙ୍କ କଥାରେ ବିଶ୍ବାସ ହୋଇ ନଥିଲା କାରଣ କୁନ୍‌ମିଙ୍ଗ ବେଜିଂଠାରୁ ଉଡ଼ାଜାହାଜରେ ପାଞ୍ଚଘଣ୍ଟାର ବାଟ । ତା'ଛଡ଼ା ସପ୍ତାହକୁ ଥରେ ମାତ୍ର ବେଜିଂରୁ କୁନ୍‌ମିଙ୍ଗ ଉଡ଼ାଜାହାଜ ଯାଉଥିଲା । ଯାହେଉ ତା'ପରଦିନ ସଂଧ୍ୟାସୁଦ୍ଧା ଆମ ଜିନିଷପାତ୍ର ହୋଟେଲରେ ଆଣି ପହଞ୍ଚାଇ ଦିଆ ହୋଇଥିଲା । ସରକାରଙ୍କ ତରଫରୁ ସାମରିକ ଓ କୃଷି ବିଭାଗର ଉଡ଼ାଜାହାଜ ସାହାଯ୍ୟରେ ଆମ ଜିନିଷପତ୍ର ପ୍ରାୟ ଅଠର ଘଣ୍ଟା ଭିତରେ ଆସି ପହଞ୍ଚିଗଲା । ଏହା ହେଉଛି ସେମାନଙ୍କର ଚରମ ଦାୟିତ୍ବବୋଧ ଓ ଦକ୍ଷତାର ଲକ୍ଷଣ । ତା'ପରେ ଆମେ କୁନମିଙ୍ଗ୍ ବାଟ ଦେଇ ଫେରିଲାବେଳେ ଶୁଣିଲୁ ଯେ ଯେଉଁ ଭଦ୍ରବ୍ୟକ୍ତି ଆମ ଜିନିଷପତ୍ର ଦାୟିତ୍ବରେ ଥିଲେ, ଶାସ୍ତି ସ୍ୱରୂପ ତାଙ୍କର ପଦ ସ୍ଖଳନ କରାହୋଇଛି । ସେ ବିଶିଷ୍ଟ ବ୍ୟକ୍ତିଙ୍କର ପର୍ଯ୍ୟଟନ ଦାୟିତ୍ବରେ ଥିଲେ । ତାଙ୍କୁ ସେ ସ୍ଥାନରୁ ଖସାଇ ସାଧାରଣ ଯାତ୍ରୀଙ୍କ ପାଇଁ ରଖା ହୋଇଛି । ସେ ନିଜେ ଏକଥା ଆମକୁ କହିଥିଲେ । ଏହା ଦାୟିତ୍ବ ଓ କର୍ତ୍ତବ୍ୟ ପାଳନର ଚରମ ପରୀକ୍ଷାର ଜ୍ବଳନ୍ତ ଉଦାହରଣ । ଏପରି ନିର୍ଦ୍ଦିଷ୍ଟ ଦାୟିତ୍ବ ବିଚ୍ୟୁତିପାଇଁ କୈଫିୟତ୍ ଓ ଶାସ୍ତି ବିଧାନ ଆମ ଦେଶରେ ସମ୍ଭବ

କି ? ଆମ ଦେଶର ସବୁ ଧରଣର ଦାୟିତ୍ୱହୀନତା ଯେପରି ଗଣତାନ୍ତ୍ରିକ ପରମ୍ପରାର ବୈଶିଷ୍ଟ୍ୟ ।

ଆଉ ଗୋଟିଏ ଅଦ୍ଭୁତ ଅନୁଭୂତି ପହଞ୍ଚିବା ପରଦିନ ଆମର ହୋଇଥିଲା । ଆମେ ହୋଟେଲ ଆଗରେ ଠିଆ ହୋଇଥିଲୁ । ମୁଁ ମୋର ବନ୍ଧୁଙ୍କୁ ଥଟ୍ଟାରେ କହିଲି ଯେ ଆମକୁ ଯେଉଁ ସାଂସ୍କୃତିକ ଉପ-ପ୍ରଧାନମନ୍ତ୍ରୀ ବିମାନଘାଟିକୁ ପାଛୋଟି ଆଣିବା ପାଇଁ ଯାଇଥିଲେ ସେ କିପରି ସାଇକେଲ୍‌ରେ ଆସୁଛନ୍ତି ! ମୁଁ ଥଟ୍ଟାରେ କହିଥିଲି, କାରଣ ତାଙ୍କ ପରି ଜଣେ ବୃଦ୍ଧବ୍ୟକ୍ତି ସାଇକେଲ୍‌ରେ ଆମ ହୋଟେଲ ଆଡ଼କୁ ଆସୁଥିଲେ । ସେ ପହଞ୍ଚିଲା ପରେ ଆମେ ଦେଖିଲୁ ଯେ ସେ ସତରେ ସେ ଉପ-ପ୍ରଧାନମନ୍ତ୍ରୀ । ସେ ଘରୁ ଅଫିସକୁ ଓ ଅଫିସରୁ ଘରକୁ ତାଙ୍କ ସାଇକେଲ୍‌ରେ ଯାଆନ୍ତି । କେବଳ ଅଫିସ୍ କାମରେ ଗଲାବେଳେ ଅଫିସ ଗାଡ଼ିରେ ଯା'ନ୍ତି । ଏହା ପ୍ରକୃତରେ ଗୋଟିଏ ବୈପ୍ଳବିକ ସାମାଜିକ ପରିବର୍ତ୍ତନ । ଏହା ହେଉଛି ସ୍ୱାର୍ଥତ୍ୟାଗୀ ଦେଶସେବକର ଦେଶ ଶାସନ ପଦ୍ଧତି । ସାରା ଚୀନ୍‌ରେ ସେତେବେଳକୁ ଘରୋଇ କାର୍ ନଥାଏ । ସାରା ଦେଶ ଯେପରି ସାଇକେଲ୍‌ରେ ଚାଲିଛି । ବେଜିଂ ଓ ଅନ୍ୟାନ୍ୟ ସହରରେ ସାଇକେଲ୍ ଯିବାପାଇଁ ପୃଥକ ରାସ୍ତା ରହିଛି । ଗାଁ-ଗଣ୍ଡା, ସହର, ମଫସଲ ସବୁଠି ସାଇକେଲ୍ । ତା'ପରେ ଦେଶର ଉନ୍ନତି ହେଲେ, ମୋଟରଗାଡ଼ି ବହୁ ସଂଖ୍ୟାରେ ତିଆରି ହେଲେ ଲୋକେ ମଟରଗାଡ଼ି ଚଢ଼ିବେ । ଲୋକମାନଙ୍କର ଯାତାୟତ ପାଇଁ ସୁନ୍ଦର ସୁନ୍ଦର ବସ୍ ଓ ପର୍ଯ୍ୟଟକମାନଙ୍କ ପାଇଁ ସୌଖୀନ ଭ୍ୟାନ୍ । ସାମ୍ୟବାଦୀ ଚୀନ୍‌ର ଏହା ଗୋଟିଏ ନିର୍ଦ୍ଦିଷ୍ଟ ସାମାଜିକ ବୈଶିଷ୍ଟ୍ୟ ।

ତା'ପରେ ଆମର ତିନି ସପ୍ତାହ ରହଣି କାଳରେ ବେଜିଂ, ନାନ୍‌କିଂ, ସାଙ୍ଘାଇ, କୁନମିଙ୍ଗ ପ୍ରଭୃତି ବହୁ ବିଶିଷ୍ଟ ସହର ବୁଲିଲୁ । ଅନେକଗୁଡ଼ିଏ ଗ୍ରାମ୍ୟ କମ୍ୟୁନରେ ଆଲୋଚନା ସଭାରେ ଯୋଗଦେଲୁ । ଗୋଟିଏ ମୁଖ୍ୟ ବୈଶିଷ୍ଟ୍ୟ ଆମର ଦୃଷ୍ଟିଗୋଚର ହେଲା ଯେ ସାଂସ୍କୃତିକ ବିପ୍ଳବ ଫଳରେ ସବୁ ବୁଦ୍ଧିଜୀବୀଙ୍କୁ—ଅଧ୍ୟାପକ, ଇଞ୍ଜିନିୟର, ଡକ୍ଟର ପ୍ରଭୃତି ବିଶେଷଜ୍ଞମାନଙ୍କୁ ଗ୍ରାମାଞ୍ଚଳରେ କାମ କରିବାପାଇଁ ପଠାଇ ଦିଆହୋଇଥିଲା । ପ୍ରଥମ ପର୍ଯ୍ୟାୟରେ ଏମାନଙ୍କୁ ଅଳ୍ପଦିନ ପାଇଁ ଗ୍ରାମାଞ୍ଚଳର ବାସ୍ତବ ପରିସ୍ଥିତି ସହିତ ଅଭିଜ୍ଞତା ହାସଲ କରିବା ଲାଗି ପଠାଯାଇଥିଲା । ଗ୍ରାମାଞ୍ଚଳ ଲୋକଙ୍କୁ ସାକ୍ଷର କରିବା, ସେମାନଙ୍କ ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ କାର୍ଯ୍ୟରେ ନିୟୋଜିତ ଉଦ୍ଦେଶ୍ୟରେ ଏମାନେ ପ୍ରେରିତ ହୋଇଥିଲେ । କିନ୍ତୁ କ୍ରମେ ସାଂସ୍କୃତିକ ବିପ୍ଳବ ଗୋଟିଏ କ୍ଷୁଦ୍ର କ୍ଷମତାଶାଳୀ ରାଜନୈତିକ ଗୋଷ୍ଠୀ ହାତକୁ ଚାଲିଗଲା । ସେମାନେ ସହରରେ, ବିଶ୍ୱବିଦ୍ୟାଳୟରେ ତାଙ୍କ ଦଳର ଲୋକଙ୍କୁ ଭର୍ତ୍ତି କରିଦେଲେ ଏବଂ ବହୁ ବିଶେଷଜ୍ଞ ଓ ଅଧ୍ୟାପକମାନଙ୍କୁ ଗାଁ'ରେ ଘୁଷୁରି ଗୁହାଳ ସଫା କରିବା, ଚାଷ ପ୍ରଭୃତି କାମରେ ଲଗାଇ ରଖିଲେ । ଆମେ ଗଲାବେଳକୁ ବିଶ୍ୱବିଦ୍ୟାଳୟର ଗବେଷଣାଗାର ଓ ଉଚ୍ଚଶିକ୍ଷା ଅତି ନିମ୍ନ ଅବସ୍ଥାରେ ଥିଲା । ବେଜିଂ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ମୁଖ୍ୟ ଅଧ୍ୟାପକ ମୋ ସହିତ ମୋ ହୋଟେଲରେ ଦେଖା କଲେ ସିନା, ତାଙ୍କ ବିଭାଗକୁ ଲାଜରେ ମୋତେ ନେଇ ନଥିଲେ ବୋଲି ସ୍ୱୀକାର କଲେ । ସେତେବେଳକୁ ପୁଣି ବିଶ୍ୱବିଦ୍ୟାଳୟ ଓ ଗବେଷଣାଗାର ନୂତନ ଢାଞ୍ଚାରେ ଗଠନ କରାହେଉଥିଲା ।

ସାଂସ୍କୃତିକ ବିପ୍ଳବ ଯୋଗୁ ଗ୍ରାମାଞ୍ଚଳ ଲୋକଙ୍କର ବ୍ୟକ୍ତିମର୍ଯ୍ୟାଦା ଓ ଆତ୍ମବିଶ୍ୱାସ ବହୁତ ବଢ଼ିଯାଇଥିଲା । ସେମାନେ ଖୁବ୍ ଦୃଢ଼ତା ତଥା ଗଭୀର ଆତ୍ମପ୍ରତ୍ୟୟର ସହିତ ଆମ ସହିତ କଥାବାର୍ତ୍ତା କରୁଥିଲେ । ବହୁତ ଗର୍ବର ସହିତ ତାଙ୍କ ନିଜ ନିଜ କମ୍ୟୁନର ଉତ୍ପାଦନ କ୍ଷମତା, କ୍ରମବର୍ଦ୍ଧିଷ୍ଣୁ ଲାଭାଂଶ ଓ ସାଧାରଣ ସଭ୍ୟମାନଙ୍କର ସାର୍ବଜନୀନ ଉନ୍ନତି କଥା କହୁଥିଲେ । ଅଥଚ ସହରର ଲୋକେ ଟିକେ ଉଦାସ ଜଣାପଡୁଥିଲେ । ସେମାନେ ମନ ଖୋଲି ହସୁ ନଥିଲେ ବୋଲି ଜଣାଯାଉଥିଲା । କାରଣ ବହୁଦିନ ଧରି ସେମାନେ ଗ୍ରାମାଞ୍ଚଳରେ କାମ କରିବାରୁ ସେମାନଙ୍କ ଭିତରୁ ଅନେକେ ତାଙ୍କ ନିଜ ନିଜ କ୍ଷେତ୍ରରେ ବହୁତ ପଛେଇ ଯାଇଥିଲେ । ଏଣୁ ସେମାନଙ୍କୁ ବହୁଦିନଧରି ଛାଡ଼ି ଯାଇଥିବା ବୈଷୟିକ ଓ ନିଜ ନିଜ କାର୍ଯ୍ୟ କ୍ଷେତ୍ରରେ ସେମାନଙ୍କୁ ଅଧିକ ପରିଶ୍ରମ କରିବାକୁ ପଡୁଥିଲା ।

କମ୍ୟୁନ ସଭ୍ୟମାନଙ୍କଠାରେ ଏପରି ଆତ୍ମଶକ୍ତି ଓ କାର୍ଯ୍ୟଦକ୍ଷତା ପାଇଁ ଆଗ୍ରହ ସୃଷ୍ଟି କରାଯାଇପାରିଥିଲା ଯେ ସେମାନେ ଅତି ବେଶି ଶିକ୍ଷିତ ହୋଇନଥିଲେ ସୁଦ୍ଧା କିପରି ଜଳସେଚନ, ଛୋଟ ଛୋଟ ଶିଳ୍ପ, ଉତ୍କୃଷ୍ଟ ଧରଣର ଫସଲ ଆମଦାନି ପ୍ରଭୃତି କ୍ଷେତ୍ରରେ ଦକ୍ଷତାର ସହ କାମ କରୁଥିଲେ ତାହା ଆମମାନଙ୍କୁ ଦେଖାଇଥିଲେ । ଗୋଟିଏ କମ୍ୟୁନରେ ସିମେଣ୍ଟର ଅଭାବ ମେଣ୍ଟାଇବା ପାଇଁ ତାଙ୍କ ଭିତରୁ କେତେଜଣ ଯାଇ ସିମେଣ୍ଟ କାରଖାନା ଦେଖି ପୁରୁଣା ସିମେଣ୍ଟ ତିଆରି ଯନ୍ତ୍ରପାତି କିଣିଆଣି ଗୋଟିଏ ଛୋଟିଆ ସିମେଣ୍ଟ କାରଖାନା ବସାଇପାରିଥିଲେ । ସେଠାରେ ଦିନକୁ ଏକ ଟନ୍ ସିମେଣ୍ଟ ଉତ୍ପାଦିତ ହୁଏ ଏବଂ ସେହି ସିମେଣ୍ଟକୁ ଟିଣରେ ନେଇ କାମ କରିଯାନ୍ତି । ଗୋଟିଏ ଛୋଟିଆ ଟିଣ ଘରେ ଏହି ସିମେଣ୍ଟ କାରଖାନାଟି ଚାଲିଥାଏ । ଆମର ପ୍ରତ୍ୟେକ ବ୍ଲକରେ ଏପରି ଛୋଟିଆ ସିମେଣ୍ଟ କଳ ବସାଇଲେ ଲୋକେ କେତେ ଶସ୍ତାରେ ସିମେଣ୍ଟ ପାଇପାରନ୍ତେ ।

ମୋଟାମୋଟି ଭାବରେ ଚୀନ୍ ବିପ୍ଳବ, ଜନଶକ୍ତି ଜାଗରଣ ଏବଂ ତା'ର ବିନିଯୋଗ ଅତି ସାର୍ଥକତାର ସହିତ କରିପାରିଛି ବୋଲି ମନେହେଲା । ତାଙ୍କ ସମ୍ବିଧାନରେ ଲୋକଙ୍କର କାର୍ଯ୍ୟ କରିବାର ନ୍ୟାଯ୍ୟ ଦାବିକୁ ସ୍ଥାନ ଦିଆଯିବା ଫଳରେ କୋଟି କୋଟି ଲୋକଙ୍କର ହାତ କାମରେ ଲାଗିପାରିଥିଲା । ଫଳରେ ଚଉଡ଼ା ଚଉଡ଼ା ରାସ୍ତା, ରାସ୍ତା ଦୁଇ ପାଖରେ ବହୁତ ଗଛ, ବିରାଟ ବିରାଟ ନଦୀବନ୍ଧ, ଲକ୍ଷ ଲକ୍ଷ ନୂଆ ପୋଖରୀ ଓ ହ୍ରଦ, କଳକାରଖାନା, କ୍ଷୁଦ୍ର ଶିଳ୍ପ ସଙ୍ଗଠନ ସବୁ ଗଢ଼ି ଉଠିପାରିଲା । ମଣିଷ ହାତକୁ ବ୍ୟବହାର ନ କରି କେବଳ ପେଟକୁ ଭାରତ ପରି ଯେଉଁ ଦେଶର ଶାସକମାନେ ଗଣନ୍ତି ସେମାନେ ଅନ୍ୟଦେଶକୁ ଖାଦ୍ୟପାଇଁ ଭିକ ମାଗନ୍ତି । କିନ୍ତୁ ଯେଉଁମାନେ ହାତକୁ ବ୍ୟବହାର କରନ୍ତି ସେମାନେ ଚୀନ୍ ପରି ଦେଶର ଶହେକୋଟି ଲୋକଙ୍କୁ ନିଜ ଜମିରୁ ଖାଦ୍ୟ ଯୋଗାଇପାରନ୍ତି । ଅନ୍ୟ ଦେଶରେ ଭିକ ମାଗିବା ଏମାନେ ଘୃଣା କରନ୍ତି । ପ୍ରଥମ ପର୍ଯ୍ୟାୟରେ ଭାରତ, ଦ୍ୱିତୀୟ ପର୍ଯ୍ୟାୟରେ ଚୀନ୍ । ଭାରତ ଆମେରିକାଠାରେ ହାତ ପତେଇ ଗହମ ଆଣୁଥିଲାବେଳେ ଚୀନ୍ ଗୋଟିଏ କିଲୋଗ୍ରାମ ଖାଦ୍ୟ ବି ବାହାରୁ ଆଣି ନଥିଲା । ଫଳରେ ସେ ଦେଶର ଆତ୍ମସଂଭ୍ରମ, ଆତ୍ମବିଶ୍ୱାସ କିପରି ଭାବରେ ବଢ଼ିଯାଇଥିଲା ତାହା ଦେଖିବାର କଥା । ଚୀନ୍‌ର ଯୁଗ ଯୁଗ ଧରି ଦୁଃଖଦାୟକ ପୀତନଦୀ ବର୍ତ୍ତମାନ ଏମାନଙ୍କ ଦ୍ୱାରା ସଂପୂର୍ଣ୍ଣରୂପେ ଆୟତ୍ତ ହୋଇପାରିଛି । ଗୋଟିଏ ଦୁଇଟି ବନ୍ଧ ନୁହେଁ, ବହୁ ବନ୍ଧ ପକାଇ ଏବଂ ତା'ର ଦୁଇ

ପାଖରେ ବିରାଟ ପଥର ବନ୍ଧ ହଜାର ହଜାର କିଲୋମିଟର ଧରି ବାନ୍ଧି ଏହାକୁ ଗୋଟିଏ ଶାନ୍ତ ଓ କମନୀୟ ନଦୀରେ ପରିଣତ କରାଯାଇପାରିଛି; ଖାଲି ମଣିଷ ପେଶୀର କରାମତିରେ, ଯନ୍ତ୍ର ସାହାଯ୍ୟରେ ନୁହେଁ । ସେହିପରି ଦେଶର କୌଣସିଠାରେ ଇଞ୍ଚେ ଜମି ଖାଲି ପଡ଼ିଥିବାର ଆମେ ଦେଖିବାକୁ ପାଇନଥିଲୁ । ରାସ୍ତା ଓ ରେଳ ଲାଇନ୍ ପର୍ଯ୍ୟନ୍ତ ଫସଲ ଲାଗିଛି । ବଡ଼ ବଡ଼ ପୋଖରୀ ଖୋଳା ହୋଇ ରାସ୍ତା ତିଆରି ହୋଇଛି । ପୋଖରୀରେ ମାଛ, ରାସ୍ତା କଡ଼ ପର୍ଯ୍ୟନ୍ତ ଶସ୍ୟ । ଅଥଚ ଆମ ଦେଶରେ ପ୍ରତ୍ୟେକ ରାସ୍ତା ଓ ରେଳ ଲାଇନ୍ କଡ଼ରେ ହଜାର ହଜାର ହେକ୍ଟର ଜମି ଅନୁର୍ବର ହୋଇପଡ଼ିରହିଛି । ନା ଫସଲ ନା ମାଛ, କୌଣସି ଉତ୍ପାଦନ ପାଇଁ ଏହା ଅନୁପଯୁକ୍ତ । ବ୍ରିଟିଶ ସରକାର ଆମପାଇଁ ଯେଉଁ ଆଇନ୍‌କାନୁନ୍ କରିଯାଇଛନ୍ତି ତାକୁ ଆମେ ବଦଳାଇ ପାରିଲୁ ନାହିଁ । ଏସବୁ ଅନାବାଦୀ ଜମିରେ ଶ୍ରମପାଇଁ ଖାଦ୍ୟ ଯୋଜନାରେ ପୋଖରୀ ଖୋଳି ମାଛଚାଷ ଯଦି କରାଯାଆନ୍ତା କେତେ ପୁଷ୍ଟିକର ଖାଦ୍ୟ ନ ମିଳନ୍ତା ! ଆମେ କେବଳ ଲୋକଙ୍କର ପେଟ ଗଣି ଗଣି ଚାଲିଛୁ । ହାତର ଉପଯୋଗ କରିବାର କ୍ଷମତା ବା ଇଚ୍ଛା ଆମ ଶାସକ ଗୋଷ୍ଠୀଙ୍କର ହୋଇପାରିଲା ନାହିଁ ।

ଚୀନ୍‌ର ରାଜନୈତିକ ବିପ୍ଳବ ପରେ ଏହି ବିରାଟ ଦେଶର ଜନତା ସବୁପ୍ରକାରର ଶୋଷଣରୁ ଓ ଶ୍ରେଣୀ ସଂଘର୍ଷରୁ ମୁକ୍ତିଲାଭ କଲେ । ଧନୀ, ଗରିବ, ଶିକ୍ଷିତ, ଅଶିକ୍ଷିତ, ପୁଞ୍ଜିପତି, ଶ୍ରମିକ, ସାମ୍ରାଜ୍ୟବାଦୀ, ଔପନିବେଶିକତା ପ୍ରଭୃତି ଶ୍ରେଣୀ ବିଭକ୍ତ ସାମାଜିକ ଓ ରାଜନୈତିକ ସଂସ୍ଥାର ଅନ୍ତର୍ନିହିତ ସର୍ବପ୍ରକାରର ଶୋଷଣ, ପେଷଣ ଅତ୍ୟାଚାର, ଅନାଚାରା ଓ ଅବିଚାର ସମ୍ପୂର୍ଣ୍ଣରୂପେ ଲୋପ ପାଇଲା । ତା' ଫଳରେ କୋଟି କୋଟି ନରନାରୀଙ୍କଠାରେ ଅବଦମିତ ମାନବିକ ଶକତି୍ର ସ୍ୱତଃ ଉତ୍ସରଣ ସମ୍ଭବ ହେଲା । ଗତ ୩୧ବର୍ଷ ଭିତରେ ଏହି ବିରାଟ ଶକ୍ତି କିପରି ଭାବରେ ସୁସ୍ଥ, ସୁନ୍ଦର ଓ ସ୍ୱାସ୍ଥ୍ୟକର ସାମାଜିକ ପରିବେଶ ସୃଷ୍ଟି କରିପାରିଛି ତାହା ଯେକୌଣସି ବାହାର ଲୋକଙ୍କର ଦୃଷ୍ଟି ଆକର୍ଷଣ କରିପାରିବ ।

ସେଠାରେ ଶିକ୍ଷା ପାଇଲାକ୍ଷଣି କାହାରି ଦରମା ବଢ଼ିଯାଏ ନାହିଁ । ସମସ୍ତଙ୍କୁ ଉତ୍ପାଦନଶୀଳ କାମ କରିବାକୁ ହେବ । ବାବୁ ଶ୍ରେଣୀ ସଂପୂର୍ଣ୍ଣ ରୂପେ ଲୋପ ପାଇଯାଇଛି । ଦଳେ ସବୁବେଳେ କ୍ରୀତଦାସ ପରି କାମ କରୁଥିବେ ଏବଂ ଆଉ ଦଳେ ପୁରୁଷାନୁକ୍ରମେ ଶୋଷକ ଭାବରେ ଖାଲି ଚହଲ ମାରୁଥିବେ ତାହା ଏଠାରେ ଆଉ ସମ୍ଭବ ନୁହେଁ । ସାଂସ୍କୃତିକ ବିପ୍ଳବ ସମୟରେ ଅଧ୍ୟାପକ ଶିକ୍ଷିତ ଅଫିସର ଗୋଷ୍ଠୀ, ଡକ୍ଟର, ଇଞ୍ଜିନିୟର, ସମସ୍ତେ ଗାଁ'କୁ ଯାଇ ଚାଷବାସ, ପ୍ରଭୃତି ସବୁପ୍ରକାର କାମ କରିବାକୁ ବାଧ୍ୟ ହେଲେ । ଫଳରେ ଗତ କେତେବର୍ଷ ଭିତରେ ଏହି ପରାଙ୍ଗପୁଷ୍ଟି ବାବୁ ଶ୍ରେଣୀଟି ସଂପୂର୍ଣ୍ଣ ରୂପେ ଲୋପ ପାଇଯାଇଛି । ଶିକ୍ଷା ପଦ୍ଧତି କାର୍ଯ୍ୟ ସଂପାଦନ ତଥା ଉତ୍ପାଦନ ପ୍ରଣାଳୀ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ଛାତ୍ରଛାତ୍ରୀମାନେ ପ୍ରତି ମାସରେ କିଛିଦିନ ଉତ୍ପାଦନ କାମରେ ନିଯୁକ୍ତି ଥିବା ଲୋକଙ୍କ ସହିତ କାମ କରିବାକୁ ବାଧ୍ୟ । କଳକାରଖାନାରେ ମଧ୍ୟ ସେମାନେ ଯାଇ ଶ୍ରମିକମାନଙ୍କୁ ସାହାଯ୍ୟ କରନ୍ତି । ଶିକ୍ଷା ପାଇଲେ ବୋଲି ସମାଜର ପ୍ରଚଳିତ ଆଇନର

ଊର୍ଦ୍ଧ୍ୱରେ ସେମାନେ ନୁହନ୍ତି । ଆମ ଦେଶରେ ଶିକ୍ଷା ଯେତେ ପ୍ରସାର ଲାଭ କରୁଛି ବାବୁ ଓ ଅମଲା ତାନ୍ତ୍ରିକ ଗୋଷ୍ଠୀ ସେତେ ବେଶି ବଢ଼ି ବଢ଼ି ଚାଲିଛି ।

ଚୀନ୍ ଦେଶର ଶିକ୍ଷିତ ସମ୍ପ୍ରଦାୟଙ୍କର କୌଣସି ସ୍ୱତନ୍ତ୍ର ଅଧିକାର ନାହିଁ କହିଲେ ଚଳେ । ଇଞ୍ଜିନିୟର ଓ ଅନ୍ୟାନ୍ୟ ବୈଷୟିକ ଜ୍ଞାନସମ୍ପନ୍ନ ଲୋକଙ୍କୁ ସେମାନଙ୍କର ଉତ୍ପାଦନ ବୃଦ୍ଧି କରିବାର କ୍ଷମତା ତଥା ପ୍ରକୃତ ଉତ୍ପାଦନ ଅନୁଯାୟୀ ଦରମା ଦିଆଯାଏ । ସେମାନଙ୍କଠାରୁ ଆଉ କେହି ବେଶି ପାଆନ୍ତି ନାହିଁ । ଅମଲାତାନ୍ତ୍ରିକ ବାବୁଙ୍କ ଦରମା ବେଶି ହେବା ଏ ଦେଶରେ ସମ୍ଭବ ନୁହେଁ । ରାଷ୍ଟ୍ରୀୟ ନୀତିଗତ ନିଷ୍ପତ୍ତି କେନ୍ଦ୍ରରେ ହୁଏ କିନ୍ତୁ ଉତ୍ପାଦନ ସଂପର୍କରେ ନିଷ୍ପତ୍ତି କାର୍ଯ୍ୟ ସମ୍ପାଦନ କରୁଥିବା ଗୋଷ୍ଠୀ ଭିତରେ ଆବଦ୍ଧ ହେବା ଫଳରେ ଆମ ଦେଶର ସେକ୍ରେଟାରୀଏଟ୍‌ର ଲମ୍ବା ନାଲିଫିତାର କରାମତି ଏଠାରେ ନାହିଁ କହିଲେ ଚଳେ । ସମସ୍ତେ ସେମାନଙ୍କ କାମ ପାଇଁ ସଂପୂର୍ଣ୍ଣ ଭାବେ ଦାୟୀ । କାମ ଅନୁସାରେ ଦରମା ଓ ବୋନସ୍ ନିର୍ଧାର୍ଯ୍ୟ ହୁଏ । ବିଶ୍ୱବିଦ୍ୟାଳୟ ଡିଗ୍ରୀ ଅନୁସାରେ ନୁହେଁ ।

ଚୀନ୍ ବିପ୍ଲବର ଗୋଟିଏ ବିରାଟ ସାଫଲ୍ୟ ହେଲା, ନାରୀ ସ୍ୱାଧୀନତା । ପୁରୁଷମାନଙ୍କ ପରି ସ୍ତ୍ରୀମାନେ ସବୁ କ୍ଷେତ୍ରରେ ସମାନ ଅଧିକାର ନେଇ କାମ କରୁଛନ୍ତି । କାମ ନ କରି କୌଣସି ସ୍ତ୍ରୀ ଲୋକ ଘରେ ବସି ରହେନାହିଁ । ଘରକାମ ପାଇଁ ସ୍ତ୍ରୀ ଲୋକଟିଏ କୌଣସି ଗୋଟିଏ ଉତ୍ପାଦନଶୀଳ କାମ ନ କରି ରହିଥିବ ଏହା ସେମାନେ ବୁଝିପାରନ୍ତି ନାହିଁ । ପୁରୁଷ ପରି ନାରୀମାନେ ହଜାର ହଜାର ସଂଖ୍ୟାରେ ସାଇକେଲ୍ ଚଢ଼ି କାମକୁ ଯା'ନ୍ତି । ରାତିରେ ମଧ୍ୟ ସେମାନେ କଳ କାରଖାନାରେ କାମ କରନ୍ତି । ଅବଶ୍ୟ ଯେଉଁ କାମ ସ୍ତ୍ରୀ ଲୋକମାନେ କରିପାରିବେ, ସେହି କାମ ସେମାନଙ୍କୁ ଦିଆଯାଏ । ସେମାନେ ବରଂ ୫୫ବର୍ଷରେ ପେନ୍‌ସନ୍ ପାଆନ୍ତି, ପୁରୁଷମାନେ ଷାଠିଏ ବର୍ଷରେ ପେନ୍‌ସନ୍ ପାଆନ୍ତି । ବାହାରେ ପୁରୁଷମାନଙ୍କ ସହିତ ସମାନସ୍କନ୍ଧ ଭାବରେ କାମ କରିବା ଯୋଗୁଁ ସେମାନଙ୍କର ସ୍ୱାସ୍ଥ୍ୟ ଖୁବ୍ ଭଲ । ସ୍ତ୍ରୀ ପୁରୁଷ ସମସ୍ତେ ପୂରା ପ୍ୟାଣ୍ଟ ଓ ଅଧା ସାର୍ଟ ପିନ୍ଧିଥାନ୍ତି । ପୋଷାକପତ୍ର ପରିଷ୍କାର ପରିଚ୍ଛନ୍ନ । ସେମାନଙ୍କ ଚାଲିଚଳଣ, କଥାବାର୍ତ୍ତା, ପୋଷାକପତ୍ରରେ ଗୋଟିଏ ପ୍ରକାର ସାଂସ୍କୃତିକ ସମ୍ଭ୍ରମତା ରହିଛି । ପୁରୁଷମାନେ ସେମାନଙ୍କୁ ଦେଖିଲେ ଅଯଥା ମନ୍ତବ୍ୟ ଦେବା କିମ୍ବା ଅଭଦ୍ରୋଚିତ ଭାବରେ ବଲବଲ କରି ଚାହିଁବା ପ୍ରଭୃତି ବର୍ବରୋଚିତ ବ୍ୟବହାର ଆଦୌ ଦେଖିବାକୁ ମିଳିଲା ନାହିଁ । ଝିଅମାନେ ସହରମାନଙ୍କରେ ସର୍ବସାଧାରଣଙ୍କ ଭ୍ରମଣ ଓ ଖେଳିବାପାଇଁ ତିଆରି ହୋଇଥିବା ସ୍ଥାନମାନଙ୍କରେ ରାତି ୧୦ଟା ପର୍ଯ୍ୟନ୍ତ ବ୍ୟାଡ଼ମିଣ୍ଟନ ପ୍ରଭୃତି ଖେଳ ଖେଳୁଥାନ୍ତି । ପୁରୁଷମାନେ ଠିଆ ହୋଇ ଦେଖନ୍ତି କିନ୍ତୁ ଥରେ ସୁଦ୍ଧା ଆମେମାନେ କୌଣସି ରକମର ଅଭଦ୍ରୋଚିତ ମନ୍ତବ୍ୟ, ହସ ବା ଚାହାଣୀ ଦେଖିବାକୁ ପାଇଲୁ ନାହିଁ । ଏହା ନିଶ୍ଚିତ ଭାବେ ଚୀନ୍ ସଂସ୍କୃତିର ଗୋଟିଏ ଆକର୍ଷଣୀୟ ବୈଶିଷ୍ଟ୍ୟ । ସମସ୍ତ ଚୀନବାସୀ ପ୍ରତିଦିନ ଉତ୍ପାଦନଶୀଳ ଓ ସୃଜନଶୀଳ କାମରେ ବ୍ୟାପୃତ ଥିବାରୁ ବୋଧହୁଏ ସେମାନଙ୍କଠାରେ ସ୍ୱତଃ ପରସ୍ପର ପ୍ରତି ସମ୍ମାନ ତଥା ଆନ୍ତରିକ ସ୍ନେହ ଦେଖାଯାଉଛି । ତା'ଛଡ଼ା ପୁରାତନ ଏସିୟାନ୍ ସଂସ୍କୃତିକୁ ଏମାନେ ପୁଣି ନୂତନ ଭାବରେ ଗ୍ରହଣ କରି ନେଇଛନ୍ତି । ତା' ଫଳରେ ନାରୀ ଧର୍ଷଣ କଥା ଏଠାରେ ସମ୍ଭବ ହୋଇପାରିବ ନାହିଁ । ଯଦି କଦାଚିତ ନାରୀ ଧର୍ଷଣ ହୁଏ ତାହେଲେ ଦୋଷୀକୁ ବୋଧହୁଏ ଗୁଳିକରି

ମାରଦାଆଯବ । ଆମର ଯୁବକ ତଥା ଶିକ୍ଷିତ ସମ୍ପ୍ରଦାୟ ଏ ବିଷୟରେ ଅନୁଧ୍ୟାନ କରିବା ଉଚିତ । ଖାଲି ବକ୍ତୃତାରେ ସୀତା ସାବିତ୍ରୀ କଥା ଆଉଡ଼ାଇ ନିଜକୁ ଠକିବା ଉଚିତ ନୁହେଁ ।

ଉତ୍ପାଦନ କ୍ଷେତ୍ରରେ ମଧ୍ୟ ଶୋଷଣର ପ୍ରଶ୍ନ ନାହିଁ । କେତେଗୁଡ଼ିଏ ଗ୍ରାମକୁ ନେଇ ଗୋଟିଏ ଗୋଟିଏ କମ୍ୟୁନ୍ ଗଠନ କରାହୋଇଛି । ସେଠାରେ କାର୍ଯ୍ୟକ୍ଷମ ଲୋକେ ନାନା କାମରେ ନିଯୁକ୍ତ ହୁଅନ୍ତି । ଶ୍ରମିକମାନେ କେତେଗୁଡ଼ିଏ କାର୍ଯ୍ୟ ସମ୍ପାଦନକାରୀ ଦଳରେ ବିଭକ୍ତ ହୁଅନ୍ତି, ଉତ୍ପାଦନଶୀଳ କାମ କରନ୍ତି ଏବଂ ସେହି ଅନୁସାରେ ପାରିଶ୍ରମିକ ପାଆନ୍ତି । ଦିନ ଅନୁସାରେ ନୁହେଁ ବର୍ଷ ଶେଷକୁ ସେମାନେ ସମସ୍ତେ ବସି ଠିକ୍ କରନ୍ତି କାର୍ଯ୍ୟ ସମ୍ପାଦନ ଏକକ ପାଇଁ କେତେ ମଜୁରୀ ଦିଆଯିବା ଉଚିତ । ତାହା ସମସ୍ତ ଉତ୍ପାଦିତ ଜିନିଷର ମୂଲ୍ୟ ଉପରେ ନିର୍ଭର କରେ । ତା'ପରେ ସରକାରୀ ଟିକସ ବାଦ୍ ଦେଲା ପରେ ଲାଭାଂଶରୁ ସେମାନଙ୍କୁ ବୋନସ୍ ଦିଆଯାଏ । ଶ୍ରମିକମାନଙ୍କ ପାଇଁ ସ୍କୁଲ ଡାକ୍ତରଖାନା ପ୍ରଭୃତି ସମାଜ ମଙ୍ଗଳ କାମ ଏହି ଲାଭରୁ ଖର୍ଚ୍ଚ କରାଯାଏ । କଳକାରଖାନାରେ ମଧ୍ୟ ସେହି ପଦ୍ଧତି । ଲାଭ ଅନୁସାରେ ଶ୍ରମିକମାନେ ବେଶି ପାଆନ୍ତି ଏବଂ ଏହି ଲାଭାଂଶରୁ ଅନ୍ୟାନ୍ୟ ସମାଜ ମଙ୍ଗଳ କାର୍ଯ୍ୟ ହୁଏ । ଏହା ଫଳରେ ପ୍ରତ୍ୟେକ ଶ୍ରମିକ ଆନ୍ତରିକତାର ସହ କାମ କରେ । ତା'ର ଉତ୍ପାଦନରୁ ଆଉ ଜଣେ ଲାଭ ଉଠାଇ ସହଜରେ ମଟରଗାଡ଼ି ଚଢୁନଥିବାରୁ ସେ କାମ କରିବାରେ ଆଗ୍ରହାନ୍ୱିତ ହୋଇପାରେ । ସାରା ଦେଶରେ କାହାରି ବ୍ୟକ୍ତିଗତ ଭାବରେ ମଟରଗାଡ଼ି ନାହିଁ । ସାଧାରଣ କାମ ପାଇଁ ସବୁ ଅନୁଷ୍ଠାନରେ କାର୍ ରହିଛି । ତା'ଛଡ଼ା ଟ୍ରେନ, ବସ୍ ପ୍ରଭୃତି ଖୁବ୍ ଭଲ । ସାରା ଦେଶର ଲୋକେ ପ୍ରାୟ ସାଇକେଲ୍ ଚଢ଼ିଯା'ନ୍ତି । ନବେକୋଟି ଲୋକଙ୍କ ପାଇଁ ସତୁରି କୋଟି ସାଇକେଲ୍ ଅଛି ବୋଲି ଶୁଣିଲୁ ।

ଶୋଷଣହୀନ ସମାଜରେ ଜନତା ପକ୍ଷରେ କି ଅପରିସୀମ ଶକ୍ତି ସମ୍ଭବ ହୋଇପାରେ ତାହ ଚୀନ ବୁଲି ନ ଆସିଲେ ହୃଦୟଙ୍ଗମ କରି ହେବନାହିଁ । କାମ ନ କରି ପରାଙ୍ଗପୋଷୀ ହୋଇ ଯେଉଁମାନେ ରହନ୍ତି ସେମାନଙ୍କଠାରେ ହିଁ ସବୁପ୍ରକାର ଅସାଂସ୍କୃତିକ ଢଙ୍ଗଢାଙ୍ଗ ଦେଖାଯାଏ । କାମ ନାହିଁ-ସୃଜନଶୀଳତାର ଆନନ୍ଦ ନାହିଁ-ତେଣୁ ଧ୍ୱଂସାତ୍ମକ କାର୍ଯ୍ୟାବଳୀ ଓ ଅସଂସ୍କୃତ ବ୍ୟବହାର ଛଡ଼ା ଏମାନଙ୍କଠାରେ ଆଉ କ'ଣ ଦେଖାଯିବ ?

ସଦାସର୍ବଦା କର୍ମରତ ଚୀନ୍‌ବାସୀମାନେ ବେଶ୍ ସୁସ୍ଥ, ସବଳ ଓ ସୁନ୍ଦର ଦେଖାଯାଆନ୍ତି । ଦାମିକା ପୋଷାକ ପିନ୍ଧନ୍ତି ନାହିଁ କିନ୍ତୁ ଅତି ପରିଷ୍କାର ପୋଷାକ ପିନ୍ଧନ୍ତି । ଆଶ୍ଚର୍ଯ୍ୟ କଥା ଅଧିକାଂଶ ପୁରୁଷ, ସ୍ତ୍ରୀ ଧଳା ସାର୍ଟ ପିନ୍ଧନ୍ତି । ଧଳା ସାର୍ଟ ପିନ୍ଧି ଧାଡ଼ି ଧାଡ଼ି ହୋଇ କ୍ଷେତରେ କାମ କଲାବେଳେ ଗୋଟିଏ ଧାଡ଼ି ଧଳା ବଗ ପକ୍ଷୀପରି ସେମାନେ ଦୂରରୁ ଦେଖାଯା'ନ୍ତି । ପରିଷ୍କାର ପିନ୍ଧିବା ଓ ପରିଷ୍କାର ପରିଚ୍ଛନ୍ନ ଘରେ ରହିବା ଏମାନଙ୍କ ସଂସ୍କୃତିର ବିଶେଷ ବୈଶିଷ୍ଟ୍ୟ । ପୋଷାକ ପରିଚ୍ଛଦ ଯେପରି ପରିଷ୍କାର ଏମାନଙ୍କ ରାସ୍ତାଘାଟ ମଧ୍ୟ ଚକ୍ ଚକ୍ କରୁଥାଏ । ଗଳିକନ୍ଦିରେ ଏବଂ ଗାଁ'ମାନଙ୍କରେ ରହିବା ଘର ଅତି ଛୋଟ ହୋଇପାରିଥାଏ କିନ୍ତୁ ଘର ପରିଷ୍କାର, ସାମନାରେ ଥିବା ଛୋଟ ଗଳିଟି ମଧ୍ୟ ଅତି ପରିଷ୍କାର । ପ୍ରତ୍ୟେକ ପରିବାର ଓ ପ୍ରତ୍ୟେକ ବ୍ୟକ୍ତି ରାସ୍ତାକୁ ପରିଷ୍କାର ରଖିବାର ଦାୟିତ୍ୱ ଗ୍ରହଣ କରିଛି ।

ବଡ଼ମାନେ ଯେପରି କାର୍ଯ୍ୟବ୍ୟସ୍ତ, ପିଲାମାନେ ମଧ୍ୟ କିଛି ନା କିଛି କାମ କରନ୍ତି । ରାସ୍ତାଘାଟରେ ଅଳସୁଆ ହୋଇ ବୁଲୁଥିବା ପିଲାଙ୍କୁ ଆମେ କେଉଁଠି ଦେଖିଲୁ ନାହିଁ । ଥରେ ଦେଖିଲୁ ଗୋଟିଏ ପିଲା ବୋତଲରେ ମାଛି ମାରି ରଖୁଛି । ରାସ୍ତା ପାଖ କାନ୍ଥ ବାଡ଼କୁ ଚାହିଁ ଚାହିଁ ବୁଲୁଛି ଏବଂ ଗୋଟିଏ ମାଛି ଦେଖିଲେ ଖାପ୍ କରି ଗୋଟିଏ ଜାଲି ବାଡ଼ିରେ ତାକୁ ଧରି ନେଉଛି । ବହୁତଗୁଡ଼ିଏ ମାଛି ମାରିଦେଲେ କୁଆଡ଼େ ସେଠି ପଇସା ମିଳେ ।

ଶୋଷଣହୀନ ସମାଜରେ ଲୋକେ ନିଜକୁ ଶାସନ କରନ୍ତି । ସାରା ସମାଜର ମଙ୍ଗଳ ଏପରି ଶାସନର ପ୍ରଧାନ କାମ୍ୟ । ବ୍ୟକ୍ତିବିଶେଷରେ ଲାଭ ଓ ଉପକାର ପାଇଁ ହଜାର ହଜାର ଲୋକଙ୍କର ସ୍ୱାର୍ଥକୁ ଜଳାଞ୍ଜଳି ଦିଆଯାଏ ନାହିଁ । ଆମ ଦେଶର ରାଷ୍ଟ୍ରାୟତ୍ତ ଯାନବାହନ ପ୍ରତି ଦୃଷ୍ଟି ଦେଲେ ଏହା କିପରି ଲୋକ ସ୍ୱାର୍ଥ ବିରୁଦ୍ଧରେ ତାହା ସ୍ପଷ୍ଟ ଦେଖିହୁଏ । ଲୋକେ ଭଙ୍ଗାରୁଜା ମଇଳା ବସ୍‌ରେ ବସ୍ତା ଖୁନ୍ଦିଲା ପରି ଯାଆନ୍ତି । ପ୍ରତ୍ୟେକ ବସ୍ ଓ ଟ୍ରକରୁ କଳ କାରଖାନା ପରି କଳା ଧୂଆଁ ବାହାରୁଥାଏ । ଲୋକଙ୍କର ସ୍ୱାସ୍ଥ୍ୟହାନୀ ହେଲା କି ନାହିଁ କେହି ଭାବନ୍ତି ନାହିଁ । ଯେଉଁଠି ସେଇଠି କାରଖାନାର ଧୂଆଁ ଓ ଶବ୍ଦ ଲୋକଙ୍କୁ ବ୍ୟତିବ୍ୟସ୍ତ କରେ । ବିବାହ ଭୋଜି ଏପରି କି ମନ୍ଦିର ପ୍ରାର୍ଥନା ମଧ୍ୟ ଆଜିକାଲି ଘାଉଁ ଘାଉଁ ଡାକବାଜି ଯନ୍ତ୍ର ସାହାଯ୍ୟରେ ଉଦ୍‌ବେଳିତ ହେଉଥାଏ । ଲୋକେ ଶୁଅନ୍ତୁ କି ନ ଶୁଅନ୍ତୁ, ରୋଗୀ ବଞ୍ଚୁ କି ମରୁ ଏ ବିଷୟରେ ଶାସକମାନଙ୍କର କମ୍ବା ଲୋକଙ୍କର କୌଣସି ଭାବନା ନାହିଁ । କିନ୍ତୁ ଚୀନ୍ ଦେଶରେ ଏହା ସମ୍ଭବ ହୋଇପାରିବ ନାହିଁ । ରାଷ୍ଟ୍ରାୟତ୍ତ ବସ୍‌ଗୁଡ଼ିକ ଖୁବ୍ ପରିଷ୍କାର ପରିଚ୍ଛନ୍ନ । ଲୋକେ ବସିବାକୁ ଯାଗା ପାଆନ୍ତି । ହଜାର ହଜାର ଟ୍ରକ୍, ବସ୍ ରାସ୍ତାରେ ଚାଲିଛି-କିନ୍ତୁ ଆମ ଦେଶରେ ଯେପରି ଏମାନେ ବେପରୁଆ ଭାବରେ କଳାଧୂଆଁ ଛୁଟାଇ ଚାଲିଥାନ୍ତି ତାହା ସେଠାରେ ଦେଖିବାକୁ ମିଳିଲା ନାହିଁ । ଡାକବାଜି ଯନ୍ତ୍ରର ବ୍ୟବହାର ତ ଆମେ କୌଣସିଠାରେ ଦେଖିବାକୁ ପାଇଲୁନାହିଁ । ସାଙ୍ଘାଇ ସହରରେ କୋଟିଏରୁ ଅଧିକ ଲୋକ । ସେ ସହର ଭିତରେ ଯେତେ ବଡ଼ ବଡ଼ କାରଖାନା ଥିଲା ତାକୁ କ୍ରମେ କ୍ରମେ ସହରଠାରୁ ୧୫/୨୦ କିଲୋମିଟର ଦୂରକୁ ହଟାଇ ଦିଆ ହୋଇଛି । କାରଖାନା ମଧ୍ୟ କୌଣସି ସ୍ଥାନରେ ଏକତ୍ରୀଭୂତ ଭାବରେ ରହିନାହିଁ । କାରଣ ତା' ଫଳରେ ଲୋକଙ୍କ ସ୍ୱାସ୍ଥ୍ୟ ହାନି ହେବ । ସାଧାରଣ ଲୋକଙ୍କ ସୁଖ ସୁବିଧା ଓ ସ୍ୱାସ୍ଥ୍ୟ ପ୍ରତି ଏ ପ୍ରକାର ଆୟୋଜନ କେବଳ ଲୋକ ଶାସନରେ ହିଁ ସମ୍ଭବ ।

ଚୀନ୍ ଦେଶରେ ଟ୍ରେଡ଼ ୟୁନିୟନ ଉତ୍ପାଦନ ବୃଦ୍ଧି ଓ ପ୍ରତ୍ୟେକ ଲୋକର ଉପକାର ତଥା ସାରା ଦେଶର ମଙ୍ଗଳ ପାଇଁ କାମ କରିଆସୁଛି । ଆମ ଦେଶରେ ଟ୍ରେଡ୍ ୟୁନିୟନ ଆଉ ଏକ ଶୋଷଣକାରୀ ସଂସ୍ଥା । ନିଜ ସଭ୍ୟମାନଙ୍କ ଉନ୍ନତିପାଇଁ ଯାହା ଇଚ୍ଛା ତାହା କରାଯାଇପାରେ । ସାରା ଦେଶ ଧ୍ୱଂସ ହେଉ କିନ୍ତୁ ଗୋଟିଏ ଟ୍ରେଡ୍ ୟୁନିୟନ କେବଳ ତା'ରି ଲୋକଙ୍କ ପାଇଁ ବ୍ୟସ୍ତ । ଦେଶରେ ଶତକଡ଼ା ଅଶୀଭାଗ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଥାଆନ୍ତୁ ପଛକେ, ସବୁଠୁ ବେଶି ଦରମା ପାଉଥିବା କର୍ମଚାରୀମାନଙ୍କର ଆହୁରି ଦରମା ବଢ଼ିବା ଉଚିତ । ଲୋକେ ଜୀବନବୀମା ପାଇଁ ଟଙ୍କା ଦେଇ ମଲା ବେଳକୁ କିଛି ନ ପାଆନ୍ତୁ କିମ୍ବା ବହୁତ କମ୍ ପାଆନ୍ତୁ ପଛେ, ଜୀବନବୀମା କର୍ମଚାରୀମାନେ ଆହୁରି ଆହୁରି ବେଶି ଦରମା ପାଇବା ଉଚିତ । ରୋଗୀ ମରୁ ପଛେ, ଡାକ୍ତରମାନେ ଧର୍ମଘଟ କରିବେ ।

ପିଲା ନ ପଢ଼ନ୍ତୁ ପଛେ ଶିକ୍ଷକମାନେ ସ୍କୁଲକୁ ଯିବେ ନାହିଁ । କିନ୍ତୁ ଏମାନେ ସରକାରଙ୍କୁ ଡରିଥିବେ, କେବଳ ଲୋକଙ୍କୁ ହଇରାଣ କରିବା ଏମାନଙ୍କର ପ୍ରଧାନ କାମ । ଧନ୍ୟ ଏ ଦେଶର ଟ୍ରେଡ୍ ୟୁନିୟନର ଜୀବନ ଦର୍ଶନ ।

ଚୀନ୍‌ର ଟ୍ରେଡ୍ ୟୁନିୟନ ନେତାଙ୍କ ସହିତ କଥାବାର୍ତ୍ତା ହେଲା । ସେମାନେ ସାରା ଦେଶର ଉତ୍ପାଦନ, ପ୍ରତ୍ୟେକ ଶ୍ରମିକର ଉତ୍ପାଦନ କ୍ଷମତା ଏବଂ ଚୀନ୍ ଦେଶବାସୀଙ୍କ ଜୀବନର ମାନବୃଦ୍ଧି ଓ ସେମାନଙ୍କ ନିମନ୍ତେ ମଙ୍ଗଳକର କାମପାଇଁ ଯୋଜନା କରନ୍ତି । ଟ୍ରେଡ୍ ୟୁନିୟନ ସାମୂହିକ ମଙ୍ଗଳପାଇଁ ସବୁବେଳେ ତତ୍ପର ଥିବାର ଦେଖାଗଲା । ଅନ୍ୟ ଲୋକଙ୍କୁ ଅଯଥା ହଇରାଣ କରିବାର ଯୋଜନା ଏମାନଙ୍କର ନାହିଁ ।

ମୋଟାମୋଟି ଭାବେ କହିବାକୁ ଗଲେ ଚୀନ୍ ପରି ବିରାଟ ଦେଶର ଶହେକୋଟି ଲୋକ ଯଦି ଏପରି ଭାବରେ ଜାତି ଗଠନର ମହତ ଆଦର୍ଶ ଓ ପ୍ରେରଣା ନେଇ ଶୋଷଣମୁକ୍ତ ସମାଜ ପାଇଁ କାମ କରି ଯାଆନ୍ତି ତା'ହେଲେ ସେ ଦେଶ ଓ ସମାଜ କେତେ ବଳିଷ୍ଠ ଓ ସୁନ୍ଦର ଦେଖା ନଯିବ ? ନିଜ ନିଜର ଦୃଢ଼ ଆତ୍ମପ୍ରତ୍ୟୟ ଓ ଅନବରତ ସାଂସ୍କୃତିକ ଶିକ୍ଷା ଯୋଗୁଁ ଲୋକମାନେ କିପରି ଭଦ୍ର ଓ ସଂସ୍କୃତି ସଂପନ୍ନ ଦେଖାଯାଆନ୍ତି ତାହା ଯେ କୌଣସି ବାହାରର ଲୋକଙ୍କ ଆଖିରେ ପଡ଼ିବ ।

## (ଘ) ଜାପାନ୍

(୧୯୭୨ ଜୁଲାଇରେ ଆନ୍ତର୍ଜାତିକ ମନୋବିଜ୍ଞାନ ସମ୍ମିଳନୀ ଜାପାନର ଟୋକିଓ ସହରରେ ଅନୁଷ୍ଠିତ ହୋଇଥିଲା । ମୁଁ ସେହି ସମାରୋହରେ ଦୁଇଟି ପ୍ରବନ୍ଧ ପଢ଼ିବାପାଇଁ ନିମନ୍ତ୍ରଣ ପାଇଥିଲି । ତା'ଛଡ଼ା ସେହି ଅଧିବେଶନରେ ଦୁଇଟି ବିଭାଗରେ ମଧ୍ୟ ମୋତେ ସଭାପତିତ୍ୱ କରିବାପାଇଁ ନିଯୁକ୍ତି ମିଳିଥିଲା । ତେଣୁ ମୁଁ ଜାପାନ ଯାଇଥିଲି । ଜାପାନ ଦେଖିବା ପାଇଁ ମୋର ବହୁତ ଇଚ୍ଛା ଓ ଆଗ୍ରହ ଥିଲା । ଦ୍ୱିତୀୟ ମହାଯୁଦ୍ଧରେ ଯେଉଁ ଜାପାନ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିଲା ତାହା ଗୋଟିଏ କ୍ଷୁଦ୍ର ଦେଶ ହୋଇଥିଲେ ମଧ୍ୟ ପୃଥିବୀର ସବୁ ଶିଳ୍ପ ପ୍ରଧାନ ଦେଶ ସହିତ ଅତି ଉଚ୍ଚସ୍ତରୀୟ ପ୍ରତିଯୋଗିତା କରି ଚାଲିଛି । ଗତ କେତେବର୍ଷ ଭିତରେ ଏପରି ଅଗ୍ରସର କରିଥିବା ଦେଶ ଭିତରୁ ଜାପାନ ପୃଥିବୀରେ ସର୍ବଶ୍ରେଷ୍ଠ ଦେଶ ହୋଇପାରିଛି ଏହାର ଅଗ୍ରଗତିର ଐତିହାସିକ କୃତିତ୍ୱ ଲାଗି ।

ମନୋବିଜ୍ଞାନ ଅଧିବେଶନ ଖୁବ୍ ଜାକଜମକରେ ହୋଇଥିଲା । ବହୁ ବିଖ୍ୟାତ ମନୋବିଜ୍ଞାନୀଙ୍କ ସହିତ ମୋର ପରିଚୟ ହୋଇଥିଲା । ଏଠାରେ ଗୋଟିଏ ରାତ୍ରି ଭୋଜନ ସମୟରେ ହନଲୁଲୁରେ ଥିବା ଇଷ୍ଟ-ୱେଷ୍ଟ ସେଣ୍ଟରକୁ ଗୋଟିଏ ସେମିନାରରେ ଯୋଗ ଦେବାପାଇଁ ମୁଁ ଆମନ୍ତ୍ରଣ ପାଇଥିଲି । ଏହି ଅଧିବେଶନ ଯୋଗୁ ମୋର ଆନ୍ତର୍ଜାତିକ କ୍ଷେତ୍ରରେ ଆହୁରି ବେଶି ପରିଚୟ ହୋଇପାରିଥିଲା ।

ଟୋକିଓ ସହର ପୃଥିବୀର ଗୋଟିଏ ବିରାଟ ଓ ସାଜସଜ୍ଜାରେ ଅଦ୍ୱିତୀୟ ସହର କହିଲେ ଅତ୍ୟୁକ୍ତି ହେବନାହିଁ । ଜାପାନର ଅନ୍ୟ କେତେକ ସ୍ଥାନ ବୁଲିବା ପରେ ଜାପାନୀମାନଙ୍କ ଜାତୀୟ ନିଷ୍ଠା, ଏକାଗ୍ରତା, ଉତ୍ପାଦନ ଭିତ୍ତିକ ଉଦ୍ୟମ ଓ କାର୍ଯ୍ୟଦକ୍ଷତା ପ୍ରଭୃତି ନେଇ ମୋର ଏମାନଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ହୋଇଥିଲା । ପାହାଡ଼ ପର୍ବତକୁ ଯାଅ

ଦେଖିବ ଏମାନଙ୍କ ଦ୍ୱାରା ଶିଖର ପର୍ଯ୍ୟନ୍ତ ଧାଡ଼ି ଧାଡ଼ି ହୋଇ ଗଛ ଲଗା ହୋଇଛି । ଯୁଦ୍ଧ ସମୟରେ ଏମାନେ ଜାଳେଣି ଅଭାବ ଯୋଗୁ ଏହିସବୁ ଗଛ କାଟିପକାଇଲେ ।

ଧାନ କିଆରିରେ ପ୍ରତ୍ୟେକ ଧାନଗଛ ପ୍ରତି ଅକ୍ଳାନ୍ତ ପରିଶ୍ରମର ନିଦର୍ଶନ ମିଳିଲା । ଏହା ଧାନବିଲ ନୁହେଁ, ଫଳଫୁଲ ଗଛର ଯେପରି ଗୋଟିଏ ସୁସଜ୍ଜିତ ବଗିଚା । କଳକାରଖାନାରେ ଏମାନଙ୍କର ଯୋଜନାବଦ୍ଧ କାର୍ଯ୍ୟକଳାପ ଓ କାର୍ଯ୍ୟଦକ୍ଷତା ଅତ୍ୟନ୍ତ ପ୍ରଶଂସନୀୟ । ଅଫିସରେ ସବୁଠାରୁ ବଡ଼ ଅଫିସର୍‌ଠାରୁ ଆରମ୍ଭ କରି ସର୍ବନିମ୍ନ କର୍ମଚାରୀ ପର୍ଯ୍ୟନ୍ତ ସମସ୍ତେ ଗୋଟିଏ ବଡ଼ ହଲ୍‌ରେ କାମ କରି ଚାଲିଛନ୍ତି । କଥାବାର୍ତ୍ତା ନାହିଁ, ଚା' କଫି ଖିଆ ନାହିଁ, କେହି କାହାକୁ ଚାହୁଁ ବି ନାହାନ୍ତି । ରାସ୍ତାଘାଟରେ ଲୋକେ ଶୃଙ୍ଖଳିତ ଭାବେ ଚାଲିଛନ୍ତି । ସବୁଠାରୁ କୌତୂହଳ ବ୍ୟାପାର ହେଲା ଜାପାନର ଶ୍ରମିକମାନେ କାରଖାନାରେ କାମ ସାରିଲା ପରେ ବିରାଟ ଶୋଭାଯାତ୍ରାରେ ବାହାରି ସେମାନଙ୍କର ଦାବି ଉପସ୍ଥାପିତ କରନ୍ତି । ଟୋକିଓ ସହରରେ ଏହିପରି ଗୋଟିଏ ବିରାଟ ଶୋଭାଯାତ୍ରା ସନ୍ଧ୍ୟା ସମୟରେ ମୁଁ ଦେଖି, ଶୋଭାଯାତ୍ରାର ଜଣେ ନେତାଙ୍କୁ ପଚାରି ବୁଝିଥିଲି ଯେ ସେମାନେ କାମ ବନ୍ଦ କରି ପ୍ରତିବାଦ କରନ୍ତିନାହିଁ । କାରଣ କାମ ବନ୍ଦ କଲେ ସେଦିନ ଉତ୍ପାଦନ ତ ହୋଇପାରିଲା ନାହିଁ ତେଣୁ ଏମାନେ ତାର ଅଂଶୀଦାର ହୋଇପାରିବେ ନାହିଁ । ସେମାନେ କାର୍ଯ୍ୟ କରି ଉତ୍ପାଦନରେ ଭାଗ ନେଇସାରିବା ପରେ ପ୍ରତିବାଦ ସଭାର ଆୟୋଜନ କରନ୍ତି । ପୃଥିବୀରେ ଏହା ନିଶ୍ଚିତ ଭାବରେ ଗୋଟିଏ ଅଦ୍ୱିତୀୟ ଟ୍ରେଡ୍ ୟୁନିୟନ କାର୍ଯ୍ୟପଦ୍ଧତି । ଟୋୟେଟା ମଟରଗାଡ଼ି କମ୍ପାନୀରେ କୁଆଡ଼େ ୧୯୫୪ ମସିହାଠାରୁ ଆଉ ଧର୍ମଘଟ ହୋଇନାହିଁ ।

ଜାପାନରେ ଯେଉଁ ଜିନିଷପତ୍ର ଉତ୍ପାଦିତ ହୁଏ ତାହା ସେହି ଦେଶର ଲୋକମାନେ ବହୁଳ ଭାବରେ ବ୍ୟବହାର କରିବାର ଦେଖାଗଲା । ସ୍ୱୟଂଚାଳିତ କବାଟ ପ୍ରତି ଛୋଟ ଦୋକାନରେ ମଧ୍ୟ ଦେଖିବାକୁ ମିଳେ ଅଥଚ ଏପରି କବାଟ ଯୁକ୍ତରାଷ୍ଟ୍ର ଆମେରିକାରେ ବଡ଼ ବଡ଼ ହୋଟେଲ ଓ ଦୋକାନରେ କେବଳ ଦେଖିବାକୁ ମିଳେ । ଇଲେକ୍‌ଟ୍ରୋନିକ୍ କ୍ଷେତ୍ରରେ ଜାପାନ ପୃଥିବୀର ସର୍ବଶ୍ରେଷ୍ଠ ସ୍ଥାନ ହାସଲ କରିପାରିଛି । ଜାପାନର ବୁଲେଟ୍ ରେଳଗାଡ଼ି ଯାହାକି ଘଣ୍ଟାକୁ ପ୍ରାୟ ୧୪୦ ମାଇଲ୍ ବେଗରେ ଗତିକରେ ତାକୁ ଦେଖିବାକୁ ଆମ ସାଙ୍ଗରେ ବହୁ ଆମେରିକାନ ଅଧ୍ୟାପକ ମଧ୍ୟ ଯାଇଥିଲେ । ଆମେ ପ୍ରାୟ ୭୦ ମାଇଲ ରାସ୍ତା ଅଧଘଣ୍ଟାରେ ଅତିକ୍ରମ କରିଥିଲୁ । ସେ ରେଳଗାଡ଼ି ଗଲାବେଳେ ବାହାରୁ ଗୋଟିଏ ଅତି ଦ୍ରୁତଗାମୀ ତୀର ପରି ଦେଖାଯାଏ । ଆମ ଟିକେଟ୍‌ରେ କମ୍ପାର୍ଟମେଣ୍ଟର A.B.C. ପ୍ରଭୃତି ଅକ୍ଷର ଛାପା ହୋଇଥିଲା ଏବଂ ଏହି ଅକ୍ଷର ପ୍ଲାଟ୍‌ଫର୍ମରେ ନିର୍ଦ୍ଦିଷ୍ଟ ସ୍ଥାନରେ ତୀରଚିହ୍ନ ଦିଆ ହୋଇ ଲେଖା ହୋଇଥାଏ । ଏହି ଅକ୍ଷର ଅନୁଯାୟୀ ଆମେ ପ୍ଲାଟଫର୍ମର ସେହି ସ୍ଥାନରେ ଠିଆହେଲୁ । ରେଳଗାଡ଼ିଟି ଅତି ଦ୍ରୁତ ଗତିରେ ଆସି ସେହି କ୍ରମାନ୍ୱୟ ଅକ୍ଷର ପାଖରେ ରେଳଡବାଗୁଡ଼ିକ ଆସି ଠିଆ ହୋଇଗଲା । କ୍ରମାନ୍ୱୟ କବାଟ ତା' ମନକୁ ଖୋଲିଗଲା ଏବଂ ଯାତ୍ରୀମାନେ ମିନିଟିଏ ଭିତରେ ନିଜ ନିଜ ଡବା ଭିତରେ ପଶିଗଲେ ।

ତା'ପରେ ଗାଡ଼ି ପୁଣି ଅତି ଦ୍ରୁତ ଗତିରେ ଚାଲିବାକୁ ଆରମ୍ଭ କଲା । ଅଦ୍ଭୁତ ଉଦ୍ଭାବନ ଏହି ରେଳଗାଡ଼ିଟି । ଆଉ ଗୋଟିଏ ପ୍ରକାର ରେଳଗାଡ଼ିରେ ଗୋଟିଏ ଚାରିମହଲା କୋଠାର ବାରଣ୍ଡାରୁ ଆମେ ଚଢ଼ିଲୁ ଏବଂ ଆଠଦଶ ମାଇଲ ରାସ୍ତା ବିମାନ ବନ୍ଦରକୁ ଗଲୁ । ଏହି ଗାଡ଼ିଟି ଗୋଟିଏ ରେଳ ଧାରଣା ଉପରେ ଶୂନ୍ୟଚାପରେ ଗତିକରେ । ତେଣୁ କୌଣସି ଶବ୍ଦ ନାହିଁକି ହଲଚଲ ମଧ୍ୟ ନାହିଁ । ଏହାର ବହୁଳ ପ୍ରସାର ଭବିଷ୍ୟତରେ ହେବାର ଅଛି ।

ଶିଳ୍ପ କାରିଗରୀ କ୍ଷେତ୍ରରେ ଅଭୂତପୂର୍ବ ଅଗ୍ରଗତି କରିଥିବା ଏପରି ଧନୀ ଦେଶରେ କିନ୍ତୁ ସାମାଜିକ ବ୍ୟବଧାନ ବହୁତ ଥିବାର ଜଣାଗଲା । କେତେକ ଅତ୍ୟଧିକ ଧନୀ ତ ଆହୁରି ବହୁଲୋକ ଏମାନଙ୍କଠାରୁ ବହୁତ ତଳେ ଅର୍ଥାତ୍ ଅର୍ଥନୈତିକ ବ୍ୟବଧାନ ଏ ଦେଶରେ ବହୁତ ବେଶି । ପୁଞ୍ଜିପତି ଦେଶର ସାମାଜିକ ବ୍ୟବଧାନଗତ ସମସ୍ତ ଲକ୍ଷଣ ଏଠାରେ ରହିଛି । ଅବଶ୍ୟ ଏଠାକାର କାରଖାନା ମାଲିକମାନେ ଶ୍ରମିକମାନଙ୍କର ଯତ୍ନ ନିଅନ୍ତି । ପ୍ରତ୍ୟେକ ଶ୍ରମିକର ପରିବାର ଲୋକଙ୍କ କର୍ମନିଯୁକ୍ତି କଥା ଏମାନେ ବୁଝନ୍ତି । ମ୍ୟାନେଜରମାନଙ୍କୁ ବହୁତ ସୁବିଧା ଦିଆଯାଏ ଏପରି କି ମାସକୁ କେତେଥର ଖର୍ଚ୍ଚବହୁଳ ରାତ୍ରିକ୍ଲବକୁ ଯିବାପାଇଁ ଖର୍ଚ୍ଚ ଯୋଗାଇ ଦିଆଯାଏ । ଆଉ ଗୋଟିଏ ସାମାଜିକ ବିଭ୍ରାଟ ଏ ଦେଶରେ ଦେଖିବାକୁ ମିଳେ । ଏଠାକାର ସ୍ତ୍ରୀ ଲୋକମାନେ ଅତ୍ୟନ୍ତ ପରିଶ୍ରମୀ, ଶିକ୍ଷିତା ଏବଂ ପୁରୁଷଙ୍କ ପରି ଉତ୍ପାଦନଶୀଳ କାର୍ଯ୍ୟରେ ନିଯୁକ୍ତ । କିନ୍ତୁ ସନ୍ଧ୍ୟାରେ ସେମାନେ ଘରକୁ ଫେରନ୍ତି ଏବଂ ସେମାନଙ୍କର ସ୍ୱାମୀମାନେ ରାତ୍ରି କ୍ଲବ୍ ଓ ଅନ୍ୟାନ୍ୟ ମଉଜ ମଜଲିସ୍ ପାଇଁ ଏକୁଟିଆ ଯାଆନ୍ତି । ଆଶ୍ଚର୍ଯ୍ୟର କଥାଯେ ଜାପାନର ଏତେ ଅଗ୍ରଗତି ଭିତରେ ପ୍ରାଚ୍ୟ ସଭ୍ୟତାର ଏହି ପାରିବାରିକ ଐତିହ୍ୟ ବର୍ତ୍ତମାନ ସୁଦ୍ଧା ନିଖୁଣ ଭାବରେ ରହିପାରିଛି ।

ଜାପାନ କଥା ଲେଖି ପରମାଣୁ ବୋମା ବିଧ୍ୱସ୍ତ ହିରୋସିମା ଓ ନାଗାସାକି କଥା ନ କହିଲେ ଜାପାନ ବର୍ଣ୍ଣନା ସଂପୂର୍ଣ୍ଣ ହେବନାହିଁ । ଜାପାନୀଙ୍କ ମନରେ ଏଥିଲାଗି ଆମେରିକା ବିରୁଦ୍ଧରେ ଗୋଟିଏ ପ୍ରକାର ଅନ୍ତର୍ନିହିତ କ୍ରୋଧ ଓ ଘୃଣା ରହିଥିବାର ଜଣାଯାଏ । କାରଣ ଯୁଦ୍ଧ ସରି ଆସିଥିଲା ବେଳେ ଜାପାନ ସମ୍ରାଟ ହିରୋହିଟୋ ଆତ୍ମସମର୍ପଣ ପାଇଁ କଥାବାର୍ତ୍ତା ଆରମ୍ଭ କରିଥିଲା ପରେ ମଧ୍ୟ ସୋଭିଏତ୍ ରୁଷ୍‌କୁ ଆଖି ଆଗରେ ରଖି କେବଳ ରାଜନୈତିକ ଫାଇଦା ପାଇଁ ଜାପାନର ଲକ୍ଷାଧିକ ନିରୀହ ଲୋକଙ୍କୁ ଏପରି ଭାବରେ ମୃତ୍ୟୁମୁଖକୁ ଠେଲିଦେବା ଏବଂ ସହସ୍ର ସହସ୍ର ଲୋକଙ୍କୁ ଆଜୀବନ ନରକ ଯନ୍ତ୍ରଣା ଦେବା ଗୋଟିଏ ସଭ୍ୟ ଦେଶ ପକ୍ଷରେ କିପରି ସମ୍ଭବ ହେଲା ଏହାହିଁ ସେମାନଙ୍କର ଜାତୀୟ ମାନସପଟରେ ଗୋଟିଏ ଅଲିଭା ଦାଗ ହିସାବରେ ରହିଯାଇଛି । ତା'ଛଡ଼ା ସେମାନେ ମଧ୍ୟ ଏହା ଅନୁଭବ କରିଛନ୍ତି ଯେ ଏହି ଆଣବିକ ବୋମା ଜର୍ମାନୀରେ ପଡ଼ିଲାନାହିଁ କିନ୍ତୁ ଜାପାନରେ ପଡ଼ିଲା । କାରଣ ଶ୍ୱେତାଙ୍ଗମାନେ ତାଙ୍କର ଧ୍ୱଂସଲୀଳାର ସଂପରୀକ୍ଷା କେବଳ ଅଣଶ୍ୱେତାଙ୍ଗମାନଙ୍କ ଉପରେ କରିବାକୁ ପଶ୍ଚାତପଦ ହେଲେନାହିଁ । ଏହା ହେଉଛି ଶ୍ୱେତାଙ୍ଗ ସଭ୍ୟତାର ମୌଳିକ ବିଷମଞ୍ଜି । ମାନବ ସଭ୍ୟତା ପାଇଁ ତାହା କି ପ୍ରକାର ବିପଦଜନକ ପରିସ୍ଥିତି ସୃଷ୍ଟି କରୁଛି, ଏମାନେ ତାହା ଗଭୀର ଭାବରେ ହୃଦୟଙ୍ଗମ କରୁଛନ୍ତି ।

## (୪) ସ୍ୱିଡ଼େନ

ୟୁରୋପର ଅଧିକାଂଶ ଦେଶ ଯଥା ଡେନ୍‌ମାର୍କ, ଫିନଲାଣ୍ଡ, ହଲାଣ୍ଡ, ସୁଇଜରଲାଣ୍ଡ, ଫ୍ରାନ୍‌ସ, ଇଟାଲି ପ୍ରଭୃତି ମୁଁ ବୁଲିଛି । ସେମାନଙ୍କର ବିଶ୍ୱବିଦ୍ୟାଳୟକୁ ଯାଇଛି । କିନ୍ତୁ ୟୁରୋପର ସବୁ ଦେଶଠାରୁ ମୋତେ ବେଶି ଭଲ ଲାଗିଥିଲା ସ୍ୱିଡେନ । ସ୍ୱିଡେନ ବହୁବର୍ଷ ଧରି ପୃଥିବୀର ସର୍ବଶ୍ରେଷ୍ଠ ଧନଶାଳୀ ଦେଶବୋଲି ପରିଚିତ । ସବୁବେଳେ ପ୍ରଥମ ନ ହେଲେ ମଧ୍ୟ ବର୍ଷେ ବର୍ଷେ ଏ କ୍ଷେତ୍ରରେ ଦ୍ୱିତୀୟ କିମ୍ବା ତୃତୀୟ ସ୍ଥାନ ଅଧିକାର କରେ । ମୁଁ ଏଠାକାର ମାଲ୍‌ମୋ ଓ ଗୋଟେବର୍ଗ ବିଶ୍ୱବିଦ୍ୟାଳୟ ସହିତ ବିଶେଷ ଭାବରେ ସଂପୃକ୍ତ ଥିଲି । ବହୁବର୍ଷ ଧରି ମାଲ୍‌ମୋ ବିଶ୍ୱବିଦ୍ୟାଳୟର ଦୁଇଜଣ ଅଧ୍ୟାପକ କଟକ ଆସି ମୋ ସହଯୋଗରେ ଭାରତୀୟ ପାରିବାରିକ ଜୀବନ ଉପରେ ଅଧ୍ୟୟନ କରୁଥିଲେ । ଏ ବିଷୟରେ ଗୋଟିଏ ଗବେଷଣାତ୍ମକ ପୁସ୍ତକ ପ୍ରକାଶିତ ହୋଇଛି । ମୁଁ ବାହାରକୁ ଗଲେ ଭାରତର ପାରିବାରିକ ଜୀବନର ଉତ୍କର୍ଷତା ବିଷୟରେ ବକ୍ତୃତା ଦିଏ ।

ମୁଁ ସ୍ୱିଡ଼େନ ପାଞ୍ଚଥର ଯାଇଥିଲି ଏବଂ ସର୍ବମୋଟ ପ୍ରାୟ ଆଠମାସ ସେଠାରେ କଟାଇଛି । ସେଠାରେ ରହିବାକୁ ମୋତେ ବହୁତ ଭଲ ଲାଗେ, କାରଣ ସେଠାକାର ଲୋକେ ବହୁତ ମାର୍ଜିତ ଓ ସଂସ୍କୃତି ସମ୍ପନ୍ନ । ସେମାନେ ଅତିଥି ଚର୍ଚ୍ଚା ଆନ୍ତରିକତା ସହିତ କରନ୍ତି । ଘରକୁ ରାତ୍ରି ଭୋଜନପାଇଁ ନିମନ୍ତ୍ରଣ କଲେ ଦିନ ଦୁଇଟା ବେଳୁ ମୋତେ ଗାଡ଼ିରେ ନେଇ ଚାରିଆଡ଼େ ବୁଲାନ୍ତି । ବିଶିଷ୍ଟ ଚିତ୍ତାକର୍ଷକ ସ୍ଥାନମାନ ଦେଖାନ୍ତି । ତା'ପରେ ରାତ୍ରିଭୋଜନ ପରେ ପୁଣି ମୋ ଯାଗାରେ ମୋତେ ଛାଡ଼ି ଦେଇଯାନ୍ତି । ଏ ପ୍ରକାର ଆନ୍ତରିକ ସୌହାର୍ଦ୍ଦ୍ୟ ଅନ୍ୟ ପାଶ୍ଚାତ୍ୟ ଦେଶରେ ବିରଳ ବୋଲି ମୋର ମନେହେଲା । ଏହାର ଗୋଟିଏ ମୁଖ୍ୟ କାରଣ ହୋଇପାରେ ଯେ ଏମାନଙ୍କର ୧୮୦୩ ମସିହାଠାରୁ କୌଣସି ଉପନିବେଶ ନଥିଲା । ତେଣୁ ଏମାନଙ୍କର ଔପନିବେଶିକ ଔଦ୍ଧତ୍ୟ ଏବଂ ଅଣଶ୍ୱେତାଙ୍ଗମାନଙ୍କୁ ହେୟକରି ଦେଖିବାର ମନୋଭାବ ବିଲ୍‌କୁଲ ନାହିଁ ବୋଲି ମନେହେଲା । ହଲାଣ୍ଡ, ପଶ୍ଚିମ ଜର୍ମାନୀ, ଫ୍ରାନ୍ସ, ଇଂଲଣ୍ଡ ପ୍ରଭୃତି ଅତୀତର ସାମ୍ରାଜ୍ୟବାଦୀ ଦେଶ ଲୋକଙ୍କର ଅଣଶ୍ୱେତାଙ୍ଗ ଲୋକଙ୍କ ପ୍ରତି ଗୋଟିଏ ପ୍ରକାର ପ୍ରଚ୍ଛନ୍ନ ତାଚ୍ଛଲ୍ୟଭାବ ରହିଛି ବୋଲି ମୋର ମନେହେଲା । ଏହି ଗୋଟିଏ ମୁଖ୍ୟ କାରଣ ଯୋଗୁ ସ୍ୱିଡେନ୍ ମୋତେ ବହୁତ ଭଲ ଲାଗିଥିଲା ।

ସ୍ୱିଡେନ୍ ଆଉ ଗୋଟିଏ ଦୃଷ୍ଟିକୋଣରୁ ମଧ୍ୟ ଗୋଟିଏ ଅଦ୍ଭୁତ ଦେଶ । ଏଠାରେ ଶତକଡ଼ା ନବେ ଶିଳ୍ପ ବ୍ୟକ୍ତିଗତ ମାଲିକାନାରେ ରହିଛି । ତଥାପି ଏଠାରେ ଜନ-କଲ୍ୟାଣ ଯୋଜନା ଗୋଟିଏ ଉତ୍କୃଷ୍ଟ ଓ ସାର୍ବଜନୀନ ରାଷ୍ଟ୍ରୀୟ ସଂସ୍ଥା । ସମସ୍ତଙ୍କ ପାଇଁ ବିନା ଖର୍ଚ୍ଚରେ ଶିକ୍ଷା ଓ ସ୍ୱାସ୍ଥ୍ୟର ବ୍ୟବସ୍ଥା ରହିଛି । ସମସ୍ତେ ଅବସରକାଳୀନ ଭତ୍ତା ପାଆନ୍ତି । ସେମାନେ ତାଙ୍କ ଜୀବନରେ ଯେତେ ବେଶି ଦରମା ବା ଭତ୍ତା ପାଆନ୍ତି ତାର ପ୍ରାୟ ଶତକଡ଼ା ନବେଭାଗ ଅବସରକାଳୀନ ଭତ୍ତା ପାଇଥାନ୍ତି । ଫଳରେ ସେମାନଙ୍କର ଭବିଷ୍ୟତ ବିଷୟରେ ଉଦ୍‌ବିଗ୍ନ ହେବାର କୌଣସି କାରଣ ନାହିଁ । ଗୋଟିଏ ପୁଞ୍ଜିପତି ଦେଶରେ ମଧ୍ୟ ଏପ୍ରକାର ବ୍ୟାପକ ସମାଜବାଦୀ ବ୍ୟବସ୍ଥା ସମ୍ଭବ, ଏହା ସ୍ୱିଡେନରେ ଦେଖିବାକୁ ମିଳେ ।

ଲୋକମାନଙ୍କର ସାଧାରଣ ଜୀବନଯାପନ ପ୍ରଣାଳୀ ଏତେ ଉଚ୍ଚ ଧରଣର ଯେ ସେଠା ବଜାରରେ ନିକୃଷ୍ଟ ଧରଣର ଜିନିଷ କିଣିବାକୁ ମିଳେନାହିଁ । ସବୁ ଜିନିଷ ଉତ୍କୃଷ୍ଟ ଧରଣର; କାରଣ ଲୋକଙ୍କର ଜୀବନ ଧାରଣ ମାନ ଉଚ୍ଚ ଥିବାରୁ ସେମାନେ ଶସ୍ତାରେ ଖରାପ ଜିନିଷ କିଣନ୍ତି ନାହିଁ । ନିଜ ଦେଶ ତିଆରି ଜିନିଷ ପାଖରେ ଅନ୍ୟ ଦେଶରେ ତିଆରି ଜିନିଷସବୁ ବିକ୍ରି ହୁଏ । ଏ ପ୍ରକାର ପ୍ରତିଯୋଗିତା ଯୋଗୁ ନିଜ ଦେଶ ତିଆରି ଜିନିଷ ଉତ୍କୃଷ୍ଟ ହେବାକୁ ବାଧ୍ୟ ।

ୟୁରୋପର ଯେ କୌଣସି ସହର ଅପେକ୍ଷା ସ୍ୱିଡେନର ରାଜଧାନୀ ଷ୍ଟକ୍‌ହୋମ୍ ବୋଧହୁଏ ସବୁଠୁ ସୁନ୍ଦର ସହର ବୋଲି ପରିଗଣିତ ହେବ । ନୂଆ ନୂଆ କୋଠାବାଡ଼ି ସବୁ ଉତ୍କୃଷ୍ଟ ଚାରୁ ଶିଳ୍ପ ସୁଲଭ ନାନା ରଙ୍ଗରେ ରଞ୍ଜିତ କଣ୍ଢେଇ ଘର ସଜାହୋଇ ରଖାହୋଇଥିବା ପରି ଦେଖାଯାଏ । ଷ୍ଟକ୍‌ହୋମର ପୁରୁଣା ଅଞ୍ଚଳ ମଧ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଚାରିପାଞ୍ଚ ଶହ ବର୍ଷ ତଳେ ତିଆରି ହୋଇଥିବା ବିରାଟ ଅଟ୍ଟାଳିକାସବୁ ପ୍ରାଚୀନ ଐଶ୍ୱର୍ଯ୍ୟର ନିଦର୍ଶନ । ନୂଆ ଭାବରେ ତିଆରି ହୋଇଥିବା ବଜାରରେ ବୁଲିବାରେ ଆନନ୍ଦ ମିଳେ । କେଉଁଠି ବିରାଟ ଛକର ମାଟି ତଳ ବଜାରରେ ପରିଣତ ହୋଇଛି ତ କେଉଁଠି ରାସ୍ତାରୁ ଟିକେ ଉଚ୍ଚ ଯାଗାରେ ଆଉ ଗୋଟିଏ ସୁନ୍ଦର ବଜାର । ରାସ୍ତାରୁ ତଳକୁ କିମ୍ବା ଉପରକୁ ଯିବାପାଇଁ ବହୁତଗୁଡ଼ିଏ ଚଳନ୍ତା ଶିଡ଼ୀ ଅନବରତ ଚାଲିଛି । ନାନା ରଙ୍ଗର ଆଲୁଅ ସାରା ଅଞ୍ଚଳଟିକୁ ଯେପରି ଗୋଟିଏ ପରିରାଇଜରେ ପରିଣତ କରି ଦେଇଛି । ଏ ପ୍ରକାର ପ୍ରାଚୁର୍ଯ୍ୟବନ୍ତ ବଜାର ଅନ୍ୟ ଦେଶରେ ବିରଳ କହିଲେ ଚଳେ । ଗୁଲସ୍ତାନ ବୋଲି ଗୋଟିଏ ପୁରୁଣା ଅଞ୍ଚଳ ଯେଉଁଠି 'ରାସ୍ତା ଏତେ ଛୋଟ ଯେ ଗୋଟିଏ ମୋଟରଗାଡ଼ି କେବଳ ଯାଇପାରିବ । କିନ୍ତୁ ସେ ସାରା ଅଞ୍ଚଳରେ ଗାଡ଼ି ପ୍ରବେଶ ମନା । ରାସ୍ତା ଦୁଇ କଡ଼ରେ ଚାରିପାଞ୍ଚ ମହଲାର ପୁରୁଣା ଘର । ସେସବୁ ଘରର ତଳ ତାଲାରେ ସୁନ୍ଦର ସୁନ୍ଦର ପୁରୁଣା ଜିନିଷସବୁ ବିକ୍ରି ହୁଏ । ଚିତ୍ରଶିଳ୍ପୀଙ୍କର ନାନାପ୍ରକାର ଚିତ୍ରପଟ, ଛୋଟ ଛୋଟ ପିତଳ ଓ ଅନ୍ୟାନ୍ୟ ଧାତୁ ତିଆରି ଜିନିଷ ଘର ସଜାପାଇଁ ଏଠାରେ ବିକ୍ରି ହେଉଥାଏ । ଦେଶ ବିଦେଶର ବିଭିନ୍ନ ଖାଦ୍ୟ, ପାନୀୟ ବିକ୍ରି ରେସ୍ତୋରାଁ ଏଠାରେ ଭର୍ତ୍ତି । ଯାତ୍ରୀମାନେ ସବୁ ସମୟରେ ଏହି ଅଞ୍ଚଳରେ ବୁଲୁଥାନ୍ତି । ବିଶେଷତଃ ରାତିରେ ଏଠାରେ ବୁଲିବା ବଡ଼ ଉଦ୍ଦୀପନାତ୍ମକ । ଏହି ଅଞ୍ଚଳରେ ଥିବା ଗୋଟିଏ ହୋଟେଲରେ ମୋର ରହିବାର ବନ୍ଦୋବସ୍ତ ହୋଇଥିଲା ।

ଷ୍ଟକ୍‌ହୋମ୍‌ର ଚାରିପଟେ ବହୁତ ହ୍ରଦ ଓ ନାନା ଆକାରର ଦ୍ୱୀପପୁଞ୍ଜ । ଏହି ହ୍ରଦରେ ଖରାଦିନେ ଯନ୍ତ୍ରଚାଳିତ ଛୋଟ ବଡ଼ ଡଙ୍ଗାମାନ ଅନବରତ ଚାଲିଥାଏ । ଅତି ଦ୍ରୁତଗତିରେ କେତେଗୁଡ଼ିଏ ଛୋଟ ଛୋଟ ଡଙ୍ଗା ପ୍ରତିଯୋଗିତା କଲାପରି ଆଖି ଝଲସାଇ ଚାଲିଥାନ୍ତି । ଏ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ମୋର କାମ ସରିଲା ପରେ ମୁଁ ଗୋଟିଏ ହ୍ରଦରୁ ଆଉ ଗୋଟିଏ ହ୍ରଦ, ଗୋଟିଏ ଦ୍ୱୀପରୁ ଆଉ ଗୋଟିଏ ଦ୍ୱୀପ ଡଙ୍ଗାରେ ଯିବାକୁ ଭଲପାଏ ।

ସ୍ୱିଡେନର ସବୁ ସହରରେ ଓ ସବୁ ସ୍ଥାନରେ ଘରଦ୍ୱାର ଚକ୍‌ମକ୍ କରୁଥାଏ । ଖରାଦିନେ ଝରକା ପାଖରେ ଫୁଲକୁଣ୍ଡମାନ ଝୁଲୁଥାଏ । କଳକାରଖାନା ମଧ୍ୟ ପରିଷ୍କାର ପରିଚ୍ଛନ୍ନ ।

ପାର୍କଗୁଡ଼ିକ ଫୁଲ ଫଳ ଗଛରେ ଭର୍ତ୍ତି । ସବୁଆଡ଼ ପରିଷ୍କାର । ମାର୍ଜିତ ରୁଚିକର ଜୀବନଯାପନ ପ୍ରଣାଳୀର ସ୍ୱିଡେନ୍ ଗୋଟିଏ ଜ୍ୱଳନ୍ତ ପ୍ରତୀକ । ପ୍ରାୟ ପ୍ରତ୍ୟେକ ପରିବାରର ଦୁଇଟି ମୋଟରଗାଡ଼ି, ଦୁଇଟି ଘର– ଗୋଟିଏ ଚାକିରି କରୁଥିବା ଯାଗାରେ ଆଉ ଗୋଟିଏ ଗ୍ରୀଷ୍ମକାଳୀନ ଘର ହ୍ରଦ ବା ସମୁଦ୍ର କୂଳରେ । ପ୍ରାୟ ସମସ୍ତଙ୍କର ଗୋଟିଏ ଯନ୍ତ୍ରଚାଳିତ ଡଙ୍ଗା ।

ସ୍ୱିଡେନର ଲୋକେ ଏତେ ଧନୀ, ସଂସ୍କୃତି ସମ୍ପନ୍ନ, ଶିକ୍ଷିତ ହୋଇଥିଲେ ସୁଦ୍ଧା ଏଠାରେ ଆତ୍ମହତ୍ୟା ଘଟଣାର ଆନୁପାତିକ ହାର ଅନ୍ୟ ଦେଶ ତୁଳନାରେ ବେଶି । ଏହା କାହିଁକି ହେଉଛି ବୋଲି ମୁଁ ସେମାନଙ୍କ ସହିତ ବହୁ ଆଲୋଚନା କରିଛି । ମୋର ମନେହୁଏ ଯେ ଏମାନେ ପିଲାଦିନରୁ ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟ ନିରବଚ୍ଛିନ୍ନ ଭାବରେ ପାଇ ଆସିଥିବାରୁ ଜୀବନ ସଂଗ୍ରାମଗତ ଦୁଃଖ କଷଣ କ'ଣ ଜାଣିନାହାନ୍ତି । ତେଣୁ ଜୀବନରେ ଯଦି କୌଣସି ଦୁର୍ଘଟଣା ବା ପାରିବାରିକ ବିପର୍ଯ୍ୟୟ ଦେଖାଯାଏ, ତେବେ ସେମାନେ ହଠାତ୍ ଭାଙ୍ଗି ପଡ଼ନ୍ତି ଏବଂ ଜୀବନ ସଂଗ୍ରାମରେ ସହଜରେ ହାରିଯାଆନ୍ତି, ଜୀବନକୁ ନଷ୍ଟ କରିଦିଅନ୍ତି । ଉନ୍ନତ ଓ ଉଚ୍ଚ ସଂସ୍କୃତିସମ୍ପନ୍ନ ଲୋକେ ବହୁତ ବେଶି ସମ୍ବେଦନଶୀଳ ଓ ସ୍ପର୍ଶକାତର ହୋଇପଡ଼ନ୍ତି । ଫଳରେ ଆତ୍ମହତ୍ୟାଛଡ଼ା ଆଉ କୌଣସି ଉପାୟ ଏମାନେ ଦେଖିପାରନ୍ତି ନାହିଁ । ଏ ବିଷୟରେ ସେମାନଙ୍କ ସହିତ ବହୁ ଆଲୋଚନା ପରେ ଏହି ସିଦ୍ଧାନ୍ତରେ ମୁଁ ପହଞ୍ଚିଛି ।

ମୋଟାମୋଟି ଭାବରେ ଦେଖିବାକୁ ଗଲେ ବ୍ୟକ୍ତିଗତ ପୂର୍ଣ୍ଣ ସ୍ୱାଧୀନତା ସହିତ ସାମଗ୍ରୀକ ଭାବରେ ଜନମଙ୍ଗଳ କାର୍ଯ୍ୟକ୍ରମ ଏହି ଦେଶକୁ ବହୁ ଆକର୍ଷଣୀୟ କରିପାରିଛି । ମୋତେ ଯଦି ବାଧ୍ୟବାଧକତା ଭାବରେ ଭାରତରୁ ବାହାରି ଯାଇ ପୃଥିବୀର ଯେକୌଣସି ଦେଶରେ ରହିବାର ସୁଯୋଗ ଦିଆଯାଏ ତା' ହେଲେ ସ୍ୱିଡେନକୁ ମୁଁ ମୋର ବାସସ୍ଥାନ ରୂପେ ବାଛିବି ।

ଥରେ ସେଠାରେ ଥିଲା ବେଳେ ଗୋଟିଏ ସଭାରେ ମୁଁ ଯୋଗଦେଇଥିଲି ଯେଉଁଠି ସ୍ୱିଡ଼େନର ପ୍ରଧାନ ମନ୍ତ୍ରୀ ବକ୍ତୃତା ଦେଉଥିଲେ । ମୋର ବନ୍ଧୁ ତାଙ୍କ ସହିତ ପରିଚୟ କରାଇଦେବା ପାଇଁ ମୋତେ ତାଙ୍କ ପାଖକୁ ନେଇ ଯାଇଥିଲେ । ସାଙ୍ଗେ ସାଙ୍ଗେ ଦେଖା କରିବାକୁ ଅନୁମତି ମିଳିଗଲା । ସାଙ୍ଗରେ ଜଣେ ମାତ୍ର ଦେହରକ୍ଷୀ ମଧ୍ୟ ସାଧାରଣ ପୋଷାକରେ ତାଙ୍କ ପାଖରେ ଥିଲେ । ଅଥଚ ତାର ମାତ୍ର କିଛି ବର୍ଷ ପୂର୍ବେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଅଫିସ କାମ ସାରି ଘରକୁ ଚାଲି ଚାଲି ଆସୁଥିବା ବେଳେ ସେ ଜଣେ ଆତତାୟୀ ଗୁଳିରେ ନିହତ ହୋଇଥିଲେ । ଏହା ହେଉଛି ସେଠାକାର ନେତାମାନଙ୍କ ପାଇଁ ନିରାପତ୍ତା ବନ୍ଦୋବସ୍ତ । ଅଥଚ ଭାରତ ପରି ଗରିବ ଦେଶରେ ବର୍ଷକୁ ଶତାଧିକ କୋଟି ଟଙ୍କା ଖର୍ଚ୍ଚ ହେଉଛି ରାଜନୀତି ଲୋକଙ୍କୁ କଡ଼ା ନିରାପତ୍ତା ଯୋଗାଇବା ପାଇଁ ।

ବ୍ୟକ୍ତି ସ୍ୱାଧୀନତା ସହିତ ବିଶିଷ୍ଟ ବ୍ୟକ୍ତିଙ୍କର ସରଳ ବ୍ୟବହାରର ଆଉ ଗୋଟିଏ ଉଦାହରଣ ରହିଛି । ଶୁଣାଯାଏ ଯେ ଜଣେ ଇଂରେଜି ଲୋକ ସ୍ୱୀଡ଼େନରେ ବସରେ ଯାଉଥିଲା ବେଳେ ତାଙ୍କ ପାଖ ଲୋକଙ୍କୁ କହୁଥିଲା ଯେ ବ୍ରିଟେନରେ ବ୍ୟକ୍ତି ସ୍ୱାଧୀନତା ଏପରି ଟାଣ

ଯେ ସାଧାରଣ ସ୍ଥାନରେ ଠିଆ ହୋଇ ଜଣେ ଇଂଲଣ୍ଡର ରାଜା ରାଣୀଙ୍କ ବିରୁଦ୍ଧରେ ଅନର୍ଗଳ କହିପାରେ । ଲୋକେ ଠିଆ ହୋଇ ଶୁଣନ୍ତି । ତାହା ଶୁଣି ବସରେ ଯାଉଥିବା ଭଦ୍ରବ୍ୟକ୍ତି କହିଲେ ଯେ ସ୍ୱିଡ଼େନର ରାଜାରାଣୀ ତ ଏଠାରେ ସାଧାରଣ ବସରେ ମଧ୍ୟ ଯିବା ଆସିବା କରନ୍ତି । ଇଂଲଣ୍ଡର ଲୋକଟି ଏଥିରେ ସମ୍ମତ ହୋଇ ପାରିଲା ନାହିଁ କହିଲା ଯେ ଏହା କଦାପି ବିଶ୍ୱାସ ଯୋଗ୍ୟ ନୁହେଁ । ପାଖରେ ବସିଥିବା ବ୍ୟକ୍ତିଟି କହିଲା ମୁଁ ହେଉଛି ସ୍ୱିଡ଼େନର ରାଜା ଗୁସ୍ତାଫ । ଏହା ହେଉଛି ସେ ଦେଶର ଗଣତାନ୍ତ୍ରିକ ବ୍ୟକ୍ତି ସ୍ୱାଧୀନତାର ଉଦାହରଣ ।

ମୁଁ ପ୍ରଧାନ ମନ୍ତ୍ରୀଙ୍କ ସହିତ ଆଲୋଚନା ସମୟରେ ସେ ଦେଶକୁ ସୋଭିଏତ ରୁଷରୁ ଗୋଟିଏ ସରକାରୀ ପ୍ରତିନିଧି ଦଳ ଆସିଥାଆନ୍ତି ସେ ଦେଶରେ ପ୍ରଚଳିତ ବ୍ୟାପକ ସମାଜ କଲ୍ୟାଣ ପଦ୍ଧତି ବିଷୟରେ ଅନୁଧ୍ୟାନ କରିବା ପାଇଁ । ସ୍ୱିଡ଼େନର ଶତକରା ନବେଭାଗ କଳ କାରଖାନା ବ୍ୟକ୍ତିଗତ ସଂପତ୍ତି ଅଥଚ ପୃଥିବୀରେ ସର୍ବଶ୍ରେଷ୍ଠ ସମାଜ କଲ୍ୟାଣ ପଦ୍ଧତି ସେ ଦେଶରେ ପ୍ରଚଳିତ । ଏହା କେବଳ ଆୟକର ମାଧ୍ୟମରେ ସାରା ଦେଶରେ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଶିକ୍ଷା ସ୍ୱାସ୍ଥ୍ୟ, ଅବସର କାଳୀନ ଭତ୍ତା ପ୍ରତ୍ୟେକ ନାଗରିକ ପାଇଁ ବ୍ୟବସ୍ଥା କରା ହୋଇଛି । ଏହା ଦେଖିବା ପାଇଁ ରୁଷର ତତ୍‌କାଳୀନ ରୁଷ ପ୍ରେସିଡେଣ୍ଟ ଗୋର୍ବାଚଭ ଗୋଟିଏ ବିଶେଷଜ୍ଞଦଳ ପଠାଇଥିଲେ । ଏ ବିଷୟରେ ମୁଁ ପ୍ରଧାନ ମନ୍ତ୍ରୀଙ୍କ ସହିତ ପ୍ରାୟ ଦଶମିନିଟ ଧରି ମୁକ୍ତ ମଣ୍ଡପରେ ଆଲୋଚନା କରିଥିଲା । ମୋ ପାଖରେ ମୋର ଝିଅ ସଂଗୀତା ଉପସ୍ଥିତ ଥିଲା ।

■ ■ ■

## ୨୦

# ମନୋବିଜ୍ଞାନ ବିଭାଗ
# ତାର ଜାତୀୟ, ଆନ୍ତର୍ଜାତୀୟ ପ୍ରତିଷ୍ଠା

ବ୍ୟକ୍ତିବିଶେଷରେ ଅଗ୍ରଗତି ଓ କୃତକାର୍ଯ୍ୟ ପାଇଁ ତା'ର ସ୍ୱକୀୟ ପ୍ରତିଭା, ଦକ୍ଷତା, କାର୍ଯ୍ୟନିପୁଣତା, ସମସ୍ତଙ୍କୁ ଚଳାଇବାର କୌଶଳ ଓ ବୌଦ୍ଧିକ ସାମର୍ଥ୍ୟ ଯେତିକି ଦାୟୀ ଏହାର ଉପଯୁକ୍ତ ପ୍ରତିଫଳନ ତଥା ଫଳପ୍ରଦ କ୍ରିୟାଶୀଳତା ଲାଗି ତା'ର ପାରିପାର୍ଶ୍ୱିକ ପରିବେଶକୁ ନିପୁଣ ଭାବେ ନିୟନ୍ତ୍ରଣ, ପରିଚାଳନା ଓ ପରିବର୍ତ୍ତନ କରି ପାରିବାର ଯୋଗ୍ୟତାର ମଧ୍ୟ ସେତିକି ଆବଶ୍ୟକତା ରହିଛି । ଏହି ଦୁଇଟି ପରିସରର ଫଳପ୍ରଦ ସମନ୍ୱିତ ଅଗ୍ରଗତିରେ ବ୍ୟକ୍ତିତ୍ୱର ଅଭିବ୍ୟକ୍ତି ତଥା କୃତିତ୍ୱ ଆହୁରି ବେଶି ମର୍ଯ୍ୟାଦାବନ୍ତ ହୋଇପାରେ । ଜଣେ କେବଳ ନିଜର ଉନ୍ନତି ପାଇଁ ଚେଷ୍ଟା କରି ଯେତିକି ସାଫଲ୍ୟ ଅର୍ଜନ କରିପାରେ ତା'ଠାରୁ ବେଶି କୃତିତ୍ୱ ହାସଲ କରିପାରେ ଗୋଟିଏ ଉତ୍ତମ ସାମାଜିକ ଏବଂ ଅନୁପ୍ରାଣିତ ସହଯୋଗୀମାନଙ୍କ ମାଧ୍ୟମରେ । ମୋର ଏହି ନୀତିରେ ଗଭୀର ବିଶ୍ୱାସ ଥିବାରୁ ମୁଁ ମୋର କେବଳ ବ୍ୟକ୍ତିଗତ ଉନ୍ନତି ସାଧନ ଅପେକ୍ଷା ମୋ ବିଭାଗର ଓ ସହଯୋଗୀ ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କର ଉନ୍ନତିକୁ ଅଗ୍ରାଧିକାର ଦେଇଆସିଛି । ମୋର ବ୍ୟକ୍ତିଗତ ଅର୍ଜିତ ସିଦ୍ଧିକୁ ବିଭାଗୀୟ ଉନ୍ନତି ସହିତ ଓତଃପ୍ରୋତ ଭାବରେ ଜଡ଼ିତ କରି ରଖିଆସିଛି । ବିଭାଗର ଉନ୍ନତିରେ ନିଜର ଉନ୍ନତି ଛାଏଁ ଛାଏଁ ହେବ ଏହି ଦୃଢ଼ ବିଶ୍ୱାସ ଅନୁଯାୟୀ ମୁଁ ପ୍ରଥମରୁ କାମ କରିଆସିଛି । ତେଣୁ ମୋତେ ମୋ ବିଭାଗରୁ ଅଲଗା କରି ଭାବିବା ସହଜ ନୁହେଁ । ସେଥିଲାଗି ବୋଧହୁଏ ମୋତେ ଯେଉଁମାନେ ପସନ୍ଦ କରନ୍ତିନାହିଁ ସେମାନେ ମୋ ବିଭାଗ ବିରୁଦ୍ଧରେ ମଧ୍ୟ ତୀବ୍ର ବିଦ୍ୱେଷ ପୋଷଣ କରିଥାନ୍ତି ।

ପ୍ରତ୍ୟେକ ସୃଜନଶୀଳ କାର୍ଯ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ସମୟ, ସ୍ଥାନ, ପରିସ୍ଥିତି ଓ ବ୍ୟକ୍ତିତ୍ୱର ପାରସ୍ପରିକ ସହଯୋଗର ପ୍ରତିଫଳନ ବୋଲି କୁହାଯାଇପାରେ । ସମୟ ଓ ପରିସ୍ଥିତି ସୁବିଧାଜନକ ନ ହେଲେ ବ୍ୟକ୍ତିର ଦାୟିତ୍ୱ ବହୁତ ବଢ଼ିଯାଏ । ବ୍ୟକ୍ତି ନିଜର ଦକ୍ଷତା, ନିପୁଣତା ଓ ଯଥାଯଥ କୌଶଳର ସହ କଷ୍ଟସାଧ୍ୟ ପରିସ୍ଥିତି ଓ ପ୍ରତିକୂଳ ସମୟକୁ ମଧ୍ୟ ତା ଉଦ୍ଦେଶ୍ୟ ଓ ନିର୍ଦ୍ଦିଷ୍ଟ ଯୋଜନା ଅନୁସାରେ ପରିବର୍ତ୍ତିତ କରି ଦେଇପାରେ । ଏଥିପାଇଁ ବହୁତ ପରିଶ୍ରମ କରିବାକୁ ପଡ଼େ, କିନ୍ତୁ ପରିସ୍ଥିତିକୁ ନିଜ ଇଚ୍ଛା ଅନୁସାରେ ତିଆରି କରିଦେଇ

ପାରିଲେ ତାରି ମାଧ୍ୟମରେ ସେ ସହଜରେ ନିଜେ ମଧ୍ୟ ଆଗେଇ ଚାଲେ । ନିଜ ଦ୍ୱାରା ପରିବର୍ତ୍ତିତ ପରିବେଶ ସହିତ ତାର କ୍ରିୟାକଳାପ ଅଙ୍ଗାଙ୍ଗୀ ହୋଇ ଚାଲେ । ବହୁ ସୁବିଧା ସୁଯୋଗ ଆପେ ଆପେ ଆସି ପହଞ୍ଚେ ଅଥଚ ଯେ ନିଜର ଉନ୍ନତି ପାଇଁ କେବଳ ବ୍ୟସ୍ତ ରହେ ସେ ନିଜ ଜୀବନରେ ମଧ୍ୟ ବିଶେଷ କିଛି ହାସଲ କରିପାରେ ନାହିଁ । ଅର୍ଥାତ୍ ପ୍ରତ୍ୟେକ ବ୍ୟକ୍ତି ଉପରକୁ ଉଠିବା ପାଇଁ ନିଜ ପରିବେଶର ବଳିଷ୍ଠ ସାଙ୍ଗଠନିକ ମୂଳଭିତ୍ତି ତିଆରି କରିବା ଦରକାର ।

ଏ ବିଶ୍ୱାସ ନେଇ ମୁଁ ମୋ ବିଭାଗକୁ ପ୍ରଥମରୁ ଗଢ଼ିଲି । ଏହାର ଆଧୁନିକ ପାଠ୍ୟକ୍ରମ ଓ ଅଧ୍ୟାପନାର ଉତ୍କର୍ଷତା ଯୋଗୁଁ ଆମ ବିଭାଗର ବହୁ ଛାତ୍ରଛାତ୍ରୀ ସର୍ବଭାରତୀୟ ପ୍ରତିଯୋଗିତାରେ କମନ୍‌ୱେଲ୍‌ଥ ବୃତ୍ତି ପାଇଲେ । ୧୯୫୮ ମସିହାରେ ସ୍ନାତକୋତ୍ତର ବିଭାଗ ଖୋଲିଲା ଏବଂ କୋଡ଼ିଏ ବର୍ଷ ଭିତରେ ଆମ ବିଭାଗର ୧୮ଜଣ ଛାତ୍ରଛାତ୍ରୀ ଓ ଅଧ୍ୟାପକ ବିଦେଶରେ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ଏହି ପ୍ରତିଭାଶାଳୀ ଛାତ୍ରଛାତ୍ରୀମାନେ ଦେଶ ବିଦେଶକୁ ଗଲେ ଆମ ବିଭାଗର ପତାକା ଧରି । ଉତ୍ତମ ପାଠ୍ୟକ୍ରମ ଓ ଅଧ୍ୟାପନା ପାଇଁ ମୁଁ କାର୍ଯ୍ୟକ୍ରମ ପ୍ରସ୍ତୁତ କଲି ସତ କିନ୍ତୁ ତା'ପରେ ଆମର ଗୌରବ ଏମାନେ ପ୍ରସାରିତ କରିପାରିଲେ । ଏହି ୧୮ଜଣଙ୍କ ବ୍ୟତୀତ ୧୯୮୧ ସୁଦ୍ଧା ଆହୁରି ଦଶ ବାରଜଣ ଅଧ୍ୟାପକ ବିଭିନ୍ନ ଗବେଷଣା କାର୍ଯ୍ୟକ୍ରମ ନେଇ ବିଦେଶରେ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟକୁ ଯାଇଥିଲେ । ଆମ ବିଭାଗ ବିଷୟରେ ଯେଉଁ ପୁସ୍ତିକା ଛପାହୋଇ ବିଶ୍ୱବିଦ୍ୟାଳୟ କମିଶନଙ୍କୁ ଦିଆ ହୋଇଥିଲା ସେଥିରେ ଆମ ବିଭାଗର ଏ ସମସ୍ତ କୃତିତ୍ୱ ବର୍ଣ୍ଣନା ହୋଇଛି । ଏହି ସମୟରେ ମଧ୍ୟ ଭାରତର ଗବେଷଣା ଅନୁଷ୍ଠାନରୁ ଆମେ ୧୯ଟି ଗବେଷଣା କାର୍ଯ୍ୟକ୍ରମ ପାଇଁ ଲକ୍ଷ ଲକ୍ଷ ଟଙ୍କା ଅନୁଦାନ ପାଇଥିଲୁ । ଆମ ଅଧ୍ୟାପକ ଓ ମୋ ଦ୍ୱାରା ତିନି ଚାରିଶହ ଗବେଷଣାତ୍ମକ ପ୍ରବନ୍ଧ ଓ କେତେଗୁଡ଼ିଏ ଗବେଷଣା ବିବରଣୀ ତଥା ବହି ପ୍ରକାଶିତ ହୋଇଥିଲା ।

ପ୍ରଥମ କିଛିବର୍ଷ ପରେ ପ୍ରତ୍ୟେକ ପଞ୍ଚବାର୍ଷିକ ଯୋଜନା ପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କ ପରିଦର୍ଶକ କମିଟି ଆମ ବିଭାଗକୁ ଅତି ଉଚ୍ଚ ପ୍ରଶଂସା କରି ସେମାନଙ୍କର ମନ୍ତବ୍ୟ ପ୍ରକାଶ କରିଛନ୍ତି । ତୃତୀୟ ଓ ଚତୁର୍ଥ ପଞ୍ଚବାର୍ଷିକ ଯୋଜନା କାଳର କମିଟି ଆମ ବିଭାଗର ଶିକ୍ଷା ଓ ଗବେଷଣା କ୍ଷେତ୍ରରେ ଉତ୍କୃଷ୍ଟ କାର୍ଯ୍ୟକ୍ରମ ଯୋଗୁ ଏହାକୁ ଗୋଟିଏ ଆଡ଼ଭାନ୍‌ସଡ୍ ସେଣ୍ଟର ବା ଅଗ୍ରଗାମୀ ଶିକ୍ଷା ଓ ଗବେଷଣା କେନ୍ଦ୍ର ରୂପେ ସ୍ୱୀକୃତି ଦେବାଲାଗି କମିଶନଙ୍କୁ ସୁପାରିଶ କରିଥିଲେ ଏବଂ ଶେଷରେ ଏହା ମନୋବିଜ୍ଞାନରେ ଭାରତର ସର୍ବପ୍ରଥମ ଆଡ଼ଭାନ୍‌ସ ସେଣ୍ଟର ରୂପେ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କ ଦ୍ୱାରା ଘୋଷିତ ହୋଇଥିଲା । ଓଡ଼ିଶା ବିଶ୍ୱବିଦ୍ୟାଳୟମାନଙ୍କରେ ଏହା ବର୍ତ୍ତମାନ ସୁଦ୍ଧା ସର୍ବପ୍ରଥମ ଏବଂ ଏକମାତ୍ର ଅଗ୍ରଗାମୀ ବିଭାଗ ହୋଇ ରହିଛି । ଏଥିପାଇଁ ଆମମାନଙ୍କୁ ଧାରାବାହିକ ଭାବରେ ବର୍ଷ ବର୍ଷ ଧରି ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା ।

୧୯୭୧-୭୨ରେ ବିଶ୍ୱବିଦ୍ୟାଳୟ କମିଶନ କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷଣ ବିଜ୍ଞାନ ବିଷୟରେ ଗବେଷଣା ଓ ଅଧ୍ୟାପନାର ଉନ୍ନତି ପାଇଁ ପଞ୍ଚବାର୍ଷିକ ଯୋଜନା ବାହାରେ ଅଧିକା କୋଟିଏ ଟଙ୍କା ଅଲଗା ରଖିଥିଲେ । ଏହି ଅନୁଦାନ ବାଣ୍ଟିବା ଉଦ୍ଦେଶ୍ୟରେ

ବହୁ ବିଶ୍ୱବିଦ୍ୟାଳୟର ଶିକ୍ଷଣ ବିଜ୍ଞାନ ବିଭାଗକୁ ଆମେମାନେ ଯାଇଥିଲୁ କିନ୍ତୁ ଦୁଃଖର ବିଷୟ ଯେ ମାତ୍ର ୩୦ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇପାରିଥିଲା । କାରଣ ଏମାନଙ୍କୁ ପରିଦର୍ଶକମାନେ ଟଙ୍କା ଯାଚିଥିଲେ ସୁଦ୍ଧା ଏମାନେ ଅଧ୍ୟାପନା କିମ୍ବା ଗବେଷଣାଗତ ଯୋଜନା କମିଶନଙ୍କ ପାଖକୁ ପଠାଇବାରେ ଅସମର୍ଥ ହୋଇଥିଲେ । ପରିଦର୍ଶକ କମିଟିର ସଭ୍ୟ ହିସାବରେ ମୁଁ ଏମାନଙ୍କୁ ଏହିକାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଆଗଭର ହୋଇଥିଲେ ସୁଦ୍ଧା ଏମାନେ ଯୋଜନା କରିପାରିନଥିଲେ । ଭାରତବର୍ଷରେ ଶିକ୍ଷଣ ବିଭାଗର ମାନ ତଥା ଅଧିକାଂଶ ବିଭାଗର ଦକ୍ଷତା କେତେ କମ୍ ତାହା ଆମେମାନେ ହୃଦୟଙ୍ଗମ କରିଥିଲୁ । ବର୍ତ୍ତମାନ ସୁଦ୍ଧା ଏହା ସେହିପରି ନିମ୍ନମାନର ରହିଛି ।

ତା'ପରେ ମୁଁ ଆଗଭର ହୋଇ ବାହାରିଲି ମୋ ବିଭାଗରେ ଶିକ୍ଷଣ ମନୋବିଜ୍ଞାନ (Educational Psychology) ଶାଖା ଖୋଲିବା ଲାଗି । ବିଶ୍ୱବିଦ୍ୟାଳୟ କମିଶନ ମୋ ପ୍ରସ୍ତାବରେ ରାଜି ହୋଇଗଲେ ଏବଂ ମୋତେ ଅଧିକା ଗୋଟିଏ ପ୍ରଫେସର୍, ଦୁଇଟି ଲେକ୍‌ଚରର୍, ଦୁଇଜଣ ଗବେଷଣା ସହକାରୀ, ନୂଆ ଘର, ଉପକରଣ ଓ ବହିପାଇଁ ବହୁତ ଟଙ୍କା ଯୋଗାଇ ଦେଇଥିଲେ । ତା'ଫଳରେ ଏହି ଶାଖାଟିକୁ ମୁଁ ମୋ ବିଭାଗରେ ଖୋଲିଲି ଏବଂ ସେଥିପାଇଁ ଅଧିକା ଗୋଟିଏ ପ୍ରଫେସର୍ ଓ ଅନ୍ୟମାନଙ୍କୁ ନିଯୁକ୍ତ କଲି । ତା'ପୂର୍ବରୁ ମୋ ବିଭାଗରେ ପ୍ରାଣୀ ମନୋବିଜ୍ଞାନ ଶାଖା ଖୋଲିବା ପାଇଁ ଅଧିକା ଘର, ଉପକରଣ ଓ ବହିପାଇଁ ଅଧିକା ଟଙ୍କା ଏବଂ ଗୋଟିଏ ରିଡର ପଦବୀ ଆଣିଥିଲି । ପରେ ଏଥିରେ ମଧ ପ୍ରଫେସର ପଦ ସୃଷ୍ଟି କରାଇଥିଲି । ଯେତେବେଳେ ବିଶ୍ୱବିଦ୍ୟାଳୟର ଅନ୍ୟାନ୍ୟ ବିଭାଗୀୟ ମୁଖ୍ୟମାନେ ଦ୍ୱିତୀୟ ପ୍ରଫେସର ପଦବୀ ସୃଷ୍ଟି ପାଇଁ ପ୍ରବଳ ବିରୋଧ କରୁଥିଲେ ମୋ ବିଭାଗରେ ତିନୋଟି ପ୍ରଫେସର ପଦବୀ ହୋଇଥିଲା । ଫଳରେ ଅଧିକାଂଶ ମୁଖ୍ୟ ଅଧ୍ୟାପକ ମୋ ବିରୁଦ୍ଧରେ ଲାଗିଥିଲେ । କିନ୍ତୁ ସେମାନଙ୍କ ବିରୋଧ ସତ୍ତ୍ୱେ ମୁଁ ମୋ ବିଭାଗକୁ ଶୀର୍ଷ ସ୍ଥାନକୁ ନେଇ ପାରିଥିଲି । ଯେଉଁ ବର୍ଷ ମୋ ବିଭାଗ ଅଗ୍ରଗାମୀ କେନ୍ଦ୍ରରୂପେ ଘୋଷିତ ହୋଇଥିଲା ଆମ ବିଶ୍ୱବିଦ୍ୟାଳୟର ଜଣେ ମୁଖ୍ୟ ଅଧ୍ୟାପକ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନର ଗୋଟିଏ କମିଟି ସଭାରେ ଏହା ବିରୁଦ୍ଧରେ ଆପତ୍ତି ଉଠାଇଥିଲେ ବୋଲି ମୋତେ କମିଶନଙ୍କ ସେକ୍ରେଟାରୀ କହିଥିଲେ । ଓଡ଼ିଶାର ଏହା ଦୁର୍ଭାଗ୍ୟ ।

ମୁଁ ଯେତେବେଳେ ୧୯୮୧ରେ ଅବସର ନେଲି ସେତେବେଳକୁ ମୋ ବିଭାଗ ଭାରତର ମନସ୍ତତ୍ତ୍ୱ ବିଭାଗମାନଙ୍କ ମଧ୍ୟରେ ସର୍ବବୃହତ୍ ଏବଂ ସର୍ବଶ୍ରେଷ୍ଠ ବିଭାଗ ରୂପେ ପରିଗଣିତ ହୋଇଥିଲା । ସାରା ଏସିଆ ମହାଦେଶରେ ମଧ ଏହା ଗୋଟିଏ ଉତ୍କୃଷ୍ଟ ବିଭାଗ ବୋଲି ଖ୍ୟାତି ଅର୍ଜନ କରିପାରିଥିଲା । ବିଭାଗରେ ଅଧ୍ୟାପନା ପାଇଁ ୧୮ଜଣ, ଗବେଷଣା ପାଇଁ ୩୪ ଜଣ ଓ ଅନ୍ୟାନ୍ୟ ସାହାଯ୍ୟକାରୀ କର୍ମଚାରୀ ୧୬ଜଣ ଥିଲେ । ତା'ଛଡ଼ା ବିଭିନ୍ନ ଗବେଷଣା କାର୍ଯ୍ୟକ୍ରମ ପାଇଁ ସାମୟିକ ଭାବରେ କେତେକ ଗବେଷକ ମଧ ଥିଲେ । ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୫ଟି ବଖରା ଘର ପାଇଥିଲି । ମୁଁ ବିଭାଗ ଛାଡ଼ିଲା ବେଳକୁ ଏହାର ୫୦ଟି ବଖରା ଘର ଥିଲା । ଏସବୁ ଅଧିକା ଘର ପାଇଁ ବିଶ୍ୱବିଦ୍ୟାଳୟ କମିଶନଙ୍କଠାରୁ ଟଙ୍କା ଆଣିଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟର ଏଥିରେ କୌଣସି ଆର୍ଥିକ ସହାୟତା ନଥିଲା । ବିଭାଗୀୟ ପୁସ୍ତକାଳୟରେ କେବଳ ୧୦ହଜାର ଯାଏ ବହିଥିଲା ।

ବ୍ରିଟିଶ କାଉନସିଲ୍ ଆନୁକୂଲ୍ୟରେ ପ୍ରାୟ ଦୁଇ ହଜାର ଅତି ଆଧୁନିକ ପ୍ରକାଶିତ ମନୋବିଜ୍ଞାନ ପୁସ୍ତକ ଆଣିଥିଲି । ବହିପାଇଁ ମୋ ବିଭାଗରେ ବର୍ଷକୁ ପ୍ରାୟ ଏକଲକ୍ଷ ଟଙ୍କା ଖର୍ଚ୍ଚ ହେଉଥିଲା । ଗବେଷଣା ପାଇଁ ବାର୍ଷିକ ୨୫ ହଜାର, ବହି ଛପାଇବା ପାଇଁ ବର୍ଷକୁ ୨୦ ହଜାର ଓ ଅନ୍ୟାନ୍ୟ ବହୁ ଟଙ୍କା ବିଶ୍ୱବିଦ୍ୟାଳୟ କମିଶନ ଅଗ୍ରଗାମୀ ବିଭାଗ ଯୋଗୁ ବାର୍ଷିକ ବ୍ୟୟ ବରାଦ କରିଥିଲେ । ଅଧ୍ୟାପକ ଓ ଗବେଷକମାନେ ବାହାରକୁ ଯାଇ ଗବେଷଣା କାର୍ଯ୍ୟ କରିବାପାଇଁ ଗୋଟିଏ ଭ୍ୟାନ୍ କିଣା ହୋଇଥିଲା । ଏହି ଭ୍ୟାନ୍‌ଟି ବିଭାଗ ପାଖରେ ସବୁବେଳେ ପ୍ରସ୍ତୁତ ହୋଇରହିଥାଏ ଗବେଷକମାନଙ୍କୁ ଭିନ୍ନ ଭିନ୍ନ ସ୍ଥାନକୁ ନେବା ଆଣିବା ପାଇଁ ।

ଆମ ବିଭାଗର ଅଧ୍ୟାପକ ଓ ସବୁ କର୍ମଚାରୀ ସାଢ଼େ ଦଶରୁ ଏଗାର ଭିତରେ ବିଭାଗରେ ଆସି ପହଞ୍ଚୁଥିଲେ ଏବଂ ସାଢ଼େଚାରିଟା ପୂର୍ବରୁ କେହି ଜଣେ ସୁଦ୍ଧା ବିଭାଗ ଛାଡ଼ି ଯାଉନଥିଲେ । ସାଢ଼େ ଚାରିଟା ପୂର୍ବରୁ କାହାରି ଯିବାର ଥିଲେ ମୋ'ଠାରୁ ବିଶେଷ ଅନୁମତି ନେଇ ଯାଉଥିଲେ । ଯେ ଯେଉଁ ପ୍ରକାର ପଦନ୍ନୋତି ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ ସେ ସେହି ପ୍ରକାର ପଦନ୍ନୋତି ପାଇଥିଲେ । ଗବେଷଣା ପାଇଁ ଯାହାର ଯେତିକି ଅର୍ଥ ଓ ଉପକରଣର ଆବଶ୍ୟକତା ଥିଲା ତା'ର ସମସ୍ତ ବ୍ୟବସ୍ଥା ହୋଇପାରୁଥିଲା ।

ମୁଁ ଆସିବାର କେତେଦିନ ପୂର୍ବରୁ ବିଭାଗର ଗୋଟିଏ ମର୍ଯ୍ୟାଦାବନ୍ତ ସଭାରେ କୁଳାଧିପତି, କୁଳପତି, ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନର ଚେୟାରମ୍ୟାନ୍ ପ୍ରଫେସର ସତୀଶ୍ ଚନ୍ଦ୍ରଙ୍କ ଉପସ୍ଥିତିରେ ମୁଁ ଘୋଷଣା କରିଥିଲି ଯେ- ମୋ ବିଭାଗରେ ଯାହା ଦରକାର ସବୁ ବର୍ତ୍ତମାନ ରହିଛି । ଯାହାର ଯେଉଁ ପଦନ୍ନୋତି ଆଶା ଥିଲା ତାହା ପୂରଣ ହୋଇଛି । ତେଣୁ କେହି ଅସନ୍ତୁଷ୍ଟ ନୁହନ୍ତି । ଗବେଷଣାଗତ ପୁସ୍ତକ ପ୍ରକାଶନ, ବହି ଓ ଜର୍ଣ୍ଣାଲ କିଣିବା ପାଇଁ ଯଥେଷ୍ଟ ଅର୍ଥ ମହଜୁଦ୍ ଅଛି, ଗବେଷଣା ପାଇଁ ଯାହା ଉପକରଣର ପ୍ରୟୋଜନ ସେ ସବୁ କିଣିବା ପାଇଁ ପାଣ୍ଠି ରହିଛି । ପୂରା ସମୟ ଦେବାଭଳି ବହୁ ଗବେଷଣା ସହକାରୀ ବିଭାଗରେ କାମ କରୁଛନ୍ତି । ଏପରି ପରିସ୍ଥିତିରେ ବିଭାଗ ପ୍ରତି ସମସ୍ତଙ୍କର ନଜର ରହିବା ଉଚିତ୍ ଯେ ଏ ପ୍ରକାର ଖର୍ଚ୍ଚ ବହୁଳ, ମର୍ଯ୍ୟାଦାବନ୍ତ ବିଭାଗ କି ପ୍ରକାର ଗବେଷଣାତ୍ମକ ଓ ଅଧ୍ୟାପନା କାର୍ଯ୍ୟ ଏବଂ ସାମାଜିକ ପ୍ରୟୋଗାତ୍ମକ କାର୍ଯ୍ୟକ୍ରମ ଆଗେଇପାରୁଛି । ଏହାର ଏହି ବିରାଟ ଉଦ୍ଦେଶ୍ୟ ସାଧିତ ନ ହେଲେ ଏହାକୁ ବନ୍ଦ କରିଦେବା ଉଚିତ । ଗରିବ ଦେଶର ଏତେ ଟଙ୍କା ବୃଥା ବ୍ୟୟ ହେବା ଉଚିତ ନୁହେଁ ।'

ବିଭାଗର ମର୍ଯ୍ୟାଦା ଓ ପ୍ରତିଷ୍ଠା ଏପରି ଥିଲା ଯେ ଆନ୍ତର୍ଜାତିକ ତୁଳନାତ୍ମକ ସାଂସ୍କୃତିକ ମନୋବିଜ୍ଞାନର ଅଧିବେଶନକୁ ଯେତେବେଳେ ଭାରତରେ ଆୟୋଜନ କରିବାର ସ୍ଥିର ହେଲା, ମୋତେ ହିଁ ଅନୁରୋଧ କରାଗଲା ଏହାର ଦାୟିତ୍ୱ ନେବାପାଇଁ । କାରଣ ଭାରତର ଆଉ କୌଣସି ମନୋବିଜ୍ଞାନ ବିଭାଗ ଏହାର ଦାୟିତ୍ୱ ନେବାପାଇଁ ଅସାମର୍ଥ୍ୟ ପ୍ରକାଶ କରିଥିଲେ । ଆମ ବିଭାଗ ପ୍ରାୟ ୨୦୦ ବିଦେଶୀ ଓ ୨୦୦ ଭାରତୀୟ ମନୋବିଜ୍ଞାନୀମାନଙ୍କର ଆନ୍ତର୍ଜାତିକ ଅଧିବେଶନ ୧୯୮୦-୮୧ରେ ବିରାଟ ଆଡ଼ମ୍ବର ସହ ପରିଚାଳନା କରିଥିଲା । ଆମ ବିଭାଗର ଶିକ୍ଷକ ଓ କର୍ମଚାରୀମାନଙ୍କର ନିଷ୍ଠା ଓ ପ୍ରଗାଢ଼ ଆନ୍ତରିକ ଉଦ୍ୟମ ଯୋଗୁଁ ହିଁ ଏହା ଏତେ କୃତକାର୍ଯ୍ୟତାର ସହ ଅନୁଷ୍ଠିତ ହୋଇପାରିଥିଲା । ମୁଁ ଏହି ଅଧିବେଶନର ଅଧ୍ୟକ୍ଷ ଥିଲି । ଦୁଇବର୍ଷ ପରେ ମୁଁ ଯେତେବେଳେ ସ୍କଟଲାଣ୍ଡର ଆବେରଡିନ୍‌ଠାରେ ତା'ପର

ଅଧିବେଶନରେ ଯୋଗ ଦେବାକୁ ଯାଇଥିଲି ସମସ୍ତ ପ୍ରତିନିଧି ସଭ୍ୟ ମୋତେ ଓ ମୋ ବିଭାଗକୁ ବହୁ ପ୍ରଶଂସା କରିଥିଲେ । ଏହି ଗୋଟିଏ ଆନ୍ତର୍ଜାତିକ ଅଧିବେଶନ ଫଳରେ ହିଁ ପୃଥିବୀର ବହୁ ଦେଶରେ ଆମର ସୁଖ୍ୟାତି ବଢ଼ି ଯାଇଥିଲା ।

ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ, ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦ, ଜାତୀୟ ଶିକ୍ଷା ଗବେଷଣା ପରିଷଦ, ଦିଲ୍ଲୀର ସମାଜ ବିକାଶ ପରିଷଦ ଓ ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟମାନଙ୍କରେ ଆମ ବିଭାଗର ଖ୍ୟାତି ଓ ମର୍ଯ୍ୟାଦା ବହୁତ ଥିଲା । ତା'ପରେ ମୁଁ ଯେଉଁ ଗବେଷଣା କେନ୍ଦ୍ର କିମ୍ବା ବିଶ୍ୱବିଦ୍ୟାଳୟକୁ ଯାଏ, ଯେଉଁ ଅଧିବେଶନ ବା କମିଟିରେ ସଭ୍ୟ ରହେ ସେଠାରେ ମୋର ମର୍ଯ୍ୟାଦା ବହୁତ ବେଶି ଥାଏ । ତା'ଛଡ଼ା ଏହିସବୁ ଅନୁଷ୍ଠାନର ବହୁ କମିଟିରେ ମଧ୍ୟ ମୁଁ ସଭ୍ୟଥାଏ । ଯେକୌଣସି ସମୟରେ ବିଶ୍ୱବିଦ୍ୟାଳୟ କମିଶନର ଆଠ-ଦଶଟି କମିଟିରେ ମୁଁ ସଭ୍ୟ ଥାଏ । ପ୍ରତ୍ୟେକ ପଞ୍ଚବାର୍ଷିକ ଯୋଜନା ଲାଗି କମିଶନରଙ୍କ ପରିଦର୍ଶକ କମିଟିରେ ମୁଁ ପ୍ରାୟ ପନ୍ଦର-କୋଡ଼ିଏଟି ବିଶ୍ୱବିଦ୍ୟାଳୟକୁ ପରିଦର୍ଶନରେ ଯାଏ । ସମସ୍ୟାବହୁଳ ବିଶ୍ୱବିଦ୍ୟାଳୟମାନଙ୍କୁ ମୋତେ ପଠାଯାଏ । କଲିକତା ବିଶ୍ୱବିଦ୍ୟାଳୟ ଜାତୀୟ ବିଶ୍ୱବିଦ୍ୟାଳୟ ହେବା ପାଇଁ ବିଶ୍ୱବିଦ୍ୟାଳୟ କମିଶନଙ୍କ ଉପରେ ପଶ୍ଚିମବଙ୍ଗ ସରକାରଙ୍କର ପ୍ରବଳ ଚାପ ପଡୁଥାଏ । ସେ ବିଷୟରେ ସମୀକ୍ଷା କରି ରିପୋର୍ଟ ଦେବାଲାଗି ଏବଂ କଲିକତା ବିଶ୍ୱବିଦ୍ୟାଳୟର ପରିଦର୍ଶନ ଲାଗି ଗଠିତ ଦୁଇଟି କମିଟିରେ ମୁଁ ଥାଏ । ଅଧ୍ୟାପକ ଆର୍.ଏନ୍. ବାନାର୍ଜୀଙ୍କର ଜୟପୁର ବିଶ୍ୱବିଦ୍ୟାଳୟରେ ପୁନର୍ଜନ୍ମ ପ୍ରଭୃତି ଅଲୌକିକ ଘଟଣା ଉପରେ ଗବେଷଣା ନେଇ ଦେଶ ବିଦେଶରେ ବହୁତ ଚହଳ ପଡ଼ିଥାଏ । ନାନାଆଡୁ ଲକ୍ଷ ଲକ୍ଷ ଟଙ୍କା ସେ ଅନୁଦାନ ପାଇଥା'ନ୍ତି । ତାହାର ସମୀକ୍ଷା ପାଇଁ ଆନ୍ତର୍ଜାତିକ ସ୍ତରରେ ବିଶ୍ୱବିଦ୍ୟାଳୟ କମିଶନଙ୍କ ଉପରେ ପ୍ରବଳ ଚାପ ପଡ଼ିଲା । ମୋ ଅଧ୍ୟକ୍ଷତାରେ ତାଙ୍କ କାର୍ଯ୍ୟର ସମୀକ୍ଷା କରାଗଲା ଏବଂ ଆମ ରିପୋର୍ଟ ଅନୁଯାୟୀ ସେହି ବିଭାଗକୁ ବନ୍ଦ କରି ଦିଆଯାଇଥିଲା ଏବଂ ଅଧ୍ୟାପକ ବାନାର୍ଜୀଙ୍କର ଚାକିରି ମଧ୍ୟ ଯାଇଥିଲା । ଏହିସବୁ ପରିସ୍ଥିତିରେ ମୋର ସ୍ପଷ୍ଟ ଓ ଦୃଢ଼ ମତ ମୁଁ ଉପସ୍ଥାପିତ କରେ, ତେଣୁ କମିଶନ ଏପରି କଠୋର କାର୍ଯ୍ୟରେ ମୋତେ ନିଯୋଜିତ କରନ୍ତି ।

ବିଶ୍ୱବିଦ୍ୟାଳୟ କମିଶନଙ୍କ ତରଫରୁ ପୂର୍ବାଞ୍ଚଳରେ ଯଦି କୌଣସି ସେମିନାର, କନ୍‌ଫରେନ୍ସ କିମ୍ବା ୱାର୍କସପ୍ ପ୍ରଭୃତିର ଯୋଜନା ହୁଏ ତାହା ମୋ ବିଭାଗରେ କିମ୍ବା ମୋ ଦାୟିତ୍ୱରେ ଉତ୍କଳ ବିଶ୍ୱବିଦ୍ୟାଳୟରେ କରାହୁଏ । ଏ ପ୍ରକାର ବହୁତ କାର୍ଯ୍ୟକ୍ରମ ଉତ୍କଳ ବିଶ୍ୱବିଦ୍ୟାଳୟରେ ମୋ ଯୋଗୁ ସମ୍ଭବ ହୋଇଥିଲା । କଲିକତା, ପାଟନା କି ଗୌହାଟୀରେ ପୂର୍ବାଞ୍ଚଳର ଅଧିକାଂଶ ବିଶ୍ୱବିଦ୍ୟାଳୟ କମିଶନଙ୍କ ସେମିନାର ନ ହୋଇ ଭୁବନେଶ୍ୱରରେ ହୁଏ ।

ବିଶ୍ୱବିଦ୍ୟାଳୟ କମିଶନ ଠିକ୍ କଲେ ଯେ ପ୍ରତ୍ୟେକ ବିଷୟରେ ପାଠ୍ୟକ୍ରମ ଆଧୁନିକକରଣ କରାଯିବ ଏବଂ ଗବେଷଣାର ଦିଗ୍‌ଦର୍ଶନ ନିର୍ଦ୍ଧାରିତ ହେବ । ସେ ବିଷୟରେ ସାରା ଭାରତବର୍ଷରେ ପ୍ରତ୍ୟେକ ବିଷୟରେ ଚାରୋଟି କରି ସେମିନାର ହେବ । ମନୋବିଜ୍ଞାନ ବିଷୟରେ ମୁଁ ଏହି ଚାରୋଟିଯାକ ସେମିନାର ପାଇଁ ନିର୍ଦ୍ଦେଶକ ହେଲି । ଏହାର ପ୍ରାଥମିକ କାର୍ଯ୍ୟକାରୀ ପ୍ରବନ୍ଧ ଲେଖିଲି । ଆଲାହାବାଦ, ବରୋଦା, ମହୀଶୂର ଓ ଭୁବନେଶ୍ୱରରେ

ଏହି ଚାରୋଟି ସେମିନାର ହେଲା । ଶେଷରେ ପ୍ରାୟ ୨୦୦ ପୃଷ୍ଠା ବ୍ୟାପୀ ଶେଷ ବିବରଣୀଟିକୁ ମୁଁ ତିଆରି କଲି ଏବଂ କଟକରେ ମୁଦ୍ରଣ କରି କମିଶନଙ୍କ ପାଖକୁ ପଠାଇଲି । ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦର ଉଚ୍ଚସ୍ତରୀୟ ଶିକ୍ଷା ଓ ଗବେଷଣା ସମ୍ବନ୍ଧୀୟ ବହୁ ଅଧ୍ୟାପକ ତାଲିମ୍ କାର୍ଯ୍ୟକ୍ରମ ମୋ ବିଭାଗର ଅଧ୍ୟକ୍ଷତାରେ ହୋଇଥିଲା । ଡକ୍ଟର ସି.ଡି. ଦେଶମୁଖଙ୍କର ଅଧ୍ୟକ୍ଷତାରେ ଦିଲ୍ଲୀରେ ଥିବା ସାମାଜିକ ବିକାଶ ପରିଷଦ ଓଡ଼ିଶାରେ କେଆର ଦ୍ୱାରା ପରିଚାଳିତ ମଧ୍ୟାହ୍ନ ଭୋଜନ ସମୀକ୍ଷା ବିଷୟରେ ଗୋଟିଏ ସାତ ଲକ୍ଷ ଟଙ୍କାର ଗବେଷଣା ଯୋଜନା ଭୁବନେଶ୍ୱରରେ ମୋ ନେତୃତ୍ୱରେ କାର୍ଯ୍ୟକାରୀ କରାଇଥିଲେ । ଏହି ବିରାଟ ଗବେଷଣାରେ ପ୍ରାୟ ସତୁରୀ-ଅଶୀ ଜଣାଯାଏ ଏମ୍.ଏ. ପାଶ୍ କରିଥିବା ଯୁବକ ଯୁବତୀ ଗବେଷଣା କାର୍ଯ୍ୟ ପାଇଁ ନିଯୁକ୍ତ ହୋଇଥିଲେ । ଏହାର ରିପୋର୍ଟ ଠିକ୍ ସମୟରେ ପ୍ରକାଶିତ ହୋଇଥିଲା । ଏହି କାର୍ଯ୍ୟରେ ଡକ୍ଟର ଦେଶମୁଖ ମୋ ଉପରେ ଏତେ ଖୁସି ହୋଇଯାଇଥିଲେ ଯେ ତାଙ୍କର ଦିଲ୍ଲୀ କେନ୍ଦ୍ରର ନିର୍ଦ୍ଦେଶକ ହେବାପାଇଁ ମୋତେ ଅନୁରୋଧ କରିଥିଲେ । କିନ୍ତୁ ମୁଁ ମୋ ବିଭାଗର ଉନ୍ନତି ପାଇଁ ମୁଁ ଏତେ ଗଭୀର ଭାବରେ ସଂପୃକ୍ତ ଥିଲି ଯେ ମାସକୁ ଦୁଇଗୁଣ ଅଧିକ ଦରମା ପାଇବାର ସୁଯୋଗ ଥିଲେ ମଧ୍ୟ ମୁଁ ଦିଲ୍ଲୀ ଗଲିନାହିଁ । ମୋତେ ଡକ୍ଟର ଦେଶମୁଖ ବୁଝାଇଥିଲେ ଯେ ଦିଲ୍ଲୀ ଗଲେ ମୁଁ ବହୁତ ଲୋକଙ୍କ ସାଙ୍ଗରେ ମିଶିବି ଏବଂ ଆହୁରି ବେଶି ଆଗେଇ ପାରିବି । ମୁଁ କହିଥିଲି ଯେ ଦିଲ୍ଲୀରେ ମନ୍ତ୍ରୀ, ପାର୍ଲିଆମେଣ୍ଟ ସଭ୍ୟ ଓ ଅନ୍ୟାନ୍ୟ ବିଶିଷ୍ଟ ଲୋକଙ୍କ ସଂସ୍ପର୍ଶରେ ଆସିଲେ ମୁଁ ହୁଏତ ଶେଷରେ ଗୋଟିଏ ରାଷ୍ଟ୍ରଦୂତ ହୋଇଯାଇପାରେ । କିନ୍ତୁ ମୁଁ ଯାହା କଲେ ବି ମୋତେ କେହି ଇଂଲଣ୍ଡ, ଆମେରିକା କିମ୍ବା ସୋଭିଏତ୍ ରୁଷ୍ର ରାଷ୍ଟ୍ରଦୂତ କରିବେ ନାହିଁ, ଶେଷରେ ଘାନା କିମ୍ବା ମାଲେସିଆରେ ରାଷ୍ଟ୍ରଦୂତ ହେବି । ଗୋଟିଏ ଛୋଟିଆ ଦେଶର ରାଷ୍ଟ୍ରଦୂତ ହୋଇ ଗୃହବନ୍ଦୀ ପରି ରହିବାରେ ମୋର ଆନନ୍ଦ କିମ୍ବା ଆଗ୍ରହ ନଥିଲା । ଡକ୍ଟର ଦେଶମୁଖ ମୋ ଉପରେ ଖୁସିହୋଇ ଦିଲ୍ଲୀର ତାଙ୍କ ଅଧ୍ୟକ୍ଷତାରେ ପରିଚାଳିତ ବିଖ୍ୟାତ ଅତିଥି ଭବନ ଭାରତ ଆନ୍ତର୍ଜାତିକ କେନ୍ଦ୍ର (India-International Centre)ରେ ରହିବା ପାଇଁ ମୋର ସ୍ୱତନ୍ତ୍ର ବ୍ୟବସ୍ଥା କରିଦେଇଥିଲେ । ଅନ୍ୟମାନେ ଏଠାରେ ରହିବାପାଇଁ ଦିନକୁ ଦୁଇଶହ ଟଙ୍କା ଦେଉଥିଲା ବେଳେ ମୋତେ ପ୍ରାୟ ପଚାଶ ଟଙ୍କା ପଡୁଥିଲା ।

ବିଶ୍ୱବିଦ୍ୟାଳୟ କମିଶନଙ୍କ ଭିନ୍ନ ଭିନ୍ନ ବିଷୟରେ ବିଶେଷଜ୍ଞମାନଙ୍କର ଗୋଟିଏ ଗୋଟିଏ ପରାମର୍ଶଦାତା ପ୍ୟାନେଲ ରହିଛି । ଏଥିରେ ଜଣେ ତିନିବର୍ଷ ପାଇଁ ଆବାହକ ହୁଏ । ମୁଁ କିନ୍ତୁ ମନୋବିଜ୍ଞାନରେ ଛଅବର୍ଷଯାଏ ଆବାହକ ହୋଇଥିଲି । ଏହି ସମୟରେ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗକୁ ମୁଁ ନାନା ପ୍ରକାର ସାହାଯ୍ୟ କରିପାରିଛି ଏବଂ ସେମାନଙ୍କର ଉନ୍ନତି ପାଇଁ ପରାମର୍ଶ ଦେଇପାରିଛି । ମୋତେ ଏଥିଲାଗି ବହୁତ ଆନନ୍ଦ ମିଳିଛି । ଏହି ଆବାହକମାନଙ୍କର ଆଉ ଗୋଟିଏ କମିଟି ଅଛି କମିଶନ ଚେୟାରମ୍ୟାନ୍ ତାହାର ଅଧ୍ୟକ୍ଷ । ସେଠାରେ ଥରେ କମିଶନ ଅଧ୍ୟକ୍ଷ ଶ୍ରୀଯୁକ୍ତ ଜାକବ୍ ତାଙ୍କଆଡୁ ଘୋଷଣା କଲେ ଯେ ବରୋଦା ଅର୍ଥନୀତି ବିଭାଗ ଓ ଉତ୍କଳ ମନୋବିଜ୍ଞାନ ବିଭାଗ ଇଂଲଣ୍ଡର ଗୋଟିଏ ପ୍ରଧାନ ବିଶ୍ୱବିଦ୍ୟାଳୟ ସହିତ ସମାନ ସ୍ତରରେ ସହଯୋଗ ସ୍ଥାପନ କରିବାପାଇଁ ସେ ମନୋନୀତ କରୁଛନ୍ତି । ମୁଁ ଏହାଶୁଣି ଆଶ୍ଚର୍ଯ୍ୟ ହୋଇଯାଇଥିଲି ।

କାରଣ ସେତେବେଳକୁ କମିଶନ ଅଧ୍ୟକ୍ଷ ନୂଆ ଆସିଥାନ୍ତି । ତାଙ୍କ ସହିତ ମୋର ବିଶେଷ ପରିଚୟ ନଥିଲା ।

ତା'ପରେ ମୋ ବିଭାଗର ସମକକ୍ଷ ସହଯୋଗୀ ବିଭାଗ ବାଛିବା ପାଇଁ ମୁଁ ଇଂଲଣ୍ଡ ଗଲି । ବହୁ ବିଶ୍ୱବିଦ୍ୟାଳୟ ବୁଲି ବୁଲି ବର୍ମିହାମ୍ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗକୁ ବାଛିଲି ଏବଂ ସେମାନେ ମଧ୍ୟ ଆମ ସହିତ ସହଯୋଗ କରିବାପାଇଁ ରାଜି ହେଲେ । ତା'ପରେ ଲଣ୍ଡନରେ ଥିବା ଆମ ବିଶ୍ୱବିଦ୍ୟାଳୟ କମିଶନଙ୍କ ସମକକ୍ଷ ଉଚ୍ଚଶିକ୍ଷା କମିଟି ଆଗରେ ମୋ ପ୍ରସ୍ତାବର ଆଲୋଚନା କଲି । ନିୟମ ଅନୁସାରେ ପ୍ରତିବର୍ଷ ଆମ ବିଭାଗରୁ ଜଣେ ବରିଷ୍ଠ ଅଧ୍ୟାପକ ବର୍ମିହାମ୍ ଯାଇ ବକ୍ତୃତା ତଥା ଆଲୋଚନାରେ ଭାଗନେବେ, ସେହିପରି ତାଙ୍କ ବିଭାଗରୁ ଜଣେ ଆମ ବିଭାଗକୁ ଆସିବେ । ମୁଁ କିନ୍ତୁ ପ୍ରସ୍ତାବ କରିଥିଲି ଯେ ଆମ ବିଭାଗରୁ ଜଣେ ବରିଷ୍ଠ ଅଧ୍ୟାପକଙ୍କ ସହିତ ଜଣେ କନିଷ୍ଠ ଲେକଚର୍‌ଙ୍କର ଯିବା ଉଚିତ କାରଣ ସେଠାରେ କନିଷ୍ଠ ଲେକଚରଙ୍କର ବହୁତ ଶିଖିବାର ଅଛି । ତା'ଛଡ଼ା ମଧ୍ୟ ଏହି କନିଷ୍ଠ ଲେକଚରଙ୍କ ମାଧ୍ୟମରେ ସହଯୋଗ ବହୁଦିନ ସ୍ଥାୟୀ ହୋଇପାରିବ । ଲଣ୍ଡନର ଉଚ୍ଚସ୍ତରୀୟ କମିଟି ମୋ ପ୍ରସ୍ତାବରେ ରାଜି ହେଲେ ଏବଂ ଭାରତକୁ ଫେରିଲା ପରେ ବିଶ୍ୱବିଦ୍ୟାଳୟ କମିଶନଙ୍କୁ ମଧ୍ୟ ଏଥିରେ ରାଜି କରାଇପାରିଥିଲି । ଫଳରେ ତିନିବର୍ଷ ଭିତରେ ଆମ ବିଭାଗରୁ ପାଞ୍ଚଜଣ ଶିକ୍ଷକ ଇଂଲଣ୍ଡ ଯାଇପାରିଥିଲେ । ଆଉ ଜଣେ ହଠାତ୍ କାନାଡ଼ା ଚାଲିଯିବାରୁ ଇଂଲଣ୍ଡ ଯାଇପାରିନଥିଲେ ।

ମୋଟାମୋଟି ଭାବରେ ମୋ ବିଭାଗର ଜାତୀୟ, ଆନ୍ତର୍ଜାତୀୟ ପ୍ରତିଷ୍ଠା ଯୋଗୁ ମୁଁ ବହୁତ ଶକ୍ତିଶାଳୀ ହୋଇପାରିଥିଲି । ବିଶ୍ୱବିଦ୍ୟାଳୟ କମିଶନ ଓ ଦିଲ୍ଲୀର ଅନ୍ୟାନ୍ୟ କେନ୍ଦ୍ରୀୟ ଅନୁଷ୍ଠାନରେ ମୁଁ ଯାହା କହୁଥିଲି ତାହା ହେଉଥିଲା ଏବଂ ଯାହା ଚାହୁଁଥିଲି ତାହା ମଧ୍ୟ କରାଇପାରୁଥିଲି । ବିଶ୍ୱବିଦ୍ୟାଳୟ କମିଶନ ପ୍ରଥମ ଅବସ୍ଥାରେ ତାଙ୍କର କେତେକ ନିୟମ ଅନୁଯାୟୀ ବିଭାଗକୁ ୧୯୭୭ରେ ଆଡ୍‌ଭାନ୍‌ସଡ୍ ସେଣ୍ଟର ଘୋଷଣା ନକରି କମିଶନଙ୍କର ବିଶେଷ ସାହାଯ୍ୟପ୍ରାପ୍ତ ଅନୁଷ୍ଠାନ ରୂପେ ଘୋଷଣା କଲେ । ଯଦିଚ ତାଙ୍କ ଦ୍ୱାରା ପ୍ରେରିତ ବିଶେଷଜ୍ଞ କମିଟି ଅଗ୍ରଗାମୀ ବିଭାଗ ସପକ୍ଷରେ ପ୍ରସ୍ତାବ ଦେଇଥିଲେ । ମୋତେ ଏ ବିଷୟ ନେଇ ବହୁତ ସଂଗ୍ରାମ କରିବାକୁ ପଡ଼ିଥିଲା । ଶେଷରେ କମିଶନଙ୍କର ଏପରି ଅନ୍ୟାୟ ସିଦ୍ଧାନ୍ତ ବିରୁଦ୍ଧରେ ଅଭିଯୋଗ କରି କମିଶନଙ୍କ ଚେୟାରମ୍ୟାନଙ୍କ ପାଖକୁ ଚିଠି ଲେଖିଥିଲି । ଶେଷରେ ତାଙ୍କ ସହିତ ଆଲୋଚନା ପରେ କମିଶନଙ୍କ ନିୟମ ଅନୁଯାୟୀ ପାଞ୍ଚବର୍ଷ ପୂରିବାର ତିନିବର୍ଷ ପୂର୍ବରୁ ମୋ ବିଭାଗ ଅଗ୍ରଗାମୀ ବିଭାଗ ବୋଲି ଘୋଷିତ ହୋଇଥିଲା । ଏହା ମୋର ଚରମ କୃତିତ୍ୱ ବୋଲି ସାରା ଭାରତରେ ସ୍ୱୀକୃତି ଲାଭ କରିଥିଲା । କିନ୍ତୁ ଓଡ଼ିଶାର କେତେକ ବରିଷ୍ଠ ଅଧ୍ୟାପକ ଏଥିରେ ଅସନ୍ତୁଷ୍ଟ ହୋଇଥିବାର ଜଣାଗଲା ।

ବିଶ୍ୱବିଦ୍ୟାଳୟଙ୍କ ଆନୁକୂଲ୍ୟରେ ବର୍ମିହାମ୍ ବିଶ୍ୱବିଦ୍ୟାଳୟ ସହିତ ଆମର ସହଯୋଗ ଗବେଷଣା ସ୍ଥାପନ ହୋଇଥିଲା । ତା'ପରେ ମୋ ନିଜ ଉଦ୍ୟମରେ ସ୍ୱିଡେନର ଗୁଟେନ୍‌ବର୍ଗ ଓ ମାଲ୍‌ମୋ ବିଶ୍ୱବିଦ୍ୟାଳୟ ସହିତ ଗବେଷଣା ସହଯୋଗ କାର୍ଯ୍ୟପନ୍ଥା କରାଇଥିଲି । କ୍ରମେ ଏହି ଦୁଇଟି ବିଶ୍ୱବିଦ୍ୟାଳୟ ସହିତ ମୋର ଘନିଷ୍ଠ ସମ୍ପର୍କ ସ୍ଥାପନ ହୋଇପାରିଥିଲା । ମୁଁ ସେଠାକୁ ତିନିଥର ଯାଇଥିଲି ଏବଂ ସେଠାରେ ପ୍ରାୟ ପାଞ୍ଚମାସ କଟାଇଥିଲି । ମୋର ଆଉ

ଜଣେ ସହକର୍ମୀ ଲେକଚର୍ ମଧ ଦୁଇଥର ସେଠାକୁ ଯାଇପାରିଥିଲେ । ସ୍ୱିଡ଼େନର ବିଜ୍ଞାନ ପରିଷଦ ଅନୁଦାନ ଯୋଗୁ ଏହା ସମ୍ଭବ ହୋଇଥିଲା । ଉକ୍ତ ବିଶ୍ୱବିଦ୍ୟାଳୟରୁ ବହୁ ମନୋବିଜ୍ଞାନୀ ଓଡ଼ିଶା ଆସି କିଛିଦିନ କଟାଇଯାଆନ୍ତି ।

ମୁଁ ବିଦେଶର ଯେଉଁ ଯେଉଁ ବିଶ୍ୱବିଦ୍ୟାଳୟକୁ ଯାଏ ସେଠାରୁ ମଧ ବିଶେଷଜ୍ଞମାନେ ମୋ ବିଭାଗକୁ ଆସନ୍ତି । ହଲାଣ୍ଡର ଜଣେ ବିଖ୍ୟାତ ମନୋବିଜ୍ଞାନୀ ମୋ ବିଭାଗକୁ ବହୁଥର ଆସିଥିଲେ ଏବଂ ତାଙ୍କର ସମସ୍ତ ଗବେଷଣା ପ୍ରସ୍ତୁତି କାର୍ଯ୍ୟକ୍ରମ ଆମେ କରାଇଥିଲୁ । ତା'ଛଡ଼ା ବିଦେଶରୁ ମନୋବିଜ୍ଞାନୀମାନେ ଭାରତକୁ ଆସିଲେ ସେମାନେ ନିଶ୍ଚିତ ଭାବରେ ଆମ ବିଭାଗକୁ ଆସନ୍ତି । ବିଶ୍ୱବିଦ୍ୟାଳୟ କମିଶନ, ଭାରତ ସମାଜ ବିଜ୍ଞାନ ଗବେଷଣା ପରିଷଦ, ଜାତୀୟ ଶିକ୍ଷା ଓ ଗବେଷଣା ପରିଷଦ, ବ୍ରିଟିଶ୍ କାଉନସିଲ୍, ସୁଇଡେନର ଦିଲ୍ଲୀ ରାଷ୍ଟ୍ରଦୂତ ଅଫିସ ମୋ ବିଭାଗକୁ ତାଙ୍କର ଅତିଥିମାନଙ୍କୁ ପଠାନ୍ତି । ତା'ଫଳରେ ଆମର ପରିଚିତି ଆନ୍ତର୍ଜାତିକ କ୍ଷେତ୍ରରେ ବ୍ୟାପକ ହୋଇପାରିଥିଲା ।

୧୯୭୭ରେ କାନାଡ଼ାର ମଂଟ୍ରିଆଲ ସହରର ସୁପ୍ରସିଦ୍ଧ କଙ୍କଡ଼ିଆ ବିଶ୍ୱବିଦ୍ୟାଳୟ ମୋତେ ନିମନ୍ତ୍ରଣ କରିଥିଲା ଗୋଟିଏ ଗ୍ରୀଷ୍ମକାଳୀନ ପାଠ୍ୟକ୍ରମ ପଢ଼ାଇବା ପାଇଁ । ଆଠ ସପ୍ତାହର ପାଠ୍ୟକ୍ରମ ମୁଁ ତିଆରି କରି ପଠାଇଥିଲି । ଏହି ପାଠ୍ୟ ବିବରଣୀ ସେମାନେ ବିଜ୍ଞାପନ ସାହାଯ୍ୟରେ ପ୍ରଚାର କରିଥିଲେ ଏବଂ ସେଥିପାଇଁ ଇଚ୍ଛୁକ ଛାତ୍ରଛାତ୍ରୀଙ୍କୁ ନିମନ୍ତ୍ରଣ କରିଥିଲେ । ମୋର ଏହି ପାଠ୍ୟକ୍ରମରେ ୪୫ଜଣ ଛାତ୍ରଛାତ୍ରୀ ଥିଲେ ଏବଂ ସେମାନେ ପ୍ରାୟ ୨୦ଟି ଦେଶର ଅଧିବାସୀ । ଏହି କ୍ଲାସ୍ ନେଲାବେଳେ ମୋତେ ମିଳିତ ଜାତିସଂଘର ଗୋଟିଏ ସଭାରେ ଆଲୋଚନା କରୁଥିଲା ପରି ଜଣାପଡୁଥିଲା । ତେଣୁ ମୋତେ ଏମାନଙ୍କୁ ପଢ଼ାଇବାରେ ବହୁତ ଆନନ୍ଦ ହୋଇଥିଲା । ବହୁବର୍ଷ ପର୍ଯ୍ୟନ୍ତ ଏହାର ଛାତ୍ରଛାତ୍ରୀଙ୍କ ସହିତ ମୋର ଚିଠିପତ୍ର ଆଦାନପ୍ରଦାନ ହୋଇଥିଲା । ଏମାନେ ସବୁ ପ୍ରାୟ ବୟସ୍କ ଲୋକ । ସେମାନଙ୍କ ଭିତରୁ ଦଶ ପନ୍ଦର ଜଣଯାଏଁ ବହୁବର୍ଷ ଧରି ଅଧାପନା କରୁଥିବା ପ୍ରିନ୍ସିପାଲ ଥିଲେ ।

୧୯୭୨ରେ ଜାପାନରେ ଅନୁଷ୍ଠିତ ହୋଇଥିବା ଆନ୍ତର୍ଜାତିକ ମନୋବିଜ୍ଞାନ ଅଧିବେଶନରେ ଦୁଇଟି ଶାଖାରେ ମୁଁ ସଭାପତିତ୍ୱ କରିଥିଲି । ସେଠାରେ ବହୁ ମନୋବିଜ୍ଞାନୀଙ୍କ ସହିତ ଚିହ୍ନା ପରିଚୟ ଯୋଗୁ ହନଲୁଲୁଠାରେ ପ୍ରତିଷ୍ଠିତ ଇଷ୍ଟ-ୱେଷ୍ଟ କେନ୍ଦ୍ରରୁ ୧୯୭୩ରେ ଗୋଟିଏ ସେମିନାର ପରିଚାଳନା କରିବା ପାଇଁ ନିମନ୍ତ୍ରଣ ପାଇଥିଲି । ଏହି ଅବସରରେ ମୁଁ ପୃଥିବୀ ପରିକ୍ରମା କରିବାର ସୁଯୋଗ ପାଇଥିଲି । ପୂର୍ବପଟେ ଯାଇ ପଶ୍ଚିମ ଦିଗ ଦେଇ ଫେରିଥିଲି । ବାଟରେ ବହୁ ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେଇଥିଲି । ଏହି ସମୟରେ କେତେକ ଆମେରିକା ବିଶ୍ୱବିଦ୍ୟାଳୟରେ ବକ୍ତୃତା କରିବା ପାଇଁ ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦ ଛଅ ସପ୍ତାହ ଆମେରିକାରେ କଟାଇବା ପାଇଁ ମୋତେ ଭତ୍ତା ଯୋଗାଇ ଦେଇଥିଲେ । ଏହି ପରିଷଦର ପ୍ରତିନିଧିତ୍ୱ କରି କେତେକ ଅନୁଷ୍ଠାନ ସହିତ ଆଲୋଚନା ମଧ କରିଥିଲି ।

ଓଡ଼ିଶାରେ ୧୯୬୨ ଓ ୧୯୭୭ରେ ଦୁଇଥର ଭାରତୀୟ ବିଜ୍ଞାନ କଂଗ୍ରେସ ଅନୁଷ୍ଠିତ ହୋଇଥିଲା । ଦୁଇଥରଯାକ ମୁଁ ଏହାର ମୁଖ୍ୟ ନେତୃତ୍ୱ ନେଇଥିଲି ଏବଂ ମୋ ବିଭାଗରେ

ସବୁକାମ ହୋଇଥିଲା । ମୋ ବିଭାଗର ସବୁ ଶିକ୍ଷକ ଓ ଅନ୍ୟାନ୍ୟ କର୍ମଚାରୀମାନେ ଆପ୍ରାଣ ଚେଷ୍ଟା କରି ଏହାର ସମସ୍ତ କାର୍ଯ୍ୟ ବଡ଼ ଶୃଂଖଳାର ସହିତ କରିଥିଲେ । ଏଥିରେ ମୋ ବିଭାଗର ଓ ମୋର ସୁଖ୍ୟାତି ହେବା କଥା । ୧୯୬୨ ମସିହାଠାରୁ ବହୁ ବର୍ଷ ପର୍ଯ୍ୟନ୍ତ ମୁଁ ଓଡ଼ିଶାରେ ବିଜ୍ଞାନ-କଂଗ୍ରେସ ତରଫରୁ ଜନପ୍ରିୟ ବିଜ୍ଞାନ ବକ୍ତୃତାମାଳା ଆୟୋଜନ କରିବା ଦାୟିତ୍ୱରେ ରହିଥିଲି । ଏହାର କେତେକ ଜନପ୍ରିୟ ବିଜ୍ଞାନ ପ୍ରସାର ଯୋଜନାର ସମୀକ୍ଷା ପାଇଁ ମୋର ପରାମର୍ଶ ନିଆହୁଏ । ୧୯୬୬ ମସିହାରେ ମୁଁ ବିଜ୍ଞାନ କଂଗ୍ରେସର ଶିକ୍ଷା ଓ ମନୋବିଜ୍ଞାନ ବିଭାଗର ପ୍ରେସିଡେଣ୍ଟ ହୋଇଥିଲି । ଡକ୍ଟର ପରିଜାଙ୍କ ପରେ ସେତେବେଳକୁ ଏପରି ସମ୍ମାନର ଅଧିକାରୀ ହେବାରେ ମୁଁ ବୋଧହୁଏ ପ୍ରଥମ ଓଡ଼ିଆ ।

ସାରାଭାରତ ତଥା ଆନ୍ତର୍ଜାତିକ କ୍ଷେତ୍ରରେ ମୋ ବିଭାଗର ଏବଂ ମୋ ନିଜର ଏପରି ସୁଖ୍ୟାତି ଯୋଗୁ ମୁଁ ବହୁତ ସୁବିଧା ଓ ସମ୍ମାନ ପାଇଛି । ବହୁ ସମ୍ମାନର ଅଧିକାରୀ ହୋଇଛି । କଲିକତା ନଗରୀର ମହାଜାତି ସଦନରେ କଲିକତା ବିଶ୍ୱବିଦ୍ୟାଳୟର ତତ୍କାଳୀନ କୁଳପତି ଡକ୍ଟର ସେନ୍‌ଙ୍କ ସଭାପତିତ୍ୱରେ ଭାରତୀୟ ପ୍ରୟୋଗାତ୍ମକ ମନୋବିଜ୍ଞାନର ସଭାପତିରୂପେ ମୋତେ ସାମାଜିକ ସମ୍ମାନ ଦିଆ ହୋଇଥିଲା । ଛୋଟ ଛୋଟ ପିଲାମାନେ ମୋ କପାଳରେ ଚନ୍ଦନ ବୋଳି, ଶଙ୍ଖ ବଜାଇ ମୋତେ ଅଭ୍ୟର୍ଥନା କରିଥିଲେ । କିନ୍ତୁ ଓଡ଼ିଶାରେ ମୋର ସେପରି ପରିଚୟ ହୋଇପାରିଲା ନାହିଁ  ବରଂ ଓଡ଼ିଶାର କେତେଜଣ ଲୋକଙ୍କ ଯୋଗୁ ଜାତୀୟ କ୍ଷେତ୍ରରେ ମୋର କ୍ଷତି ହୋଇଥିଲା ।

ବିଶ୍ୱବିଦ୍ୟାଳୟ କମିଶନଙ୍କର ମୁଁ ବହୁତ କାମ କରିଦିଏ । ତେଣୁ ସେମାନେ ମୋତେ ଭଲ ପାଆନ୍ତି । ମୁଁ କମିଶନଙ୍କର ପ୍ରଦତ୍ତ ଜାତୀୟ ବକ୍ତୃତାମାଳାର ଜାତୀୟ ଲେକ୍‌ଚରର୍ (National Lecturer) ଥିଲି । ଛଅଟି ବିଶ୍ୱବିଦ୍ୟାଳୟରେ ଏହି ବକ୍ତୃତାମାଳାର ଆୟୋଜନ ହୋଇଥିଲା ।

୧୯୭୬ରେ ଯେତେବେଳେ କମିଶନ ସଭ୍ୟ ମନୋନୟନ ହେଲା, ସେତେବେଳେ ମୋ ନାଁ କମିଶନଙ୍କ ତରଫରୁ ଅନୁମୋଦିତ ହୋଇ କେନ୍ଦ୍ର ସରକାରଙ୍କ ପାଖକୁ ଯାଇଥିଲା ଏବଂ କେନ୍ଦ୍ର ଶିକ୍ଷାମନ୍ତ୍ରୀ ଅଧ୍ୟାପକ ନୁରୁଲ ହାସନ ମଧ୍ୟ ମୋ ନାମକୁ ଗ୍ରହଣ କରି ତାଲିକା ପ୍ରସ୍ତୁତ କରିଥିଲେ । ଏହି ତାଲିକାଟିରେ ସାଧାରଣତଃ ପ୍ରଧାନମନ୍ତ୍ରୀ କେବଳ ଦସ୍ତଖତ କରିଦିଅନ୍ତି । ସେ ନିଜେ କିଛି ବଦଳାନ୍ତି ନାହିଁ କିନ୍ତୁ ଜରୁରୀକାଳୀନ ପରିସ୍ଥିତି ଯୋଗୁ ସେ ଯାହାକୁ ବ୍ୟକ୍ତିଗତ ଭାବେ ଜାଣିନଥିଲେ ତାଙ୍କ ବିଷୟରେ ସେହି ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ଫୋନ୍‌ରେ ପଚାରିଥିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ମୋ ବିଷୟରେ କୁଆଡ଼େ ମତ ଦେଇଥିଲେ ଯେ ମୁଁ ଜଣେ ବିବାଦୀୟ (Controversial) ଲୋକ । ଫଳରେ ତାଲିକାରୁ ମୋ ନାମଟି କଟିଯାଇଥିଲା । ମନ୍ତ୍ରୀ ତାଙ୍କ ମନ୍ତବ୍ୟରେ ଏହା ଲିପିବଦ୍ଧ କରିଥିଲେ ବୋଲି ମୋତେ ଶିକ୍ଷାମନ୍ତ୍ରୀ ଅଧ୍ୟାପକ ନୁରୁଲ ହାସନ୍ କହିଥିଲେ ।

ବର୍ତ୍ତମାନର ସମାଜରେ ମୁଁ ବିବଦମାନ ହେବା ମୋ ବ୍ୟକ୍ତିତ୍ୱର ଗୋଟିଏ ବିଶିଷ୍ଟ ଆଭିମୁଖ୍ୟ । ତା' ନହେଲେ ତ ପ୍ରତ୍ୟେକ ଶାସକଙ୍କ ପାଖରେ ମସ୍ତକ ଅବନତ କରି ଚାଟୁକାର ହୋଇ ରହିଯାଇଥା'ନ୍ତି । ଜରୁରୀକାଳୀନ ସମୟରେ ମୁଁ ଫାସିଷ୍ଟ ବିରୁଦ୍ଧ ଅଭିଯାନରେ ନେତୃତ୍ୱ ଦେଇଥାନ୍ତି । ଜୟପ୍ରକାଶ ନାରାୟଣଙ୍କ ପ୍ରତିଷ୍ଠିତ ବନାରସର ଗବେଷଣା କେନ୍ଦ୍ରର ଜଣେ ବିଶିଷ୍ଟ

ମନୋବିଜ୍ଞାନୀଙ୍କୁ ସରକାର ବରଖାସ୍ତ କରି ଦେଇଥିଲା ବେଳେ ମୁଁ ତାଙ୍କୁ ମୋ ବିଭାଗରେ ସେହି ଜରୁରୀକାଳୀନ ସମୟରେ ମଧ୍ୟ ଅଧ୍ୟାପକ କରି ନେଇନଥାନ୍ତି । ନବକୃଷ୍ଣ ଚୌଧୁରୀ ଜେଲରୁ ପୀଡ଼ିତ ଅବସ୍ଥାରେ ଖଲାସ ହୋଇ କଟକରେ ଅବସ୍ଥାନ କରୁଥିଲା ବେଳେ ତାଙ୍କ ସହିତ ଦେଖାକରି ନଥାନ୍ତି ଇତ୍ୟାଦି । ଶାସକମାନେ ଯାହା କରୁଥିଲେ ତାକୁ ସମର୍ଥନ କରୁଥାନ୍ତି ଏବଂ ତାଙ୍କ ଇଚ୍ଛା ଅନୁଯାୟୀ କାମ କରୁଥାନ୍ତି । ଯାହାହେଉ ମୁଁ କମିଶନ ସଭ୍ୟ ହୋଇଥିଲେ ମୋର ନିଜର ଆଉ ଅଧିକ ସୁଖ୍ୟାତି ହୋଇନଥାନ୍ତା ବରଂ ଓଡ଼ିଶାର ପ୍ରଥମ କମିଶନ ସଭ୍ୟ ହିସାବରେ ଓଡ଼ିଶା ତଥା ପୂର୍ବାଞ୍ଚଳ ବିଶ୍ୱବିଦ୍ୟାଳୟମାନଙ୍କର ହୁଏତ କିଛି ଉପକାର କରି ପାରିଥାନ୍ତି ।

ଏ ତ ଗଲା ୧୯୭୬ ମସିହା କଥା । ଜନତା ସରକାର ଅମଳରେ ପୁଣି ମୋ ନାଁ କମିଶନ ସଭ୍ୟପାଇଁ ଅନୁମୋଦିତ ହୋଇ ପ୍ରଧାନମନ୍ତ୍ରୀଙ୍କ ପାଖକୁ ଯାଇଥିଲା । ତା'ପରେ ଶୁଣିବାକୁ ପାଇଲି ଯେ ମୁଁ କମିଶନ ସଭ୍ୟ ହୋଇଯାଇଛି । ଉତ୍କଳ ବିଶ୍ୱବିଦ୍ୟାଳୟର ଦୁଇଜଣ ଅଧ୍ୟାପକ ଦିଲ୍ଲୀରୁ ଏକଥା ଶୁଣି ମୋତେ ଅଭିନନ୍ଦନ ଜଣାଇଥିଲେ । ଏକଥା ଶୁଣି ମୁଁ ସେମାନଙ୍କୁ କହିଥିଲି ଯେ,

''ଆପଣମାନେ ଯେତେବେଳେ ଏକଥା ଓଡ଼ିଶାରେ କହିଦେଲେଣି ମୋର ଆଉ କମିଶନ ସଭ୍ୟ ହେବାର ସମ୍ଭାବନା ନାହିଁ । କାରଣ ମୁଁ ମୋ ବିଭାଗ ପାଇଁ କିମ୍ବା ମୋର ନିଜର କୌଣସି ଉନ୍ନତି ପାଇଁ କିଛି କରେ ମୁଁ ଓଡ଼ିଶାରେ କାହାକୁ କଦାପି ଆଗରୁ କହେନାହିଁ । ସବୁ ହୋଇଗଲା ପରେ ସେମାନେ ଜାଣନ୍ତି ।''

ସତକୁ ସତ ସେଇଆ ହେଲା । ଓଡ଼ିଶାର ଜଣେ ଶିକ୍ଷାବିତ୍ ଏହା ଶୁଣିଲା ପରେ ଓଡ଼ିଶାର ଜଣେ କେନ୍ଦ୍ରମନ୍ତ୍ରୀଙ୍କ ସାହାଯ୍ୟରେ ମୋ ସ୍ଥାନରେ ତାଙ୍କ ନାମ ଭର୍ତ୍ତି କରିବାକୁ ଉଦ୍ୟମକଲେ । ଓଡ଼ିଶାରୁ ଦୁଇଟି ନାମ ନେଇ ବିବାଦୀୟ ସମସ୍ୟା ସୃଷ୍ଟି ହେଲା । ପ୍ରଧାନମନ୍ତ୍ରୀ ଆମ ଦୁଇଜଣଙ୍କ ନାମ କାଟିଦେଲେ ଏବଂ ତାଙ୍କ ନିଜର ବନ୍ଧୁମାନଙ୍କ ନାମ ସେଥିରେ ଭର୍ତ୍ତି କରିଦେଲେ । ଏ ବିଷୟରେ ସଠିକ୍ ଖବର ମୁଁ ଦିଲ୍ଲୀରେ ପାଇଥିଲି । ଓଡ଼ିଶାର ସେହି ମନ୍ତ୍ରୀଙ୍କୁ ମଧ୍ୟ ମୁଁ ଭଲ ଭାବରେ ଜାଣିଥିଲି । କିନ୍ତୁ ମୋ ଅପେକ୍ଷା ଅନ୍ୟଜଣକ ତାଙ୍କର ନିକଟତମ ଥିଲେ । ସେମାନଙ୍କର ଗୋଟିଏ ପ୍ରଭାବଶାଳୀ କ୍ଷୁଦ୍ରଗୋଷ୍ଠୀ ଥିଲା । ସେହି ମନ୍ତ୍ରୀ ମହୋଦୟଙ୍କର ଜାଣିବା ଉଚିତ୍ ଥିଲା ଯେ ସେ ଯାହାଙ୍କ ପାଇଁ ଚେଷ୍ଟା କରିଥିଲେ ସେ କଦାପି କମିଶନ ସଭ୍ୟ ହୋଇପାରି ନଥାନ୍ତେ । ଓଡ଼ିଶାର ଲୋକ ହିସାବରେ ମୁଁ ଅସୁବିଧାରେ ପଡ଼ିଛି ସିନା ଓଡ଼ିଶାର ଶାସନକର୍ତ୍ତା କିମ୍ବା ଅନ୍ୟାନ୍ୟ ପ୍ରତିଷ୍ଠିତ ଓଡ଼ିଆ ଲୋକଙ୍କଠାରୁ କୌଣସି ପ୍ରକାର ସାହାଯ୍ୟ ଓ ସୁବିଧା ପାଇନାହିଁ କି ପାଇବା ପାଇଁ ଉଦ୍ୟମ ସୁଦ୍ଧା କରିନାହିଁ ।

ଏହିପରି ଆଉ ଗୋଟିଏ ଘଟଣା ଯୋଗୁଁ ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦ ଆନୁକୂଲ୍ୟରେ ପ୍ରତିଷ୍ଠିତ ହେବାକୁ ଯାଉଥିବା ଓଡ଼ିଶା ସମାଜ ବିଜ୍ଞାନ ଗବେଷଣା ପରିଷଦ ଅନୁଷ୍ଠିତ ହୋଇପାରି ନଥିଲା । ଜନତା ସରକାର ଅମଳରେ ଓଡ଼ିଶାରେ ଏପରି ଗୋଟିଏ ଅନୁଷ୍ଠାନ ହେବା ଉଦ୍ଦେଶ୍ୟରେ ମୋ ଅଧ୍ୟକ୍ଷତାରେ ଗୋଟିଏ କମିଟି ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦ ଦ୍ୱାରା ନିଯୁକ୍ତ ହେଲା । ମୋତେ ସେମାନେ ପଚାରିଥିଲେ, କମିଟିର ଅନ୍ୟମାନଙ୍କ ନାମ ଦେବା ପାଇଁ । ମୁଁ ପାଞ୍ଚୋଟି ନାମ ପଠାଇଥିଲି । ମୁଁ ଯେଉଁଦିନ ନାମ

ପଠାଇଲି ଠିକ୍ ସେହିଦିନ ଓଡ଼ିଶାର ଜଣେ ଶିକ୍ଷାବିତ୍ ଦିଲ୍ଲୀରୁ ଏ ଖବର ପାଇ ମୋତେ ଫୋନ୍‌ରେ ଅନୁରୋଧ କରିଥିଲେ ଯେ ତାଙ୍କର ଦୁଇଜଣ ମନୋନୀତ ସଭ୍ୟଙ୍କୁ ସେହି କମିଟିରେ ରଖିବାପାଇଁ । ସେତେବେଳକୁ ତ ମୁଁ ନାମ ପଠାଇ ସାରିଥିଲି । ତେଣୁ କହିଲି ଯେ, ମୁଁ ସେମାନଙ୍କୁ ପରେ ଏହି କମିଟି ସହିତ ସଂପୃକ୍ତ କରିଦେବି । ଶେଷରେ ସେ ଭଦ୍ରଲୋକ ଏପରି ଚକ୍ରାନ୍ତ କଲେ ଯେ ଓଡ଼ିଶା ସରକାର ସେହି ଶିକ୍ଷାବିତ୍‌ଙ୍କୁ ପ୍ରସ୍ତାବିତ ଓଡ଼ିଶା ସମାଜ ବିଜ୍ଞାନ ଗବେଷଣା ପରିଷଦର ଡାଇରେକ୍ଟର କରିବା ପାଇଁ ମନୋନୀତ କରି ପଠାଇଲେ । ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦର ସେକ୍ରେଟାରୀ ଦିଲ୍ଲୀରେ ମୋତେ ଏକଥାକହିଥିଲେ ।

"ଓଡ଼ିଶା ସରକାର ଯାହାଙ୍କ ନାମ ପଠାଇଛନ୍ତି ସେ ସମାଜ ବିଜ୍ଞାନର ଲୋକ ହୋଇନଥିବାରୁ ଏହାର ଡାଇରେକ୍ଟର କଦାପି ହୋଇପାରିବେ ନାହିଁ । ଆପଣ କାହିଁକି ଚେଷ୍ଟା କରୁନାହାନ୍ତି ଆପଣଙ୍କ ନାମ ଓଡ଼ିଶା ସରକାରଙ୍କ ଦ୍ୱାରା ଡାଇରେକ୍ଟର ପଦପାଇଁ ସୁପାରିଶ କରିବାକୁ । ଆପଣଙ୍କ ନାମ ଆସିଲାକ୍ଷଣି ଆମେ ଓଡ଼ିଶା ଶାଖା ପରିଷଦ କଥା ଘୋଷଣା କରିଦେବୁ । ବାରଣାସୀ ଓ ଭୁବନେଶ୍ୱରଠାରେ ଏହି ଶାଖା ପରିଷଦ ଦୁଇଟି ପ୍ରତିଷ୍ଠା କରିବା ଆମର ଇଚ୍ଛା ।"

ମୁଁ କହିଲି-ଏଥିପାଇଁ ମୁଁ ମନ୍ତ୍ରୀମାନଙ୍କ ପାଖକୁ ଯିବି ନାହିଁ । ଏହା ମୋ ନୀତି ବାହାରେ । ଆପଣ ସେମାନଙ୍କୁ କୁହନ୍ତୁ । ସେକ୍ରେଟାରୀ ମୋ ବିଷୟରେ ଓଡ଼ିଶା ସରକାରଙ୍କୁ ସୂଚନା ଦେଲେ । ତଥାପି ଓଡ଼ିଶା ସରକାର ସେହି ଅଣସମାଜ ବିଜ୍ଞାନୀ ଶିକ୍ଷାକର୍ତ୍ତାଙ୍କୁ ନିଯୁକ୍ତି ଦେବାଲାଗି ଜିଦ୍‌ଧରି ବସିଲେ । ଫଳରେ ଓଡ଼ିଶାରେ ଏହା ହୋଇପାରିଲା ନାହିଁ, ଏବଂ ବାରଣାସୀରେ ଠିକ୍ ସମୟରେ ପରିଷଦର ଶାଖା ପ୍ରତିଷ୍ଠିତ ହେଲା । ଏହି କାରଣରୁ ବୋଧହୁଏ ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦ ୧୯୮୧ରେ ମୁଁ ଚାକିରିରୁ ଅବସର ନେବା ପରେ ପରେ ମୋତେ ତାଙ୍କର ମର୍ଯ୍ୟାଦାବନ୍ତ ଜାତୀୟ ଫେଲୋ (National Fellow) ପଦବୀରେ ଅଧିଷ୍ଠିତ କରିଥିଲେ । ସେହି ବର୍ଷ ପୁନା ଗୋଖଲେ ଅନୁଷ୍ଠାନର ବିଖ୍ୟାତ ଅର୍ଥନୀତିଜ୍ଞ ଡକ୍ଟର ଦଣ୍ଡେକର୍ ଏବଂ ମୁଁ ଏହି ଫେଲୋସିପ୍ ପାଇଥିଲୁ । ଏହା ପାଇଲା ପରେ ମୁଁ ନିଜକୁ ବହୁତ ଭାଗ୍ୟବାନ ମନେ କରିଥିଲି । ଏହା ମୋ ଅଧ୍ୟାପନା ଜୀବନର ଶ୍ରେଷ୍ଠ ଜାତୀୟ ସମ୍ମାନ । ଏପରି ସମ୍ମାନର ଅଧିକାରୀ ହେବାରେ ମୁଁ ଭାରତରେ ପ୍ରଥମ ମନୋବିଜ୍ଞାନୀ ଓ ଓଡ଼ିଶାର ପ୍ରଥମ ସମାଜ ବିଜ୍ଞାନୀ ।

ଏ ଖବର ପାଇଲା ପରେ ମୁଁ କାହାରିକୁ ଜଣାଇନଥିଲି । ସେଥିରେ ଯୋଗ ଦେଇସାରିଲା ପରେ ହିଁ ଅନ୍ୟମାନେ ଜାଣିଲେ । ତେଣୁ ଓଡ଼ିଶାର କେହି ତାକୁ ଅଟକାଇ ପାରିନଥିଲେ । ଏହା ପାଇଲା ପରେ ମୁଁ ଓଡ଼ିଶା ବାହାରୁ ବହୁ ଅଭିନନ୍ଦନ ପତ୍ର ଓ ତାର ବାର୍ତ୍ତା ପାଇଥିଲି; କିନ୍ତୁ ଓଡ଼ିଶାରୁ କେବଳ ମାତ୍ର ପାଞ୍ଚ ଛଅ ଜଣ ଅଭିନନ୍ଦନ କରିଥିଲେ । ଡକ୍ଟର ପରିଜା ବଞ୍ଚିଥିଲେ ନିଶ୍ଚୟ ବହୁତ ଖୁସି ହୋଇ ତାଙ୍କର ଅଭିନନ୍ଦନ ମୋତେ ଜଣାଇଥା'ନ୍ତେ । ଅତୀତରେ ମୁଁ ବିଜ୍ଞାନ କଂଗ୍ରେସର ମନୋବିଜ୍ଞାନ ବିଭାଗର ସଭାପତି ହେଲାବେଳେ ସେ ଗୋଟିଏ ସଭାରେ ମୋ ପାଖକୁ ନିଜେ ଆସି ମୋତେ ଅଭିନନ୍ଦନ ଜଣାଇଥିଲେ । ସେଠାରେ ଆଉ ଅନେକ ଶିକ୍ଷାବିତ୍ ବସିଥିଲେ ସୁଦ୍ଧା କେହି ପାଟି ଫିଟାଇ ନଥିଲେ । ଏହା ଆମ ଓଡ଼ିଶା ଦେଶର ବୁଦ୍ଧିଜୀବୀ ଶ୍ରେଣୀର ଚରିତ୍ର ।

■ ■ ■

# ୨୧

# ଚଉତିରିଶି ବର୍ଷ

## ବନ୍ଧନରୁ ମୁକ୍ତି

୧୯୮୦ରେ ମୋର ଅବସର ନେବାର କଥା । କିନ୍ତୁ ବିଶ୍ୱବିଦ୍ୟାଳୟ ମୋତେ ଆଉ ଗୋଟିଏ ବର୍ଷ ପାଇଁ ନିଯୁକ୍ତି ଦେଇଥିଲା । ଏହା ପଛରେ କି କାରଣ ଥିଲା ମୁଁ ଜାଣିନାହିଁ କି ଏ ବିଷୟରେ କୁଳପତି ବା ସିଣ୍ଡିକେଟ୍ ସଭ୍ୟଙ୍କ ସହିତ ମୋର ଆଲୋଚନା ହୋଇନାହିଁ । ପୁନର୍ନିଯୁକ୍ତି ପାଇଁ ମଧ୍ୟ ମୁଁ କୌଣସି ଦରଖାସ୍ତ କରିନଥିଲି । ୧୯୮୦ ମସିହା ଡିସେମ୍ବରରେ ମନୋବିଜ୍ଞାନ ବିଭାଗରେ ଆନ୍ତର୍ଜାତୀୟ ତୁଳନାତ୍ମକ ସାଂସ୍କୃତିକ ମନୋବିଜ୍ଞାନ ସମ୍ମିଳନୀ ହେବାର ଥିଲା । ମୁଁ ତାହାର ସମ୍ମିଳନୀ ସଭାପତି ଥିଲି । ସେହି କାରଣରୁ ବୋଧହୁଏ ମୋତେ ଆଉ ଗୋଟିଏ ବର୍ଷ ଅଧିକ ନିଯୁକ୍ତି ଦିଆ ହୋଇଥିଲା ।

ଏହି ପୁନର୍ନିଯୁକ୍ତି କଥା ନେଇ ମୁଁ ପୁଣି ବିଶ୍ୱବିଦ୍ୟାଳୟର ରାଜନୈତିକ ଷଡ଼ଯନ୍ତ୍ରର ଶୀକାର ହେଲି । ଭାରତବର୍ଷର ସମସ୍ତ ବିଶ୍ୱବିଦ୍ୟାଳୟ ଭିତରେ ପ୍ରାୟ ପନ୍ଦରଟି ବିଭିନ୍ନ ବିଭାଗ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କ ଦ୍ୱାରା ଅନୁମୋଦିତ ଆଡ୍‌ଭାନ୍‌ସଡ୍ ସେଣ୍ଟର ଏବଂ କମିଶନଙ୍କ ବିଶେଷ ସାହାଯ୍ୟପ୍ରାପ୍ତ ବିଭାଗ ରହିଥିଲା । ଏଗୁଡ଼ିକ ସାରା ଦେଶରେ ଏବଂ ବିଦେଶରେ ଖୁବ୍ ମର୍ଯ୍ୟାଦାବନ୍ତ ଶିକ୍ଷା ଗବେଷଣା କେନ୍ଦ୍ର ହୋଇଥିବାରୁ ଏହାର ମୁଖ୍ୟ ଅଧାପକଙ୍କୁ ଡିରେକ୍ଟର ବା ଗବେଷଣା ସଂଯୋଜକ ବୋଲି କୁହାଯାଇଥାଏ । ଏ ବିଷୟରେ କମିଶନଙ୍କର ନିର୍ଦ୍ଦିଷ୍ଟ ନିର୍ଦ୍ଦେଶନା ଉତ୍କଳ ବିଶ୍ୱବିଦ୍ୟାଳୟକୁ ଆସିଥିଲା । ନିଯୁକ୍ତି ବିଷୟ ବିଶ୍ୱବିଦ୍ୟାଳୟର କ୍ଷମତା ଅନ୍ତର୍ଭୁକ୍ତ ବିଷୟ ବୋଲି କମିଶନ କୌଣସି ନିଯୁକ୍ତି ନ ଦେଇ କେବଳ ନିର୍ଦ୍ଦେଶନା ଦିଅନ୍ତି । ୧୯୭୮-୭୯ରୁ ଏ ପ୍ରକାର ନିର୍ଦ୍ଦେଶନା ଆମ ବିଭାଗପାଇଁ ମଧ୍ୟ ଆସିଥିଲା । କିନ୍ତୁ କୁଳପତି କିମ୍ବା ସିଣ୍ଡିକେଟ୍ ମୋତେ ଡିରେକ୍ଟର ବୋଲି ନିଯୁକ୍ତି ଦେଲେ ନାହିଁ । ଏଥିରେ କୌଣସି ଅଧିକା ଦରମା ନାହିଁ । ବିଶ୍ୱବିଦ୍ୟାଳୟ ତଥା ବିଭାଗ ପାଇଁ ଏହା ଗୋଟିଏ ସମ୍ମାନସ୍ପଦ ପଦବୀ ମାତ୍ର । ମୁଁ ୧୯୮୧ ମାର୍ଚ୍ଚରେ ଅବସର ନେବା ପର୍ଯ୍ୟନ୍ତ ତିନିବର୍ଷ ଭିତରେ ମଧ୍ୟ ଏ ପ୍ରକାର ଚିଠି ଆସିପାରିଲା ନାହିଁ । ଡକ୍ଟର ମହେନ୍ଦ୍ର କୁମାର ରାଉତ ଯେତେବେଳେ ୧୯୮୦ରେ କୁଳପତି ହୋଇଥିଲେ ସେ ମୋ ଆଗରେ ଆଶ୍ଚର୍ଯ୍ୟ ହୋଇ କହିଥିଲେ ଯେ ଗତ ଦୁଇବର୍ଷ ଧରି ଆପଣଙ୍କୁ ଏହି ଡିରେକ୍ଟର ନିଯୁକ୍ତି କାହିଁକି ମିଳି ନଥିଲା । ଦୁଇଦିନ ଭିତରେ ସେ ଚିଠି ପଠାଇଦେବେ

ବୋଲି କହିଥିଲେ । କିନ୍ତୁ ଏ ଚିଠି ତାଙ୍କ     ମଧ୍ୟ ଆଉ ଆସିଲା ନାହିଁ । ଏ ବିଷୟରେ କୁଳପତିଙ୍କୁ ବାରମ୍ବାର ଅନୁରୋଧ କରିବା     ମୁଁ ସମ୍ମାନଜନକ ବୋଲି ମନେକଲି ନାହିଁ । ଶେଷ ପର୍ଯ୍ୟନ୍ତ ମୁଁ ଏପରି ଚିଠି ପାଇପାରିଲି ନାହିଁ ଯଦିଚ ବାହାରୁ ବହୁ ଚିଠି ମୋ ପାଖକୁ ଡିରେକ୍ଟର ଭାବରେ ଆସୁଥିଲା ।

ଏହି ପଦବୀ ସହିତ ଆଉ ଗୋଟିଏ ଷଡ଼ଯନ୍ତ୍ର ଥିଲା ବୋଲି ମୁଁ ପରେ ଜାଣିଲି । ଭାରତରେ ଯେଉଁ ପନ୍ଦରଟିଏ ଏ ପ୍ରକାର କେନ୍ଦ୍ର ରହିଛି ତାର ମୁଖ୍ୟ ବା ଡିରେକ୍ଟର ପଞ୍ଚଷଠୀ ବର୍ଷ ପର୍ଯ୍ୟନ୍ତ ଚାକିରିରେ ରୁହନ୍ତି । ବିଶ୍ୱବିଦ୍ୟାଳୟ କମିଶନ ଚେୟାରମ୍ୟାନ୍ ଚିଠି ଲେଖି ଜଣାଇଥିଲେ ଯେ ଅଗ୍ରଗାମୀ କେନ୍ଦ୍ରର ମୁଖ୍ୟ ହିସାବରେ ମୋର ପଞ୍ଚଷଠୀ ବର୍ଷ ପର୍ଯ୍ୟନ୍ତ ଅଧ୍ୟାପକ ଭାବରେ ରହିବାର କଥା । ଏହି ଚିଠିଟି ତତ୍କାଳୀନ କୁଳପତି ଡକ୍ଟର ମହେନ୍ଦ୍ର କୁମାର ରାଉତ ମୋ ବିଭାଗର ଶିକ୍ଷକମାନଙ୍କ ଆଗରେ ପଢ଼ି ଶୁଣାଇଥିଲେ ଏବଂ ମୋତେ ମଧ୍ୟ ଫୋନ୍‌ରେ କହିଥିଲେ ଯେ କମିଶନ ଚେୟାରମ୍ୟାନଙ୍କ ଚିଠି ଅନୁଯାୟୀ ମୁଁ ୧୯୮୧ ମାର୍ଚ୍ଚରେ ଅବସର ନ ନେଇ ମୋର ପଞ୍ଚଷଠୀ ବର୍ଷ ବୟସ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟରେ ରହିବି । ମୁଁ ତାଙ୍କ କଥା ଅନୁସାରେ ଭାବିଥିଲି ଯେ ମୁଁ ଆସନ୍ତା ଚାରିବର୍ଷ ଚାକିରି ଭିତରେ ମୋ ବିଭାଗରେ ଆଉ ଯେଉଁ ଯେଉଁ ଉନ୍ନତି ହେବାର କଥା ସେସବୁ କରାଇନେବି । ଆମ ବିଭାଗ ଅଗ୍ରଗାମୀ କେନ୍ଦ୍ର ଯୋଜନାରେ ସେତେବେଳେ ପ୍ରାୟ ଛଅ-ସାତଲକ୍ଷ ଟଙ୍କା ପାଉଥିଲା । କ୍ରମେ ଏ ବାବଦରେ ପ୍ରାୟ ପଚିଶି-ତିରିଶ ଲକ୍ଷ ଟଙ୍କା ପାଇପାରିବି । ମୋ ବିଭାଗରେ ସର୍ବମୋଟ ଆଠଜଣ ପ୍ରଫେସର, ଷୋଳଜଣ ରିଡ଼ର ଓ ବତିଶିଜଣ ଲେକ୍‌ଚର ବ୍ୟବସ୍ଥା କରିବା ପାଇଁ ଯୋଜନା ମୁଁ ବିଶ୍ୱବିଦ୍ୟାଳୟ କମିଶନଙ୍କ ପାଖକୁ ପଠାଇଥାଏ । ମଝିରେ ମଝିରେ ଆମ ବିଭାଗର କେତେକ ଶିକ୍ଷକ କୁଳପତି ଡକ୍ଟର ରାଉତଙ୍କୁ ଭେଟନ୍ତି ମୋର ରହିବା ବିଷୟ ବୁଝିବା ପାଇଁ, କାରଣ ୧୯୮୧ ମାର୍ଚ୍ଚ ୩୧ରେ ମୋର ଅବସର ଗ୍ରହଣ କରିବା କଥା କିନ୍ତୁ ମାର୍ଚ୍ଚ ମାସଯାକ ଏ ବିଷୟରେ କୌଣସି ପତ୍ର ମୋ ପାଖକୁ ଆସୁ ନଥାଏ । ଡକ୍ଟର ରାଉତ ସେମାନଙ୍କୁ ପୁଣି ପ୍ରତିଶ୍ରୁତି ଦେଇ ଫେରାଇ ଦିଅନ୍ତି ଯେ ମୁଁ ୬୫ବର୍ଷ ବୟସଯାଏଁ ରହିବି । ମୁଁ କିନ୍ତୁ ଏ ବିଷୟରେ କୌଣସି ପଦକ୍ଷେପ ନିଏ ନାହିଁ । କାରଣ କାକୁତି ମିନତି କରି ଆଉ ଅଧିକା ସମୟ ରହିବା ମୋର ଇଚ୍ଛା ନୁହେଁ । ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ ଅଧ୍ୟକ୍ଷ ମୋତେ କୁଳପତିଙ୍କୁ ଏ ବିଷୟରେ ଲେଖିଥିବା ଚିଠି ଡକ୍ଟର ରାଉତଦେଖାଇଥିଲେ ।

ଶେଷରେ ମାର୍ଚ୍ଚ ୩୧ ତାରିଖ ଦିନ ଦୁଇଟାରେ ବିଶ୍ୱବିଦ୍ୟାଳୟରୁ ଚିଠି ଆସିଲା ଯେ ମୁଁ ସେଦିନ ଅବସର ନେଲି । ମୁଁ ସାଙ୍ଗେ ସାଙ୍ଗେ ମୋ ବିଭାଗର ସମସ୍ତଙ୍କୁ ଡାକି ଚାର୍ଯ ଦେଇଦେଲି । ଏପରି ଅକସ୍ମାତ୍ ଭାବରେ ଅବସର ନେବାରେ କାହିଁକି କେଜାଣି ମୋର କୌଣସି ଦୁଃଖ ହେଲାନାହିଁ ବରଂ ମଜା ଲାଗିଲା । ଖାଲି ଏତିକି ଦୁଃଖ ଲାଗୁଥାଏ ଯେ ମୋର ଯିବାକଥା ନିଶ୍ଚିତ ଥିଲେ ବିଭାଗର କେତେଗୁଡ଼ିଏ ସମସ୍ୟା ଥିଲା, ତାହାର ସମାଧାନ ଆଗରୁ କରିଦେଇଥା'ନ୍ତି । ତିନିଜଣ ରିଡ଼ର ଏବଂ ପାଞ୍ଚଜଣ ଲେକ୍‌ଚରେ ତାଙ୍କ ଚାକିରିରେ ସେତେବେଳକୁ ସ୍ଥାୟୀ ହୋଇନଥିଲେ । ସେମାନଙ୍କୁ ଅନ୍ତତଃ ସ୍ଥାୟୀ କରିଦେଇଥାନ୍ତି । ପରେ ସେମାନେ ବହୁ ଅସୁବିଧା ଭୋଗିଲେ । ବହୁବର୍ଷ ଧରି ଏହା ହୋଇପାରି ନଥିଲା ।

ଆଶ୍ଚର୍ଯ୍ୟ ଲାଗିଲା ଯେ ଡକ୍ଟର ରାଉତ ନିଜେ ମୋତେ ଏତେକଥା କାହିଁକି କହୁଥିଲେ ? ସେ ଅନ୍ତତଃ ପନ୍ଦରଦିନ ପୂର୍ବରୁ ଅବସର ନେବା ଚିଠି ପଠାଇପାରିଥା'ନ୍ତେ । ପରେ ଜଣାଗଲା ଯେ ଏ ବିଷୟରେ ଗୋଟିଏ ଷଡ଼ଯନ୍ତ୍ର ହୋଇଥିଲା । ଶେଷଦିନ ପର୍ଯ୍ୟନ୍ତ ମୋର ଅବସର କଥା ନଜଣାଇବା ଉଦ୍ଦେଶ୍ୟ ହେଲା ସମୟ ପାଇଲେ କାଳେ ମୁଁ ବିଶ୍ୱବିଦ୍ୟାଳୟ କମିଶନଙ୍କୁ ଓ ଓଡ଼ିଶା ମୁଖ୍ୟମନ୍ତ୍ରୀଙ୍କୁ ପ୍ରଭାବିତ କରିବି । ତେଣୁ ଆଗରୁ ଠିକ୍ ହେଲା ଯେ ଅବସର ନେବା ଶେଷଦିନ ଏକଥା ଘୋଷଣା କରାହେବ । ସେମାନେ ବୋଧହୁଏ ଜାଣିନଥିଲେ ଯେ, ଏମାନଙ୍କର ଅନିଚ୍ଛାରେ ଅଧିକା ସମୟ ମାଡ଼ିଗୁଞ୍ଜି ହୋଇ ରହିବାପାଇଁ ମୁଁ ଚେଷ୍ଟା କରିନଥାନ୍ତି । ମୋର ସେ ଉଦ୍ଦେଶ୍ୟ ଥିଲେ ମୁଁ କ'ଣ ଡକ୍ଟର ରାଉତଙ୍କ କଥାରେ ବିଶ୍ୱାସ କରିଥାନ୍ତି ? ସେ ପରା ମୋତେ ଆଗରୁ ଡିରେକ୍ଟର ପଦ ବିଷୟରେ ଦୁଇଦିନ ଭିତରେ ଚିଠିଦେବେ ବୋଲି କହି ଚୁପ୍ ରହିଥିଲେ । ମୁଁ ଚାହିଁଥିଲେ ମାସେ ଆଗରୁ କମିଶନ ଚେୟାରମ୍ୟାନ୍, ମୁଖ୍ୟମନ୍ତ୍ରୀ ପ୍ରଭୃତିଙ୍କୁ କିହ ଡକ୍ଟର ରାଉତଙ୍କୁ ଅତି ସହଜରେ ପ୍ରଭାବିତ କରିପାରିଥାନ୍ତି । ଭାରତରେ ସବୁ ଅଗ୍ରଗାମୀ ବିଭାଗରେ ଯେଉଁ ନିୟମ ରହିଛି ତାହା ଗ୍ରହଣ କରିବାରେ ମୁଖ୍ୟମନ୍ତ୍ରୀଙ୍କର କୌଣସି ଅନିଚ୍ଛା ନଥାନ୍ତା । ଡକ୍ଟର ରାଉତ ଶେଷ ପର୍ଯ୍ୟନ୍ତ ଏଭଳି ଅକ୍ଷମଣୀୟ ପ୍ରତାରଣା କାହିଁକି କଲେ ସେ କଥା ମୁଁ ବୁଝିପାରିଲି ନାହିଁ ଅବଶ୍ୟ ପରେ ଶୁଣିଲି ଯେ ମୋ ବିଭାଗର ଜଣେ ବରିଷ୍ଠ ଅଧ୍ୟାପକ ଏହି ଷଡ଼ଯନ୍ତ୍ରରେ ସଂଶ୍ଳିଷ୍ଟ ଥିଲେ । ଏହା ଓଡ଼ିଆଙ୍କର ପରଶ୍ରୀକାତର ମନୋବୃତ୍ତି ଛଡ଼ା ଆଉ କ'ଣ ହୋଇପାରେ ?

ଅବଶ୍ୟ ଗୋଟିଏ କଥା ସତ ଯେ ମୁଁ ଥିଲାବେଳେ ମୋ ବିଭାଗ ଉପରେ ଡକ୍ଟର ରାଉତ କୌଣସି ପ୍ରଭାବ ବିସ୍ତାର କରିପାରିନଥିଲେ । କମିଶନ ଦେଇଥିବା ଭ୍ୟାନ୍‌ଟି ବିଭାଗ ଅଧୀନରେ ଥାଏ ଅଧ୍ୟାପକମାନଙ୍କର ଗବେଷଣା ଲାଗି । ମୁଁ ଅବସର ନେବା ପରେ ସେ ପ୍ରଥମେ ଗାଡ଼ିଟିକୁ ନିଜ ହାତକୁ ନେଇଗଲେ । ଅଧ୍ୟାପକମାନେ ଗବେଷଣା କାର୍ଯ୍ୟ ପାଇଁ ଆଉ ଗାଡ଼ି ପାଇପାରିଲେ ନାହିଁ । ଅଥଚ ସିଣ୍ଡିକେଟ୍ ସଭ୍ୟ ଓ ଅନ୍ୟାନ୍ୟ କର୍ତ୍ତୃପକ୍ଷ ନିଜ ନିଜ କାମରେ ଗାଡ଼ିକି ବ୍ୟବହାର କଲେ । ମୁଁ ଜାତୀୟ ଫେଲୋ ହିସାବରେ ବିଭାଗକୁ ସପ୍ତାହରେ ଦୁଇଥର ଯାଉଥିଲି । ଶୁଣେ ଯେ ଡକ୍ଟର ରାଉତ ବିଶ୍ୱବିଦ୍ୟାଳୟ କାର୍ଯ୍ୟରେ କ୍ରମେ ଏପରି ମନମୁଖୀ ଶାସନ ଜାରି କଲେ, ଶିକ୍ଷକମାନଙ୍କୁ ଏପରି ଭାବରେ ହତାଦର କଲେ ଯେ, ସମସ୍ତେ ଅତିଷ୍ଠ ହୋଇପଡ଼ିଲେ । ସେ ଥରେ ଶିକ୍ଷକ ସଂଘର ସାଧାରଣ ସଭାରେ ଜଣେ ବରିଷ୍ଠ ରିଡ଼ରଙ୍କୁ ଅପମାନ ଦେଇ ସଭାସ୍ଥଳରୁ ବାହାରି ଯିବାପାଇଁ କହିଲେ ଅଥଚ ସଂଘର ସଭାପତି କିମ୍ବା ଅନ୍ୟ ଅଧ୍ୟାପକମାନେ ଏହା ବିରୁଦ୍ଧରେ ପ୍ରତିବାଦ ମଧ୍ୟ କଲେନାହିଁ । ସଂଘ କର୍ମକର୍ତ୍ତାଙ୍କ ଦୁର୍ବଳତା ଯୋଗୁ ସେ ଏପରି ମନମୁଖୀ କାରବାର ଚଳାଇଲେ । ଥରେ ମୁଁ ତାଙ୍କୁ ଥଟ୍ଟାରେ କହିଥିଲି ସେ କୁଳପତି ଥିଲାବେଳେ ମୁଁ ଯଦି ଶିକ୍ଷକ ସଂଘର ସଭାପତି ହୋଇଥାନ୍ତି ତା'ହେଲେ ପ୍ରକୃତରେ ଆମର ବଳ କଷାକଷି ହୋଇଥାନ୍ତା । ଅଧ୍ୟାପକ ମାଥୁର କୁଳପତି ଥିଲାବେଳେ ସାଧାରଣ ସଭାରେ ତାଙ୍କ ସହିତ ମୋର ଏ ପ୍ରକାର ପରିସ୍ଥିତି ସୃଷ୍ଟି ହୋଇଥିଲା । ଶେଷରେ ଆମେ ଜିତିଥିଲୁ ।

ବିଶ୍ୱବିଦ୍ୟାଳୟରୁ ଅବସର ନେବା କଥା ଶୁଣିଲା ପରେ ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦ ମୋତେ ଜାତୀୟ ଫେଲୋ ହିସାବରେ ଘୋଷଣା କଲେ । ଏହି ପଦବୀ ସହିତ ସଂପୃକ୍ତ ଗବେଷଣା କାର୍ଯ୍ୟ ମନୋବିଜ୍ଞାନ ବିଭାଗରେ ରହି କରିବା ପାଇଁ ମୁଁ ଇଚ୍ଛା

ପ୍ରକାଶ କରିଥିଲି । ତେଣୁ ସେହି ବିଭାଗରେ ମୁଁ ଆଉ ଦୁଇବର୍ଷ ରହିଲି । ପ୍ରଥମେ ପ୍ରଥମେ ମୁଁ ଅନୁଭବ କରିପାରିନଥିଲି ଯେ ମୁଁ ବିଭାଗୀୟ ମୁଖ୍ୟ ପରିବର୍ତ୍ତେ ଜାତୀୟ ଫେଲୋ ହିସାବରେ ବିଭାଗରେ ରହିବାରେ ମୋର କି ପାର୍ଥକ୍ୟ ହେବ । ମୁଁ ଆଗରୁ ବିଭାଗୀୟ ସଭାରେ କହିଥିଲି ଯେ ମୁଁ ଏହି ବିଭାଗକୁ ଏତେ ଭଲ ପାଏ ଯେ ମୁଁ ଅବସର ନେଲାପରେ ମଧ୍ୟ ଏହାର ଭଲମନ୍ଦରେ ଭାଗୀଦାର ହେବି, ଅଧ୍ୟାପକ ଓ ଛାତ୍ରମାନଙ୍କୁ ଗବେଷଣାରେ ସାହାଯ୍ୟ କରିବି, ବିଶ୍ୱବିଦ୍ୟାଳୟ କମିଶନଠାରୁ ଅନୁଦାନ ଆଣିବାରେ ଉଦ୍ୟମ କରିବି, ଆନ୍ତର୍ଜାତୀୟ ସହଯୋଗୀ ଗବେଷଣା ଯୋଜନାକୁ ଆହୁରି ବେଶି ଅଗ୍ରସର କରାଇବି ଏବଂ ଥଟ୍ଟାରେ କହିଥିଲି ଯେ ମଲାପରେ ମଧ୍ୟ ମୋ ଆତ୍ମା ଏହି ବିଭାଗର ଆବହାଓ୍ୱା ଭିତରେ ଛାଇପରି ବୁଲିବ । (ଅବଶ୍ୟ ମୃତ୍ୟୁପରେ ଆତ୍ମାର ସ୍ଥିତି ବିଷୟରେ ମୋର ଆଦୌ ବିଶ୍ୱାସ ନଥିଲା) । ତେଣୁ ମୋର ଧାରଣା ନଥିଲା ଯେ ଗବେଷକ ହିସାବରେ ମୁଁ ସେହି ବିଭାଗରେ ରହିଲା ପରେ ମୋର ଅଧ୍ୟାପନା ଓ ଗବେଷଣା କାର୍ଯ୍ୟରେ କୌଣସି ପରିବର୍ତ୍ତନ ହେବ ।

ମୁଁ ଅବସର ନେବାର ବର୍ଷେ ପୂର୍ବରୁ ବିଶ୍ୱବିଦ୍ୟାଳୟକୁ ଅନୁରୋଧ କରିଥିଲି ମୋତେ ବିଭାଗୀୟ ମୁଖ୍ୟ ପଦବୀରୁ ଅବ୍ୟାହତ ଦେବାପାଇଁ କାରଣ ଏଥିରେ ମୋର ବିଶେଷ ଆଗ୍ରହ ନଥିଲା । ମୁଁ ଏମ୍.ଫିଲ୍ ଛାତ୍ରଙ୍କର ଯେଉଁ କ୍ଲାସ୍ ଅବସର ପୂର୍ବରୁ ନେଉଥିଲି, ସେହିପରି ନେଲି । କେବଳ ପ୍ରତିଦିନ ବିଭାଗକୁ ନ ଯାଇ ସପ୍ତାହରେ କେବଳ ଦୁଇ ତିନିଦିନ ଯାଉଥିଲି । କିନ୍ତୁ କିଛିଦିନ ପରେ ମୋର କାର୍ଯ୍ୟ କ୍ଷେତ୍ରରେ ପାର୍ଥକ୍ୟ ଅନୁଭବ କଲି । ମୁଁ ଦୁଇମାସ ଯାଏଁ କ୍ଲାସ୍ ନେଇଥିଲି । ତା'ପରେ ହଠାତ୍ ବିଭାଗୀୟ ମୁଖ୍ୟଙ୍କ ପାଖରୁ ଗୋଟିଏ ଚିଠି ଆସିଲା ଯେ ମୋତେ କ୍ଲାସ୍ ନେବାପାଇଁ ଅନୁମତି ମିଳିଲା । ଏ ଚିଠିଟି ପାଇଲାଦିନ ମୁଁ କ୍ଲାସ୍ ନେବା ବନ୍ଦ କରିଦେଲି । ତା'ପରେ ଦିନେ ଅଧ୍ୟାପକମାନଙ୍କ ସହିତ ଗବେଷଣା ଯୋଜନା ବିଷୟରେ ଆଲୋଚନା କରିବାର କାର୍ଯ୍ୟକ୍ରମ ମୋର ନିର୍ଦ୍ଦିଷ୍ଟ ହୋଇଥିଲା । କିନ୍ତୁ ସେହିଦିନ ମୁଁ ବିଭାଗରେ ପହଞ୍ଚିଲା ପରେ ମୋ ବଖରାକୁ ଏଥିପାଇଁ କୌଣସି ଅଧ୍ୟାପକ ଆସି ନଥିଲେ କାରଣ ବିଭାଗୀୟ ମୁଖ୍ୟ ମୋତେ ଫୋନ୍‌ରେ ଏ ବିଷୟରେ ଅନୁରୋଧ କରି ସୁଦ୍ଧା ଏ ଖବର ଆଉ କାହାରିକୁ ଦେଇନଥିଲେ । କ୍ରମେ ଦେଖାଗଲା ଯେ ବିଭାଗୀୟ ମୁଖ୍ୟଙ୍କ ସମେତ ଅଧିକାଂଶ ଅଧ୍ୟାପକ ମୋ ବଖରାକୁ ଆଉ ବେଶି ଆସିଲେ ନାହିଁ । ସାମାନ୍ୟ କେତେଜଣ ଶିକ୍ଷକ ଓ ରାଜ୍ୟ ବାହାରର ଗବେଷକମାନେ କେବଳ ଆସୁଥାନ୍ତି । ତା'ପରେ ଲକ୍ଷ୍ୟ କଲି ଯେ ଯେଉଁମାନେ ମୋ ବଖରାକୁ ଆସୁନଥିଲେ, ମୁଖ୍ୟ ଅଧ୍ୟାପକ ନଥିଲାବେଳେ ସେମାନେ ସମସ୍ତେ ଆସନ୍ତି । ଏପରି ହେଲା ଯେ, ସେମାନଙ୍କ ଭିତରୁ କେତେକଙ୍କୁ ମୋ ବଖରାରେ ଦେଖିଲେ ମୁଁ ଧରିନିଏ ଯେ ମୁଖ୍ୟ ଅଧ୍ୟାପକ ବିଭାଗରେ ନାହାନ୍ତି ।

ଏସବୁ ଦେଖି ମୋତେ ଦୁଃଖ ଲାଗିବା କଥା କିନ୍ତୁ ପ୍ରକୃତରେ ମଜା ଲାଗୁଥିଲା । ଅବସର ନେବା ଦିନଠାରୁ ମୋତେ କୌଣସି ପରୀକ୍ଷାରେ କିମ୍ବା ପାଠ୍ୟକ୍ରମ ନିର୍ଦ୍ଧାରଣ ପରିଷଦ (Board of studies) ବା ପରୀକ୍ଷା ପରିଚାଳନା କମିଟିରେ ରଖାଗଲା ନାହିଁ । ଅନ୍ୟ ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ସଂସ୍ଥାରୁ ମୋ ପାଖକୁ ପରୀକ୍ଷକ ନିଯୁକ୍ତିପତ୍ର ଆସେ କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ନୁହେଁ । ମୁଁ ଜାତୀୟ ଫେଲୋ ହେଲାପରେ ବିଶ୍ୱବିଦ୍ୟାଳୟର କୁଳପତି, ସିଣ୍ଡିକେଟ କିମ୍ବା କୌଣସି ମୁଖ୍ୟ ଅଧ୍ୟାପକଙ୍କଠାରୁ ଅଭିନନ୍ଦନ ପାଇନଥିଲି । ଅଗ୍ରଗାମୀ କେନ୍ଦ୍ର ପାଇଁ

ବିଶ୍ୱବିଦ୍ୟାଳୟ କମିଶନ ନିୟମ ଅନୁଯାୟୀ ଗୋଟିଏ ପରାମର୍ଶଦାତା କମିଟି ଗଠନ ହୁଏ । ସେଥିରେ ବାହାରୁ ଦୁଇଜଣ ଅଧ୍ୟାପକ ରହିଲେ ସିନା ମୋ ନାଁ ସେଥିରେ ରହିଲାନାହିଁ । ମୋ ପ୍ରତି ଏ ପ୍ରକାର ବ୍ୟବହାରରେ ବିଭାଗର ବହୁ ଅଧ୍ୟାପକ ବିରକ୍ତ ଓ ବିବ୍ରତ ହେଉଥିଲେ ସୁଦ୍ଧା ଏହା କିନ୍ତୁ ସମ୍ଭବ ହୋଇଥିଲା । ଏହା ମଧ୍ୟ ଗୋଟିଏ ଅଦ୍ଭୁତ ଘଟଣା । ସେମାନେ ଆସି ମୋତେ ଏସବୁ କଥା କହି ଦୁଃଖ ପ୍ରକାଶ କରନ୍ତି । ମୁଁ ସବୁ ଶୁଣେ କିନ୍ତୁ କେବେହେଲେ ମୁଁ ଦୁଃଖ ପ୍ରକାଶ କରେନାହିଁ ।

ମୋ ସହିତ ଏପରି ବ୍ୟବହାର ପାଇଁ ମୁଁ କିଛି ପରିମାଣରେ ଦୁଃଖିତ ହେଲେ ସୁଦ୍ଧା ମୁଁ ବିବ୍ରତ ହୋଇ ନଥିଲି କି କୌଣସି ବିଷୟରେ ଅଭିଯୋଗ ମଧ୍ୟ କରିନଥିଲି । କିନ୍ତୁ ଯେତେବେଳେ ଦେଖିଲି ଯେ ବହୁ କଷ୍ଟରେ ବିଶ୍ୱବିଦ୍ୟାଳୟ କମିଶନଙ୍କଠାରୁ ଲକ୍ଷେ ଟଙ୍କାର ଡ୍ରାଫ୍ଟ ଚେକ୍ ଧରି କଟକରେ ପହଞ୍ଚି ସେହି ସଂଧ୍ୟାରେ ଯେଉଁ ଗାଡ଼ିଟି କିଣିଥିଲି ମୋ ବିଭାଗର ଗବେଷଣାପାଇଁ ସେହି ଗାଡ଼ିଟିକୁ କୁଳପତି ନେଇଗଲେ । ତା'ପରେ ଦେଖିଲି ଗାଡ଼ିଟି ସିଣ୍ଡିକେଟ୍ ସଭ୍ୟଙ୍କର ଝିଅ ବାହାଘର, କାହାପାଇଁ ଗାଈ ଦାନା ବୋହିବା ପ୍ରଭୃତି ବ୍ୟକ୍ତିଗତ କାର୍ଯ୍ୟରେ ଲାଗିଲା ଅଥଚ ଗବେଷଣା କାର୍ଯ୍ୟ ପାଇଁ ଦିଆଗଲା ନାହିଁ । ମୁଁ ଥିଲାବେଳେ ଦୁଇବର୍ଷ ଭିତରେ ତିନୋଟି ଗବେଷଣା ବହି ବିଭାଗ ପକ୍ଷରୁ ପ୍ରକାଶିତ ହୋଇଥିଲା, ତା'ପରେ ଆଉ କିଛି ପ୍ରକାଶିତ ହେଲାନାହିଁ । ଏତେ କଷ୍ଟରେ ଯେଉଁ ଲେକ୍‌ଚରର, ରିଡ଼ର ପଦବୀ କମିଶନଙ୍କଠାରୁ ଆଣିଥିଲି ସେଗୁଡ଼ିକ ସ୍ଥାୟୀ ହୋଇପାରିଲା ନାହିଁ । ବିଭାଗର ଶିକ୍ଷକମାନଙ୍କ ଭିତରେ କଳି ତକରାଳ ଲାଗି ରହିଲା । ବିଭାଗର ସମସ୍ତ ଶିକ୍ଷକ ଓ ଗବେଷକ ଛଅଗୋଟି ଭିନ୍ନ ଭିନ୍ନ ଗବେଷଣାଗତ ଶ୍ରେଣୀରେ ବିଭକ୍ତ ହୋଇ ମିଳିତ ଭାବରେ ଗବେଷଣା କରୁଥିଲେ ଏବଂ ପ୍ରତ୍ୟେକ ଦଳ ତରଫରୁ ଗବେଷଣାଗତ ପୁସ୍ତକ ବର୍ଷକୁ ଗୋଟିଏ ଲେଖାଏଁ ପ୍ରକାଶିତ ହେବାର ଲକ୍ଷ୍ୟ ରହିଥିଲା । ଏ ପ୍ରକାର ମିଳିତ ଗବେଷଣା କାମ ପ୍ରାୟ ବନ୍ଦ ହୋଇଆସିଲା । ବିଭାଗରେ ନୈରାଶ୍ୟର ଛାୟା ଘୋଟି ଆସିଲା । ଅଥଚ ଜୀବନବ୍ୟାପୀ ଏତେ ପରିଶ୍ରମ କରି ମୁଁ ସେହି ବିଭାଗକୁ ଗଢ଼ିଥିଲି । ଦିଲ୍ଲୀର ଚାକିରି ଛାଡ଼ି କୁଳପତି ପଦପାଇଁ ଲାଳାୟିତ ନ ହୋଇ ବିଭାଗର ଉନ୍ନତିରେ ପ୍ରାଣପଣେ ଉଦ୍ୟମ କରି ଏହାକୁ ଭାରତର ସର୍ବଶ୍ରେଷ୍ଠ ଓ ସର୍ବବୃହତ୍ ବିଭାଗରେ ପରିଣତ କଲି, ଅଥଚ ଏତେ ଅଳ୍ପ ସମୟ ଭିତରେ ଏହା ଦିନକୁ ଦିନ ତଳକୁ ତଳକୁ ଚାଲିଲା । ମୁଁ ସେହି ବିଭାଗର ଗୋଟିଏ ବଖରାରେ ଜଗନ୍ନାଥ ମୂର୍ତ୍ତିପରି ବଡ଼ ବଡ଼ ଆଖିରେ ଖାଲି ଚାହିଁ ରହିଲି । କାନ୍ଥରେ ଟଙ୍ଗା ହୋଇଥିବା ଫଟୋଟିର ସ୍ମିତହାସ୍ୟ ବଦନରେ ମୁଁ ଖାଲି ଯେପରି ସବୁ ଦେଖୁଥିଲି । ମୋର କୌଣସି କ୍ଷମତା ନଥିଲା ତାକୁ ରୋକିବାକୁ । ମୋର ସାହାଯ୍ୟ କେହି ଚାହୁଁ ନଥିଲେ । ମୁଁ ବା କିପରି ଆଗେଇ ଆସିବି ସାହାଯ୍ୟ ଦେବାପାଇଁ । ତା'ଛଡ଼ା ପର୍ଯ୍ୟାୟକ୍ରମେ ଯୋଜନା ଅନୁଯାୟୀ ଯେତେବେଳେ ମୋତେ ଦୂରେଇ ଦିଆଯାଉଛି, ସେତେବେଳେ ମୁଁ କିପରି ଓ କାହିଁକି ବା ଆଗେଇ ଆସିବି । ଏଥିପାଇଁ ମୁଁ କେବଳ ବିଭାଗୀୟ ମୁଖ୍ୟଙ୍କୁ ଦାୟୀ କରିପାରିଲି ନାହିଁ । କାରଣ ବିଭାଗଟି ଏତେବଡ଼ ଏବଂ ବିଦେଶର ବିଖ୍ୟାତ ବିଶ୍ୱବିଦ୍ୟାଳୟ ଶିକ୍ଷାପ୍ରାପ୍ତ ଦକ୍ଷ ଅଧ୍ୟାପକମାନେ ଏଠାରେ ଥାଇ ଏହା କିପରି ସମ୍ଭବ ହେଉଛି ? ବିଭାଗ ପାଇଁ ସେମାନଙ୍କର ଦାୟିତ୍ୱ କିଛି କମ୍ ନୁହେଁ ତ !

ମୁଁ ତ ସବୁବେଳେ ସାମୂହିକ ଉଦ୍ୟମ ଓ କୃତିତ୍ୱ ଉପରେ ବିଶ୍ୱାସ କରି ଆସିଛି ତେଣୁ ଜଣେ ଲୋକକୁ ଦୋଷ ଦେଇ ଲାଭ କ'ଣ ? ଅବଶ୍ୟ ଯେଉଁ ମୁଖ୍ୟ ଅଧ୍ୟାପକଙ୍କୁ ମୁଁ ବହୁ କଷ୍ଟ ସ୍ୱୀକାର କରି ବିଭାଗକୁ ଲେକ୍‌ଚର୍‌ର କରି ଆଣିଥିଲି ଏବଂ ତା'ପରେ ଠିକ୍ ସମୟରେ ରିଡ଼ର ଓ ବହୁ ପରିଶ୍ରମ କରି ବିଶ୍ୱବିଦ୍ୟାଳୟର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ତାଙ୍କର କମ୍ ବୟସରେ ଅଧ୍ୟାପକ କରାଇଥିଲି, ସେ ହଠାତ୍ କାହିଁକି ମୋର ବିଲୋପ ସାଧନରେ ଏପରି ଦୃଢ଼ ପ୍ରତିଜ୍ଞ ହୋଇ ବାହାରିଲେ ତାହା ମୋ ପକ୍ଷରେ ରହସ୍ୟମୟ ହୋଇରହିଗଲା । ମନୁଷ୍ୟ ପୁଣି ଏପରି ବ୍ୟବହାର କରିପାରିବ ତାହା ମୋର ଦୃଢ଼ ବିଶ୍ୱାସ ହେଲା ଏହି ଘଟଣା ପରେ । ସେ କ୍ଷମତାପାଇଁ ଏତେ ଶୀଘ୍ର କାହିଁକି ଏପରି ଉଦ୍‌ବିଗ୍ନ ହୋଇପଡ଼ିଲେ ତାହା ବି ବୁଝିବା କଷ୍ଟ । କୁଳପତି ମଧ୍ୟ ବିଭାଗର କାହିଁକି ଏତେ କ୍ଷତି ଘଟାଇଲେ ତାହା ମଧ୍ୟ ଅବୋଧ । ଯାହାକୁ ଗଢ଼ିବା ପାଇଁ ଏତେ ସମୟ ଲାଗିଥିଲା ତା'ର ଅପଚୟ ପାଇଁ କେତେ କମ୍ ସମୟ ଲାଗିଲା । ବିଭାଗର ଏତେ ଟଙ୍କା ଓ ଏପରି ଖ୍ୟାତି ଥାଇ ମଧ୍ୟ ଏମାନେ ତାର ସଦୁପଯୋଗ କରିପାରୁ ନଥିଲେ ତାହା ଦେଖି ମୋର ଦୁଃଖ ହେଲା । ଏହି ବିଭାଗରେ ଜାତୀୟ ଫେଲୋ ହିସାବରେ ନରହିଥିଲେ ବୋଧହୁଏ ଭଲ ହୋଇଥାନ୍ତା । ମୋର ସେତେବେଳେ କଳ୍ପନାର ବାହାରେ ଥିଲା ଯେ ମୋତେ ବିଭାଗରୁ ଏପରି ଭାବରେ ଏତେଶୀଘ୍ର ଅଲଗା କରି ଦିଆହେବ । ଜଣେ ତ ଗୋଟିଏ ବିଭାଗର ଦାୟିତ୍ୱରେ ଜୀବନସାରା ରହିପାରିବ ନାହିଁ, ରହିବା ମଧ୍ୟ ଉଚିତ ନୁହେଁ । କିନ୍ତୁ ମୁଁ ଯେଉଁ ଶୀର୍ଷ ସ୍ଥାନରେ ବିଭାଗକୁ ପହଞ୍ଚାଇଥିଲି, ଏହାର ଯେଉଁ ଜାତୀୟ ଓ ଆନ୍ତର୍ଜାତୀୟ ପ୍ରତିଷ୍ଠା ହୋଇଥିଲା, ସେହି କ୍ଷେତ୍ରରୁ ଅନ୍ତତଃ ଏହା ଆହୁରି ଆଗକୁ ଯାଇଥିଲେ କିମ୍ବା ସେହି ପ୍ରତିଷ୍ଠାକୁ ବଜାୟ ରଖି ପାରିଥିଲେ ମୋର ଦୁଃଖ ହୋଇନଥାନ୍ତା । କିନ୍ତୁ ବିଭାଗକୁ ଯଦି ତଳକୁ ଖସାଇବାର ଉଦ୍ୟମ ହୁଏ ତା'ହେଲେ ମୋର ଗଭୀର ଦୁଃଖ ହେବାକଥା । ଉତ୍କଳ ବିଶ୍ୱବିଦ୍ୟାଳୟର କେତେକ ବିଭାଗ ଏହା ଚାହୁଁଥିଲେ ଏବଂ ଏହାର ଅବନତିରେ ସେମାନେ ଖୁସି ହେବା ସ୍ୱାଭାବିକ ।

ବର୍ତ୍ତମାନ ବିଭିନ୍ନ କଲେଜ ସ୍ନାତକ ବିଭାଗମାନ ଭିତରେ ପ୍ରତିଯୋଗିତା ଚାଲିଛି କେଉଁ କଲେଜ ମନସ୍ତତ୍ତ୍ୱରେ କେତେଜଣ ପ୍ରଥମ ଶ୍ରେଣୀ ପାଇବେ । ବର୍ଷେ ବର୍ଷେ ଗୋଟିଏ କଲେଜରୁ ୩୨ଜଣ ପରୀକ୍ଷାର୍ଥୀଙ୍କ ଭିତରୁ ୩୧ ଜଣ ପ୍ରଥମ ଶ୍ରେଣୀରେ ପାଶ୍ କରିଛନ୍ତି । ସ୍ନାତକୋତ୍ତର ବିଭାଗରେ ମଧ୍ୟ ବ୍ୟକ୍ତିବିଶେଷଙ୍କ ଭିତରେ ପ୍ରତିଯୋଗିତା ହୋଇ ଷାଠିଏ ଜଣ ପରୀକ୍ଷାର୍ଥୀଙ୍କ ଭିତରୁ ପ୍ରାୟ ୪୫ଜଣ ଯାଏଁ ପ୍ରଥମ ଶ୍ରେଣୀରେ ପାଶ୍ କରୁଛନ୍ତି । ମୁଁ ଥିଲାବେଳେ ପ୍ରତିବର୍ଷ ପାଞ୍ଚ ସାତଜଣ ପ୍ରଥମ ଶ୍ରେଣୀରେ ପାଶ୍ କରୁଥିଲେ । ବର୍ଷେ ୧୨ଜଣ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲେ ବୋଲି ଗୋଟିଏ ବିଭାଗୀୟ ଅନୁସନ୍ଧାନ କରାଯାଇଥିଲା । କିନ୍ତୁ କ୍ରମେ ମନୋବିଜ୍ଞାନ ଉପାଧି ଓଡ଼ିଶାରେ ସବୁଠାରୁ ଶସ୍ତା ଉପାଧି ହିସାବରେ ପରିଣତ ହୋଇଗଲା ।

ମୁଁ ଥିଲାବେଳେ ପ୍ରାୟ ପ୍ରତିବର୍ଷ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କଠାରୁ ଟଙ୍କା ଆଣି ସ୍ନାତକ ବିଭାଗର ଶିକ୍ଷକମାନଙ୍କୁ ଦୁଇ ତିନିଦିନ ବାଣୀବିହାରରେ ଏକତ୍ରିତ କରି ମନୋବିଜ୍ଞାନ ବିଷୟର ଅଧ୍ୟାପନା ପ୍ରଣାଳୀ, ପରୀକ୍ଷା ପ୍ରଣାଳୀ ଏବଂ ପ୍ରାକ୍ଟିକାଲ କରାଇବାର ଢଙ୍ଗ ବିଷୟରେ ଆଲୋଚନା ହୋଇ ଗୋଟିଏ ଗୋଟିଏ ରିପୋର୍ଟ ତିଆରି ହୋଇ ସବୁ ମନୋବିଜ୍ଞାନ ବିଭାଗକୁ ପଠାଯାଉଥିଲା ସେମାନଙ୍କର ନିର୍ଦ୍ଦେଶନା ଲାଗି । ସେସବୁ ପ୍ରକ୍ରିୟା ସଂପୂର୍ଣ୍ଣ ରୂପେ ବନ୍ଦ ହୋଇଗଲା । ଫଳରେ ଓଡ଼ିଶାର ମନୋବିଜ୍ଞାନ ଅଧ୍ୟାପକମାନଙ୍କ ଭିତରେ କୌଣସି ସହଯୋଗ

ସ୍ଥାପିତ ହୋଇପାରିଲାନାହିଁ । ଅଗ୍ରଗାମୀ କେନ୍ଦ୍ରର ସ୍ନାତକ ଶିକ୍ଷାର ପ୍ରଣାଳୀ ଓ ମାନବୃଦ୍ଧି ପାଇଁ ଯେଉଁ ମୁଖ୍ୟ କର୍ତ୍ତବ୍ୟ ରହିଛି ତାହା ମଧ ସଂପୂର୍ଣ୍ଣ ରୂପେ ବନ୍ଦ ହୋଇଗଲା ।

ଆନ୍ତର୍ଜାତିକ ସମ୍ପର୍କ ମଧ କମି ଆସିଲା । ମୁଁ ଥିଲାବେଳେ ସୁଇଡେନ୍‌ର ଗୋଟେନ୍‌ବର୍ଗ ଓ ମାଲ୍‌ମୋ ବିଶ୍ୱବିଦ୍ୟାଳୟ ସହିତ ସହଯୋଗୀ ଶିକ୍ଷା ଓ ଗବେଷଣା ପାଇଁ ଯୋଜନା ହୋଇଥିଲା । ମୁଁ ୧୯୮୧ରେ ଅବସର ନେଲାପରେ ମୁଁ ସେହି ବିଭାଗରେ ଫେଲୋ ଥିଲାବେଳେ ସ୍ୱିଡେନ୍ ରାଷ୍ଟ୍ରଦୂତଙ୍କ ଅଫିସରୁ ଗୋଟିଏ ଚିଠି ଆସିଥିଲା ଯେ ମାଲ୍‌ମୋ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଦମ୍ପତିଙ୍କୁ ଉତ୍କଳ ମନୋବିଜ୍ଞାନ ବିଭାଗ ତାଙ୍କର ସୁବିଧା କରି ଦେବାକୁ ଯେଉଁ ପ୍ରତିଶ୍ରୁତି ଦେଇଥିଲା ତାହା ଅବ୍ୟାହତ ରହିଛି ନା ନାହିଁ । ମୋତେ ଏ ବିଷୟରେ କିଛି ନ ପଚାରି ବିଭାଗୀୟ ମୁଖ୍ୟ ଲେଖିଦେଲେ ଯେ ସେମାନଙ୍କର ସୁବିଧା କରିବା ମନୋବିଜ୍ଞାନ ବିଭାଗ ପକ୍ଷରେ ଆଉ ସମ୍ଭବ ନୁହେଁ । ଏ ଚିଠି ଯୋଗୁଁ ମାଲମୋ ବିଶ୍ୱବିଦ୍ୟାଳୟ ଦମ୍ପତିଙ୍କର ଭ୍ରମଣ ବୃତ୍ତି କଟିଯାଇଥିଲା । ମୁଁ ସେତେବେଳକୁ ଇଂଲଣ୍ଡରେ ଥାଏ । ସେଠାରେ ମୁଁ ଏ ବିଷୟରେ ଜାଣିଲା ପରେ ମୁଁ ତାଙ୍କୁ କଟକରେ ଆଉ ଗୋଟିଏ ଗବେଷଣା କେନ୍ଦ୍ର ପ୍ରତିଷ୍ଠାକରି ତା ତରଫରୁ ନିମନ୍ତ୍ରଣ ପଠାଇଲି । ତା'ପରେ ସେମାନେ କଟକକୁ ଦୁଇଥର ଆସିଥିଲେ । ସେହିପରି ସ୍ୱିଡେନର ଗୋଟେବର୍ଗ ବିଶ୍ୱବିଦ୍ୟାଳୟର ଆଉ ଦୁଇଜଣ ଗବେଷକ ଦୁଇଥର କଟକ ଆସିଥିଲେ । ଏ ସୁଯୋଗ ଯଦି ବିଭାଗ ନେଇଥାନ୍ତା ତା'ହେଲେ ଆହୁରି କେତେକ ଛାତ୍ର ଓ ଅଧ୍ୟାପକ ଗବେଷଣା କାର୍ଯ୍ୟରେ ସ୍ୱିଡେନ୍ ଯାଇପାରିଥାନ୍ତେ । ବିଶ୍ୱବିଦ୍ୟାଳୟ ତଥା ବିଭାଗର ଆନ୍ତର୍ଜାତୀୟ ଖ୍ୟାତି ଆହୁରି ବ୍ୟାପକ ହୋଇପାରିଥାନ୍ତା । ଏସବୁ କାର୍ଯ୍ୟ ବନ୍ଦ ହୋଇଗଲା । ମୁଁ ବିଭାଗ ଛାଡ଼ିବା ପରଠାରୁ ଆନ୍ତର୍ଜାତିକ ସମ୍ପର୍କ କମି କମି ଆସିଲା । ବିଦେଶକୁ ଯିବାର ସୁବିଧା ସେପରି ବ୍ୟାପକ ଭାବରେ ଅଧ୍ୟାପକମାନଙ୍କୁ ଆଉ ମିଳିଲା ନାହିଁ । ଏତେବଡ଼ ପ୍ରତିଷ୍ଠିତ ବିଭାଗର ଏ ପ୍ରକାର ଶୋଚନୀୟ ବିପର୍ଯ୍ୟୟ ଦେଖିଲେ ମୋତେ ଦୁଃଖ ଲାଗିବା ସ୍ୱାଭାବିକ ।

ଯାହାହେଉ ଚାକିରି ବନ୍ଧନରୁ ମୁକ୍ତି, ନିଜର ଅତିପ୍ରିୟ ଅନୁଷ୍ଠାନ ପ୍ରତି ଅତ୍ୟଧିକ ମୋହର ଅବସାନ, ଶିକ୍ଷା ଓ ଗବେଷଣାଗତ ବାସନା ଆସକ୍ତିରୁ ପରିତ୍ରାଣ ପାଇଁ ଏହି ଦୁଇବର୍ଷର ଅନୁଭୂତି ମୋତେ ବହୁତ ସାହାଯ୍ୟ କରିଥିଲା । ପ୍ରକୃତରେ ଗୋଟିଏ କାମରୁ ଅବ୍ୟାହତି ନେଲା ପରେ ତା ବିଷୟରେ ସମ୍ପୂର୍ଣ୍ଣ ରୂପେ ଭୁଲିଯିବା ବାଞ୍ଛନୀୟ । ଏହା ବଳିଷ୍ଠ ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ । କାରଣ ଯେଉଁ ବିଷୟ ତୁମର କ୍ଷମତା ବହିର୍ଭୂତ ସେହି ଗୋଟିଏ ବିଷୟ ନେଇ ଘାଣ୍ଟି ହେବା ନିଶ୍ଚିତ ଭାବରେ ମୂର୍ଖତା । ଏ ବିଷୟରେ ମୋତେ ଉପଯୁକ୍ତ ଶିକ୍ଷା ଦେଇଥିବା ଲାଗି ମୁଁ ମୋର ସହକର୍ମୀମାନଙ୍କଠାରେ ଚିର କୃତଜ୍ଞ ହୋଇରହିବି । ଏହି କାରଣରୁ ଆଜିଯାଏ ବିଭାଗର କୌଣସି କାର୍ଯ୍ୟରେ ଆଉ ଆଗ୍ରହ ଦେଖାଇନାହିଁ । ଜାତୀୟ ଫେଲୋସିପ୍ ପରେ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ ମୋତେ ଦୁଇଟି ବହି ଲେଖିବା ଦାୟିତ୍ୱ ଦେବାକୁ ଚାହିଁଥିଲେ । ସେଥିଲାଗି ସେମାନେ ମୋତେ ଟଙ୍କା ଦେଇଥାନ୍ତେ, ସାହାଯ୍ୟକାରୀ ଅଧ୍ୟାପକ ଦେଇଥାନ୍ତେ କିନ୍ତୁ ଏହି ଅନୁଦାନ ବିଶ୍ୱବିଦ୍ୟାଳୟ ମାଧ୍ୟମରେ ଆଣିବାକୁ ହେବ । ତେଣୁ ମୁଁ ମନା କରି ଦେଇଥିଲି । ମୋର ଦୁଇବର୍ଷର ତିକ୍ତ ଅଭିଜ୍ଞତା ପରେ ବିଭାଗ ସହିତ ଆଉ କୌଣସି ସମ୍ପର୍କ ରଖିବା କଥା ଭାବିବା ମଧ ସମ୍ଭବ ନୁହେଁ । ମୁଁ ଯଦି ପାଞ୍ଚ ସାତବର୍ଷ ବିଭାଗ ସହିତ କୌଣସି ନା କୌଣସି ଉପାୟରେ ସଂପୃକ୍ତ ହୋଇ ରହିଥାନ୍ତି ତା'ହେଲେ ବିଭାଗ ପାଇଁ ଆହୁରି ଅନେକ ସାହାଯ୍ୟ ଆଣି ପାରିଥାନ୍ତି ।

ଅଧିକରୁ ଅଧିକ ଅଧ୍ୟାପକ, ରିଡ଼ର ଇତ୍ୟାଦି ଅନେକ ଚାକିରି ସୃଷ୍ଟି କରିପାରିଥାନ୍ତି । ବିଭାଗରୁ ପ୍ରତିବର୍ଷ ତିନି ଚାରୋଟି ଗବେଷଣା ପର୍ଯ୍ୟବସିତ ପୁସ୍ତକ ପ୍ରକାଶିତ ହୋଇପାରିଥାନ୍ତା । ଶୁଣିଲି, ମୋ ସମୟରେ ବିଭାଗକୁ ଯେଉଁ ଅନୁଦାନ ମିଳୁଥିଲା ତାହା କମି କମି ଆସୁଛି ଏବଂ କ୍ରମେ ଏହା ମଧ ବନ୍ଦ ହୋଇଯାଇପାରେ । ଏଥିରେ କାହାର କ'ଣ ଉପକାର ହେଲା ଭାବି ହୁଏନା । ଧ୍ୱଂସକରି ଚାଲିବା ଯେଉଁମାନଙ୍କର ପ୍ରବୃତ୍ତି ତାକୁ ଅନ୍ୟ ଦିଗରେ ପରିଚାଳିତ କରିବା ସମ୍ଭବ ହୋଇପାରୁଥିଲେ ପୃଥିବୀରେ ବହୁ ଧ୍ୱଂସଲୀଳା ଘଟୁନଥାନ୍ତା ।

ବିଭଗ ଛାଡ଼ିବା ପୂର୍ବରୁ ମୋର ସହକର୍ମୀ ଡକ୍ଟର ଅଧିକାରୀ ଶ୍ରୀକାନ୍ତ ଦାସଙ୍କ ହାତରେ ମୋର ଗବେଷଣା ସଂପର୍କୀୟ ସମସ୍ତ କାଗଜପତ୍ର, ଗବେଷଣା ବିବରଣୀ ଓ ପତ୍ରପତ୍ରିକା ଦେଇ ଆସିଲି । ଡକ୍ଟର ଦାସ ବାଲ୍ୟଶିକ୍ଷା ସମ୍ବନ୍ଧୀୟ ସମସ୍ତ ପ୍ରକାର ଗବେଷଣାରେ ମୋ ସହିତ ଧାରାବାହିକ ଭାବରେ କାମ କରି ଆସିଛନ୍ତି । ସେ ଜଣେ ପରିଶ୍ରମୀ ଓ ନିଷ୍ଠାପର ଗବେଷକ । ବାଲ୍ୟଶିକ୍ଷା କ୍ଷେତ୍ରରେ ସେ ବହୁତ କାମ କରିସାରିଲେଣି । ଏହି କ୍ଷେତ୍ରରେ ଓଡ଼ିଶା ଏବଂ ଓଡ଼ିଶା ବାହାରେ ସେ ଜଣେ ବିଶେଷଜ୍ଞ ହିସାବରେ କାମ କରିବେ ବୋଲି ମୋର ଆନ୍ତରିକ ଇଚ୍ଛା । ଏହି କ୍ଷେତ୍ରରେ ଆମ ବିଭାଗର ଖ୍ୟାତି ରହିଛି । ସେଥିପାଇଁ ମଧ କାନାଡ଼ାରେ ତାଲିମ୍‌ପ୍ରାପ୍ତ ଡକ୍ଟର ଦାସଙ୍କ ସ୍ତ୍ରୀ ଡକ୍ଟର ଜ୍ୟୋତ୍ସ୍ନା ଦାସ ଏବଂ ଇଂଲଣ୍ଡ ଓ ସୁଇଡେନରେ ଏ କ୍ଷେତ୍ରରେ ଅଭିଜ୍ଞତା ହାସଲ କରିଥିବା ବିଭାଗର ଲେକ୍‌ଚରର ଶ୍ରୀମତୀ ନିର୍ଲିପ୍ତା ପଟ୍ଟନାୟକ ତାଙ୍କୁ ସାହାଯ୍ୟ କରିବେ ବୋଲି ମୁଁ ଯୋଜନା କରିଥିଲି । ସେଥିପାଇଁ ବିଭାଗରେ ଗୋଟିଏ ଆଦର୍ଶ ସ୍ଥାନୀୟ ଖେଳ ମାଧ୍ୟମ ପ୍ରାକ୍-ପ୍ରାଥମିକ ବିଦ୍ୟାଳୟ ଆରମ୍ଭ କରିଥିଲି । ଏହି ବିଦ୍ୟାଳୟରେ ଛୋଟ ପିଲାଙ୍କର ଶିକ୍ଷଣଗତ ଗବେଷଣା ଯୋଜନା ଏବଂ ଓଡ଼ିଶାର ଏପ୍ରକାର ସ୍କୁଲ ଶିକ୍ଷିକାମାନଙ୍କୁ ବିଶେଷ ତାଲିମ୍ ଦେବାର କାର୍ଯକ୍ରମ ଥିଲା ।

ଗତ ଅଠରବର୍ଷ ଧରି ମୁଁ ଲକ୍ଷ୍ୟ କରୁଛି ଯେ ଏହି ଆଦର୍ଶ ସ୍ଥାନୀୟ ଖେଳ ମାଧ୍ୟମ ସ୍କୁଲଟି ଗୋଟିଏ ସାଧାରଣ ନର୍ସରୀ ସ୍କୁଲରେ ପରିଣତ ହୋଇଗଲା । ଡକ୍ଟର ଶ୍ରୀକାନ୍ତ ଦାସ ଏବଂ ଡକ୍ଟର ନିର୍ଲିପ୍ତା ପଟ୍ଟନାୟକ ଏଥିରେ କୌଣସି ଆଗ୍ରହ ଦେଖାଇଲେ ନାହିଁ । କ୍ରମେ ମୋର ମାନସପୁତ୍ର ଶ୍ରୀକାନ୍ତ ଦାସ ମୋ ବିରୁଦ୍ଧରେ ମଧ ଲାଗିପଡ଼ିଲେ । ଅବଶ୍ୟ ମୋ ବିରୁଦ୍ଧରେ ଲାଗିପଡ଼ିଲେ ଯେ ମୋର କୌଣସି କ୍ଷତିସାଧନ କରିପାରିବେ ତାହା ନୁହେଁ । ତାହା କେବଳ ତାଙ୍କୁ ଏ ଦିଗରେ ସନ୍ତୋଷ ଦେଉଥିବ । ଏପରି ଘଟଣା ସବୁ ମୋ ଜୀବନରେ କୌତୂହଳ ହିଁ ସୃଷ୍ଟି କରିଚାଲିଛି ।

ଆଉ ଗୋଟିଏ ମଜାକଥା ଏ ସଂପର୍କରେ ଶୁଣାଯାଏ, ଓଡ଼ିଶା ଆୟୋଗ କମିଶନର ପ୍ରାର୍ଥୀ ସାକ୍ଷାତକାର ବେଳେ କେତେକ ମନୋବିଜ୍ଞାନୀ ଛାତ୍ରଛାତ୍ରୀ ଓଡ଼ିଶାର ମନୋବିଜ୍ଞାନ ବିଭାଗର ପ୍ରତିଷ୍ଠାତାଙ୍କ ନାମ ପଚାରିଲେ ଅନ୍ୟ କେତେକ ବିଭାଗୀୟ ମୁଖ୍ୟଙ୍କ ନାମ କହନ୍ତି । ଏହା ମୋତେ କମିଶନ ସଭ୍ୟ କହିଛନ୍ତି । ଅର୍ଥାତ୍ ମୁଁ ଯେ ରେଭେନ୍ସା କଲେଜ ଓ ବାଣୀବିହାରର ବିଭାଗର ପ୍ରତିଷ୍ଠାତା ତାହା ମୋ ଜୀବନକାଳ ଭିତରେ ଓଡ଼ିଶାର ମନୋବିଜ୍ଞାନ ଛାତ୍ରଛାତ୍ରୀ ଜାଣିନାହାନ୍ତି । ସେମାନଙ୍କ ସହିତ ଦେଖାଦେଲେ ମୋତେ ସେମାନେ ଚିହ୍ନିପାରନ୍ତି ନାହିଁ କାରଣ ବାଣୀବିହାର ମନସ୍ତତ୍ତ୍ୱ ବିଭାଗରେ ମୋର ଗୋଟିଏ ହେଲେ ଫଟୋଚିତ୍ର ମଧ ନାହିଁ । ମୋ କଥା ସେମାନଙ୍କୁ କହିବା ତ ଏମାନଙ୍କର ନୀତି ବିରୁଦ୍ଧ । ଏସବୁ କଥା ଭାବିଲେ ମୋତେ ଦୁଃଖ

ଲାଗିବା ପରିବର୍ତ୍ତେ ମଜା ଲାଗେ । ତୁମ ଜୀବନଶିଖା ଭିତରେ ତୁମର କୃତିତ୍ୱ ସଂପୂର୍ଣ୍ଣ ରୂପେ ଲିଭିଯିବା ମୋ ପାଇଁ ଗୋଟିଏ ଦାର୍ଶନିକ ଉପଲବ୍ଧ ହିସାବରେ ପରିଗଣିତ ହୋଇଯାଇଛି । ଏଥିପାଇଁ ବିଭାଗର ବହୁ ବ୍ୟକ୍ତି ମୋର ଗୋଟିଏ ଫଟୋଚିତ୍ର ବିଭାଗର ନ ଥିବା ଘଟଣାରେ ବ୍ୟକ୍ତିଗତ ଦୁଃଖ ପ୍ରକାଶ କରନ୍ତି ତଥାପି ତାହା ସଂଭବ ହୋଇପାରେନାହିଁ । ଓଡ଼ିଆମାନଙ୍କର ଏପରି ଆନ୍ତରିକତାହୀନ କଥା ନିଶ୍ଚିତ ଭାବରେ ମୋ ପକ୍ଷରେ କୌତୂହଳର ବିଷୟବସ୍ତୁ ହୋଇରହିଯାଇଛି । ମନସ୍ତତ୍ତ୍ୱ ଛାତ୍ରଛାତ୍ରୀଙ୍କ ସହିତ ଦେଖାହେଲେ ଏବଂ କେହି ମୋର ପରିଚୟ ଦେଲେ ସେମାନଙ୍କର ବିସ୍ମୟକର ମୁଖ୍ୟଭଂଗୀ ଦେଖିଲେ ମୋର ପ୍ରେତାତ୍ମା ସେମାନଙ୍କ ଆଗରେ ଠିଆ ହୋଇଥିବା ପରି ମୋର ମନେହୁଏ ।

ଓଡ଼ିଆ ମାନଙ୍କର ଈର୍ଷାପ୍ରବଣ ସଂକୁଚିତ ମନୋଭାବ ଯେ ଓଡ଼ିଶାର ଅବନତିର ମୂଳ କାରଣ ଏଥିରେ ସଂଦେହର ଅବକାଶ ନାହିଁ ।

ବିଭାଗ ସହିତ ବହୁବର୍ଷ ଆସକ୍ତିର ଅବସାନ ହେଲା ପରେ ମୋତେ ଏତେ ଆନନ୍ଦ ଲାଗୁଛି ଯେ ମୁଁ ଭାବି ପାରୁନାହିଁ ଲୋକେ ଅବସର ନେଲାପରେ କାହିଁକି ଭାଙ୍ଗି ପଡ଼ନ୍ତି । ଅବସର ନେବା ଜୀବନରେ ଏକ ଭୟାନକ ଦୁର୍ବିପାକ ବୋଲି ଭାବନ୍ତି । ପାଞ୍ଚବର୍ଷ ବୟସରୁ ପ୍ରତିଦିନ ୧୦ଟା ବେଳେ ତୁମକୁ ଘରୁ ବାହାରି ଯିବାକୁ ବାଧ୍ୟ– ସ୍କୁଲ, କଲେଜ, ଚାକିରି ଇତ୍ୟାଦି ବିଷୟ ନେଇ ସାରାଜୀବନ ୧୦ଟାରେ ଘରୁ ବାହରିବା କଥା । ଅବସର ନେଲା ପରଦିନ ପ୍ରଥମେ ଏହି ବନ୍ଧନରୁ ମୁଁ ମୁକ୍ତ ହେଲି । ସେହିଦିନଠାରୁ ମୋତେ ଦିନ ୧୦ଟାରେ ବାଧ୍ୟବାଧକତାରେ ଆଉ କୁଆଡ଼େ ଯିବାକୁ ପଡ଼ିବନାହିଁ । ଏପରି ବନ୍ଧନର ମୁକ୍ତିରେ କି ଆନନ୍ଦ, କି ସ୍ୱାଧୀନତା ରହିଛି ତାହା ମୁଁ ଅବସର ପରେ ଉପଲବ୍ଧି କଲି ଯଦିଚ ସାରାଜୀବନ ମୁଁ ଯେଉଁ କାମ କରିଛି ତାକୁ ଆନନ୍ଦର ସହିତ କରିଛି ଏବଂ ଅପ୍ରୀତିକର ଜଞ୍ଜାଳ ବୋଲି କୌଣସି କଥାକୁ ଭାବିନାହିଁ । ଯେତେ କଷ୍ଟସାଧ୍ୟ କାମ ହେଲେ ମଧ୍ୟ ତା ସହିତ ମୁହାଁମୁହିଁ ହେବାରେ ଆନନ୍ଦ ପାଇଛି । ସବୁପ୍ରକାର ଆହ୍ୱାନର ସମ୍ମୁଖୀନ ହେବାରେ ସାର୍ଥକତା ଅନୁଭବ କରିଛି । ତଥାପି ନିର୍ଦ୍ଦିଷ୍ଟ ସମୟାନୁବଦ୍ଧ କାର୍ଯ୍ୟକ୍ରମ ବନ୍ଧନରୁ ମୁକ୍ତି ପାଇଲା ପରେ ମୁଁ ଭାରତୀୟ ଐତିହ୍ୟର ମୁକ୍ତ ଓ ଅନାସକ୍ତ ବାନପ୍ରସ୍ଥ ଜୀବନର ସ୍ୱାଦ ଅନୁଭବ କରିପାରିଛି । ମୋ ବାରଣ୍ଡାରେ ବସି ସୂର୍ଯ୍ୟ, ଚନ୍ଦ୍ର, ସଂଧ୍ୟା ତାରାର ଉଦୟ-ଅସ୍ତ, ମୋ ହାତରେ ବଢ଼ି ଉଠିଥିବା ଆମ୍ବ, ନଡ଼ିଆଗଛର ପତ୍ର, ଫୁଲ ଆଡ଼େ ଘଣ୍ଟା ଘଣ୍ଟା ଧରି ଚାହିଁ ବସିବାରେ କି ଆତ୍ମିକ ଶାନ୍ତି ତାହା ବର୍ତ୍ତମାନ ମୁଁ ହୃଦୟଙ୍ଗମ କରିପାରୁଛି । ନାତି ନାତୁଣୀମାନଙ୍କ କୋଳାହଳ ଭିତରେ ନିଜକୁ ସତ୍ତାହୀନ କରିଦେବାରେ ଗଭୀର ତୃପ୍ତି । ଝିଅ, ପୁଅ, ବୋହୂମାନଙ୍କର ଆଦର ସମ୍ଭାଷଣ ଓ ପରିଚର୍ଯ୍ୟାରେ ଯେଉଁ ମାନସିକ ସନ୍ତୋଷ ତାହା ବାହାରର ନାନା କର୍ମ ଜଞ୍ଜାଳ ଭିତରେ ସମ୍ଭବ ନଥିଲା । ଏହିପରି ନିଜ ଲୋକଙ୍କର କୋଳାହଳ ଭିତରେ ଶାନ୍ତ ଜୀବନଯାପନ ଜୀବନର ଗୋଟିଏ ନୂତନ ମଧୁମୟ ଅଧ୍ୟାୟ ସୃଷ୍ଟି କରୁଛି ।

■■■

# ୨୨

# ପ୍ରାଥମିକ ଶିକ୍ଷା-ବିକାଶ ଆନ୍ଦୋଳନ

୧୯୬୨ ମସିହାଠାରୁ ପ୍ରାଥମିକ ଶିକ୍ଷା ବିଷୟରେ ମୁଁ ଦଶ ବାରବର୍ଷ ଯାଏ ସଂପୃକ୍ତ ଥିଲି । ଏ ସମ୍ପର୍କ କେବଳ ସରକାରୀ ସ୍ତରରେ ସୀମିତ ଥିଲା । ପ୍ରାଥମିକ ସ୍ତରରେ କେବଳ ଭଲ ବହି ପ୍ରସ୍ତୁତ କରିବା ଛଡ଼ା ଅନ୍ୟ କୌଣସି ଦିଗରେ ଉନ୍ନତିକର କାର୍ଯ୍ୟ ସମ୍ପାଦନା କରିବା ଅସମ୍ଭବ ମନେହେଲା । ଅମଲାତାନ୍ତ୍ରିକ ଅଫିସର ଓ ମନ୍ତ୍ରୀମାନେ ପ୍ରାଥମିକ ଶିକ୍ଷାର ପ୍ରସାର ଓ ଏହାର ଉତ୍କର୍ଷତା ବିଷୟରେ ସମ୍ପୂର୍ଣ୍ଣ ରୂପେ ଉଦାସୀନ ବୋଲି ମୋର ଧାରଣା ଦୃଢ଼ୀଭୂତ ହୋଇଥିଲା । ସାର୍ବଜନୀନ ଶିକ୍ଷା ପ୍ରବର୍ତ୍ତନ କରିବା ଏମାନଙ୍କର ମୂଳ ଉଦ୍ଦେଶ୍ୟ ନୁହେଁ ବୋଲି ମୁଁ ଅନୁଭବ କଲି । ଶିକ୍ଷା କ୍ଷେତ୍ରରେ ବିଶେଷତଃ ପ୍ରାଥମିକ ଶିକ୍ଷା ପାଇଁ ସବୁବେଳେ ଅର୍ଥର ସ୍ୱଳ୍ପତା ଆଳ ଦେଖାଇବା ଏମାନଙ୍କର ଗୋଟିଏ ଅଭ୍ୟାସ ହୋଇଗଲାଣି । ଅନ୍ୟ କ୍ଷେତ୍ରରେ କୋଟି କୋଟି ଟଙ୍କା ବିନିର୍ବ୍ୟୟ ହେଉଥିବାବେଳେ-ଏସିୟାର୍ଡ଼ ଖେଳପାଇଁ ହଜାର ହଜାର କୋଟି ଟଙ୍କା- କଟକରେ ଶୀତତାପ ନିୟନ୍ତ୍ରିତ ଷ୍ଟାଡିୟମ୍ ତିଆରି ପାଇଁ ଅଯଥା ଖର୍ଚ୍ଚ-ଖର୍ଚ୍ଚ ବହୁଳ ପଞ୍ଚତାରକା ହୋଟେଲ ତିଆରି- ପ୍ରଭୃତି କ୍ଷେତ୍ରରେ କୋଟି କୋଟି ଟଙ୍କା ଖର୍ଚ୍ଚ ନ ହୋଇ ଫେରିଯାଉଥିବା ବେଳେ ପ୍ରାଥମିକ ଶିକ୍ଷା ପାଇଁ ଅର୍ଥର ଅଭାବଯୁକ୍ତି ଗୋଟିଏ ଚରମ ରାଜନୈତିକ ଭଣ୍ଡାମି ବୋଲି ମୋର ମନେହୁଏ ।

ମୋ ବିଭାଗରେ ଶିକ୍ଷଣ ମନୋବିଜ୍ଞାନ ଶାଖା ତରଫରୁ ଆଦିବାସୀ ହରିଜନ ଓ ଗ୍ରାମୀଣ ଅସୁବିଧାଗ୍ରସ୍ତ ପିଲାମାନଙ୍କ ବିଷୟରେ ଶିକ୍ଷଣ ମନୋବିଜ୍ଞାନଗତ ଗବେଷଣା ଭାରତ ଓ ବିଦେଶରେ ପ୍ରଶଂସିତ ହେଉଥିଲା । ମୁଁ ବହୁତ ଆଗ୍ରହର ସହିତ ଏହି ବିଭାଗଟିକୁ ଗଢ଼ିଥିଲି । ଏ ସମ୍ପର୍କରେ ଅନେକ ସ୍କୁଲ ମୁଁ ଦେଖିବାକୁଯାଏ । ସମାଜର ଅଭାବଗ୍ରସ୍ତ ପିଲାମାନଙ୍କର ଫଳପ୍ରଦ ଶିକ୍ଷାପାଇଁ କି ପ୍ରକାର ପନ୍ଥା ଅବଲମ୍ବନ କରାଯିବ ସେ ବିଷୟରେ ଗବେଷଣା ପର୍ଯ୍ୟବସିତ ବହୁ ତଥ୍ୟ ଆମେମାନେ ପ୍ରକାଶ କଲୁ ଏବଂ ସରକାରଙ୍କୁ ମଧ ଜଣାଇଲୁ । କିନ୍ତୁ ସରକାରୀ ସ୍ତରରେ ଆମର ଏ ରିପୋର୍ଟ କେହି ପଢ଼ିଥିଲାପରି ମନେହୁଏନାହିଁ । ଓଡ଼ିଶା ସରକାର ପ୍ରାକ୍-ପ୍ରାଥମିକ ଓ ପ୍ରାଥମିକ ସ୍ତରରେ ସମାଜର ଅନଗ୍ରସର ପିଲାଙ୍କ ଶିକ୍ଷା ଲାଗି ଇଂଲଣ୍ଡ, ଆମେରିକାର ବିଶେଷଜ୍ଞମାନଙ୍କୁ ନିମନ୍ତ୍ରଣ କରନ୍ତି

କିନ୍ତୁ ମୋତେ କିମ୍ବା ଆମ ବିଭାଗର ଲୋକଙ୍କୁ ନୁହେଁ । ଏହି ବିଶେଷଜ୍ଞମାନେ ସରକାରୀ ସ୍ତରରେ ଆଲୋଚନା କଲାପରେ ମୋତେ ଆସି ଦେଖା କରନ୍ତି । କାରଣ ଏ କ୍ଷେତ୍ରରେ ଆମର ମୌଳିକ ଗବେଷଣା ଯୋଗୁଁ ସେମାନେ ମୋତେ ଜାଣନ୍ତି । ମୋତେ ପଚାରନ୍ତି ଯେ,

''ଓଡ଼ିଶା ସରକାର ଆମକୁ ନିମନ୍ତ୍ରଣ କରି ପରାମର୍ଶ ନେଉଛନ୍ତି ଅଥଚ ଆପଣଙ୍କୁ ଏ ବିଷୟରେ କିଛି ପଚରା ଯାଉନାହିଁ କାହିଁକି ?''

ମୁଁ କହେ ଯେ ''ସରକାର କେବଳ ଲୋକ ଦେଖାଣିଆ କାମପାଇଁ ସେମାନଙ୍କୁ ଡାକନ୍ତି । ଆମକୁ ଡାକିଲେ ସେମାନଙ୍କୁ ବାସ୍ତବ କ୍ଷେତ୍ରରେ କାମ କରିବାକୁ ପଡ଼ିବ ଏବଂ ଆମେ ସେ କଥା ଜାଣିପାରିବୁ ।''

ଏହା ଆମ ପକ୍ଷରେ ଗୋଟିଏ ଦୁଃଖଦାୟକ ତଥା କୌତୂହଳର ଘଟଣା । ଓଡ଼ିଶାର ଶିକ୍ଷା ବିଭାଗ ଶିକ୍ଷାର ପ୍ରକୃତ ସମସ୍ୟାର ସମାଧାନ ଲାଗି ଅନାଗ୍ରହୀ ଓ ଉଦାସୀନ ବୋଲି ମୋର ଧାରଣା ଦୃଢ଼ ହେଲା ।

କଟକ, ଭୁବନେଶ୍ୱର ଓ ଭାରତ ଅନ୍ୟାନ୍ୟ ସହରମାନଙ୍କରେ ବହୁ ପ୍ରାକ୍ ପ୍ରାଥମିକ ସ୍କୁଲ ଖୋଲାଯାଉଛି । ବହୁତ ଦରମା ପିଲାଙ୍କଠାରୁ ନିଆଯାଏ । ଅଥଚ ସେମାନଙ୍କୁ ଅଣ-ମନୋବୈଜ୍ଞାନ ପଦ୍ଧତିରେ କେବଳ ପାଠବହି ଯୋଗାଇ ଦିଆଯାଏ । ତିନିଚାରିବର୍ଷ ପିଲାଙ୍କୁ ନିର୍ଘାତ ଭାବରେ ବଡ଼ପିଲା ପରି ପାଠ ପଢ଼ାଯାଏ ଏବଂ ସେମାନଙ୍କୁ ଘର ପଢ଼ା ମଧ୍ୟ ଦିଆଯାଏ । ଏହା ଭୟଙ୍କର ଭାବରେ ଅବୈଜ୍ଞାନିକ ଏବଂ ଏହା ଫଳରେ ପିଲାଙ୍କଠାରେ ପାଠପଢ଼ା ପ୍ରତି ଅନାଗ୍ରହ ଓ ଅଶ୍ରଦ୍ଧା ଜନ୍ମିଯାଏ । ଏହି ବିଷମୟ ପଦ୍ଧତି ବିରୁଦ୍ଧରେ ଅଭିଯାନ ଆରମ୍ଭ କରିବାପାଇଁ ମୋ ବିଭାଗରେ ମୁଁ ଗୋଟିଏ ଆଦର୍ଶ ଖେଳ ମାଧ୍ୟମ ପ୍ରାକ୍-ପ୍ରାଥମିକ ସ୍କୁଲ ଆରମ୍ଭ କଲି । ଖେଳ, ଗପ, ହସଖୁସିର କଥାବାର୍ତ୍ତା ମାଧ୍ୟମରେ ସେମାନଙ୍କ ଭିତରେ କିପରି ବୌଦ୍ଧିକ ଦକ୍ଷତା, ପାଠ ପ୍ରତି ଗଭୀର ଆଗ୍ରହ ତଥା ସୃଜନଶୀଳତା ସୃଷ୍ଟି କରାଯାଇପାରିବ ତା'ର ପରୀକ୍ଷାମୂଳକ ତଥ୍ୟାବଳି ଲୋକଙ୍କ ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଏ ସ୍କୁଲ ଆରମ୍ଭ ହେଲା । ସ୍କୁଲର ଦୁଇବର୍ଷ ଭିତରେ ଏଥିପାଇଁ ଉପଯୁକ୍ତ ଖେଳ ମାଧ୍ୟମରେ ବୌଦ୍ଧିକ ଓ ଶିକ୍ଷାଗତ ଦକ୍ଷତା ବୃଦ୍ଧି ପାଇଁ କାର୍ଯ୍ୟକ୍ରମ ତିଆରି ହେଲା । ମୋର ଉଦ୍ଦେଶ୍ୟ ଥିଲା ଯେ ଅନ୍ୟାନ୍ୟ ପ୍ରାକ୍-ପ୍ରାଥମିକ ସ୍କୁଲର ଶିକ୍ଷକମାନଙ୍କୁ ତାଲିମ୍ ଦେବାପାଇଁ ଏହି ସ୍କୁଲକୁ ଯଥାର୍ଥ ଭାବରେ ବିନିଯୋଗ କରାଯାଇପାରିବ । କିନ୍ତୁ ମୋର ଅବସର ଗ୍ରହଣ ପରେ ଏହି ସ୍କୁଲଟି ଅନ୍ୟାନ୍ୟ ପ୍ରଚଳିତ ପ୍ରାକ୍ ପ୍ରାଥମିକ ସ୍କୁଲରେ ପରିଣତ ହୋଇଗଲା । ମୋର ସ୍ୱପ୍ନ କେବଳ ସ୍ୱପ୍ନରେ ହିଁ ରହିଗଲା ।

ସରକାରୀ ସ୍ତରରେ ପ୍ରାଥମିକ ଶିକ୍ଷାପାଇଁ ପାଠ୍ୟପୁସ୍ତକ ପ୍ରଣୟନ କ୍ଷେତ୍ରରେ ଗବେଷଣାଗତ ଜ୍ଞାନ ଓ ଆଦର୍ଶ ପ୍ରାକ୍-ପ୍ରାଥମିକ ସ୍କୁଲ ପ୍ରତିଷ୍ଠା ପ୍ରଭୃତିରେ ଅଭିଜ୍ଞତା ସହିତ ଏହାର କାର୍ଯ୍ୟକାରୀ ଦିଗରେ ବ୍ୟର୍ଥତା ଯୋଗୁ ଅବସର ଗ୍ରହଣ ପରେ ପ୍ରାଥମିକ ଶିକ୍ଷା ବିକାଶ ଆନ୍ଦୋଳନ ଆରମ୍ଭ କରିବାପାଇଁ ଆଗ୍ରହ ହେଲା । ଆମ ଦେଶର ପିଲାମାନେ ଏଭଳି ଅବହେଳିତ ଅବସ୍ଥାରେ ରହିଛନ୍ତି ଯେ ତାଙ୍କୁ ଦେଖିଲେ ଦୁଃଖ ହୁଏ । ସେମାନେ ବାପ, ମାଆ, ଶିକ୍ଷକ ଓ ଜନସାଧାରଣଙ୍କ ଦ୍ୱାରା ସଦାସର୍ବଦା ଅବହେଳିତ ତଥା ଅତ୍ୟାଚାରିତ

ହୋଇ ଚାଲିଛନ୍ତି । ଏପରି ପିଲାଙ୍କଠାରେ କିପରି ବଳିଷ୍ଠ ବ୍ୟକ୍ତିତ୍ୱ ଗଢ଼ି ଉଠିବ ସେ ବିଷୟରେ ମୋର ଗଭୀର ସନ୍ଦେହ । ପିଲାମାନଙ୍କର ଦୁଃଖ ଦେଖିଲେ ମୋ ଆଖିରେ ଲୁହ ଆସିଯାଏ । କୌଣସି ପିଲାକୁ କେହି ମାରୁଥିଲେ ମୁଁ ତାକୁ ଅଟକାଏ, ବୁଝାଏ । ମୋର ଦୃଢ଼ ବିଶ୍ୱାସ ଯେ ପିଲାକୁ ତା'ର ବାପା, ମାଆ, ଶିକ୍ଷକମାନଙ୍କର ମାଡ଼ରୁ ମୁକ୍ତ ନ କଲାଯାଏ ଏ ଦେଶର ଭବିଷ୍ୟତ ଅତ୍ୟନ୍ତ ଅନିଶ୍ଚିତ ହୋଇରହିବ । କୌଣସି ପରିସ୍ଥିତିରେ ମଧ୍ୟ ପିଲାଙ୍କୁ ନ ମାରିବା ପାଇଁ ମୁଁ ଅଭିଯାନ ଆରମ୍ଭ କଲି । ଆମ ଘରେ ଆଜିଯାଏ ଆମେମାନେ ପିଲାଙ୍କୁ ଆଦୌ ମାରିନାହୁଁ ।

ପ୍ରାଥମିକ ସ୍କୁଲର ସର୍ବାଙ୍ଗୀନ ଉନ୍ନତି, ପିଲାଙ୍କୁ ଉପଯୁକ୍ତ ଭାବରେ ସ୍ନେହ ଶ୍ରଦ୍ଧା ସହିତ ଲାଳନପାଳନ ପାଇଁ ଉପଯୁକ୍ତ ଚେତନା ଓ ଗୋଟିଏ ବଳିଷ୍ଠ ଜନଜାଗରଣ ସୃଷ୍ଟି ଏହି ଆନ୍ଦୋଳନର ମୁଖ୍ୟ ଆଭିମୁଖ୍ୟ ରହିଲା । ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ବାପ, ମା, ଶିକ୍ଷକ, ଶିକ୍ଷୟିତ୍ରୀ, ଜନସାଧାରଣ, ଡାକ୍ତର ଓ ସରକାରୀ ଅଫିସରମାନଙ୍କର ଘନିଷ୍ଠ ସହଯୋଗର ବାତାବରଣ ସୃଷ୍ଟି କରିବା ଦିଗରେ ଉପଯୁକ୍ତ ଚେତନା ଜାଗ୍ରତ କରିବା ଏହାର ପ୍ରଧାନ ଦିଗ୍‌ଦର୍ଶନ ରୂପେ ଉପସ୍ଥାପିତ କରାଗଲା । ଏ ବିଷୟରେ ପ୍ରଥମ ଅବସ୍ଥାରେ ପାଞ୍ଚହଜାର ପୁସ୍ତିକା ଛପାହେଲା । ଏହି ପୁସ୍ତିକାରେ ପ୍ରାଥମିକ ଶିକ୍ଷାପାଇଁ ସାମୂହିକ ରୂପରେଖ, ବାପା ମା, ଶିକ୍ଷକ ଶିକ୍ଷୟିତ୍ରୀ ଓ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ବିଶଦ ଆଲୋଚନା ହୋଇଛି । ଏହି ପାଞ୍ଚହଜାର ପୁସ୍ତିକା ଶେଷ ହେଲା ପରେ ପୁଣି ଥରେ ପାଞ୍ଚହଜାର ପୁସ୍ତିକା ମୁଦ୍ରିତ ହେଲା । ପିଲାଙ୍କ ପାଇଁ କୃତି ସମ୍ପାଦନା କାର୍ଡ଼ ଓ ସ୍ୱାସ୍ଥ୍ୟ ବିବରଣୀ କାର୍ଡ଼ ମଧ୍ୟ ଛାପାହୋଇ ସ୍କୁଲମାନଙ୍କୁ ଦିଆହେଲା । ସମସ୍ତେ ସ୍ୱଇଚ୍ଛାରେ ଏ ସମସ୍ତ କାମ କରିବାପାଇଁ ଅନୁରୋଧ କରାହେଲା । ସ୍କୁଲରେ ବଗିଚା କରିବା, କୁକୁଡ଼ା ଚାଷ ଓ ଅନ୍ୟାନ୍ୟ ଉତ୍ପାଦନଶୀଳ କାର୍ଯ୍ୟରେ ସେମାନଙ୍କୁ ଉତ୍ସାହିତ କରିବା ବିଷୟରେ ପରାମର୍ଶ ଦିଆହେଲା । ଏ ସମ୍ପର୍କରେ ଦୁଇବର୍ଷ ଭିତରେ ପଚିଶି ତିରିଶଥର ଶିକ୍ଷକ ଓ ଅଭିଭାବକମାନଙ୍କର ସମାରୋହରେ ମୁଁ ଯୋଗଦେଲି । ପ୍ରଥମ ଅବସ୍ଥାରେ ସମସ୍ତଙ୍କଠାରେ ଏ ବିଷୟରେ ଉତ୍ସାହ ଓ ଉଦ୍ଦୀପନା ଦେଖାଦେଇ ଥିଲା କିନ୍ତୁ କିଛି ଦିନ ପରେ ଏହା କମି କମି ଆସୁଥିବା ମୁଁ ଲକ୍ଷ୍ୟ କରିଛି । ତଥାପି ଲୋକଙ୍କଠାରେ ଜାଗରଣ ସୃଷ୍ଟି କରିବା, ବାପା, ମା, ଶିକ୍ଷକମାନଙ୍କୁ ଏ ବିଷୟରେ ବୁଝାଇବା, ପିଲାମାନେ ଭବିଷ୍ୟତରେ ଉନ୍ନତି କରିବା ପାଇଁ କ'ଣ କରାଯିବା ଉଚିତ୍ ସେ ବିଷୟରେ ଆଲୋଚନା କରିବାରେ ମୋତେ ବହୁତ ଆନନ୍ଦ ମିଳୁଥିଲା । ଏପରି କାର୍ଯ୍ୟରେ ଯୁବ ସଂପ୍ରଦାୟର ବଳିଷ୍ଠ ସହଯୋଗ ମିଳୁଥିଲା । ଯୁବ-ସଂପ୍ରଦାୟଙ୍କୁ କିଛି ପରିମାଣରେ ଉଦ୍‌ବୁଦ୍ଧ କରିପାରିଲେ ଏ ଦିଗରେ କିଛି କାମ ହୋଇପାରିବ ବୋଲି ମୋର ସଂପୂର୍ଣ୍ଣ ବିଶ୍ୱାସ ଥିଲା ।

ଏହି ଆନ୍ଦୋଳନରେ ବହୁ ବିଶିଷ୍ଟ ଲୋକ ସଂପୃକ୍ତ ହେଲେ । ଏହାର ସମ୍ପାଦକବୃନ୍ଦ ହେଲେ-ସର୍ବଶ୍ରୀ ସାମ୍ବାଦିକ ଅରୁଣପଣ୍ଡା, ଟ୍ରେଡ୍ ୟୁନିୟନ ନେତା ବାସୁଦେବ ସାମଲ, ଯୁବନେତା ଓ ଆଡ଼ଭୋକେଟ୍ ମନୋରଞ୍ଜନ ପଟ୍ଟନାୟକ, ସେକେଣ୍ଡାରୀ ବୋର୍ଡ଼ର ପ୍ରବୀଣ ଶିକ୍ଷକ ବିଷ୍ଣୁଚରଣ ଜେନା ଓ ନାରୀନେତ୍ରୀ ଶ୍ରୀମତୀ ସୁଦୀପ୍ତା ଦାସ । ଏଥିପାଇଁ ଗୋଟିଏ ଚିକିତ୍ସା ପରାମର୍ଶଦାତା ପରିଷଦ ଡକ୍ଟର ବିଭୂତିଭୂଷଣ ତ୍ରିପାଠୀଙ୍କ ସଭାପତିତ୍ୱରେ ଗଠିତ

ହେଲା । ଏଥିରେ ୫୦ ଜଣ ଯାଏ ବିଶିଷ୍ଟ ଡାକ୍ତର ସଭ୍ୟ ରହିଥିଲେ । ଏମାନଙ୍କ ଦ୍ୱାରା ପିଲାଙ୍କ ପାଇଁ ସ୍ୱାସ୍ଥ୍ୟ କାର୍ଡ଼ ତିଆରି ହେଲା ।

କଟକରେ କେତେକ ପ୍ରାଥମିକ ସ୍କୁଲରେ ଏହି କାର୍ଯ୍ୟ ଆରମ୍ଭ ହେଲା । ମୋ ଘରର ନିକଟତମ ସ୍କୁଲ ଗହ୍ମାଡ଼ିଆଁ ଉଚ୍ଚ ପ୍ରାଥମିକ ସ୍କୁଲରେ ଗୋଟିଏ ଭଲ ପୁସ୍ତକାଳୟ, କୃତି ସମ୍ପାଦନା କାର୍ଡ଼ ପ୍ରଭୃତି ଯେପରି ଭାବରେ ରହିବା କଥା ସେହିପରି ରଖାହେଲା । ଏହାର ପ୍ରଧାନ ଶିକ୍ଷିକା ଶ୍ରୀମତୀ ସବିତା ପାଢ଼ୀ ଏବଂ ତାଙ୍କର ସହଯୋଗୀ ଛଅଜଣ ଶିକ୍ଷିକାଙ୍କର ଆନ୍ତରିକ ସାହାଯ୍ୟ ଓ ସହଯୋଗ ଯୋଗୁଁ ଏହି ଆନ୍ଦୋଳନର ବହୁ କାର୍ଯ୍ୟକ୍ରମ ଏଠାରେ କାର୍ଯ୍ୟକାରୀ ହୋଇପାରିଥିଲା । କେତେକ ଗ୍ରାମାଞ୍ଚଳ ସ୍କୁଲରେ ମଧ୍ୟ ଏ ପ୍ରକାର ବ୍ୟବସ୍ଥା ହେଲା ।

ଅବସର ପରେ ଏ ପ୍ରକାର ସାମାଜିକ କାମ, ବିଶେଷତଃ ପିଲାଙ୍କ ପାଇଁ କିଛି କାମ କରିବାରେ ମୋ ଜୀବନର ପରମ ସାର୍ଥକତା ବୋଲି ମୁଁ ଉପଲବ୍ଧ କରିପାରୁଥିଲି । ଅବସର ପରେ କେତେକ ବିଶ୍ୱବିଦ୍ୟାଳୟରୁ ମୋତେ ନିମନ୍ତ୍ରଣ ମିଳିଥିଲା ସେଠାରେ ଅତିଥି ଅଧ୍ୟାପକ ଭାବରେ କେତେମାସ କଟାଇବା ଲାଗି । ମାସକୁ ତିନିହଜାର ଟଙ୍କା ଦେବେ ଏବଂ ସେମାନଙ୍କ ଅତିଥି ଭବନରେ ରହିବାର ସୁବିଧା କରିଦେବେ । ସପ୍ତାହକୁ ଦୁଇଟି ବକ୍ତୃତା ଦେବାକୁ ପଡ଼ିବ । ମୋତେ କାହିଁକି ଏହା ବଡ଼ ନିଷ୍ଫଳ ମନେହେଲା । ତିନିହଜାର ଟଙ୍କା ରୋଜଗାର ପାଇଁ ଏକୁଟିଆ ଯାଇ ସେଠାରେ ରହିବା ବଡ଼ ବିରକ୍ତିକର ବୋଲି ମନେହେଲା । ସେ ସବୁ ନିମନ୍ତ୍ରଣ ପ୍ରତ୍ୟାଖ୍ୟାନ କଲି । ମୁଁ ଇଚ୍ଛା କରିଥିଲେ ଆମେରିକାରେ ବା କାନାଡ଼ାରେ କିଛିବର୍ଷ ଅଧ୍ୟାପକ ଭାବେ କାର୍ଯ୍ୟକରି ପାରିଥାନ୍ତି । କିନ୍ତୁ ୩୭ ବର୍ଷ କାର୍ଯ୍ୟ କରି ପୁଣି ସେପରି କାମରେ ମୃତ୍ୟୁ ପର୍ଯ୍ୟନ୍ତ ସଂପୃକ୍ତ ହେବା ମୋତେ କାହିଁକି ନିରର୍ଥକ ମନେହେଲା । ଜୀବନର ପ୍ରତ୍ୟେକ କାର୍ଯ୍ୟପାଇଁ ଗୋଟିଏ ସମୟସୀମା ରହିବା ଦରକାର । ଚାକିରି ଜୀବନରେ ବହୁବର୍ଷ ଧରି କାମ କଲାପରେ ତାର କେଉଁଠି ଶେଷ ହେବା ଦରକାର, ଅବସର ନେବା ହେଉଛି ଏହାର ଶେଷ ପର୍ଯ୍ୟାୟରେ ଉପନୀତ ହେବା । ତା'ପରେ ଯାହା ଆନନ୍ଦଦାୟକ ସେହିପରି କିଛି ଉପଭୋଗ୍ୟ କାମ କରିବା ଉଚିତ । ଏଥିରେ ବଞ୍ଚିବାର ସାର୍ଥକତା ରହିବ, ବିଭିନ୍ନ ଅଭିଳାଷର ଗଭୀର ଅନୁଭୂତି ଉପଲବ୍ଧ କରିହେବ । ଜୀବନ ଗ୍ରନ୍ଥର ଆଉ ଗୋଟିଏ ଅଭିନବ ପରିଚ୍ଛେଦ ଆରମ୍ଭ କରିହେବ । ତା'ଛଡ଼ା ଭାରତୀୟ ତଥା ଓଡ଼ିଶା ସମାଜ ମୋତେ ବହୁତ ଦେଇଛି । ଏହି ସମାଜ ଯୋଗୁ ହିଁ ମୁଁ ଆଜି ଜୀବନର ଏକ ସାର୍ଥକ ମାଇଲ ଖୁଣ୍ଟି ପାଖରେ ଆସି ପହଞ୍ଚିଛି । ତାର ପ୍ରତିଦାନରେ ତ ମୋର କିଛି ଦେବା ଉଚିତ । ଏହି ଜୀବନ ଦର୍ଶନରେ ଅନୁପ୍ରାଣୀତ ହୋଇ ପ୍ରାଥମିକ ଶିକ୍ଷା ବିକାଶ ଆନ୍ଦୋଳନ ଆରମ୍ଭ କରିଥିଲି । ଏପ୍ରକାର ଆତ୍ମିକ ସ୍ୱପ୍ନରେ ବିଭୋର ହୋଇ ରହିବାରେ ବଞ୍ଚିବାର ମାଦକତା ରହିଛି ବୋଲି ମୋର ବିଶ୍ୱାସ । ସମାଜ ଏବଂ ବ୍ୟକ୍ତି ବିଶେଷର ସାମାନ୍ୟତମ ବୌଦ୍ଧିକ ଓ ଚେତନାଗତ ପରିବର୍ତ୍ତନ ହେଲେ ମଧ୍ୟ ଯଥେଷ୍ଟ ବୋଲି ଭାବି ମୁଁ ଏଥିରେ ଅଗ୍ରସର ହୋଇଛି । ଅନେକ ଲୋକ ମୋ ସହିତ ଏହି ଆନ୍ଦୋଳନରେ ଯୋଗ ଦେଇଛନ୍ତି, ସେମାନଙ୍କ ଭିତରୁ କେତେକ କିଛିଦିନ ପରେ ପୁଣି ଅପସରି ଯାଉଛନ୍ତି ଏବଂ ଅନ୍ୟଲୋକ ଆସି ପହଞ୍ଚୁଛନ୍ତି । ଉଦ୍ଦେଶ୍ୟ ମହତ୍ ଥିବାଯାଏ ଏପରି ଲୋକ ଆସିବେ ଏବଂ ଯିବେ । ଯିବା ଲୋକଙ୍କ ପାଇଁ ଦୁଃଖ କରିବା

ଉଚିତ ନୁହେଁ କି ସେମାନଙ୍କ ଲାଗି ପଛକୁ ଫେରି ଚାହିଁବା ମଧ୍ୟ ଅନୁଚିତ । ଏହା ଏ ଦୁନିଆର ମନୁଷ୍ୟ ଜୀବନର କାର୍ଯ୍ୟକାରୀ ରୀତି ।

ପ୍ରାଥମିକ ଶିକ୍ଷା ବିକାଶ ଆନ୍ଦୋଳନ ଏହିପରି ମହାସମାରୋହରେ କିଛିବର୍ଷ ଚାଲିଲା । ବିଭିନ୍ନ ଅଂଚଳରେ ଏଥିପାଇଁ ଶିକ୍ଷକମାନଙ୍କ ତରଫରୁ ସଂଗଠନ ଆରମ୍ଭ ହେଲା । ଗୋଟିଏ ଗୋଟିଏ ସମାରୋହରେ ବହୁ ସ୍କୁଲର ଶିକ୍ଷକମାନେ ଏଥିରେ ଯୋଗ ଦେବାପାଇଁ ପ୍ରତିଶ୍ରୁତିବଦ୍ଧ ହେଲେ । ଗାଁ' ମାନଙ୍କରେ ଏଥିପାଇଁ ଶିକ୍ଷକ ଅଭିଭାବକମାନଙ୍କୁ ନେଇ କମିଟିମାନ ତିଆରି ହେଲା । କିନ୍ତୁ ଯେତେବେଳେ ଏହା ଲୋକପ୍ରିୟ ଆନ୍ଦୋଳନରେ ପରିଣତ ହେବାକୁ ବସିଲା ସେତେବେଳେ ଏହା ବିରୁଦ୍ଧରେ ଅଭିଯାନ ଆରମ୍ଭ ହେଲା । ଗ୍ରାମ କମିଟିମାନ ବସିଲା ଶିକ୍ଷକ ମାନଙ୍କ ସହିତ ସହଯୋଗ କରିବା ପାଇଁ । ଏଥିରେ ଅନେକ ଶିକ୍ଷକ ଭୟଭୀତ ହୋଇପଡ଼ିଲେ କାରଣ ତାଙ୍କର କାମର ସମୀକ୍ଷା ଏମାନଙ୍କ ଦ୍ୱାରା ହେବ । ଏହି ଶିକ୍ଷକମାନେ ବିଭିନ୍ନ ଶିକ୍ଷକ ସଂଗଠନ ମାଧ୍ୟମରେ ଏହାର ବିରୁଦ୍ଧାଚରଣ କଲେ । ଯେଉଁ ଶିକ୍ଷକମାନେ ଏହି କାର୍ଯ୍ୟକ୍ରମର ଅଂଶୀଦାର ହୋଇଥିଲେ ସେମାନଙ୍କୁ ଏଥିରେ ଯୋଗ ନ ଦେବା ପାଇଁ ନାନାପ୍ରକାରର ଧମକ ଚମକ ଦେଲେ । ସରକାରୀ ପରିଦର୍ଶକମାନେ ଏ ଦିଗରେ ଏମାନଙ୍କ ସହିତ ମିଶିଗଲେ । ଅର୍ଥାତ୍ ଶିକ୍ଷକ ସଂଘ ତଥା ଅଧିକାରୀ କର୍ତ୍ତାଙ୍କର ପ୍ରଚଣ୍ଡ ବିରୋଧ ଯୋଗୁ ଅନ୍ୟ ଶିକ୍ଷକମାନେ ଦବିଗଲେ । ଏ ବିଷୟରେ ସେମାନେ ଆସି ମୋ ଆଗରେ ଦୁଃଖ ଜଣାଇଲେ କିନ୍ତୁ ଏ ବିଷୟରେ ମୋର କିଛି କରିବାର ନଥିଲା । ଶିକ୍ଷକ ସଂଘ ଓ ସରକାରୀ କଳ ବିରୁଦ୍ଧରେ କାମ କରିବା ମୋ ପକ୍ଷରେ ସଂଭବ ନଥିଲା । ଯେଉଁମାନଙ୍କୁ ନେଇ କାମ ହେଉଥିଲା ସେମାନେ ଯେତେବେଳେ ଭୀତତ୍ରସ୍ତ, ମୋର ଉପାୟ କଣ ? କଟକ ମ୍ୟୁନିସିପାଲିଟି କଟକର ସବୁ ସ୍କୁଲରେ ଏହାର ପ୍ରଚଳନ ପାଇଁ କାମ ଆରମ୍ଭ କରିଥିଲେ । କିନ୍ତୁ କେଜାଣି କାହିଁକି ସବୁ ବନ୍ଦ ହୋଇଗଲା ।

ଏହି ଗୋଟିଏ ଘଟଣାରୁ ମୋର ବଦ୍ଧମୂଳ ଧାରଣା ହେଲା ଯେ, ସରକାର ପ୍ରାଥମିକ ଶିକ୍ଷାକୁ ପ୍ରସାରିତ କରିବା ପାଇଁ ଚାହାନ୍ତି ନାହିଁ ଏବଂ ଶିକ୍ଷକ ସଂଘମାନେ କେବଳ ଶିକ୍ଷକ ଦରମା ବୃଦ୍ଧି ଓ ଅନ୍ୟାନ୍ୟ ସୁବିଧା ପାଇଁ ହିଁ ସଂଗଠିତ ହୋଇଛନ୍ତି-ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ଏମାନେ ଚାହାଁନ୍ତି ନାହିଁ କାରଣ ସେଥିପାଇଁ ସେମାନଙ୍କୁ ବହୁତ ପରିଶ୍ରମ କରିବାକୁ ପଡ଼ିବ । ଏମାନଙ୍କ ଭିତରେ କେତେକ ଯେ ପ୍ରକୃତରେ ଆଦର୍ଶବାଦୀ ଶିକ୍ଷକ ନାହାଁନ୍ତି ତା ନୁହେଁ । କିନ୍ତୁ ସେମାନେ ସଂଖ୍ୟାଧିକ ଶିକ୍ଷକ ଗୋଷ୍ଠୀର ଥଟ୍ଟା ତାଚ୍ଛଲ୍ୟରେ ଦବିଯିବା ସ୍ୱାଭାବିକ । ଏହା ଆନ୍ଦୋଳନର କିଛି କିଛି କାମ ବର୍ତ୍ତମାନ କେତେକ ସ୍କୁଲରେ ଚାଲିଛି ଏବଂ ସେହି ସବୁ ସ୍କୁଲକୁ ଯିବାରେ ମୋର ବହୁତ ଆନନ୍ଦ ହୁଏ ।

ମୋର ବର୍ତ୍ତମାନ ସଂପୂର୍ଣ୍ଣ ବିଶ୍ୱାସ ଯେ ଦ୍ୱିତୀୟ ସ୍ୱାଧୀନତା ଆନ୍ଦୋଳନ ଜନସାଧାରଣଙ୍କ ତରଫରୁ ନହେଲେ ନ୍ୟସ୍ତସ୍ୱାର୍ଥ ଶାସକ ଗୋଷ୍ଠୀ ଓ ଶିକ୍ଷକ ସଂଘମାନଙ୍କୁ ନିୟନ୍ତ୍ରଣ କରିବା ଅସମ୍ଭବ ।

■■■

## ୨୩

## ଜୀବନ ପଥର

## ସହଯାତ୍ରୀ

## ବନ୍ଧୁ-ଅବନ୍ଧୁମାନେ

ଲୋକ ସମ୍ପର୍କ ପ୍ରତିଷ୍ଠା ମାଧ୍ୟମରେ ବନ୍ଧୁବାନ୍ଧବ, ସାଙ୍ଗସାଥୀ ସୃଷ୍ଟି ହୁଅନ୍ତି । ଜୀବନର ସବୁ କ୍ଷେତ୍ରରେ ଏ ପ୍ରକାର ପାରସ୍ପରିକ ସଂପର୍କ ଭିତର ଦେଇ ଅନ୍ୟମାନଙ୍କୁ ଚିହ୍ନିହୁଏ । ସେମାନଙ୍କ ଭିତରୁ କେତେକ ତୁମର ଆଜୀବନ ବନ୍ଧୁ ହୋଇ ରହିଯା'ନ୍ତି, ଆଉ କେତେକ ଆସନ୍ତି କିଛି କାଳପାଇଁ, ବନ୍ଧୁତା ଜନ୍ମେ । ତା'ପରେ ନାନା କାରଣରୁ ସେମାନେ ପୁଣି ଅଦୃଶ୍ୟ ହୋଇଯାଆନ୍ତି । ତେଣୁ ବନ୍ଧୁ,ବାନ୍ଧବ, ସାଙ୍ଗସାଥୀମାନଙ୍କର ପରିସର ନିରୂପଣ ପାରସ୍ପରିକ ବ୍ୟାବହାରିକ ସଂପର୍କର ଗଭୀରତା ଓ ବ୍ୟାପକତା ଉପରେ ନିର୍ଭର କରେ । ନିଜର ଆଶା, ଆକାଂକ୍ଷା, ସୁଖ, ଦୁଃଖର ସହଯୋଗୀ ଏବଂ ସମାନୁଭୂତିକ ସ୍ୱଭାବସମ୍ପନ୍ନ ବ୍ୟକ୍ତିବିଶେଷ ମଧ୍ୟ ଏହାର ଆଉ ଗୋଟିଏ ପରିସର । ସବୁକାଳ ଓ ସବୁ ପରିସ୍ଥିତି ଭିତର ଦେଇ ଜୀବନବ୍ୟାପୀ ରହିଥିବା ବନ୍ଧୁ ବହୁତ କମ୍ ଦେଖାଯାଆନ୍ତି । ପରିବର୍ତ୍ତିତ ସମୟ ଓ ପରିସ୍ଥିତି ଅନୁଯାୟୀ ବହୁ ସାଙ୍ଗସାଥୀ ତୁମ ଦୃଷ୍ଟି ପଥରୁ ଅଦୃଶ୍ୟ ହୋଇଯିବା ସ୍ୱାଭାବିକ । ଗୋଟିଏ ପରିସ୍ଥିତିର ଜଣେ ଅନ୍ତରଙ୍ଗ ସାଥୀ ଅନ୍ୟ ସମୟରେ ତୁମକୁ ବହୁତ ଅସଂପୂର୍ଣ୍ଣ ଓ ଅସମଞ୍ଜସ ବୋଲି ଜଣାଯାଏ । ତେଣୁ ସେ ଖୁବ୍‌ଶୀଘ୍ର ତୁମର ଚଳନ୍ତି ରାସ୍ତାରୁ ଅଦୃଶ୍ୟ ହୋଇଯାଏ । ଜୀବନର ଭିନ୍ନ ଭିନ୍ନ କାଳରେ ସେମାନଙ୍କର ସ୍ମୃତି ମନରେ ଜାଗ୍ରତ ହେଲେ ସୁଦ୍ଧା ପୁନର୍ବାର ସେମାନଙ୍କ ସହିତ ବନ୍ଧୁତା ହେବା ସମ୍ଭବ ହୁଏନାହିଁ ।

ଅନ୍ତରଙ୍ଗ ବନ୍ଧୁ ଅର୍ଥ ତୁମେ ମନ ଖୋଲି ତୁମର ସମସ୍ତ କଥା ତାଙ୍କୁ କହିପାରିବ । ତାଙ୍କର ପରାମର୍ଶ ନେଇପାରିବ । ସେ ତୁମ ସହିତ ସମାନୁଭୂତିକ ଆନ୍ତରିକ ଆଚରଣ ଦେଖାଇବେ । ଏପରି ବନ୍ଧୁଙ୍କ ସଂଖ୍ୟା ମୋର ବହୁତ ସୀମିତ । କିନ୍ତୁ ଅନ୍ୟ ଦିଗରୁ ଦେଖିବାକୁ ଗଲେ ଓଡ଼ିଶାରେ ଏବଂ ଓଡ଼ିଶା ବାହାରେ ଅନେକ ଲୋକ ଅଛନ୍ତି ଯେଉଁମାନଙ୍କ ସହିତ ବିଭିନ୍ନ ପରିସ୍ଥିତିରେ ମୋର ଦେଖାହୋଇଛି- ସେମାନଙ୍କ ଭିତରୁ ଅନେକେ ମୋତେ ବହୁତ ଭଲ ପାଆନ୍ତି, ସମ୍ମାନ ଦିଅନ୍ତି, ମୋର ପ୍ରଶଂସା କରନ୍ତି, ମୋତେ ଦେଖିଲେ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ କଥା କହନ୍ତି । ଏମାନଙ୍କୁ ଦେଖିଲେ ମୋତେ ଭଲ ଲାଗିବା ସ୍ୱାଭାବିକ ।

ତେଣୁ ଏହିମାନେ ହିଁ ମୋର ପ୍ରକୃତ ବନ୍ଧୁ । ଓଡ଼ିଶାର ବହୁ ଅଂଚଳରେ ଏପରି ଲୋକଙ୍କ ସଂଖ୍ୟା ବହୁତ ଥିବାରୁ ମୋତେ ଓଡ଼ିଶା ଏତେ ଭଲ ଲାଗେ ।

ଓଡ଼ିଶାର କେତେକ ପଦସ୍ଥ ଲୋକ ମୋର କଠୋର ସ୍ପଷ୍ଟବାଦିତା ଯୋଗୁ ମୋତେ ଭଲ ପାଉନଥିଲେ ମଧ୍ୟ ବହୁ ସାଧାରଣ ଲୋକ ଓ ମୋର ଛାତ୍ର ଛାତ୍ରୀମାନଙ୍କର ଆନ୍ତରିକ ସ୍ନେହ ସଦିଚ୍ଛା ଓ ସମ୍ମାନ ମୋତେ ଜୀବନରେ ସାର୍ଥକତା ଆଣିଦେଇଛି । ମୋର ମାନସିକ ପରିବେଶ ଭିତରେ ଏମାନେ ସମସ୍ତେ ଯେପରି ପୂରି ରହିଛନ୍ତି । ବରଂ ଏମାନଙ୍କ ଭିତରୁ ଅନେକଙ୍କୁ ଘନିଷ୍ଠ ଭାବରେ ଜାଣିବାକୁ ସୁଯୋଗ ସବୁବେଳେ ନଥିବାରୁ ଏବଂ ମୋର ଅବନ୍ଧୁମାନଙ୍କର ଅବନ୍ଧୁତ୍ୱ ଆଖି ଆଗରେ ଜଳଜଳ ହୋଇ ଦେଖାଯାଉଥିବାରୁ ସାଧାରଣତଃ ଧାରଣା ହେବା କଥା ଯେ ଦୁନିଆଟା ବଡ଼ ଭୟଙ୍କର । ଅକୃତଜ୍ଞ ଲୋକେ ହିଁ ଏଠାରେ ବେଶି । କାରଣ ଅବନ୍ଧୁମାନଙ୍କର ଶତ୍ରୁତା ଶବ୍ଦକାରୀ କୋଳାହଳ ମଧ୍ୟରେ ହିଁ ସୃଷ୍ଟି ହୋଇ ପ୍ରତିପାଳିତ ହୋଇଥାଏ । ତେଣୁ ଏହା ଆମ ଆଖି ଆଗରେ ସ୍ପଷ୍ଟ ଭାବରେ ପଡ଼େ । କିନ୍ତୁ ଶୁଭେଚ୍ଛୁ ବନ୍ଧୁମାନଙ୍କର ସ୍ନେହ ନୀରବ ଓ ମୋଲାୟମ୍ । ଏହାକୁ ମୁଁ ମୋର ଗଭୀର ଚିନ୍ତନ ରାଜ୍ୟରେ ହିଁ ଅନୁଭବ କରେ । ଏପରି କେତେକଙ୍କ ସହିତ ଆକସ୍ମିକ ସାକ୍ଷାତ, ମଝିରେ ମଝିରେ ସେମାନଙ୍କଠାରୁ ଖଣ୍ଡେ ଚିଠି, ସଭାସମିତି ପରେ ସ୍ନେହ ଓ ସମ୍ମାନସୂଚକ ଅଭିବ୍ୟକ୍ତି ଭିତରେ ଏପରି ବନ୍ଧୁମାନଙ୍କର ପରିଚୟ ମିଳିଥାଏ ।

କେଜାଣି କାହିଁକି ମୋ ବୟସର କିମ୍ବା ମୋଠାରୁ ବୟସରେ ବେଶିଥିବା ସାଙ୍ଗସାଥୀଙ୍କ ସଂଖ୍ୟା ମୋର ବହୁତ କମ୍ । ଏମାନଙ୍କ ଭିତରୁ କେତେକ ଅଛନ୍ତି ଯେଉଁମାନଙ୍କ ସହିତ କିଛି ସମୟ କଥାବାର୍ତ୍ତା କଲେ ମୋ ବୟସ ଆହୁରି ୧୦ବର୍ଷ ବଢ଼ିଗଲା ପରି ମନେହୁଏ । ଏମାନଙ୍କର ସମସ୍ତଙ୍କ ପ୍ରତି ବିଶେଷତଃ ଅଳ୍ପ ବୟସ୍କ ବନ୍ଧୁବାନ୍ଧବ, ପୁଅ ବୋହୂ, ଝିଅ ଜ୍ୱାଇଁ ପ୍ରଭୃତିଙ୍କ ପ୍ରତି ତୀବ୍ର ଅଭିଯୋଗର ବିଶଦ ବିବରଣୀ ଶୁଣିଲେ ମୋ ମନ ବିଷାକ୍ତ ତଥା ବିଷର୍ଣ୍ଣ ହୋଇଉଠେ । ତେଣୁ ଏପରି ବୟସ୍କ ଲୋକଙ୍କ ସହିତ ମିଳାମିଶା ମୋତେ ସବୁବେଳେ ଭଲ ଲାଗେ ନାହିଁ । ଏମାନେ ଚିରାଚରିତ ବୁଢ଼ାବୁଢ଼ୀଙ୍କର ଅଶାନ୍ତ ଓ ଅସନ୍ତୋଷର ମନ ନେଇ ଅଧିକାଂଶ ସମୟରେ ବିଷର୍ଣ୍ଣ ଦେଖାଯାନ୍ତି । ମୋ ବୟସର ଲୋକଙ୍କୁ ମୁଣ୍ଡରେ ଟୋପି ଓ ହାତରେ ବାଡ଼ିଧରି ଧୀର ମନ୍ଥର ଗତିରେ ପାଦଗଣି ଚାଲିବାର ଦେଖିଲେ ସେମାନେ ମୋତେ ଆହୁରି ବେଶି ବୁଢ଼ା ଦେଖାଯାନ୍ତି । ସେମାନଙ୍କୁ ମୋ ବୟସର ବୋଲି ଭାବିବାକୁ ଇଚ୍ଛା ହୁଏନାହିଁ । ମୁଁ ଏପରି ଲୋକଙ୍କୁ ଦେଖିଲା ପରେ ଦର୍ପଣ ଆଗରେ ଠିଆହୋଇ ଭାବେ ମୁଁ କ'ଣ ସତରେ ସେମାନଙ୍କ ପରି ମ୍ରିୟମାଣ, ବିଷର୍ଣ୍ଣ ଓ ମଥା ଅବନତ ହୋଇ କୁଜା ଦେଖାଯାଉଛି ? ମୋ ମତରେ ଲୋକେ ଚାହିଁଲେ ବୁଢ଼ା ହୁଅନ୍ତି । ଶରୀର ଦୁର୍ବଳ ହୋଇଗଲେ ମଧ୍ୟ ମନ ଦୃଢ଼ ଥିଲେ ଜଣେ ନିଜକୁ ବୁଢ଼ା ବୋଲି ଭାବିବ ନାହିଁ । ଏପରି ଦୃଢ଼ମନା ବ୍ୟକ୍ତି ନବେ-ପଞ୍ଚାନବେ ବୟସରେ ମଧ୍ୟ ଏପରି ମାନସିକ ଦୁର୍ବଳତାରେ ଆକ୍ରାନ୍ତ ନ ହୋଇ ଖୁବ୍ ଭଲଭାବରେ ରହିପାରୁଛନ୍ତି । ସେମାନଙ୍କର ଶାରୀରିକ ସୁସ୍ଥତା ଯେପରି ଅତୁଟ, ମାନସିକ ଦମ୍ଭ ମଧ୍ୟ ସେହିପରି ଅଟଳ ରହିପାରୁଛି । ମୋର ଶତକଡ଼ା ୯୯ ସାଥୀ ଯୁବ ସଂପ୍ରଦାୟର ଲୋକ । ଏମାନଙ୍କ ସହିତ କଥାବାର୍ତ୍ତା କଲେ ମୋର ଆନନ୍ଦ ହୁଏ । ଏମାନଙ୍କର ଭବିଷ୍ୟତ, ଆଶା, ଆକାଂକ୍ଷା, ବର୍ତ୍ତମାନର ଦାୟିତ୍ୱ ଏପରିକି ଯୁବା ବୟସର

ଔଦ୍ଧତ୍ୟ ମଧ୍ୟ ମୋତେ ଭଲଲାଗେ । ଅଧିକାଂଶ ବୃଦ୍ଧଙ୍କର ବିଷର୍ଣ୍ଣ ନମନୀୟତା ଓ ଜଗତ ଦୁଃଖମୟ ଦର୍ଶନାଭିମୁଖୀ ବ୍ୟାବହାରିକ ଦୁର୍ବଳତା ଅପେକ୍ଷା ଏହା ବଡ଼ ଜୀବନ୍ତ ତଥା ପ୍ରେରଣାତ୍ମକ ବୋଲି ମୁଁ ଅନୁଭବ କରେ । ଫଳରେ ଏମାନଙ୍କ ସହିତ ମୁଁ ବହୁତ ମିଶେ ।

ଅଧ୍ୟାପକ ଚାକିରି କଲାଦିନରୁ ମୁଁ ମୋର ଛାତ୍ରଛାତ୍ରୀଙ୍କ ସହିତ ମିଳିମିଶି ଚଳିବାକୁ ଭଲପାଏ । ଏମାନଙ୍କ ଭିତରୁ ଅନେକ ତାଙ୍କର ସମସ୍ତ ଆଶା, ଆକାଂକ୍ଷା, ସୁଖ, ଦୁଃଖ ମୋ ଆଗରେ କହନ୍ତି ଏବଂ ମୁଁ ସେମାନଙ୍କର ସମସ୍ୟା ସମାଧାନ କରିବାକୁ ଚେଷ୍ଟା କରେ । ସେଥିପାଇଁ ଜୀବନସାରା ସେମାନେ କୃତଜ୍ଞତା ପ୍ରକାଶ କରନ୍ତି । ସ୍ନାତକୋତ୍ତର ଛାତ୍ରମାନଙ୍କର ଶେଷ ପରୀକ୍ଷା ପରେ ମୁଁ ସେମାନଙ୍କ ସହିତ ବିଭାଗର ସବୁ ଶିକ୍ଷକ ଓ ଅନ୍ୟ କର୍ମଚାରୀମାନଙ୍କୁ ନିମନ୍ତ୍ରଣ କରି ମୋ ବଗିଚାରେ ଗୋଟିଏ ଚା' ଭୋଜିଦିଏ । ସେମାନେ ମୋ ସହିତ ବହୁ ସମୟ ଧରି କଥାବାର୍ତ୍ତା କରନ୍ତି । କେତେକଙ୍କ ସହିତ ମୋର ଏବଂ ମୋ ପରିବାରର ଏପରି ବନ୍ଧୁତା ହୋଇଯାଏ ଯେ ସେମାନେ ଆମର ଜୀବନବ୍ୟାପୀ ବନ୍ଧୁ ହୋଇ ରହିଯାନ୍ତି । ସେମାନେ ବିବାହ କଲାପରେ ତାଙ୍କର ସ୍ତ୍ରୀ ପିଲାଙ୍କୁ ଧରି ଆମ ଘରକୁ ଆସନ୍ତି ମୋର ଆଶୀର୍ବାଦ ପାଇଁ ।

ମୋ ବିଭାଗରେ ଛାତ୍ରଛାତ୍ରୀ ଓ ସହକର୍ମୀଙ୍କ ସହିତ ମୋର ଖୁବ୍ ଭଲ ସଂପର୍କ ଥାଏ । କାଁ ଭାଁ ଜଣେ ଦି'ଜଣ ସହକର୍ମୀ ଓ ସାମାନ୍ୟ କେତେଜଣ ଛାତ୍ରଙ୍କୁ ଛାଡ଼ିଦେଲେ ଜୀବନସାରା ମୋ ସମ୍ପର୍କରେ ଆସିଥିବା ଶତକଡ଼ା ୯୯ ଭାଗ ଛାତ୍ରଛାତ୍ରୀଙ୍କ ସହିତ ସଂପର୍କ ଭଲ ରହିଛି । ସେମାନଙ୍କ ବ୍ୟକ୍ତିଗତ ଜୀବନରେ ହସ୍ତକ୍ଷେପ କରିବା ନୀତିକୁ ମୁଁ ପସନ୍ଦ କରେନାହିଁ । ବିଭାଗରେ ଓ ବାହାରେ ତାଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେଇଥାଏ । ବିଭାଗର କୌଣସି ବିଷୟ ମଧ୍ୟ ସେମାନଙ୍କଠାରୁ ମୁଁ ଲୁଚାଇ ରଖେନାହିଁ । ଛାତ୍ର-ଶିକ୍ଷକ ସଂପର୍କୀୟ ସ୍ନେହ ମମତାପୂର୍ଣ୍ଣ ପାରସ୍ପରିକ ସହଯୋଗୀ ବନ୍ଧୁତା ଭିତରେ ଗଢ଼ି ଉଠିବା ଉଚିତ୍ ବୋଲି ମୋର ବିଶ୍ୱାସ । ଏଠାରେ ପୁରୁଣାକାଳିଆ ଶାସକ ଶାସିତ ମନୋଭାବ ଆଦୌ ଦେଖାଯିବା ଉଚିତ ନୁହେଁ ।

ପିଲାମାନେ କ୍ଲାସକୁ ନ ଆସିବାର ସ୍ୱାଧୀନତା ମଧ୍ୟ ସେମାନଙ୍କର ଅଛି ବୋଲି ମୁଁ କ୍ଲାସ୍‌ରେ କୁହେ । ସ୍ନାତକୋତ୍ତର ଶ୍ରେଣୀରେ ଅନ୍ତତଃ କ୍ଲାସ୍ ଉପସ୍ଥିତି ସ୍ୱେଚ୍ଛାମୂଳକ ହେଉ ବୋଲି ମୁଁ ଦୁଇଥର ବିଶ୍ୱବିଦ୍ୟାଳୟ ଶିକ୍ଷା ପରିଷଦରେ ପ୍ରସ୍ତାବ ଆଣିଥିଲି । କିନ୍ତୁ ଏହି ପ୍ରସ୍ତାବ ଗୃହୀତ ହୋଇପାରିଲା ନାହିଁ । ମୋ ମତରେ ପିଲାଙ୍କୁ ବିଶେଷତଃ ସ୍ନାତକୋତ୍ତର ବୟସ୍କ ପିଲାମାନଙ୍କୁ ଜବରଦସ୍ତ ଶ୍ରେଣୀରେ ବସାଇବା ଆଦୌ ଉଚିତ ନୁହେଁ । ଏହା ସ୍ୱେଚ୍ଛାକୃତ ହେଲେ ଅଧ୍ୟାପକମାନେ ଅଧ୍ୟାପନା ଲାଗି ବିଶେଷ ଭାବରେ ପ୍ରସ୍ତୁତ ହୋଇଆସନ୍ତେ । ତା' ନହେଲେ ସେହି ପୁରୁଣା ନୋଟ୍ ଖାତା ଧରି କ୍ଲାସ୍‌ରେ ବନ୍ଦୀ ଭାବରେ ରହିଥିବା ଛାତ୍ରମାନଙ୍କୁ ବକ୍ତୃତା ଦେଲେ ଅଧ୍ୟାପକ ତଥା ଛାତ୍ରମାନଙ୍କର ସୃଜନଶୀଳ ଚିନ୍ତାଧାରା ସୃଷ୍ଟି ହୋଇପାରେନାହିଁ । ଶିକ୍ଷକ ବୌଦ୍ଧିକ ଆହ୍ୱାନର ସମ୍ମୁଖୀନ ନ ହେଲେ ତା'ର ଚିନ୍ତନଶକ୍ତି ଉଦ୍ଦୀପିତ ହୁଏନାହିଁ । ପୃଥିବୀର ସବୁ ଉନ୍ନତ ଦେଶରେ ବିଶ୍ୱବିଦ୍ୟାଳୟରେ କ୍ଲାସ୍ ଉପସ୍ଥିତି ବାଧ୍ୟତାମୂଳକ ନଥିଲେ ସୁଦ୍ଧା ଆମେ ଛାତ୍ରମାନଙ୍କୁ ଜବରଦସ୍ତ ଆମ କବଳରେ ରଖିବାକୁ ଚାହୁଁ । ଆମ ଛାତ୍ରମାନଙ୍କର ଉଚିତ୍ ଉପସ୍ଥାନ ହେଲାପରେ ସେମାନେ ଇଚ୍ଛାକୃତ ଭାବେ

କ୍ଲାସକୁ ଆସନ୍ତୁ ବୋଲି ମୁଁ ସେମାନଙ୍କୁ କହେ । ତଥାପି ସବୁ ଛାତ୍ରଛାତ୍ରୀ ମୋ କ୍ଲାସକୁ ଶେଷ ଦିନଯାଏ ଆସନ୍ତି । ଛାତ୍ରଛାତ୍ରୀମାନଙ୍କୁ ସ୍ୱାଧୀନତା ଦେବାରେ ମୋର କେତେକ ସହଯୋଗୀ ଅଧ୍ୟାପକଙ୍କ ସହିତ ମୋର ମତଭେଦ ହୁଏ । ମୋର ଏହି ମତକୁ ମୁଁ ଦୃଢ଼ ଭାବରେ ପିଲାଙ୍କ ଆଗରେ ଉପସ୍ଥାପିତ କରେ । ସେମାନଙ୍କୁ କେହି ଅଧ୍ୟାପକ ଅପମାନିତ କଲେ ମୋତେ ବହୁତ ବାଧେ । ଥରେ ଜଣେ ଛାତ୍ରୀର ବ୍ୟକ୍ତିଗତ କାର୍ଯ୍ୟକଳାପ ଯୋଗୁଁ ଜଣେ ଅଧ୍ୟାପକ ତାକୁ ବହୁତ ଅପମାନ ଦେଇଥିଲେ । ସେ ତାଙ୍କ ପାଦଛୁଇଁ କ୍ଷମା ମାଗିଥିଲା । ମୁଁ ଏକଥା ଶୁଣିଲା ପରେ ସେ ଛାତ୍ରୀକୁ ଡାକି ମୋ ବିଭାଗରେ ତାର ଅପମାନ ହୋଇଥିବା ଯୋଗୁଁ ବିଭାଗର ମୁଖ୍ୟ ହିସାବରେ ମୁଁ ତା'ଠାରୁ କ୍ଷମା ମାଗିଥିଲି । ତା'ପରେ ମୋ ଉପରେ ତା'ର ବିଶ୍ୱାସ ଓ ଆସ୍ଥା ବଢ଼ିଯାଇଥିଲା । ଛାତ୍ରଛାତ୍ରୀଙ୍କର କୌଣସି ଦୋଷାବହ କାମ ଦେଖିଲେ ମୁଁ ସେମାନଙ୍କ ଉପରେ ଛାଡ଼ିଦିଏ ଏହାର ସମାଧାନ ଲାଗି ।

ଭୟଙ୍କର ଦୋଷଗ୍ରସ୍ତ ଛାତ୍ରଛାତ୍ରୀମାନେ କିଛିଦିନ ପରେ ମୋ ଆଗରେ ଦୋଷ ସ୍ୱୀକାର କରି କ୍ଷମା ମାଗନ୍ତି ଏବଂ ତା'ପରେ ସେମାନେ ମୋର ଚିରବନ୍ଧୁ ହୋଇ ରହିଯା'ନ୍ତି । ଥରେ ଜଣେ ଛାତ୍ର ରେଭେନ୍ସା କଲେଜରୁ ପାଶ୍ କରି ମୋ ବିଭାଗରେ ନାମ ଲେଖାଇବା ପାଇଁ ଆସିଥାଏ । ତା' ବିରୁଦ୍ଧରେ ମୋତେ ବହୁତ ଲୋକ ଉପଦେଶ ଦେଇଥିଲେ ତାକୁ ମୋ ବିଭାଗରେ ନ ନେବା ପାଇଁ । କାରଣ ସେ ଏତେ ଦୁଷ୍ଟ ବୋଲି ଜଣାଶୁଣା ଯେ ବିଭାଗରେ ବହୁତ ଅଶାନ୍ତି ସୃଷ୍ଟି କରିବ । ମୁଁ ସେମାନଙ୍କ କଥା ନ ଶୁଣି ତାକୁ ମୋ ବିଭାଗରେ ସ୍ଥାନ ଦେଇଥିଲି । ଦୁଇବର୍ଷ ଭିତରେ ସେ ଥରେ ମଧ୍ୟ କୌଣସି ଗୋଳମାଳ ସୃଷ୍ଟି କରିନଥିଲା । ପାଶ୍ କଲା ପରେ ସେହି ଛାତ୍ରଟି ମୋ ପାଖକୁ ଆସି କହିଥିଲା ଯେ ସେ ଥରେ ମାତ୍ର ଜଣେ ଅଧ୍ୟାପକଙ୍କୁ ଅପମାନିତ କରିଥିଲା ଏବଂ ସାଙ୍ଗେ ସାଙ୍ଗେ ତାଙ୍କଠାରେ କ୍ଷମାଭିକ୍ଷା କରି ଅନୁରୋଧ କରିଥିଲା ମୋତେ ଏକଥା ନଜଣାଇବା ପାଇଁ । ସେ ଯେତେବେଳେ ମୋ ପାଖକୁ ଆସି ଏକଥା କହିଲା ତାହା କ'ଣ ଯଥେଷ୍ଟ ନୁହେଁ ? ସେ ମୋର ଆଜିଯାଏଁ ବନ୍ଧୁ ହୋଇରହିଛି । ମଝିରେ ମଝିରେ ମୋଠାରୁ ପରାମର୍ଶ ନିଏ, ତା' ସ୍ତ୍ରୀ ଓ ପିଲାମାନଙ୍କୁ ମୋ ଘରକୁ ନେଇଆସେ ଆଲୋଚନା ପାଇଁ । ଏପରି ଭାବରେ ବହୁତ ଛାତ୍ରଛାତ୍ରୀ ତାଙ୍କର ପାରିବାରିକ ସମସ୍ୟାର ଉପଯୁକ୍ତ ସମାଧାନ ପାଇଁ ମୋ ପାଖକୁ ବରାବର ଆସୁଛନ୍ତି । ଏପ୍ରକାର ଲୋକ ସଂପର୍କ ମୋତେ ବହୁତ ଆନନ୍ଦ ଦେଇଛି ଏବଂ ବଞ୍ଚିବାର ବିରାଟ ସାର୍ଥକତା ଆଣିଦେଇଛି ବୋଲି ମୁଁ ଭାବେ । ତେଣୁ ଅବସର ପରେ ମଧ୍ୟ ଗ୍ରାଜୁଏଟ୍ ଝିଅମାନଙ୍କ ପାଇଁ ଗୋଟିଏ ଡିପ୍ଲୋମା କ୍ଲାସରେ ମୁଁ ଘଣ୍ଟା ଘଣ୍ଟା ଧରି ଆଲୋଚନା କରିବାରେ ଆନନ୍ଦ ପାଏ । ସେମାନଙ୍କର ସ୍ୱପ୍ନରେ ସାମିଲ ହେବା ଉଦ୍ୟମ ଆମମାନଙ୍କୁ ବଂଧୁତା ସୂତ୍ରରେ ବାନ୍ଧି ରଖିପାରୁଛି ।

ଥରେ ଆମ ବିଭାଗର ଜଣେ ଝିଅ ବିରୁଦ୍ଧରେ ବହୁତ ବାଜେ କଥା ଚିଠି ମାଧ୍ୟମରେ ଲେଖାହେଲା । ଝିଅଟି ବଡ଼ ବ୍ୟତିବ୍ୟସ୍ତ ହୋଇପଡ଼ିଲା । ମୋ ଦୃଷ୍ଟିକୁ ଏକଥା ଆସିଲା ପରେ ଛାତ୍ରଙ୍କ ସେମିନାରରେ ମୁଁ କହିଲି ଯେଉଁମାନେ ଏଥିପାଇଁ ଦାୟୀ ସେମାନେ ନିଜେ ଯାଇ ଝିଅ ଆଗରେ କ୍ଷମାଭିକ୍ଷା ନ କଲାଯାଏଁ ମୁଁ ବିଭାଗର କୌଣସି ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟରେ ଯୋଗଦେବି ନାହିଁ । ସେମିନାରକୁ ଆସିବି କିନ୍ତୁ ସେଠାରେ ତା'

ପିଇବିନାହିଁ । ଶେଷରେ ଯେଉଁମାନେ ଏଥିପାଇଁ ଦାୟୀ ସେମାନେ ଆସି ମୋ ପାଖରେ ଦୋଷ ସ୍ୱୀକାର କରି କ୍ଷମାଭିକ୍ଷା ମାଗିଥିଲେ । ତା'ପରେ ପୁଣି ଆମର ପୂର୍ବ ସଦ୍‌ଭାବ ପ୍ରତିଷ୍ଠିତ ହୋଇଥିଲା । ଏପ୍ରକାର ବିଦ୍ୱେଷ ଓ ପ୍ରତିଶୋଧବିହୀନ ପାରସ୍ପରିକ ସୌହାର୍ଦ୍ଦ୍ୟ ଉତ୍ତମ ସମ୍ପର୍କ ସ୍ଥାପନ ଲାଗି ବହୁତ ସାହାଯ୍ୟ କରିପାରୁଥିଲା ।

ଯେକୌଣସି ବୟସର ପୁରୁଷ ଓ ସ୍ତ୍ରୀଙ୍କ ସାଙ୍ଗରେ ମୁଁ ସ୍ୱଚ୍ଛନ୍ଦରେ ମିଶେ ବୋଲି କେତେକ ସମବୟସ୍କ ଓ ପ୍ରତିଷ୍ଠିତ ବନ୍ଧୁ ସମାଲୋଚନା କରିଥାନ୍ତି । କିନ୍ତୁ ଛାତ୍ରଛାତ୍ରୀ ଓ ଅନ୍ୟାନ୍ୟ ଲୋକମାନେ, ସେମାନଙ୍କର ବିଭିନ୍ନ ସମସ୍ୟା ବିଷୟରେ ମୋ ସହିତ ପରାମର୍ଶ କରି ଉପକୃତ ହୁଅନ୍ତି; କାରଣ ସେମାନେ ମୋତେ ସଂପୂର୍ଣ୍ଣ ରୂପେ ବିଶ୍ୱାସ କରନ୍ତି ମୋର ସରଳ, ସହାନୁଭୂତିଶୀଳ ବ୍ୟବହାର ଯୋଗୁ । ମୋର ବ୍ୟକ୍ତିତ୍ୱ ଓ ବୟସର ଦାମ୍ଭିକତାକୁ ବଜାୟ ରଖିବା ଲାଗି ଏପରି ବ୍ୟବହାର ନ କରିବା ନୀତିକୁ ମୁଁ ଗ୍ରହଣ କରିପାରିନାହିଁ । ବୟସ ଓ ପଦବୀର ଗର୍ବହିଁ ମନୁଷ୍ୟକୁ ନିଃସଙ୍ଗ କରିପକାଏ ବୋଲି ମୋର ହୃଦବୋଧ ହୋଇଛି । ଯେ ଯେତେ ଉପରକୁ ଉଠେ, ସେ ବହୁ ଲୋକଙ୍କ ସହିତ ସମ୍ପର୍କ ସେତେ ଛିନ୍ନ କରି କରି ଚାଲେ । ମନୁଷ୍ୟ ବୟସ ଓ ପଦବୀର ଶୃଙ୍ଖଳରେ ବାନ୍ଧିହୋଇ କମ୍ ବୟସରେ ମଧ୍ୟ ବୃଦ୍ଧପରି ବ୍ୟବହାର କରିବା ମନୋବୃତ୍ତିକୁ ମୁଁ ଗ୍ରହଣ କରିପାରିନାହିଁ । ତେଣୁ ମୋର ସାଙ୍ଗସାଥୀଙ୍କ ସଂଖ୍ୟା ଅନେକ ବେଶି । କିନ୍ତୁ ସବୁ ବିଷୟ କହିଲାଭଳି ବନ୍ଧୁ ବହୁତ କମ୍ ।

ଯେଉଁ ପୁରୁଣାକାଳିଆ ସାମନ୍ତବାଦୀ ସମାଜରେ ତରୁଣ, ବୃଦ୍ଧ, ସ୍ତ୍ରୀ, ପୁରୁଷ, ପିଲା, ବଡ଼, ଗରିବ, ଧନୀ, ଗାଉଁଲୀ, ସହରୀ, ଛାତ୍ର, ଅଧ୍ୟାପକ ପ୍ରଭୃତି ସାମାଜିକ ବ୍ୟାବାହାରିକ ଭେଦଭାବ ଅତି ମାତ୍ରାରେ କାର୍ଯ୍ୟ କରୁଛି ସେଠାରେ ଏ ପ୍ରକାର ସମସ୍ତ ସଂକୀର୍ଣ୍ଣତାର ଉପରକୁ ଉଠି ସମସ୍ତଙ୍କ ସହିତ ସ୍ୱଚ୍ଛନ୍ଦରେ ମନଖୋଲା ହସ ଖୁସି ସହିତ ମିଶିବାରେ ବହୁତ ଅଯଥା ପ୍ରତିବନ୍ଧକ ନିଶ୍ଚିତ ଭାବରେ ରହିବ । କିନ୍ତୁ ମାନବୀୟ ଦୃଷ୍ଟିକୋଣରୁ ଏ ପ୍ରକାର ମୂଲ୍ୟହୀନ ପାର୍ଥକ୍ୟଗତ ଗର୍ବ ଓ ଆତ୍ମବଡ଼ିମାକୁ ମୁଁ ପସନ୍ଦ କରେ ନାହିଁ ଏବଂ ଆଧୁନିକ ମନୁଷ୍ୟ ପକ୍ଷରେ ଏହା ଅତ୍ୟନ୍ତ କ୍ଷତିକାରକ ବୋଲି ଭାବେ । ତେଣୁ ଏହା ବିରୁଦ୍ଧରେ ମୁଁ ଆଜି ପର୍ଯ୍ୟନ୍ତ ଆପୋଷହୀନ ଅଭିଯାନ ଚଳାଇ ଆସିଛି । ସେଥିପାଇଁ ବହୁ ମାନ, ଅପମାନ, ବାଦ, ବିସମ୍ବାଦ ଓ ଅପବାଦର କଥା ଉଠିଥିଲେ ମଧ୍ୟ ମୋର ମନ ମୁତାବକ କାର୍ଯ୍ୟ ମୁଁ କରିଚାଲିଛି । କାରଣ ଯେ କୌଣସି କାର୍ଯ୍ୟ ଯଦି କାହାରି କ୍ଷତିସାଧନ ନ କରେ ବରଂ ଏହା ଉଭୟଙ୍କ ପକ୍ଷରେ ମଙ୍ଗଳକର ହୁଏ ତା'ହେଲେ ଗତାନୁଗତିକ ସାମାଜିକ ପ୍ରତିବନ୍ଧକ ବିରୁଦ୍ଧରେ କାମ କରିବା ଉଚିତ ବୋଲି ମୁଁ ମନେକରେ ।

ମୁଁ ଯେତେବେଳେ ମୋ ପୁଅମାନଙ୍କର ବ୍ରତ କଲିନାହିଁ ମୋର ସେ ସମୟର ଅନେକ ବନ୍ଧୁବାନ୍ଧବ ତାର ବିରୋଧ କଲେ । ମୋତେ ନାନା କ୍ଷେତ୍ରରେ ପ୍ରକାରନ୍ତରେ ଅପମାନିତ କଲେ । କାରଣ ମୁହଁ ଉପରେ ଅପମାନ ଦେବାର ନୈତିକ ଶକ୍ତି ସେମାନଙ୍କର ନଥିଲା । ବର୍ତ୍ତମାନ ବହୁ ଲୋକ ବ୍ରତ ନ କଲେ ମଧ୍ୟ ଏ ପ୍ରକାର ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେଉନାହାନ୍ତି । ବରଂ ହସଖୁସିରେ କଥାଟାକୁ ଏଡ଼େଇ ଦିଆ ହୋଇପାରୁଛି । ସମାଜର ଏ ପ୍ରକାର ଗତାନୁଗତିକ ରୀତି ଓ ପ୍ରଥା ବିରୁଦ୍ଧରେ ସଂଗ୍ରାମଶୀଳ ଯାତ୍ରା ପଥରେ ମୋର ବହୁତ ନୂତନ ସାଙ୍ଗ ସାଥୀଙ୍କ ସଂଖ୍ୟା ବଢ଼ିଚାଲିଛି ଏବଂ ବିଭିନ୍ନ ପ୍ରକାରର ବନ୍ଧୁ ସୃଷ୍ଟି

ହୋଇ ଚାଲିଛନ୍ତି । ନୂଆ ଯାତ୍ରୀ ଆସନ୍ତି ଏବଂ ଅନେକ ପୁରୁଣା ଯାତ୍ରୀ କ୍ରମେ ଅଦୃଶ୍ୟ ହୋଇଯାନ୍ତି । ମୋର ରେଳଗାଡ଼ି ଆଗେଇ ଚାଲିଛି । ବହୁଲୋକ ଆସି ମୋ ଡବାରେ ବସିଛନ୍ତି ପୁଣି କେଉଁଠି କେତେବେଳେ କେତେକ ଓହ୍ଲାଇ ଯାଇଛନ୍ତି, ପୁଣି ନୂଆ ଯାତ୍ରୀ ଉଠିଛନ୍ତି । ସେମାନଙ୍କ ପୋଷାକ, ରୀତି,ନୀତି, ଢଙ୍ଗଢାଙ୍ଗ ମତାମତ ବିଭିନ୍ନ ପ୍ରକାରର । କିନ୍ତୁ ମୋର ରେଳଡବା ସବୁବେଳେ ସାଙ୍ଗସାଥୀଙ୍କ ସହ ପୂର୍ଣ୍ଣ ହୋଇଚାଲିଛି । ସେହି ଏକାରକମର ସାଙ୍ଗ, ଏକା ପୋଷାକ ପିନ୍ଧି ସବୁବେଳେ ଡବାସାରା ଭର୍ତ୍ତି ହୋଇ ଚାଲିଥିଲେ ବୋଧହୁଏ ବହୁତ ବିରକ୍ତିକର ପରିସ୍ଥିତି ସୃଷ୍ଟି ହୋଇଥାନ୍ତା । ନାନାରଙ୍ଗର ପୋଷାକ, ବିଭିନ୍ନ ରୁଚିର ବୈଶିଷ୍ଟ୍ୟ, ଭିନ୍ନ ଭିନ୍ନ ଚରିତ୍ରର ଗହଳ ଚହଳ ବେଶ୍ କୌତୂହଳପୂର୍ଣ୍ଣ । ମୋର ସାଙ୍ଗସାଥୀମାନେ ହେଲେ ଚିର ପରିବର୍ତ୍ତିତ, ଜୀବନଶକ୍ତି ଉଦ୍‌ବେଳିତ, ଉଦ୍ଦାମ କର୍ମଚଞ୍ଚଳ, ମନୁଷ୍ୟ । କ୍ଲାନ୍ତ-ଶ୍ରାନ୍ତ ପଳାୟନପନ୍ଥୀ ବୟସ ଭାରାକ୍ରାନ୍ତ ସହଯାତ୍ରୀ ଦଳ ନୁହଁନ୍ତି ।

ଅନେକ ସମୟରେ ସାଙ୍ଗସାଥୀ ଜୁଟନ୍ତି କୌଣସି ଗୋଟିଏ ଅଭ୍ୟାସର ବଶବର୍ତ୍ତୀ ହୋଇ । ଅନେକ ତାସ ପଶା ଖେଳିବାକୁ ଭଲ ପାନ୍ତି, କିମ୍ବା କେତେକଙ୍କର ମଦ ଗଞ୍ଜେଇ ଅଭ୍ୟାସ ଥାଏ, ତେଣୁ ଦଳେ ସାଙ୍ଗ ଏଥିପାଇଁ ସବୁବେଳେ ଏକତ୍ରିତ ହୁଅନ୍ତି । ମୋର ଏପରି କୌଣସି ଅଭ୍ୟାସ ନାହିଁ । ତାସ୍ ପଶା ଖେଳିବାରେ ମୁଁ ଆଦୌ ଆଗ୍ରହୀ ନୁହେଁ । ମୁଁ ଭାବେ ତାସ୍ ଖେଳିବା ଅର୍ଥ ୫୨ଟି କାର୍ଡ଼କୁ ଏପାଖ ସେପାଖ କରି ସମୟ ଅତିବାହିତ କରିବା । ଏହି କେତୋଟି କାର୍ଡ଼କୁ ଫେଣ୍ଟି ଫେଣ୍ଟି ଯେପରି ଏମାନେ ଜୀବନର ବହୁମୂଲ୍ୟ ସମୟ କଟାଇବାକୁ ଚାହଁନ୍ତି । ସେ ସମୟରେ ଏକୁଟିଆ ବସି ଚିନ୍ତା କଲେ କିମ୍ବା ଗୋଟିଏ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କଲେ ବା ଗୋଟିଏ ଭଲ ବହି ପଢ଼ିଲେ ମୋତେ ବହୁତ ଆନନ୍ଦ ମିଳେ । ତେଣୁ ଏ ପ୍ରକାର ଖେଳସାଥୀ ମିଳିବାର ସମ୍ଭାବନା ଆଦୌ ରହିଲା ନାହିଁ ।

ସାମୟିକ ଭାବରେ କେତେକ ସାଙ୍ଗ ସାଥୀ ହୋଇ ଯାଆନ୍ତି କିନ୍ତୁ ମୋ ଜୀବନର ଆଭିମୁଖ୍ୟ ସହିତ ସେମାନଙ୍କର କୌଣସି ପରିଚୟ ନଥିବାରୁ ସେମାନେ ଅତିଶୀଘ୍ର ମୋ ସ୍ମୃତିରୁ ଲିଭିଯା'ନ୍ତି । ଏମାନଙ୍କୁ ଅନ୍ୟ ସମୟରେ ଦେଖିଲେ ଚିହ୍ନ ହୁଏନାହିଁ । ଏଥିପାଇଁ ମୁଁ ଅନେକ ସମୟରେ ଅପଦସ୍ତ ହୋଇଛି ଏବଂ ବହୁତ ହାସ୍ୟାସ୍ପଦ ଘଟଣା ମଧ୍ୟ ସୃଷ୍ଟି କରିଛି । ଥରେ ତିନି-ଚାରିମାସ ହେଲା କାମ କରୁଥିବା ମୋ ବିଭାଗରେ ଗୋଟିଏ ଚପରାଶିକୁ ଗବେଷକ ନିଯୁକ୍ତିପାଇଁ ଚାଲିଥିବା ସାକ୍ଷାତ ସଭାରେ ତାକୁ ପ୍ରାର୍ଥୀ ଭାବି ବସିବାକୁ କହିଥିଲି । ଆଉ ଥରେ ପୁରୀ ସମୁଦ୍ର କୂଳରେ ଜଣକ ସହିତ ଗୋଟିଏ ସଂଧ୍ୟାରେ ଚିହ୍ନା ପରିଚୟ ହେଲା ପରେ ତା'ପର ସଂଧ୍ୟାରେ ତା'ସହିତ ଦେଖା ହେଲାପରେ ତାକୁ ପୁଣି ପଚାରିଥିଲି ଯେ ସେ କ'ଣ କରନ୍ତି, କେଉଁଠି ରହନ୍ତି ଇତ୍ୟାଦି । ଏପ୍ରକାର ସ୍ମୃତି ବିଭ୍ରମ ବୋଧହୁଏ ମନେ ରଖିବା ବିଷୟରେ ଅନାଗ୍ରହ ଯୋଗୁ ହୋଇଥାଏ । ଯାହାଠାରେ ଆଗ୍ରହ ଥାଏ ତାକୁ କଦାପି ଭୁଲିହୁଏ ନାହିଁ । ମନେରଖିବା ବିଷୟ ସବୁବେଳେ ନିଜର ଆଗ୍ରହ ଅନାଗ୍ରହ ଅନୁସାରେ ନିର୍ଦ୍ଧାରିତ ହୋଇଥାଏ ।

ମୋର କେତେକ ବନ୍ଧୁ ଅଛନ୍ତି ଯେଉଁମାନଙ୍କ ସହିତ ଅତୀତରେ ଭଲ ପଡୁଥିଲା । କିନ୍ତୁ ପରେ ସେମାନଙ୍କ ଠାରେ ଅର୍ଥନୈତିକ ଦୁର୍ନୀତି ଓ ନାନାପ୍ରକାରର ସାମାଜିକ ବିଚ୍ୟୁତି

ଦେଖିଲା ପରେ ଆଉ ଇଚ୍ଛା ହୁଏନାହିଁ ସେମାନଙ୍କ ସହିତ ବନ୍ଧୁତା ରଖିବାପାଇଁ । ଫଳରେ ପୁରୁଣା ସାଙ୍ଗସାଥୀଙ୍କ ସଂଖ୍ୟା ସୀମିତ ହୋଇଆସେ ।

ଆଉ କେତେକ ବନ୍ଧୁ ଅଛନ୍ତି ଯେଉଁମାନଙ୍କ ସହିତ ମୋର ମତାମତ ଅଧିକାଂଶ କ୍ଷେତ୍ରରେ ମିଳିଯାଏ । ସେମାନଙ୍କ ସହିତ କଥାବାର୍ତ୍ତା କରିବାବେଳେ ଆନନ୍ଦ ମିଳେ । ବହୁବର୍ଷ ଧରି ସେମାନେ ମୋର ଅପରିବର୍ତ୍ତିତ ବନ୍ଧୁ ହିସାବରେ ରହିଯାଇଛନ୍ତି ।

ଗୋଟିଏ ଆଶ୍ଚର୍ଯ୍ୟଜନକ ଅନୁଭୂତି ଯେ ମୁଁ ନାସ୍ତିକ ହୋଇଥିଲେ ମଧ୍ୟ ଯେଉଁମାନେ ଆନ୍ତରିକ ଭାବରେ ଧାର୍ମିକ ଏବଂ ବାହାରେ କେବଳ ଧର୍ମଭାବ ଦେଖାଇବାରେ ଆଗ୍ରହୀ ନୁହନ୍ତି ସେହିପରି କେତେକ ଲୋକ ମୋର ଆଜୀବନ ବନ୍ଧୁ ହୋଇରହିଛନ୍ତି । ସ୍ୱର୍ଗୀୟ ଅଧ୍ୟାପକ ରତ୍ନାକର ପତିଙ୍କ ପରି ଧର୍ମପ୍ରାଣ ଲୋକ ମୋତେ ବହୁତ ଭଲ ପାଉଥିଲେ । ସେ ମୋ ପାଖରେ ବସି ଧର୍ମ ବିଷୟରେ ଆଲୋଚନା କଲାବେଳେ ମୋର ଭଗବାନଙ୍କ ବିରୁଦ୍ଧରେ ଯୁକ୍ତି ଶୁଣି ଅତି ସରଳ ଭାବରେ ହସି ହସି ଗଡ଼ିଯାନ୍ତି । ସେହିପରି ଆଉ କେତେକ ମୁସଲମାନ ଓ ଖ୍ରୀଷ୍ଟିଆନ୍ ବ୍ୟକ୍ତି ମଧ୍ୟ ମୋ ସହିତ ବନ୍ଧୁତା ରଖିବାକୁ ଭଲ ପା'ନ୍ତି ଅଥଚ ସେମାନେ ସମସ୍ତେ ଧାର୍ମିକ ଓ ମୁଁ ନାସ୍ତିକ । କିନ୍ତୁ ଯେଉଁମାନେ ବାହାରେ ତାଙ୍କର ଧର୍ମଧ୍ୱଜା ଉଡ଼ାଇବାକୁ ଭଲପାଆନ୍ତି ଏଥିପାଇଁ ବହୁ କୋଳାହଳ ସୃଷ୍ଟି କରିବାକୁ ସଦା ସର୍ବଦା ଉଦ୍ୟତ, ସେମାନେ ମୋତେ ଭଲ ପାଆନ୍ତି ନାହିଁ । ମୁଁ ମଧ୍ୟ ସେମାନଙ୍କୁ ଅବିଶ୍ୱାସ କରେ । ଭଗବାନଙ୍କ ଭକ୍ତ ବୋଲି ଦେଖାଇ ହେବା ଲୋକକୁ ବିଶ୍ୱାସ କରିବା ଉଚିତ ନୁହେଁ ବୋଲି ମୋର ଏହି ଅଭିଜ୍ଞତା ମୁଁ ସବୁବେଳେ କହିଥାଏ । ଯେତେବେଳେ ଏପରି ଲୋକଙ୍କ କଥାରେ ବିଶ୍ୱାସ କରି ମୁଁ ଅର୍ଥ ଧାର୍ ଦେଇଛି ସେମାନେ ତାହା ଆଉ ଫେରାଇ ନାହାନ୍ତି । ଜଣେ ଏପରି ଲୋକ ଯେ କି ଜଣେ ବାବାଙ୍କର, ଭକ୍ତ ଓ ଘଣ୍ଟାଏ ଦି'ଘଣ୍ଟାଯାଏ ଠାକୁର ପୂଜା କରନ୍ତି– ମୋତେ ବହୁତ ଅନୁନୟ ବିନୟ କରି ତାଙ୍କର ବ୍ୟବସାୟିକ ବିପର୍ଯ୍ୟୟ କଥା କହି ମୋ'ଠାରୁ କେତେ ହଜାର ଟଙ୍କା କିଛି ସମୟ ପାଇଁ ଧାର ନେଇଥିଲେ ତାହା ବର୍ତ୍ତମାନ ସୁଦ୍ଧା ବି ଫେରାଇଲେ ନାହିଁ । ଏହା ବହୁ ବର୍ଷ ତଳର କଥା । ଏମାନେ ଅବିଶ୍ୱାସୀ ଓ ମାନସିକ ଦୁର୍ବଳ ପ୍ରକୃତିର ବୋଲି ଏ ପ୍ରକାର ଧର୍ମଭାବ ସବୁବେଳେ ନିଜକୁ ଓ ଅନ୍ୟମାନଙ୍କୁ ଦେଖାଇ ସାନ୍ତ୍ୱନା ପାଆନ୍ତି କିନ୍ତୁ ଦରକାର ପଡ଼ିଲେ ଲୋକଙ୍କ ସହିତ ପ୍ରତାରଣା କରନ୍ତି ।

ଆଉ ଦଳେ ସହଯାତ୍ରୀ ଅଛନ୍ତି, ସେମାନଙ୍କ ବିଷୟରେ ଆଲୋଚନା କରିବା ନିହାତି ଉଚିତ । ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କୁ କୁଆଡ଼େ ଜଣେ କହିଥିଲେ ଯେ କୌଣସି ଜଣେ ବ୍ୟକ୍ତି ତାଙ୍କୁ (ବିଦ୍ୟାସାଗରଙ୍କୁ) ବହୁତ ନିନ୍ଦା କରୁଛି । ଈଶ୍ୱର ଚନ୍ଦ୍ର ଉତ୍ତରରେ କହିଲେ-

'କାହିଁକି ସେ ମୋର ନିନ୍ଦା କରୁଛି ? ମୁଁ ତ ସେ ଲୋକର କୌଣସି ଉପକାର କରିଥିବାପରି ମନେହେଉନାହିଁ ?'

ଏହା ଗୋଟିଏ ସାର୍ବଜନୀନ ତଥ୍ୟ ନ ହେଲେ ମଧ୍ୟ ଏଥିରେ ବହୁତ ସତ୍ୟତା ରହିଛି ବୋଲି ମୋର ଉପଲବ୍ଧ ହୋଇଛି । ତୁମେ ଯାହାର ଉପକାର କରିବ, ସେ ତୁମର ନିଶ୍ଚୟ ଅପକାର କରି ଏକଥା ଗୋଟିଏ ଧ୍ରୁବ ତଥ୍ୟ ହିସାବରେ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ହେବନାହିଁ । ମୋର ଏପରି ଅନେକ ବନ୍ଧୁ ଅଛନ୍ତି ଯେଉଁମାନଙ୍କୁ ମୁଁ ସାହାଯ୍ୟ କରିଛି ଏବଂ ସେମାନେ ସେଥିପାଇଁ ଜୀବନସାରା କୃତଜ୍ଞ ଏବଂ ମୋତେ ମଧ୍ୟ ଅକାତରରେ ସାହାଯ୍ୟ କରିଛନ୍ତି ।

କିନ୍ତୁ ଆଉ କେତେକଙ୍କୁ ବହୁବର୍ଷ ଧରି ଜୀବନରେ ପ୍ରତିଷ୍ଠିତ କରିବାରେ ମୁଁ ସଂପୂର୍ଣ୍ଣ ରୂପେ ସାହାଯ୍ୟ କରି ମଧ୍ଯ ସେମାନେ ମୋର ଚରମ ଶତ୍ରୁରେ ପରିଣତ ହୋଇଛନ୍ତି । ଯେତିକି ପରିମାଣର ମୁଁ ସେମାନଙ୍କୁ ସାହାଯ୍ୟ କରିଛି ସେତିକି ମାତ୍ରାରେ ମୋ ବିରୁଦ୍ଧରେ ଷଡ଼ଯନ୍ତ୍ର ଓ ଶତ୍ରୁତା ସେମାନେ କରିଆସିଛନ୍ତି । ଏପରି ଅଦ୍ଭୁତ ଧରଣର ଅକୃତଜ୍ଞ ଏମାନେ କିପରି ହୋଇପାରିଲେ ତାହା ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ । ଏମାନଙ୍କ ପ୍ରତି ମୋର ପ୍ରକୃତରେ ଦୟା ହୁଏ । ମୁଁ ଯେତେ ଚେଷ୍ଟା କରିଛି ଖୋଜି ବାହାର କରିବା ପାଇଁ ତାଙ୍କଠାରେ ଶତ୍ରୁତା ମନୋଭାବ ସୃଷ୍ଟି ଲାଗି କି ପ୍ରକାର ଖରାପ ବ୍ୟବହାର ମୋଠାରୁ ସେ ପାଇ ପାରିଥାନ୍ତି- ଏକଥା ଭାବି ଭାବି ସେପରି କିଛି ସଠିକ ଉତ୍ତର ମୁଁ ପାଏନାହିଁ ।

ମୋ ମତରେ ଏପ୍ରକାର ଅଦ୍ଭୁତ ଚାରିତ୍ରିକ ସ୍ୱଭାବ ପାଇଁ ବ୍ୟକ୍ତିଗତ ଈର୍ଷା ଓ ହୀନମନ୍ୟତା ଦାୟୀ । ଏମାନେ ମୋ ଦ୍ୱାରା ଉପକୃତ ହୋଇ କୃତିତ୍ୱର ଉଚ୍ଚସ୍ତରକୁ ଗଲାପରେ ମୋତେ ଦେଖିଲେ ସେମାନଙ୍କର ମନେପଡ଼ିଯାଏ କିପରି ତାଙ୍କର ସମସ୍ତ କୃତିତ୍ୱ ମୋ ଯୋଗୁଁ ସମ୍ଭବ ହୋଇଛି । କିନ୍ତୁ ସେ ନିଜର ଅହଂ ଆଗରେ ପ୍ରମାଣିତ କରିବାକୁ ଚାହାଁନ୍ତି ଯେ ତାଙ୍କର ସମସ୍ତ କୃତିତ୍ୱ କେବଳ ତାଙ୍କ ନିଜ ଦକ୍ଷତା ଓ କର୍ମକୁଶଳତା ଯୋଗୁହିଁ ସମ୍ଭବ ହୋଇଛି । ତେଣୁ ମୋତେ ଦେଖିଲେ ତାଙ୍କର ରାଗ ହୁଏ । ଏ ପ୍ରକାର ଦ୍ୱନ୍ଦାତ୍ମକ ମାନସିକ ବିକାରର ଉପଶମପାଇଁ ସେମାନେ ମୋତେ ଘୃଣା କରନ୍ତି ଏବଂ ମୋର ଯେତେ କ୍ଷତି କରିପାରନ୍ତି ସେତେ ବେଶି ସେମାନଙ୍କର ଆତ୍ମସନ୍ତୋଷ ହୁଏ । ଏ ପ୍ରକାର ଲୋକେ ଆଦୌ ବଳିଷ୍ଠମନା ବା ଆଦର୍ଶବାଦୀ ନୁହନ୍ତି । ଏମାନେ ସବୁବେଳେ ଏବଂ ସବୁ କ୍ଷେତ୍ରରେ ଚକ୍ରାନ୍ତକାରୀ, ସଂକୀର୍ଣ୍ଣମନା ଓ ସ୍ୱାର୍ଥପର । ସୂର୍ଯ୍ୟକିରଣ ପୂତିଗନ୍ଧମୟ କର୍ଦ୍ଦମାକ୍ତ ସ୍ଥାନରେ ଯେପରି ଆହୁରି ବେଶି ବିଷାକ୍ତ ବାଷ୍ପ ସୃଷ୍ଟି କରେ ସେହିପରି ଅନ୍ୟର ଅକୁଣ୍ଠିତ ସାହାଯ୍ୟ ଓ ଉପକାର ଏହି ଚକ୍ରାନ୍ତକାରୀ ଲୋକଙ୍କଠାରେ ତୀବ୍ର ମାନସିକ କୁଟିଳତାର ତରଙ୍ଗ ସୃଷ୍ଟି କରେ । ତେଣୁ ମୂଳ କଥା ହେଲା ଯେ ଏମାନେ ଅସୁଖୀ ଓ କୁଟିଳ ପ୍ରକୃତିର ଲୋକ । ଏମାନେ ଯେ କେବଳ ଜଣେ ଉପକାରୀ ବ୍ୟକ୍ତି ବିରୁଦ୍ଧରେ ଶତ୍ରୁତା କରନ୍ତି ତାହା ନୁହେଁ, ଏହିପରି ବହୁତ ବନ୍ଧୁଙ୍କୁ ମଧ୍ୟ ସେ ପ୍ରତାରିତ କରନ୍ତି । ଏପରିକି ନିଜ ପରିବାରର ଲୋକେ ମଧ୍ୟ ସେମାନଙ୍କୁ ସବୁ କଥାରେ ବିଶ୍ୱାସ କରିପାରନ୍ତି ନାହିଁ । ସେମାନଙ୍କୁ ଅଧିକାଂଶ ଲୋକ ଘୃଣା କରନ୍ତି ଏବଂ ସେମାନେ ଯେତେ ବେଶି ଘୃଣିତ ହୁଅନ୍ତି ସେତେ ବେଶି ସେମାନଙ୍କର କୁଟିଳ ପାପଚକ୍ର ଫେନାୟିତ ହୋଇଚାଲେ । ଏହି ଉପାୟରେ ଅନ୍ୟମାନଙ୍କଠାରେ ଭୟ ଓ ଉଦ୍‌ବେଗ ସୃଷ୍ଟି କରି ସେମାନଙ୍କୁ ନିୟନ୍ତ୍ରଣ କରନ୍ତି । ଭୀତତ୍ରସ୍ତ କ୍ରୀତଦାସଙ୍କ ଉପରେ ନେତୃତ୍ୱ ପରି ଏମାନଙ୍କର ପ୍ରଭାବ । ଏମାନଙ୍କର କୌଣସି ଉପକାର-ପଛରେ ମଧ୍ୟ ଭୟଙ୍କର ଉଦ୍ଦେଶ୍ୟ ଥାଏ । ଏମାନଙ୍କର ହସ ଉତ୍ତୋଳିତ ଫଣା ନାଗସାପର ଖେଳ ପରି ବିଷାୟିତ । ଏପରି କେତେକ ଲୋକଙ୍କର ହସ ମୁଁ ଦେଖିଛି ଯାହା ପ୍ରକୃତରେ ଭୟ ଉତ୍ପାଦକ । ଏମାନଙ୍କୁ ଚିହ୍ନିବାରେ ମୋତେ ସମୟ ଲାଗେ କାରଣ ମୁଁ ପ୍ରତ୍ୟେକ ମନୁଷ୍ୟକୁ ତାର କଥା ଅନୁସାରେ ବିଶ୍ୱାସ କରିଯାଏ । ଏମାନଙ୍କ ଯୋଗୁଁ ମଝିରେ ମଝିରେ ମୋଠାରେ ଅଶାନ୍ତି ଯେ ସୃଷ୍ଟି ନହୁଏ ତାହା ନୁହେଁ, ତଥାପି ଏପରି ଲୋକଙ୍କ ଦ୍ୱାରା ମୋର ସେପରି କିଛି ଭୟାନକ କ୍ଷତିସାଧିତ ହୋଇପାରିନାହିଁ । ବରଂ ସେମାନେ ଆପଣା ବିଷରେ ଜର୍ଜରିତ ହୋଇ ନିଜର

କ୍ଷତି ସାଧନ କରିଛନ୍ତି ମାତ୍ର । ଏମାନଙ୍କୁ ନେଇ ମୋ' ମନରେ କେବଳ ଅପ୍ରୀତିକର ଅନୁଭୂତି ରହିଯାଇଛି ।

ମୋତେ ଅନେକ ଦୋଷ ଦିଅନ୍ତି ଯେ ମୁଁ ମୋର ପ୍ରକୃତ ବନ୍ଧୁ ଓ ଶତ୍ରୁଙ୍କୁ ଚିହ୍ନିପାରେ ନାହିଁ । ସମସ୍ତଙ୍କୁ ବିଶ୍ୱାସ କରିଯାଏ । ଏହା ଅନେକାଂଶରେ ସତ । ମୋର ସହଜାତ ସ୍ୱଭାବ ହେଲା ଅନ୍ୟକୁ ବିଶ୍ୱାସ କରିବା । ଅନେକ ଲୋକ ଅଛନ୍ତି ଯେଉଁମାନେ ଅନ୍ୟକୁ ପ୍ରଥମେ ଅବିଶ୍ୱାସ କରନ୍ତି ତା'ପରେ ଯଥେଷ୍ଟ ଅଭିଜ୍ଞତା ପରେ ତା'ର ଯଥାଯଥ ସ୍ୱଭାବକୁ କଳନା କରନ୍ତି । ମୋର କିନ୍ତୁ ଠିକ୍ ଓଲଟା ସ୍ୱଭାବ । ଯିଏ ଯାହା କହେ ତା'ର ବିପରୀତ ପ୍ରମାଣ ନ ପାଇଲାଯାଏ ମୁଁ ତାକୁ ବିଶ୍ୱାସ କରେ । ଏତେ ବର୍ଷର ଅଭିଜ୍ଞତାରୁ ମୁଁ ବର୍ତ୍ତମାନ ଅନୁଭବ କରୁଛି ଯେ ଏହି ମନୋଭାବ ମୋତେ ବହୁତ ସାହାଯ୍ୟ କରିଛି । ଆଜି ପର୍ଯ୍ୟନ୍ତ ଏଥିଲାଗି ମୋର ଯେତିକି ଅପକାର ହୋଇଛି ତା'ଠାରୁ ବେଶି ଉପକାର ହୋଇଛି ବୋଲି ମୋର ଧାରଣା । ଅନେକ ସମୟରେ ସମସ୍ତଙ୍କୁ ବିଶ୍ୱାସ କରିବା ଦ୍ୱାରା ଯେଉଁ କେତୋଟି ଘଟଣାରେ ଠକାମିରେ ପଡ଼ିଯାଉ ସେହି ଅପ୍ରୀତିକର ଅନୁଭୂତିଗୁଡ଼ିକ ଆମ ମନରେ ସ୍ପଷ୍ଟ ଭାବରେ ରହିଥାଏ ଅଥଚ ପ୍ରଥମରୁ ସରଳ ବିଶ୍ୱାସ ଯୋଗୁଁ ଆହୁରି ବହୁତ ଘଟଣା ଘଟିଛି ଯାହାକି ଜୀବନରେ ବହୁ ଉପକାର ମଧ କରିଛି । ସେକଥା ଆମେ ଭୁଲିଯାଉ କାରଣ ଅନ୍ୟକୁ ନ ପରଖି ବିଶ୍ୱାସ କରିବା ଉଚିତ ନୁହେଁ ବୋଲି ନୀତିର ପକ୍ଷ ସମର୍ଥନ କରିବା ଯୋଗୁ । ମୋ ଜୀବନରେ ମୋର ସରଳ ବିଶ୍ୱାସ ମୋତେ ଆନନ୍ଦ ଦେଇଛି ଏବଂ ଅନେକ କ୍ଷେତ୍ରରେ ମଧ ମୋର ଉପକାର ସାଧନ କରିପାରିଛି । ଅବିଶ୍ୱାସ ଉପରେ ଆସ୍ଥାରଖି ଚାଲିଥିଲେ ମୁଁ ସେତିକି ସୁବିଧା ପାଇପାରି ନଥାନ୍ତି ବୋଲି ମୋର ବିଶ୍ୱାସ । ଠିକ୍ ଏହି କାରଣରୁ ମୋର ଶୁଭେଚ୍ଛୁ ବନ୍ଧୁମାନଙ୍କ ସଂଖ୍ୟା ଅନେକ ବେଶି ଏବଂ ଶତ୍ରୁଙ୍କ ସଂଖ୍ୟା ନଗଣ୍ୟ । ଆଉ ଗୋଟିଏ ଅଦ୍ଭୁତ ଅନୁଭୂତି ଯେ କେତେକ ବହୁ ବର୍ଷଧରି ନିନ୍ଦୁକ ଏବଂ ଶତ୍ରୁ ହଠାତ୍ ମୋର ପରମ ସାହାଯ୍ୟକାରୀ ବନ୍ଧୁ ହୋଇଯାନ୍ତି ଏବଂ ଅଯାଚିତ ଭାବରେ ମୋତେ ସାହାଯ୍ୟ କରିଛନ୍ତି ।

କେତେକେ ଲୋକ ସେମାନଙ୍କର ମାନସିକ ଅଶ୍ୱସ୍ତି ଯୋଗୁଁ ମୋର ସାହାଯ୍ୟ ନେଇଥାନ୍ତି । ସେମାନଙ୍କର ମୁଁ ଅତି ବିଶ୍ୱସ୍ତ ବନ୍ଧୁ ଭାବରେ ପରିଗଣିତ ହୁଏ । ସେମାନଙ୍କର ମୋ ଉପରେ ଅଗାଧ ବିଶ୍ୱାସ ଯୋଗୁଁ ତାଙ୍କ ଜୀବନର ସମସ୍ତ ଘଟଣା ଟିକିନିଖି କରି ମୋତେ କହନ୍ତି । ସେମାନଙ୍କର ନାନା ଅପ୍ରୀତିକର ମାନସିକ ଦୁଶ୍ଚିନ୍ତାର କାରଣ ମୁଁ ଖୋଜି ବାହାର କରେ । ସେ ବିଷୟରେ ସଚେତନ ହେଲା ପରେ ସେମାନେ ସୁସ୍ଥ ହୁଅନ୍ତି । ଏମାନେ ତାଙ୍କ ଜୀବନର କଥା ସବୁ ମୋତେ ବିଶ୍ୱାସରେ କହିଥାନ୍ତି । ମୁଁ ବିଶ୍ୱାସର ଅସୀମ ଭଣ୍ଡାର ରୂପେ ସେମାନଙ୍କ ପାଖରେ ରହିଯାଏ । ଫଳରେ ସେମାନେ ମୋର ବନ୍ଧୁ ହୁଅନ୍ତି ଯଦିଚ ମୋ ଜୀବନର ସବୁ ଘଟଣା ସେମାନେ ଜାଣି ନଥାନ୍ତି । ତଥାପି ଉଦାହରଣ ଛଳରେ ତାଙ୍କଠାରେ ଆତ୍ମବିଶ୍ୱାସ ଆଣିବା ପାଇଁ ମୋ ଜୀବନର କିଛି ଘଟଣା ତାଙ୍କୁ କହେ ।

ଏ ସଂପର୍କରେ ଗୋଟିଏ କୌତୂହଳପୂର୍ଣ୍ଣ ମନୋବୈଜ୍ଞାନିକ ତଥ୍ୟ ହେଉଛି ଯେ ସେମାନେ ସୁସ୍ଥ ହେଲା ପରେ ମୋଠାରେ ଚିରଦିନ ପାଇଁ କୃତଜ୍ଞ ରହନ୍ତି ସତ କିନ୍ତୁ ସେମାନଙ୍କ ଭିତରୁ ଅଧିକାଂଶ ମୋତେ ଆଉ ଦେଖା ଦିଅନ୍ତି ନାହିଁ । ସାମାନ୍ୟ କେତେଜଣ ମାତ୍ର ମୋ

ସହିତ ସଂପର୍କ ରଖନ୍ତି । ମୁଁ ଏମାନଙ୍କୁ ସବୁ ପରିସ୍ଥିତିରେ ନିଜର ଅସୁବିଧା ସତ୍ତ୍ୱେ ସାହାଯ୍ୟ କରେ କାରଣ, ଯେ ମୋତେ ବିଶ୍ୱାସ କରି ମୋ ଉପରେ ସଂପୂର୍ଣ୍ଣ ନିର୍ଭର କରୁଛି ତାକୁ ପରିହାର କରିବା ମାନବିକତା ବିରୁଦ୍ଧରେ ବୋଲି ମୁଁ ଭାବେ । ମୁଁ ଆଜିଯାଏ ଜାଣିଶୁଣି ମୋ ଉପରେ ବିଶ୍ୱାସ ରଖିଥିବା ଲୋକକୁ କୌଣସି କାର୍ଯ୍ୟରେ ମଧ୍ୟ ପ୍ରତାରଣା କରିନାହିଁ । ସେମାନେ ମୋଠାରୁ ଯାହା ସାହାଯ୍ୟ ଚାହିଁଛନ୍ତି ତାହା ପୂରଣ କରିବା ପାଇଁ ମୁଁ ପ୍ରାଣପଣେ ଉଦ୍ୟମ କରିଛି ଏବଂ ଅଧିକାଂଶ କ୍ଷେତ୍ରରେ ମୁଁ ସଫଳ ହୋଇଛି ବୋଲି ମୋର ଧାରଣା ।

ମୁଁ କର୍ମକ୍ଷେତ୍ରରେ ଯେତେ ସବୁ ବଳିଷ୍ଠ ଅନୁଷ୍ଠାନମାନ ପ୍ରତିଷ୍ଠା କରିବାରେ କୃତିତ୍ୱ ହାସଲ କରିଥିଲି ତାର ଅବକ୍ଷୟମାନ ଦୃଶ୍ୟ ମୋତେ ବିବ୍ରତ କରୁନାହିଁ । କାରଣ କୌଣସି ଅନୁଷ୍ଠାନର ଅମରତ୍ୱରେ ମୋର ବିଶ୍ୱାସ ନାହିଁ । ମୋର କର୍ମକ୍ଷେତ୍ରରେ ନିଜର ଆନନ୍ଦ ପାଇଁ ଯାହା କରିଥିଲି ସେଥିରେ ଯଦି ବିଭ୍ରାଟ ଦେଖାଯାଏ କିମ୍ବା ଯେଉଁମାନେ ସେଥିଯୋଗୁ ବିଶେଷ ଭାବରେ ଉପକୃତ ହୋଇଛନ୍ତି ସେମାନେ ଯଦି ଅକୃତଜ୍ଞ ହୁଅନ୍ତି ସେଥିପାଇଁ ମୋ ମନରେ କୌଣସି ପ୍ରକାର ଅଶାନ୍ତି କିମ୍ବା ଅନୁଶୋଚନା ନାହିଁ । ବହୁ ଲୋକଙ୍କୁ ମୁଁ ପ୍ରତ୍ୟାଶାହୀନ ସାହାଯ୍ୟ କରିଥିଲି । ତେଣୁ ସେମାନଙ୍କର ଉଦାସୀନତା କିମ୍ବା ଶତ୍ରୁତା ମୋତେ କେବେହେଲେ ବିବ୍ରତ କରୁନାହିଁ । ମୋଠାରେ ଏଥିପାଇଁ ଦୁଃଖଦାୟକ ଯନ୍ତ୍ରଣାହିଁ ସେମାନଙ୍କୁ ଆନନ୍ଦ ଦେବାର ସଂଭାବନା, ତେଣୁ ସେମାନେ ମୋର ମାନସିକ ଦିଗ୍‌ବଳୟରୁ ସଂପୂର୍ଣ୍ଣ ରୂପେ ବିଲୀନ ହୋଇଯାଇଛନ୍ତି । ସେମାନଙ୍କ ସ୍ଥାନରେ ବହୁ ନୂତନ ଲୋକ ମୋ ପାଖରେ ପହଞ୍ଚୁଛନ୍ତି- ସେମାନେ ହିଁ ମୋ ଜୀବନର ଅପରାହ୍ଣରେ ମୋ ସ୍ୱପ୍ନକୁ ରଂଗୀନ କରିବାରେ ଲାଗିଛନ୍ତି । ମୋର ଧାବମାନ ରେଳଗାଡ଼ିରେ ନୂତନ ମୁହଁ, ନୂତନ ସ୍ୱପ୍ନାୟିତ ମନୁଷ୍ୟମାନଙ୍କର ସମାରୋହ ଲାଗିରହିଛି । ଯେଉଁମାନେ ମୋ ସହିତ ଆଗେଇବାରେ ବୀତସ୍ପୃହ ମୋର ଚଳନ୍ତା ରେଳଗାଡ଼ିରୁ ଓହ୍ଲାଇ ଯାଆନ୍ତି, ତଥାପି ମୋର ରେଳ ଡବାରେ ନୂତନ ଯାତ୍ରୀଙ୍କର ଭିଡ଼ ଲାଗିରହିଛି ।

ଅନ୍ୟର ମତାମତକୁ ମୁଁ ଯଥେଷ୍ଟ ସମ୍ମାନ ଦେଖାଏ ସତ; କିନ୍ତୁ ମୌଳିକ ବିଷୟରେ କିମ୍ବା ଅନ୍ୟର କ୍ଷତି ହେଲାଭଳି କାମରେ ସେମାନଙ୍କର ପରାମର୍ଶ ମୁଁ ଗ୍ରହଣ କରେନାହିଁ । ଲୌକିକ ପ୍ରଥା ବା ବ୍ୟକ୍ତିବିଶେଷର ଖାମଖିଆଲି ମତାମତ ମୋତେ ପ୍ରଭାବିତ କରିପାରି ନାହିଁ । ଅନ୍ୟର ଉପଦେଶ ଓ ପରାମର୍ଶ ଅନୁଯାୟୀ କାର୍ଯ୍ୟ କରିଥିଲେ ମୋ ବିଭାଗରେ ଅନ୍ୟ ବିଭଗ ପରି ଗୋଟିଏ ମାତ୍ର ଅଧ୍ୟାପକ, ଦୁଇଜଣ ରିଡ଼ର ଓ ଚାରିପାଞ୍ଚଜଣ ଲେକଚର ଥା'ନ୍ତେ ଏବଂ କାହାର ଏତେ ଶୀଘ୍ର ପଦନ୍ନୋତି ସମ୍ଭବ ହୋଇପାରି ନଥାନ୍ତା କି ବିଭାଗଟି ଏତେ ବେଶି ବଡ଼ ହୋଇପାରିନଥାନ୍ତା । ମୋ ବିଭାଗର ଯେତେ ଶିକ୍ଷକ, ଶିକ୍ଷିକାଙ୍କର ପଦୋନ୍ନତି ହୋଇଛି ସେ ସମସ୍ତଙ୍କ ବିରୁଦ୍ଧରେ ମତେ ଅନବରତ ପରାମର୍ଶ ଦିଆହୋଇଛି । ତେଣୁ ଲୋକମତ ଓ ଅନ୍ୟାନ୍ୟ ପରାମର୍ଶକୁ ବହୁ ସତର୍କତାର ସହ ଗ୍ରହଣ କରିବା ଉଚିତ । ସମସ୍ତଙ୍କ କଥା ଶୁଣି ସାରିଲା ପରେ ମୁଁ ମୋର ସିଦ୍ଧାନ୍ତ ନିଏ । ସେଥିରେ ଅନେକ ଅସନ୍ତୁଷ୍ଟ ହୁଅନ୍ତି ଏବଂ ମୋ ବିରୁଦ୍ଧରେ ଶତ୍ରୁତା କରନ୍ତି । ତଥାପି ମୁଁ ଏଥିରେ ପଛେଇ ଯାଏନାହିଁ ।

ମୋର ସୁଦୀର୍ଘ ଜୀବନର ଯାତ୍ରୀମାନଙ୍କୁ ବିଭିନ୍ନ ପର୍ଯ୍ୟାୟଭୁକ୍ତ କରାଯାଇପାରେ । ଏହା ସମସ୍ତଙ୍କ ପକ୍ଷରେ ଦେଖାଯାଏ କେବଳ ବିଭିନ୍ନ ପର୍ଯ୍ୟାୟଭୁକ୍ତ ଲୋକଙ୍କ ସଂଖ୍ୟାରେ

ଯାହା ତଫାତ୍ ରହିବ । କେତେକ ଅନ୍ତରଙ୍ଗ ବନ୍ଧୁ ଜୀବନସାରା ରହିଥାଆନ୍ତି-ସେମାନଙ୍କ ପିଲାଦିନରୁ ପରିଣତ ବୟସ ପର୍ଯ୍ୟନ୍ତ ଅନ୍ତରଙ୍ଗ ହୋଇ ରହିଯାଆନ୍ତି । କିନ୍ତୁ ମୋର ନାନା ପରିବର୍ତ୍ତନଶୀଳ ଜୀବନଯାତ୍ରା ଯୋଗୁ ଜୀବନବ୍ୟପୀ ସହଯୋଗୀ ବନ୍ଧୁ ମିଳିବା କଷ୍ଟକର ହୋଇପଡ଼ିଲା । କିନ୍ତୁ ଜଣେ ଦୁଇଜଣ ଆଜୀବନ ଶତ୍ରୁ ମୋର ରହିଗଲେ । ସେମାନଙ୍କ ଯୋଗୁ ମୁଁ ସାମୟିକ ଭାବରେ ଉତ୍ପୀଡ଼ିତ, ଅପମାନିତ ହୋଇଥିଲେ ସୁଦ୍ଧା ସେମାନଙ୍କର ଧାରାବାହିକ ଶତ୍ରୁ ଆଚରଣ ମୋର ସେପରି କୌଣସି ବଡ଼ ଧରଣର କ୍ଷତିସାଧନ କରିପାରିନାହିଁ । ସେମାନେ ବରଂ ନିଜର ଚାରିତ୍ରିକ ଦୁର୍ବଳତା ଯୋଗୁ ଜୀବନରେ ସେପରି ଭାବରେ ଆଗେଇ ପାରିଲେ ନାହିଁ ।

ଆଉ କେତେକ ଅଦ୍ଭୁତ ଧରଣର ବ୍ୟକ୍ତି ଅଛନ୍ତି ଯେଉଁମାନେ ତୁମ ପାଖକୁ ଆସନ୍ତି ନାନା ସାହାଯ୍ୟ ପାଇଁ । ସାହାଯ୍ୟ ପାଇସାରିଲା ପରେ ନାନା ଆଳରେ ତୁମକୁ ଦୂରେଇ ରଖନ୍ତି । ଆଗରୁ ଯେତିକି ସ୍ନେହ ସୌହାର୍ଦ୍ଦ୍ୟ ଦେଖାଇଥିଲେ ତାହା କେବଳ ସେମାନଙ୍କର ନିର୍ଦ୍ଦିଷ୍ଟ ସ୍ୱାର୍ଥ ହାସଲ ପାଇଁ । ସେମାନେ ବହୁ ପ୍ରକାରରେ ଉପକୃତ ହୋଇଥିଲେ ମଧ୍ୟ କୃତଜ୍ଞତା ପ୍ରକାଶ କରିବା ପରିବର୍ତ୍ତେ ତୁମ ପ୍ରତି ଉଦାସୀନ କିମ୍ବା ନିନ୍ଦୁକ ହୋଇରହିଯାଆନ୍ତି । ଅବଶ୍ୟ ଏପରି କେତେକ ଲୋକେ ତୁମର ଶତ୍ରୁତା କରିବା ପର୍ଯ୍ୟନ୍ତ ନଯାଇପାରନ୍ତି କିନ୍ତୁ ଦେଣା ପାଉଣା ନିକିତିରେ ତୁମର ସାହାଯ୍ୟ ପାଇଁ ସେମାନେ ଯଥେଷ୍ଟ ସ୍ନେହ ଶ୍ରଦ୍ଧା ଦେଇସାରିଛନ୍ତି ବୋଲି ନିଜକୁ ସାନ୍ତ୍ୱନା ଦିଅନ୍ତି । ଏହି ଉଦାସୀନତାର ଯଥାର୍ଥ୍ୟ ପ୍ରତିପାଦନ କରିବା ଲାଗି ସେମାନେ ଆଗରୁ ଘଟିଯାଇଥିବା ସାଧାରଣ ଥଟ୍ଟାଳିଆ କଥା ବା ନିରୁତ୍ସାହିତ କଲାପରି କୌଣସି ଘଟଣାକୁ ମାଜି ମାଜି ମୋଟା କରନ୍ତି କାରଣ ତାହା ତାଙ୍କୁ ମୋ ସାହାଯ୍ୟର ଆନ୍ତରିକତା ବିରୁଦ୍ଧରେ ଯଥେଷ୍ଟ ଉପାଦାନ ଯୋଗାଇଦିଏ ।

ମୋଟାମୋଟି ଭାବରେ ମୁଁ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛି ଯେ ଜଣେ ସରଳ ବିଶ୍ୱାସରେ ଏବଂ କୌଣସି ପ୍ରତିଫଳର ଆଶା ନରଖି ଯଦି ଲୋକଙ୍କୁ ସାହାଯ୍ୟ କରେ ତା'ହେଲେ ସେମାନଙ୍କ ଭିତରୁ କେତେକ ତୁମର ସରଳ ବିଶ୍ୱାସର ସୁଯୋଗ ନେଇ କ୍ଷତିସାଧନ କରିପାରନ୍ତି । କିନ୍ତୁ ସମସ୍ତେ ସେପରି ନୁହନ୍ତି । ଦେଣା ପାଉଣା ହିସାବରେ ତୁମର ଠିକ୍ ସେତିକି ଉପକାର ହୋଇନପାରେ କିନ୍ତୁ ଜୀବନକାଳ ଭିତରେ ତୁମେ ପାଇଥିବା ସର୍ବମୋଟ ମାନବୀୟ ଉପକାର ତୁଳନାରେ ଅପକାରର ପରିମାଣ ବହୁତ କମ୍ ବୋଲି ମୋର ଦୃଢ଼ ବିଶ୍ୱାସ ହୋଇଛି । ଉପକାର କରିପାରିବାର ଶୀର୍ଷସ୍ଥାନରେ ମୁଁ ପହଞ୍ଚି ନଥିଲେ ମଧ୍ୟ ଆମର ସାଧାରଣ ଜୀବନରେ ଯତ୍ ସାମାନ୍ୟ ଉପକାର ମୁଁ କରିପାରିଛି ତା'ର ସୁଫଳ ମୁଁ ପାଇଛି । ତା'ଛଡ଼ା ମନୁଷ୍ୟ ସମାଜର ସ୍ନେହ ଓ ସଦିଚ୍ଛା ଏପରି ବ୍ୟାପକ ଯେ ତୁମେ କାହାର ଉପକାର କରିଥିଲେ ତୁମର ପରିବାରର ଲୋକେ ମଧ୍ୟ ଏହାର ସୁଦୂରପ୍ରସାରୀ ଫଳ ପାଇପାରିବେ ।

ମୋର ସହଯାତ୍ରୀ ବନ୍ଧୁମାନଙ୍କ ବିଷୟରେ ଆଲୋଚନା ପରିପ୍ରେକ୍ଷୀରେ ଆଉ ଗୋଟିଏ ବିଶେଷ ଘଟଣା ଉଲ୍ଲେଖଯୋଗ୍ୟ । ମୋର ଜୀବନକାଳ ଭିତରେ ବହୁ ଉଚ୍ଚ ସ୍ଥାନୀୟ ସମ୍ମାନସ୍ପଦ ବ୍ୟକ୍ତି ମୋତେ ଅନେକ ସାହାଯ୍ୟ କରିଛନ୍ତି କିନ୍ତୁ ସେମାନଙ୍କ ଭିତରେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ଛାଡ଼ିଦେଲେ ଆଉ କେହି ଓଡ଼ିଆ ନାହାନ୍ତି । ଓଡ଼ିଶାର ବାସିନ୍ଦା ଅଣଓଡ଼ିଆ

ଡକ୍ଟର ବାନାର୍ଜୀ ଏବଂ ଡକ୍ଟର ବଳଭଦ୍ର ପ୍ରସାଦ ହିଁ ମୋତେ ବହୁତ ସାହାଯ୍ୟ କରିଛନ୍ତି । ଅନ୍ୟପଦସ୍ଥ ଓଡ଼ିଆମାନେ ମୋର କ୍ଷତିସାଧନ କରିବାରେ ଅଦମ୍ୟ ପରିଶ୍ରମ କରିଛନ୍ତି । ମୋର କୁଳପତି ନୋହିବାରେ, ବିଶ୍ୱବିଦ୍ୟାଳୟ ଆୟୋଗ କମିଶନର ସଭ୍ୟ ଦୁଇଥର ଯାକ ନ କରାଇଦେବାରେ, ଅଗ୍ରସର ଶିକ୍ଷା ଓ ଗବେଷଣା କେନ୍ଦ୍ର ଡାଇରେକ୍ଟର ଭାବରେ ପଚଷଠୀ ବର୍ଷ ପର୍ଯ୍ୟନ୍ତ ନରହିବାରେ ବିଶ୍ୱବିଦ୍ୟାଳୟ ଆୟୋଗ କମିଶନଙ୍କ ଅନୁମୋଦନକୁ କାର୍ଯ୍ୟକାରୀ କରାଇ ନଦେବାରେ ଓଡ଼ିଶାର ପଦସ୍ଥ ଲୋକେ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି । ମୋର ବିଭାଗକୁ ଅଗ୍ରସର ଶିକ୍ଷା ଓ ଗବେଷଣା କେନ୍ଦ୍ର କରାଇ ନ ଦେବାରେ ଏବଂ ମୋତେ ଜାତୀୟ ଫେଲୋସିପ ଦେବା ବିରୁଦ୍ଧରେ ସେମାନେ ମଧ୍ୟ ଲାଗି ପଡ଼ିଥିଲେ କିନ୍ତୁ ଏଥିରେ କୃତକାର୍ଯ୍ୟ ହୋଇପାରିନଥିଲେ । ଏହା ନିଶ୍ଚିତ ଭାବରେ ଗୋଟିଏ ଅଦ୍ଭୁତ ଘଟଣା । ତଥାପି ମୁଁ ଏମାନଙ୍କ ବିରୁଦ୍ଧରେ ଆଜିଯାଏଁ ଆପୋଷହୀନ ସଂଗ୍ରାମ କରିଚାଲିଛି । ମୋ ମତରେ ଏହାର ପ୍ରଧାନ କାରଣ ହେଲା ଯେ ଓଡ଼ିଶା ପରି ଅନୁନ୍ନତ ରାଜ୍ୟରେ ଜଣେ କେହି ଉପରକୁ ଉଠିଲେ ଅନ୍ୟମାନଙ୍କର ଅସହ୍ୟ ହୁଏ । କୁଷ୍ଠରୋଗୀଟିଏ ଯେପରି ଅନ୍ୟମାନଙ୍କୁ ଛୁଇଁ ଦେବାରେ ଆନନ୍ଦ ପାଏ କାରଣ ସେ ସମସ୍ତଙ୍କୁ ତା ଶ୍ରେଣୀଭୁକ୍ତ କରିବାକୁ ଚାହେଁ ସେହିପରି ସେ ନିଜେ ଉପରକୁ ଉଠି ନପାରିଲେ ଅନ୍ୟମାନଙ୍କୁ ମଧ୍ୟ ଉଠିବାକୁ ନ ଦେବାର ମନୋବୃତ୍ତି ଏମାନଙ୍କଠାରେ କାମ କରୁଥାଏ ।

■ ■ ■

# ୨୪
# ମୋର ପରିବାର

ବିଦେଶ ଯିବା ପୂର୍ବରୁ ମୁଁ ଭାରତୀୟ ପାରିବାରିକ ଜୀବନ ସଂପର୍କରେ ବହୁତ ଅସନ୍ତୁଷ୍ଟ ଓ ଅସହିଷ୍ଣୁ ଥିଲି । ପାଶ୍ଚାତ୍ୟ ଦେଶର ପାରିବାରିକ ଜୀବନ ଦୂରରୁ ସୁନ୍ଦର ଦେଖାଯାଉଥିଲା । ସେମାନଙ୍କର ସ୍ୱାମୀ-ସ୍ତ୍ରୀ ସମ୍ପର୍କ ଓ ପାରିବାରିକ ଜୀବନ ବହୁତ ଭଲ ଜଣାଯାଉଥିଲା । କିନ୍ତୁ ବହୁ ଦେଶ ବୁଲିଲା ପରେ ଏବଂ ତାଙ୍କର ପାରିବାରିକ ରୀତିନୀତି ବିଷୟରେ ମନସ୍ତାତ୍ତ୍ୱିକ ଦୃଷ୍ଟି କୋଣରୁ ଅନୁଧ୍ୟାନ କରିବା ପରେ ଆମ ଭାରତୀୟ ପାରିବାରିକ ଜୀବନ ପ୍ରତି ମୋର ସମ୍ମାନ ଓ ଆକର୍ଷଣ ବଢ଼ିଗଲା । ମୁଁ ବିଦେଶରେ ଆମ ପାରିବାରିକ ଜୀବନ ସପକ୍ଷରେ ଆଲୋଚନା କଲାବେଳେ ସେମାନେ ମୋ କଥା ମନଦେଇ ଶୁଣନ୍ତି । ସେ ଦେଶମାନଙ୍କରେ ଅନେକଙ୍କର ପାରିବାରିକ ଜୀବନ ଅଶାନ୍ତିମୟ ହୋଇପଡୁଛି ତେଣୁ ଆମ ମାନଙ୍କ ବିଷୟରେ ଜାଣିବାରେ ସେମାନଙ୍କର ବହୁତ ଆଗ୍ରହ । ମୋ ମତରେ ବର୍ତ୍ତମାନର ବିଶ୍ୱ ସଭ୍ୟତାକୁ ଯଦି ଭାରତର କିଛି ସାମାଜିକ ଅବଦାନ ଥାଏ ତାହା ହେଉଛି ଆମର ପାରିବାରିକ ସମ୍ପର୍କ । ଏହି ପରିପ୍ରେକ୍ଷୀରେ ଆଗର ପାରିବାରିକ ଆଦର୍ଶ ସମ୍ବନ୍ଧୀୟ ଗୋଟିଏ ଘଟଣା ଉଲ୍ଲେଖଯୋଗ୍ୟ । ମୋ ନନା ଥିଲେ ଗରିବ ପ୍ରାଥମିକ ସ୍କୁଲ ଶିକ୍ଷକ । ଆମର ଜମିବାଡ଼ି କିଛି ନଥିଲା । ନନା କହନ୍ତି ଯେ-

"ମୋର ବଡ଼ପୁଅ ଉଦୟନାଥ ମୋର ସବୁ ଜମି କାରଣ ସେ ଭଲ ପଢୁଥିଲେ । 'ପ୍ରକୃତରେ ତାହା ଅକ୍ଷରେ ଅକ୍ଷରେ ପାଳିତ ହୋଇଥିଲା । ନନାଙ୍କର ମୃତ୍ୟୁ ପରେ ଭାଇନା କଲେଜରେ ପଢ଼ିବାଦିନୁ ଅଧିକା ସମୟ ଟିଉସନ କରି ଆମମାନଙ୍କ ପାଖକୁ ଟଙ୍କା ପଠାଉଥିଲେ । ଚାକିରି କଲା ପରେ ଆମ ଭାଇମାନଙ୍କ ସହିତ ଆହୁରି ଅନେକ ବହୁ ଦୂର ସଂପର୍କୀୟ ବନ୍ଧୁବାନ୍ଧବ ମାନଙ୍କର ପିଲାଙ୍କୁ ପାଠ ପଢ଼ାଇ ଯୋଗ୍ୟ କରିବାରେ ବହୁ ଅର୍ଥ ବ୍ୟୟ କରିଥିଲେ । ସେତେବେଳେ ନନା ଚାଳିଶି ପଚାଶ ଏକର ଜମି କରିଥିଲେ କଅଣ ଆମେମାନେ ସବୁ ଏପରି ଭାବରେ ଯୋଗ୍ୟ ହୋଇ ପାରିଥାଆନ୍ତୁ ?

ଏଠାରେ ଗୋଟିଏ ମୌଳିକ ପ୍ରଶ୍ନ ଉଠେ ଯେ ଯେଉଁ ପରିବାର ପିଲାଙ୍କର ବିଦ୍ୟା ଉପରେ ଜୋର ନଦେଇ କେବଳ ଅର୍ଥ ଉପାର୍ଜନ ଓ ସଂପତ୍ତି ଠୁଳ କରିବାରେ ସମୟ

ଦିଅନ୍ତି ସେଠାରେ ଅନେକ ସମୟରେ ପିଲାମାନେ ବଡ଼ ହେଲାପରେ ଏହି ମୋଫତ୍ ସଂପତ୍ତିର ମୋହରେ ଭଲ ପାଠ ପଢ଼ନ୍ତି ନାହିଁ - ଏବଂ ପରେ ଅନ୍ୟର ଅର୍ଜିତ ସଂପତ୍ତିକୁ ଅପବ୍ୟୟ କରିବାରେ ହିଁ ଲାଗି ପଡ଼ନ୍ତି- ପାନ ସିଗାରେଟ୍ ମଦ ଖାଇବାରେ ଏହାକୁ ବ୍ୟୟ କରନ୍ତି । ଫଳରେ ଭାଗବତ ବାଣୀ "ଦୁଖେ ଅର୍ଜିତ ଯେତେ ଧନ ସେ ନହୁଏ ସୁଖେ ପ୍ରୟୋଜନ' ସତ ହୋଇଯାଏ ।

ଶିକ୍ଷାହିଁ ଆମର ଧନ । ଏହା ଆମ ପରିବାରର ଦାର୍ଶନିକ ଦୃଷ୍ଟିକୋଣ ହୋଇ ରହିଯାଇଛି । ଏହା ନନାଙ୍କର ବହୁମୂଲ୍ୟ ଅବଦାନ ।

ନନା, ବୋଉ ପିଲାଦିନରୁ ମରିଯାଇଥିବାରୁ ଏବଂ ଆମର କୌଣସି ପୈତୃକ ସମ୍ପତ୍ତି ନଥିବାରୁ ଆମ ଚାରିଭାଇଙ୍କର ଏକନିଷ୍ଠ ପରିବାର ହୋଇଯାଇଛି । ବଡ଼ଭାଇନା ସ୍ୱର୍ଗୀୟ ଉଦୟନାଥ ରଥ ଆଇ.ଏ.ଏସ୍. ଚାକିରିରୁ ଅବସର ନେଇ ଭୁବନେଶ୍ୱରରେ ଅଛନ୍ତି । ତାଙ୍କର ଛଅ ପୁଅ, ଦୁଇଝିଅ । ସେମାନଙ୍କ ଭିତରୁ ଦୁଇଜଣ ଆମେରିକାରେ ଅଛନ୍ତି, ଅନ୍ୟମାନେ ଭାରତରେ ଭଲରେ ଅଛନ୍ତି, ଜଣେ ଆଇ.ଇ.ଏସ୍, ଆଉ ଜଣେ ୟୁକୋ ବ୍ୟାଙ୍କର ବଡ଼ ଅଫିସର ଆଉ ଜଣେ ଇଞ୍ଜିନିୟର - ଇଫାର ମୁଖ୍ୟ ହିସାବରେ ଅବସର ନେଲେଣି । ଆଉ ଜଣେ କେତେକ ସ୍ୱାସ୍ଥ୍ୟଗତ କାରଣରୁ ଘରେ ଥାଏ । ଦୁଇ ଝିଅଙ୍କ ଭିତରୁ ଜଣେ କଟକରେ । ତାର ସ୍ୱାମୀ ଡାକ୍ତର କୁଳମଣି ମିଶ୍ର ଚକ୍ଷୁ ବିଭାଗରେ ମୁଖ୍ୟ ଅଧାପକ ଭାବରେ ଅବସର ନେଇଛନ୍ତି । ସାନ ଝିଅର ସ୍ୱାମୀ ଶ୍ରୀ ସନ୍ତୋଷ କୁମାର ନନ୍ଦ ବିଦ୍ୟୁତ୍‌ବୋର୍ଡ଼ର ଚେୟାରମ୍ୟାନ୍ ପଦରୁ ଅବସର ନେଇ ଭୁବନେଶ୍ୱରରେ ଥା'ନ୍ତି । ସବୁ ଝିଆରୀ ପୁତୁରାମାନଙ୍କ ସହିତ ଆମର ଘନିଷ୍ଠ ସମ୍ପର୍କ ରହିଛି । ମୋର ସାନଭାଇ ଦେବେନ୍ଦ୍ରନାଥର ୧୯୮୧ରେ ମୃତ୍ୟୁ ହୋଇଯାଇଛି । ସେ ବ୍ରଜରାଜ ନଗର କାଗଜ କଳର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଥିଲେ । ତାଙ୍କର ଗୋଟିଏ ପୁଅ ଓ ଦୁଇଟି ଝିଅ । ଗୋଟିଏ ଝିଅର ସ୍ୱାମୀ ଜଣେ ସାମରିକ ଅଫିସର ଥିଲେ । ଦ୍ୱିତୀୟ ଝିଅର ସ୍ୱାମୀ ଆଇ.ପି.ଏସ୍. ଅଫିସର । ପୁଅ ଭୁବନେଶ୍ୱରରେ ବ୍ୟବସାୟ କରେ ଏବଂ ସମସ୍ତେ ଭୁବନେଶ୍ୱରରେ ତାଙ୍କ ନିଜ ଘରେ ରହନ୍ତି । ସେମାନଙ୍କ ସହିତ ମଧ ଆମର ସମ୍ପର୍କ ଅକ୍ଷୁର୍ଣ୍ଣ ରହିଛି । ଆଉ ଜଣେ ଭାଇନା ସ୍ୱର୍ଗୀୟ ବୀରଭଦ୍ର ମିଶ୍ର ପିଲାଦିନୁ ପୋଷ୍ୟପୁତ୍ର ହୋଇ ପାରିକୁଦରେ ଥା'ନ୍ତି । ତାଙ୍କର ଜମିବାଡ଼ି ଅଛି । ସେ ଓ ତାଙ୍କର ପିଲାମାନେ ଆମ ଘରକୁ ଯିବାଆସିବା କରନ୍ତି । ଆଉ ଦୁଇ ନାନୀଙ୍କ ଭିତରୁ ବଡ଼ ନାନୀଙ୍କର ୮୫ବର୍ଷ ବୟସରେ ୧୯୮୬ରେ ମୃତ୍ୟୁ ହୋଇଯାଇଛି । ସାନ ନାନୀ ତାଙ୍କ ପୁଅମାନଙ୍କ ପାଖରେ ରହନ୍ତି । ତାଙ୍କର ଦୁଇ ପୁଅ ଚାକିରି କରି ସୁପ୍ରତିଷ୍ଠିତ ହୋଇଛନ୍ତି । ଜଣେ ବିଦ୍ୟୁତ୍ ବିଭାଗରେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର ଏବଂ ଆଉ ଜଣେ ଲାଠିକଟା ଓଡ଼ିଶା ଶିଳ୍ପ କାରଖାନାର ଜେନେରାଲ୍ ମ୍ୟାନେଜର ଥିଲେ । ଏହି ଦୁଇ ଭଣଜାଙ୍କର ପିଲାଦିନେ ପିତୃ ବିୟୋଗ ହୋଇଥିବାରୁ ଭାଇନା ଓ ମୁଁ ସେମାନଙ୍କର ଦାୟିତ୍ୱ ନେଇଥିଲୁ । ସେମାନେ ଆମମାନଙ୍କୁ ବହୁତ ସମ୍ମାନ କରନ୍ତି ଏବଂ ଆମ ସହିତ ସେମାନଙ୍କର ଘନିଷ୍ଠ ପାରିବାରିକ ସମ୍ପର୍କ ରଖିଛନ୍ତି । ତାଙ୍କର ଏକମାତ୍ର ଝିଅ ଭୁବନେଶ୍ୱରରେ ଭଲରେ ଅଛି ।

ମୋର ଏକାନ୍ନବର୍ତ୍ତୀ ପରିବାର ସହିତ ମୋର ଭାଇ, ଭଉଣୀ ଓ ତାଙ୍କର ପିଲାମାନଙ୍କର ଘନିଷ୍ଠ ମନସ୍ତାତ୍ତ୍ୱିକ ଓ ସାମାଜିକ ସମ୍ପର୍କ ତଥା ସ୍ନେହ, ସୌହାର୍ଦ୍ଦ୍ୟ ଓ

ସହଯୋଗ ଗଭୀର ଭାବରେ ରହିଥିବାରୁ ଆମମାନଙ୍କ ଭିତରେ ଗୋଟିଏ ବିରାଟ ନିରାପତ୍ତା ଭାବ ରହିପାରିଛି । ବରଂ ପାରସ୍ପରିକ ଅର୍ଥନୈତିକ ନିର୍ଭରତା ନ ଥିବାରୁ ସାମାଜିକ ଓ ପାରିବାରିକ ସମ୍ପର୍କ ଆହୁରି ଦୃଢ଼ତର ହୋଇପାରିଛି । ଅର୍ଥନୈତିକ ଦୃଷ୍ଟିରୁ ଯୌଥ ପାରିବାରିକ ସମ୍ପର୍କ ନଥାଇ ମଧ୍ୟ ମନସ୍ତାତ୍ତ୍ୱିକ ସ୍ତରରେ ପାରସ୍ପରିକ ନିର୍ଭରଶୀଳ ପାରିବାରିକ ସମ୍ପର୍କ ରହିପାରିଛି । ବଳିଷ୍ଠ ପାରିବାରିକ ସହଯୋଗୀ ନିର୍ଭରଶୀଳତା ସହିତ ବନ୍ଧୁବାନ୍ଧବମାନଙ୍କର ସମ୍ପର୍କ ଘନିଷ୍ଠ ଭାବରେ ଜଡ଼ିତ ହୋଇପାରିଲେ ଏ ପ୍ରକାର ନିରାପତ୍ତାଗତ ସନ୍ତୋଷ ଆହୁରି ବଢ଼ିଯାଏ । ଏ କ୍ଷେତ୍ରରେ ମୋର ଏକମାତ୍ର ସଢୁ ଓଡ଼ିଶା ହାଇକୋର୍ଟର ଭୂତପୂର୍ବ ମୁଖ୍ୟ ବିଚାରପତି ଶ୍ରୀ ଗତିକୃଷ୍ଣ ମିଶ୍ର ଓ ଦୁଇ ଶଳା ଭୂତପୂର୍ବ ପୋଲିସ୍ ଆଇ.ଜି. ବ୍ରଜବିହାରୀ ମିଶ୍ର ଓ ପୁରୀର ଆଡ଼ଭୋକେଟ୍ ଶ୍ରୀ ଭକ୍ତବିହାରୀ ମିଶ୍ରଙ୍କର ସ୍ନେହ ଓ ସଦିଚ୍ଛାପୂର୍ଣ୍ଣ ଆନ୍ତରିକ ସମ୍ପର୍କ ଉଲ୍ଲେଖଯୋଗ୍ୟ । ଏ ପ୍ରକାର ବିରାଟ ପାରିବାରିକ ସନ୍ତୋଷ ଓ ପରିପୂର୍ଣ୍ଣତା ଭାରତ ବାହାରେ ପ୍ରାୟ ଦେଖାଯାଏ ନାହିଁ । ଠିକ୍ ଏହି ଗୋଟିଏ କାରଣରୁ ଭାରତ ବାହାରେ ଥିବା ଭାରତୀୟମାନେ ଅନେକ ସମୟରେ ନିଜକୁ ବହୁତ ଅସହାୟ ଓ ନିଃସଙ୍ଗ ମନେକରନ୍ତି ।

ମୋର ଦୁଇ ପୁଅ ଓ ଦୁଇ ଝିଅ । ସମସ୍ତେ ବିବାହ କରି ଘରସଂସାର କଲେଣି ଏବଂ ଜୀବନରେ ସୁପ୍ରତିଷ୍ଠିତ ମଧ୍ୟ । ମୋର ପାଞ୍ଚ ନାତି ଓ ଗୋଟିଏ ନାତୁଣୀ । ତେଣୁ ବର୍ତ୍ତମାନ ମୋ ସ୍ତ୍ରୀଙ୍କ ସହିତ ମୋର ଦୁଇପୁଅ, ଦୁଇ ଝିଅ, ଦୁଇ ଜ୍ୱାଇଁ, ଦୁଇ ବୋହୂ, ପାଞ୍ଚ ନାତି ଓ ଗୋଟିଏ ନାତୁଣୀ ଆମ ପରିବାରର ଅନ୍ତର୍ଭୁକ୍ତ । ବଡ଼ପୁଅ ଡକ୍ଟର ଅମିତାଭ ରଥ ଆଇ.ଆଇ.ଟି. ଖଡ଼ଗପୁରରୁ ମେକାନିକାଲ ଇଞ୍ଜିନିୟରିଂ ପାଶ୍ କରି ଯୁକ୍ତରାଷ୍ଟ୍ର ଆମେରିକାର ସାନ୍‌ଫ୍ରାନ୍ସିସ୍କୋରେ ଥିବା ବର୍କଲେ ବିଶ୍ୱବିଦ୍ୟାଳୟରୁ ଅପରେସନ୍ ରିସର୍ଚ୍ଚରେ ଡକ୍ଟରେଟ୍ କରି ସେଠାରେ ପ୍ରାୟ ଆଠବର୍ଷ କଟାଇଥିଲା । ତା'ପରେ ଦିଲ୍ଲୀର ମାନେଜମେଣ୍ଟ ଡେଭଲପ୍‌ମେଣ୍ଟ ଅନୁଷ୍ଠାନରେ ସାତବର୍ଷ ଅଧ୍ୟାପକ ଥିଲା । ସେ କାନାଡ଼ାର ପ୍ରତିଷ୍ଠିତ ଆନ୍ତର୍ଜାତିକ ବିକାଶ ଓ ଗବେଷଣା କେନ୍ଦ୍ରରେ (I.D.R.C.)ଜଣେ ସହଯୋଗ ଡିରେକ୍ଟର ଭାବରେ କିଛିଦିନ କାମ କଲାପରେ ଗୋଟିଏ ପରାମର୍ଶଦାତା ସଂଗଠନର ମୁଖ୍ୟ ହିସାବରେ ବହୁ ଧରଣର ଆନ୍ତର୍ଜାତିକ ଗବେଷଣା କରେ । ସେ ଭାରତ ଓ ଏସିଆରେ ଗବେଷଣା ଦାୟିତ୍ୱରେ ରହିଛି । ତା'ର ଦୁଇଟି ପୁଅ । ସେ ଆମେରିକୀୟ ଝିଅ ବିବାହ କରିଛି । ମୋର ଏ ବୋହୂ ଭାରତରେ ରହିବାକୁ ଭାରି ଭଲପାଏ । ମଝିରେ ମଝିରେ ଆସି ଆମ ଘରେ ମାସେ ପନ୍ଦର ଦିନ କଟାଏ । ଶାଢ଼ୀ ପିନ୍ଧେ, ସିନ୍ଦୂର ଲଗାଏ, ଆମ ଖାଇବା ଖାଏ, ଘର କାମ କରେ, ଭୋଜି ଭାତରେ ସମସ୍ତଙ୍କ ସହିତ ମିଳିମିଶି ଆଗ୍ରହରେ କାମ କରେ । ସେ ବହୁତ ଭଲ ପ୍ରକୃତିର ଝିଅଟିଏ । ଆମ ଘରେ ଏକାବେଳେକେ ଭାରତୀୟ ବୋହୂ ପରି ଚଳେ । ତାକୁ ସମସ୍ତେ ଭଲ ପାଆନ୍ତି ।

ଦ୍ୱିତୀୟ ପୁଅ ଡକ୍ଟର ବିଶ୍ୱଜିତ୍ ରଥ କଟକ ମେଡିକାଲ କଲେଜରୁ ଏମ୍.ଡି. କରି ଇଂଲଣ୍ଡରେ ଏମ୍.ଆର୍.ସି.ପି. କରି ସାରି ହୃଦ୍‌ରୋଗ କ୍ଷେତ୍ରରେ ଅଧିକ ଅଭିଜ୍ଞତା ହାସଲ କରି ଇଂଲଣ୍ଡରେ ସତରବର୍ଷ ରହିଲା ପରେ ବର୍ତ୍ତମାନ ବାଙ୍ଗାଲୋରଠାରେ ଘରୋଇ ଚିକିତ୍ସା କେନ୍ଦ୍ର ସ୍ଥାପନ କରିଛି ଏବଂ ଭିନ୍ନ ଭିନ୍ନ ଡାକ୍ତରଖାନାରେ ଯାଇ କାମ କରେ । ତା'ର ଗୋଟିଏ ପୁଅ । ତା'ର ସ୍ତ୍ରୀ ମଧ୍ୟ ଡାକ୍ତର । ବିଶିଷ୍ଟ ଡକ୍ଟର ସଦାନନ୍ଦ ନାୟକ

ଏଫ୍.ଆର୍.ସି.ଏସ୍.ଙ୍କର ସେ ହେଉଛି ଜ୍ୟେଷ୍ଠା କନ୍ୟା । ତାଙ୍କର ଏକମାତ୍ର ପୁତ୍ର ଶ୍ରୀ ଶ୍ୱଜିତ ରଥ ମଧ୍ୟ ଖୁବ୍ ଭଲ ଛାତ୍ର ।

ବଡ଼ ଝିଅ ଶ୍ରୀମତୀ ସଂଯୁକ୍ତା ଦାଶ ମନସ୍ତତ୍ତ୍ୱରେ ଏମ୍.ଏ. ପାଶ୍ କରି ବର୍ତ୍ତମାନ ବୈବାହିକ ଜୀବନଯାପନ କରୁଛି । ତା'ର ଦୁଇ ପୁଅ । ତା'ର ସ୍ୱାମୀ ଡକ୍ଟର ପ୍ରଦୀପ୍ତ କିଶୋର ଦାଶ ରାଉରକେଲା ଇଞ୍ଜିନିୟରିଂ କଲେଜରେ ବିଦ୍ୟୁତ୍ ବିଭାଗର ଅଧ୍ୟାପକ ଏବଂ କମ୍ପ୍ୟୁଟର ଗବେଷଣା ବିଶେଷଜ୍ଞ । ଦେଶ ବିଦେଶରେ ତାଙ୍କର ଏଥିଲାଗି ବହୁତ ଖ୍ୟାତି ଏବଂ ପ୍ରାୟ ପ୍ରତିବର୍ଷ ଏହି କାର୍ଯ୍ୟରେ ବହୁଦେଶ ଭ୍ରମଣ କରନ୍ତି । ତାଙ୍କୁ ଗବେଷଣା ପାଇଁ ଭାରତ ସରକାର ପ୍ରଚୁର ଅନୁଦାନ ଯୋଗାଇ ଦେଉଛନ୍ତି । ତାଙ୍କର ଦୁଇପୁଅ । ସିଦ୍ଧାର୍ଥ ଏବଂ ସଂଜୀବ । ସିଦ୍ଧାର୍ଥ ଇଂଜିନିଅରିଙ୍ଗ୍ ମାନେଜମେଣ୍ଟ ପାଶକରି ବମ୍ବେରେ ଗୋଟିଏ ଆନ୍ତର୍ଜାତିକ ଶିକ୍ଷାନୁଷ୍ଠାନରେ ଗୋଟିଏ ଉଚ୍ଚ ପଦବୀରେ ଅବସ୍ଥାପିତ ହୋଇଛି, ସଂଜୀବ ଆଇ.ଆଇ.ଟି ଦିଲ୍ଲୀରୁ କଂପ୍ୟୁଟର ଏବଂ ଗଣିତ ଶାସ୍ତ୍ରରେ ଡିଗ୍ରୀ କରି ପାଶ୍ କରି ଆମେରିକାରେ ଡକ୍ଟରେଟ୍ କରୁଛି । ସଂଯୁକ୍ତା ମନସ୍ତତ୍ତ୍ୱରେ ଲେକଚରର ଚାକିରି ପାଇଥିଲେ ମଧ୍ୟ ତାଙ୍କ ଗ୍ରହଣ ନକରି ଦୁଇ ପୁଅଙ୍କର ଲାଳନ ପାଳନ କାମ କରିବାକୁ ପସନ୍ଦ କଲେ ।

ସାନଝିଅ ଶ୍ରୀମତୀ ସଂଗୀତା ମିଶ୍ର । ସେ ମନସ୍ତତ୍ତ୍ୱରେ ଏମ୍ଏ, ଏ.ଫିଲ ଏବଂ ଡକ୍ଟରେଟ କରିଛି । ବର୍ତ୍ତମାନ ଭଦ୍ରକ କଲେଜରେ ଲେକଚରର । ତାର ସ୍ୱାମୀ ଶ୍ରୀଯୁକ୍ତ ମାନସରାମ ମିଶ୍ର । ସେ ଖଡ଼ଗପୁର ଆଇ.ଆଇ.ଟିରୁ ଏମ୍ଟେକ୍ କରି ବର୍ତ୍ତମାନ ଫାକର କଂପାନୀରେ ଡେପୁଟି ଜେନେରାଲ ମେନେଜର ଅଛି । ସେମାନଙ୍କର ଏକମାତ୍ର ଝିଅ ମିତାଲୀ ଶେଷ ସ୍କୁଲପରୀକ୍ଷାଦେବ । ସେ ଖୁବ୍ ଭଲଛାତ୍ରୀ । ଝିଅ ଓ ମା ଗୀତରେ ବଡ଼ଦୁରନ୍ଧର । ବଗିଚାରେ ମଧ୍ୟ ଏମାନେ ସମସ୍ତେ ଅତ୍ୟନ୍ତ ଅଗ୍ରହୀ ପ୍ରତି ବର୍ଷ ବଗିଚାରେ ପ୍ରଥମ ହୁଅନ୍ତି ।

ମୋର ପାରିବାରିକ ଜୀବନ ଅତ୍ୟନ୍ତ ସୁଖକର ଓ ଆନନ୍ଦଦାୟକ । ଏମାନଙ୍କୁ ଉପଯୁକ୍ତ ମଣିଷ କରି ପ୍ରତିଷ୍ଠିତ କରିବାରେ ଆମକୁ କିଛି ଦୁଶ୍ଚିନ୍ତା ବା ଉଦ୍‌ବିଗ୍ନତା ଦେଇ ଗତି କରିବାକୁ ପଡ଼ିନାହିଁ । ସମସ୍ତେ ଖୁବ୍ ଭଲ ପଢୁଥିଲେ ଏବଂ କୌଣସି ପାରିବାରିକ ଅଶାନ୍ତି ସୃଷ୍ଟି ନ କରି ଜୀବନରେ ପ୍ରତିଷ୍ଠିତ ହୋଇପାରିଛନ୍ତି । ମୋର ବଡ଼ପୁଅ ଆମେରିକୀୟ ଝିଅ ଓ ସାନପୁଅ ଖଣ୍ଡାୟତ ଘରେ ବିବାହ ପ୍ରସ୍ତାବ ବେଳେ ମୋ ସ୍ତ୍ରୀଙ୍କ ମନରେ କିଛି ଆଶଂକା ଯେ ନ ହୋଇଛି ତାହା ନୁହେଁ, କିନ୍ତୁ ବୋହୂମାନେ ଏତେ ଭଲ ଯେ ବିବାହ ପରେ ଆମେ ସମସ୍ତେ ବଡ଼ ଆନନ୍ଦରେ ଅଛୁ । କୌଣସି ଜାତିଆଣ ବା ଦେଶବିଦେଶ ଭେଦଭାବ ଯୋଗୁଁ ଯେ ମୋ ସ୍ତ୍ରୀ ପ୍ରଥମ ଅବସ୍ଥାରେ ବିବାହ ପ୍ରସ୍ତାବରେ ବିଚଳିତ ହୋଇଥିଲେ ତାହା ନୁହେଁ, ସେ ଜଣେ ପରମ୍ପରାଗତ ମାଆ ହିସାବରେ ନିଜକୁ ଅବହେଳିତ ମନେ କରିଥିଲେ । ଏପ୍ରକାର ପ୍ରତିକ୍ରିୟା ତାଙ୍କ ପକ୍ଷରେ ହେବା ସ୍ୱାଭାବିକ । ପ୍ରତ୍ୟେକ ଭାରତୀୟ ମାଆ ଚାହେଁ ଖୋଜାଖୋଜି କରି ତା' ମନମୁତାବକ ବୋହୂ ବାଛିବ । ଏ କ୍ଷେତ୍ରରେ ତାଙ୍କର ଅନ୍ୟ ବନ୍ଧୁମାନେ, ସାଙ୍ଗସାଥୀମାନେ ମାସ ମାସ ଧରି ବୋହୂ ଖୋଜିବାର ସାମାଜିକ ଚଳଣିରେ ସେ ଅଭ୍ୟସ୍ତ । ମୋ ପରି ସେ ସବୁ କ୍ଷେତ୍ରରେ ଉଗ୍ର ସଂସ୍କାରକ ହୋଇଯିବା ନିଶ୍ଚିତ ଭାବରେ କଷ୍ଟକର । ତେଣୁ ସେ ନିଜକୁ ଅବହେଳିତ ମନେକରି ବିବ୍ରତ ହୋଇ ପଡ଼ିଥିଲେ । କିନ୍ତୁ ବିବାହ ପରେ ସେ ଯେପରି ଭାବରେ ବୋହୂମାନଙ୍କ ସଙ୍ଗରେ ମିଶିଗଲେ, ସେମାନଙ୍କୁ

ନିଜର କରିନେଲେ ସେଥିରେ ତାଙ୍କର ବାହାଦୁରୀ ନିଶ୍ଚୟ । ତାହା ନ ହୋଇଥିଲେ ଆମର ପାରିବାରିକ ଜୀବନ ବିପର୍ଯ୍ୟସ୍ତ ହୋଇପଡ଼ିଥାନ୍ତା । ଏପରି ସ୍ନେହ ସୌହାର୍ଦ୍ଦପୂର୍ଣ୍ଣ ପାରିବାରିକ ବାତାବରଣ ସମ୍ଭବ ହୋଇପାରି ନଥାନ୍ତା । ମୋର ଦୁଇ ପୁଅଙ୍କର ବିବାହ ନେଇ ମୋ ମନରେ କୌଣସି ଅଶାନ୍ତି, ଉଦ୍‌ବିଗ୍ନତା ଦେଖାଦେଇ ନଥିଲା । ମୁଁ ତ ମୋର ପାରିବାରିକ ଜୀବନ ଆରମ୍ଭରୁ ହିଁ ଜାତି, ଧର୍ମ, ବର୍ଣ୍ଣଗତ ପାର୍ଥକ୍ୟକୁ କୁସଂସ୍କାର ବୋଲି ପ୍ରଚାରି କରିଆସିଛି, ସେହି କାରଣରୁ ପିଲାଙ୍କୁ ବ୍ରତ କଲି ନାହିଁ । ଆମ ଘରେ ଜାତିଆଣ ଓ ବିଭିନ୍ନ ଧର୍ମଗତ ବିଷୟ ନେଇ କୌଣସି ପ୍ରକାରର ବିଦ୍ୱେଷମୂଳକ ଆଲୋଚନା ହୁଏନାହିଁ । ତେଣୁ ମୋ ପୁଅମାନେ କାହାକୁ ଭଲ ପାଇଲା ବେଳେ ତା' ଜାତି ଓ ଧର୍ମକୁ ଆଖି ଆଗରେ ନ ରଖି ଯେଉଁ ଝିଅ ଭଲ ବୋଲି ସେମାନଙ୍କର ଧାରଣା ହେଲା ସେମାନଙ୍କୁ ଭଲପାଇ ବସିଲେ । ଏଥିରେ ବା ସେମାନଙ୍କର ଦୋଷ କ'ଣ ? ଘରେ ଯଦି ପ୍ରତି ସମୟରେ ଜାତି ଧର୍ମ ନେଇ ଘୃଣାବ୍ୟଞ୍ଜକ ଭାଷା ବ୍ୟବହାର କରି ସେମାନଙ୍କଠାରୁ ଆମ ଜାତି ବା ଧର୍ମ କେତେ ଉଚ୍ଚରେ ବୋଲି ଆମେ ଆଲୋଚନା କରୁଥାନ୍ତୁ ତାହାହେଲେ ପୁଅମାନେ ଭଲ ପାଇଲାବେଳକୁ ଆଗ ଜାତି ବା ଧର୍ମକଥା ଭାବନ୍ତେ । କିନ୍ତୁ ପିଲାଦିନୁ ଏକଥା ନ ଶୁଣିଲେ ସେମାନଙ୍କର ଜାତି, ଧର୍ମ ବିଦ୍ୱେଷ ରହିବ କିପରି ? ସେମାନେ ଭଲ ପାଇଲା ବେଳେ ସେମାନଙ୍କର ଜାତି ବିଷୟରେ ନ ଭାବିବା ସ୍ୱାଭାବିକ ।

ଆମ ପରିବାରର ଆଉ ଗୋଟିଏ ଅଭିନବ ରୀତି, ଯାହା ବହୁତ କମ୍ ଦେଖାଯାଏ । ଆମ ଘରେ ପୂଜାପୂଜି, ଛୁଆଁଛୁତି, ବାଛବିଚାରଗତ ଅଭ୍ୟାସ ଆଦୌ ନାହିଁ । ମୋର ହେତୁବାଦ ଓ ସାର୍ବଜନୀନ ମାନବିକତା ପ୍ରତି ଗଭୀର ଆସକ୍ତି ମୋ ପରିବାରକୁ ବହୁତ ପ୍ରଭାବିତ କରିଛି । ମୋ ସ୍ତ୍ରୀ ଓ ପିଲାମାନେ ମୋ'ପରି ନାସ୍ତିକ ନଥିଲେ ସୁଦ୍ଧା ଧର୍ମଗତ ବାହ୍ୟ ଜାକଜମକରେ ବିଶ୍ୱାସ କରନ୍ତି ନାହିଁ । ଆମଘରେ କୌଣସି ପର୍ବ ପାଳିତ ହୁଏନାହିଁ । ଏଥିପାଇଁ ଆମେ ଏପରି ପରିଚିତ ହୋଇଯାଇଛୁ ଯେ ପର୍ବପର୍ବାଣିରେ ଅନ୍ୟମାନଙ୍କ ଘରୁ ଆମ ପାଇଁ ପିଠାପଣା ବହୁତ ଆସେ । ଫଳରେ ଆମ ପକ୍ଷରେ ଏହା ଗୋଟିଏ ସୁବିଧାଜନକ ଅଭ୍ୟାସରେ ପରିଣତ ହୋଇଯାଇଛି ।

ମୋ ମତରେ ପାରିବାରିକ ପରିବେଶହିଁ ପିଲାମାନଙ୍କର ଭବିଷ୍ୟତରେ ବଳିଷ୍ଠ ମନୋଭାବ ପ୍ରତିଷ୍ଠା ପାଇଁ ମୂଳଦୁଆ ତିଆରି କରିଥାଏ । ସେହି ମୌଳିକ ଆଭିମୁଖ୍ୟ ଅନୁସାରେ ସେମାନେ ବାହାର ଦୁନିଆରେ ବିଭିନ୍ନ ମତାମତ ଗ୍ରହଣ କରନ୍ତି । ତେଣୁ ପରିବାର ହେଉଛି ଭବିଷ୍ୟତ ବ୍ୟକ୍ତିତ୍ୱ ଓ ଚରିତ୍ର ଗଠନ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଯେଉଁମାନେ କହନ୍ତି ଯେ ତାଙ୍କ ପିଲା ଖୁବ୍ ଭଲଥିଲା କିନ୍ତୁ ବାହାରର ଖରାପ ପିଲାଙ୍କ ସହିତ ମିଶି ଖରାପ ହୋଇଗଲା ସେମାନେ ନିଜ ମୁଣ୍ଡରୁ ଦାୟିତ୍ୱ ଓହ୍ଲାଇ ଦେବାପାଇଁ ଏପରି କଥା କହନ୍ତି । ଅବଶ୍ୟ ପରିବାରର ଅର୍ଥ ନୁହେଁ ନୀରବ ଓ ମୂକ ବାପମାଆ । ଏମାନେ ପିଲାଙ୍କ ସହିତ ବସି ସବୁ ବିଷୟରେ କଥାବାର୍ତ୍ତା ନକଲେ...ମନ ଖୋଲି ସେମାନଙ୍କ ସହିତ ନ ମିଶିଲେ ପିଲାମାନେ ସେମାନଙ୍କଠାରୁ କ'ଣ ଶିଖିବେ ? ଘରର ବାତାବରଣ ସ୍ନେହ ସୌହାର୍ଦ୍ଧ୍ୟପୂର୍ଣ୍ଣ ନ ହେଲେ ପିଲାମାନେ ବାହାର ପିଲା ଓ ଲୋକଙ୍କ ସହ ବେଶି ମିଶନ୍ତି ଓ ସେମାନଙ୍କଠାରୁ ଭଲ ମନ୍ଦ ଶିଖିବାର ସୁଯୋଗ ପାଆନ୍ତି । ଏ ବିଷୟରେ ଆମେମାନେ

ସବୁବେଳେ ସଚେତନ ଥାଉ । ମୁଁ ଯେତେ କାର୍ଯ୍ୟବ୍ୟସ୍ତ ଥିଲେ ମଧ୍ୟ ଘରକୁ ଆସିଲାକ୍ଷଣି ପିଲାଙ୍କ ସହିତ କଥାବାର୍ତ୍ତା କରେ, ସେମାନଙ୍କ ସହିତ ବହୁ ସମୟ ଧରି ହସଖୁସି କରି ଗପେ । ବର୍ତ୍ତମାନ ମୋ ନାତି ନାତୁଣୀମାନଙ୍କ ସହିତ ସେହିପରି ଭାବରେ ମିଶୁଛି ।

ପିଲାମାନଙ୍କୁ ପାଳିବା ବିଷୟରେ ମୁଁ ଓ ମୋ ସ୍ତ୍ରୀ ପ୍ରାୟ ଏକମତ । ଆମେମାନେ ପିଲାମାନଙ୍କୁ କୌଣସି ପରିସ୍ଥିତିରେ ସୁଦ୍ଧା ମାରିବା ସପକ୍ଷରେ ନୋହୁ । ପିଲାଙ୍କୁ ବୁଝାଇଶୁଝାଇ ଯେତିକି କାମ କରିହେବ ଶାସ୍ତି ଦେଇ ସେତିକି କାମ କଦାପି କରିହେବ ନାହିଁ ବୋଲି ଆମର ଦୃଢ଼ ମତ । ମୁଁ ଅବଶ୍ୟ ପିଲାଙ୍କୁ ଅଖଣ୍ଡ ସ୍ୱାଧୀନତା ଦେବା ସପକ୍ଷରେ । ମୋ ସ୍ତ୍ରୀ କିନ୍ତୁ ଏ କ୍ଷେତ୍ରରେ ବଡ଼ ସାବଧାନ । ସ୍ୱାଧୀନତା ଦେଲା ପରେ ସେମାନଙ୍କର ଅନୁଭୂତି ବିଷୟରେ ସେମାନଙ୍କ ସହିତ ବିଶଦ ଆଲୋଚନା ହେଲେ ସେମାନେ ପ୍ରକୃତରେ ବେଶି ଶିଖି ପାରିବେ, ତାଙ୍କର ଆତ୍ମବିଶ୍ୱାସ ବଢ଼ିଯିବ । ଏହି ଆଭିମୁଖ୍ୟ ନେଇ ମୁଁ ମୋ ପିଲାଙ୍କ ସହିତ ସବୁ ବିଷୟରେ ଆଲୋଚନା କରେ । ସେମାନଙ୍କୁ ମୁଁ ବନ୍ଧୁ ଭାବରେ ଗ୍ରହଣ କରିବାକୁ ଚାହେଁ । ଏହା ବହୁ ପରିବାରରେ ସମ୍ଭବ ନୁହେଁ । ପିଲାମାନେ ଯେତେ ପାଟିକଲେ, ଯେତେ ଖେଳକୁଦ, ଧାଁ'ଦଉଡ଼ କଲେ ବା ଦୁଷ୍ଟାମି କରି କିଛି ଜିନିଷପତ୍ର ଭାଙ୍ଗିଦେଲେ ମଧ୍ୟ ମୁଁ ବିରକ୍ତ ହୁଏ ନାହିଁ । ତେଣୁ ସେମାନେ ମୋତେ ଭଲ ପାଆନ୍ତି, ମନ ଖୋଲି ମୋତେ ବହୁତ କଥା କହନ୍ତି । ମୋ ଝିଅମାନେ କହନ୍ତି ଯେ ମୋ ସହିତ ସେମାନେ ଯେପରି ମିଶନ୍ତି ଓ କଥାବାର୍ତ୍ତା କରନ୍ତି ତାହା ଦେଖି ତାଙ୍କର ସାଙ୍ଗମାନେ ଆଶ୍ଚର୍ଯ୍ୟ ହୋଇଯାନ୍ତି । ମୋର ପୂର୍ଣ୍ଣ ବିଶ୍ୱାସ ଯେ ଏହିସବୁ କାରଣରୁ ଆମ ପିଲା ଓ ଆମମାନଙ୍କ ଭିତରେ ଭଲ ବୁଝାମଣା ଓ ସ୍ନେହ ସୌହାର୍ଦ୍ଦ୍ୟ ଗଢ଼ିଉଠିଛି ।

ଆମ ପରିବାରର କେହି ଜଣେ ହେଲେ ତାସ, ଲୁଡ଼ ପ୍ରଭୃତି ଖେଳରେ ଆଦୌ ଆଗ୍ରହୀ ନୁହଁନ୍ତ । ଘରେ ସମସ୍ତେ ଏକଜୁଟ୍ ହେଲେ ଆମମାନଙ୍କ ଭିତରେ ସବୁଠାରୁ ଆନନ୍ଦଦାୟକ ଘଟଣା ହେଲା ସମସ୍ତେ ମିଶି କେବଳ ଗପିବା । ଘଣ୍ଟା ଘଣ୍ଟା ଧରି ଏପରି ଗପ ଜମେ । ସକାଳେ ଖାଇବା ପୂର୍ବରୁ ଦୁଇ ତିନି ଘଣ୍ଟା ତାପରେ ପ୍ରାୟ ଅପରାହ୍ଣ ଚାରିଟାଠାରୁ ରାତି ବାରଟା ପର୍ଯ୍ୟନ୍ତ ସମସ୍ତେ ମିଶି ଗପରେ ଲାଗିଯାଉ । ଏତେ ସମୟ ଗପ ଅର୍ଥ ପୃଥିବୀର ଯାବତୀୟ କଥା ବିଷୟରେ ଆଲୋଚନା ହେଲା ସ୍ୱାଭାବିକ । ନାନା ଲୋକଙ୍କର ନାନା ଧରଣର ଅଭ୍ୟାସ, ଚାଲି ଚଳଣି ବ୍ୟାବହାରିକ ରଙ୍ଗଢଙ୍ଗ ବହୁ ଅପସଂସ୍କୃତିଗତ ଅଭ୍ୟାସର ଶେଷ ପରିଣତି, ବିଭିନ୍ନ ଦେଶର ରୀତିନୀତି ପ୍ରଭୃତି ସମସ୍ତ ବିଷୟରେ ପିଲା ବଡ଼ମାନେ ଏକାଠି ଗପିଲେ ପିଲାମାନଙ୍କ ଉପରେ ଯେପରି ପ୍ରଭାବ ପଡ଼ିବ ମଝିରେ ମଝିରେ କେବଳ ଶାସ୍ତି ଦେଇ କିମ୍ବା କୌଣସି ଖରାପ ଅଭ୍ୟାସ ବିରୁଦ୍ଧରେ ସାବଧାନ କରାଇଦେଲେ ଅନ୍ୟାନ୍ୟମାନଙ୍କଠାରୁ ଶିଖିଥିବା କେତେକ କୁଅଭ୍ୟାସକୁ ବଦଳାଇବା ସଂଭବ ନୁହେଁ । ତା ଅର୍ଥ ଶିକ୍ଷା, ସଂସ୍କୃତି, ସାମାଜିକତା, ଦୁର୍ନୀତି ଭ୍ରଷ୍ଟାଚାର ପ୍ରଭୃତି ଯାବତୀୟ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ମାଧ୍ୟମରେ ହିଁ ଆମ ସମସ୍ତଙ୍କର ପ୍ରକୃତ ଶିକ୍ଷା ଲାଭ ହୁଏ । ବଡ଼ମାନଙ୍କୁ ମଧ୍ୟ ସମାଲୋଚନା କରିବାର ଅଧିକାର ସମସ୍ତଙ୍କର ଥାଏ । ଆମେମାନେ ମଧ୍ୟ ଆମର କେତେକ ଅସ୍ୱାଭାବିକ ବ୍ୟବହାର ବିଷୟରେ ସଚେତନ ହେଉ ।

ଏ ପ୍ରକାର ଅଭିଜ୍ଞତାରୁ ମୋର ହୃଦବୋଧ ହୋଇଛି ଯେ ଏହାଦ୍ୱାରା ପରିବାରର ସମସ୍ତଙ୍କ ସହିତ ଗଭୀର ଆନ୍ତରିକତା ସୃଷ୍ଟି ହୋଇପାରେ । ଆମ ସମସ୍ତଙ୍କ ଭିତରେ ଯେ ପ୍ରକାରର ସ୍ନେହ ସୌହାର୍ଦ୍ଦ୍ୟ ଓ ଅନୁରାଗ ରହିଛି ତାହା କେବଳ ଏ ପ୍ରକାର ଘନିଷ୍ଠ ମିଳାମିଶା ଯୋଗୁ ସଂଭବ ହୋଇଛି । ପରସ୍ପର ପ୍ରତି ସମସ୍ତେ ଏପରି ଆସକ୍ତ ଯେ କାହାର ସାମାନ୍ୟ ଟିକିଏ ଦେହ ଖରାପ ହେଲେ ସାଙ୍ଗେ ସାଙ୍ଗେ ସମସ୍ତେ ଫୋନ୍ ମାଧ୍ୟମରେ ଜାଣିପାରନ୍ତି । କାହାରି ଗୁରୁତର ଦେହ ଖରାପ ହେଲେ ପୁଅ ଝିଅ ଜ୍ୱାଇଁ ବୋହୂମାନେ ଏକତ୍ରିତ ହୋଇପଡ଼ନ୍ତି । ଏ ପ୍ରକାରର ପାରିବାରିକ ସଦ୍‌ଭାବ ଆମମାନଙ୍କର ବାର୍ଦ୍ଧକ୍ୟ ସମୟରେ ଗୋଟିଏ ପ୍ରକାରର ବଳିଷ୍ଠ ନିରାପତ୍ତା ଭାବ ଆଣିଦିଏ । ଆମର ଆଉ ଗୋଟିଏ ବିଶେଷ ପାରିବାରିକ ବିଶେଷତ୍ୱ ହେଉଛି ଯେ ପିଲାମାନଙ୍କଠାରେ ପରିବାର ପ୍ରତି ପ୍ରଗାଢ଼ ଆସକ୍ତି ଯୋଗୁ ସେମାନେ ପୃଥିବୀରେ ଯେଉଁଠି ଥାଆନ୍ତୁ ପଛକେ ସେମାନଙ୍କର ଘର କଥା ସବୁବେଳେ ମନେପଡୁଥାଏ । ପାରିବାରିକ ପରାମର୍ଶ ଉପରେ ସେମାନେ ବେଶ୍ ନିର୍ଭର କରନ୍ତି । ଘରକୁ ଫେରିବା ପାଇଁ ଉତ୍‌କଣ୍ଠିତ ରହିଥାଆନ୍ତି । ମୋର ବଡ଼ପୁଅ କାନଡ଼ାରୁ ଏସିଆ ଦେଶର ଯେ କୌଣସି ଯାଗାକୁ ଗଲାବେଳେ ଅନ୍ତତଃ ଦିନେ ଦୁଇ ଦିନ ପାଇଁ ଆମ ପାଖକୁ ଆସେ । ସେ ବର୍ଷକରେ ଚାରି ପାଞ୍ଚଥର ଆସେ । ପୁଅ ଝିଅ ଜ୍ୱାଇଁ ବୋହୂମାନେ ପୃଥିବୀରେ ଯେଉଁଠି ଥାଆନ୍ତୁ ସୁଦ୍ଧା ପ୍ରତି ପନ୍ଦର ଦିନରେ ଘରକୁ ଫୋନ୍ କରନ୍ତି ।

ମୋ ଝିଅଙ୍କର କିପରି ବିବାହ ହେଲା ସେ ବିଷୟରେ ବିଦେଶରେ ମୁଁ ବକ୍ତୃତା କରେ । ଝିଅମାନଙ୍କର ବିବାହ ବିଷୟ ମଧ୍ୟ ଆମର ପାରିବାରିକ ଆଭିମୁଖ୍ୟ ଅନୁସାରେ ନିର୍ଦ୍ଧାରିତ ହୋଇଥିଲା । ମୋର ଦୃଢ଼ ମତ ଥିଲା ଯେ କୌଣସି ଦୁର୍ନୀତି ପରାୟଣ ଲୋକଙ୍କ ଘରେ ଝିଅ ବାହାଦେବି ନାହିଁ । ତେଣୁ ପ୍ରଥମେ ବାପ, ମା ଓ ଅନ୍ୟାନ୍ୟ ପରିବାରବର୍ଗଙ୍କ ବିଷୟରେ ବିଶଦ ଖବର ସଂଗ୍ରହ କରେ । ତା'ପରେ ପୁଅ ବିଷୟରେ । ମୁଁ ଭାବେ ଯେ ବାପା ମା ଭଲ ହୋଇଥିଲେ ପୁଅ ଭଲ ହେବାର ସମ୍ଭାବନା ବହୁତ ବେଶି । କିନ୍ତୁ ପୁଅ ଭଲ ଥାଇ ବାପ ମା ଯଦି ବହୁତ ଦୁର୍ନୀତି ପରାୟଣ ଓ ଅଖାଡୁଆ ଲୋକ ହୋଇଥିବେ ତେବେ ମୁଁ ସେହି ପରିବାରରେ ଝିଅ ବାହା ଦେବାପାଇଁ ସଂପୂର୍ଣ୍ଣରୂପେ ଅରାଜି । ମୋ ସ୍ତ୍ରୀ ଏ ବିଷୟରେ ମୋ ସହିତ ସଂପୂର୍ଣ୍ଣ ଏକମତ ।

ବଡ଼ଝିଅ ବାହାଘର ବେଳେ ଜଣେ ଆଇ.ଏ.ଏସ୍. ଓ ରାଉରକେଲା ଇଞ୍ଜିନିୟରିଂ କଲେଜରେ ବିଦ୍ୟୁତ୍ ବିଭାଗରେ ଲେକଚରର ଥିବା ବଡ଼ ଜ୍ୱାଇଁ ଶ୍ରୀମାନ ପ୍ରଦୀପ୍ତ କିଶୋରଙ୍କ ବିଷୟରେ ଆମ ଘରେ ବହୁ ଆଲୋଚନା ହୋଇଥିଲା । ମୁଁ ଇଞ୍ଜିନିୟରିଂ ଲେକଚରରଙ୍କ ସପକ୍ଷରେ ଥିଲି କାରଣ ସେ ଛାତ୍ର ହିସାବରେ ବହୁତ ମେଧାବୀ ଥିଲେ । ବି.ଏସ୍.ସି. ସ୍ନାତକ ପଦାର୍ଥ ବିଜ୍ଞାନରେ ରେଭେନ୍ସା କଲେଜରୁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍କଳ ବିଶ୍ୱବିଦ୍ୟାଳୟର ସର୍ବୋତ୍କୃଷ୍ଟ ସ୍ନାତକ (Best Graduate) ମେଡାଲ୍ ପାଇଥିଲେ । ତା'ପରେ ବାଙ୍ଗାଲୋର ବିଜ୍ଞାନ ଅନୁଷ୍ଠାନରେ ବି ଟେକ୍ ଓ ଏମ୍. ଟେକ୍‌ରେ ପ୍ରଥମ ହୋଇଥିଲେ । ତାଙ୍କ ବାପା ଥିଲେ ବାଲେଶ୍ୱରର ପ୍ରସିଦ୍ଧ ବାମପନ୍ଥୀ ବୁଦ୍ଧିଜୀବୀ ସ୍ୱର୍ଗତଃ ଗଜେନ୍ଦ୍ର ପ୍ରସାଦ ଦାଶ । ସେ ଅତ୍ୟନ୍ତ ନିଚ୍ଛୋଟ ଓ ଆଦର୍ଶବାଦୀ ସ୍ନେହଶୀଳ ଲୋକ ଥିଲେ । ଜାତକରେ

ତାଙ୍କର ବିଶ୍ୱାସ ନାହିଁ, ମୋର ମଧ୍ୟ ନାହିଁ । ସେ ମୋ ପରି ତାଙ୍କର ଦୁଇ ପୁଅଙ୍କୁ ବ୍ରତ କରିନଥିଲେ । ଆମର ବହୁ ବନ୍ଧୁବାନ୍ଧବ ଆଇ.ଏ.ଏସ୍. ପାତ୍ର ସପକ୍ଷରେ ଥିଲେ । କିନ୍ତୁ ମୋର ଯୁକ୍ତି ଥିଲା ଯେ ଆଇ.ଏ.ଏସ୍.ର ପିଲାମାନେ ବାପକୁ ନେଇ ବଡ଼ିମା ଦେଖାଇବେ । କିନ୍ତୁ ମେଧାବୀ, ଉଚ୍ଚ ଗବେଷକ ଅଧ୍ୟାପକଙ୍କ ପୁଅ ହିସାବରେ ସେମାନେ ନିଜକୁ ଗର୍ବିତ ମନେକରିବେ ।

ମୋର ଏହି ଆଭିମୁଖ୍ୟ ଅନୁଯାୟୀ ବଡ଼ ଝିଅ ବିବାହ ହେଲା । ବିବାହର ଚାରିପାଞ୍ଚବର୍ଷ ମଧ୍ୟରେ ଶ୍ରୀମାନ୍ ପ୍ରଦୀପ୍ତ କିଶୋର ଦାଶ ଡକ୍ଟରେଟ୍ କରି ଅଧ୍ୟାପକ ହେଲେ ଏବଂ ସାତ ଆଠବର୍ଷ ଭିତରେ ଅତିଥି ଅଧ୍ୟାପକ ଓ ଗବେଷକ ଭାବରେ କାନାଡ଼ାରୁ ନିମନ୍ତ୍ରଣ ପାଇ ସେଠାରେ ତିନିବର୍ଷ କଟାଇଲେ । ବର୍ତ୍ତମାନ ସୁଦ୍ଧା ତାଙ୍କ ଦ୍ୱାରା ଶତାଧିକ ଗବେଷଣାତ୍ମକ ପ୍ରବନ୍ଧ ଭାରତ ଓ ଭାରତ ବାହାରେ ପ୍ରକାଶ ପାଇଛି । ସେ ଭାରତ ଓ ଭାରତ ବାହାର କମ୍ପ୍ୟୁଟର ବିଜ୍ଞାନରେ ଜଣେ ବିଖ୍ୟାତ ଗବେଷକ ଭାବରେ ଆଦୃତ ହୋଇଛନ୍ତି । ପ୍ରାୟ ପ୍ରତିବର୍ଷ ବିଦେଶରୁ ଏହି କ୍ଷେତ୍ରରେ କାର୍ଯ୍ୟ କରୁଥିବା ଗବେଷକମାନଙ୍କର ସେମିନାର ପରିଚାଳନା ପାଇଁ ନିମନ୍ତ୍ରଣ ପାଉଛନ୍ତି ।

ଏହି ଆଭିମୁଖ୍ୟ ଅନୁଯାୟୀ ଦ୍ୱିତୀୟ ଜ୍ୱାଇଁ ମଧ୍ୟ ଠିକ୍ କଲି । ତାଙ୍କ ବାପା ଶ୍ରୀ ଶକ୍ତି ପ୍ରସାଦ ମିଶ୍ର, ଆଇ.ଏ.ଏସ୍. ଓ ତାଙ୍କ ସ୍ତ୍ରୀଙ୍କୁ ଆମେ ବହୁ ବର୍ଷ ହେଲା ଜାଣିଛୁ । ଶକ୍ତି ପ୍ରସାଦ ମିଶ୍ରଙ୍କ ସହିତ ମୁଁ ପ୍ରାୟ ୨୦ବର୍ଷ ହେଲା ବିଭିନ୍ନ କ୍ଷେତ୍ରରେ ଏକାଠି ବସି କାମ କରିଛି । ସେ ଜଣେ ସଚ୍ଚୋଟ ଓ କର୍ତ୍ତବ୍ୟନିଷ୍ଠ ବ୍ୟକ୍ତି ହିସାବରେ ମୁଁ ତାଙ୍କୁ ଦେଖି ଆସିଛି । ସେମାନେ ମଧ୍ୟ ଜାତକରେ ବିଶ୍ୱାସ କରନ୍ତି ନାହିଁ । ତାଙ୍କ ପୁଅ ଶ୍ରୀମାନ୍ ମାନସରାମ ମିଶ୍ର ବି.ଟେକ୍‌ରେ ପ୍ରଥମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ପାଇଛି । ତା'ପରେ ଆଇ.ଆଇ.ଟି ଖଡ଼ଗପୁରର ଇଣ୍ଡଷ୍ଟ୍ରିଆଲ୍ ଇଞ୍ଜିନିୟରିଂରେ ଏମ୍.ଟେକ୍ କରିଛି । ସେ ଯେପରି ମେଧାବୀ, ସେହିପରି ଧୀର, ଶାନ୍ତ, ସ୍ନେହଶୀଳ ଓ ରୁଚିସମ୍ପନ୍ନ ଯୁବକ । ଏ ପ୍ରକାର ଆଭିମୁଖ୍ୟ ଥାଇ ବନ୍ଧୁ ବାନ୍ଧିବାରେ ଆମେମାନେ ବହୁତ ଖୁସି ।

ଆମ ପରିବାରରେ ଆଉ ଗୋଟିଏ ବ୍ୟାବହାରିକ ଆଭିମୁଖ୍ୟ ରହିଛି । ଜ୍ୱାଇଁମାନଙ୍କୁ ମୁଁ ପ୍ରଥମରୁ କହିଦିଏ ଯେ ସେମାନେ ମୋ ପୁଅମାନଙ୍କ ସହିତ ସଂପୂର୍ଣ୍ଣ ରୂପେ ସମାନ । ଆମେ ସେମାନଙ୍କୁ ପୁଅ ଭାବରେ ଦେଖୁ ଏବଂ କାଳକ୍ରମେ ସେମାନେ ମଧ୍ୟ ଆମର ପୁଅ ହୋଇଯାଇଛନ୍ତି । ବୋହୂମାନଙ୍କୁ ମଧ୍ୟ ଠିକ୍ ଝିଅପରି ଦେଖୁ ଏବଂ ସେମାନେ ଆମ ଘରେ ବହୁତ ଆନନ୍ଦରେ ଚଳନ୍ତି ବୋଲି ମୋର ମନେହୁଏ । ମୁଁ ସେମାନଙ୍କୁ ବିନା ଦ୍ୱିଧା ଓ ବିନା ସର୍ତ୍ତରେ ଝିଅ କରିନେଇଛି । ସେମାନଙ୍କ ପାଖରେ ରହିବାରେ ମୋର ବହୁତ ଆନନ୍ଦ ହୁଏ ଏବଂ ସେମାନେ ମୋତେ ବହୁତ ଆଦର କରନ୍ତି ।

ଏ ସଂପର୍କରେ କେତେକ ଯୁକ୍ତିତର୍କ କରନ୍ତି ଯେ, ଯାହା ହେଲେ ବି ବୋହୂକୁ ଠିକ୍ ଝିଅପରି ଭଲ ପାଇବା ସମ୍ଭବ ନୁହେଁ । ଗଭୀର ବାତ୍ସଲ୍ୟଗତ ସ୍ନେହ ରକ୍ତଗତ ସଂପର୍କ ଉପରେ ନିର୍ଭର କରେ ବୋଲି ବଦ୍ଧମୂଳ ଧାରଣା ଯୋଗୁଁ ଏ ପ୍ରକାର ମତ ପ୍ରକାଶ ପାଇଥାଏ । କିନ୍ତୁ ମୋ ମତରେ କାହାକୁ ଭଲ ପାଇବାର ଗଭୀରତା କେବଳ ପାରସ୍ପରିକ ଆନ୍ତରିକ ବ୍ୟବହାର ଉପରେ ନିର୍ଭର କରେ । ରକ୍ତ ସଂପର୍କ ଥାଇ ମଧ୍ୟ ବ୍ୟବହାରରେ ରୂଢ଼ତା

ଦେଖାଦେଲେ ସ୍ନେହ ସଂପର୍କ ଦୁର୍ବଳ ହୋଇଯିବାକୁ ବାଧ୍ୟ । ଅଥଚ ରକ୍ତଗତ ସମ୍ପର୍କ ନଥାଇ ଜଣକର ଚାଲିଚଳନ ଓ ବ୍ୟବହାର ଆକର୍ଷଣୀୟ ହେଲେ ସେହି ଅନୁପାତରେ ସ୍ନେହ ଶ୍ରଦ୍ଧାର ଗଭୀରତା ବୃଦ୍ଧି ପାଇବ । ଏପରି ପରିସ୍ଥିତିରେ ଅନେକ ସମୟରେ ପର ଲୋକକୁ ଯେତିକି ଭଲ ପାଇହୁଏ ନିଜର ଲୋକକୁ ସେହି ପରିମାଣରେ ଭଲ ପାଇହୁଏନାହିଁ । ପରସ୍ପର ପ୍ରତି ସ୍ନେହ ଓ ଭଲ ପାଇବା ନିଜ ଉପରେ ଯେତିକି ଅନ୍ୟ ଉପରେ ମଧ୍ୟ ସେତିକି ନିର୍ଭର କରିଥାଏ । ଆମ ପୁଅ ବୋହୂ, ଝିଅ ଜ୍ୱାଇଁମାନଙ୍କଠାରୁ ଆମେ ଯେଉଁ ସ୍ନେହଶ୍ରଦ୍ଧା ପାଉଛୁ ସେଥିରେ ମୋର ଅନୁକ୍ରିୟା ସେହିପରି ହେବା ସ୍ୱାଭାବିକ ।

ଅନେକ ସମୟରେ 'ପରଝିଅ ଘର ଭାଙ୍ଗେ', 'ଯେତେହେଲେ ତ ଜୋଇଁ ପୁଅ' ଏପରି ପୂର୍ବ ମନୋବୃତ୍ତି ରଖି ଜ୍ୱାଇଁ ଓ ବୋହୂଙ୍କ ସହିତ ମିଶିଲେ ସେମାନଙ୍କଠାରେ ମଧ୍ୟ ସେ ପ୍ରକାର ବ୍ୟବହାର ଦେଖାଦେବା ସମ୍ଭାବନା ଅଛି । ଜଣେ ବାହାରର ଝିଅ ବୋହୂ ଭାବରେ ବା ପୁଅ ଜ୍ୱାଇଁ ଭାବରେ ତୁମ ଘରକୁ ନୂଆ କରି ଆସିଲେ ତୁମେ ସେମାନଙ୍କୁ କିପରି ଭାବରେ ଗ୍ରହଣ କରିବ ଏବଂ କି ପ୍ରକାର ମନୋଭାବ ନେଇ ସେମାନଙ୍କ ସାଥିରେ ଚଳିବ ତାର ପୂରା ଦାୟିତ୍ୱ ଶାଶୁଶ୍ୱଶୂରଙ୍କ ଉପରେ ନିର୍ଭର କରେ । ପର ଝିଅ ଘର ଭାଙ୍ଗେ ବୋଲି ଭାବିଲେ ତାହା ସତ ହୋଇଯିବ ଏବଂ ବୋହୂ ଆମର ଆଉ ଗୋଟିଏ ଝିଅ ବୋଲି ଭାବିଲେ ବୋହୂଟି ଅତି ବେଶି ଦୁଷ୍ଟ ପ୍ରକୃତିର ନ ହୋଇଥିଲେ ସେ ନିଶ୍ଚିତ ଭାବରେ ନୂଆ କରି ଘର ସଜାଡ଼ିବା ଝିଅରେ ପରିଣତ ହୋଇଯିବ । ସହଜାତ ସ୍ୱାଭାବିକ ସ୍ନେହ ଓ ଭଲ ପାଇବା ମାଧ୍ୟମରେ ଯେ କୌଣସି ଲୋକକୁ ବିଶେଷତଃ ନିଜର ପୁଅ ବୋହୂ, ଝିଅ ଜ୍ୱାଇଁଙ୍କୁ, ନିଶ୍ଚିତ ଭାବରେ ଆପଣାର କରି ହେବବୋଲିମୋର ଦୃଢ଼ ବିଶ୍ୱାସ ଏବଂ ସେହି ବିଶ୍ୱାସ ଅନୁଯାୟୀ ମୋର ପରିବାର ଆଜି ପର୍ଯ୍ୟନ୍ତ ଅତି ସୌହାର୍ଦ୍ଧ୍ୟପୂର୍ଣ୍ଣ ବାତାବରଣ ଭିତରେ ଚାଲିଆସିଛି । ଏହା ଆମ ପକ୍ଷରେ କମ୍ ସୌଭାଗ୍ୟର କଥା ନୁହେଁ ।

ମୁଁ ପିଲାମାନଙ୍କୁ କହେ ଯେ ସେମାନେ ବାପ ମା'ଙ୍କର ଦୋଷ, ଗୁଣ, ତ୍ରୁଟି ବିଚ୍ୟୁତିକୁ ସବୁବେଳେ ବିଶ୍ଳେଷଣ କରି ସେହି ଅନୁସାରେ ସେମାନଙ୍କୁ ଅନୁକରଣ କରିବା ଉଚିତ କାରଣ ଗୋଟିଏ ମନସ୍ତାତ୍ତ୍ୱିକ ତଥ୍ୟ ରହିଛି ଯେ ବାପା ମାଆଙ୍କୁ ପିଲାମାନେ ସେମାନଙ୍କର ଅବଚେତନ ମନ ଭିତର ଦେଇ ଅନେକ ସମୟରେ ଯନ୍ତ୍ରବଦ୍ ଅନୁକରଣ କରିଥାନ୍ତି । ଅର୍ଥାତ୍ ବାପା ମାଆମାନେ ବିଭିନ୍ନ ସାଂସାରିକ ପରିସ୍ଥିତିରେ ଯେପରି କାମ କରନ୍ତି ତାଙ୍କର ପୁଅ ଝିଅମାନେ ଠିକ୍ ସେହିପରି କରିବାର ସମ୍ଭାବନା ବହୁତ ଅଧିକ । ବିବାହ ପରେ ସେମାନେ ତାଙ୍କ ବାପ ମାଆଙ୍କୁଅନୁକରଣକରି ଠିକ୍ ସେହିପରି ଭାବରେ କାମ କରିଥାନ୍ତି । ବାପ ମାଆଙ୍କର ସ୍ୱାମୀ ସ୍ତ୍ରୀ ଭାବରେ ଚଳଣିର ଚିତ୍ର ତାଙ୍କର ଅବଚେତନ ମନ ଭିତରେ ଆଙ୍କି ହୋଇ ରହିଥାଏ । ତେଣୁ ଏମାନେ ରଙ୍ଗମଞ୍ଚର କଣ୍ଢେଇ ପରି ଅନ୍ୟର ଡୋରରେ ଯେପରି ଟାଣି ହୋଇ କାମ କରନ୍ତି । ଭଲ ଗୁଣର ଅଭିନୟ କଲେ ଭଲ । ତାହା ନହେଲେ ବାପମାଆଙ୍କର ମନ୍ଦ ପ୍ରକୃତିର ଭୂତ ସେମାନଙ୍କ ଲାଗିଯାଏ । ବାପ ନିଶାସକ୍ତ ହୋଇ ମଧ୍ୟ ରାତ୍ରିରେ ଘରକୁ ଟଳି ଟଳି ଆସୁଥିଲେ ପୁଅ ବି ସେହିପରି ଭାବରେ ଆସିବାର ସମ୍ଭାବନା । ମାଆ ଯଦି ତା ସ୍ୱାମୀ ସହିତ ଅଯଥା କଟର କଟର କରିବାରେ ଅଭ୍ୟସ୍ତ ତେବେ ଝିଅ ମଧ୍ୟ ତା ସ୍ୱାମୀ ସହିତ ଠିକ୍ ସେହିପରି ଭାବରେ ବ୍ୟବହାର କରିପାରେ । ବାପ ମାଆ

ଯଦି ପିଲାଙ୍କୁ ପିଟନ୍ତି ତେବେ ପିଲାମାନେ ବାପ ମାଆ ହୋଇସାରିବା ପରେ ନିଜ ନିଜର ପିଲାଙ୍କୁ ପିଟିବାର ବହୁତ ସମ୍ଭାବନା ଅଛି । ତେଣୁ ମୁଁ ସେମାନଙ୍କୁ ପରାମର୍ଶ ଦିଏ ଯେ ବାପ ମାଆଙ୍କୁ ଅତି ନିଦାରୁଣ ଭାବରେ ବିଶ୍ଳେଷଣ କରି ତାଙ୍କର ଅବଚେତନ ମନରେ ଥିବା ଏପରି ପରାକ୍ରମୀ ପ୍ରତିବିମ୍ବିତ ଭୂତକୁ ସେମାନେ ଯେପରି କରାୟତ୍ତ କରିପାରିବେ ।

ମୋର ବଡ଼ପୁଅ ଗତ ପ୍ରାୟ ପଚିଶି ବର୍ଷ ହେଲା କାନାଡ଼ାରେ । ମୋର ବଡ଼ ଝିଅ ୧୯୭୬ ମସିହାରେ ତିନିବର୍ଷ ପାଇଁ କାନାଡ଼ାରେ ଅଧ୍ୟାପକ ଥିଲେ । ମୁଁ ସେମାନଙ୍କ ପାଖକୁ ଯାଏ ଏବଂ ମାସେ ଦୁଇମାସ ସେମାନଙ୍କ ସହିତ କଟାଏ । ସେମାନଙ୍କୁ ମୁଁ ବୁଝାଏ ଯେ ଶିକ୍ଷା ଓ ଗବେଷଣାର ନୂତନ ଦିଗ୍‌ଦର୍ଶନ ବିଷୟରେ ସେମାନଙ୍କର ବିଦେଶରୁ ବହୁତ ଶିଖିବାର କଥା । ସେମାନେ ଏ ପ୍ରକାର ସୁଯୋଗ ପାଉଥିବାରୁ ମୁଁ ବହୁତ ଆନନ୍ଦିତ । କିନ୍ତୁ ସେମାନେ ସେଠାରେ ସ୍ଥାୟୀ ଭାବରେ ରହିବାର ମୁଁ ସଂପୂର୍ଣ୍ଣ ବିରୋଧୀ । ମୁଁ ସେମାନଙ୍କୁ କହେ ଯେ ମୁଁ ଯେପରି ବହୁବର୍ଷ ହେଲା ପ୍ରାୟ ପ୍ରତିବର୍ଷ ବିଦେଶକୁ ଦୁଇ ତିନିମାସ ପାଇଁ ଯାଏ ସେମାନେ ସେହିପରି ଯାଆନ୍ତୁ କିନ୍ତୁ ସ୍ଥାୟୀ ଭାବରେ ରହନ୍ତୁ ନାହିଁ, କାରଣ ଆମର ଗରିବ ଦେଶ ସେମାନଙ୍କୁ ଖର୍ଚ୍ଚ ବହୁଳ ଶିକ୍ଷା ଦେଇଛି । ସେମାନେ ବାହାରେ ଅଧିକ ଶିକ୍ଷା ପାଇ ଦେଶରେ ଆସି କାମ କରିବା ଉଚିତ । ତାହା ନ ହେଲେ ସେମାନଙ୍କୁ ଦେଶଦ୍ରୋହୀ ବୋଲି ମୁଁ ମନେ କରିବି । ତା'ଛଡ଼ା ଆମ ଦେଶର ପରିସ୍ଥିତିରେ ମଧ୍ୟ ସେମାନେ ଖୁବ୍ ଭଲ କାମ ପାଇବେ, ଖୁବ୍ ଭଲରେ ରହିପାରିବେ । ଅନେକେ ଭାବନ୍ତି ଯେ ଆମ ଦେଶରେ ପ୍ରତିଭାର ବିକାଶ ଲାଗି ସୁଯୋଗ ନାହିଁ । ମୁଁ କିନ୍ତୁ ଏଥିରେ ଏକମତ ନୁହେଁ କାରଣ ଅନେକ ସମୟରେ ପରିଶ୍ରମ କରି ଅସୁବିଧାଗୁଡ଼ିକୁ ସୁବିଧାରେ ପରିଣତ କରାଇପାରିଲେ ସେମାନେ ଖୁବ୍ ଶୀଘ୍ର ଖ୍ୟାତି ଅର୍ଜନ କରିପାରିବେ । କିଛି ନଥିବା ପରିସ୍ଥିତିରେ ସେମାନେ ଯାହା ନୂଆ କାମ କରିବେ ସେଥିରେ ବହୁତ ନାମ ଅର୍ଜନ କରିପାରିବେ । ଏତିକି ପରିଶ୍ରମରେ ଉନ୍ନତ ଦେଶରେ ଏପରି ଖ୍ୟାତି ଅର୍ଜନ କରିବାର ସମ୍ଭାବନା ନାହିଁ । ଆମ ଦେଶରେ ନେତୃତ୍ୱ ଦେବା ଓ ନୂତନ ସୁଯୋଗ ସୃଷ୍ଟି କରିବାରେ ଅଗ୍ରଣୀ ହେବାର ସମ୍ମାନ ତଥା ଆତ୍ମତୃପ୍ତି ପାଇପାରିବେ । ମୁଁ ଚାହିଁଥିଲେ କ'ଣ ପ୍ରଥମରୁ କିମ୍ବା କିଛିବର୍ଷ ପରେ ବିଦେଶକୁ ଚାଲି ଯାଇପାରି ନଥାନ୍ତି ? କିନ୍ତୁ ଏଠାରେ ନାନା ପ୍ରତିବନ୍ଧକ ଭିତରେ କାମ କରି ମଧ୍ୟ ମୁଁ ମନୋବିଜ୍ଞାନକୁ ଆରମ୍ଭ କଲି ଏବଂ ସାରା ଦେଶରେ ଏହାକୁ ସର୍ବବୃହତ୍ ଓ ସର୍ବଶ୍ରେଷ୍ଠ ବିଭାଗରେ ପରିଣତ କରିପାରିଲି ।

ଆମର ସାମାଜିକ ଓ ସାଂସ୍କୃତିକ ପରିବେଶ ପାଶ୍ଚାତ୍ୟ ପରିବେଶଠାରୁ ସଂପୂର୍ଣ୍ଣ ଅଲଗା । ଆମର ପାରିବାରିକ ଜୀବନ ଏବଂ ପାରିପାର୍ଶ୍ୱିକ ବାତାବରଣ ମାନସିକ ନିରାପତ୍ତା ଦିଏ । ଏଠାରେ ପ୍ରତିଦ୍ୱନ୍ଦିତାର ତୀବ୍ରତା କମ୍ । ଆମ ପରିବେଶରେ ଓ ପାରିବାରିକ ପରିସ୍ଥିତିରେ ଆମ ପିଲାମାନଙ୍କର ଭଲ ପଢ଼ିବାର ସମ୍ଭାବନା ଅନେକ ବେଶି । ଏଠାରେ ପିଲାମାନେ ବିଭିନ୍ନ ନିଶାସକ୍ତ ହେବାର ସମ୍ଭାବନା ମଧ୍ୟ ବହୁତ କମ୍ । ଏତେ ସୁବିଧା ଥିଲାବେଳେ ସେମାନେ କାହିଁକି ଏଠାରେ ନିଜ ଦେଶର ପ୍ରଥମ ଶ୍ରେଣୀୟ ନାଗରିକ ହିସାବରେ ଦର୍ପର ସହିତ ଜୀବନଯାପନ କରିବେ ନାହିଁ ଅଥଚ ଅନ୍ୟ ଦେଶରେ ଦ୍ୱିତୀୟ ଶ୍ରେଣୀର ନାଗରିକ ହିସାବରେ ମଥାବନତ କରି ରହିବେ ? ପାଶ୍ଚାତ୍ୟ ଦେଶବାସୀଙ୍କର ହସହସ

ମୁହଁର ଅଭିବାଦନ ପଛରେ ପ୍ରଚ୍ଛନ୍ନ ବିରକ୍ତିର ପଟ୍ଟଭୂମିରେ ନିଃସଙ୍ଗ ଜୀବନଯାପନ ନିଶ୍ଚିତ ଭାବରେ ଦୁଃଖଦାୟକ । ଏହି ଆଭିମୁଖ୍ୟ ମୁଁ ସେମାନଙ୍କୁ ଦିଏ ।

ମୋ ବଡ଼ ପୁଅ ଅମିତାଭ ଆମେରିକାରେ ସାତବର୍ଷ ରହିଲା ପରେ ଫେରିଆସି ଦିଲ୍ଲୀରେ ସାତବର୍ଷଯାଏଁ ଅଧ୍ୟାପକ ଭାବରେ ଅଧ୍ୟାପନା ଓ ଗବେଷଣା କାର୍ଯ୍ୟ କଲା । ତା'ପରେ ବିଶେଷ ଭାବରେ ନିମନ୍ତ୍ରିତ ହୋଇ କାନାଡ଼ା ଯାଇଛି । ସେଠାରେ ଭାରତ ଓ ଏସିଆ ମହାଦେଶରେ ବିଜ୍ଞାନ ଓ କାରିଗରୀ କ୍ଷେତ୍ରରେ ଗବେଷଣା ନିର୍ଦ୍ଦେଶକ ହୋଇ ଆନ୍ତର୍ଜାତିକ ଗବେଷଣା ଓ ବିକାଶ କ୍ଷେତ୍ରରେ କାମ କରୁଛି । ବର୍ଷକୁ ତିନିଚାରି ଥର ସେ ଭାରତ ଆସେ । ଆମେରିକୀୟ ବୋହୂକୁ ଭାରତ ଖୁବ୍ ଭଲ ଲାଗେ । ତାକୁ ପଚରାଗଲା ଯେ ଅବସର ପରେ ସେ କେଉଁଠି ରହିବାକୁ ଚାହେଁ । ତା ମତରେ ସେ ଆସି କଟକରେ ରହିବ, କାରଣ ତାର ପେନ୍‌ସନ୍ ଟଙ୍କାରେ ସେ ଏଠାରେ ଯେପରି ରାଜକୀୟ ଆଡ଼ମ୍ବରରେ ଚଳିପାରିବ କାନାଡ଼ାରେ ତାହା ସଂଭବ ନୁହେଁ । ତାର ସ୍ତ୍ରୀ ମଧ୍ୟ ଏଥିରେ ଏକମତ ।

ବଡ଼ ଜ୍ୱାଇଁ ପ୍ରଦୀପ୍ତ କାନାଡ଼ାରୁ ଫେରିଆସିଲା ପରେ ଭାରତ ସରକାରଙ୍କଠାରୁ ପ୍ରାୟ କୋଟିଏ ଟଙ୍କାର ଅନୁଦାନ ପାଇ ରାଉରକେଲା ଇଞ୍ଜିନିୟରିଂ କଲେଜରେ ଗୋଟିଏ କମ୍ପ୍ୟୁଟର କେନ୍ଦ୍ର ପ୍ରତିଷ୍ଠା କରିଛନ୍ତି ଏବଂ ସେ କମ୍ପ୍ୟୁଟରରେ ଜଣେ ବିଶେଷଜ୍ଞ । ଏମାନେ ତ ଭାରତର ଅସୁବିଧାକୁ ପୁଣି ସୁବିଧାରେ ପରିଣତ କରିପାରିଛନ୍ତି ।

ସାନପୁଅ ଇଂଲଣ୍ଡରେ ଏମ୍.ଆର୍.ସି.ପି. ପାଶ୍ କରି ହୃଦ୍ ରୋଗ କ୍ଷେତ୍ରରେ ବିଶେଷ ଅଭିଜ୍ଞତା ହାସଲ କରିଛି । ସେ ଡାକ୍ତରୀ ପାଶ୍ କଲାପରେ ଓଡ଼ିଶା ସରକାରରେ ଗୋଟିଏ ଚାକିରି ପାଇଥିଲା । ଚାକିରିରେ ଯୋଗ ଦେବାପାଇଁ ମୁଁ ତାକୁ ମନା କଲି କାରଣ ଓଡ଼ିଶା ସରକାର ଡାକ୍ତରମାନଙ୍କୁ ଯେପରି ହତାଦର କରୁଛି ସେମାନେ ଯେପରି ହେୟ ଅବସ୍ଥାରେ ଶଙ୍କିତ ହୋଇ ଚଳୁଛନ୍ତି ସେଥିରେ ତା'ର ଏପରି ଚାକିରି କରିବା ପାଇଁ ବ୍ୟାକୁଳ ହେବା ଉଚିତ ନୁହେଁ । ଯେହେତୁ ତା' ଉପରେ କେହି ନିର୍ଭର କରୁନାହାନ୍ତି । ସେ ତା'ର ମନଇଚ୍ଛା ଡାକ୍ତରୀ ବିଦ୍ୟାରେ ଶ୍ରେଷ୍ଠ ଶିକ୍ଷା ଲାଭ କରିବା ପରେ ଘରେଇ ଚିକିତ୍ସା କିରବା ଉଚିତ ବୋଲି ବୁଝାଇଥିଲି । ସେ ନିକଟରେ ଭାରତକୁ ଫେରି ଆସିଛି ଏବଂ ଓଡ଼ିଶାରେ ତାପାଇଁ ସେପରି କିଛି ସୁବିଧା ନ ଥିବାରୁ ସେ ବାଙ୍ଗାଲୋରରେ ଘରୋଇ ଚିକିତ୍ସା ଆରମ୍ଭ କରିଛି ।

ଆଉ ଗୋଟିଏ କଥା ମୁଁ ମୋ ପିଲାମାନଙ୍କୁ ବୁଝାଏ ଯେ ସେମାନେ ଅତ୍ୟଧିକ ପରିମାଣରେ ଧନ ଉପାର୍ଜନ କରିବା ପାଇଁ ବ୍ୟଗ୍ର ହେବା ଉଚିତ ନୁହେଁ । ରୁଚିକର ଓ ପରିମାର୍ଜିତ ଜୀବନଯାପନ କରି ଅନ୍ୟମାନଙ୍କ ସହିତ ସଦ୍‌ଭାବ ରଖି ନାନା କ୍ଷେତ୍ରରେ ଜ୍ଞାନ ଆହରଣର ଆଗ୍ରହ ରଖି ନିଜ ପିଲାମାନଙ୍କ ସହିତ ପ୍ରତିଦିନ କିଛିସମୟ କଟାଇ ନିଜର ଆବଶ୍ୟକତା ଅନୁସାରେ ରୋଜଗାର କରିବା ଉଚିତ । ଅତ୍ୟଧିକ ଧନ ହେଲେ ଅଧିକାଂଶ ଲୋକଙ୍କର ବହୁତ ଖରାପ ଅଭ୍ୟାସ ହୁଏ । ମଦ ପିଇବା, ଯେଉଁ ଖାଦ୍ୟ ଘରେ ଖାଆନ୍ତେ ତାକୁ ଖର୍ଚ୍ଚ ବହୁଳ ହୋଟେଲରେ ଖାଇବା; ପିଲାମାନଙ୍କୁ ବହୁତ ପଇସା ଖର୍ଚ୍ଚ କରି ତଥାକଥିତ ମର୍ଯ୍ୟାଦାବନ୍ତ ସ୍କୁଲରେ ଛାଡ଼ିବା ଇତ୍ୟାଦି । ଶେଷରେ ଆହୁରି ବେଶି ଧନ ହେଲେ ଦ୍ୱିତୀୟ ଓ ତୃତୀୟ ସ୍ତ୍ରୀ ପାଇଁ ମଧ୍ୟ ପ୍ରଲୋଭନ ହୁଏ । ଆମ ଘରେ ରୁଚି ଅନୁଯାୟୀ ସୁଷମ ଖାଦ୍ୟ ଖାଇବାକୁ ଦିଆହୁଏ । ବାହାରେ ଖାଇବାର କାହାରି ଅଭ୍ୟାସ ନାହିଁ ।

ହୋଟେଲକୁ ଯିବାରେ ମୋର ପୁଅ କି ଝିଅଇଁମାନେ ଆଦୌ ଆଗ୍ରହୀ ନୁହନ୍ତି । ତେଣୁ ରୁଚିକର ପରିବେଶ ଭିତରେ ଆନନ୍ଦ ଓ ମର୍ଯ୍ୟାଦା ସହ ବଞ୍ଚିବା ପାଇଁ ଯେତିକି ଅର୍ଥର ଆବଶ୍ୟକତା, ସେତିକି ପାଇଁ ପରିଶ୍ରମ କରିବା ଉଚିତ । ପିଲାମାନଙ୍କ ପାଇଁ ମଧ୍ୟ ଅନେକ ଟଙ୍କା ରଖିଯିବା ବିରୁଦ୍ଧରେ ମୁଁ ମତ ପୋଷଣ କରେ । ସେମାନଙ୍କ ପାଇଁ ଭଲ ଖାଦ୍ୟ, ରୁଚିସମ୍ପନ୍ନ ପୋଷାକ ଓ ପଢ଼ାପଢ଼ି ପାଇଁ ଯେତେ ଖର୍ଚ୍ଚ ହେଉ ପଛେ ତାକୁ ଯୋଗାଇଦେବା ଉଚିତ । ତା ବ୍ୟତୀତ ସେମାନଙ୍କ ପାଇଁ ଅଧିକ ଟଙ୍କା ସଞ୍ଚିବା ଉଚିତ ନୁହେଁ । ସେମାନେ ନିଜ ଗୋଡ଼ରେ ଠିଆ ହୋଇ ଯେତିକି କରିପାରିବେ ଅନ୍ୟର ଉପାର୍ଜିତ ମୋଫତ୍ ଟଙ୍କା ହାତକୁ ଆସିଲେ ଅନେକ ବିନିର୍ବ୍ୟୟ କରିବାକୁ ପ୍ରଲୋଭିତ ହୁଅନ୍ତି । ଏପରି ବହୁତ ଦୃଷ୍ଟାନ୍ତ ଆମ ଆଖି ଆଗରେ ରହିଛି । ଭବିଷ୍ୟତରେ ଆମେମାନେ ମଧ୍ୟ ଅର୍ଥନୈତିକ କ୍ଷେତ୍ରରେ ପିଲାଙ୍କ ଉପରେ ନିର୍ଭର କରିବୁ ନାହିଁ ବୋଲି ମୁଁ ସେମାନଙ୍କୁ ବୁଝାଇଦେଇଛି । ପିଲାମାନଙ୍କ ଉପରେ ଆମର କୌଣସି ଦାବି ନାହିଁ । ସେମାନେ ଖୁସିରେ ରହିଲେ, ଆମେ ଖୁସି । ଏହି ସ୍ୱାବଲମ୍ବନଶୀଳ ଦିଗ୍‌ଦର୍ଶନଟି ମୋ ପରିବାରରେ ଖୁବ୍ ଭଲ ଭାବରେ କାର୍ଯ୍ୟକାରୀ ହୋଇପାରିଛି ।

ଆମ ଘରେ ମୋ ସ୍ତ୍ରୀ ମୋ ସହିତ ସବୁ କଥାରେ ଯେ ଏକମତ ତାହା ନୁହେଁ । କେତୋଟି ମୌଳିକ କଥାରେ ମୁଁ ମୋ ମତରେ ଦୃଢ଼ ରହି ଅନ୍ୟାନ୍ୟ ଦୈନନ୍ଦିନ କଥାରେ ସେ ସ୍ୱାଧୀନ ଭାବରେ କାମ କରନ୍ତି । ସେ ହେଉଛନ୍ତି ପରିବାରର କର୍ତ୍ତ୍ରୀ । ମୁଁ କେବଳ ଜଣେ ଅତିଥି ମାତ୍ର । ଅନେକ କ୍ଷେତ୍ରରେ ସଂପୂର୍ଣ୍ଣ ମତ ନ ମିଳିଲେ ଆମେ ଦୁହେଁ ସମାନ୍ତରାଳ ଭାବରେ ଗତି କରୁ । ଦୁଇଟି ଗତିପଥ ପରସ୍ପରକୁ ସ୍ପର୍ଶ କରେ ନାହିଁ କି କରିବାର ଆବଶ୍ୟକତା ମଧ୍ୟ ନାହିଁ । ତାହାହେଲେ ସଂଘର୍ଷର ସମ୍ଭାବନା କମ୍ । ପରିବାର ଯେତେ ବେଶି ସଂଘର୍ଷଶୂନ୍ୟ ହେବ ସେତିକି ଆଦର୍ଶ ସ୍ଥାନୀୟ ହେବ ବୋଲି ମୋର ମତ । ତେଣୁ ଏପରି ସଂଘର୍ଷକୁ ପରିହାର କରିବାପାଇଁ ମୁଁ ଚେଷ୍ଟା କରେ । ତଥାପି ମଧ୍ୟ ସଂଘର୍ଷ ନହେବା ଅସ୍ୱାଭାବିକ । କିନ୍ତୁ ସଂଘର୍ଷ ଅପେକ୍ଷା ସହାବସ୍ଥାନ ମାତ୍ରା ବେଶିଥାଏ ତେଣୁ ପାରିବାରିକ ଜୀବନରେ ବିଭ୍ରାଟ ସୃଷ୍ଟି ହୁଏ ନାହିଁ ।

ଏ ସମ୍ପର୍କରେ ମୋର ଦୋଷ ତ୍ରୁଟି ବିଷୟରେ ମୁଁ ସଚେତନ । ମୁଁ ଟିକିଏ ବେଶି ପରିମାଣରେ ପୂର୍ଣ୍ଣାଙ୍ଗୀ ହେବାରେ ଉଦ୍ୟମଶୀଳ । ନିୟମାନୁବନ୍ଧ ରୀତି ନୀତି ଏବଂ ସମୟାନୁବର୍ତ୍ତିତାରେ ମୁଁ ଅଭ୍ୟସ୍ତ । ଫଳରେ ଏହି ତିନୋଟି ଘଟଣା ନେଇ ମୁଁ ଅସହିଷ୍ଣୁ ହୋଇପଡ଼େ । ମୁଁ ମୋର ସମସ୍ତ ଜିନିଷ, କାଗଜପତ୍ର ଏପରି ଠିକ୍ କରି ରଖିଥାଏ ଯେ ଆଖି ବୁଜି ମଧ୍ୟ ସେ ସବୁକୁ ତତ୍‌କ୍ଷଣାତ୍ ପାଇପାରିବି । କିନ୍ତୁ ସେହି ଅନୁକ୍ରମରେ ବ୍ୟତିକ୍ରମ ହେଲେ ମୁଁ ବିରକ୍ତ ହୁଏ । ମୋ ଜିନିଷ ଅନ୍ୟମାନେ ବ୍ୟବହାର କରିବାରେ ମୋର ଆପତ୍ତି ନଥାଏ କିନ୍ତୁ ବ୍ୟବହାର ପରେ ପୁଣି ଯଥାସ୍ଥାନରେ ରଖି ନ ଦେଲେ ମୁଁ ବିରକ୍ତ ହୁଏ । ସେହିପରି ଠିକ୍ ସମୟରେ ନ ବାହାରିଲେ ମୁଁ ଅସ୍ଥିର ହୋଇଯାଏ । ମୋର ଅସହିଷ୍ଣୁତା ବଢ଼ିଯାଏ । ନିୟମାନୁବନ୍ଧ ଭାବରେ କାମ କଲେ କେତେ ବେଶି କାମ ଅଳ୍ପ ସମୟ ମଧ୍ୟରେ ହୋଇଯାଏ ଏବଂ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ହୁଏନାହିଁ ଏକଥା ମୁଁ ମୋ ସ୍ତ୍ରୀ

ଓ ପିଲାମାନଙ୍କୁ ବୁଝାଏ । କିନ୍ତୁ ସମସ୍ତଙ୍କୁ ସମପରିମାଣରେ ଏହି ଅଭ୍ୟାସରେ ଦୀକ୍ଷିତ କରିପାରିନାହିଁ ବୋଲି ମୋର ଅଶାନ୍ତି ରହିଯାଏ ।

ଭାରତୀୟ ପରିବାରର ଗୋଟିଏ ମୁଖ୍ୟ ବୈଶିଷ୍ଟ୍ୟ ଯେ ପିଲାମାନେ ଏହାର ସମସ୍ତ କାର୍ଯ୍ୟକଳାପର କେନ୍ଦ୍ର ବିନ୍ଦୁ । ପିଲାଙ୍କ ପାଇଁ ଆମର ବଞ୍ଚିବାର ସାର୍ଥକତା- ତେଣୁ ଭାରତୀୟ ପରିବାରରେ ସ୍ୱାମୀ-ସ୍ତ୍ରୀ ମନୋମାଳିନ୍ୟର ଗୁରୁତ୍ୱ ବହୁତ କମିଯାଏ । ପାଶ୍ଚାତ୍ୟ ଦେଶରେ ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ମତଭେଦ ବା ଅଶାନ୍ତି ହେଲେ ପ୍ରତ୍ୟେକଙ୍କ ମନରେ ଗୋଟିଏ ପ୍ରଶ୍ନ ଉଠେ ଯେ ସେ ଜୀବନରୁ କ'ଣ ପାଉଛି । ସ୍ୱାମୀ-ସ୍ତ୍ରୀଙ୍କର ଭଲ ନ ପଡ଼ିଲେ ସାଙ୍ଗେ ସାଙ୍ଗେ ଛାଡ଼ପତ୍ର । ପିଲାମାନଙ୍କର ମନସ୍ତାତ୍ତ୍ୱିକ ଅବସ୍ଥା କ'ଣ ହେବ ସେମାନେ ତାହା ଭାବନ୍ତି ନାହିଁ । ସେମାନେ ସେମାନଙ୍କର ବର୍ତ୍ତମାନର ନିଜ ସୁଖଦୁଃଖ କଥାକୁ କେବଳ ସ୍ୱାମୀ କିମ୍ବା ସ୍ତ୍ରୀଙ୍କୁ କେନ୍ଦ୍ରକରି ଭାବନ୍ତି । ଆମେମାନେ କିନ୍ତୁ ଭବିଷ୍ୟତ ପାଇଁ ବଞ୍ଚୁ, ପିଲାମାନଙ୍କ ପାଇଁ ସବୁ ମନୋମାଳିନ୍ୟ ଭୁଲିଯାଉ । ତା'ଛଡ଼ା ଆମ ଭାରତୀୟ ପରିବାର ସାମାଜିକ ଓ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ବହୁତ ବ୍ୟାପକ ଥିବାରୁ ଆମର ସୁଖଦୁଃଖ ଗୋଟିଏ ବଡ଼ ସାମାଜିକ ଓ ମାନସିକ ପରିସର ଭିତରେ ବାଣ୍ଟି ହୋଇରହେ । ଏହା କେବଳ ଜଣକ ଉପରେ ନିର୍ଭର ନକରି ଅନ୍ୟମାନଙ୍କ ପ୍ରତି ବିସ୍ତାରିତ ହୋଇଯାଏ । ଏହି ପ୍ରକ୍ରିୟାରେ ବହୁ ବ୍ୟକ୍ତି ଭାଗୀଦାର ହୋଇଥିବାରୁ ଦୁଃଖର ମାତ୍ରା କମିଯାଏ ଏବଂ ଅନେକ ସମୟରେ ସୁଖର ମାତ୍ରା ବଢ଼ିଯାଏ କାରଣ ପରିବାରରେ ଅନେକ ଲୋକ ସୁଖୀ ହେଲେ ତୁମ ସୁଖର ପରିମାଣ ବୃଦ୍ଧି ହେବାର ମନୋବୈଜ୍ଞାନିକ କାରଣ ରହିଛି । ଏହି ପରିପ୍ରେକ୍ଷୀରେ ମୋର ପରିବାର ସୁଖୀ ଏବଂ ଏହାର ଶାନ୍ତି ଓ ସନ୍ତୋଷ ବ୍ୟାପକ ଭାବରେ ସମସ୍ତଙ୍କୁ ମିଳିଥାଏ ।

ଏହି ସନ୍ତାନସନ୍ତତି କେନ୍ଦ୍ରିକ ପାରିପାରିକ ବୈଶିଷ୍ଟ୍ୟ ଆମ ପରିବାରରେ ଆହୁରି ବେଶି ବଳିଷ୍ଠ ଭାବେ କାର୍ଯ୍ୟ କରୁଛି । ଆମେମାନେ ପୁଅ ବୋହୂ ଝିଅ ଜ୍ୱାଇଁ ଓ ନାତି ନାତୁଣୀମାନଙ୍କୁ ନେଇ ବହୁତ ବେଶି ହେଁଚେ କରୁ । ସେମାନଙ୍କ କଥାରେହିଁ ଆମେ ସମସ୍ତେ ବ୍ୟସ୍ତ ରହୁ । ସେମାନଙ୍କର ସ୍ୱାସ୍ଥ୍ୟ, ପାଠପଢ଼ା, ଚରିତ୍ର ବିକାଶ ପ୍ରଭୃତି ବିଷୟ ନେଇଆମେ ବହୁ ସମୟ ବ୍ୟୟ କରୁ । ତା'ଫଳରେ ପିଲାମାନେ ଯେତେ ବଡ଼ହେଲେ ମଧ୍ୟ ଆମ ସହିତ ଗଭୀର ଭାବରେ ଅନୁରକ୍ତ । ଝିଅ ଜ୍ୱାଇଁ ପୁଅ ବୋହୂ ନାତିନାତୁଣୀମାନେ ଆମମାନଙ୍କ ଖବର ନେବାରେ ସବୁବେଳେ ବ୍ୟଗ୍ର ।

ମୋର ପିଲାମାନଙ୍କୁ ପାଠ୍ୟପୁସ୍ତକ ଛଡ଼ା ଆଉ ଅନ୍ୟାନ୍ୟ ବହୁ ପ୍ରକାର ବହି ପଢ଼ିବାକୁ ମୁଁ ଉତ୍ସାହିତ କରେ । ସେସବୁ ବହି ବିଷୟରେ ଆମେମାନେ ଏକାଠି ବସି ଆଲୋଚନା କରୁ । ମୋ ମତରେ ଖାଲି ପାଠବହି ସବୁବେଳେ ପଢ଼ିବା ଅପେକ୍ଷା ଅନ୍ୟାନ୍ୟ ବହୁ ବହି ପଢ଼ିଲେ ମନ ପ୍ରଶସ୍ତ ହୁଏ ଓ ବୌଦ୍ଧିକ ଶକ୍ତିର ବିକାଶ ହୁଏ, ଫଳରେ ପାଠ ପଢ଼ାରେ ମଧ୍ୟ ସେମାନେ ଭଲ କରନ୍ତି । ଖାଲି ପାଠ ବହି ଘୋଷାଇ ପ୍ରଥମ ଶ୍ରେଣୀରେ ପାଶ୍ କରାଇବା ମୋ ମତ ବିରୁଦ୍ଧ । ମୋର ଦୁଇଜଣଯାକ ପୁଅ ଏ ପ୍ରକାର ବହୁ ବହି ପଢୁଥିଲେ । ବଡ଼ପୁଅ ଅମିତାଭ ଷ୍ଟୁଆର୍ଟ ସ୍କୁଲରେ ସିନିୟର କେମ୍ବ୍ରିଜ୍ ପରୀକ୍ଷାରେ ସର୍ବୋଚ୍ଚ ରେକର୍ଡ଼ ରଖିଥିଲା । ଆଇ.ଆଇ.ଟି.ରେ ସମାଜ ବିଜ୍ଞାନ, ସାହିତ୍ୟ ପ୍ରଭୃତି ସବୁ ବିଷୟରେ ପ୍ରଥମ ବର୍ଷରୁ ଶେଷ ବର୍ଷ ପର୍ଯ୍ୟନ୍ତ 'A' ଗ୍ରେଡ୍ ରଖୁଥିଲା । ଏ ପ୍ରକାର ବ୍ୟାପକ ଜ୍ଞାନର ପରିସର

ଯୋଗୁ ସେ ଯାନ୍ତ୍ରିକ ଇଞ୍ଜିନିୟରିଂରେ ଡିଗ୍ରୀ ପାଇଥିଲେ ସୁଦ୍ଧା ଭବିଷ୍ୟତରେ ବୈଜ୍ଞାନିକ ଓ ବୈଷୟିକ ଗବେଷଣା ଯୋଜନାକୁ ଅର୍ଥନୈତିକ ଓ ସମାଜ ବିଜ୍ଞାନ ସମ୍ବନ୍ଧୀୟ ତଥ୍ୟତଥ୍ୟ ସହିତ ଫଳପ୍ରଦ ଭାବେ ସମନ୍ୱିତ କରିପାରୁଛି । ସାନପୁଅ ମଧ୍ୟ ସବୁ ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇ ମେଡିକାଲ୍‌ରେ ଭଲ କଲା । ସେ ଡାକ୍ତରୀ ପଢ଼ିଲାବେଳେ ମୋ ସାନ ଝିଅକୁ ବି.ଏ.ରେ ମନସ୍ତତ୍ତ୍ୱ ଓ ଇଂରାଜୀ ବୁଝାଇ ଦେଉଥିଲା । ବର୍ତ୍ତମାନ ମୋର ଦୁଇଟି ବଡ଼ ନାତି ମଧ୍ୟ ଏ ପ୍ରକାର ପଢ଼ାପଢ଼ିରେ ଆଗ୍ରହୀ । ବଡ଼ ନାତି ଏପରି ପଢ଼ା ପାଗଳ ଯେ ବହିଧରି ବସିଲେ ସେ ଖାଇବା ପିଇବା ଭୁଲିଯାଏ । ଥରେ ପୁସ୍ତକାଳୟରେ ସକାଳ ନଅଟାରୁ ଦିନ ଚାରିଟା ପର୍ଯ୍ୟନ୍ତ ବସି ପଢୁଥିଲା କାରଣ ଗୋଟାଏ ବେଳେ ତାକୁ ପୁସ୍ତକାଳୟ ଦାୟିତ୍ୱରେ ଥିବା ଲୋକ ଡାକି ନଥିଲେ । ସେ ସମୟ ଭୁଲିଯାଇ ନ ଖାଇ ନ ପିଇ ନଅଟାରୁ ଅପରାହ୍ଣ ଚାରିଟା ଯାଏଁ ବହିଧରି ପଢୁଥିଲା । ସେ ବହିଟି ପୁଣି ଗୋଟିଏ ଇଂରାଜୀରେ ଲେଖା ଜ୍ଞାନକୋଷ । ମୋର ନାତିମାନଙ୍କ ସହିତ ମୁଁ ଘଣ୍ଟା ଘଣ୍ଟା ଧରି ପୃଥିବୀର ସବୁ ବିଷୟରେ ଆଲୋଚନା କରେ... ଆନ୍ତର୍ଜାତିକ ରାଜନୀତି, ଆଇନଷ୍ଟାଇନଙ୍କ ଚତୁର୍ଥ ପରିସର, ବିଶ୍ୱଶାନ୍ତି ନୀତି, ଆଫ୍ରିକା ଦେଶର ବିଭିନ୍ନ ରାଜ୍ୟର ଅର୍ଥନୈତିକ ଅଗ୍ରଗତି... ଇତିହାସ ଇତ୍ୟାଦି ବହୁ ଘଟଣା । ସେମାନଙ୍କଠାରୁ ମୁଁ ବହୁତ କଥା ଶିଖେ । ବାପା, ମା, ଶିକ୍ଷକ ଶିକ୍ଷିକାମାନେ ସେମାନଙ୍କର ପୁଅ ଝିଅ, ନାତି ନାତୁଣୀ ଛାତ୍ରଛାତ୍ରୀଙ୍କଠାରୁ ଅଧିକ ଜ୍ଞାନ ଆହରଣ କରିବାଠାରୁ ଗର୍ବ ଓ ଆନନ୍ଦଦାୟକ ଅନୁଭୂତି ଆଉ କଅଣ ହୋଇପାରେ ।

ମୋ ମନର ଅନ୍ତରତମ ପ୍ରଦେଶରେ ଛୋଟ ପିଲାଙ୍କ ପ୍ରତି ଗଭୀର ସ୍ନେହ ମମତାପୂର୍ଣ୍ଣ ସମାନୁଭୂତି ରହିଯାଇଛି । ଛୋଟ ପିଲାଙ୍କ ହସ, ଖେଳ, ଦୁଃଖ, କଷ୍ଟ ମୋତେ ଅତିମାତ୍ରାରେ ସ୍ପର୍ଶ କରେ । ସେମାନଙ୍କ ସାଙ୍ଗରେ ଖେଳିବାକୁ, ଗପ କରିବାକୁ ଭଲ ଲାଗେ... ସେମାନେ ମଧ୍ୟ ମୋତେ ବହୁତ ଭଲ ପାଆନ୍ତି । ଏମାନେ ଘରଛାଡ଼ି ଚାଲିଗଲେ ଆଖିରେ ଲୁହ ଆସେ । ଗଳ୍ପ, ସିନେମାରେ ମଧ୍ୟ ପିଲାଙ୍କର ଦୁଃଖାନୁଭୂତି ମୋତେ ମ୍ରିୟମାଣ କରେ । ମୋ ପାଖେ ପାଖେ ଛୋଟ ପିଲାମାନେ ସବୁବେଳେ ରହିଥିବାର ଅନୁଭୂତି ମୋତେ ବହୁତ ଆନନ୍ଦ ଦିଏ । ସବୁ ପିଲାଏ ସେମାନଙ୍କର ଦୁଃଖ ସମୟରେ ଯେପରି ମୋର ଅତୀତ ଜୀବନର ଚକର ଛେଉଣ୍ଡର କରୁଣ ପ୍ରତିମୂର୍ତ୍ତି ଭାବରେ ଆସି ଠିଆ ହୁଅନ୍ତି । ମୋ ପିଲାଦିନର ନିଜ ଛବିଟି ଯେପରି ମୋ ମନ ଆଇନାରେ ପ୍ରତିଫଳିତ ହୋଇଯାଏ ।

■ ■ ■

## ୨୪

# ମୋର ଜୀବନଦର୍ଶନ

ପ୍ରତ୍ୟେକ ବ୍ୟକ୍ତିର ଜୀବନଯାପନ ପ୍ରଣାଳୀ ଓ ବ୍ୟାବାହାରିକ ରୀତିନୀତି ପଛରେ ନିଶ୍ଚିତ ଭାବରେ କିଛି ନା କିଛି ଦର୍ଶନ ଓ ଆଭିମୁଖ୍ୟ ରହିଛି । ହୁଏତ କେତେକ ଜୀବନରେ ଏହା ଏପରି ପରିବର୍ତ୍ତିତ ହୋଇ ଚାଲିଥାଏ ଯେ ହଠାତ୍ କହି ହେବନାହିଁ ଏହି ଜୀବନଦର୍ଶନଟି କ'ଣ । ତେଣୁ ତାକୁ ପଚାରିଲେ ତା'ର ଜୀବନ ଦର୍ଶନ କଥା ସ୍ପଷ୍ଟ ରୂପେ କହିପାରିବ ନାହିଁ କିନ୍ତୁ କେତେକଙ୍କଠାରେ ଏହା ଅତି ସ୍ପଷ୍ଟ ଓ ବଳିଷ୍ଠ ଭାବରେ କାମକରୁଥାଏ । ଯାହାର ଜୀବନଦର୍ଶନ ଯେତେ ସ୍ପଷ୍ଟ ଓ ଦୃଢ଼, ତାର ବ୍ୟାବହାରିକ ରୀତି ସେତେ ଶୃଙ୍ଖଳିତ ଓ ସଂହତ । ତା'ର ଦୈନନ୍ଦିନ କାର୍ଯ୍ୟକଳାପକୁ ଲକ୍ଷ୍ୟ କଲେ ଏବଂ କେତେକ ମୁଖ୍ୟ ବ୍ୟାବହାରିକ ରୀତିକୁ ବିଶ୍ଳେଷଣ କଲେ ଏହି ଜୀବନଦର୍ଶନଟିକୁ ଲକ୍ଷ୍ୟକରି ହେବ । ମୁଁ ମୋର ଜୀବନର ନାନା ଅନୁଭୂତି ବର୍ଣ୍ଣନା କଲାବେଳେ ମୋ ଜୀବନ ଦର୍ଶନର ବହୁତ ଉଦାହରଣ ଦେଇଛି । ବର୍ତ୍ତମାନ ସେ ସବୁକୁ ସମନ୍ୱିତ କରି ମୌଳିକ ଦାର୍ଶନିକ ଆଭିମୁଖ୍ୟକୁ ଉପସ୍ଥାପିତ କରାହୋଇଛି ।

(୧) ମୁଁ ସମୟ ସ୍ରୋତର ଗଡ୍ଡାଳିକା ପ୍ରବାହରେ ଚାଲିଥିବା ଅଯୌକ୍ତିକ ରୀତିକୁ ପସନ୍ଦ କରେ ନାହିଁ । ମୋ ଜୀବନ ପଥପାର୍ଶ୍ୱରେ ଥିବା ପ୍ରାକୃତିକ, ସାଂସ୍କୃତିକ, ସାମାଜିକ ତଥା ବୌଦ୍ଧିକ ପରିବେଶକୁ ଆଗାମୀ ସମାଜର ମଙ୍ଗଳମୟ ସ୍ୱପ୍ନ ଓ ରୁଚି ଅନୁଯାୟୀ ପରିବର୍ତ୍ତିତ କରି ଚାଲିବାକୁ ଚାହେଁ । ଏଥିପାଇଁ ମୁଁ ଅଦମ୍ୟ ପରିଶ୍ରମ କରେ । ସମସ୍ତ ପ୍ରକାର ବାଧାବିଘ୍ନ ବିରୁଦ୍ଧରେ ସଂଗ୍ରାମ କରିବାକୁ ମୋତେ ଭଲଲାଗେ । କାରଣ ସଂଗ୍ରାମ ହିଁ ବଞ୍ଚିବାର ସାର୍ଥକତା ଆଣିଦିଏ । ନୂତନ ପରିବେଶର ସାର୍ଥକ ସର୍ଜନାର ଆନନ୍ଦରେ ମୁଁ ଅଭିଭୂତ ହେବାକୁ ଚାହେଁ । ପ୍ରତିବନ୍ଧକ ଆସିଲେ ମୋର ଉଦ୍ୟମ ଦ୍ୱିଗୁଣିତ ହୁଏ । ପ୍ରତିବନ୍ଧକକୁ ଆୟତ୍ତ କରି ନୂତନ ସୃଷ୍ଟି ଓ ପ୍ରଗତିର ଆମନ୍ତ୍ରଣ ପାଇ ନିଜକୁ ପ୍ରସ୍ତୁତ କରିବାରେ ମୋର ଶକ୍ତି ବଢ଼େ । ନିତ୍ୟନୂତନ ଅନୁଭୂତି ହିଁ ଜୀବନରେ ମାଦକତା ଆଣିଦିଏ । ବ୍ୟକ୍ତିତ୍ୱ ତଥା ବୌଦ୍ଧିକ ଶକ୍ତି ଉନ୍ନତ ଓ ପ୍ରସାରିତ ହୁଏ । ଏହି ପରିବର୍ତ୍ତିତ ପରିବେଶ ଭିତରେ ମୁଁ ଅତୀତ ସାଫଲ୍ୟର ପଟଭୂମିରେ ଭବିଷ୍ୟତର ରଙ୍ଗୀନ ସୀମାହୀନ ପ୍ରଲମ୍ବିତ ସମୟ ସ୍ରୋତର ଗୋଟିଏ

କ୍ଷଣସ୍ଥାୟୀ ମାନସିକ ବିଭାଜନ ରେଖା ମାତ୍ର । ମୋର ବର୍ତ୍ତମାନର ଅନୁଭୂତି, ଅତୀତର ଅବିସ୍ମରଣୀୟ ପ୍ରୀତିକର ଅଭିଜ୍ଞତା ଓ ଭବିଷ୍ୟତର ଅଭିନବ ସ୍ୱପ୍ନାୟିତ ଆନନ୍ଦମୟୀ କଳ୍ପନାରଞ୍ଜିତ ମଧୁର ପ୍ରତୀକ୍ଷାର ସମନ୍ୱିତ ଆସ୍ୱାଦନା ମାତ୍ର । ଯାହାର ଅତୀତ ଅସୁନ୍ଦର, ନିରାନନ୍ଦମୟ ଓ ବ୍ୟର୍ଥତାରେ ପୂର୍ଣ୍ଣ, ତା'ର ଭବିଷ୍ୟତ କଳ୍ପନା ମଧ୍ୟ ସେପରି ପ୍ରେରଣାଦାୟକ ହୋଇପାରେ ନାହିଁ । କିନ୍ତୁ ମୋର ସେପରି ଦୁର୍ଭାଗ୍ୟ ହୋଇନାହିଁ ।

ପ୍ରତ୍ୟେକ ମୁହୂର୍ତ୍ତରେ ପାରିପାର୍ଶ୍ୱିକ ଅବସ୍ଥା ସହିତ ବ୍ୟକ୍ତିତ୍ୱର ପ୍ରତିଯୋଜନଗତ ସଂଘର୍ଷରେ ହିଁ ଜୀବନର ଅଭିବ୍ୟକ୍ତି । ନିଜକୁ ଶକ୍ତିଶାଳୀ କରିବାକୁ ହେଲେ ଏପରି ସଂଗ୍ରାମରେ ନିଜର ଶକ୍ତିକୁ ପ୍ରଚଣ୍ଡ ଭାବେ ବିନିଯୋଗ କରିବାକୁ ହେବ । କେହି କାହାକୁ କୌଣସି ପ୍ରକାର କ୍ଷମତା ଦିଏ ନାହିଁ । କ୍ଷମତା ନିଜର କାର୍ଯ୍ୟକଳାପ ମାଧ୍ୟମରେ ଅର୍ଜନ କରିବାକୁ ହୁଏ । ଏହି ନୀତିରେ ଗଭୀର ବିଶ୍ୱାସ ରଖି ମୁଁ କାମ କରି ଆସିଛି ଏବଂ କୃତକାର୍ଯ୍ୟ ହୋଇଛି ମଧ୍ୟ । ମୋ କାର୍ଯ୍ୟକ୍ଷେତ୍ରରେ ବାଧାବିଘ୍ନ ଆସିଲେ ମୁଁ ଦବିଯାଏ ନାହିଁ କି ପଛକୁ ଫେରିଯାଏ ନାହିଁ । କ'ଣ କଲେ ଏହାକୁ ଅତିକ୍ରମ କରିହେବ ତା'ର ସନ୍ଧାନ କରେ । ବହୁ କ୍ଷେତ୍ରରେ ମୋର ସହଯୋଗୀ ବନ୍ଧୁମାନେ ଆସି ଯେତେବେଳେ ହତୋତ୍ସାହିତ ହୋଇ କହନ୍ତି ଯେ କୌଣସି ଗୋଟିଏ କାମ ହୋଇପାରିବ ନାହିଁ, ମୁଁ ସେତେବେଳେ ସେମାନଙ୍କୁ କହେ ଯେ,

"ହୋଇପାରିବ ନାହିଁ ବୋଲି ମୁଁ ଶୁଣିବାକୁ ଚାହେଁ ନାହିଁ । କ'ଣ କଲେ ହୋଇପାରିବ ସେକଥା କୁହ । ଆମେ ତାକୁ ସାଧ୍ୟ କରିବା ।"

ଏ ପ୍ରକାର ଆଭିମୁଖ୍ୟ ଜୀବନ ସଂଗ୍ରାମରେ ମୋତେ ବହୁତ ସାହାଯ୍ୟ କରିଛି ।

ଜୀବନ ପଥରେ ଆଗେଇ ଯିବାରେ ମୋର ଆନନ୍ଦ ଓ ତୃପ୍ତି । ଦୃପ୍ତ ପାଦ ଚିହ୍ନ ପକାଇଯିବା ମୋର କର୍ତ୍ତବ୍ୟ । ଗଢ଼ିବାରେ ମୋର ସାର୍ଥକତା । କିନ୍ତୁ କୌଣସି କାରଣରୁ ତାହା ବିଲୀନ ହୋଇଗଲେ ମୋର ଦୁଃଖ ନାହିଁ ବରଂ ମଜା ଲାଗେ । ଜଣେ ଦାର୍ଶନିକଙ୍କ ଉପସ୍ଥିତିରେ ତାଙ୍କର ଜିନିଷସବୁ ଜଣେ ଦୁର୍ବୃତ୍ତ ନେଇ ଯାଉଥିଲାବେଳେ ସେ ହସି ହସି କହୁଥିଲେ-

"ଦେଖ ମୁଁ ଏଠି ରହିଛି, ମୋ ଆଗରେ ମୋ ଜିନିଷ ଏ ଲୋକଟି ନେଇଯାଉଛି- ଯେପରି ମୁଁ ନାହିଁ । କି ଅଦ୍ଭୁତ ବ୍ୟବହାର ଏ ଲୋକଟିର ।"

ସେହି କଥାଟି ମୋର ମନେପଡ଼ିଯାଏ ଯେତେବେଳେ ମୋର କୃତିତ୍ୱକୁ ଅନ୍ୟମାନେ ଲିଭାଇବାକୁ ଉଦ୍ୟମ କରନ୍ତି । ରେଭେନ୍ସା କଲେଜର ପୂର୍ବ ଛାତ୍ରାବାସ ପିଲାମାନେ ମୋତେ ବହୁତ ଭଲ ପାଉଥିଲେ । ମୁଁ ଛାତ୍ରାବାସ ଛାଡ଼ିଲାବେଳେ ମୋର ଗୋଟିଏ ଖୁବ୍ ବଡ଼ ଫଟୋ ତାଙ୍କ କମନ୍‌ରୁମ୍‌ରେ ରଖିଥିଲେ । ତା'ପରେ ପରବର୍ତ୍ତୀ ସୁପରିନ୍‌ଟେଣ୍ଡେଣ୍ଟ ପ୍ରଥମେ ତାକୁ ବାହାର କରି ଗୋଦାମରେ ରଖି ଦେଇଥିଲେ । ସାଂସ୍କୃତିକ କାର୍ଯ୍ୟକ୍ରମ ସଂଗଠନ ଓ ସେମିନାରପାଇଁ ମୁଁ କେତେକଗୁଡ଼ିଏ ଚଳନ୍ତି କପ୍ ଦେଇଥିଲି । ସେ ସବୁ ସେ ବନ୍ଦ କରି ଦେଇଥିଲେ । ମୁଁ ବିଶ୍ୱବିଦ୍ୟାଳୟ ଶିକ୍ଷକ ସଂଘର ପ୍ରତିଷ୍ଠାତା ସଭାପତି ଓ ବହୁବର୍ଷ ସଭାପତି ଥାଇ ଏହାର ବହୁ ଉନ୍ନତି କରିଥିଲେ ମଧ୍ୟ ମୁଁ ସଂଘରୁ ଅବସର ନେଲାପରେ ମୋତେ ସମ୍ବର୍ଦ୍ଧନା ମିଳିନଥିଲା । ମୋ ବିଶ୍ୱବିଦ୍ୟାଳୟର କେତେକ ଲୋକ, ଯେଉଁମାନଙ୍କର ସବୁଠୁ

ବେଶି ଉପକାର ମୁଁ କରିଥିଲି, ସେମାନେ ମୋତେ ପରିହାର କରିଥିଲେ । ଏସବୁ ଦେଖିଲେ ମୋତେ ବାସ୍ତବିକ୍ ମଜା ଲାଗେ । ପ୍ରତ୍ୟେକ ସାଫଲ୍ୟକର କାର୍ଯ୍ୟରେ କିଛିଟା ନିର୍ଲିପ୍ତତା ରହିଲେ ଜୀବନକୁ ଭଲଭାବରେ ଉପଭୋଗ କରିହୁଏ । ଉପରେ ବର୍ଣ୍ଣିତ ବିଷୟଗୁଡ଼ିକ ମୋତେ ଦୁଃଖ ଦେବା ପରିବର୍ତ୍ତେ ସେହି ଦାର୍ଶନିକର ନିର୍ଲିପ୍ତ ହସ ମୋ'ଠାରେ ସୃଷ୍ଟି ହୁଏ । ମୁଁ ଗୋଟିଏ ଫଟୋଚିତ୍ର ପରି ସଦାସର୍ବଦା ସହାସ ମୁହଁରେ ସେମାନଙ୍କୁ ଚାହିଁ ଆନନ୍ଦ ପାଉଛି ।

(୨) ମୋର । life style ବା ବ୍ୟାବହାରିକ ରୀତି ଏହି ସଂଗ୍ରାମରତ ନିର୍ଭୀକ ଜୀବନଯାପନର ବାହ୍ୟିକ ପ୍ରତିଫଳନ ମାତ୍ର । ଏହା ପଛରେ ଗୋଟିଏ ନୈତିକ ମାନ ରହିଛି । ମୁଁ ଜାଣିଶୁଣି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟପ୍ରଣୋଦିତ ହୋଇ କାହାର କ୍ଷତି ସାଧନ ପାଇଁ ଯୋଜନାବଦ୍ଧ ଭାବରେ କେବେହେଲେ କାମ କରିନାହିଁ । କର୍ମ କ୍ଷେତ୍ରରେ କାହାରି ଉପକାର କରୁ କରୁ କିମ୍ବା ଗୋଟିଏ ବିଶେଷ ଉନ୍ନତିକର କାମ କରିବାରେ ଯଦି ଅନ୍ୟ କାହାରି କ୍ଷତି ସାଧିତ ହୋଇଯାଏ ତେବେ ସେଥିପାଇଁ ମୁଁ ନିଜକୁ ଦାୟୀ ମନେ କରେନାହିଁ । ମୋ ମତରେ ଯେ କୌଣସି ଯୋଜନାବଦ୍ଧ ଭଲ କାମ ଯଦି ଅନ୍ୟ କାହାରି କ୍ଷତି ସାଧନ କରେ ତେବେ ତାହା ଅନୈତିକ ନୁହେଁ । ମୋର ଦୃଢ଼ ବିଶ୍ୱାସ ଯେ, କାହାର କ୍ଷତି ସାଧନ ପାଇଁ ଯୋଜନା କଲେ ସେହି ଲୋକର କ୍ଷତି ହୋଇପାରେ, କିନ୍ତୁ ତୁମେ ମଧ୍ୟ ସେହି ଜାଲରୁ ମୁକ୍ତିଲାଭ କରିପାରିବ ନାହିଁ । ତୁମେ ଯେଉଁ ଗାତ ଅନ୍ୟ ପାଇଁ ଖୋଳିବ ସେଥିରେ ତା ସହିତ ତୁମର ମଧ୍ୟ ପଡ଼ିଯିବାର ସମ୍ଭାବନା ବହୁତ ବେଶି । ଏହାର ବହୁ ଉଦାହରଣ ରହିଛି । ତା'ଛଡ଼ା ଯେଉଁମାନେ ଅନ୍ୟର କ୍ଷତି ସାଧନ କରିବାରେ ଅଭ୍ୟସ୍ତ ଏବଂ ଦୁର୍ନୀତିଗ୍ରସ୍ତ, ସେମାନଙ୍କର ପାରିବାରିକ ଜୀବନ ଆଦୌ ସୁଖମୟ ନୁହେଁ ଏବଂ ସେମାନେ ବହୁ ପ୍ରକାର ମାନସିକ ଓ ଶାରୀରିକ ଅସୁସ୍ଥତା ଭୋଗ କରନ୍ତି । ସେମାନଙ୍କର ବିବେକ ଏପରି ଦୁଶ୍ଚିନ୍ତା ସୃଷ୍ଟି କରେ ଯେ ସେମାନେ କାଳକ୍ରମେ ମଧୁମେହ, ରକ୍ତଚାପ, ପେଟ ଓ ହୃଦ୍‌ରୋଗ ପ୍ରଭୃତି ବ୍ୟାଧି ଭୋଗନ୍ତି । ଏପରି ମଧ୍ୟ ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଏମାନେ ଶାନ୍ତିରେ ଜୀବନାପନ କରିପାରନ୍ତି ନାହିଁ ।

ଥରେ ତୁମେ ଏପ୍ରକାର ଉନ୍ନତ ଜୀବନ ଦର୍ଶନରେ ଅନୁପ୍ରାଣିତ ହେଲେ ତୁମର ବ୍ୟାବହାରିକ ରୀତି ମଧ୍ୟ ବଦଳି ଯିବ । ତୁମେ ପ୍ରତ୍ୟେକ କ୍ଷେତ୍ରରେ ସାହସିକ ପଦକ୍ଷେପ ନେଇପାରିବ । କାରଣ ତୁମର ଉଦ୍ଦେଶ୍ୟ ସ୍ୱଚ୍ଛ । ତା'ପଛରେ କୌଣସି କ୍ଷତିକାରକ ଅଭିସନ୍ଧି ନାହିଁ । ତେଣୁ ଅଗ୍ରଧର୍ଷୀ କାର୍ଯ୍ୟ ପାଇଁ ତୁମେ ପଛେଇ ଯିବ ନାହିଁ । ନିର୍ଭୀକତା ଆପେ ଆପେ ଆସିଯିବ । ତୁମ ପକ୍ଷରେ ଦୋଷୀ ଲୋକ ପରି ଲୋଚାକୋଚା ଭାବ ପ୍ରକାଶ କରିବାର ଆବଶ୍ୟକତା ରହିବ ନାହିଁ । ବିବେକ ଦଂଶନଗତ ଭୟ ହେବାର ସମ୍ଭାବନା ନାହିଁ । ଏ ପ୍ରକାର ବ୍ୟବହାର ମୋତେ ବହୁତ ଭଲ ଲାଗେ । ମୋତେ ଅନେକ କୁହନ୍ତି ଯେ ମୁଁ ଯେପରି ବ୍ୟାବହାରିକ ରୀତି ଗ୍ରହଣ କରିଛି ସେଥିରେ କୌଣସି ଉଚ୍ଚ ସରକାରୀ ପଦବୀ ମୋତେ ମିଳିବାର ସମ୍ଭାବନା ନାହିଁ । ଏ ବିଷୟଟି ମୁଁ ଭଲ ଭାବରେ ହୃଦୟଙ୍ଗମ କରି ମୋର ବ୍ୟାବହାରିକ ରୀତିକୁ ସେହି ଅନୁସାରେ ଦୃଢ଼ୀଭୂତ କରିଛି । ଅଗ୍ରଧର୍ଷୀ ବ୍ୟବହାର ଅର୍ଥ ଶାଳୀନତାହୀନ ଉଦ୍ଧତ ବ୍ୟବହାର ନୁହେଁ । ଯାହା ଯଥାର୍ଥ ତାହା କହିବାରେ ବା କରିବାରେ ପଶ୍ଚାତପଦ ନ ହେବା ଏ ପ୍ରକାର ବ୍ୟବହାରର ମୂଳ ଭିତ୍ତି । ବ୍ୟବହାରରେ

ଭଦ୍ରତା, ଶିଷ୍ଟତା ଓ ରୁଚିକର ଚଳଣି ହେଉଛି ମନୁଷ୍ୟର ଫଳପ୍ରଦ ସାମାଜିକ ରୀତି । ଏଥିରେ ବ୍ୟତିକ୍ରମ ବା ବିଚ୍ୟୁତି ମୋର ପସନ୍ଦ ନୁହେଁ ।

(୩) ମୋ ଜୀବନର ଆଭିମୁଖ୍ୟ ସହିତ ମୋର ସମସ୍ତ ପ୍ରକାରର ବିଶ୍ୱାସ ଓ ବ୍ୟାବହାରିକ ରୀତିନୀତିର କୌଣସି ବିରୋଧାତ୍ମକ ଅସଙ୍ଗତି ନାହିଁ । ମୋର ଆଭିମୁଖ୍ୟ ଅନୁସାରେ ବିଶ୍ୱାସ ଗଢ଼ି ଉଠିଛି ଏବଂ ସେହି ବିଶ୍ୱାସ ଅନୁଯାୟୀ ମୋର କ୍ରିୟାକଳାପ ନିୟନ୍ତ୍ରିତ ହୋଇଥାଏ । ଏହି କ୍ଷେତ୍ରରେ ଅସାମଞ୍ଜସ୍ୟଗତ ବିରୋଧିତା ମନୁଷ୍ୟର ବ୍ୟକ୍ତିତ୍ୱକୁ ଦୁର୍ବଳ କରିପକାଏ ବୋଲି ମୋର ବିଶ୍ୱାସ । ଗୋଟିଏ କଥା କହୁଥିବ ଏବଂ ତାର ଠିକ୍ ବିପରୀତ କାମ କରିବ; ବାହାରେ କୁସଂସ୍କାର ବିରୁଦ୍ଧରେ କହିବ କିନ୍ତୁ ସମସ୍ତଙ୍କ ଅଗୋଚରରେ ସେହି କୁସଂସ୍କାରଗତ କାମ କରୁଥିବ; ଦୁର୍ନୀତିରେ ଲିପ୍ତ ଥିବ କିନ୍ତୁ ବାହାରେ ଦୁର୍ନୀତି ବିରୁଦ୍ଧରେ ଅନର୍ଗଳ ବକ୍ତୃତା କରୁଥିବ ଇତ୍ୟାଦି । ଏପରି ପରସ୍ପର ବିରୋଧୀ କାର୍ଯ୍ୟରେ ଲିପ୍ତ ଥିବା ଲୋକଠାରେ ବହୁତ ପ୍ରକାର ମାନସିକ ସଂଘର୍ଷ ଓ ଉଦ୍‌ବେଗ କାମ କରୁଥାଏ । ଫଳରେ କୌଣସି କ୍ଷେତ୍ରରେ ଶକ୍ତିଶାଳୀ ଆଭିମୁଖ୍ୟ ସେମାନେ ଗ୍ରହଣ କରିପାରନ୍ତି ନାହିଁ... ପ୍ରଚଣ୍ଡ ଆହ୍ୱାନର ସମ୍ମୁଖୀନ ହୋଇପାରନ୍ତି ନାହିଁ । ଏ ବିଷୟରେ ମୁଁ ସବୁବେଳେ ସଚେତନ ଥାଏ । ଯେଉଁଥିରେ ମୋର ବିଶ୍ୱାସ ନାହିଁ ସେପରି କାମ ମୁଁ କଦାପି ଅନ୍ୟଦ୍ୱାରା ପ୍ରଭାବିତ ହୋଇ କରେ ନାହିଁ । ମୁଁ ନାସ୍ତିକ ହିସାବରେ ମନ୍ଦିର ଭିତରକୁ ଗଲେ ମଧ୍ୟ ଠାକୁରଙ୍କୁ ପ୍ରଣାମ କରେ ନାହିଁ କି ପାଦୁକା ସେବନ କରେନାହିଁ । ମୁଁ ଜାତିମାନେ ନାହିଁ ଅର୍ଥ ଯେ କୌଣସି ପରିଷ୍କାର ଥିବା ଲୋକଠାରୁ ଖାଇବାରେ ମୋର ଆପତ୍ତି ନାହିଁ । ମୁଁ ଆମିଶାଷୀ ହୋଇଥିବା ଯୋଗୁ ଯେ କୌଣସି ମାଂସ ଖାଏ । ଅନ୍ୟ କାହାକୁ ଅପମାନିତ କରିବା ଉଦ୍ଦେଶ୍ୟରେ ଏସବୁ କରେ ନାହିଁ; ମୋ ମତ ଅନୁସାରେ ମୁଁ କରେ । ମୋର ବିଶ୍ୱାସ, ଚିନ୍ତାଧାରା ଓ ବ୍ୟାବହାରିକ ରୀତି ମଧ୍ୟରେ ସୁସଙ୍ଗତ ସମନ୍ୱୟ ରଖିବାକୁ ମୁଁ ସଦାସର୍ବଦା ଉଦ୍ୟମ କରିଆସିଛି ଏବଂ ଏଥିରେ ମୁଁ ବହୁ ପରିମାଣରେ କୃତକାର୍ଯ୍ୟ ହୋଇପାରିଛି ବୋଲି ମୋର ହୃଦବୋଧ ହୋଇଛି ।

(୪) ମୁଁ ସମସ୍ତଙ୍କ କଥାକୁ ପ୍ରଥମରୁ ବିଶ୍ୱାସ କରିଯାଏ । ଅନେକେ ଅଛନ୍ତି କୌଣସି କଥା ସତ ପ୍ରମାଣିତ ନ ହେବାଯାଏ ସେମାନେ ତାକୁ ବିଶ୍ୱାସ କରନ୍ତି ନାହିଁ ମୁଁ କିନ୍ତୁ ମିଥ୍ୟା ପ୍ରମାଣିତ ନ ହେଲାଯାଏ ଲୋକଙ୍କ କଥା ବିଶ୍ୱାସ କରେ । ତା'ଫଳରେ ମୋର ଯେ କ୍ଷତି ନ ହୋଇଛି ତାହା ନୁହେଁ । କିନ୍ତୁ ମୁଁ ବର୍ତ୍ତମାନ ଏହା ସମୀକ୍ଷା କରି ଦେଖିଲେ ସବୁ ରକମର କ୍ଷତି ଅପେକ୍ଷା ସାମଗ୍ରୀକ ଭାବରେ ମୋର ଓ ପରିବାରର ବେଶି ଉପକାର ହୋଇଛି ବୋଲି ମୋର ବିଶ୍ୱାସ । ଗୋଟିଏ ଛୋଟିଆ ଉଦାହରଣ ଦେଉଛି । ମୋର ଘର ତିଆରି ବେଳେ ମୂଲିଆ ଓ ମିସ୍ତ୍ରୀମାନେ ଆଗତୁରା ଟଙ୍କା ମାଗିଲେ ମୁଁ ସାଙ୍ଗେ ସାଙ୍ଗେ ଦେଇଦିଏ । ସେମାନଙ୍କ ଭିତରୁ କେତେକ ଆଉ ଫେରିନାହାନ୍ତି କି ଟଙ୍କା ଫେରାଇ ନାହାନ୍ତି । କିନ୍ତୁ ଯେଉଁମାନେ ଫେରିଛନ୍ତି ସେମାନେ କୃତଜ୍ଞତାର ସହିତ ବିଶ୍ୱସ୍ତ ଭାବରେ ଏପରି ଭଲ ଭାବରେ କାମ କରିଛନ୍ତି ଯେ ତାହା ତୁଳନାରେ ମୋର କ୍ଷତିର ପରିମାଣ ନିଶ୍ଚିତ ଭାବରେ କମ୍ । ଏହିପରି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ମୋର ସରଳ ବିଶ୍ୱାସ ଯୋଗୁଁ ମୁଁ ଖୁବ୍ ବେଶି ପ୍ରତାରିତ ହୋଇନାହିଁ । ଯେଉଁଠି ବା ଠକାମିରେ ପଡ଼ିଛି ଅନ୍ୟ କ୍ଷେତ୍ରରେ ଠିକ୍ ଏହି

କାରଣରୁ ମୋର ବହୁତ ଉପକାର ହୋଇଛି । ଅନେକ ସମୟରେ ଆମେମାନେ ଠକିଥିବା ଲୋକଙ୍କ କଥା ମନେରଖି କିନ୍ତୁ ତାର ବିପରୀତ ଦିଗଟିକୁ ଲକ୍ଷ୍ୟ ନ କରି କେବଳ ଠକାମି କଥା ଗୁଡ଼ିକ ସମସ୍ତଙ୍କ ଆଗରେ କହୁ । ଏହିପରି ବହୁବାର ସେହି କଥାଗୁଡ଼ିକ କହିଲା ପରେ ଆମର ସେଥିରେ ବିଶ୍ୱାସ ହୋଇଯାଏ । ତେଣୁ ମୋର ବିଶ୍ୱାସ କରିଯିବା ଅଭ୍ୟାସ ଯୋଗୁ ମୁଁ ଆଦୌ ଅନୁତପ୍ତ ନୁହେଁ ।

ଅନ୍ୟକୁ ସାହାଯ୍ୟ କଲାବେଳେ ଏପରି ବିଶ୍ୱାସ ସହିତ କାମ କରାଯାଇଥାଏ । ମୋ ଉପରେ ମଧ୍ୟ ଅନ୍ୟମାନଙ୍କର ବିଶ୍ୱାସ ଥାଏ । କାରଣ ଯେଉଁ କାମ ମୋ ଦ୍ୱାରା ହୋଇପାରିବ ନାହିଁ କି ଯାହା କରିବା ସମ୍ଭବ ନୁହେଁ ସେ ବିଷୟରେ ମୁଁ ପ୍ରଥମରୁ ସମସ୍ତଙ୍କୁ ପରିଷ୍କାର ଭାବରେ ବୁଝାଇ ଦିଏ ଯାହା ଫଳରେ ସେମାନଙ୍କ ମନରେ ଆଉ ସନ୍ଦେହ ରହିବନାହିଁ । କିନ୍ତୁ ଯେଉଁ କାମ କରିଦେବା ଲାଗି ମୁଁ ପ୍ରତିଶ୍ରୁତି ଦିଏ, ତାହା ନିଶ୍ଚିତ ଭାବେ କରେ ଓ କରାଏ । ପ୍ରତିଶ୍ରୁତି ଦେବା ଅର୍ଥ ମୁଁ ନିଶ୍ଚୟ କରିବି ଏ ବିଶ୍ୱାସ ଅନ୍ୟମାନଙ୍କର ହୁଏ । ପ୍ରତିଶ୍ରୁତି ଦେଇ କାମ ନ କରିବା ଘଟଣା ମୋ ଜୀବନରେ ବହୁତ କମ୍ ବୋଲି ମୋର ଧାରଣା ।

ଜଣକର ବହୁତ ଉପକାର କଲାପରେ ମଧ୍ୟ ସେ ଯଦି ମୋର ଅପକାର କଲା ତାହାହେଲେ ମଧ୍ୟ ମୁଁ ସେକଥା ଭୁଲିଯିବାକୁ ଚେଷ୍ଟା କରେ । କାରଣ ତାକୁ ସାହାଯ୍ୟ କରି ମୁଁ ଯେଉଁ ଆନନ୍ଦ ଲାଭ କରିଛି ସେପରି ଅନାବିଳ, ଆନନ୍ଦମୟ ଅନୁଭୂତିକୁ ଅନୁଶୋଚନା ଓ ବିଦ୍ୱେଷ ଜନିତ ବିଷଦ୍ୱାରା ଆବିଳ କରିବାରେ ଲାଭ କଣ ? ଅମୃତର ଅନୁଭବକୁ ବିଷାକ୍ତ କରିବାରେ ଲାଭ କ'ଣ ? ଏ ପ୍ରକାର ପରିସ୍ଥିତିରେ ମୋର କିଛିଟା ଦୁଃଖ ଯେ ନ ହୁଏ ତାହା ନୁହେଁ କିନ୍ତୁ ବେଶି ସମୟ ମୁଁ ତାକୁ ମନରେ ରଖେନାହିଁ । ମୋର ମାନସିକ ଦିଗ୍‌ବଳୟରୁ ସେମାନଙ୍କର ସ୍ମୃତିକୁ ପୋଛିଦିଏ । ଏପରି ଅନୁଭୂତିକୁ ନଗଣ୍ୟ ଭାବରେ ଦେଖେ । ବିନା ଦ୍ୱିଧା ଓ ବିନା ସନ୍ଦେହରେ ଅନ୍ୟ କାହାକୁ ସାହାଯ୍ୟ କରିବାରେ ମୋର ସ୍ୱତଃଜାତ ଆନନ୍ଦ ହୁଏ । କିନ୍ତୁ ତାକୁ ସର୍ତ୍ତାଧୀନ ବା କୃତଜ୍ଞତା ପାଇବା ଆଶାରେ କରାହେଲେ ତାର ପବିତ୍ରତା ନଷ୍ଟ ହୋଇଯାଏ ବୋଲି ମୁଁ ଭାବେ । ତାହା ନ ହୋଇଥିଲେ କେତେକ ଲୋକଙ୍କର ଅକ୍ଷମଣୀୟ ଅକୃତଜ୍ଞତାର ଦୁଃଖରେ ମୋ ଜୀବନ ଦୁର୍ବିସହ ହୋଇଯା'ନ୍ତା । ଅତୀତରେ ଭଲ କାମ କରି ମଧ୍ୟ ବର୍ତ୍ତମାନର ଜୀବନ କେବଳ ଅନୁଶୋଚନା ଓ ବିରକ୍ତିରେ ଭରି ଉଠନ୍ତା । ଅନ୍ୟକୁ ସାହାଯ୍ୟ କରିବାର ସାତ୍ତ୍ୱିକ, ଆନନ୍ଦକୁ ରାଗ, ଦ୍ୱେଷ, ପ୍ରତିହିଂସା ପ୍ରଭୃତି ତାମସିକ ଦ୍ୱନ୍ଦ୍ୱରେ ପରିଣତ କରି ନିଜର କ୍ଷତି ସାଧନ କରିବା ଚରମ ମୂର୍ଖତାର ପରିଚାୟକ ବୋଲି ମୋର ଦୃଢ଼ ବିଶ୍ୱାସ ।

(୫) ମୋର ଯେଉଁ ଲୋକ କ୍ଷତି କରେ ତା'ପ୍ରତି ଯଦି କେଉଁଠି ଅନ୍ୟାୟ କରାହେଉଥାଏ, ମୁଁ ସୁବିଧା ପାଇଲେ ତାକୁ ସାହାଯ୍ୟ କରେ । ଏପରି କାର୍ଯ୍ୟରେ କେବଳ ଯେ ଆନନ୍ଦ ହୁଏ ତା ନୁହେଁ ଏହା ମୋ ମନକୁ ଶକ୍ତିଶାଳୀ କରେ । ଯିଏ ମୋର ବଦ୍‌ନାମ କରେ ବା କ୍ଷତି କରେ ତାର ପ୍ରତିଶୋଧ ପାଇଁ ଯଦି ମୁଁ ଲାଗିପଡ଼ନ୍ତି, ତା'ହେଲେ ମୋର ମନ ବିଷାକ୍ତ ହୋଇଯିବା ସ୍ୱାଭାବିକ । ଏ ପ୍ରକାର ବ୍ୟାବହାରିକ ତଥା ଚିନ୍ତନର ପାପଚକ୍ର ଭିତରେ ମୋର ସବୁବେଳେ ବୁଡ଼ିରହିବାର ସମ୍ଭାବନା । କ୍ଷତିର ପ୍ରତିବଦଳରେ ପ୍ରତିଶୋଧ

ଏ ପ୍ରକାର ପାପଚକ୍ର ମୁଁ ପ୍ରଥମରୁହିଁ ସୃଷ୍ଟି କରେ ନାହିଁ । କେବଳ ବିଶ୍ଳେଷଣ କରି ଦେଖେ ଯେ ଏହା ପଛରେ ସତ୍ୟତା କେତେଦୂର ରହିଛି ଏବଂ ମୁଁ ସେଥିପାଇଁ କେତେ ଦୂର ଦାୟୀ । ଏସବୁ ପାଇଁ ମୁଁ ଦାୟୀ ନଥିଲେ ମୋତେ ଏସବୁ ସ୍ପର୍ଶ କରେ ନାହିଁ ଏବଂ ମୋର ପୂର୍ବ ବ୍ୟବହାରରେ ପରିବର୍ତ୍ତନ ହୁଏନାହିଁ । ଯେଉଁ କାର୍ଯ୍ୟ ପାଇଁ ଅନ୍ୟମାନେ ମୋର ବଦନାମ କରନ୍ତି ସେ ବିଷୟରେ ନିଜକୁ ଦୋଷମୁକ୍ତ ବୋଲି ଭାବିଲେ ସେ କାର୍ଯ୍ୟରୁ ମୁଁ କ୍ଷାନ୍ତ ହୁଏ ନାହିଁ । ବରଂ ମୁଁ ପଛେଇଗଲେ ହିଁ ସେମାନଙ୍କର ବିଜୟ । ଶେଷ ପର୍ଯ୍ୟନ୍ତ ମୁଁ ପଛେଇ ନ ଗଲେ ସେମାନେ ଛାଏଁ ଛାଏଁ ପରାସ୍ତ ହୋଇଯା'ନ୍ତି । ଅର୍ଥାତ୍ ମୋର ପ୍ରତ୍ୟେକ କାମରେ ମୋର ବିବେକର ଅନୁମୋଦନ ଥାଏ । ତାହା ନହେଲେ ଓଡ଼ିଶା ପରି ଅନଗ୍ରସର ସମାଜରେ ବହୁ କାମରେ ଆଗେଇବା ସମ୍ଭବ ନୁହେଁ ।

(୬) ମୁଁ ଭଗବାନଙ୍କୁ ବିଶ୍ୱାସ କରେନାହିଁ କିନ୍ତୁ ମାନବିକତାର ମୋର ଦୃଢ଼ ବିଶ୍ୱାସ । ମନୁଷ୍ୟ ସମାଜ ମୋର ସମସ୍ତ ଜୀବନ ଦର୍ଶନର ମୂଳଭିତ୍ତି । ଲୋକମାନଙ୍କ ସହିତ ମୋର ଭଲ ସଂପର୍କ ରହିଆସିଛି । ଆଜି ପର୍ଯ୍ୟନ୍ତ ଏପରି କୌଣସି ଅଶାନ୍ତିକର ତଥା ଦୁଃଖଦାୟକ ଘଟଣା ଭିତରେ ମୁଁ ଜଡ଼ିତ ହୋଇନାହିଁ । ମୋର ଦୃଢ଼ ଆତ୍ମ ବିଶ୍ୱାସ ଓ ସମସ୍ତଙ୍କ ପାଇଁ ଗଭୀର ମମତା ରହିଆସିଛି । ଫଳରେ ମୁଁ ସୁଖକର ଜୀବନଯାପନ କରିପାରିଛି । ମୋଠାରେ ଅଯଥା ଦୁଶ୍ଚିନ୍ତା, ଦୁଃଖ, ଅଶାନ୍ତି ଓ କୌଣସି ପ୍ରକାରର ତୀବ୍ର ଉଦ୍‌ବିଗ୍ନତା ନାହିଁ କହିଲେ ଚଳେ । ଅଧିକାଂଶ ସମୟରେ ମୋ ମନରେ ଗୋଟିଏ ପ୍ରକାର ଶାନ୍ତ ଓ ଆନନ୍ଦମୟ ଭାବାବେଗ କାମ କରୁଛି । ଏକା ଏକା ବସି ସୂର୍ଯ୍ୟ, ଚନ୍ଦ୍ର, ତାରା, ପାଣି, ପବନ ଓ ଆକାଶର ଗଭୀରତାକୁ ଲକ୍ଷ୍ୟକରିବାକୁ ମୋତେ ଭଲ ଲାଗେ । କେତେକ କ୍ଷେତ୍ରରେ ଗୋଟିଏ ପ୍ରକାରର ଶାନ୍ତ ମାନସିକ ନିର୍ଲିପ୍ତତା ମଧ୍ୟ ରହିଛି ।

ଏ ପ୍ରକାର ମାନସିକ ଅବସ୍ଥା ସୃଷ୍ଟି ପାଇଁ ମୋର ପ୍ରାୟ ୪୦ବର୍ଷର ଯୋଗାସନ, ପ୍ରାଣାୟାମ ଓ ଧ୍ୟାନ କରିବା ଅଭ୍ୟାସ କିଛି ପରିମାଣରେ ଦାୟୀ । ମୁଁ ଏ ସଂସାରର ମାୟାଜାଲରୁ ମୁକ୍ତି ଲାଭ କରି ଭଗବତ୍ ଦର୍ଶନ ଆକାଂକ୍ଷା ରଖି ଯୋଗାସନ, ପ୍ରାଣାୟମ କରୁନାହିଁ । ମୋର ଶାରୀରିକ, ମାନସିକ ଓ ସାମଗ୍ରୀକ ସୁସ୍ଥତା ପାଇଁ ଏ ସବୁ କରେ । ଯୋଗାସନ ଅଭ୍ୟାସ ଯୋଗୁଁ ମୁଁ ସୁସ୍ଥ, ସବଳ ଓ ସଂପୂର୍ଣ୍ଣ ଭାବେ ନିରୋଗ ରହିଛି । ଏପରି ସୁସ୍ଥ ଦେହ ଓ ମନ ନେଇ ମୁଁ ଅନ୍ତତଃ ଶହେବର୍ଷ ବଞ୍ଚିବି ବୋଲି ଭାବୁଛି । ଶହେବର୍ଷ ବଞ୍ଚିବାରେ ଯେପରି ଆନନ୍ଦ, ଯେ କୌଣସି ମୁହୂର୍ତ୍ତରେ ମୃତ୍ୟୁର ନିମନ୍ତ୍ରଣ ରକ୍ଷା କରି ହସ ହସ ମୁହଁରେ ପୃଥିବୀରୁ ବିଦାୟ ନେବାରେ ମଧ୍ୟ ମୋର କୌଣସି ଦୁଃଖ ରହିବନାହିଁ । ଜୀବନର ଅତି ଉଚ୍ଚ ଆସନରେ ବସି ନଥିଲେ ମଧ୍ୟ, ସମାଜର ଜଣେ ଖ୍ୟାତିସମ୍ପନ୍ନ ବ୍ୟକ୍ତି ହିସାବରେ ପ୍ରତିଷ୍ଠିତ ନ ହୋଇଥିଲେ ବି ନିଜ ଜୀବନର ପୂର୍ଣ୍ଣ ସାର୍ଥକତା ଯୋଗୁହିଁ ହସ ହସ ମୁହଁରେ ପୃଥିବୀରୁ ଶେଷ ବିଦାୟ ନେବା ପାଇଁ ମନରେ ଦମ୍ଭ ରହିଛି ।

ମୁଁ ଭଗବାନକୁ ବିଶ୍ୱାସ କରେ ନାହିଁ ତେଣୁ ମୁଁ ଶୂନ୍ୟତାକୁ ଧ୍ୟାନ କରେ । ଏ ପ୍ରକାର ଧ୍ୟାନ ବହୁତ କଷ୍ଟ ହେଲେ ମଧ୍ୟ ବହୁ ଅଭ୍ୟାସ ପରେ ଏହା ସମ୍ଭବ ହୁଏ । ଧ୍ୟାନ ଅବସ୍ଥାରେ ମୋର ଯେପରି କୌଣସି ସ୍ଥିତି ନଥାଏ । ମୁଁ ସୀମାହୀନ ନୀଳିମା ଭିତରେ କିଛି ସମୟଯାଏଁ ଯେପରି ଲୀନ ହୋଇଯାଏ । ଚେତନା ଶକ୍ତି ଫେରିଆସିଲା ପରେ ଅତ୍ୟଧିକ ଶାନ୍ତି ଓ

ଆନନ୍ଦ ସହିତ ନିଜକୁ ଉଶ୍ୱାସ ଓ ଉଦ୍‌ବେଗଶୂନ୍ୟ ମନେହୁଏ । ମନ ଭିତରୁ ସବୁପ୍ରକାରର ବାହ୍ୟ ଚାପ ବା ବିରକ୍ତିକର ପ୍ରଭାବ ଲିଭିଯାଏ । ଜୀବନୀଶକ୍ତି ବିରୋଧୀ ସମସ୍ତ ରାଜସିକ ଓ ତାମସିକ ଅନୁକ୍ରିୟା ଏହି ଅତୀନ୍ଦ୍ରିୟାନୁଭୂତିକ ନୀଳିମାର ଆଲୋକ ଭିତରେ ସାତ୍ତ୍ୱିକ ଆବେଗରେ ପରିଣତ ହୋଇଯାଏ । ମନପ୍ରାଣ ଆତ୍ମିକ ସ୍ୱଚ୍ଛ ତରଙ୍ଗରେ ଛନ୍ଦାୟିତ ହୁଏ । ନୂତନ ଶକ୍ତିରେ ଦେହ, ମନ ସଞ୍ଜୀବିତ ତଥା ଉନ୍ମୀଳିତ ହୁଏ ।

ମୁଁ ସମସ୍ତଙ୍କୁ ଯୋଗଧ୍ୟାନ କରିବାକୁ ଉପଦେଶ ଦିଏ । ଅନେକ ଭାରାକ୍ରାନ୍ତ ଓ ମାନସିକ ଭାରସାମ୍ୟ ହରାଇଥିବା ଲୋକକୁ ଯୋଗାସନ ଓ ଧ୍ୟାନ କରିବା ପାଇଁ ମୁଁ ପରାମର୍ଶ ଦିଏ । ସେମାନେ ଏଥିରେ ଉପକୃତ ହୁଅନ୍ତି ।

ନିର୍ଲିପ୍ତତା ଅର୍ଥ ନୁହେଁ ଯେ ଜାଗତିକ ତଥାକଥିତ ମାୟାଜାଲ ପ୍ରତି ମୁଁ ନିଃସ୍ପୃହ । ଏ ଜଗତର ତଥାକଥିତ ମାୟାଜାଲ ସତ୍ୟ ଏବଂ ସୁନ୍ଦର । ତେଣୁ ଜୀବନର ସବୁ ସୁନ୍ଦର ଜିନିଷ ମୋତେ ଆକର୍ଷଣ କରେ, ମୋ ମନକୁ ସ୍ପର୍ଶ କରେ । ଜୀବନକୁ ମୁଁ ଗଭୀର ଭାବରେ ଭଲପାଏ । ତେଣୁ ଜୀବନକୁ ଉପଭୋଗ କରେ । କିନ୍ତୁ ଏମାନଙ୍କର ଅସ୍ଥାୟୀତ୍ୱ ବା କ୍ଷଣସ୍ଥାୟୀତ୍ୱ ଯୋଗୁଁ ଯେଉଁ ଦୁଃଖ ବା ବିଷାଦ ହେବା କଥା – ସେ ଦୃଷ୍ଟିରୁ ମୁଁ ମୁକ୍ତ ଓ ଆସକ୍ତିହୀନ । ବନ୍ଧନ ମଧୁର ସତ, କିନ୍ତୁ ବନ୍ଧନମୁକ୍ତ ଚେତନା ଆହୁରି ମଧୁରତର ଓ ଉପଭୋଗ୍ୟ । ସଂପର୍କ ସୃଷ୍ଟି କରିବାରେ ମୁଁ ଯେପରି ଆଗ୍ରହୀ, ସଂପର୍କହୀନ ଅବସ୍ଥାରେ ମଧ୍ୟ ମୋର ସେହିପରି ଆସକ୍ତିରହିତ ଆନନ୍ଦ । ସମସ୍ତଙ୍କୁ ସୁଖୀ ଦେଖିବାରେ, ସେମାନଙ୍କୁ ଭଲ ବୋଲି ଭାବିବାରେ ମୋର ଗଭୀର ଆତ୍ମସନ୍ତୋଷ । ମଙ୍ଗଳମୟ ଭାବନା ଅମଙ୍ଗଳ ଭାବନାଠାରୁ ବହୁତ ସ୍ୱାସ୍ଥ୍ୟକର, ଶାନ୍ତିଦାୟକ ଓ ପ୍ରେରଣାତ୍ମକ– ଏ କଥା ବହୁବର୍ଷ ହେଲା ମୁଁ ଅନୁଭବ କରିଆସୁଛି । ଏହି ଗୋଟିଏ ଜୀବନରେ ମୋର ଆରମ୍ଭ ଓ ଶେଷ । ତେଣୁ ପର ଜୀବନ ଲାଗି ଧର୍ମ ଓ ସତ୍‌କର୍ମ ସଞ୍ଚୟ କରିବା ଲାଗି ମୋର କୌଣସି ଆଗ୍ରହ ବା ଉଦ୍‌ବିଗ୍ନତା ନାହିଁ । ଜୀବନର ଶେଷ ରଶ୍ମି ଲିଭିଯିବା ଯାଏଁ ଏ ପ୍ରକାର ଅନାବିଳ, ଦ୍ୱନ୍ଦ୍ୱହୀନ ଓ ନିର୍ଲିପ୍ତ ମାନସିକ ସ୍ଥିତି ରହିଥିବା ମୋର କାମ୍ୟ ।

■ ■ ■

୧

# ଖେଳ ମାଧ୍ୟମ ଶିଶୁ ଶିକ୍ଷା ଆୟୋଜନ

୧୯୭୦ ଦଶକରେ ଜାତୀୟ ଶିକ୍ଷା ତାଲିମ୍ ଓ ଗବେଷଣା ପରିଷଦ, ଦିଲ୍ଲୀର ବହୁ କମିଟିର ପରାମର୍ଶଦାତା ହିସାବରେ ମୁଁ କାମ କରିବାରେ ବହୁତ ଆନନ୍ଦ ପାଉଥିଲି । ଏହାର ତତ୍କାଳୀନ ଅଧ୍ୟକ୍ଷ ଡ଼ାକ୍ତର ଶିବ କୁମାର ମିତ୍ର ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ସେ ମୋର ସହପାଠୀ ଥିଲେ । ଶିକ୍ଷା କ୍ଷେତ୍ରରେ ବହୁ କଳ୍ପନାଜଳ୍ପନା, ଯୋଜନା, ତାଲିମ୍ କାର୍ଯ୍ୟକ୍ରମ ପ୍ରଭୃତିରେ ଆମେ ଦୁହେଁ ବହୁ ସମୟ କଟାଉଥିଲୁ । ପ୍ରଚଳିତ ନିର୍ସରୀ ସ୍କୁଲ ଶିକ୍ଷା ପ୍ରଣାଳୀ ଆମ ମତରେ ଛୋଟ ଛୋଟ ପିଲାଙ୍କର ମନସ୍ତାତ୍ତ୍ୱିକ ବିକାଶ ଦୃଷ୍ଟିରୁ ବହୁତ ଅନିଷ୍ଟକର ଥିଲା । ଏହି କାର୍ଯ୍ୟକ୍ରମକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ସଂଶୋଧନ କରିବା ଲାଗି ସଂକଳ୍ପ ନେଲୁ । ଆମେ କେତେଜଣ ଦିଲ୍ଲୀରେ ପ୍ରଚଳିତ ଥିବା କେତେଗୁଡ଼ିଏ ନର୍ସରୀ ସ୍କୁଲ ବୁଲି ବୁଲି ଦେଖିଲୁ । ଏହାର ପରିବର୍ତ୍ତିତ ଓ ପରିମାର୍ଜିତ ଆଧୁନିକ ଖେଳ ମାଧ୍ୟମ ଶିଶୁ ଶିକ୍ଷା ବିଷୟରେ ଚିଠା ପ୍ରସ୍ତୁତ କରିବା ପାଇଁ ଜାତୀୟ ଶିକ୍ଷା ତାଲିମ୍ ଓ ଗବେଷଣା ପରିଷଦ ନିଷ୍ପତ୍ତି ନେଲା ଏବଂ କାଳକ୍ରମେ ଏପରି ଶିକ୍ଷା କାର୍ଯ୍ୟକ୍ରମର ବିଧିବଦ୍ଧ ପାଠ୍ୟକ୍ରମ ତିଆରି ହୋଇଥିଲା ।

ଏଥିରେ ମୁଁ ଅନୁପ୍ରାଣିତ ହୋଇ ମୋର ମନସ୍ତତ୍ତ୍ୱ ବିଭାଗରେ ମଧ୍ୟ ଗୋଟିଏ ଖେଳ ମାଧ୍ୟମ ଶିଶୁ ଶିକ୍ଷା କେନ୍ଦ୍ର ୧୯୭୯ରେ ସ୍ଥାପନ କଲି । ଦୁଇଜଣ ଶିକ୍ଷିକାଙ୍କୁ ତାଲିମ୍ ଦେଇ ଗୋଟିଏ ମାସ ଭିତରେ ଏହି କାର୍ଯ୍ୟକ୍ରମ ଆରମ୍ଭ କରିଥିଲି । ଏଥିପାଇଁ ମୋ ହାତରୁ ହଜାରେ ଟଙ୍କା ଦେଇ ଏହା ଆରମ୍ଭ କଲି । କାଳକ୍ରମେ ଏ ସଂପର୍କରେ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନଙ୍କଠାରୁ ଅନୁଦାନ ଆଣିବାରେ ସମର୍ଥ ହେଲି । ବର୍ତ୍ତମାନ ସେହି ସ୍କୁଲର ନୂତନ ଗୃହ ହୋଇଯାଇଛି । ଶିକ୍ଷିକାମାନଙ୍କ ପାଇଁ ୟୁଜିସି ଦରମା ହାର ମଧ୍ୟ ପ୍ରବର୍ତ୍ତିତ ହେଲା । ଭାରତର ମନସ୍ତତ୍ତ୍ୱ ବିଭାଗମାନଙ୍କ ଭିତରେ ଆମର ଏକମାତ୍ର ବିଭାଗ ଯେ କି ଏପରି ଏକ ଅଭିନବ ଶିଶୁ ଶିକ୍ଷାନୁଷ୍ଠାନ ପରିଚାଳିତ କରିବା ପାଇଁ ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନଠାରୁ ସେହି ଦିନରୁ ବିଧିବଦ୍ଧ ଅନୁଦାନ ପାଇଆସୁଛି ।

ମୁଁ ୧୯୮୧ରେ ବିଭାଗ ଛାଡ଼ିଲା ପରେ ଏହି ଅନୁଷ୍ଠାନଟି ଗୋଟିଏ ସାଧାରଣ ନର୍ସରୀ ସ୍କୁଲରେ ପରିଣତ ହୋଇଗଲା । ଶିକ୍ଷିକାମାନେ ପିଲାମାନଙ୍କୁ ଶାସ୍ତି ଦେବାକୁ ଆରମ୍ଭ କଲେ ଏବଂ ସାଧାରଣ ନର୍ସରୀ ସ୍କୁଲ ପରି ଏହାକୁ ପରିଚାଳିତ କଲେ । ଏ ସଂପର୍କରେ ଯେତେ ପ୍ରକାରର ଶିକ୍ଷାଗତ ଉପକରଣ ମୁଁ ଇଂଲଣ୍ଡରୁ ଆଣିଥିଲି, ତାହାର ଉପଯୁକ୍ତ ବିନିଯୋଗ ହୋଇପାରିଲା ନାହିଁ । ଯେଉଁ ଅଧ୍ୟାପିକାଙ୍କୁ ଏଥିଲାଗି ଇଂଲଣ୍ଡ ପଠାଇଥିଲି, ତାଲିମ୍ ପାଇବା ପାଇଁ ସେ ଫେରି ଆସିଲା ପରେ ଏ ଦିଗରେ ସଂପୂର୍ଣ୍ଣ ଉଦାସୀନ ହୋଇ ରହିଲେ । ବିଶ୍ୱବିଦ୍ୟାଳୟ କମିଶନ ଖର୍ଚ୍ଚରେ ଯାଇ ଇଂଲଣ୍ଡ ବୁଲି ଆସିବାହିଁ ତାଙ୍କର ସାର ହେଲା । ଏହା ମୋ ପାଇଁ ଗୋଟିଏ ଅତ୍ୟନ୍ତ ଦୁଃଖଦାୟକ ଘଟଣା ହୋଇ ରହିଗଲା ।

ତାପରେ ଏହି ଅନୁଷ୍ଠାନ ମାଧ୍ୟମରେ ମୋତେ ଗଭୀର ଭାବରେ ଆଘାତ ଦେବାର ଯୋଜନା ମନସ୍ତତ୍ତ୍ୱ ବିଭାଗ ଦ୍ୱାରା କାର୍ଯ୍ୟକାରୀ ହୋଇଥିଲା । ମୁଁ ଏହି ସ୍କୁଲ ଆରମ୍ଭ କଲି - ଶିକ୍ଷିକା ରଖିଲି, ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନ ଅଫିସ୍‌ରେ ବସି ଏହାର ନୂତନ ଗୃହ ପ୍ରସ୍ତୁତି ପାଇଁ ଅନୁଦାନ ବନ୍ଦୋବସ୍ତ କଲି । ଘର ହୋଇସାରିଲା ପରେ ମନସ୍ତତ୍ତ୍ୱ ବିଭାଗ ଓଡ଼ିଶା ଗଭର୍ଣ୍ଣରଙ୍କ ଦ୍ୱାରା ଏହାର ଉନ୍ମୋଚନ କରାଇଲେ – ତାଙ୍କ ନାମରେ ନାମଫଳକ ମରାଗଲା । ଏହି ଉତ୍ସବକୁ ମୋତେ ଡାକିଲେ ମୁଖ୍ୟ ଅତିଥି ଭାବରେ । ପ୍ରକୃତରେ ମୁଁ ସେଠାକୁ ଯିବା ଉଚିତ ନ ଥିଲା । ତଥାପି ମୋ ଦ୍ୱାରା ଇଟା ଇଟା ଯୋଡ଼ି ତିଆରି କରିଥିବା ବିଭାଗରେ ମୋର ଅବସର ପରେ ନାନା ଧରଣର ଅପମାନ ମୁଁ ପାଇଥିଲେ ମଧ୍ୟ ତା ପ୍ରତି ଦୁର୍ବଳତା ମୋର ରହିଯାଇଥିଲା । ତେଣୁ ମୁଖ୍ୟ ଅତିଥି ହିସାବରେ ଗଲି । ଶେଷରେ ମୁଁ ହିଁ ଗଭର୍ଣ୍ଣରଙ୍କୁ ସେହି ସ୍କୁଲର ନାନା ଉପକରଣ ବିଷୟରେ ବୁଝାଇଲି । ବିଭାଗୀୟ କର୍ତ୍ତାଙ୍କର ଏଥିରେ ଆଗ୍ରହ ନଥିଲା ।

ସ୍କୁଲଟି ବୁଲି ଦେଖିଲା ପରେ ମୋ ବିଭାଗର ପଶ୍ଚିମ ପଟେ ଥିବା ବିଶ୍ୱବିଦ୍ୟାଳୟ ପ୍ରେକ୍ଷାଳୟରେ ଉନ୍ମୋଚନ ସଭା ହେବାର ଯୋଜନା ହୋଇଥିଲା । ଏହି ସ୍କୁଲଠାରୁ ପ୍ରେକ୍ଷାଳୟଟି ବେଶ୍ ଦୂର । ଦେଖାଗଲା, କୁଳପତିଙ୍କ ସାଙ୍ଗରେ ଆମ ବିଭାଗର ମୁଖ୍ୟ ଏବଂ ଅନ୍ୟ ବରିଷ୍ଠ ଅଧ୍ୟାପକ ଚାଲିଗଲେ । ମୋତେ କେହି ଡାକିଲେ ନାହିଁ । ମୁଁ ସେଠାରୁ ଚାଲି ଚାଲି ଯିବାକୁ ଆରମ୍ଭ କଲି କିନ୍ତୁ; ଚତୁର୍ଦ୍ଦିଗରେ ତାଲା- ତେଣୁ ଫେରି ଆସି ବାହାରେ ବୁଲି ବୁଲି ପ୍ରେକ୍ଷାଳୟରେ ପହଞ୍ଚିଲା ବେଳକୁ ସଭା କାର୍ଯ୍ୟ ଆରମ୍ଭ ହୋଇସାରିଥାଏ । ଗଭର୍ଣ୍ଣରଙ୍କ ଗହଣରେ ସମସ୍ତେ ବସି ସାରିଥିଲେ । ତେଣୁ ମୋ ଅଭ୍ୟର୍ଥନା ପାଇଁ ମଧ୍ୟ କେହି ନଥିଲେ । ଭାବିଲି ସେଠାରୁ ଫେରିଯିବି, କିନ୍ତୁ ବହୁତ ଅଭଦ୍ରତା ହେବ ଭାବି ଏକେଲା ସଭାସ୍ଥଳକୁ ଗଲି । ଯାହା ହେଉ, ଚୌକି ଧାଡ଼ିର ଶେଷ ମୁଣ୍ଡରେ ମୋ ପାଇଁ ଗୋଟିଏ ଚୌକି ମିଳିଲା । ଛପା କାର୍ଯ୍ୟକ୍ରମରେ ମୋ ପାଇଁ ପାଞ୍ଚମିନିଟ୍ ସମୟ ରଖା ହୋଇଥିଲା ।

ଏହା ଜୀବନରେ ଭୁଲିବାର ନୁହେଁ । ତାପରେ ମୁଁ ଆଉ ବିଭାଗକୁ ଯାଇନାହିଁ । ତତ୍କାଳୀନ କୁଳପତି ଡକ୍ଟର ଆଚାର୍ଯ୍ୟଙ୍କୁ ଅତୀତରେ ବହୁ କାର୍ଯ୍ୟରେ ମୁଁ ସାହାଯ୍ୟ କରିଥିଲି । ସେ ମଧ୍ୟ କୃତଜ୍ଞ ଥିଲେ ବୋଲି ମୋର ଧାରଣା । ସେ ଗାଡ଼ି ଧରି ଚାଲିଗଲା ବେଳେ ମୋତେ ଥରେ ଚାହିଁ ବି ନଥିଲେ । ବିଭାଗ ସମ୍ବନ୍ଧୀୟ ବହୁ ଅପମାନଜନକ ଘଟଣା ଭିତରୁ ଏହା ଗୋଟିଏ ଗୁରୁତର ଆଘାତ ହିସାବରେ ଭୁଲିବାର ନୁହେଁ ।

ଏହି ସ୍କୁଲର ଏପରି ଅଧୋଗତି ଯୋଗୁ ମୋର ଧାରଣା ହେଲା ଯେ, ଶିଶୁ ଶିକ୍ଷା ବିଷୟରେ ଯେକୌଣସି କାର୍ଯ୍ୟକ୍ରମ କେବଳ ଦରମା ଦିଆ ଶିକ୍ଷିକାମାନଙ୍କ ଦ୍ୱାରା ସଂଭବ ନୁହେଁ । ଏଥିଲାଗି ନିର୍ଦ୍ଦିଷ୍ଟ ଭାବରେ ନିଷ୍ଠା ଓ ସ୍ୱାର୍ଥତ୍ୟାଗର ଆବଶ୍ୟକତା ରହିବା ଦରକାର । ତା ସହିତ ପିଲାଙ୍କୁ ସ୍ନେହ ଆଦର କରିବା ପାଇଁ ବଳିଷ୍ଠ ସହଜାତ ପ୍ରେରଣା ରହିଥିବା ଦରକାର । ଏପ୍ରକାରର ଅନ୍ୱେଷଣା ମୋର ଅବଚେତନ ମନରେ ରହିଥାଏ ।

ଏହି ସମୟରେ କଟକରେ ମୈତ୍ରୀ ଅନୁଷ୍ଠାନ ନାମକ ଗୋଟିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହିତ ମୁଁ ସଂପୃକ୍ତ ଥିଲି । ତାର ଜଣେ କର୍ମକର୍ତ୍ତା ଶ୍ରୀଯୁକ୍ତ ପ୍ରଦୀପ୍ତ କୁମାର ମହାନ୍ତିଙ୍କ ପରି ଜଣେ ଆଦର୍ଶବାଦୀ ଏବଂ କର୍ମନିଷ୍ଠ ଯୁବକଙ୍କ ସହିତ ମୋର ପରିଚୟ ହେଲା । ତାଙ୍କର ଭଦ୍ର ବ୍ୟବହାର ଓ ଆଦର୍ଶଗତ ଆଚରଣ ମୋତେ ବହୁତ ଆକର୍ଷଣ କରିଥିଲା ।

୧୯୮୮ରେ କଟକର ଗୋଟିଏ ଝିଅ ସହିତ ମୋର ପରିଚୟ ହୁଏ । ସେ ଥିଲା ପ୍ରତିମା ବିଶ୍ୱାଳ । ଇତିହାସରେ ଏମ୍.ଏ. ଏବଂ ଆଇନ୍ ଡିଗ୍ରୀ ହାସଲ କରିଥାଏ । ନାନା ଧରଣର ପାରିପାର୍ଶ୍ୱିକ ପ୍ରତିବଂଧକ ସତ୍ତ୍ୱେ ସେ ଏପରି ଉଚ୍ଚଶିକ୍ଷା ହାସଲ କରିଥାଏ । ମୁଁ ଅନୁଭବ କଲି ଯେ ଏ ଝିଅଟି ଭିତରେ ଗୋଟିଏ ସ୍ଫୁଲିଙ୍ଗ ରହିଛି; କିନ୍ତୁ ନାନା ଧରଣର ପ୍ରତିକୂଳ ପରିସ୍ଥିତି ଯୋଗୁ ଏହି ସ୍ଫୁଲିଙ୍ଗ ଆତ୍ମପ୍ରକାଶ କରିପାରୁନାହିଁ । ସେହି ବର୍ଷ ହିଁ ଭୁବନେଶ୍ୱର ଯାଇ ପର୍ଯ୍ୟଟନ ବିଜ୍ଞାନରେ ଡିପ୍ଲୋମା କରିବା ପାଇଁ ମୁଁ ତାଙ୍କୁ ଉତ୍ସାହିତ କଲି । ସେଥିରେ ସେ ଫାଷ୍ଟ କ୍ଲାସ୍ ପାଇଥିଲେ ଏବଂ ତା ପରେ ପରେ ବିକାନିରରେ ପର୍ଯ୍ୟଟନ କେନ୍ଦ୍ରରେ ବିଶ୍ୱବିଦ୍ୟାଳୟ ଆୟୋଗ ଦ୍ୱାରା ସ୍ୱୀକୃତ ଦରମାରେ ଅଧ୍ୟାପିକା ନିଯୁକ୍ତି ପାଇଲେ । ତା ଫଳରେ ତାଙ୍କର ସାମାଜିକ ପ୍ରତିଷ୍ଠା ସଂଭବ ହେଲା ।

କିନ୍ତୁ ମୋର ମନେହେଲା, ତାଙ୍କର ଅନ୍ତର୍ନିହିତ ଅଗ୍ନିସ୍ଫୁଲିଙ୍ଗର ସର୍ବାଙ୍ଗୀଣ ବିକାଶ ଏଥିରେ ସଂପୂର୍ଣ୍ଣ ରୂପେ ବିକଶିତ ହୋଇପାରିବ ନାହିଁ । ରାଜସ୍ଥାନରେ ଜଣେ ଅଧ୍ୟାପିକା ହିସାବରେ ଜୀବନସାରା ସେ ରହିଯିବେ ।

ପ୍ରତିମା ଓ ପ୍ରଦୀପ୍ତ ସାହାଯ୍ୟରେ ମୋର ପୂର୍ବକଳ୍ପିତ ଏବଂ ବହୁ ସ୍ୱପ୍ନରେ ରଂଜିତ ଖେଳ ମାଧ୍ୟମ ଶିଶୁ ଶିକ୍ଷା ଯୋଜନାଟିକୁ ରୂପାୟିତ କରିବାର ବାସନା ମୋଠାରେ ବଳବତ୍ତର ହୋଇଉଠିଲା । ଏହି ଉଦ୍ୟମର ଅଂଶୀଦାର ହେବା ଲାଗି ପ୍ରତିମାକୁ ବିକାନୀରୁ ଫେରାଇ ଆଣିଲି । କିନ୍ତୁ ଖେଳ ମାଧ୍ୟମ ଶିଶୁ କାର୍ଯ୍ୟକ୍ରମ ଚଳାଇବାକୁ ହେଲେ ସେଥିଲାଗି ନିର୍ଦ୍ଦିଷ୍ଟ ଧରଣର ତାଲିମ୍‌ର ଆବଶ୍ୟକତା ରହିଛି । ତେଣୁ ୧୯୯୨ରେ ପ୍ରଥମେ ଏଥିଲାଗି ଗୋଟିଏ ବର୍ଷିକିଆ ତାଲିମ୍ କାର୍ଯ୍ୟକ୍ରମ ହାତକୁ ନିଆହେଲା । ଦିଲ୍ଲୀ ଶିକ୍ଷା ଓ ଗବେଷଣା ପରିଷଦ ଯେଉଁ ପାଠ୍ୟକ୍ରମ ତିଆରି କରିଥିଲେ, ତା ଉପରେ ନିର୍ଭର କରି ଏହି ତାଲିମ୍ ପାଠ୍ୟକ୍ରମ ପ୍ରସ୍ତୁତ ହେଲା । ପ୍ରତିମା ଓ ପ୍ରଦୀପ୍ତ ଏହା ଦାୟିତ୍ୱରେ ରହିଲେ ।

ଏହାର ସଂପୂର୍ଣ୍ଣ ରୂପରେଖ ତିଆରି କରିବାରେ ମୋ ବିଭାଗରେ କାମ କରୁଥିବା ଏବଂ ମୋଠାରେ ବିଶେଷ ଭାବରେ ଅନୁରକ୍ତ ଜଣେ ପୁରୁଖା ଅଧ୍ୟାପକଙ୍କର ସାହାଯ୍ୟ ଚାହିଁଲି । ସେ ମଧ୍ୟ କାନାଡ଼ାରେ ଏବଂ ସୁଇଡେନ୍‌ରେ ଏ ବିଷୟରେ ବିଶେଷ ଭାବରେ ତାଲିମ୍ ପାଇଥିଲେ । ମୁଁ ବିଭାଗରେ ଥିଲାବେଳେ ସେ ମୋର ଜଣେ ଘନିଷ୍ଠ ସହଯୋଗୀ ହିସାବରେ ପରିଚିତ ଥିଲେ । ତେଣୁ ତାଙ୍କ ସାହାଯ୍ୟରେ ମୋର ଏହି ଗୁରୁ ଦାୟିତ୍ୱ କିଛି

ପରିମାଣରେ ଲାଘବ ହେବ ବୋଲି ଭାବିଲି । କିନ୍ତୁ ଆଶ୍ଚର୍ଯ୍ୟର କଥା, ସେ ତ ଏଥିରେ ସାହାଯ୍ୟ କଲେ ନାହିଁ; ବରଂ ଏହା ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ଏବଂ ମୁଁ ଯେଉଁ ଶିକ୍ଷିକାମାନଙ୍କୁ ବିଭାଗୀୟ ସ୍କୁଲରେ ରଖିଥିଲି ସେମାନଙ୍କୁ ମଧ୍ୟ ଆମକୁ କୌଣସି ପ୍ରକାରର ସାହାଯ୍ୟ ଦେବା ପାଇଁ ବାରଣ କଲେ । ମୋ ଜୀବନରେ ଏହିପରି ବହୁ ଅପ୍ରତ୍ୟାଶିତ ଏବଂ ଅଦ୍ଭୁତ ଘଟଣା ଭିତରୁ ଏହା ଗୋଟିଏ ଗଭୀର ଦୁଃଖଦାୟକ ଅନୁଭୂତି ହୋଇ ରହିଗଲା ।

ମୋ ମତରେ, ପ୍ରତିବନ୍ଧକମାନ ଦେଖା ନ ଗଲେ ମନୁଷ୍ୟର ସଂକଳ୍ପ ଦୃଢ଼ତର ହୁଏନାହିଁ । ଆମର ଏହି ଡିପ୍ଲୋମା କାର୍ଯ୍ୟକ୍ରମ ପରେ ଯେଉଁ ଶିକ୍ଷିକାମାନେ ବାହାରିଲେ ସେମାନଙ୍କ ସାହାଯ୍ୟରେ ଆମର ପ୍ରଥମ ଖେଳ ମାଧମ ସ୍କୁଲ ୧୯୯୩ରେ ଆରମ୍ଭ ହେଲା । ପ୍ରତିମା ବିକାନିର୍‌ରୁ ଫେରି ପ୍ରିନ୍ସିପାଲ୍ ହିସାବରେ ଏହାର ଦାୟିତ୍ୱ ନେଲେ ଏବଂ ପ୍ରଦୀପ୍ତ ଏହାର ସମସ୍ତ ପରିଚାଳନାର ଭାର ଗ୍ରହଣ କଲେ । ଏମାନଙ୍କର ମଧ ଇତିମଧ୍ୟରେ ବିବାହ ହେଲା । ଏହି ଦୁଇଜଣଙ୍କର ନିଷ୍ଠା, କର୍ତ୍ତବ୍ୟପରାୟଣତା ଏବଂ ଶିଶୁମାନଙ୍କ ପ୍ରତି ସହଜାତ ସ୍ନେହ ଯୋଗୁଁ ହିଁ ଏହି ଖେଳ ମାଧମ ସ୍କୁଲଟି ଗତ କେତେବର୍ଷ ଭିତରେ ଗୋଟିଏ ଜନପ୍ରିୟ ଓ ଆଦର୍ଶ ସ୍ଥାନୀୟ ଶିଶୁ ଶିକ୍ଷା କେନ୍ଦ୍ର ନାମରେ କଟକ ଏବଂ ବାହାରେ ପରିଚିତ ହୋଇଛି । ଏଠାରେ କାମ କରୁଥିବା ବହୁ ଶିକ୍ଷିକାଙ୍କର ଅଦମ୍ୟ ପରିଶ୍ରମ, ଗଭୀର ଆତ୍ମନିଷ୍ଠା ଏବଂ ଶିଶୁ କଲ୍ୟାଣ ଆଦର୍ଶରେ ବଳିଷ୍ଠ ପ୍ରେରଣା ହିଁ ଏହି ଅନୁଷ୍ଠାନର ମୂଳଭିତ୍ତି ହୋଇ ରହିଛି ।

ଏହି ଶିଶୁ ଶିକ୍ଷା କେନ୍ଦ୍ର ଏବଂ ତାଲିମ୍ କାର୍ଯ୍ୟକ୍ରମ କେବଳ ଆଉ ଗୋଟିଏ ଶିକ୍ଷାନୁଷ୍ଠାନ ନୁହେଁ– ଗୋଟିଏ ବିରାଟ ସାମାଜିକ ଏବଂ ପାରିବାରିକ ପରିବର୍ତ୍ତନର ବାର୍ତ୍ତା ଉପରେ ଏହା ପ୍ରତିଷ୍ଠିତ । ପ୍ରଚଳିତ ଶିଶୁ ପାଳନ ରୀତି ହେଲା ପାଞ୍ଚବର୍ଷ ପର୍ଯ୍ୟନ୍ତ ପିଲାଙ୍କୁ ଆଦର ସ୍ନେହ କରିବ । ପାଞ୍ଚଠାରୁ ପନ୍ଦର ପର୍ଯ୍ୟନ୍ତ ସେମାନଙ୍କର ଚରିତ୍ର ଗଠନ ଲାଗି ଦରକାର ହେଲେ ଶାସ୍ତି ଦେବ, ପନ୍ଦର ପରେ ବନ୍ଧୁ ଭାବରେ ସେମାନଙ୍କ ସହିତ ବ୍ୟବହାର କରିବ । ବର୍ତ୍ତମାନ କିନ୍ତୁ ପୃଥିବୀର ଉନ୍ନତ ଦେଶର ସମସ୍ତ ମନସ୍ତତ୍ତ୍ୱବିତ୍‌ଙ୍କ ମତ ଅନୁସାରେ କୌଣସି ପରିସ୍ଥିତିରେ ମଧ ପିଲାଙ୍କୁ ଶାସ୍ତି ଦେବା ଉଚିତ ନୁହେଁ । ଯେକୌଣସି ବୟସରେ ମଧ ଶାସ୍ତି ବିଧାନ ପ୍ରତିକୂଳ ପ୍ରଭାବ ସୃଷ୍ଟି କରେ । ଶାସ୍ତି ମାଧମରେ ପିଲାଙ୍କର କୌଣସି ଉପକାର ହୁଏ ନାହିଁ ବରଂ ବିପରୀତ ଫଳ ଦେଖା ଦେଇଥାଏ । ବହୁ ଗବେଷଣା ତଥା ପର୍ଯ୍ୟବେକ୍ଷଣ ମାଧମରେ ଏପ୍ରକାର ସର୍ବସମ୍ମତ ମତ ଉପସ୍ଥାପିତ ହୋଇଛି; କିନ୍ତୁ ଭାରତରେ ଏହାର ପ୍ରଭାବ ବଡ଼ ସୀମିତ । ବର୍ତ୍ତମାନ ଅଧିକାଂଶ ପରିବାରରେ ପିଲାଦିନୁ ଶାସ୍ତି, ଭୟ, କଠୋର ଶାସନ ମାଧମରେ ପିଲାଙ୍କର ପ୍ରକୃତ ଚରିତ୍ର ଗଠନ ହେବା ନୀତି ଅବଲମ୍ବନ କରାଯାଏ । ଶାସ୍ତି ପ୍ରଦାନରେ ବିଶ୍ୱାସୀ ବାପ ମା'ମାନେ ସ୍କୁଲର ଶିକ୍ଷିକା ଏବଂ ଶିକ୍ଷକ ହିସାବରେ ଏହି ଅଭ୍ୟାସକୁ ଶିକ୍ଷା କ୍ଷେତ୍ରରେ ମଧ ବଳବତ୍ତର ରଖିଛନ୍ତି । ଏହା ବିରୁଦ୍ଧରେ ଆମର ଏହି ଶିକ୍ଷା କାର୍ଯ୍ୟକ୍ରମ ଅନବରତ ଅଭିଯାନ କରିଚାଲିଛି । ଅଭିଭାବକ ଓ ଶିକ୍ଷକମାନଙ୍କର ଏ ପ୍ରକାର ଅମାନୁଷିକ ଅତ୍ୟାଚାରରୁ ପିଲାଙ୍କୁ ମୁକ୍ତ କରିବା ହେଉଛି ଏହାର ପ୍ରଧାନ ଆଭିମୁଖ୍ୟ ।

ଆମର ମୁଖ୍ୟ ମନ୍ତ୍ର ହେଲା – Children like delicate buds blossom into all round personality development through love care and affection; not fear threat and punishment.

ଅର୍ଥାତ୍ ଫୁଲ କଳିକା ପରି ଶିଶୁର ସର୍ବାଙ୍ଗୀନ ବିକାଶ ସ୍ନେହ, ଆଦର, ଯତ୍ନ ମାଧ୍ୟମରେ ହିଁ ହୁଏ– ଭୀତି ପ୍ରଦର୍ଶନ, ଦଣ୍ଡ ବିଧାନ ଏବଂ କଠୋରତା ଦ୍ୱାରା ନୁହେଁ। ଏହାରି ଉପରେ ଆଧାରିତ ଆମର ସମସ୍ତ ଶିକ୍ଷା କାର୍ଯ୍ୟକ୍ରମ। ଏହା କେବଳ ଗୋଟିଏ ନୀତି ହିସାବରେ ଗ୍ରହଣ କରାଯାଇ ନାହିଁ, ପ୍ରକୃତ କ୍ଷେତ୍ରରେ ଏହାର ପ୍ରୟୋଗ କରି କିପରି ଶିଶୁର ବ୍ୟବହାର ପରିବର୍ତ୍ତନ କରାଯାଇପାରେ ତାହା ନାନା ଭାବରେ ପ୍ରମାଣିତ କରା ହେଉଛି। ଯେଉଁମାନେ ଆମର ତାଲିମ୍ କାର୍ଯ୍ୟକ୍ରମରେ ଯୋଗ ଦିଅନ୍ତି ପ୍ରଥମେ ଆମର ଏହି ତଥ୍ୟଟିକୁ ସେମାନେ ସେମାନଙ୍କର ପିଲାଙ୍କ ଉପରେ ପ୍ରୟୋଗ କରନ୍ତି। ସେମାନେ ଏହାର ବିବରଣୀ ଆମ ଆଗରେ ଉପସ୍ଥାପିତ କରନ୍ତି। ଆମେ ଏପରି କୌଣସି ତଥ୍ୟ ଉପସ୍ଥାପିତ କରୁନାହୁଁ ଯାହା ନିଜ ପରିବାରରେ ପ୍ରମାଣିତ ହୋଇ ନ ପାରିବ। ଆମ ଘରେ ଏହି ପ୍ରଚଳିତ ପ୍ରଥା ବିଷୟରେ ତଥ୍ୟ ମୁଁ ଶିକ୍ଷିକା ଓ ବାପ ମାଙ୍କୁ ଦିଏ। ଫଳରେ ବହୁ ପରିବାର ଏଥିଯୋଗୁ ଉପକୃତ ହେଉଛନ୍ତି। ସ୍କୁଲରେ ପଢୁଥିବା ପିଲାଙ୍କର ବାପ ମାଙ୍କ ସହିତ ଆମର ପ୍ରିନ୍ସିପାଲ ଓ ଶିକ୍ଷିକାମାନେ ଧାରାବାହିକ ଭାବରେ ଏହା ଆଲୋଚନା କରନ୍ତି। ଏ ସଂପର୍କରେ ଆମେ, ଆମ ପିଲା ଓ ଆମେ ଆମମନ ବହି ମୁଁ ପ୍ରକାଶ କରିଛି।

ଗତ କେତେ ବର୍ଷ ଭିତରେ ପ୍ରାୟ ତିନିଶହ ଯାଏଁ ଛାତ୍ରୀ ଆମ ଅନୁଷ୍ଠାନରୁ ତାଲିମ୍ ପାଇଲେଣି ଏବଂ ଏମାନେ ଏହି ଶିକ୍ଷା ଏବଂ ଶିଶୁ ଲାଳନପାଳନ ରୀତି ନିଜ ପରିବାରରେ ପ୍ରୟୋଗ କରୁଛନ୍ତି। ସେମାନେ କାମ କରୁଥିବା ଅନ୍ୟାନ୍ୟ ଶିଶୁ ଅନୁଷ୍ଠାନରେ ମଧ୍ୟ ଏହାକୁ ପ୍ରଚଳିତ କରୁଛନ୍ତି। ଫଳରେ ଆମମାନଙ୍କର ଏହା ଗୋଟିଏ ଅତ୍ୟନ୍ତ ଆନନ୍ଦଦାୟକ ଅନୁଭୂତିରେ ପରିଣତ ହୋଇଯାଇଛି। ଅବସର ପରେ ଏହି ସ୍କୁଲ ଏବଂ ତାଲିମ୍ କେନ୍ଦ୍ରରେ ପଢ଼ାଇବା ମୋ ପକ୍ଷରେ ଏପରି ଏକ ଆକର୍ଷଣୀୟ କାର୍ଯ୍ୟକ୍ରମ ହୋଇଯାଇଛି ଯେ ଏତେ ବର୍ଷର ଅଧ୍ୟାପନାର ଅଭିଜ୍ଞତା ଯେପରି ଏଥିରେ ପରମ ସାର୍ଥକତା ଲାଭ କରିପାରୁଛି। ମୁଁ ଅନୁଭବ କରୁଛି ଯେ ଏମ୍.ଏ. ମନସ୍ତତ୍ତ୍ୱରେ ଫାଷ୍ଟ କ୍ଲାସ୍ ଏବଂ ଡକ୍ଟରେଟ୍ ପାଇଥିବା ବିଦ୍ୱାନମାନଙ୍କଠାରୁ ପିଲାଙ୍କୁ ଭଲ ପାଇବା ମନ୍ତ୍ରରେ ଦୀକ୍ଷିତ ଏପରି ସାଧାରଣ ଗ୍ରାଜୁଏଟ୍‌ଙ୍କର ମନସ୍ତତ୍ତ୍ୱ ଜ୍ଞାନର ରୂପାୟନ ତଥା ପ୍ରୟୋଗ ବହୁତ ଉଚ୍ଚ ଧରଣର।

■■■

## ୨

# ଷାଠିଏ ବର୍ଷ ପରେ ମୋ ଗ୍ରାମକୁ ଗଲି

ଗାଁ ଛାଡ଼ିବାର ପ୍ରାୟ ଷାଠିଏ ବର୍ଷ ପରେ ମୁଁ ଗ୍ରାମକୁ ଗଲି । ଆଗରୁ ଗାଡ଼ିଯିବା ରାସ୍ତା ଅଭାବରୁ ଯାଇ ହେଉନଥିଲା । ଖଲ୍ଲିକୋଟଠାରୁ ପ୍ରାୟ ଚଉଦ କିଲୋମିଟର ରାସ୍ତାକୁ ଗାଡ଼ି ଯିବା ପାଇଁ ପକ୍କା ରାସ୍ତା କରାଇବା ପାଇଁ ମୋତେ ବହୁବର୍ଷ ଲାଗିଗଲା । ୧୯୯୨ ମସିହାରେ ଝାଡ଼େଶ୍ୱରଠାରେ ପହଞ୍ଚିବା ସଂଭବ ହେଲା । ମୋର ଗ୍ରାମ ତଳରାମପଲ୍ଲୀ । ଲୋକେ ମୋତେ ଦେଖି ବହୁତ ଖୁସି ହେଲେ । ସେଠାରେ ତ ଆମର ଘରବାଡ଼ି କିମ୍ବା ଜମି କିଛି ନ ଥିଲା । ଆମେ ୧୯୩୨ରେ ଗାଁ' ଛାଡ଼ିଲାବେଳେ ଆମର ତିନି ବଖରା ଚାଳ ଘର ପଡ଼ିଶା ଘରକୁ ଦେଇ ଦେଇଥିଲୁ ।

ଝାଡ଼େଶ୍ୱର ମୋର ପିଲାଦିନେ ଅତ୍ୟନ୍ତ ପ୍ରିୟସ୍ଥାନ ଥିଲା । ତେଣୁ ଝାଡ଼େଶ୍ୱର ପାଖାପାଖି ଗୋଟିଏ ପଡ଼ିଆରେ ଅଧ ଏକର ଜମି ନେଲି ଏବଂ ବଖରାଏ ଘର କଲି । ଆଖପାଖରେ ଘରଦ୍ୱାର ନାହିଁ । ମୋ ଜାଗା ଆଗରେ କୃଷ୍ଣଗିରି ପାହାଡ଼ । ଚାରିଆଡ଼େ ନାନା ଧରଣର ଲମ୍ବା ଲମ୍ବା ଗଛ । ଅଳ୍ପ ଦୂରରେ ଝାଡ଼େଶ୍ୱର ମନ୍ଦିର ଏବଂ ପାଣିକୁଣ୍ଡ । ଘର ବାରଣ୍ଡାରେ ବସି ଦିନରାତିର ବିଭିନ୍ନ ସମୟରେ ମୋର ପିଲାଦିନର ସ୍ମୃତି ସବୁକୁ ଆଉଡ଼ାଇବାରେ ମୋର ବହୁତ ଆନନ୍ଦ ହେଲା । ଆଗ ରାସ୍ତାରେ କୌଣସି ବୁଢ଼ୀ ପିଲାଟିଏ ସାଙ୍ଗରେ ଧରି ଗଲାବେଳେ ମୁଁ ମୋର ଗୋସେଇଁମା ସାଙ୍ଗରେ ସେହି ରାସ୍ତାରେ ଚାଲିବାର ଦୃଶ୍ୟ ମନେପଡ଼ିଯାଏ । ଯେ କୌଣସି ପିଲା, ପୁରୁଷ ସ୍ତ୍ରୀ ମୋ ପିଲାଦିନର ଲୋକମାନଙ୍କ ସହିତ ଯେପରି ମିଶିଯାଉଥିଲେ । ଜୀବନର ଅପରାହ୍ଣରେ ଅତୀତ ସ୍ମୃତିମାନଙ୍କର ମେଳଣ ପରି କାଳ୍ପନିକ ବିଳାସିତା ପାଇଁ ହିଁ ମୁଁ ପ୍ରାୟ ଲକ୍ଷେ ଟଙ୍କା ଖର୍ଚ୍ଚ କରି ଘର କରିଛି । ବାସ୍ତବ ଜୀବନର ନାନା ଘାତ-ପ୍ରତିଘାତ ଭିତରେ ଏପରି କାଳ୍ପନିକ ବିଳାସିତାର ବାସ୍ତବିକ ମୂଲ୍ୟ ନ ଥାଇପାରେ, କିନ୍ତୁ ସେଥିରେ ଯେ ଗଭୀର ଆନନ୍ଦ ମୁଁ ଉପଲବ୍ଧି କରିପାରୁଛି— ତାହାର ମୂଲ୍ୟ ନିର୍ଦ୍ଧାରଣ ସଂଭବ ନୁହେଁ ।

ଆଖପାଖ ଗ୍ରାମର ବହୁ ଲୋକ ଆସି ସେଠାରେ ରୁଣ୍ଡ ହୁଅନ୍ତି । ଭାବିଲି, ଆଖପାଖର ଦଶଖଣ୍ଡ ଗ୍ରାମକୁ ନେଇ ନାନା ଧରଣର ପ୍ରଚଳିତ ଉନ୍ନୟନ କାର୍ଯ୍ୟକ୍ରମ ହାତକୁ

ନିଆଯାଇପାରିବ । ଉପଯୁକ୍ତ ନେତୃତ୍ୱ ଏବଂ ଲୋକଙ୍କର ଚେତନା ଅଭାବରୁ ଏ ଅଂଚଳ ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ରହିଛି । ଏହି ଅଞ୍ଚଳର ବିଧାୟିକା ଖଲ୍ଲିକୋଟ ରାଜାଙ୍କର ପୁତ୍ରବଧୂ । ସେ ମହୋଦୟା ଛଅଥର ନିର୍ବାଚିତ ହୋଇ ମଧ୍ୟ ଏ ଅଂଚଳ ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ରହିଯାଇଛି । ସେତେବେଳକୁ ଭୁବନେଶ୍ୱରରେ ପ୍ରତିଷ୍ଠିତ ଭାରତ ଜ୍ଞାନବିଜ୍ଞାନ ସମିତିର ମୁଁ ଥାଏ ସଭାପତି । ଏମାନଙ୍କ ସାହାଯ୍ୟରେ ଅନେକ ଗ୍ରାମ୍ୟ ଉନ୍ନୟନ ଯୋଜନା- ଯେ ସବୁ ସରକାରୀ ସ୍ତରରେ ମଧ୍ୟ ସ୍ୱୀକୃତ ଏବଂ ସେଥିପାଇଁ ସରକାରୀ ଅନୁଦାନ ରହିଛି - ହାତକୁ ନିଆ ହେଲା । ପ୍ରତ୍ୟେକ ଗ୍ରାମରେ ଗ୍ରାମ୍ୟ ଉନ୍ନୟନ କମିଟି ଓ ନାରୀ ଉନ୍ନୟନ କମିଟିମାନ ଗଠିତ ହେଲା । ତାପରେ ଝାଡ଼େଶ୍ୱରଠାରେ ଆଠଟି ସରକାରୀ ବିଭାଗକୁ ନିମନ୍ତ୍ରଣ କଲି-ତତ୍କାଳୀନ ଓଡ଼ିଶା ସରକାରଙ୍କର ଯୋଜନା ବୋର୍ଡ଼ ଉପାଧ୍ୟକ୍ଷ ଶ୍ରୀଯୁକ୍ତ ରମାକାନ୍ତ ମିଶ୍ର ସେ ସଭାକୁ ନିମନ୍ତ୍ରିତ ହୋଇ ଆସିଥିଲେ । ଜିଲ୍ଲା କଲେକ୍ଟର ତାଙ୍କର ଅଫିସରମାନଙ୍କୁ ନେଇ ମଧ୍ୟ ଆସିଥିଲେ । ଆଠଟି ବିଭାଗର ଜିଲ୍ଲା ଅଧିକାରୀମାନେ ସେମାନଙ୍କର ଅଫିସରଙ୍କୁ ଧରିଆସିଲେ । ବିଭାଗଗୁଡ଼ିକ ହେଲା, ସ୍ୱାସ୍ଥ୍ୟ, ଶିକ୍ଷା, କୃଷି, ଉଦ୍ୟାନ, ମତ୍ସ୍ୟ, ବଣ୍ୟ ବିଭାଗ ସାମାଜିକ ବନୀକରଣ ଓ ମୃତ୍ତିକା ସଂରକ୍ଷଣ । କିନ୍ତୁ ଏ ଅଂଚଳର ବିଧାୟିକା ଆସିନଥିଲେ । କାଳେ ତାଙ୍କର ଅପରଗତା ବିଷୟରେ ଆଲୋଚନା ହେବ ଏହି ଭୟରେ ବୋଧହୁଏ ସେ ଆସିଲେ ନାହିଁ । ପ୍ରାୟ ପାଞ୍ଚଶହ ଯାଏ ମହିଳା ଓ ପୁରୁଷ ସଭାରେ ଯୋଗ ଦେଇଥିଲେ । ଆଲୋଚନାରୁ ଯାହା ଜଣାଗଲା ଏହି ବିଭାଗଗୁଡ଼ିକର ଆଗାମୀ ଘୋଷିତ କାର୍ଯ୍ୟକ୍ରମ ବିଷୟରେ ଗ୍ରାମବାସୀମାନେ ଆଗରୁ ଆଦୌ ଶୁଣିନଥିଲେ । ଯାହାହେଉ, ଆସନ୍ତା ବର୍ଷ ପାଇଁ ଏହି ଦଶଟି ଗ୍ରାମରେ ଏବଂ କୃଷ୍ଣଗିରିର ବୃକ୍ଷହୀନ ଅଂଚଳରେ କି ପ୍ରକାର ବନାନୀ ସୃଷ୍ଟି ହୋଇପାରିବ ସେ ବିଷୟରେ ପୁଙ୍ଖାନୁପୁଙ୍ଖ ଆଲୋଚନା ହେଲା । କଲେକ୍ଟର ଆସିଥିଲେ ତ ତେଣୁ ସମସ୍ତଙ୍କ ପାଇଁ ଭୋଜନର ଆୟୋଜନ ହୋଇଥିଲା ।

ତାପରେ ମୁଁ ପ୍ରତ୍ୟେକ ବିଭାଗକୁ ଲେଖିଲେଖି ଫୋନ୍ କରି ଥକିଗଲି କିନ୍ତୁ କାଁ ଭାଁ କେତୋଟି ଗ୍ରାମରେ କିଛି ଆମ୍ବ ଓ ନଡ଼ିଆ ଗଛ ଯୋଗାଇଦେବା ଛଡ଼ା ଆଉ କୌଣସି କାମ ହୋଇପାରିଲାନାହିଁ । ଏ ସଂପର୍କରେ ମୁଁ ଗଂଜାମ କଲେକ୍ଟର ଏବଂ ତାଙ୍କର ଗ୍ରାମ୍ୟ ଉନ୍ନୟନ ଅଧିକାରୀଙ୍କୁ ବାରମ୍ବାର ଚିଠି ଲେଖିଲି ତାର ଉତ୍ତର ମଧ୍ୟ ମିଳିଲା ନାହିଁ । ଶେଷରେ ଏ ସଂପର୍କରେ ଗୋଟିଏ କଡ଼ା ସମାଲୋଚନାତ୍ମକ ପ୍ରବଂଧ ବ୍ରହ୍ମପୁରରୁ ପ୍ରକାଶିତ ଦୈନିକ ଅନୁପମ ଭାରତରେ ପ୍ରକାଶ କଲି କିନ୍ତୁ ତା'ର ମଧ୍ୟ ଫଳ ହେଲାନାହିଁ ।

ଏମାନଙ୍କର ଉଦାସୀନତା ସହିତ ଲୋକଙ୍କର ନିଜ ନିଜର ଉନ୍ନତି ସଂବନ୍ଧୀୟ ଆଗ୍ରହ ବିଲକୁଲ ସୃଷ୍ଟି ହୋଇନଥିବା ଲକ୍ଷ୍ୟ କଲି । ଉଦାହରଣସ୍ୱରୂପ ତଳରାମପଲ୍ଲୀରେ ଗୋଟିଏ ସତେଇଶି ଏକରର ପୋଖରୀ ଅଛି, କିନ୍ତୁ ତାହା ପୋତି ହୋଇ ମାତ୍ର ପାଞ୍ଚ ଏକରରେ ପାଣି ରହେ । ସେଥିରୁ ଗ୍ରାମବାସୀ, ବାହାରଲୋକଙ୍କୁ କୁତ ଦେଇ ଦଶହଜାର ଟଙ୍କା ମାତ୍ର ବର୍ଷକୁ ପାଆନ୍ତି । ସେହି ପୋଖରୀଟି ସଂପୂର୍ଣ୍ଣ ରୂପେ ପୁନରୁଦ୍ଧାର ହୋଇପାରିଲେ ବର୍ଷସାରା ଗ୍ରାମର ସମସ୍ତ ଜମି ଜଳସେଚିତ ହୋଇପାରନ୍ତା । ଲକ୍ଷାଧିକ ଟଙ୍କାର ମାଛ ଚାଷ ହୋଇପାରିବ ଏବଂ ତା'ର ଚତୁର୍ଦ୍ଦିଗରେ ବନ୍ଧା ହୋଇଥିବା ହୁଡ଼ାରେ ପ୍ରାୟ ପାଞ୍ଚ ହଜାର ନଡ଼ିଆଗଛ ଲାଗିପାରିବ । ଏହି ଯୋଜନାଟି ଗ୍ରାମର ଲୋକେ ହାତକୁ ନେଲେ ଗ୍ରାମର

ବେକାର ଶିକ୍ଷିତ ଲୋକେ ଏଥିରେ ଉପକୃତ ହୁଅନ୍ତେ । କିନ୍ତୁ ସେଥିରେ ମନ ନ ଦେଇ ଚାରିଲକ୍ଷ ଟଙ୍କା ଖର୍ଚ୍ଚ କରି ଗୋଟିଏ ରାଧାକୃଷ୍ଣ ମନ୍ଦିର ଗ୍ରାମ ମଝିରେ ତିଆରି ହେଲା । ଅଥଚ ଅଳ୍ପ ଦୂରରେ ଝାଡ଼େଶ୍ୱରଠାରେ ୧୪ଟି ମନ୍ଦିର ରହିଛି । ଏଣେ ଗ୍ରାମରେ ଥିବା ସ୍କୁଲଟିର ପାଚିରୀ ନାହିଁ- ଘରଦ୍ୱାର ଜରାଜୀର୍ଣ୍ଣ ଅବସ୍ଥାରେ–ସେଥିପ୍ରତି କାହାର ନଜର ନାହିଁ । ତେଣୁ ପିଲାଙ୍କର ଏହି ସୁନ୍ଦର ମନ୍ଦିରରେ ବସି ଗିନି ବଜାଇବା ଛଡ଼ା ସ୍କୁଲ ପ୍ରତି ଆକୃଷ୍ଟ ନ ହେବା ସ୍ୱାଭାବିକ । ମୋତେ ଏହି ଗ୍ରାମ ମନ୍ଦିର ପାଇଁ ଚାନ୍ଦା ମାଗିଲେ । କିନ୍ତୁ ମୁଁ କହିଲି, 'ମନ୍ଦିର ପାଇଁ ଚାନ୍ଦା ଦେବା ମୋ ମତରେ ମୋର ପାପ ହେବ'- ବରଂ ନୂଆ କରି ଗଢ଼ି ଉଠୁଥିବା ହାଇସ୍କୁଲରେ ଲାଇବ୍ରେରୀ ବହି କଟକରୁ କିଣି ଲାଇବ୍ରେରୀଟି କରାଇଲି ।

ଖାଲି ନିଜର ଉନ୍ନତି ପାଇଁ ଏମାନଙ୍କର ସଚେତନତାର ଅଭାବ ସହିତ ପରସ୍ପର ଭିତରେ ଏପରି ଝଗଡ଼ା ଲାଗି ରହିଛି ଯେ ସମସ୍ତେ ମିଶି କୌଣସି କାମ କରିବା ଅବସ୍ଥାରେ ଏମାନେ ନାହାଁନ୍ତି । ଉଦାହରଣସ୍ୱରୂପ ଏତେ ବଡ଼ ଅଧିକାରୀମାନଙ୍କୁ ମୁଁ ସେଠାରେ ପହଞ୍ଚାଇଲି । ଏମାନେ ତ ସେମାନଙ୍କ ପିଛା ଲାଗି ଲାଗି ବହୁତ କାମ କରାଇପାରନ୍ତେ, କିନ୍ତୁ ଏସବୁ କାମରେ କାହାରି ଆଗ୍ରହ ଲକ୍ଷ୍ୟ କଲିନାହିଁ । ମତ୍ସ୍ୟ ବିଭାଗ ଦ୍ୱାରା ପୋଖରୀର ଉନ୍ନୟନ କାର୍ଯ୍ୟ ପାଇଁ ପ୍ରଥମ ଅବସ୍ଥାରେ ପାଞ୍ଚଲକ୍ଷ ଟଙ୍କାର ଆୟୋଜନ କରାଇଥିଲି, କିନ୍ତୁ ଗ୍ରାମବାସୀ ସେଥିରେ ମନ ନ ଦେଇ ଯୁଗ ଯୁଗ ଧରି ସେଠାରେ ବାସ କରୁଥିବା ଭୂମିହୀନ ହରିଜନଙ୍କ ବିରୁଦ୍ଧରେ ଏପରି ଗଣ୍ଡଗୋଳ ପରିସ୍ଥିତି ସୃଷ୍ଟି କଲେ ଏବଂ ସେମାନଙ୍କୁ ସାମାଜିକ ବାସନ୍ଦ କଲେ ଯେ ପୋଖରୀରେ ଗାଧୋଇବାକୁ ଦେଲେନାହିଁ-ଟିଉବ କୂଅର ପାଣି ଛାଡ଼ିଲେ ନାହିଁ । ଶେଷରେ ସେମାନେ ମୋ ଜାଗାରେ ଥିବା କୂଅରୁ ପାଣିନେଇ ବହୁତ ଦିନ ଚଳିଲେ । ଏପରି ହିଂସାତ୍ମକ ବାତାବରଣ ଯୋଗୁଁ ପୋଖରୀ ପାଇଁ ପ୍ରସ୍ତାବିତ ଅନୁଦାନ ବନ୍ଦ ହୋଇଗଲା । କାରଣ ଅଧିକାରୀଙ୍କର ସନ୍ଦେହ ହେଲା, କାମ ନେଇ ସେଠାରେ ପରସ୍ପର ଭିତରେ ମାରପିଟ ଆରମ୍ଭ ହୋଇଯାଇପାରେ ।

ମୁଁ ଗଲା ପରେ ସେଠାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠିତ ହେଲା । ମୁଁ ସ୍କୁଲ କମିଟିର ପରାମର୍ଶଦାତା ରହିଛି । ପରେ ଶୁଣିଲି ଯେ ମାଷ୍ଟ୍ରମାନଙ୍କଠାରୁ କୋଡ଼ିଏ ପଚିଶି ହଜାର ଟଙ୍କା ଚାନ୍ଦା ଆଦାୟ କରି ସେମାନଙ୍କୁ ମାସକୁ ମାତ୍ର ଦୁଇଶହ ଟଙ୍କା ଦରମା ଦିଆଯାଉଛି । ତା ମଧ୍ୟ ନିୟମିତ ନୁହେଁ । ସେମାନେ ବଡ଼ ଦୁଃଖରେ ସମୟ କଟାଉଛନ୍ତି ଭବିଷ୍ୟତରେ ସରକାରୀ ଅନୁଦାନ ମିଳିଲେ ସେମାନେ ଭଲ ଦରମା ପାଇବା ଆଶାରେ । ମୋତେ ପରାମର୍ଶଦାତା କମିଟିକୁ କେବେଁ ବି ନିମନ୍ତ୍ରଣ କରାଯାଏ ନାହିଁ । ବରଂ ଆଗରୁ ତାରିଖ ଠିକ୍ ହୋଇଥିଲେ ମୁଁ ପହଞ୍ଚିଗଲେ ନାନା ଆଳରେ ସେ ସଭା ଆଉ ଡକାଯାଏ ନାହିଁ । ଏସବୁ ଦେଖିଲା ପରେ ଗ୍ରାମ ଉନ୍ନୟନ ନିଶା ମୋର ତୁଟିଗଲା । ବର୍ତ୍ତମାନ ମୁଁ ଗଲେ ସ୍କୁଲର ପଢ଼ାପଢ଼ି ବିଷୟରେ ଖବର ନିଏ- ମାଷ୍ଟ୍ରମାନଙ୍କ ସହିତ ଆଲୋଚନା କରେ- ଗ୍ରାମ ଗୁଡ଼ିକର ରାଜନୀତିରେ ହସ୍ତକ୍ଷେପ କରେ ନାହିଁ ।

ମୋ ଘର ବାରଣ୍ଡାରେ ବସି ସକାଳେ ସଂଧ୍ୟାରେ, ଦିନ ରାତିରେ ମୋ ଘର ଆଗରେ ଥିବା କୃଷ୍ଣଗିରି ପାହାଡ଼ର ସବୁଜିମାକୁ ଉପଭୋଗ କରେ । ସଂଧ୍ୟା ତାରାର ମୋଲାୟମ ଆଲୋକ ପ୍ରଥମଥର ପାଇଁ ମୁଁ ଏଠାରେ ଲକ୍ଷ୍ୟ କଲି କାରଣ ସହରରେ ଏତେ ବଡ଼ ଚକ

ଚକ ତାରା ମଧ୍ୟ ଆଉ ଗୋଟିଏ ଆଲୋକ ହିସାବରେ ତାର ବ୍ୟକ୍ତିତ୍ୱର ଅଭିବ୍ୟକ୍ତି ସଂଭବ ହୁଏ ନାହିଁ । ଘନ ଅନ୍ଧକାର ସଂଧ୍ୟାରେ ହିଁ ତାର ମର୍ଯ୍ୟାଦା ପ୍ରକାଶିତ ହୁଏ । ଝାଡ଼େଶ୍ୱର କୁଣ୍ଡରେ ଘଣ୍ଟା ଘଣ୍ଟା ଧରି ଗାଧାଏ- ମତ୍ସ୍ୟାସନ ଭଂଗୀରେ ବହୁ ସମୟ ଧରି ପାଣିରେ ଭାସିବାରେ ଗଭୀର ଆନନ୍ଦ ହୁଏ । ସେହି କୁଣ୍ଡରେ ପିଲାଦିନେ କିପରି ପହଁରା ଶିଖିଥିଲି ସେ କଥା ମନେ ପକାଏ- ନନାଙ୍କ ସାଙ୍ଗରେ କିପରି ହବିଷ୍ୟ ଖାଇ ମଧ୍ୟାହ୍ନରେ ତାଙ୍କ ସାଙ୍ଗରେ ଘରକୁ ଫେରେ । ଏହି ସ୍ଥାନରେ ହିଁ ନନା ବୋଉଙ୍କୁ ଅନ୍ତିମ ବିଦାୟ ଦେଇଥିବାର ମର୍ମାନ୍ତିକ ବେଦନା ଅନୁଭବ କରେ । ଏ ପ୍ରକାରର ସ୍ମୃତିଚାରଣର ମୂଲ୍ୟ ଜୀବନରେ ବହୁତ ବେଶି ଭାବି ସେହି ନିରୋଳା ସ୍ଥାନଟିରେ ଗୋଟିଏ ନିଭୃତ ନିଳୟ ସୃଷ୍ଟି କରିଛି । ବସ୍ତୁବାଦୀ ଲୋକଙ୍କ ପାଇଁ ଏହା ଏକ ଅବାସ୍ତବ ବିଳାସିତା ହୋଇପାରେ, କିନ୍ତୁ ମୋ ପାଇଁ ନୁହେଁ ।

ମୋ ଯାଗାରେ ନୀମ, ବଉଳ, ଶାଗୁଆନ ଗଛ ପତ୍ର ଲାଗିଛି । କ୍ରମେ ସେହି ସ୍ଥାନଟିକୁ ଗଛପତ୍ରରେ ଭରି ଦେବାର ଇଚ୍ଛା । ଏଠାକୁ ମୋର ପିଲାଙ୍କ ଭିତରୁ କେତେଜଣଙ୍କୁ ନେଇଯାଇଛି । ସେମାନେ କୁଣ୍ଡରେ ଗାଧୋଇବା ପାଇଁ ଭଲ ପାଆନ୍ତି, କିନ୍ତୁ ମୋର ଏକ ବଖୁରିଆ ଘରଟିରେ ପଟା ଖଟରେ ଶୋଇବା ଏବଂ ମନ୍ଦିରର ଅଫୁଟା ଭୋଗ ଖାଇବା ମୋ ପାଇଁ କିପରି ସଂଭବ ହେଉଛି ସେଥିରେ ସେମାନେ ଆଶ୍ଚର୍ଯ୍ୟ ହୋଇଯାଆନ୍ତି । ମୁଁ ଗରିବ ଅବସ୍ଥାରୁ ଜୀବନ ଆରମ୍ଭ କରିଛିକି ନା ଏପରି ଗରିବ ଅବସ୍ଥା ମୋତେ ବିଚଳିତ କରେନାହିଁ । ମୋର ଦର୍ଶନ ହେଲା ଯେ, ଯେ କୌଣସି ପରିସ୍ଥିତିକୁ ମଧ୍ୟ ତୁମର ଉପଭୋଗ କରିବାର ସାମର୍ଥ୍ୟ ଥିବା ଦରକାର । ପୃଥିବୀର ବିଖ୍ୟାତ ସହରମାନଙ୍କର ବିଳାସପୂର୍ଣ୍ଣ ହୋଟେଲ ଯେପରି ମୋ ପାଇଁ ଉପଭୋଗ୍ୟ, ଏହି ଏକ ବଖୁରିଆ ଘର ଓ ପଟା ଖଟଟି ମଧ୍ୟ ସେହିପରି ମୋ ପାଇଁ ରମଣୀୟ । ବେଳେବେଳେ ମୋର କେତେକ ବଂଧୁଙ୍କୁ ସାଙ୍ଗରେ ନେଇଯାଏ । ଏପରି ବନ୍ଧୁଙ୍କୁ ନିଏ ଯେଉଁମାନେ ଏହି ପରିବେଶକୁ ପ୍ରାଣଭରି ଉପଭୋଗ କରିପାରିବେ ।

■ ■ ■

# ୩

# ସମାଜସେବାରେ ବିଫଳତା

ଅବସର ନେଲା ପରେ ସମାଜସେବା କାର୍ଯ୍ୟକ୍ରମ ବିଷୟରେ ମୋର ଅଭିଜ୍ଞତା ବିଷୟରେ କହିବା ଉଚିତ । ଭାରତ ଜ୍ଞାନ ବିଜ୍ଞାନ ପରିଷଦ ସଭାପତି ହିସାବରେ ଏହାର ବହୁତ କର୍ମୀଙ୍କୁ ଆମ ଅଞ୍ଚଳର ସମାଜସେବାରେ ନିୟୋଗ କରିଥିଲି । ସେତେବେଳକୁ ଗଂଜାମ ଜିଲ୍ଲାରେ ତତ୍କାଳୀନ କଲେକ୍ଟର ଶ୍ରୀ ଜଗଦାନନ୍ଦ ପଣ୍ଡାଙ୍କ ତତ୍ତ୍ୱାବଧାନରେ ଗଂଜାମରେ ସାକ୍ଷରତା ଅଭିଯାନ ଆରମ୍ଭ ହୋଇଥାଏ । ସାକ୍ଷରତା ଅଭିଯାନର ମୂଳଭିତ୍ତି ତିଆରି କରିବାରେ ଯେ ପ୍ରକାରର ବ୍ୟାପକ ଆଲୋଡ଼ନ ଓ ସଚେତନ ସୃଷ୍ଟି କରିବା ଉଚିତ, ତା'ର ସୂତ୍ରପାତ ହୋଇଥିଲା । ମୁଁ ସେଥିରେ ବହୁତ ବେଶି ଅନୁପ୍ରାଣିତ ହୋଇଯାଇଥିଲି । ମୁଁ ଗଂଜାମର ବହୁ ଗ୍ରାମାଞ୍ଚଳ ଏ ସଂପର୍କରେ ବୁଲିଲି । ଛତ୍ରପୁର ସର୍କିଟ ହାଉସରେ ଦିନରାତି ପାଞ୍ଚ-ଛଅଜଣ ଲେଖକଙ୍କ ସହିତ ମିଶି ସାକ୍ଷରତା ପାଇଁ ପ୍ରଥମ ତିନୋଟି ବହି ତିଆରି ହେଲା । ଏଥିରେ ଶ୍ରୀଯୁକ୍ତ ପଣ୍ଡା ମଧ୍ୟ ବହୁତ ସହଯୋଗ କରିଥିଲେ । ପ୍ରଥମ ସାକ୍ଷରତା ଉନ୍ମୋଚନ ସଭାରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଏବଂ ତାଙ୍କର କେତେକ ସହଯୋଗୀ ମନ୍ତ୍ରୀ ଆସିଥିଲେ । ଏ ସଂପର୍କରେ ବ୍ରହ୍ମପୁରରେ ବିରାଟ ଜନସଭାର ଆୟୋଜନ ହୋଇଥିଲା । ଏସବୁରେ ଯୋଗ ଦେଇ ମୁଁ ଉତ୍ସାହିତ ହୋଇପଡ଼ିଲି ।

ଏହା ଆଠମାସର କାର୍ଯ୍ୟକ୍ରମ । କିନ୍ତୁ ଖୁବ୍ ବେଶି ହେଲେ ପ୍ରାୟ ବର୍ଷେ ଭିତରେ ସଂପୂର୍ଣ୍ଣ କରିବାର ଲକ୍ଷ୍ୟ ଧାର୍ଯ୍ୟ ହୋଇଥିଲା । ନିରକ୍ଷରମାନଙ୍କ ଭିତରୁ ଶତକଡ଼ା ସତୁରି-ଅଶୀ ଭାଗ ସାକ୍ଷର ହେବାର ପରିକଳ୍ପନା ପାଇଁ ଭାରତ ସରକାରଙ୍କଠାରୁ ଅନୁଦାନ ଆସିଥିଲା । କିନ୍ତୁ ମୁଁ ଲକ୍ଷ୍ୟ କଲି ଶ୍ରୀଯୁକ୍ତ ପଣ୍ଡା କେବଳ ବିରାଟ ଜନତାର ସଭାରେ ଭାଷଣ ଦେବାରେ ଆଗ୍ରହୀ ହୋଇ ରହିଗଲେ । ଗ୍ରାମାଞ୍ଚଳରେ ଯେଉଁ ସ୍ୱେଚ୍ଛାସେବକମାନଙ୍କୁ ଦାୟିତ୍ୱ ଦିଆ ହୋଇଥିଲା ସେମାନେ ପ୍ରକୃତରେ ପଢ଼ାଉଛନ୍ତି କି ନାହିଁ - ନିର୍ଦ୍ଧାରିତ ନିରକ୍ଷରମାନଙ୍କ ଭିତରୁ କେତେଜଣ ପ୍ରକୃତରେ ସାକ୍ଷରତା କାର୍ଯ୍ୟକ୍ରମରେ ସଂପୃକ୍ତ, ସେ ବିଷୟରେ କୌଣସି ସଠିକ୍ ଖବର ନଥାଏ କି ସେଥିପାଇଁ ମଧ୍ୟ କୌଣସି ବଳିଷ୍ଠ ପରିଦର୍ଶନ ସଂସ୍ଥା କାମ କଲାନାହିଁ । ସାକ୍ଷରତା ଆରମ୍ଭର ପ୍ରାୟ ଛଅ-ସାତ ମାସ ପରେ ଦେଖାଗଲା

ଯେ କଲେକ୍ଟର ବିଭିନ୍ନ ସ୍ଥାନରେ ମନ୍ତ୍ରୀମାନଙ୍କୁ ଡାକି ସେ ଅଞ୍ଚଳ ପୂର୍ଣ୍ଣ ସାକ୍ଷରତା ବୋଲି ଘୋଷଣା କରି ଚାଲିଲେ। ମୁଁ ଏଥିରେ ଆଶ୍ଚର୍ଯ୍ୟ ହୋଇଗଲି। ଦେଖାଗଲା ଯେ ତିନି ଖଣ୍ଡଯାକ ବହି ବହୁ ପାଠକମାନଙ୍କ ପାଖରେ ପହଞ୍ଚି ମଧ୍ୟ ନଥାଏ। ଅଥଚ ଏଣେ ଚାଲିଲା ପୂର୍ଣ୍ଣ ସାକ୍ଷରତାର ଘୋଷଣା ସଭା। ଏଥିରେ ମୁଁ ପ୍ରତିବାଦ କଲି ଏବଂ ତାଙ୍କର ଏ ପ୍ରକାର କୌଣସି ସଭାରେ ଯୋଗ ଦେଲିନାହିଁ। ମୋର ହୃଦ୍‌ବୋଧ ହେଲା ସାକ୍ଷରତା ଅଭିଯାନ କେବଳ ରାଜନୈତିକ ଚାଲ୍ ଏବଂ ରାଜନୈତିକ ଲକ୍ଷ୍ୟ ରଖି କେତେକ କଲେକ୍ଟର ମଧ୍ୟ ଏଥିରେ ମାତିଲେ-ଏହି ପ୍ରଣାଳୀରେ ସାକ୍ଷରତା ଯେ ସଂଭବ ନୁହେଁ ଏ ବିଶ୍ୱାସ ପ୍ରାୟ ଛଅମାସର କଠିନ ପରିଶ୍ରମ ପରେ ମୁଁ ହୃଦୟଙ୍ଗମ କଲି।

ପରେ ଗୋଟିଏ ଗବେଷଣା ପ୍ରତିଷ୍ଠାନ ସ୍ୱାଧୀନ ଭାବରେ ଅନୁଧ୍ୟାନ କରି ଦେଖିଲେ ଯେ, ଗଂଜାମରେ ଦଶ ଶତାଂଶରୁ ବେଶି ସାକ୍ଷର ହୋଇନଥିଲେ ଯେତେବେଳେ ସାରା ଜିଲ୍ଲା ପୂର୍ଣ୍ଣ ସାକ୍ଷର ବୋଲି କଲେକ୍ଟରଙ୍କ ଦ୍ୱାରା ଘୋଷିତ ହୋଇଥିଲା। ମୋ ମତରେ ଏହି ଦଶ ଶତାଂଶ ସାକ୍ଷର ହୋଇଥିବା ବେଳେ କ୍ରମେ ସେମାନେ ପୁଣି ନିରକ୍ଷର ହୋଇଯାଇଥିବେ। କାରଣ ଭାରତ ସରକାରଙ୍କର ଜାତୀୟ ସାକ୍ଷରତା ମିଶନ ସାକ୍ଷରତା ପର କାର୍ଯ୍ୟକ୍ରମ ପାଇଁ ପ୍ରଚୁର ଟଙ୍କା ଯୋଗାଇ ଦେଇଥିଲେ। କିନ୍ତୁ ସେଥିପାଇଁ ଯେଉଁ ବହି ଯୋଗାଣ ଓ ପୁସ୍ତକାଳୟମାନ ସ୍ଥାପିତ ହେବାର ଯୋଜନା ଥିଲା, ତାହାର କୌଣସି ଚିହ୍ନ ବର୍ଣ୍ଣ ନଥିଲା- ଅନ୍ତତଃ ଆମେ ଦାୟିତ୍ୱ ନେଇଥିବା ଗ୍ରାମମାନଙ୍କରେ। ପରେ ଶୁଣିଲି ଯେ ଏ ସମସ୍ତ ଅନୁଦାନ ଲୋକଙ୍କ ପାଖରେ ପହଞ୍ଚି ପାରିନଥିଲା। ସେତିକି ଟଙ୍କା ଯଦି ପ୍ରାଥମିକ ଶିକ୍ଷାରେ ବ୍ୟୟ କରାଯାଇଥାଆନ୍ତା ତାହାହେଲେ ନିରକ୍ଷର ସଂଖ୍ୟା ଭବିଷ୍ୟତରେ ଅନ୍ତତଃ କମି କମି ଆସନ୍ତା।

ଏହି ପରିପ୍ରେକ୍ଷୀରେ ଆମର ସେହି ଅଞ୍ଚଳରେ ପ୍ରତ୍ୟେକ ପିଲାଙ୍କୁ ସ୍କୁଲରେ ନାମ ଲେଖାଇବା ପାଇଁ ଅଭିଯାନ ଆରମ୍ଭ କଲି। ଦାନପୁର ଗ୍ରାମରେ ସବ୍‌କଲେକ୍ଟର ଓ ଅନ୍ୟାନ୍ୟ ସରକାରୀ କର୍ମଚାରୀଙ୍କ ସହିତ ସେ ଗାଁ'ରେ ଆମେ ବୁଲିଲୁ ଯେଉଁ ପିଲାମାନେ ସ୍କୁଲକୁ ଯାଉ ନାହାଁନ୍ତି ସେମାନଙ୍କୁ ସ୍କୁଲରେ ଭର୍ତ୍ତି କରିବା ପାଇଁ। ସେଠାରେ ସପ୍ତମ ଯାଏଁ ଗୋଟିଏ ସ୍କୁଲ ରହିଛି। ତାହାର ପ୍ରଧାନ ଶିକ୍ଷକ ଆମ ସହିତ ଉପସ୍ଥାନ ଖାତା ଧରି ଘର ଘର ବୁଲିଲେ। ଗୋଟିଏ ପରିବାରରେ ତା'ର ଛଅସାତ ବର୍ଷର ଝିଅଟି ଆଉ ଗୋଟିଏ ଛୋଟ ପିଲାକୁ କାଖେଇ ଠିଆ ହୋଇଛି। ତା'ର ବାପ ମା'ଙ୍କୁ ଝିଅଟିକୁ ସ୍କୁଲରେ ଭର୍ତ୍ତି କରିବା ପାଇଁ ଅନୁରୋଧ କଲୁ। ସେ କହିଲା-

"ବାବୁ ଏ ଝିଅ ସ୍କୁଲକୁ ଗଲେ ଏ ପିଲାକୁ କିଏ ରଖିବ। ଆମେ ତ ପ୍ରତିଦିନ ବିଲବାଡ଼ିକୁ ଯିବୁ।"

ମୁଁ କହିଲି "କାହିଁ ଅଙ୍ଗନବାଡ଼ିରେ ତୁମ ପିଲା ରହିବ।"

"ନା ବାବୁ, ସେହି ଅଙ୍ଗନବାଡ଼ିରେ କେହି ରହନ୍ତି ନାହିଁ। ମୋ ପିଲା ରହିବ କୋଉଠି ?"

ଜଣାଗଲା ଯେ ସେ ଗ୍ରାମରେ ପ୍ରାୟ ଦେଢ଼ଶହ ପିଲା। ଅଙ୍ଗନବାଡ଼ିରେ ମୋଟେ ପଚାଶ ପିଲାଙ୍କ ପାଇଁ ଖାଦ୍ୟ ମିଳେ। ଯେତିକି ପିଲା ଯାଆନ୍ତି ସେମାନଙ୍କ ଭିତରେ କିଛି

କିଛି ବାଣ୍ଟି ଦେଇ ଅଙ୍ଗନବାଡ଼ି ଶିକ୍ଷିକା ଘରକୁ ଯାଏ । ମଝି ମଝିରେ ସେତିକି ଖାଦ୍ୟ ମଧ ମିଳେନାହିଁ । ଏକଥା ଶୁଣି ସରକାରୀ କର୍ମଚାରୀମାନେ ମୁହଁ ତଳକୁ କଲେ ।

ଜଣେ ବୁଢ଼ା ମୋ ପାଖକୁ ଆସି କହିଲା- ''ବାବୁ, ଆମେ କଅଣ ଏତେ ମୂର୍ଖ ଯେ ଆମ ପିଲାଙ୍କୁ ସ୍କୁଲକୁ ପଠାନ୍ତୁ ନାହିଁ । ସେହି ସ୍କୁଲରେ ସାତଟି କ୍ଲାସ ପାଇଁ ମାତ୍ର ଚାରିଜଣ ଶିକ୍ଷକ-ସେମାନଙ୍କ ଭିତରୁ ପ୍ରତ୍ୟେକ ଦିନ କେହି ଜଣେ ଦି'ଜଣ ଆସି ନଥାନ୍ତି- ସାତଟି କ୍ଲାସ ପାଇଁ ଚାରୋଟି ଘର । ପିଲାମାନେ ସ୍କୁଲରେ ନ ରହି ଚାରିଆଡ଼େ ଖାଲି ବୁଲନ୍ତି । ଆମେ ସେମାନଙ୍କୁ ଆମ କାମରେ ନ ଲଗାଇ ଏପରି ବାଏଁ ବାଏଁ ବୁଲିବା ପାଇଁ କାହିଁକି ସ୍କୁଲକୁ ପଠାଇବୁ ? ଆପଣମାନେ ମିଛରେ ଏତେ ପରିଶ୍ରମ କରୁଛନ୍ତି ।''

ଏତିକି କଥାରେ ମୁଁ ସେଠାରୁ ଫେରିଲି– ମୋ ସହିତ ଅନ୍ୟ ସରକାରୀ କର୍ମଚାରୀ ମଧ । ଏ କଥା ଜଣାଥିଲା ତେଣୁ କଲେକ୍ଟର ମହୋଦୟ ତାଙ୍କର ଜରୁରୀ କାମ ବାହାନାରେ ଆମ ସାଙ୍ଗରେ ଯାଇନଥିଲେ । ତାପରେ ସାକ୍ଷରତା କାର୍ଯ୍ୟକ୍ରମରେ ମୁଁ ଅନୁଗୁଳ, ଢେଙ୍କାନାଳ, ରାଉରକେଲା ଏବଂ କଟକରେ ଯୋଗ ଦେଇଥିଲି । ଏସବୁ ଯୋଜନା କେବଳ ଲୋକଙ୍କୁ ଦେଖାଇବା ରାଜନୈତିକ ପ୍ରହସନ ବୋଲି ମୋର ଧାରଣା ହେଲା । ଏହା ମଧ ଦେଖାଗଲା ଯେ ଯେଉଁଠି ଏହା କାର୍ଯ୍ୟକାରୀ ହେବାର ଦେଖାଗଲା ସେଠାକାର ବିଧାୟକମାନେ ଭୀତତ୍ରସ୍ତ ହୋଇପଡ଼ିଲେ । କାରଣ ସାକ୍ଷର ହେଲାକ୍ଷଣି ଲୋକଙ୍କର ଦାବିମାନ ଏମାନଙ୍କ ପାଖରେ ଆସି ପହଞ୍ଚିଲା । ସେମାନେ ଏପରି ବିବ୍ରତ ହୋଇପଡ଼ନ୍ତି ଯେ ମନ୍ତ୍ରୀଙ୍କୁ କହି ସେହି କଲେକ୍ଟରଙ୍କୁ ହଟାଇ ଦିଅନ୍ତି । ଏହା କେଉଁଝର ଜିଲ୍ଲାରେ ହୋଇଥିଲା । ମୁଁ ଏ ବିଷୟରେ ବିଜୁବାବୁଙ୍କର ଦୃଷ୍ଟି ଆକର୍ଷଣ କରିଥିଲି, କିନ୍ତୁ କିଛି ଫଳ ହେଲାନାହିଁ । ତତ୍କାଳୀନ ଟାଣୁଆ ଓ ସାକ୍ଷରତାରେ କୃତକାର୍ଯ୍ୟ ହୋଇଆସୁଥିବା କଲେକ୍ଟର ଶ୍ରୀ ଅରୁଣ କୁମାର ପଣ୍ଡାଙ୍କୁ ତତ୍‌କ୍ଷଣାତ୍ ସେଠାରୁ ବଦଳି କରାଗଲା ।

ଏହିସବୁ କାରଣରୁ ମୁଁ କ୍ରମେ କ୍ରମେ ସାକ୍ଷରତା ଅଭିଯାନରୁ ସଂପୂର୍ଣ୍ଣ ରୂପେ ଓହରିଗଲି । ମୋର ଧାରଣା ହେଲା ଯେ ବର୍ତ୍ତମାନର ପ୍ରଚଳିତ ରାଜନୈତିକ ସଂସ୍ଥା ଚାହୁଁ ନାହିଁ ଯେ ଲୋକେ ସାକ୍ଷର ହୁଅନ୍ତୁ । ସାକ୍ଷର ହେଲେ ସେମାନଙ୍କର ଅବସ୍ଥା ଖରାପ ହେବାର ସଂଭାବନା ରହିଛି । ତା ନ ହେଲେ ଗତ ଅର୍ଦ୍ଧ ଶତାବ୍ଦୀ ଧରି ଭାରତରେ ନିରକ୍ଷରଙ୍କ ସଂଖ୍ୟା କମିପାରିଲା ନାହିଁ କି ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ ହୋଇପାରିଲା ନାହିଁ କାହିଁକି ?

ମୁଁ ସାକ୍ଷରତା କାର୍ଯ୍ୟକ୍ରମରୁ ଓହରିଲି, କିନ୍ତୁ ଭାରତ ଜ୍ଞାନ ବିଜ୍ଞାନ ସମିତିର ଅନ୍ୟାନ୍ୟ ସଭ୍ୟମାନେ ସରକାର କର୍ମଚାରୀଙ୍କର ଚାଟୁକାର ହୋଇ ରହିଗଲେ । ସେମାନେ ଏମାନଙ୍କୁ ବ୍ୟବହାର କଲେ । ମୁଁ ଯେତେବେଳେ ଏସବୁ କଥା ମୁଖ୍ୟମନ୍ତ୍ରୀଙ୍କ ସଭାପତିତ୍ୱରେ ଥିବା ସାକ୍ଷରତା ପରାମର୍ଶଦାତା କମିଟି ଆଗରେ ଉପସ୍ଥାପିତ କରେ ତତ୍କାଳୀନ ପ୍ରୌଢ଼ ଶିକ୍ଷା ଡିରେକ୍ଟର ଏବଂ କଲେକ୍ଟରମାନେ ମୋ ପ୍ରତି ଅସନ୍ତୁଷ୍ଟ ହେଲେ ଏବଂ ଶେଷରେ ମୋ ନାମ ସେହି କମିଟିରୁ ହଟାଇ ଦିଆଗଲା । ଭାରତ ଜ୍ଞାନ ବିଜ୍ଞାନ ସମିତି ସଭ୍ୟମାନେ ମଧ ମୋ ପ୍ରତି ବିମୁଖ ହେଲେ । ଶେଷରେ ମୁଁ ଯେତେବେଳେ ଆବିଷ୍କାର କଲି ଯେ ମୁଁ ସଭାପତି

ଥାଇ ମଧ୍ୟ ଏବଂ ଶିକ୍ଷାରେ ମୋର ଏତେ ଆଗ୍ରହ ଥିଲେ ସୁଦ୍ଧା ଭାରତ ଜ୍ଞାନ ବିଜ୍ଞାନ ସମିତି ଭାରତ ସରକାରଙ୍କଠାରୁ ସାଢ଼େ ଛଅଲକ୍ଷ ଟଙ୍କା ଆନନ୍ଦମୟ ଶିକ୍ଷା ପାଇଁ ଆଣି ତିନି ମାସରେ ସବୁ ଖର୍ଚ୍ଚ କରିଦେଲେ ମୋର ଅଜ୍ଞାତସାରରେ। ଠିକ୍ ଏହି ଗୋଟିକ ଘଟଣା ପରେ ମୁଁ ଏହି ସମିତିରୁ ଇସ୍ତଫା ଦେଲି।

ଏହିପରି ଭାବରେ ଆଉ କେତେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମୋତେ ପ୍ରଥମେ ପ୍ରଥମେ ସଭାପତି କରନ୍ତି, ପରାମର୍ଶଦାତା ରଖନ୍ତି, କିନ୍ତୁ ସେମାନଙ୍କର ବେଶି ପଇସାପତ୍ର ହୋଇଗଲା ପରେ ମୋତେ ଆଉ ପଚାରନ୍ତି ନାହିଁ। ତେଣୁ କ୍ରମେ ମୋତେ ଆଉ କେହି ସଭାପତି କରୁନାହାଁନ୍ତି- ମୁଁ ମଧ୍ୟ ଆଉ ଆଗ୍ରହୀ ନୁହେଁ ସ୍ୱେଚ୍ଛାସେବୀ କାମରେ।

୧୯୮୩ରେ ବିଭାଗ ଛାଡ଼ିଲା ପରେ ସମାଜ ସେବାରେ ବହୁବର୍ଷ ବିତିଗଲା- ଏ ଦିଗରେ ମୋର ପରିଶ୍ରମ ଅନୁସାରେ ସେପରି କୌଣସି ସୁଫଳ ନ ମିଳିବାରୁ ଏବଂ ଅଧିକାଂଶ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଧନୀ ହୋଇ ମୋଠାରୁ କରଛଡ଼ା ଦେବାକୁ ଆରମ୍ଭ କଲା ପରେ ମୁଁ ଆଉ ସମାଜସେବାରେ ଆଗ୍ରହୀ ହେଲିନାହିଁ।

ଗତ କେତେବର୍ଷ ହେଲା ମୁଁ କେବଳ ଖେଳ ମାଧ୍ୟମ ଶିଶୁ ଶିକ୍ଷା ସହିତ ସଂପୃକ୍ତ। ସେଥିପାଇଁ ତାଲିମ୍ ପାଉଥିବା ଗ୍ରାଜୁଏଟ୍ ଝିଅମାନଙ୍କୁ ପଢ଼ାଏ। ସେମାନଙ୍କ ମାଧ୍ୟମରେ ଏବଂ କଟକରେ ପ୍ରତିଷ୍ଠିତ Fairy land play schoolରେ ପ୍ରଦର୍ଶିତ ଶିକ୍ଷା ମାର୍ଗ ବିଷୟରେ ପ୍ରଚାର ଓ ପ୍ରସାର କ୍ଷେତ୍ରରେ ହିଁ ମୁଁ ଅନେକ ସମୟ କଟାଏ। ପିଲାମାନଙ୍କୁ ସ୍ନେହ, ପ୍ରେମ, ଭଲ ପାଇବା ମାଧ୍ୟମରେ ହିଁ ସେମାନଙ୍କର ଉପଯୁକ୍ତ ବ୍ୟକ୍ତିତ୍ୱ ଗଢ଼ି ଉଠିବ ଏହି ବାର୍ତ୍ତା ତାଲିମପ୍ରାପ୍ତ ଶିକ୍ଷିକା ମାଧ୍ୟମରେ ଏବଂ ସ୍କୁଲରେ ଏହାର ପ୍ରଦର୍ଶନ କରାଯାଏ। ଏଥିପାଇଁ 'ଆମେ, ଆମ ପିଲା' ଏବଂ 'ଆମେ ଆମ ମନ' ବିଷୟରେ ଦୁଇଟି ପୁସ୍ତକ ପ୍ରଣୟନ କରିଛି। ତା'ଛଡ଼ା ଖବରକାଗଜରେ ଲେଖିବା ଏବଂ ଉପନ୍ୟାସ ଲେଖିବାରେ ମୋର ସମୟ କଟେ ଏବଂ ତାହା ମୋ ପକ୍ଷରେ ଆମୋଦଦାୟକ ହୋଇଛି।

■ ■ ■

# ୪

# ମୋର ରାଜନୈତିକ ଆଭିମୁଖ୍ୟ

ଖଲ୍ଲିକୋଟରେ ପଞ୍ଚମ ଶ୍ରେଣୀରେ ପଢ଼ିବାଦିନୁ ସ୍ୱାଧୀନତା ସଂଗ୍ରାମ ରାଜନୀତିରେ ମୁଁ ଆଗ୍ରହୀ ହେଲି । ବାନର ସେନାରେ ଯୋଗ ଦେଇ ଅଫିମ ଦୋକାନ ଆଗରେ ସତ୍ୟାଗ୍ରହ କରି କିଛି ବେତମାଡ଼ ଖାଇଥିଲି । ତାପରେ କଟକ ଆସିଲି । କଲିଜିଏଟ୍ ସ୍କୁଲରେ ପଢ଼ିଲା ବେଳେ ସ୍କୁଲର ଏକମାତ୍ର ପ୍ରତିନିଧି ହିସାବରେ ଛାତ୍ର ସଂଘରେ ଯୋଗ ଦେଲି । ସେତେବେଳେ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀଙ୍କ ସହ ପରିଚୟ ହୁଏ । ମାଟ୍ରିକ୍ ବେଳେ ଇଂରେଜ ସରକାର ବିରୁଦ୍ଧରେ ସଂଗ୍ରାମଶୀଳ ଆତଙ୍କବାଦ ବିଷୟରେ ମୋର ଆଗ୍ରହ ହେଲା । ଏମାନଙ୍କ ଭିତରୁ ଜଣେ ଦୁଇଜଣଙ୍କ ସହିତ ଗୁପ୍ତରେ ମୋର ପରିଚୟ ମଧ୍ୟ ହୋଇଥିଲା । ସରକାରଙ୍କ ଦ୍ୱାରା ନିଷିଦ୍ଧ ବହିମାନ ସଂଗ୍ରହ କରି ଅନ୍ୟଙ୍କୁ ପଢ଼ିବା ପାଇଁ ଦେବାରେ ମୁଁ ସାହାଯ୍ୟ କରୁଥିଲି । ମାଟ୍ରିକ୍ ପରୀକ୍ଷା ପରେ ଛତ୍ରପୁରରେ ଥିଲାବେଳେ ଦୁଇଜଣ ଯୁବକଙ୍କୁ ଏପ୍ରକାର ଆତଙ୍କବାଦରେ ଅନୁପ୍ରାଣିତ କଲି, କିନ୍ତୁ କିଛିଦିନ ପରେ ଏହି ଆତଙ୍କବାଦୀ କାର୍ଯ୍ୟକ୍ରମ କ୍ରମେ କ୍ରମେ ନିଷ୍କ୍ରିୟ ହୋଇପଡ଼ିଥିଲା ।

ରେଭେନ୍ସା କଲେଜରେ ଆଇ.ଏ. ପଢ଼ିଲାବେଳେ ମୋଠାରେ ସାହିତ୍ୟ ଓ ସଂଗୀତ ଚର୍ଚ୍ଚାରେ ଏପରି ଆଗ୍ରହ ବଢ଼ିଗଲା ଯେ ସମୟ ଅଭାବରୁ କଟକରେ ଚାଲିଥିବା ଘନ ଘନ ଛାତ୍ର ଧର୍ମଘଟରେ ମୁଁ ଯୋଗ ଦେଉନଥିଲି । ତାପରେ ବି.ଏ. ପଢ଼ିଲାବେଳେ ପାଟନାରେ ମଧ୍ୟ ସେଠାକାର ନିଷ୍କ୍ରିୟ ରାଜନୈତିକ ପରିବେଶ ଏବଂ ମୋର ଛାତ୍ର ହିସାବରେ ଭଲ କରିବା ସିଦ୍ଧାନ୍ତ ଯୋଗୁ ମୁଁ ରାଜନୀତିରୁ ଦୂରେଇ ରହିଥିଲି । କିନ୍ତୁ ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନ ଜୟ ପ୍ରକାଶ ନାରାୟଣଙ୍କର ଆହ୍ୱାନ କ୍ରମେ ଏପରି ତୀବ୍ର ଆକାର ଧାରଣ କଲା ଯେ ମୁଁ ବିହାରରେ ଏହି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କଲି । ପାଟନା ସେକ୍ରେଟେରିଏଟ୍ ଆଗରେ ଯେଉଁ ଏଗାରଜଣ ଛାତ୍ର ସହିଦ୍ ହେଲେ, ସେମାନଙ୍କ ଭିତରୁ ମୁଁ ଅଳ୍ପକେ ରକ୍ଷା ପାଇଥିଲି, କିନ୍ତୁ ଏମାନଙ୍କ ଭିତରୁ ମୋ ପାଖରେ ଠିଆ ହୋଇଥିବା ଛାତ୍ରର ଛାତିରେ ଗୁଳିବାଜି ସେ ମୋ କୋଳରେ ସହିଦ୍ ହୋଇଥିଲା । ତା ରକ୍ତରେ ମୋ ଦେହ ରକ୍ତ ରଂଜିତ ହୋଇଯାଇଥିଲା । ତେଣୁ ମୁଁ ଭୟଙ୍କର ଭାବରେ ଆଘାତପ୍ରାପ୍ତ ବୋଲି

ସମସ୍ତଙ୍କର ଧାରଣା ହୋଇଥିଲା ଏବଂ ଯେଉଁ ଓଡ଼ିଆ ଛାତ୍ରମାନେ ସେହିଦିନ ପାଟନା ଛାଡ଼ି ଓଡ଼ିଶା ଫେରିଥିଲେ ସେମାନେ ଗୁଜବ ପ୍ରଚାର କରିଦେଲେ ଯେ ମୁଁ ମୃତ । ମାସେଯାଏ ପାଟନା ଭାରତବର୍ଷଠାରୁ ସଂପୂର୍ଣ୍ଣ ରୂପେ ବିଚ୍ଛିନ୍ନ ହୋଇପଡ଼ିଥିବା ଯୋଗୁ ମୁଁ ମୃତ ବୋଲି ମାସେ କାଳ ଆମ ଘରେ ସମସ୍ତେ ଭୟଙ୍କର ଉଦ୍‌ବେଗରେ ସମୟ କଟାଇଥିଲେ । ସେହି ମାସ ଭିତରେ ମୁଁ ବିହାରର କେତେକ ଗ୍ରାମାଞ୍ଚଳକୁ ଯାଇ ସରକାର ବିରୁଦ୍ଧରେ କିଛି କାମ କରିଥିଲି । ଏସବୁ କାରଣରୁ ମୋତେ ପାଟନା କଲେଜ ହଷ୍ଟେଲରୁ ବହିଷ୍କାର କରାହୋଇଥିଲା । ପଚାଶ ଟଙ୍କା ଜୋରିମାନା ହୋଇଥିଲା ଏବଂ କଲେଜ କଳାଖାତାରେ ମୋ ନାମ ଉଠିଥିଲା - ଯାହା ଫଳରେ ଯେପରି ମୋର କୌଣସି ଚାକିରି ବ୍ରିଟିଶ୍ ରାଜତ୍ୱ ସମୟରେ ମିଳିପାରିବ ନାହିଁ ।

ଏ ସମୟରେ ଆଉ ଗୋଟିଏ ବିଶେଷ ଘଟଣା ହେଉଛି କମ୍ୟୁନିଷ୍ଟମାନେ ଏହି ଭାରତଛାଡ଼ ଆନ୍ଦୋଳନ ବିରୁଦ୍ଧରେ ଏପରି ତୀବ୍ର ଭାବରେ କାମ କରୁଥିଲେ ଯେ ସେମାନଙ୍କ ଯୋଗୁ ବହୁ ସଂଗ୍ରାମୀ ଧରା ପଡ଼ି ଯାଇଥିଲେ । ସୋଭିଏତ୍ ରୁଷ, ଆମେରିକା, ବ୍ରିଟେନ୍ ସହିତ ମିତ୍ର ଦଳର ସଦସ୍ୟ ହିସାବରେ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ କରୁଥିବା ଯୋଗୁ ହଠାତ୍ କମ୍ୟୁନିଷ୍ଟମାନେ ଭାରତରେ ବ୍ରିଟିଶ୍ ସରକାରଙ୍କୁ ଏପରି ତୀବ୍ର ଭାବରେ ସାହାଯ୍ୟ କଲେ ଯେ, ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଧରାଇଦେବାରେ ସେମାନେ ପଶ୍ଚାତ୍‌ପଦ ହେଉନଥିଲେ । ଏହା ଫଳରେ ମୋର କମ୍ୟୁନିଷ୍ଟଙ୍କ ପ୍ରତି ତୀବ୍ର ଘୃଣା ହୋଇଥିଲା ।

ତାପରେ ଇଂଲଣ୍ଡରେ ମୁଁ ସେଠାରେ ପ୍ରଚଳିତ ଜାଠଦଳ, ଶ୍ରମିକ ଦଳ ଏବଂ କମ୍ୟୁନିଷ୍ଟଙ୍କ ସହିତ ଘନିଷ୍ଠ ଭାବରେ ମିଶିଲି । ସେମାନଙ୍କ ସଭାରେ ମୁଁ ଯୋଗ ଦିଏ- ସେମାନଙ୍କର ତାତ୍ତ୍ୱିକ ଆଭିମୁଖ୍ୟ ବିଷୟରେ ଆଲୋଚନା କରେ- ଏ ସଂପର୍କରେ ବହୁତ ବହି ପଢ଼ିଲି, ଶେଷରେ ମାର୍କ୍ସଙ୍କର ମହାମାନବୀୟ ଦର୍ଶନରେ ମୁଁ ଗଭୀର ଭାବରେ ଉଦ୍‌ବୁଦ୍ଧ ହେଲି । ତାଙ୍କର ଜାତିବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତଙ୍କର ସମାନ ଭାବରେ ଉନ୍ନୟନ ପ୍ରତି ଯେଉଁ ବିଶ୍ଳେଷଣମାନ ମାର୍କ୍ସବାଦରେ ରହିଥିଲା, ସେସବୁ ମୋତେ ବହୁତ ଅନୁପ୍ରାଣିତ କଲା । ବ୍ରିଟେନ୍‌ରେ ମଧ୍ୟ ସେମାନେ ବ୍ରିଟିଶ୍ ସାମାଜ୍ର୍ୟବାଦ ବିରୁଦ୍ଧରେ କାମ କରୁଥିଲେ - ଭାରତ ଓ ଅନ୍ୟାନ୍ୟ ଔପନିବେଶିକ ରାଜ୍ୟ ପ୍ରତି ସେମାନଙ୍କର ଅକୁଣ୍ଠିତ ସହାନୁଭୂତି ରହିଥିଲା- ଏହି ପରିପ୍ରେକ୍ଷୀରେ ସମସ୍ତ ସାମ୍ରାଜ୍ୟବାଦୀ ଦେଶ ବିରୁଦ୍ଧରେ ସେମାନେ ଅଭିଯାନ ଚଳାଉଥିଲେ- ତାହା ମୋର ପସନ୍ଦ ହୋଇଥିଲା ।

ମାର୍କ୍ସବାଦର ମହାମାନବୀୟ ଐକ୍ୟ ପ୍ରଭୃତି ଦର୍ଶନ ବୁଦ୍ଧଦେବଙ୍କର ଦର୍ଶନ ସହିତ ଅନେକଟା ମିଶି ଯାଉଥିଲା । ମାତ୍ର ଏହି ଲକ୍ଷ୍ୟ ସାଧନ ଲାଗି କମ୍ୟୁନିଷ୍ଟମାନେ ହିଂସାତ୍ମକ ଆଚରଣରେ ବିଶ୍ୱାସ କରନ୍ତି; କିନ୍ତୁ ବୁଦ୍ଧ ଏବଂ ଗାନ୍ଧୀ ଅହିଂସ ଆଚରଣରେ ଉଦ୍‌ବୁଦ୍ଧ । ଇଂଲଣ୍ଡରେ ଥିଲାବେଳେ ପ୍ରଫେସର ହାଲଡ଼େନ, ପ୍ରଫେସର ବାର୍ଣ୍ଣାଲ୍ ପ୍ରଭୃତି ବହୁ ବିଖ୍ୟାତ ମାର୍କ୍ସବାଦୀ ବୁଦ୍ଧିଜୀବୀଙ୍କ ସହିତ ମୋର ପରିଚୟ ହୋଇଥିଲା ଏବଂ ଶେଷରେ ମାର୍କ୍ସବାଦରେ ମୋର ଦୃଢ଼ ବିଶ୍ୱାସ ହୋଇଥିଲା ।

ଭାରତକୁ ଫେରିଲା ପରେ ମଧ୍ୟ ବହୁବର୍ଷ ଯାଏଁ ମାର୍କ୍ସବାଦୀ ଥିଲି । କିନ୍ତୁ କ୍ରମେ ଲକ୍ଷ୍ୟ କଲି ଯେ ମାର୍କ୍ସବାଦୀ ହେବା ଗୋଟିଏ କଥା, କମ୍ୟୁନିଷ୍ଟ ଦଳଭୁକ୍ତ ହେବା ଆଉ

ଗୋଟିଏ ସମସ୍ୟା । ରାଜନୈତିକ ଦଳମାନଙ୍କର ବହୁ ଅଭିସନ୍ଧିମୂଳକ ଓ ଚକ୍ରାନ୍ତୀୟ ସିଦ୍ଧାନ୍ତ ଏବଂ ବ୍ୟବହାର ସହିତ ଜଣେ ବୁଦ୍ଧିଜୀବୀ ମାର୍କ୍ସବାଦୀ ସମ୍ମତ ହେବା ସଂଭବ ନୁହେଁ । ପ୍ରଫେସର ହାଲଡ୍ରେନ ଏପରି ଜଣେ ବଳିଷ୍ଠ ମାର୍କ୍ସବାଦୀ ଥିଲେ । ପ୍ରତି ହପ୍ତାରେ ଥରେ ସେ କମ୍ୟୁନିଷ୍ଟ ଦଳର ମୁଖପତ୍ର 'ଡେଲି ଓ୍ୱାର୍କର'ରେ ଲେଖୁଥିଲେ ଏବଂ ଏହି କାଗଜର ଜଣେ ସହଯୋଗୀ ସଂପାଦକ ଥିଲେ । କିନ୍ତୁ ସୋଭିଏତ୍ ରୁଷରେ ଜୀବ ବିଜ୍ଞାନ କ୍ଷେତ୍ରରେ କେବଳ ଦଳୀୟ ରାଜନୀତି ଚକ୍ରାନ୍ତ ଯୋଗୁ ପ୍ରଚଳିତ ତଥ୍ୟ ବିରୁଦ୍ଧରେ ରୁଷର ଜଣେ ଜୀବ ବିଜ୍ଞାନୀର ତଥ୍ୟକୁ ସରକାର ସମର୍ଥନ ଦେଲେ ଏବଂ ଏହାର କର୍ତ୍ତାଙ୍କୁ ସବୁଠୁ ବଡ଼ ବୈଜ୍ଞାନିକ ପଦବୀ, ସୋଭିଏତ୍ ଏକାଡେମୀ ଅଫ ସାଇନ୍ସର ସଭାପତି ମଧ୍ୟ କରିଦେଲେ । କେବଳ ଏହାର ପ୍ରତିବାଦରେ ଅଧ୍ୟାପକ ହାଲଡେନ କମ୍ୟୁନିଷ୍ଟ ଦଳରୁ ଇସ୍ତଫା ଦେଇଥିଲେ । ପୃଥିବୀରେ ଏଥିଯୋଗୁ ଚହଳ ପଡ଼ିଯାଇଥିଲା ଏବଂ କିଛି ବର୍ଷ ପରେ ଏହି ତଥ୍ୟକୁ ସୋଭିଏତ୍ ରୁଷ ମଧ୍ୟ ଅଗ୍ରାହ୍ୟ କଲା । ଭାରତରେ ତ କମ୍ୟୁନିଷ୍ଟ ଦଳ ଏହିପରି ବହୁ ଚକ୍ରାନ୍ତୀୟ କାର୍ଯ୍ୟରେ ଲିପ୍ତ ଏବଂ ସୋଭିଏତ୍ ରୁଷ ଯାହା କହିବ ତାହା ବିପକ୍ଷରେ ପଦେ କହିବା ଅର୍ଥ ତୁମେ ଅଣ ମାର୍କ୍ସିଷ୍ଟ ଏବଂ ବୁର୍ଜୁୟା ସଂଶୋଧନବାଦୀ ।

ମୁଁ ମଝି ମଝିରେ ୟୁରୋପ ଯାଏ ଏବଂ ଦ୍ୱିତୀୟ ଥର ସୋଭିଏତ୍ ରୁଷକୁ ୧୯୬୭ରେ ଯାଇଥିଲି । ପ୍ରଥମଥର ୧୯୬୫ରେ ଗୋଟିଏ ବିରାଟ ଭାରତୀୟ ଦଳ ରୁଷ ପରିଚାଳିତ ବିଶ୍ୱଶାନ୍ତି ମହାସଭାରେ ଯୋଗ ଦେବା ପାଇଁ ଯାଇଥିଲେ ଏବଂ ମୁଁ ଏହି ଦଳଭୁକ୍ତ ଥିଲି ଆମମାନଙ୍କୁ ରୁଷର ସବୁଠୁ ଭଲ ଯାଗା ସବୁ ଏପରି ଭାବରେ ଦେଖାଇଲେ ଯେ ରୁଷରେ କୌଣସି ଅସୁବିଧା ଥାଇପାରେ ବୋଲି ଆମର ଧାରଣା ହେବା ସହଜ ନୁହେଁ; କିନ୍ତୁ ୧୯୬୭ରେ ମୁଁ ଦ୍ୱିତୀୟ ଥର ଆଉ ଦୁଇଜଣ ଅଧ୍ୟାପକଙ୍କ ସାଙ୍ଗରେ ପ୍ରାୟ ମାସେ ଯାଏଁ ସୋଭିଏତ୍ ରୁଷ ବୁଲିଥିଲି । ସେତେବେଳେ ରୁଷର କେତେକ ସାଂଘାତିକ ଘଟଣାମାନ ଆମ ଦୃଷ୍ଟିକୁ ଆସିଥିଲା । ତାପରେ ୟୁରୋପରୁ ସୋଭିଏତ୍ ରୁଷର ଦୁର୍ବଳତା ଓ କମ୍ୟୁନିଷ୍ଟ ଦଳୀୟ ନେତାଙ୍କର ନାନା ଧରଣର କଠୋରତା ତଥା ଏକଛତ୍ରବାଦୀ ମନୋଭାବ ବିଷୟରେ ଖବରମାନ ମିଳୁଥାଏ । କିନ୍ତୁ ଏ ବିଷୟରେ ମୁଁ ଯେତେବେଳେ ମୋର ଭାରତୀୟ କମ୍ୟୁନିଷ୍ଟ ବନ୍ଧୁମାନଙ୍କୁ କହିଲି ସେମାନେ ମୋତେ ସଂଶୋଧନବାଦୀ ବୁର୍ଜୁୟା କହି ମୋତେ ହତାଦର କଲେ । ଶେଷରେ ବଡ଼ କଷ୍ଟରେ ଗଢ଼ିଉଠିଥିବା ଇସକସ୍ ଅନୁଷ୍ଠାନକୁ ମଧ୍ୟ ମୋତେ ଆଉ ନିମନ୍ତ୍ରଣ ମିଳିଲା ନାହିଁ, ଅଥଚ ସରକାରୀ କୋପଦୃଷ୍ଟିରେ ପଡ଼ିଥିଲା ବେଳେ ମୁଁ ଥିଲି ଏହାର ଘନିଷ୍ଠ ପୃଷ୍ଠପୋଷକ । ଇପ୍ଟା- ଭାରତୀୟ ଜନତା ଥିଏଟର ସଂଘ ଓଡ଼ିଶାକୁ ଆସିଥିଲା ବେଳେ ମୁଁ ହିଁ ଏକମାତ୍ର ସରକାରୀ କର୍ମଚାରୀ ଜନତା ଥିଏଟରରେ ଅନୁଷ୍ଠିତ ହେଉଥିବା ଅଭିନୟ ବେଳେ ଉପସ୍ଥିତ ଥିଲି ଏବଂ ଓଡ଼ିଶାରେ ଏହାର ପ୍ରତିଷ୍ଠା ଲାଗି ରଂଗମଞ୍ଚରେ ଠିଆ ହୋଇ ପାଞ୍ଚଶହ ଟଙ୍କାର ପ୍ରତିଶ୍ରୁତି ଦେଇଥିଲି । ଏସବୁ କୁଆଡ଼େ ଉଭେଇଗଲା, କାରଣ ମୁଁ ସୋଭିଏତ୍ ରୁଷର କେତେକ ଦୁର୍ନୀତି ଓ ଅନୀତି ବିଷୟରେ ଏମାନଙ୍କୁ କହିଥିଲି ।

ଭାରତୀୟ କମ୍ୟୁନିଷ୍ଟମାନେ ସୋଭିଏତ୍ ରୁଷକୁ ଏପରି ଅନ୍ଧ ଭାବରେ ଅନୁସରଣ କରି ଚାଲିଲେ ଯେ, ଶେଷରେ ଏକଛତ୍ରବାଦୀ ଇନ୍ଦିରା ଗାନ୍ଧୀଙ୍କର ୧୯୭୫ରେ ଜରୁରୀକାଳୀନ ଏକଛତ୍ରବାଦକୁ ସୋଭିଏତ୍ ରୁଷ ସମର୍ଥନ କରୁଥିବା ଯୋଗୁ ଏମାନେ ମଧ୍ୟ

ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ ଜଣାଇଲେ ଏବଂ ଜୟ ପ୍ରକାଶ ନାରାୟଣଙ୍କ ଆନ୍ଦୋଳନକୁ ଫା!ଶିଷ୍ଟବାଦ ହିସାବରେ ଚିତ୍ରଣ କଲେ ! ସରକାରୀ କର୍ମଚାରୀଙ୍କୁ ମଧ୍ୟ ଏପରି ଫାଶିଷ୍ଟବାଦ ବିରୁଦ୍ଧରେ ପ୍ରଚାର କରିବା ପାଇଁ ବ୍ୟବହାର କଲେ । ଭାରତରେ ଇନ୍ଦିରା ଗାନ୍ଧୀ ଏବଂ ଓଡ଼ିଶାରେ ତାଙ୍କର ପଦାନୁସରଣ କରି ଚାଲିଥିବା ଏକଦା ଟାଣୁଆ କମ୍ୟୁନିଷ୍ଟ ନେତ୍ରୀ ଥିବା ନନ୍ଦିନୀ ଶତପଥୀ ଓଡ଼ିଶାରେ ଏକଛତ୍ରବାଦ ପ୍ରତିଷ୍ଠା କଲେ । କମ୍ୟୁନିଷ୍ଟମାନେ ଏମାନଙ୍କୁ ଘନିଷ୍ଠ ଭାବରେ ସାହାଯ୍ୟ କଲେ । ଏପରିକି ଯେଉଁ ନନ୍ଦିନୀ ଦେବୀ କମ୍ୟୁନିଷ୍ଟ ଦଳରୁ ବହିଷ୍କୃତ ହେଲା ପରେ ନବକୃଷ୍ଣ ଚୌଧୁରୀ ଏବଂ ମାଳତୀ ଦେବୀଙ୍କର ଅନ୍ତରଙ୍ଗ ସହକର୍ମୀ ହୋଇଯାଇଥିଲେ ପ୍ରଥମେ ସେହି ଦୁଇଜଣଙ୍କୁ ନିର୍ଜନ କାରାବାସରେ ରଖିଦେଲେ । ନବ ବାବୁ ସେତେବେଳେ ଯେପରି ଭାବରେ ଅସୁସ୍ଥ ହୋଇପଡ଼ିଲେ ତାପରେ ସେ ଆଉ ସଂପୂର୍ଣ୍ଣ ଆରୋଗ୍ୟ ହେଲେ ନାହିଁ । ପ୍ରାୟ ଦୁଇବର୍ଷର ଜରୁରୀକାଳୀନ ଅବସ୍ଥାରେ ଯଦି କମ୍ୟୁନିଷ୍ଟ ଭାବାପନ୍ନ ଲୋକେ ଏପରି ନିଷ୍ଠୁର ହୋଇପାରିଲେ ସେମାନେ ଓ ସେମାନଙ୍କ ପରି ଲୋକଙ୍କଠାରେ ରାଜନୀତି କ୍ଷମତା ବହୁବର୍ଷ ଧରି ରହିଗଲେ କଅଣ ହେବ ସହଜରେ ଅନୁମେୟ । ଠିକ୍ ଏହି ନିଷ୍ଠୁରତା ଏବଂ ସଂପୂର୍ଣ୍ଣ ଏକଛତ୍ରବାଦୀ ମନୋଭାବ ଯୋଗୁ ସୋଭିଏତ୍ ରୁଷ ୭୩ ବର୍ଷର ରାଜତ୍ୱ ପରେ ମଧ୍ୟ ଗୋଟିଏ ତାସ୍ ଘର ପରି କେତେଟା ଦିନ ଭିତରେ ଭୁଶୁଡ଼ି ପଡ଼ିଲା ।

କମ୍ୟୁନିଷ୍ଟ ଦଳକୁ ମୁଁ ବହୁବର୍ଷ ଯାଏଁ ପ୍ରତିମାସରେ କିଛି କିଛି ଚାନ୍ଦା ଦେଉଥିଲି । ଛତ୍ର ବଜାରର ଗୋଟିଏ ଗରିବ ଫଳ ବିକାଳି ଏହି ଚାନ୍ଦା ମୋଠାରୁ ପ୍ରତିମାସରେ ଆସି ସଂଗ୍ରହ କରେ । ସେତେବେଳେକୁ ନନ୍ଦିନୀ ଶତପଥୀ କଟକରୁ ନିର୍ବାଚନ ଲଢୁଥାଆନ୍ତି । ତାଙ୍କର ପୂର୍ବତନ କମ୍ୟୁନିଷ୍ଟ ବନ୍ଧୁମାନେ ତାଙ୍କ ସପକ୍ଷରେ ଲାଗିପଡ଼ିଲେ ନିର୍ବାଚନ ପ୍ରଚାରରେ । ଏହି ସମୟରେ ଚାନ୍ଦା ସଂଗ୍ରହକାରୀ ଫଳ ବିକାଳିଟି ମୋତେ କହିଲା–

''ଆଜ୍ଞା ଆମ ଦଳର ଲୋକମାନଙ୍କ ହାତରେ ଏହି ନିର୍ବାଚନ ଯୋଗୁ ପ୍ରଚୁର ଟଙ୍କା । ଆପଣଙ୍କର ଏହି ସାମାନ୍ୟ କେତୋଟି ଟଙ୍କା ସେମାନଙ୍କର କି କାମରେ ଆସିବ ?''

ମୁଁ ତା କଥାରେ ଅବାକ୍ ହୋଇଗଲି । ସାମାନ୍ୟ ଗୋଟିଏ ଅଶିକ୍ଷିତ ଗରିବ ଲୋକର ସାଧୁତା ଏବଂ ତା'ର ଅନୁଭୂତି ମୋତେ ଗଭୀର ଭାବରେ ସ୍ପର୍ଶ କଲା । ମୁଁ ତାକୁ ଚାନ୍ଦା ନ ଦେଇ ଦଳର ସେକ୍ରେଟେରୀଙ୍କୁ ମୋତେ ଫୋନ୍ କରିବେ ବୋଲି କହିଲି । କିନ୍ତୁ ତାପରେ ଆଉ କୌଣସି ଫୋନ୍ ଆସିଲା ନାହିଁ । ସେହିଦିନୁ ମୋ ପାଖକୁ ଚାନ୍ଦା ପାଇଁ କେହି ଆସିନାହାନ୍ତି । ଫଳ ବିକାଳିଟି ବେଳେବେଳେ ମୋତେ ରାସ୍ତାରେ ଦେଖିଲେ କେବଳ ଅର୍ଥପୂର୍ଣ୍ଣ ହସଟିଏ ହସେ ।

ମୁଁ ଲକ୍ଷ୍ୟ କଲି ଯେ ଅଧିକାଂଶ କମ୍ୟୁନିଷ୍ଟମାନେ ମାର୍କ୍ସ ବହି ପଢ଼ିନଥାନ୍ତି । କେତୋଟି ଚଟି ବହି ପଢ଼ି ଏପରି କେତୋଟି ନିରର୍ଥକ ଶବ୍ଦ ବ୍ୟବହାର କରନ୍ତି ଯେ ସାଙ୍ଗେ ସାଙ୍ଗେ ଗୋଟିଏ ଜଟିଳ ପରିସ୍ଥିତିକୁ ମଧ୍ୟ କେତୋଟି ଶବ୍ଦରେ ବର୍ଣ୍ଣନା କରି ଉଡ଼ାଇ ଦିଅନ୍ତି । ବୁର୍ଜୁୟା ସଂଶୋଧନବାଦୀ, ସାଂପ୍ରଦାୟିକ ପ୍ରଭୃତି କେତୋଟି ଶବ୍ଦହିଁ ବାରମ୍ବାର କହନ୍ତି । ବହୁଦିନ ପର୍ଯ୍ୟନ୍ତ ବୁର୍ଜୁୟା ଗଣତନ୍ତ୍ରକୁ ସେମାନେ ଉପହାସ କରି ଉଡ଼ାଇ ଦେଉଥିଲେ । କିନ୍ତୁ ସୋଭିଏତ୍ ରୁଷର ପତନ ପରେ ଏହା ଆଉ ଶୁଣାଯାଉନାହିଁ । ପୃଥିବୀରେ ସର୍ବହରା

ଏକଛତ୍ରବାଦ ଆଉ ଆଗପରି ନଥିଲା ବେଳେ ଏହା ସେମାନଙ୍କର ପରିଭାଷାରୁ କ୍ରମେ ଉଭେଇ ଯାଉଛି । ଭାରତରେ କେରଳ ଓ ପଶ୍ଚିମବଙ୍ଗ ଏହି ଦୁଇଟି ରାଜ୍ୟରେ ବହୁବର୍ଷଧରି କମ୍ୟୁନିଷ୍ଟଙ୍କର ଶାସନ ଚାଲିଛି । ଏମାନେ ଯେ ଅନ୍ୟ ରାଜ୍ୟ ତୁଳନାରେ ବେଶି ଉନ୍ନତ ତା ନୁହେଁ । ବରଂ ଏକଦା ଶିଳ୍ପପ୍ରଧାନ ପଶ୍ଚିମବଙ୍ଗ ଏହି କ୍ଷେତ୍ରରେ ତଳକୁ ଚାଲିଯାଇଛି । କଲିକତାରେ ବସ୍ତି ଅଂଚଳ ସେହିପରି ଅନୁନ୍ନତ ଅବସ୍ଥାରେ ରହିଛି । ଅନ୍ୟ ରାଜ୍ୟର ଶାସନଠାରୁ ଏଠାକାର ଶାସନ ଯେ ଅତ୍ୟନ୍ତ ଉନ୍ନତ ଏବଂ ଫଳପ୍ରଦ, ତାହା ମଧ୍ୟ କୁହାଯାଇପାରିବ ନାହିଁ ।

ଭାରତର ବର୍ତ୍ତମାନର ରାଜନୀତି କ୍ଷେତ୍ରରେ ଗଣତାନ୍ତ୍ରିକ ପଦ୍ଧତି ଛଡ଼ା ଅନ୍ୟ କୌଣସି ଶାସନ ପ୍ରକ୍ରିୟା ଭଲ ଭାବରେ କାମ କରିପାରିବ ତାହା ମଧ୍ୟ ନୁହେଁ । ପାକିସ୍ତାନର ବାରମ୍ବାର ସାମରିକ ଏକଛତ୍ରବାଦ ଏହାର ପ୍ରମାଣ । ଏପରି ପରିସ୍ଥିତିରେ ମୁଁ ଗଣତାନ୍ତ୍ରିକ ଆଭିମୁଖ୍ୟରେ ବିଶ୍ୱାସୀ, କିନ୍ତୁ ଗତ ଅର୍ଦ୍ଧଶତାବ୍ଦୀର ସ୍ୱାଧୀନତା ପରେ ଗ୍ରାମାଞ୍ଚଳ ଅବସ୍ଥା ଅଧିକରୁ ଅଧିକ ଖରାପ ହୋଇଚାଲିଛି—ଗରିବ ଗରିବ ହୋଇ ରହିଯାଇଛି—ଧନୀ ଅଧିକରୁ ଅଧିକ ଧନୀ ହୋଇଛି । ଏହା ଯେକୌଣସି ଦଳର ଶାସନାଧୀନ ରାଜ୍ୟରେ ମଧ୍ୟ ସମାନ ଭାବରେ କାମ କରୁଛି । କିନ୍ତୁ ଗଣତାନ୍ତ୍ରିକ ପ୍ରକ୍ରିୟାକୁ ଦୃଢ଼ୀଭୂତ କରିବା ପାଇଁ ଆଉ ଗୋଟିଏ ବିରାଟ ଜନ ଆନ୍ଦୋଳନରେ ମୁଁ ବର୍ତ୍ତମାନ ବିଶ୍ୱାସ କରେ । ଖବର କାଗଜରେ ଲେଖାଲେଖି ମାଧ୍ୟମରେ ପଞ୍ଚାୟତରାଜ ପ୍ରକ୍ରିୟାକୁ ବଳିଷ୍ଠ ଭାବରେ ପ୍ରତିଷ୍ଠା କରିବା ପାଇଁ ମୁଁ ଅନବରତ ଲେଖି ଚାଲିଛି ।

ଗଣତାନ୍ତ୍ରିକ ପଦ୍ଧତିରେ ବିଶ୍ୱାସ ଯୋଗୁ ଗୋଟିଏ ଦଳକୁ କେବଳ ସାଂପ୍ରଦାୟିକ କହି ଘୃଣା କରିବା ଅତ୍ୟନ୍ତ ଅନୁଚିତ ବୋଲି ମୁଁ ଭାବେ, ବରଂ ବିଜେପିକୁ କଂଗ୍ରେସ ଅପେକ୍ଷା ବେଶି ଗଣତାନ୍ତ୍ରିକ ବୋଲି ମୋର ବିଶ୍ୱାସ । କଂଗ୍ରେସ କେବଳ ପାରିବାରିକ ତନ୍ତ୍ରରେ ବିଶ୍ୱାସ କରେ । ଶେଷରେ ଗାନ୍ଧୀ ନେହେରୁଙ୍କ ଦଳକୁ ଜଣେ ଅର୍ବାଚୀନ, ଭାରତ ବିଷୟରେ ସଂପୂର୍ଣ୍ଣ ଅଜ୍ଞ, ପ୍ରାଇମେରୀ ଛାତ୍ରୀ ପରି ରୋମାନ ଅକ୍ଷରରେ ଲେଖା ହିନ୍ଦିକୁ ପଢୁଥିବା ସୋନିଆ ଗାନ୍ଧୀ ଶେଷରେ ଭାରତର ପ୍ରଧାନମନ୍ତ୍ରୀ ହେବା ପାଇଁ ଯେପରି ଭାବରେ ବଦ୍ଧପରିକର ସେପରି ଦଳକୁ ସଂପୂର୍ଣ୍ଣ ରୂପେ ପରିହାର କରିବା ଉଚିତ ବୋଲି ମୁଁ ଭାବେ । କେବଳ ବିଜେପିକୁ ସାଂପ୍ରଦାୟିକ କହି ବାମପନ୍ଥୀ ଦଳମାନେ ଶେଷରେ ସୋନିଆ ଗାନ୍ଧୀଙ୍କ କଂଗ୍ରେସକୁ ସମର୍ଥନ କରିବାଠୁ ବଳି ଲଜ୍ଜାକର ଘଟଣା ଆଉ କଅଣ ହୋଇପାରେ ବୋଲି ମୋର ବଳିଷ୍ଠ ମତ । ଭାଜପା ସରକାର ଯଦି ନିର୍ବାଚନରେ ଜିଣି ସରକାର ଗଢ଼ିପାରେ ତାକୁ ପାଞ୍ଚବର୍ଷ ପରେ ପାର୍ଲିଆମେଣ୍ଟରେ ହରାଇଦେବା ହେଉଛି ଗଣତାନ୍ତ୍ରିକ ପରମ୍ପରା ।

ଭାରତବର୍ଷ ପୃଥିବୀର ଗୋଟିଏ ଚରମ ଦୁର୍ନୀତିର ଦେଶ ବୋଲି ବିଶ୍ୱବିଖ୍ୟାତ । ଏପରି ପରିସ୍ଥିତିରେ ପ୍ରତ୍ୟେକ ରାଜନୀତି ଦଳର ଦୁର୍ନୀତିଗ୍ରସ୍ତ ଲୋକଙ୍କ ପ୍ରତି ଆଇନଗତ କଠୋର କାର୍ଯ୍ୟାନୁଷ୍ଠାନ ଅତି ଶୀଘ୍ର ହେବା ବାଞ୍ଛନୀୟ । ଅଥଚ ଏପରି ପରିସ୍ଥିତିରେ ବାମପନ୍ଥୀଦଳମାନେ କଂଗ୍ରେସର ସୋନିଆ ଗାନ୍ଧୀ, ଜୟଲଳିତା ଏବଂ ଲାଲୁ ପ୍ରସାଦ ଯାଦବ ପରି ଦୁର୍ନୀତିର ଗନ୍ତାଘରମାନଙ୍କୁ ସମର୍ଥନ ଜଣାଇବା ଅତ୍ୟନ୍ତ ଗର୍ହିତ କାର୍ଯ୍ୟ ବୋଲି ମୁଁ ମନେକରେ । ଏ ସମସ୍ତ ରାଜନୈତିକ କାର୍ଯ୍ୟ କେବଳ ସାଂପ୍ରଦାୟିକତା ବିରୁଦ୍ଧରେ ଅଭିଯାନ

ବୋଲି କୁହାଯାଉଛି । ଅଥଚ ସବୁ ରାଜନୈତିକ ଦଳ ସାଂପ୍ରଦାୟିକ ଏବଂ ଜାତିଆଣ ମଞ୍ଚ ଉପରେ ଭୋଟ ପ୍ରଚାର କରିଆସୁଛି ।

ବର୍ତ୍ତମାନ ସୁଦ୍ଧା ମାର୍କ୍ସୀୟ ମନୋବୃତ୍ତି ଏବଂ ଆର୍ନ୍ତଜାତିକ ଶାନ୍ତି ଓ ଜାତି ଧର୍ମ ବର୍ଣ୍ଣ ଦେଶ ନିର୍ବିଶେଷରେ ଶିକ୍ଷା ସାଂସ୍କୃତିକ ଓ ଅର୍ଥନୈତିକ ସାମ୍ୟ ଉପରେ ମୋର ବିଶ୍ୱାସ ଅତୁଟ ରହିଛି ଏବଂ କମ୍ୟୁନିଷ୍ଟ ଶାସନ ପ୍ରତି ମୋର ମୋହ ତୁଟି ଯାଇଛି । ପୃଥିବୀର ଗଣତାନ୍ତ୍ରିକ ସଂସ୍ଥା ହିଁ ଉତ୍କୃଷ୍ଟ ରାଜନୈତିକ ପଦ୍ଧତି । କିନ୍ତୁ ଏହା କେବଳ ଭୋଟ ରାଜନୀତିରେ ସୀମିତ ନରହି ପ୍ରତ୍ୟେକ କାର୍ଯ୍ୟରେ ସାଧାରଣ ନାଗରିକଙ୍କୁ ମଧ୍ୟ ସାମିଲ୍ କରିବା ଉଚିତ । ବର୍ତ୍ତମାନର ଭାରତୀୟ ଗଣତନ୍ତ୍ର, ମୁଷ୍ଟିମେୟ କ୍ଷମତାସୀନ ଗୋଷ୍ଠୀ ହାତରେ ହିଁ ରହିଯାଇଛି । ଏଥିପାଇଁ ଅର୍ଦ୍ଧଶତାବ୍ଦୀ ଧରି କ୍ଷମତାସୀନ କଂଗ୍ରେସ ଦଳ ହିଁ ଦାୟୀ । ତେଣୁ କିଛିବର୍ଷ ପାଇଁ କଂଗ୍ରେସ କ୍ଷମତାରୁ ଅବସର ନେବା ବାଞ୍ଛନୀୟ । ବହୁଦିନ କ୍ଷମତାରେ ରହି ଯିବାରୁ କଂଗ୍ରେସରେ କ୍ଷୁଦ୍ର ପାରିବାରିକ ଗୋଷ୍ଠୀ ବଳବତ୍ତର ହୋଇଯାଇଛି । କିଛିଦିନ କ୍ଷମତା ବାହାରେ ରହିଲେ କେତେକ ନୂଆ ନେତା ନିଜ ନିଜର ଶକ୍ତି ବଳରେ ଲୋକଙ୍କର ପ୍ରିୟପାତ୍ର ହେଲା ପରେ ହିଁ ସେମାନେ ଶାସନକୁ ଆସିବା ଉଚିତ । ଏହି ପରିପ୍ରେକ୍ଷୀରେ କୌଣସି ଦଳ ମୋ ମତରେ ଅସ୍ପୃଶ୍ୟ ନୁହେଁ । ଭାରତ ପରି ବିରାଟ ଭୂଖଣ୍ଡରେ ବହୁ ଧର୍ମ ଜାତି ଭାବ ଓ ସାଂସ୍କୃତିକ ପରିବେଶ ଭିତରେ ସଂକୀର୍ଣ୍ଣ ସାଂପ୍ରଦାୟିକତାର ପ୍ରସାର ସଫଳ ହେବ ନାହିଁ ।

ପରିଶେଷରେ ମୁଁ ଚାହେଁ ଦୁର୍ନୀତିମୁକ୍ତ ରାଜନୈତିକ ସଂସ୍ଥା । ସମସ୍ତ ଶାସନ କାର୍ଯ୍ୟରେ ସ୍ୱଚ୍ଛତା, ପଂଚାୟତି ରାଜ ଏବଂ ଗ୍ରାମ ସଭାର ଅଧିକାର ସାବ୍ୟସ୍ତ– ଗାନ୍ଧୀଜୀଙ୍କର ଗ୍ରାମସ୍ୱରାଜ ସ୍ୱପ୍ନର ବାସ୍ତବାୟନ-ଗ୍ରାମାଞ୍ଚଳର ସାମଗ୍ରିକ ଉନ୍ନତି ସହିତ ଜନକଲ୍ୟାଣ ଏବଂ ଜନ ସହଯୋଗୀ ଗଣତନ୍ତ୍ରରେ ସମସ୍ତଙ୍କର ଶିକ୍ଷା ଓ ସ୍ୱାସ୍ଥ୍ୟରେ ପୂର୍ଣ୍ଣ ଅଧିକାର ରହିବା ଉଚିତ । ଜାତିଗତ ସମସ୍ତ ସଂରକ୍ଷଣକୁ ଉଠାଇଦେଇ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ସମସ୍ତଙ୍କର ସର୍ବାଙ୍ଗୀଣ ଉନ୍ନତି ପାଇଁ ପ୍ରତିବର୍ଷ ବଜେଟରେ ଆଶାନୁରୂପ ଅନୁଦାନ ରହିବା ଉଚିତ । ତାହାହେଲେ ଯାଇ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ଗଣତାନ୍ତ୍ରିକ ପରମ୍ପରା ଦେଶରେ ଦୃଢ଼ୀଭୂତ ହୋଇପାରିବ । ଗାନ୍ଧୀଜୀଙ୍କର ସ୍ୱପ୍ନ ସଫଳ ହେବ । ଏହା ହେଉଛି ମୋର ରାଜନୈତିକ ଲକ୍ଷ୍ୟ ଓ ଆଦର୍ଶ ।

■ ■ ■

୫

# ଶତାବ୍ଦୀର ଶକ୍ତିଶାଳୀ ଘୂର୍ଣ୍ଣିବାତ୍ୟା ମୋ ସ୍ୱପ୍ନର ବଗିଚା

୧୯୯୯ ଅକ୍ଟୋବର ମାସ ଅଣତିରିଶି-ତିରିଶି ତାରିଖରେ ଏହି ଶତାବ୍ଦୀର ସବୁଠୁ ବେଶୀ ଶକ୍ତିଶାଳୀ ପ୍ରଳୟଙ୍କର ଘୂର୍ଣ୍ଣିବାତ୍ୟା ଓ ପ୍ରବଳ ବର୍ଷା ଛତିଶ ଘଣ୍ଟା ଧରି ଓଡ଼ିଶାର ଉପକୂଳ ଅଂଚଳରେ ଲାଗି ରହିଲା । ମୃତ୍ୟୁ ଓ ବୁଭୁକ୍ଷାର କରାଳ ଚିତ୍ର ଓଡ଼ିଶାରେ ଦେଖା ଦେଲା । ଏହି ଘୂର୍ଣ୍ଣିବାତ୍ୟା ବିଶ୍ୱରେ ଏ ଶତାବ୍ଦୀର ସର୍ବବୃହତ୍ ବୋଲି ବିଶ୍ୱବ୍ୟାପୀ ଚହଳ ପଡ଼ିଗଲା ।

ଓଡ଼ିଶାକୁ ତ ଭାରତବର୍ଷର ବହୁ ଯାଗାରେ ଲୋକେ ଜାଣୁନଥିଲେ, କେବଳ ଜଗନ୍ନାଥ ଦେଶ ବୋଲି କହିଲେ କେତେକ ଚିହ୍ନୁଥିଲେ । ବର୍ତ୍ତମାନ ବିଶ୍ୱବ୍ୟାପୀ ଲୋକେ ଓଡ଼ିଶା ରାଜ୍ୟକୁ ଜାଣିଲେ । ପ୍ରତ୍ୟେକ ଦେଶର ସରକାର ଆର୍ଥିକ ଓ ଅନ୍ୟାନ୍ୟ ସାହାଯ୍ୟ ପାଇଁ ଆଗଭର ହେଲେ; କିନ୍ତୁ ଓଡ଼ିଶାର ଅପାରଗ ସରକାର ଯେ କି ସାମାନ୍ୟ ଆଇନକାନୁନ୍ କଥା ବୁଝିପାରନ୍ତି ନାହିଁ– ଅଫିସର ମନ୍ତ୍ରୀମାନେ ଖାଲି ଶୀତତାପ ନିୟନ୍ତ୍ରିତ କୋଠରୀରେ ବସି ବାର୍ତ୍ତାମାନ ପଠାନ୍ତି, ସେମାନେ ଓଡ଼ିଶାରେ ଏପରି ବିପର୍ଯ୍ୟୟକୁ ଆୟତ୍ତ କରିବା ସଂଭବ ନୁହେଁ । ଯଦି କେନ୍ଦ୍ର ସରକାର ଏହାର ସମସ୍ତ ଦାୟିତ୍ୱ ହାତକୁ ନେଇ କାମ କରେ, ତାହାହେଲେ ଆତଙ୍କିତ ଓ ନିରାଶ୍ରୟ ଲୋକେ କିଛିଟା ସାହାଯ୍ୟ ପାଇବେ । ସମଗ୍ର ଉପକୂଳ ଅଂଚଳ ଶ୍ମଶାନରେ ପରିଣତ ହୋଇଯାଇଛି । ଲକ୍ଷ ଲକ୍ଷ ବିପନ୍ନ ଓ ବୁଭୁକ୍ଷୁମାନଙ୍କର କରୁଣ ଆର୍ତ୍ତନାଦ ଏହି ଶ୍ମଶାନର ଭୟାବହତାକୁ ଆହୁରି ମର୍ମାନ୍ତିକ କରି ତୋଳିଛି । ବଂଚିଥିବା ଲୋକଙ୍କର ହୃଦୟର କୋହ, ଆଖିର ଲୁହ ଏବଂ ଆଗାମୀ କାଲିର ଦୁଃସ୍ୱପ୍ନ ନେଇ ଆଗେଇ ଚାଲିଥିବାର ଦୃଶ୍ୟ ଇତିହାସରେ ଥିବା ଓଡ଼ିଶାର ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷର ଚିତ୍ର ମନେ ପକାଉ ଦେଉଛି । ମୋର ସୁଦୀର୍ଘ ଜୀବନ କାଳରେ ଏ ପ୍ରକାର ବିପର୍ଯ୍ୟୟ ଓଡ଼ିଶାରେ ଦେଖା ଦେଇନଥିଲା ।

ଦିନରାତି ଛତିଶ ଘଣ୍ଟା ଧରି ପ୍ରଚଣ୍ଡ ବାତ୍ୟାର ଭୟଙ୍କର ଶକ୍ତିରେ ଉପରେ ଥିବା ଆମର ଝରକା କବାଟରେ ସମସ୍ତ ଛିଟିକିଣି ଭାଙ୍ଗି ଯାଇଛି- ଦଉଡ଼ି ବାନ୍ଧି ସେମାନଙ୍କୁ ଅଟକା ରଖାହୋଇଛି- ତଳ ଘରେ ପାଞ୍ଚଫୁଟ ପାଣିର ସୁଅ ବୋହୁଛି-ମଟର ଗାଡ଼ିଟି ପାଣି

ତଳେ, ଉପରେ ମଧ୍ୟ ଝରକା ଫାଙ୍କ ବାଟେ ଅଜସ୍ର ପାଣି । ଆଖପାଖର ଅନେକ ଲୋକ ଆମ ଦୋତାଲାରେ ଆସି ଆଶ୍ରୟ ନେଇଛନ୍ତି- ଖାଇବା କଥା ନ କହିବା ଭଲ । ପିଇବା ପାଣି କିଛି ପାଖରେ ଅଛି- ତା ବି ଦୁଇଦିନ ପରେ ଶେଷ । ପାଣିରେ ପଶି ବହୁ ଦୂରରେ ଥିବା ଟିଉବୱେଲରୁ କିଛି ପାଣିର ବନ୍ଦୋବସ୍ତ ହେଉଛି । ଦୁଇଦିନ ପରେ ଝଡ଼ ଥମିଲା- ବର୍ଷା କମିଲା; କିନ୍ତୁ ପାଣିର ସୁଅ ପାଞ୍ଚ-ଛଅ ଦିନଯାଏ ଛିଡିଲା ନାହିଁ । ବର୍ଷା ଛାଡ଼ିଥିଲେ ମଧ୍ୟ ମଇଳା ବାଦଲଭରା ଆକାଶରେ ନକ୍ଷତ୍ରର କୌଣସି ଆଭାସ ନଥିଲା । ରାତିରେ ଚତୁର୍ଦ୍ଦିଗ ଘନ ଅନ୍ଧକାର, ଫୋନ୍ ମଧ୍ୟ ବହୁଦିନୁ ଶବ୍ଦହୀନ । ମହାପ୍ରଳୟର ନିଃଶବ୍ଦ ନୀରବତା ଦିନ ରାତି ବ୍ୟାପି ରହିଛି । ଏପରି ସମୟରେ ମୋ ଜୀବନୀର ଅବଶିଷ୍ଟାଂଶ ପରିଚ୍ଛଦ ମୁଁ ଲେଖି ଚାଲିଛି । କେବଳ ହା-ହୁତାଶଭରା ଆତ୍ମଜ୍ୱଳନର ମର୍ମାନ୍ତିକ ବିରକ୍ତି ଅପେକ୍ଷା ଧୀରସ୍ଥିର ଭାବରେ ବସି ଚିନ୍ତା କରିବା, ଲେଖିବା କଅଣ ଉଚିତ ନୁହେଁ ?

ଏହି ପରିପ୍ରେକ୍ଷୀରେ ମୋର ମନେ ପଡ଼ିଗଲା ଗୋଟିଏ କିମ୍ବଦନ୍ତୀ- ରୋମ ସାମ୍ରାଜ୍ୟର ସମୃଦ୍ଧିଶାଳୀ ରାଜଧାନୀ ରୋମ ସହର ହୁହୁ ହୋଇ ଜଳୁଥିବା ବେଳେ ଏହାର ତତ୍କାଳୀନ ସମ୍ରାଟ ନିରୋ କୁଆଡ଼େ ବେହେଲା ବଜାଉଥିଲେ । ଚରମ ନିଷ୍ଠୁରତା ଏବଂ ଚିରବିଷଣ୍ଣ ବ୍ୟକ୍ତିତ୍ୱର ଏହା ଉଦାହରଣ ବୋଲି କୁହାଯାଏ । କିନ୍ତୁ ମୋ ମତରେ, ନିରୋ ଭଗବତ୍ ଗୀତାରେ ବର୍ଣ୍ଣିତ ସ୍ଥିତଧୀ ବ୍ୟକ୍ତିତ୍ୱର ଲୋକ । ଦୁଃଖସୁଖ, ଭଲମନ୍ଦ ପ୍ରତି ନିର୍ବିକାର ବ୍ୟକ୍ତି ହିଁ ସର୍ବଶ୍ରେଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ ବୋଲି କୁହାଯାଏ । ଧୃତରାଷ୍ଟ୍ର ତ ଏହିପରି ଭାବରେ ବସି ବସି ତାଙ୍କର ଶତପୁତ୍ରର ଓ ବନ୍ଧୁ ବାନ୍ଧବଙ୍କର ନିଧନ ବିଷୟରେ ଶୁଣୁଥିଲେ- କୃଷ୍ଣଙ୍କର ସୁଦର୍ଶନ ଚକ୍ର ସମସ୍ତଙ୍କ ମସ୍ତକ ଛେଦନ କରି କରି ଚାଲିଥିଲା ବେଳେ କୃଷ୍ଣ ସହାସ୍ୟ ବଦନରେ ଅର୍ଜ୍ଜୁନଙ୍କୁ ଉପଦେଶ ଦେଉଥିଲେ ଗୀତା ଦର୍ଶନ ବିଷୟରେ । ବିଷ୍ଣୁ ମହାପ୍ରଳୟ ପୟୋଧି ଜଳେ ସହାସ୍ୟ ବଦନରେ ଧ୍ୟାନମଗ୍ନ ଥିଲେ- ଲକ୍ଷ୍ମୀ ତାଙ୍କର ପାଦ ମଂଚାଳୁଥିଲେ । ବର୍ତ୍ତମାନର ପରିସ୍ଥିତିରେ ମୁଁ କେବଳ ବସି ବସି ଲେଖୁଛି । ଆଖିରେ ଦୁର୍ଦ୍ଦିନର ଚିତ୍ର ଦେଖୁଛି- ତଥାପି ମୁଁ ସ୍ଥିତଧୀ ହେବାର ଲକ୍ଷ୍ୟ ନେଇ ବସି ଲେଖୁଛି । ମୁଁ କୌଣସି ଆଖିଦୃଶିଆ ଉଦ୍‌ବିଗ୍ନତା ନ ଦେଖାଇ ଭାଗ୍ୟକୁ ଧିକ୍କାରି ଏପଟ ସେପଟ ହେଉନାହିଁ କି ରାଉରକେଲା ଓ ଭଦ୍ରକରେ ମୋର ଦୁଇ ଝିଅଙ୍କର ଅନିର୍ଦ୍ଦିଷ୍ଟ ଅବସ୍ଥା ନେଇ ଚିନ୍ତା ସମସ୍ତଙ୍କ ଆଗରେ ବାରମ୍ବାର ବ୍ୟକ୍ତ କରୁନାହିଁ । ସେଥିପାଇଁ ମୁଁ ସମ୍ରାଟ ନିରୋଙ୍କ ପରି ଅନ୍ୟମାନଙ୍କୁ ଜଣେ ଉଦାସୀନ ଓ ନିଷ୍ଠୁର ପ୍ରକୃତିର ଲୋକ ବୋଲି ଦେଖା ଯାଉଥିବି ନିଶ୍ଚୟ ।

ଖବରକାଗଜରେ ବାହାରୁଛି ଯେ ଜଗନ୍ନାଥଙ୍କ ଦୟାରୁ ପୁରୀ ସହରଟି ରକ୍ଷା ପାଇଗଲା; କିନ୍ତୁ ଓଡ଼ିଶାର ନାଥ ଜଗନ୍ନାଥ ଅନ୍ୟାନ୍ୟ ଅଂଚଳ ପ୍ରତି ଏପରି ନିର୍ଦ୍ଦୟ କାହିଁକି ହେଲେ ଏ ପ୍ରକାର ପ୍ରଶ୍ନ ପଚାରିବା ଆମ ଲୋକଙ୍କର ସାହସ ନାହିଁ । ଜଗନ୍ନାଥଙ୍କର ନାମ ସଂକୀର୍ତ୍ତନ କରି କରି ଓଡ଼ିଶା ଭାରତରେ ଗୋଟିଏ ଦରିଦ୍ରତମ ରାଜ୍ୟରେ ପରିଣତ ହୋଇ ରହିଯାଇଛି ।

ଏ ତ ଗଲା ରାଜ୍ୟର ବିପର୍ଯ୍ୟୟ କଥା । ମୋ ବ୍ୟକ୍ତିଗତ ଜୀବନର ସ୍ୱପ୍ନଭଂଗଗତ ମର୍ମାନ୍ତିକ ଯନ୍ତ୍ରଣାର ସୀମା ନାହିଁ । ମୋର ସ୍ୱପ୍ନର ଆମ୍ବ, ପଣସ, ନଡ଼ିଆ ପ୍ରଭୃତି ଗଛ ଓ ନାନା ପ୍ରକାରର ଲତା, ଫୁଲଗଛ ସବୁ ମୋ ଆଖି ଆଗରେ ପ୍ରତି ମିନିଟ୍‌ରେ ଧରାଶାୟୀ ହେବାକୁ ଲାଗିଲେ । ଛତିଶି ଘଣ୍ଟା ଧରି ମୁଁ ଦେଖୁଥାଏ ମୋ ବଗିଚାର ସବୁଜିମାର ଧ୍ୱଂସ

ସାଧନ । ଯେଉଁ ଗଛସବୁ ବହୁ ବର୍ଷ ହେଲା ଯୋଜନାନୁଯାୟୀ ବଢ଼ି ବଢ଼ି ଆସୁଥିଲା ସେହି ବନାନୀର ନିବିଡ଼ ସବୁଜିମା ମୋ ଆଖି ଆଗରେ ଲୁଚି ଲୁଚି ଗଲା । ବାତ୍ୟା ପରେ ମୁଁ ଦେଖୁଛି ଏହି ଗାଢ଼ ସବୁଜିମାର ମର୍ମାନ୍ତିକ ଶ୍ମଶାନ— ମୋର ସ୍ୱପ୍ନର ନନ୍ଦନ କାନନର ହୃଦୟ ବିଦାରକ ଧ୍ୱଂସଲୀଳାର ଦୃଶ୍ୟ । ଅସଂଖ୍ୟ ଡାଳପତ୍ରର ଗୁଣ୍ଡୀଭୂତ ଜଙ୍ଗଲ - ତା ଭିତରୁ ଶୁଆ-ଶାରୀ, କୁମ୍ଭାଟୁଆ ପ୍ରଭୃତି ଅସଂଖ୍ୟ ପକ୍ଷୀମାନଙ୍କର ବାସହୀନ ସାଥୀହୀନ କ୍ରନ୍ଦନର କିଚିରି ମିଚିରି ତକରାଳ ମୁଁ ବାରଣ୍ଡାରେ ବସି ଶୁଣିପାରୁଛି । ଯେଉଁମାନେ ସକାଳେ ମୋତେ ଡାକି ଡାକି ଉଠାନ୍ତି-ଦିନଯାକ ସେମାନଙ୍କର କଳରବରେ ଗଛସବୁ ପ୍ରତିଧ୍ୱନିତ ହୋଇ ଚାଲିଥାଏ— ସେମାନଙ୍କର ଶେଷ ବିଦାୟ ବାର୍ତ୍ତା ମୁଁ ବର୍ତ୍ତମାନ ଶୁଣିପାରୁଛି । ଏଠାରେ ନାନା ରଙ୍ଗର ଶହ ଶହ ପ୍ରଜାପତି ଆଉ ଉଡ଼ିବେ ନାହିଁ । କ୍ରମେ ଯେ ଏହା ନୀରବ ନିଶୂନ ଶ୍ମଶାନରେ ପରିଣତ ହୋଇଯାଉଛି ତାହାର ଦୃଶ୍ୟ ମୁଁ ଦେଖୁଛି । କେବଳ ଗୋଟିଏ ମାତ୍ର ଆଶ୍ୱସନାର ଲକ୍ଷଣ ଯେ ଦୁଇଟି ନେଉଳ ଛୁଆ ଆମ ଘରେ ଆସି ଆଶ୍ରୟ ନେଇଛନ୍ତି । ସେମାନେ ପାଣି ଶୁଖିଲେ ପୁଣି ବଗିଚାରେ ଯାଇ ଖେଳିବେ ।

ଗଛ ଉପରେ ଗଛ-ତା ତଳେ, ତା ଉପରେ ମାଳତୀ, ମଧୁ ମାଳତୀ ବିତାନର ସମାଧି—ଜାଇଜୁଇ ଓ ବିଭିନ୍ନ ରଙ୍ଗର ରଙ୍ଗଣୀ ଫୁଲ ବୁଦାମାନଙ୍କ ଉପରେ ଡାଳପତ୍ରର କୁଢ଼ । ଏ ପ୍ରକାରର ବିଦ୍ଦଳନର ଶୋକାକୁଳ ବିଦାୟୀ ବାର୍ତ୍ତା ମୋର ଶିରାପ୍ରଶିରାରେ ଅହରହ ସ୍ପନ୍ଦିତ ହୋଇ ଚାଲିଛି । ଏତେ ଦିନର ସ୍ୱପ୍ନର ସବୁଜିମା ହଠାତ୍ ମୋ ଆଖି ଆଗରୁ ଅଦୃଶ୍ୟ ହୋଇଚାଲିଛି । ଏହି ଘନ ସବୁଜିମାର ପରିବେଶ ଭିତରେ ଆମେମାନେ ବାରଣ୍ଡାରେ ବସି ଜୀବନକୁ ଉପଭୋଗ କରି ଚାଲିଥିଲୁ । ଏହି ବାରଣ୍ଡାଟି ଥିଲା ଆମର ଭାବ ବିନିମୟର ରମଣୀୟ ସ୍ଥାନ । ବର୍ତ୍ତମାନ ପାଖ ଆଖ ଘର ଲୋକଙ୍କର କୌତୂହଳ ଚାହାଣିରେ ତା'ର ବ୍ୟକ୍ତିତ୍ୱ ହରାଇ ବସିଛି । ଚତୁର୍ଦ୍ଦିଗରେ ଯେତେ ଘର ରହିଛି ସେସବୁକୁ ଗଛମାନେ ଘୋଡ଼ାଇ ରଖିଥିଲେ, ବର୍ତ୍ତମାନ ସବୁ ଶୂନ୍‌ଶାନ୍, ସବୁ ଘରର ଲୋକଙ୍କ ଆଗରେ ଆମ ବାରଣ୍ଡା ଗୋଟିଏ ସର୍ବସାଧାରଣ ରାଜରାସ୍ତାରେ ପରିଣତ ହୋଇଯାଇଛି ।

ଏହି ଘନ ଜଙ୍ଗଲର ଶ୍ମଶାନ ପାଣିରେ ଭାସମାନ ଅବସ୍ଥାରେ ରହିଛି । ତଳ ଘରେ ଛାତିଏ ପାଣି-ମୋ ପୋର୍ଟିକରେ ବେକେ ପାଣି- ମୋର ଗାଡ଼ିଟି ସଂପୂର୍ଣ୍ଣ ରୂପେ ବୁଡ଼ିଯାଇଛି । ଏପରି ଦୁର୍ଦ୍ଦିନରେ ମୋର ସ୍ତ୍ରୀ ଭାଙ୍ଗି ପଡ଼ିଛନ୍ତି । କାରଣ ଆଜିଯାଏଁ ଏହି ଫଳଫୁଲ ସୁଶୋଭିତ ତପୋବନକୁ ସମସ୍ତଙ୍କୁ ଦେଖାଇ ସେ ଗର୍ବ ଅନୁଭବ କରୁଥିଲେ । ମୋ'ପରି ବଗିଚାରେ ଥିବା ପୋଖରୀର ସୌନ୍ଦର୍ଯ୍ୟରେ ସେ ସର୍ବଦା ବିମୋହିତ ହୁଅନ୍ତି- ପୋଖରୀଟି ବାହାର ପାଣିରେ ବୁଡ଼ି ଯିବାରେ ଆମେ ମର୍ମାହତ । ମୋ ନିଜ ହାତରେ ମୁଁ ସୃଷ୍ଟି କରିଥିବା ନଡ଼ିଆ ଗଛର ବିକଳାଙ୍ଗ ରୂପ ମୋତେ ବ୍ୟଥିତ କରୁଛି ।

ମୋ ଘରର ଝରକା ବାଟେ ଗଛଲତାଙ୍କର ଶ୍ମଶାନକୁ ଚାହିଁ ଚାହିଁ ଲେଖୁଛି - ଯେଉଁମାନଙ୍କୁ ଦିନରାତି ଦେଖିବାରେ ଆନନ୍ଦ ମିଳୁଥିଲା - ରାତିରେ ଶୋଇବାକୁ ଗଲାବେଳେ- ନିଦ ଭାଙ୍ଗିଗଲେ ସକାଳୁ ଉଠିଲେ ଅନବରତ ମୋର ଆଖି ସେମାନଙ୍କ ଆଡ଼କୁ ଥିଲା

ବର୍ତ୍ତମାନ କେତୋଟି ମାତ୍ର ନଡ଼ିଆ ଗଛର ଯତ୍ ସାମାନ୍ୟ କେତୋଟି କେରି କେରି ବାହୁଙ୍ଗା ଦେଖାଯାଉଛି - ଶବବାହକର ନୁଖୁରା ବାଳ କେରି ପରି କରୁଣ ଓ ଯନ୍ତ୍ରଣାଦାୟକ । ଯୌବନୋଦ୍ଦୀପ୍ତ ସୁନ୍ଦରୀ ଯୁବତୀ ପରି ବଢ଼ି ଉଠୁଥିବା ଚଂପା ଗଛଟିର ଫୁଲ କଢ଼ କୋମଳ ଡାଳ ପତ୍ରଗୁଡ଼ିକ ବାତ୍ୟାରେ ଉଡ଼ିଯାଇଛି । ଠୁଂକା ଗଛଟି ଗୋଟିଏ ସଦ୍ୟ ବିଧବା ଯୁବତୀ ପରି କରୁଣ ଓ ଶ୍ରୀହୀନ ଦେଖାଯାଉଛି । ମୋର ଶୋଇବା ଘରର ଝରକା ବାଟେ ଦେଖାଯାଉଥିବା ମାଳତୀ ବିତାନଟିର ଶୁଖି ଶୁଖି ଆସୁଥିବା କୁଣ୍ଡଳାକାର କୋମଳ ତନ୍ତୁଗୁଡ଼ିକ ତଳକୁ ଝୁଲିରହିଛି । ମୋର ଶୋଇବା ଘରେ ବର୍ଷାଦିନେ ଭିଜା ଭିଜା ମାଳତୀ ଫୁଲର ସୁରଭି ସଂଚାର ଚିରଦିନ ପାଇଁ ହଜିଯାଇଛି ।

ନାନା ଧରଣର ଫୁଲ କ୍ରୋଟନ ଏବଂ ଗୁଳ୍ମ ବହୁ ସ୍ଥାନରୁ ସଂଗୃହୀତ ହୋଇ ପ୍ରାୟ ଦୁଇଶହ ଫୁଲକୁଣ୍ଡରେ ସଜା ହୋଇଥିଲା - ସେମାନଙ୍କର ପତ୍ରସବୁ ପଚିଯାଇଛି । ବହୁଦିନର ପରିଶ୍ରମ ଗୋଟିଏ ରାତିରେ ଧୂଳିସାତ ହୋଇଗଲା । କାଳସୀ ଲାଗିଥିବା ଲୋକଟିର ଧୂସର ଲମ୍ବା ଲମ୍ବା ବାଳର ପ୍ରବଳ ଘୂର୍ଣ୍ଣନ ପରେ ସେ ଯେପରି ସଂଜ୍ଞାହୀନ ହୋଇ ପଡ଼ିରହେ, ବର୍ତ୍ତମାନ ମୋ ବଗିଚାର ରୂପ ବାତ୍ୟା ପରେ ନୀରବ ଓ ଚେତନାହୀନ ହୋମୁଁ ଇଯାଇଛି ।

ଏହିପରି ଭାବରେ ଜୀବନର ବହୁ ସ୍ୱପ୍ନ, ବହୁ ପ୍ରସ୍ତୁତି, ଅଦମ୍ୟ ପରିଶ୍ରମ ନିମିଷକେ ଲିଭିଯାଏ— ଶେଷରେ ଜୀବନ ମଧ୍ୟ । ଏହା ହେଉଛି ପ୍ରକୃତିର ଅମାନବୀୟ ଚରିତ୍ର - ଏହିପରି ଭାବରେ କୋଟିକୋଟି ବର୍ଷଧରି ଏ ପୃଥିବୀରେ ଚଳିଆସୁଥିବା ଭୀମକାୟ ଜନ୍ତୁମାନେ ମୁହୂର୍ତ୍ତକେ କୁଆଡ଼େ ଉଭେଇଗଲେ । ଆମ ପରି ମଣିଷମାନଙ୍କର ଏଠାରେ ପ୍ରାୟ ଏକ ଲକ୍ଷ ବର୍ଷର ଅବସ୍ଥାନ । ସେମାନେ ନିଜେ ନିଜେ ପରମାଣୁ ବୋମା ମାଧ୍ୟମରେ ପୃଥିବୀକୁ ଧ୍ୱଂସ କରିଦେଇପାରନ୍ତି, ତା ନହେଲେ ଏହିପରି ପ୍ରାକୃତିକ ବିପର୍ଯ୍ୟୟରେ ମଧ୍ୟ ଜୀବଜଗତ ଶୂନ୍ୟ ହୋଇଯାଇପାରେ । ଏହା କୁଆଡ଼େ କରୁଣାମୟ ସୃଷ୍ଟିକର୍ତ୍ତା ଭଗବାନଙ୍କର ଲୀଳା । ଏପରି ଗୋଟିଏ ଭଗବାନର ଚରିତ୍ର କି ପ୍ରକାର ଦାନବୀୟ ଓ ଅମାନୁଷିକ, ତାହା ସହଜରେ ଉପଲବ୍ଧି କରିହୁଏ । ତଥାପି ମନୁଷ୍ୟ ନିଜର ଗଭୀର ଅସହାୟତା ବେଳେ ଭଗବାନଙ୍କୁ କଳ୍ପନା କରି ତା ଉପରେ ନିର୍ଭର କରି ଆଶ୍ୱସ୍ତ ହୁଏ । ଠିକ୍ ଏହି କାରଣରୁ ହିଁ ମୁଁ ନାସ୍ତିକ । ମୁଁ କେବଳ ନିଜର ଓ ଅନ୍ୟମାନଙ୍କର କର୍ମରେ ବିଶ୍ୱାସ କରେ । ଏଥିଯୋଗୁ ବୁଦ୍ଧଦେବ ହେଉଛନ୍ତି ମୋର ଦାର୍ଶନିକ ଗୁରୁ ।

ଏହିପରି ଭାବରେ ବିଷଣ୍ଣ ହୋଇଯିବା ତ ସ୍ୱାଭାବିକ । ତଥାପି ମୁଁ ଥରେ ଥରେ ବଗିଚାରେ ବୁଲି ଆସୁଛି- ଭାଙ୍ଗି ପଡ଼ିଥିବା କେତେକ ଗଛର ନୂଆପତ୍ର ବାହାରିବାର ସ୍ୱପ୍ନ ଦେଖୁଛି- କେତେକ ଫୁଲ ଗଛର କଂଚାଡାଳ ଦେଖିଲେ ପୁଣି ଥରେ ପତ୍ର କଅଁଳି ଆସିବାର ଲକ୍ଷଣମାନ ଖୋଜି ବୁଲୁଛି । ନିରାଶାର ଶ୍ମଶାନ ଉପରେ ନୂତନ ଜୀବନର ପୁନର୍ବିନ୍ୟାସର ଆଶା ମୋତେ ସାହସ ଦେଉଛି- ନୂଆ କରି ମନରେ ଭରସା ଜାଗୁଛି । ଭଂଗା ଗଛ ଡାଳମାନଙ୍କରେ କିଛି ନିରୋଳା ପକ୍ଷୀ ଦେଖିଲେ ଭାବୁଛି ସେମାନେ ପୁଣି ଫେରିଆସିବେ । ପୁଣି ଥରେ ନୀଡ଼ ବାନ୍ଧିବେ-ସେମାନଙ୍କର କିଚିରି ମିଚିରି ଶବ୍ଦରେ ପୁଣି ଥରେ ଏଠାରେ

ଚହଲ ପଡ଼ିବ । ଏ ପ୍ରକାରର ପ୍ରତିଶ୍ରୁତି ସେମାନେ ଦେଲା ପରି ମୋତେ ଲାଗୁଛି । ମୋ ଘରେ ଆଶ୍ରୟ ନେଇଥିବା ନେଉଳ ଛୁଆ ଦିଓଟି ବଗିଚାରେ ଦଉଡ଼ାଦଉଡ଼ି ଆରମ୍ଭ କରିଦେଲେଣି । ହୁଏତ ନିକଟ ଭବିଷ୍ୟତରେ ଏହି ଶ୍ମଶାନରେ ପୁଣି ଜୀବନ ହସିଉଠିବ । ଏଥିପାଇଁ ହିଁ ମଣିଷ ବଂଚିଛି- ମୃତ୍ୟୁର ମହାସ୍ରୋତ ଆଖେ ପାଂଖେ ନୂତନ ଜୀବନର ସ୍ପନ୍ଦନ... ନୂତନ ଆଶାର ଝଲକ ।

ଏହି ଶ୍ମଶାନର ନୀରବ ବିଷଣ୍ଣତାରୁ ମୋତେ ମୁକ୍ତି ଦେବା ଲାଗି ମୋର ନାତି ବମ୍ବେରୁ ଓ ପୁଅ ବାଙ୍ଗାଲୋରରୁ ଫୋନ୍ କଲେ ଯେ ସେମାନେ ଆସି ମୋତେ ଏଠାରୁ ନେଇଯିବେ । ଦୁଇ ଝିଅଙ୍କର ମଧ୍ୟ ରାଉରକେଲା ଓ ଭଦ୍ରକରୁ ସେହିପରି ଅନୁରୋଧ ଆସିଲା । କିନ୍ତୁ କାଁ ଭାଁ ଗଜୁରି ଆସୁଥିବା କୋମଳପତ୍ରଗୁଡ଼ିକ ମୋତେ ଚାହିଁ ବସିଛନ୍ତି ନୂତନ ସ୍ୱପ୍ନରେ– ନୂତନ ଆଶାରେ । କିଛି କିଛି ପକ୍ଷୀ ମଧ୍ୟ ମୋତେ ବେଳେବେଳେ ଖୋଜି ଯାଉଛନ୍ତି । ଏମାନଙ୍କୁ ଛାଡ଼ି ଚାଲିଯିବା ପରି ନିର୍ଦ୍ଦୟତା ମୋଠାରେ ସଂଭବ ହେଲାନାହିଁ । ବିପଦ ସମୟରେ ଯେଉଁମାନେ ପାଖରେ ରହନ୍ତି ସେହିମାନେ ହିଁ ପ୍ରକୃତରେ ବନ୍ଧୁ । ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଏମାନଙ୍କର ସାଥୀ ହୋଇ ରହିବା ମୋର ଉଚିତ ଭାବି ମୁଁ କେଉଁଆଡ଼େ ଯିବାକୁ ରାଜି ହେଲିନାହିଁ । ସେମାନଙ୍କୁ ଥରେ ଥରେ ଆଉଁସି ଦେଖିବାରେ ମୋଠାରେ ନୂତନ ଆଶାର ଝଲକ ବଳ ଯୋଗାଇଲା । ସେମାନଙ୍କର ଘନ ସବୁଜିମା ଓ ବିଭିନ୍ନ ରଙ୍ଗର ଫୁଲର ସୁରଭି ବର୍ଷ ବର୍ଷ ଧରି ଉପଭୋଗ କରି ଆସୁଥିବା ବେଳେ ସେମାନଙ୍କ ଭିତରୁ କେତେକଙ୍କର ବଂଚି ଉଠିବା ପାଇଁ ଅସୀମ ପ୍ରୟାସ ସହିତ ସାମିଲ ହେବା କଅଣ ଉଚିତ ନୁହେଁ ?

■■■

## ୬

# ଅଭୁଲା ସ୍ମୃତିର ଅଳିଭା ଛାଇ

ମୋ ଜୀବନକାଳ ଭିତରେ କେତେକ ଏପରି ବିଶିଷ୍ଟ ଲୋକଙ୍କ ସହିତ ମୋର ଆଳାପ ପରିଚୟ ହୋଇଛି, ଯେଉଁମାନଙ୍କର କଥା ଆଜି ପର୍ଯ୍ୟନ୍ତ ମୁଁ ଭୁଲିପାରି ନାହିଁ। ଏମାନଙ୍କର ମତାମତ ମୋର ଜୀବନ ଦର୍ଶନକୁ ପରିବର୍ଦ୍ଧିତ ଓ ପରିମାର୍ଜିତ କରିପାରିଛି। ଏପରି କେତେକ ବିଦେଶୀ ଏବଂ ଭାରତୀୟଙ୍କର ସ୍ମୃତିଚାରଣ କରିବା ଉଚିତ ଭାବି ଲେଖୁଛି।

### ଇଂଲଣ୍ଡ

**ପ୍ରଫେସର ଜେ.ବି. ଏସ୍. ହାଲଡ୍ରେନ** ଜଣେ ବିଖ୍ୟାତ ଜୀବବିଜ୍ଞାନୀ। ସେ ଏହି କ୍ଷେତ୍ରରେ ଏପରି ପ୍ରସିଦ୍ଧି ଲାଭ କରିଥିଲେ ଯେ ତାଙ୍କ ନାମ ନୋବେଲ୍ ପୁରସ୍କାର ପାଇଁ ଉଠିଥିଲା। କିନ୍ତୁ ସେ ସମୟରେ ଦ୍ୱିତୀୟ ମହାଯୁଦ୍ଧ ପରେ ପରେ- କୌଣସି କମ୍ୟୁନିଷ୍ଟ ଭାବାପନ୍ନ ଲୋକଙ୍କୁ ଏହି ପୁରସ୍କାର ମିଳୁନଥିଲା। ସେ ଜଣେ ବରିଷ୍ଠ ମାର୍କ୍ସବାଦୀ ବିଜ୍ଞାନୀ ଥିଲେ। କମ୍ୟୁନିଷ୍ଟମାନଙ୍କର ଦୈନିକ କାଗଜ ଡେଲି ୱାର୍କରର ମଧ୍ୟ ସହ ସଂପାଦକ ଥିଲେ। ଏବଂ ପ୍ରତି ହପ୍ତାରେ ଗୋଟିଏ ପ୍ରବନ୍ଧ ନାନା ବିଷୟରେ ସାଧାରଣ ଲୋକଙ୍କ ପାଇଁ ଲେଖୁଥିଲେ। ଏହି ମାଧ୍ୟମରେ ସେ ବିଲାତରେ ଜନପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟି କରିଥିଲେ।

ପ୍ରଫେସର ହାଲଡ୍ରେନଙ୍କର ମାର୍କ୍ସ ତତ୍ତ୍ୱ ବିଷୟରେ ବହୁ ଆଲୋଚନା ସଭାରେ ମୁଁ ଯୋଗ ଦେଉଥିଲି। ଥରେ ଭାରତୀୟ ଛାତ୍ରମାନଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଭାରତରେ ଐତିହ୍ୟ ବିଷୟରେ ଏପରି ଗୋଟିଏ ଗବେଷଣାସିଦ୍ଧ ବକ୍ତୃତା ଦେଇଥିଲେ ଯେ ତାହା ଆଜିଯାଏଁ ମୋର ମନେଅଛି। ଏହି ସଭାରେ ମୁଁ ସଭାପତିତ୍ୱ କରୁଥିଲି। ଏପରି ଭାବରେ ତାଙ୍କ ସହିତ ମୋର ପରିଚୟ ଘନିଷ୍ଠ ହୋଇଉଠିଲା।

ବ୍ରିଟିଶ୍ ସାମ୍ରାଜ୍ୟବାଦୀ ରାଜନୀତି ବିରୁଦ୍ଧରେ ସେ ତୀବ୍ର ଭାବରେ ପ୍ରତିକ୍ରିୟା ପ୍ରକାଶ କରୁଥିଲେ ଏବଂ ଶେଷରେ ସେ ଏହାର ପ୍ରତିବାଦ ସ୍ୱରୂପ ଇଂଲଣ୍ଡ ଛାଡ଼ି ଭାରତରେ ଆସି ବସବାସ କରିଥିଲେ। ପ୍ରଥମେ ସେ ଚଣ୍ଡୀଗଡ଼ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥିଲେ। ସେଠାରେ ସେ ଚାହିଁଥିଲେ ଗୋଟିଏ ଦୁଇ ତିନି ବଖରିଆ ଘର କିନ୍ତୁ ବିଶ୍ୱବିଦ୍ୟାଳୟ ନିୟମ ଅନୁସାରେ ତାଙ୍କୁ ଗୋଟିଏ ରାଜକୀୟ ବଡ଼ଘର ହିଁ ଦିଆହୋଇଥିଲା। ଏଥିରେ ସେ କ୍ଷୁବ୍ଧ

ହୋଇ ଚଣ୍ଡୀଗଡ଼ ଛାଡ଼ି ଆସିଲେ । ଶେଷରେ ବିଜୁ ପଟ୍ଟନାୟକ ତାଙ୍କୁ ତାଙ୍କର ଇଚ୍ଛାନୁଯାୟୀ ଘର ଓ ଗବେଷଣା ପାଇଁ ସମସ୍ତ ସୁବିଧା ଭୁବନେଶ୍ୱରରେ ବନ୍ଦୋବସ୍ତ କରିଦେଲେ । ସେ କିପରି କମ୍ ଖର୍ଚ୍ଚରେ ବହୁ ଉଚ୍ଚ ଧରଣର ଗବେଷଣା କରିହେବ ସେହି ବିଷୟରେ ଓଡ଼ିଶାର ବହୁ ସ୍ଥାନରେ ବକ୍ତୃତା ଦେଉଥିଲେ । ଭାରତରେ ପହଞ୍ଚି ସେ ଖଦଡ଼ ପାଇଜାମା ଓ ପଞ୍ଜାବି ହିଁ ପିନ୍ଧନ୍ତି ।

ଏହି ଆଦର୍ଶବାଦୀ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ବୈଜ୍ଞାନିକଙ୍କ ସହିତ ଭୁବନେଶ୍ୱରଠାରେ ମୁଁ ଅନେକ ସମୟରେ ଦେଖା କରେ । ସେ ଏତେ ସରଳ ଏବଂ ବଂଧୁବତ୍ସଳ ଥିଲେ ଯେ ତାଙ୍କ ସହିତ ଆଳାପ କଲେ ନିଜର ଚିନ୍ତନ ପ୍ରକ୍ରିୟା ତ୍ୱରାନ୍ୱିତ ହୁଏ– କାମ କରିବାରେ ପ୍ରେରଣା ମିଳେ । ଏହି ଭୁବନେଶ୍ୱରରେ ହିଁ ତାଙ୍କର କ୍ୟାନସର ରୋଗର ଲକ୍ଷଣ ଦେଖାଗଲା । ସେ ଇଂଲଣ୍ଡ ଗଲେ ଚିକିତ୍ସା ପାଇଁ । ତାଙ୍କୁ କୁହାଯାଇଥିଲା ଯେ ଖୁବ୍ ବଡ଼ ହେଲେ ସେ ପ୍ରାୟ ବର୍ଷେ ଯାଏ ବଂଚିବେ । ସେ ଭୁବନେଶ୍ୱରକୁ ଫେରିଆସି ମୃତ୍ୟୁ ପୂର୍ବରୁ ତାଙ୍କର ସମସ୍ତ ଗବେଷଣା କାମକୁ ଶେଷ ରୂପରେଖ ଦେବା ପାଇଁ ଏପରି ଲାଗିପଡ଼ିଲେ ଯେ, ସେ ସମୟରେ କାହାରି ସହିତ ଦେଖା କରି ସମୟ ନଷ୍ଟ କରିବାକୁ ଚାହିଁ ନଥିଲେ । ଏ ସମୟରେ ଥରେ ମାତ୍ର ମୋ ସହିତ ଦେଖା ହୋଇଥିଲା । ମୋତେ ବାରଣ କରିଥିଲେ ଆଉ ଆସିବା ଲାଗି । ଏହି ବର୍ଷକ ଭିତରେ ସେ ତାଙ୍କର ସମସ୍ତ କାର୍ଯ୍ୟ ଶେଷ କରି ଇଂଲଣ୍ଡ ଗଲେ ଜୀବନର ଶେଷ ପରିଣତି ପାଇଁ । ଏ ପ୍ରକାରର ସତ୍ୟନିଷ୍ଠ, କର୍ମଠ, କର୍ତ୍ତବ୍ୟପରାୟଣ ଲୋକଟି ଶେଷ ଯାଏଁ ନାସ୍ତିକ ଥିଲେ । ଭଗବାନ ବିଶ୍ୱାସ ନ ଥିବା ଲୋକେ କୁଆଡ଼େ ଅନୈତିକ ହେବାର ସଂଭାବନା ଥାଏ ବୋଲି ଯାହା କୁହାଯାଏ ତାହା ଯେ କେତେ ଭ୍ରମାତ୍ମକ, ଏହି ଗୋଟିଏ ଦୃଷ୍ଟାନ୍ତରୁ ଜଣାଯାଏ ।

**ଜେ.ଡ଼ି. ବାର୍ଣ୍ଣାଲ** - ସେ ଇଂଲଣ୍ଡର ଜଣେ ବିଖ୍ୟାତ ଜୀବରସାୟନବିତ୍ ଥିଲେ । ସେ ମଧ୍ୟ ନୋବେଲ୍ ପୁରସ୍କାର ପାଇଁ ଉପଯୁକ୍ତ; କିନ୍ତୁ ସେ ବି ଥିଲେ ଜଣେ ପ୍ରସିଦ୍ଧ ମାର୍କ୍ସବାଦୀ । ତାଙ୍କର Social Function of Science ବହିଟି ବିଶ୍ୱବିଖ୍ୟାତ । ତାଙ୍କ ସହିତ ମୋର ଆଳାପ ହୁଏ ମାର୍କ୍ସବାଦ ଅଲୋଚନା ସଭାରେ । ସେ ମଧ୍ୟ ଭାରତକୁ ବହୁତ ଭଲ ପାଆନ୍ତି । ଅଧିକାଂଶ ମାର୍କ୍ସବାଦୀ ବୁଦ୍ଧିଜୀବୀ ଭାରତ ଓ ଅନ୍ୟାନ୍ୟ ଔପନିବେଶିକ ରାଜ୍ୟ ପ୍ରତି ଗଭୀର ଭାବରେ ସହାନୁଭୂତିଶୀଳ । ସେ ମୋତେ କହନ୍ତି ଯେ, ଭାରତ ଏବଂ ଅନ୍ୟାନ୍ୟ ଅନୁନ୍ନତ ଦେଶକୁ ଆଖିରେ ରଖି ସେ ଏହି ବହିଟି ଲେଖିଛନ୍ତି । ଏହି ବହିଟି ସେ ମୋତେ ଦେଇଥିଲେ । ବର୍ତ୍ତମାନ ସୁଦ୍ଧା ମୋ ପାଖରେ ସେ ବହିଟି ରହିଛି । ଅନେକ କ୍ଷେତ୍ରରେ ଭାରତୀୟ ବୈଜ୍ଞାନିକମାନଙ୍କର ଅନ୍ୟ ଦେଶ ଉପରେ ନିର୍ଭର ନ କରି ଯେ ପ୍ରକାରର ସଫଳତା ହାସଲ କରୁଛନ୍ତି, ତାହା ଏହି ବହିରେ ଭବିଷ୍ୟତବାଣୀ କରାହୋଇଥିଲା ।

**ବରଟ୍ରାଣ୍ଡ ଅର୍ଥର ଉଇଲିୟମ ରସେଲ** -ସେ ଜଣେ ବିଖ୍ୟାତ ଦାର୍ଶନିକ ଏବଂ ଗଣିତଜ୍ଞ । ସେ ୧୯୫୦ରେ ସାହିତ୍ୟରେ ନୋବେଲ୍ ପୁରସ୍କାର ପାଇଥିଲେ । ସେ ଜଣେ ପ୍ରଚଣ୍ଡ ସତ୍ୟନିଷ୍ଠ ଓ ନିର୍ଭୀକ ଲୋକ । ଆଗ ପଛ ନ ବିଚାରି ଯାହା ଠିକ୍ ବୋଲି ଭାବନ୍ତି କହନ୍ତି- ଏବଂ କରନ୍ତି । ଶୁଣାଯାଏ, ସେ ଜୀବନରେ ଚାରି ପାଞ୍ଚଥର ତାଙ୍କର ଦର୍ଶନାଭିମୁଖ୍ୟ ବଦଳାଇଛନ୍ତି ଏବଂ ପ୍ରତ୍ୟେକ ଥର ତାଙ୍କର ପୂର୍ବତନ ସ୍ତ୍ରୀ ସହିତ ଛାଡ଼ପତ୍ର ହୋଇଛି ।

୧୯୪୬ ମସିହାରେ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟର ଛାତ୍ର ଶିକ୍ଷକମାନଙ୍କ ସଭାରେ ପ୍ରସ୍ତାବ କଲେ ଯେ ତାଙ୍କ ମତରେ ଆମେରିକା ହାତରେ ଯେତୋଟି ପରମାଣୁ ବୋମା ରହିଛି ରୁଷ ପରମାଣୁ ବୋମା ତିଆରି କରିବା ପୂର୍ବରୁ ତାକୁ ବ୍ୟବହାର କରି ରୁଷକୁ ଅକ୍ତିଆର କରିନେଲେ ଯାଇ ଚିରସ୍ଥାୟୀ ବିଶ୍ୱଶାନ୍ତି ସଂଭବ ! ଏହା କହିଲାକ୍ଷଣି ଛାତ୍ରମାନଙ୍କ ତରଫରୁ ଏପରି ବିକ୍ଷୋଭ ହେଲା ଯେ ରସେଲଙ୍କୁ କେତେକ ଅଧ୍ୟାପକ ଅଗତ୍ୟା ନିରାପଦ ଭାବରେ ସେଠାରୁ ନେଇଯାଇଥିଲେ । କାରଣ ଯୁଦ୍ଧ ସମୟରେ ସୋଭିଏତ୍ ରୁଷର ଅଭୂତପୂର୍ବ ସାହସ ଓ ସ୍ୱାର୍ଥତ୍ୟାଗ ଫଳରେ ଦୁର୍ଦ୍ଧର୍ଷ ଜର୍ମାନ ସୈନ୍ୟଙ୍କୁ ମସ୍କୋ ପାଖାପାଖି ସ୍ଥାନରୁ ହଟାଇ ଶେଷରେ ସଂପୂର୍ଣ୍ଣ ରୂପେ ପରାସ୍ତ କରାହୋଇଥିଲା । ତେଣୁ ଯୁଦ୍ଧରେ ଧ୍ୱସ୍ତ ବିଧ୍ୱସ୍ତ ଇଂଲଣ୍ଡ ସୋଭିଏତ୍ ରୁଷ ପ୍ରତି ଗଭୀର ଭାବରେ କୃତଜ୍ଞ ଥିଲା । ବିଶେଷତଃ ଏଠାକାର ଛାତ୍ରସମାଜ ସୋଭିଏତ୍ ରୁଷ ବିରୁଦ୍ଧରେ ଏପ୍ରକାର ମନ୍ତବ୍ୟରେ ଅତିଶୟ କ୍ଷୁବ୍ଧ ହୋଇଥିଲେ ।

ଏପ୍ରକାର ଭୟଙ୍କର ପ୍ରତିରୋଧ ପରେ ଅଧ୍ୟାପକ ରସେଲ୍ ଆଠ ଦଶ ଛାତ୍ରଙ୍କୁ ତାଙ୍କ ପାଖକୁ ଯିବା ଲାଗି ନିମନ୍ତ୍ରଣ କରିଥିଲେ । ମୁଁ ସେମାନଙ୍କ ସହିତ ଥିଲି । ସେ ଏପରି ବଳିଷ୍ଠ ଭାବରେ ସବୁଠୁ କମ ଧ୍ୱଂସ ସାଧନ କରି ସ୍ଥାୟୀ ବିଶ୍ୱଶାନ୍ତି ସ୍ଥାପନ ବିଷୟରେ ଯୁକ୍ତି ଆରମ୍ଭ କଲେ ଯେ, ଆମେସବୁ ଅବାକ୍ ହୋଇଗଲୁ । ଯଦିଚ ତାଙ୍କ ସହିତ ଆମେମାନେ ଏକମତ ହୋଇ ପାରିଲୁ ନାହିଁ । ଆମର ବକ୍ତବ୍ୟ ହେଲା ଯେ ଯୁଦ୍ଧ ସରିଆସୁଥିଲା ବେଳେ, ଜାପାନ ସରକାର ସନ୍ଧି ପ୍ରସ୍ତାବ ପଠାଇ ସାରିଥିଲା ବେଳେ କେବଳ ବିଶ୍ୱଜନତାକୁ ଭବିଷ୍ୟତରେ ଡରାଇ ରଖିବା ପାଇଁ ଆମେରିକା ଯଦି ଜାପାନର ଦୁଇଟି ସହରରେ ପରମାଣୁ ବୋମା ନିକ୍ଷେପ କଲା, ସେହି ଦେଶ ଉପରେ ବିଶ୍ୱବାସୀ କିପରି ନିର୍ଭର କରିପାରିବେ ? ଆମ ସମସ୍ତଙ୍କର ଏହି ମତ ଥିଲା । ମୋର ନିଜସ୍ୱ ମତ ହୋଇଥିଲା ଯେ ଆମେରିକା ଏପରି ଶକ୍ତିଶାଳୀ ହୋଇଥିବା ବେଳେ ଦୁର୍ବଳ ବ୍ରିଟେନ୍ ତାର ଗୋଟିଏ ଗୋଡ଼ାଣିଆ ଦେଶ ହିସାବରେ ଭାରତକୁ ସ୍ୱାଧୀନତା ନ ଦେବାର ସଂଭାବନା ରହିଛି । ଏହି କଥାଟିର ସଠିକ୍ ଜବାବ ତାଙ୍କଠାରୁ ମିଳିନଥିଲା । ମୋ ସାଙ୍ଗରେ ଯାଇଥିବା ଦୁଇଜଣ ମଧ୍ୟପ୍ରାଚ୍ୟର ଛାତ୍ର ମୋତେ ସମର୍ଥନ କରିଥିଲେ । ଆମ ମତରେ ସୋଭିଏତ୍ ରୁଷହିଁ ବର୍ତ୍ତମାନ ବିଶ୍ୱର ଔପନିବେଶିକ ରାଜ୍ୟଗୁଡ଼ିକର ପ୍ରକୃତ ବନ୍ଧୁ ।

ସେହି ବାର୍ଟ୍ରାଣ୍ଡ ରସେଲ୍ କିଛି ବର୍ଷ ପରେ ଶହେଜଣ ବିଶ୍ୱବିଖ୍ୟାତ ବୈଜ୍ଞାନିକମାନଙ୍କର କମିଟି ଗଠନ କରି ପୃଥିବୀରେ ପରମାଣୁ ବୋମାର ସଂପୂର୍ଣ୍ଣ ଧ୍ୱଂସ ସାଧନ ପାଇଁ ଅଭିଯାନ ଆରମ୍ଭ କରିଥିଲେ ଏବଂ ଏ ସଂପର୍କରେ ସୋଭିଏତ୍ ରୁଷକୁ ମଧ୍ୟ ସମର୍ଥନ ଜଣାଇଥିଲେ । କାରଣ ସୋଭିଏତ୍ ରୁଷର ଏହି ମତ ଥିଲା । ପ୍ରଚଣ୍ଡ ଧୀସଂପନ୍ନ ବ୍ୟକ୍ତିମାନେ ଏପରି ପରସ୍ପରବିରୋଧୀ କାର୍ଯ୍ୟମାନ କରିପାରନ୍ତି ବୋଲି ମୋର ବିଶ୍ୱାସ ହେଲା । ରସେଲ ହେଉଛନ୍ତି ତାହାର ପ୍ରକୃଷ୍ଟ ପ୍ରମାଣ । ଥରେ ଗୋଟିଏ କଥାକୁ ସତ ବୋଲି ଭାବିଲେ ଯେ ଯାହା ଭାବୁପଛେ ଏମାନେ ତାକୁ ତୀବ୍ର ଭାବରେ ଉପସ୍ଥାପିତ କରନ୍ତି ।

**ପି.ଏମ୍.ଏସ୍ ବ୍ଲକେଟ** ଏହି ବିଶିଷ୍ଟ ବୈଜ୍ଞାନିକ ଯୁଦ୍ଧ ସମୟରେ ଇଂଲଣ୍ଡରେ ପରମାଣୁ ଶକ୍ତି ଗବେଷଣା କେନ୍ଦ୍ରର ଚେୟାରମ୍ୟାନ୍ ଥିଲେ । ସେ ୧୯୪୮ରେ ନୋବେଲ୍ ପୁରସ୍କାର ପାଇଥିଲେ । ତାଙ୍କର ଗୋଟିଏ ବିଶ୍ୱବିଖ୍ୟାତ ବହି "Political and military

consequences of Atomic Energy" ୧୯୪୮ରେ ପ୍ରକାଶ ପାଇଥିଲା । ସେ ବହିଟିରେ ପରମାଣୁ ବୋମା ଉଦ୍ଭାବନ ଓ ହୀରୋସିମା ଏବଂ ନାଗାସାକି ଉପରେ ପ୍ରୟୋଗ ଏବଂ ଏହାର ରାଜନୈତିକ ଭବିଷ୍ୟତ ବିଷୟରେ ଯୁଗାନ୍ତକାରୀ ତଥ୍ୟମାନ ଉପସ୍ଥାପିତ କରିଥିଲେ । ଏ ବହିଟିର ବିକ୍ରି ବହି ବାହାରିବା ଦିନ ହିଁ ଏତେ ପ୍ରବଳ ହୋଇଥିଲା ଯେ ମୁଁ ଗୋଟିଏ ଲମ୍ବା ଧାଡ଼ିରେ ଘଣ୍ଟାଏ ଠିଆ ହୋଇ ବହିଟି କିଣିଥିଲି । ମୁଁ ୧୯୪୯ରେ ଇଂଲଣ୍ଡରୁ ଫେରିବା ପରେ ପରେ ନବକୃଷ୍ଣ ଚୌଧୁରୀ ଲୋକ ପଠାଇ ଏହି ବହିଟିକୁ ମୋଠାରୁ ମାଗିନେଇଥିଲେ ।

ଏହି ବହିଟି ବିଷୟରେ ଆଲୋଚନା ସଭା ଲଣ୍ଡନର ଗୋଟିଏ କ୍ଲବ୍‌ରେ ହୋଇଥିଲା ଏବଂ ବ୍ଲାକେଟ୍ ସେଠାରେ ବହି ବିଷୟରେ ବ୍ୟାଖ୍ୟା କରିଥିଲେ । ପରେ ମୁଁ ଓ ଜଣେ ଆଫ୍ରିକାର ଛାତ୍ର ଏବଂ ଦୁଇଜଣ ମଧ୍ୟ ପ୍ରାଚ୍ୟ ଛାତ୍ର ତାଙ୍କ ସହିତ ଦେଖା କରିଥିଲୁ । ସେ ଆମକୁ ବୁଝାଇଥିଲେ ଯେ ଔପନିବେଶିକ ରାଜ୍ୟ ପ୍ରତି ପରମାଣୁ ବୋମା କେତେ ବେଶି ବିପଦଜନକ ଏବଂ ଏହାର ଭବିଷ୍ୟତ ପ୍ରସାର ଏହି ଦେଶମାନଙ୍କ ପ୍ରତି ଅତ୍ୟନ୍ତ ଭୟଙ୍କର ହେବାର ସଂଭାବନା । ସେ କହିଥିଲେ ଯେ ଆମେରିକାର ଏ କ୍ଷେତ୍ରରେ ଯେଉଁ ପ୍ରକାରର ମତିଗତି ତାହା ବିଶ୍ୱଶାନ୍ତି କ୍ଷେତ୍ରରେ ବିପଦଜନକ । ତା ଫଳରେ ନିକଟରେ ସୋଭିଏତ୍ ରୁଷ ଏବଂ ଅନ୍ୟାନ୍ୟ କେତେକ ଦେଶ ବୋମାର ଅଧିକାରୀ ହୋଇଯିବେ । ଏହାଛଡ଼ା ସେମାନଙ୍କର ଆଉ କୌଣସି ଉପାୟ ନାହିଁ । ବିଶେଷତଃ ଭାରତ ପରି ଦେଶ ଯଦି ସ୍ୱାଧୀନତା ପରେ ପରମାଣୁ ବୋମାର ଅଧିକାରୀ ହେବା ପାଇଁ ଉଦ୍ୟମ କରେ ତା'ହେଲେ ତାହାର ଅନ୍ୟାନ୍ୟ ବିକାଶ ବହୁ ପରିମାଣରେ କ୍ଷତିଗ୍ରସ୍ତ ହେବ । ଭବିଷ୍ୟତ ବିଶ୍ୱ ପାଇଁ ପରମାଣୁ ବୋମା ଗୋଟିଏ ଭୟଙ୍କର ଅଶୁଭଙ୍କର ଲକ୍ଷଣ ବୋଲି ଆମକୁ ବୁଝାଇଥିଲେ । ନାନା ବିଷୟ ନେଇ ମଝି ମଝିରେ ତାଙ୍କ ସହିତ ମୋର ଦେଖା ହୁଏ ।

**ରଜନୀ ପାମ୍ ଦତ୍ତ-** ଇଂଲଣ୍ଡରେ ସେ ଜଣେ ବଳିଷ୍ଠ କମ୍ୟୁନିଷ୍ଟ ନେତା ଥିଲେ । ତାଙ୍କର ମା' ବଂଗାଳୀ ଏବଂ ବାପା ଇଂରେଜ । ତାଙ୍କର ଓଜସ୍ୱିନୀ ବକ୍ତୃତାରେ ମୁଁ ଏପରି ମୁଗ୍ଧ ହୋଇଯାଏ ଯେ ସେ ଯେଉଁଠାରେ ବକ୍ତୃତା ଦିଅନ୍ତି ମୁଁ ସେଠାରେ ଯାଇ ପହଞ୍ଚେ । କ୍ରମେ ତାଙ୍କ ସହିତ ମୋର ବନ୍ଧୁତା ହୋଇଗଲା - କେତେଥର ତାଙ୍କ ଘରେ ଯାଇ ମୁଁ ଚା' ଖାଇଛି । ଭାରତର କମ୍ୟୁନିଷ୍ଟ ଦଳ ବିଷୟରେ ଆଲୋଚନା ହୁଏ । ଭାରତ ଛାଡ଼ ଆନ୍ଦୋଳନ ବେଳେ ଭାରତୀୟ କମ୍ୟୁନିଷ୍ଟ ଦଳର ଆଭିମୁଖ୍ୟ ଭୁଲ୍ ଥିଲା ବୋଲି ମୋ ସହିତ ସେ ଏକମତ ହୋଇଥିଲେ କିନ୍ତୁ ଦଳୀୟ ଶୃଂଖଳା ଯୋଗୁ ଜନସାଧାରଣରେ ସେ ତାହା ପ୍ରକାଶ କରନ୍ତି ନାହିଁ । ତାଙ୍କ ମତରେ ପ୍ରଥମେ ଭାରତର ସ୍ୱାଧୀନତା-ତାପରେ ଅନ୍ୟ କଥା । ଦ୍ୱିତୀୟରେ ଭାରତର କମ୍ୟୁନିଷ୍ଟମାନଙ୍କର ବ୍ରିଟିଶ୍ ସହିତ ସହଯୋଗ ଯୋଗୁ ସ୍ୱାଧୀନତା ପରେ ସେମାନଙ୍କର ପ୍ରଭାବ ରାଜନୀତି କ୍ଷେତ୍ରରେ କମ୍ ହେବାର ସଂଭାବନା । ପ୍ରକୃତରେ ସ୍ୱାଧୀନତା ପରେ କମ୍ୟୁନିଷ୍ଟମାନେ ନାନା କାରଣରୁ ଭାରତୀୟ ରାଜନୈତିକ କ୍ଷେତ୍ରରେ ଗୌଣ ହୋଇଗଲେ । ରଜନୀ ପାମ୍ ଦତ୍ତଙ୍କ ମତରେ ପ୍ରତ୍ୟେକ ଦେଶର ସ୍ୱାଧୀନତା ସଂଗ୍ରାମରେ ଅନ୍ୟ ଦେଶ ଉପରେ ନିର୍ଭର ନ କରି କମ୍ୟୁନିଷ୍ଟ ଦଳ ସକ୍ରିୟ ଅଂଶ ଗ୍ରହଣ କରିବା ଉଚିତ ।

## ଯୁକ୍ତରାଷ୍ଟ୍ର ଆମେରିକା

**ଓପେନ୍ ହାଇମର–** ଅଧ୍ୟାପକ ଓପେନ୍ ହାଇମର ଆମେରିକାର ପରମାଣୁ ବୋମାର ଜନକ ବୋଲି କୁହାଯାଏ । ତାଙ୍କ ତତ୍ତ୍ୱାବଧାନରେ ପ୍ରଥମ ପରମାଣୁ ବୋମା ତିଆରି ହୋଇଥିଲା । ପରମାଣୁ ବୋମାର ପରୀକ୍ଷଣ ସମୟରେ ସେ ବହୁ ଦୂରରେ ସ୍ଥାପିତ ପର୍ଯ୍ୟବେକ୍ଷଣ କେନ୍ଦ୍ରରୁ ଏହାର ବିସ୍ଫୋରଣ ଦେଖି ସେତେବେଳେ ସେ ଭାରତୀୟ ଗ୍ରନ୍ଥମାନଙ୍କରେ ଶ୍ରୀକୃଷ୍ଣଙ୍କର ଅର୍ଜୁନଙ୍କ ପାଖରେ ତାଙ୍କର ବିଶ୍ୱ ଦର୍ଶନ ବେଳେ ଶତ ଲକ୍ଷ ସୂର୍ଯ୍ୟର ତେଜସ୍ୱିୟ ଆଲୋକର ଛବି କଥା ମନେପକାଇ ଭୀତତ୍ରସ୍ତ ହୋଇପଡ଼ିଥିଲେ । ଏହି ଭୀମକାୟ ଧ୍ୱଂସକାରୀ ଅସ୍ତ୍ର ପୃଥିବୀରେ କି ପ୍ରକାର ଭୟଙ୍କର ଅବସ୍ଥା ସୃଷ୍ଟି କରିପାରେ ତାର ଚିତ୍ର ହିରୋସୀମା ନାଗାସାକିର ଧ୍ୱଂସ ଲୀଳା ଦେଖିଲା ପରେ ସେ ଯେ ତାହାର ଜନକ– ଏ କଥା ଭାବି ଭୟଙ୍କର ଭାବରେ ବିଚଳିତ ହୋଇପଡ଼ିଥିଲେ । ଏ କ୍ଷେତ୍ରରେ ତାଙ୍କର ଗବେଷଣା କାର୍ଯ୍ୟ ବନ୍ଦ କରିଦେଇଥିଲେ । ସେ ଉଦ୍‌ଜାନ ବୋମା ତିଆରିରେ ଆଉ ଭାଗ ନେଲେନାହିଁ । ଯୁକ୍ତରାଷ୍ଟ୍ର ଆମେରିକା ସରକାର ଏଥିଯୋଗୁ ତାଙ୍କ ଉପରେ ଏପରି ବିରକ୍ତ ହୋଇଥିଲେ ଯେ ତାଙ୍କୁ ଅଣ ଆମେରିକୀୟ କାର୍ଯ୍ୟକଳାପଗତ କୁଖ୍ୟାତ ଆଇନ ବଳରେ ତାଙ୍କର ଆଇନ ଅଦାଲତରେ ବିଚାର କରାଇଥିଲେ । ସେତେବେଳେ ଆମେରିକାରେ ନାରକୀୟ ମାକ୍ ଆର୍ଥିର ରାଜତ୍ୱ କହିଲେ ଅତ୍ୟୁକ୍ତି ହେବନାହିଁ । ସେ କେବଳ ଗୋଇନ୍ଦା ବିଭାଗର କର୍ତ୍ତା ଥିଲେ; କିନ୍ତୁ ଆମେରିକାର ଗଣତାନ୍ତ୍ରିକ ସରକାର ତାଙ୍କ ଦ୍ୱାରା ସଂପୂର୍ଣ୍ଣ ରୂପେ ପ୍ରଭାବିତ ତଥା ପରିଚାଳିତ ହେଉଥିଲା । ଅଣ ଆମେରିକୀୟ ଅପରାଧ ଅର୍ଥ ସୋଭିଏତ୍ ରୁଷର ଗୁପ୍ତଚର ହିସାବରେ ଓପନ ହାଇମରଙ୍କୁ ଧରାଯାଉଥିଲା ।

ଏପରି ଏକ ଦୁର୍ଦ୍ଦିନରେ ତାଙ୍କ ସହିତ ମୋର ଦେଖା ହୋଇଥିଲା ଯୁକ୍ତରାଷ୍ଟ୍ର ଆମେରିକାର ପ୍ରିନ୍ସିଟନ୍ ବିଶ୍ୱବିଦ୍ୟାଳୟରେ । କୁଖ୍ୟାତ ମାକଆର୍ଥର ଅତ୍ୟାଚାର ସମୟରେ ମଧ୍ୟ ଏପରି ଜଣେ ରାଷ୍ଟ୍ର ଅଭିଯୁକ୍ତ ବ୍ୟକ୍ତିଙ୍କୁ ପ୍ରିନ୍ସଟନ ବିଶ୍ୱବିଦ୍ୟାଳୟ ବକ୍ତୃତା ଦେବା ପାଇଁ ନିମନ୍ତ୍ରଣ କରିଥିଲା । କାରଣ ବହୁବର୍ଷ ଧରି ଚାଲି ଆସିଥିବା ବିଶ୍ୱବିଦ୍ୟାଳୟମାନଙ୍କର ସ୍ୱାଧୀନତା ଏତେ ଶୀଘ୍ର ଦବାଇଦେବା ସଂଭବ ନଥିଲା । ସେ ସମୟରେ ଭାରତୀୟ ସରକାରଙ୍କର ପ୍ରେରିତ କେତେକ ଶିକ୍ଷାବିତ୍ ଭିତରୁ ମୁଁ ଜଣେ ଥିଲି ଏହି ପ୍ରିନ୍ସିଟନ୍ ବିଶ୍ୱବିଦ୍ୟାଳୟରେ । ଏଠାରେ ଅତିଥି ହିସାବରେ ମୁଁ ଗୋଟିଏ ହପ୍ତା ରହୁଥିଲି । ତେଣୁ ଏପରି କେତେକ ଅତିଥିମାନଙ୍କ ସହିତ ମୁଁ ମଧ୍ୟ ଓପନ ହାଇମରଙ୍କର ସମ୍ମାନାର୍ଥେ ଆୟୋଜିତ ରାତ୍ରି ଭୋଜନରେ ଯୋଗ ଦେଇଥିଲି । କଥା ପ୍ରସଙ୍ଗରେ ମୋତେ ଚାହିଁ ଭାରତର ଭବିଷ୍ୟତ ଏହି ପରମାଣୁ ବୋମା ଉପରେ ବହୁତ ନିର୍ଭର କରୁଛି ବୋଲି କହିଥିଲେ । ଏ ବିଷୟରେ ସାମାନ୍ୟ କେତୋଟି କଥା ତାଙ୍କ ସହିତ ମୋର ହୋଇଥିଲା । ସେ ଅଳ୍ପ ଅଳ୍ପ କଥା କହୁଥିଲେ । ତାଙ୍କ ମୁହଁରେ ଦୁଃଖ ଓ ହତାଶାର ସାମାନ୍ୟ ଟିକିଏ ହସ ଲାଗି ରହିଥିବା ପରି ମୋର ମନେହେଲା । ସେ ତାଙ୍କର ଅଦାଲତ ବିଚାର କଥା କହିନଥିଲେ । ବିଶ୍ୱରେ ବୈଜ୍ଞାନିକ ଗବେଷଣା ଓ ତାର ପ୍ରୟୋଗ ବିଷୟରେ ହିଁ ଆଲୋଚନା କରୁଥିଲେ । ବିଜ୍ଞାନର ପ୍ରୟୋଗ ନେଇ ସେ କାହାକୁ ସିଧାସିଧି ଦୋଷ ଦେଉନଥିଲେ ମଧ୍ୟ ସେ ବିଷୟରେ ସେ ବହୁତ ସନ୍ଦିହାନ ଥିବା ମୁଁ ଲକ୍ଷ୍ୟ କରିଥିଲି । ପ୍ରକାରାନ୍ତରେ ବିଜ୍ଞାନୀମାନଙ୍କୁ ସତର୍କ କରାଇ ଦେଉଥିଲେ

ଏହାର ପ୍ରୟୋଗ ବିଷୟ ନେଇ । ପରବର୍ତ୍ତୀ ସମୟରେ ଏହି ବୈଜ୍ଞାନିକ ଗବେଷଣା ପ୍ରୟୋଗ ହିଁ ବିଶ୍ୱ ରାଜନୀତିକୁ ବଦଳାଇ ବଦଳାଇ ଚାଲିଛି ।

ବର୍ତ୍ତମାନ ସୁଦ୍ଧା ତାଙ୍କର ବିଷଣ୍ଣ ମୁଖମଣ୍ଡଳର ସେହି କ୍ଷୀଣ କରୁଣ ହସର ରେଖା ଟିକକ ମୋ ମନରେ ଲାଖି ରହିଯାଇଛି ।

**ମାର୍ଟିନ୍ ଲୁଥର କିଂଗ-** ଯୁକ୍ତରାଷ୍ଟ୍ର ଆମେରିକାରେ କଳା ଗୋରା ବୈଷମ୍ୟ ନେଇ ଯେଉଁ ବିରାଟ ସଂଗ୍ରାମ ବହୁ ବର୍ଷ ଧରି ଲାଗି ରହିଥିଲା, ତାହାର ସଂଗ୍ରାମଶୀଳ କୃଷ୍ଣକାୟ ଲୋକଙ୍କର ସେ ଥିଲେ ଅତି ପରାକ୍ରମୀ ନେତା । ତାଙ୍କର ଆପୋଷହୀନ ସଂଗ୍ରାମ ଗାନ୍ଧୀଜୀଙ୍କର ସଂଗ୍ରାମ ସହିତ ତୁଳନା କରାହୋଇଛି । ଏପରି ଜଣେ ବିରାଟ ବ୍ୟକ୍ତିଙ୍କ ସହିତ ମାତ୍ର ଦୁଇତିନି ମିନିଟ୍‌ର ଆଳାପ ସ୍ମରଣୀୟ ହୋଇରହିଛି ।

ସିକାଗୋର ଉପକଣ୍ଠରେ ଗୋଟିଏ ବିରାଟ ସଭାରେ ତାଙ୍କର ଯୋଗ ଦେବାର ଥାଏ । ମୁଁ ସେତେବେଳକୁ ସିକାଗୋରେ ଥିଲି । ବହୁ ପରିଶ୍ରମ କରି ସେହି ସଭାକୁ ମୁଁ ଗଲି । ଏହି ବିରାଟ ସଭା ମଧ ଭାଗକୁ ଯିବା ଅସଂଭବ ମନେହେଲା । କିନ୍ତୁ ମୋତେ ଭାରତୀୟ ଦେଖି କେତେକ ସ୍ୱେଚ୍ଛାସେବକ ମୋତେ ଆଗକୁ ନେଇଗଲେ । ସଭା ମଣ୍ଡପ ପାଖରେ ଚାରିପାଞ୍ଚ ଶହ ଚୌକି ପଡ଼ିଥାଏ - ତାର ସବା ଆଗ ଧାଡ଼ିରେ ପନ୍ଦର-କୋଡ଼ିଏ ଜଣ ଭାରତୀୟ ବସିଥାଆନ୍ତି । ମୋତେ ସେଠି ନେଇ ବସାଇ ଦିଆଗଲା । ଦେଖିଲି, ଭାରତୀୟମାନଙ୍କ ପ୍ରତି ଏମାନଙ୍କର ବହୁତ ସମ୍ମାନ । ଆଶ୍ଚର୍ଯ୍ୟର କଥା, ଯେଉଁ କେତେଜଣ ଭାରତୀୟ ସେଠାରେ ବସିଥିଲେ ସେମାନେ ବଙ୍ଗଳା, କେରଳ ଓ ତାମିଲନାଡୁର ଲୋକ । ଅନ୍ୟ ରାଜ୍ୟର କେହି ନଥିଲେ । ମୁଁ କେବଳ ଜଣେ ଓଡ଼ିଶାର । ଭାରତୀୟମାନଙ୍କୁ ଆଗରେ ଦେଖି ମାର୍ଟିନ୍ ଲୁଥର କିଂଗ୍ ଅନେକଥର ଗାନ୍ଧୀଜୀଙ୍କ କଥା ତାଙ୍କ ବକ୍ତୃତାରେ ଉଲ୍ଲେଖ କରିଥିଲେ । ତାଙ୍କର ଏପରି ଓଜସ୍ୱିନୀ ଭାଷା ଓ ବକ୍ତୃତା ଯେ ଦେହରେ ରୋମ ଟାଙ୍କୁରି ଉଠିବ । ସଭା ପରେ ଆମ କେତେଜଣଙ୍କ ସହିତ ପଦେ ଦି'ପଦ କଥା ଭିତରେ ପୁଣି ଗାନ୍ଧୀଜୀ ନାମ ଉଲ୍ଲେଖ କରିଥିଲେ । ସେ କେତେବଡ଼ ଧୀଶକ୍ତି ସଂପନ୍ନ ଓ ସାହସୀ ଥିଲେ, ତାଙ୍କର ବକ୍ତୃତା ଶୁଣିଲେ ହୃଦୟଙ୍ଗମ କରିହୁଏ ।

**ପଲ ରବସନ-** ସେ ଜଣେ ହେଉଛନ୍ତି ବିଖ୍ୟାତ ନିଗ୍ରୋ ଗାୟକ । ତାଙ୍କର ଗୀତ ଶୁଣିବା ପାଇଁ ସବୁବେଳେ ଆମେରିକାରେ ଭିଡ଼ । ସେ ଥିଲେ ବାମପନ୍ଥୀ ଲୋକ । ତେଣୁ ତାଙ୍କ ସଭାରେ ଉପସ୍ଥିତ ଲୋକଙ୍କ ବିଷୟରେ ସରକାରୀ ଗୁଇନ୍ଦା ବିଭାଗ ଖବର ସଂଗ୍ରହ କରେ । ସେମାନେ ଚାକିରିରେ ଥିଲେ, କଳେ ବଳେ କୌଶଳେ ସେମାନଙ୍କୁ ଚାକିରିରୁ ବିଦାୟ ଦିଆଯାଏ । ଏପରି ଜଣେ ବିଖ୍ୟାତ ଲୋକଙ୍କୁ ଦେଖିବା ଏବଂ ତାଙ୍କର ଗୀତ ଶୁଣିବା ପାଇଁ ମୁଁ ଯାଇଥିଲି । ଦୁଇଘଣ୍ଟା କାଳ ତାଙ୍କର ଗୀତ ମନ୍ତ୍ରମୁଗ୍ଧ ହୋଇ ଶୁଣିଥିଲି, କିନ୍ତୁ କଥାବାର୍ତ୍ତା ହେବାର ସୌଭାଗ୍ୟ ହେଲାନାହିଁ ।

## ଫ୍ରାନ୍ସ

**ଜାଁ. ପଲ୍. ଚାର୍ଲସ୍ ସାର୍ତେ** - ସେ ଜଣେ ଫ୍ରାନ୍ସର ବିଖ୍ୟାତ ଲେଖକ ଓ ଦାର୍ଶନିକ । ସେ ମଧ ଜଣେ ବଳିଷ୍ଠ ବାମପନ୍ଥୀ ଲୋକ । ତାଙ୍କର ଦର୍ଶନରେ ପୃଥିବୀର ବହୁ ଲେଖକ ପ୍ରଭାବିତ । ତାଙ୍କୁ ସାହିତ୍ୟରେ ନୋବେଲେ ପୁରସ୍କାର ୧୯୬୪ ମସିହାରେ ଦିଆହୋଇଥିଲା । ସେ ତାକୁ ପ୍ରତ୍ୟାଖ୍ୟାନ କରିଥିଲେ ।

ତାଙ୍କ ସହିତ ମୋର ଦେଖା ହୋଇଥିଲା ୧୯୬୫ରେ ହେଲିସିଙ୍କି ସହରରେ। ବିଶ୍ୱଶାନ୍ତି ସମାରୋହରେ ଯୋଗ ଦେବା ପାଇଁ ମୁଁ ଭାରତରୁ ଯାଇଥାଏ। ତାଙ୍କ ସହିତ ଗୋଟିଏ ରାତ୍ରି ଭୋଜନ ପାଇଁ ପ୍ରାୟ ପନ୍ଦର-କୋଡ଼ିଏ ଜଣ ଅତିଥିଙ୍କ ସହିତ ମୁଁ ଥିଲି। ସେ ବିଶ୍ୱଶାନ୍ତି ଭବିଷ୍ୟତରେ ଆହୁରି ବେଶି ବିପନ୍ନ ହେବାର ସଂଭାବନା କଥା କହୁଥିଲେ। ମୋ ମୁହଁକୁ ଚାହିଁ କହିଲେ– କିଏ ଜାଣେ ଭାରତ ପାକିସ୍ତାନ ବିବାଦ ନେଇ ଆଉ ଗୋଟିଏ ବିରାଟ ସାମରିକ ବିଭ୍ରାଟ ପୃଥିବୀରେ ଦେଖାଦେଇପାରେ। ତାଙ୍କର କଥାରେ ବନ୍ଧୁତ୍ୱପୂର୍ଣ୍ଣ ମୋଲାୟମ ହସ ଝରିଉଠେ। ସେ ସାଙ୍ଗେ ସାଙ୍ଗେ ସମସ୍ତଙ୍କ ସହିତ ବଂଧୁତା କରିବାରେ ସିଦ୍ଧହସ୍ତ ବୋଲି ଜଣାପଡ଼ିଲା। ଫରାସୀ ଲୋକଙ୍କର ଏହା ଗୋଟିଏ ବିଶିଷ୍ଟ ଗୁଣ। ସେ ବିଶ୍ୱବିଖ୍ୟାତ ବିଦ୍ୟମାନ ବା ଏକ୍ସିଷ୍ଟେନସିଆଲିଜମ ଦର୍ଶନର ପ୍ରବର୍ତ୍ତକ।

ଭାରତ ବାହାରେ ଦେଖା ହୋଇଥିବା ବିଶିଷ୍ଟ ଲୋକଙ୍କ ଭିତରେ ଆଉ ଦୁଇଜଣ ବିଶିଷ୍ଟ ମନୋବୈଜ୍ଞାନିକଙ୍କର ନାମ ଉଲ୍ଲେଖଯୋଗ୍ୟ। ଏମାନଙ୍କର ଗବେଷଣାର ଯୁଗାନ୍ତକାରୀ ପ୍ରଭାବ ପୃଥିବୀର ପରବର୍ତ୍ତୀକାଳୀନ ମନୋବିଜ୍ଞାନ ଏବଂ ସାହିତ୍ୟରେ ପରିଲକ୍ଷିତ ହୁଏ।

**ବି.ଏଫ୍. ସ୍କିନ୍** ଜଣେ ଯୁଗାନ୍ତକାରୀ ବ୍ୟାବହାରିକ ମନୋବୈଜ୍ଞାନିକ। ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ମଣିଷ ଓ ସାରା ଜୀବଜଗତ କିପରି ଶିକ୍ଷା ଲାଭ କରେ ପାରସ୍ପରିକ ବ୍ୟାବହାରିକ କ୍ରିୟା ପ୍ରକ୍ରିୟା ମାଧ୍ୟମରେ– ଏହି ତତ୍ତ୍ୱର ସେ ହେଉଛନ୍ତି ଜନକ। ସେ ପ୍ରିନ୍ସଟନ୍ ବିଶ୍ୱବିଦ୍ୟାଳୟରେ ତାଙ୍କର ବିରାଟ ଗବେଷଣାଗାରରେ ଶହ ଶହ ପାରାଙ୍କୁ କିପରି ବିଭିନ୍ନ କୌଶଳ ଶିଖାଯାଉଛି ତାହାର ବ୍ୟାଖ୍ୟା ତିନିଘଣ୍ଟା କାଳ ବୁଲାଇ ବୁଲାଇ ମୋତେ ଦେଖାଇଥିଲେ। ଏପରି ପ୍ରାଞ୍ଜଳ ଭାବରେ ଏବଂ ଏପରି ବନ୍ଧୁତା ସହ ମୋତେ ଏସବୁ କଥା ବୁଝାଇଥିଲେ ଯେ ଆଜିଯାଏଁ ତାଙ୍କର କଥା ମନେପଡ଼ିଯାଏ। ପରେ ଆମେ ଦୁଇଜଣ ମଧ୍ୟାହ୍ନ ଭୋଜନରେ ଯୋଗ ଦେଇଥିଲୁ। ବହୁ ବର୍ଷ ଯାଏ ଆମ ଭିତରେ ନବବର୍ଷ କାର୍ଡ଼ର ଆଦାନପ୍ରଦାନ ହେଉଥିଲା।

ସେହିପରି ସୁଇଜରଲାଣ୍ଡର ଜୁରିକରେ ମୋର ଦେଖା ହୋଇଥିଲେ ପ୍ରଖ୍ୟାତ **ମନୋବୈଜ୍ଞାନିକ କାର୍ଲ ୟୁଙ୍ଗ**। ଫ୍ରୟେଡ୍ ଏବଂ ଆଡ୍‌ଲରଙ୍କ ସହିତ ସେ ଜଣେ ମୌଳିକ ଚିନ୍ତାଧାରାର ଲୋକ। ତାଙ୍କ ମତରେ ସମଗ୍ର ମନୁଷ୍ୟ ଜାତିର ବଂଶାନୁକ୍ରମିକ ଭାବେ ଅଚେତନ ମନ ଗଢ଼ିଉଠିଛି। ଆମର ଦୈନନ୍ଦିନ କାର୍ଯ୍ୟାବଳୀ ଉପରେ ଏହାର ପ୍ରଭାବ ରହୁଛି। ବିଶେଷତଃ ସ୍ୱପ୍ନ ରାଜ୍ୟରେ ଏହା ପ୍ରକାଶିତ ହୁଏ। ମୋ ସହିତ ପ୍ରାୟ ଘଣ୍ଟାଏ କାଳ ଏ ବିଷୟରେ ଆଲୋଚନା କଲେ ଏବଂ କହିଲେ ଯେ ଭାରତୀୟମାନେ ହିଁ ତାଙ୍କର ଏହି ବଂଶଗତ ଅଚେତନତା ବିଷୟରେ ଉପଲବ୍ଧି କରିପାରିବେ। ଭାରତୀୟ ଯୋଗରେ ଥିବା କୁଣ୍ଡଳିନୀ ଶକ୍ତି ଏହି ବଂଶୀୟ ଅଚେତନା ଉପରେ ପର୍ଯ୍ୟବସିତ। ତାଙ୍କ ମତରେ ଯାହା ବସ୍ତୁନିଷ୍ଠ ପାଶ୍ଚାତ୍ୟ ଜଗତରେ ଅଜ୍ଞାତ ବା ରହସ୍ୟମୟ ବୋଲି ମନେ ହେଉଛି, ତାହା ଭାରତୀୟମାନେ ହିଁ ଭଲ ଭାବରେ ହୃଦୟଙ୍ଗମ କରିପାରିବେ।

ଉପରୋକ୍ତ ଦୁଇଜଣ ଯୁଗାନ୍ତକାରୀ ମନୋବୈଜ୍ଞାନିକଙ୍କ ବିଷୟ ଏଠାରେ ଉଲ୍ଲେଖ କଲି ଯଦିଓ ଅନ୍ୟାନ୍ୟ ବହୁ ବିଶିଷ୍ଟ ମନୋବୈଜ୍ଞାନିକଙ୍କ ସହିତ ମୋର ପରିଚୟ ହୋଇଥିଲା।

## ଭାରତ

**ପ୍ରଧାନମନ୍ତ୍ରୀ ଜବାହାରଲାଲ୍ ନେହେରୁ** - ୧୯୬୨ ମସିହାରେ କଟକରେ ଅନୁଷ୍ଠିତ ବିଜ୍ଞାନ କଂଗ୍ରେସର ସ୍ଥାନୀୟ ସେକ୍ରେଟେରୀ ହିସାବରେ ତାଙ୍କ ସହିତ ବିଜ୍ଞାନ କଂଗ୍ରେସ ସଭାରୁ ଫେରି ପୋଷାକ ବଦଳାଇବା ତମ୍ବୁରେ ମୋର ପ୍ରଥମ ଦେଖା । ତାପରେ ରାଜଭବନରେ ଅନୁଷ୍ଠିତ ରାତ୍ରି ଭୋଜନ ବେଳେ ଦେଖା ଏବଂ ସାମାନ୍ୟ କଥାବାର୍ତ୍ତା । ଏହି ଆଲୋଚନା ଯୋଗ ବିଷୟରେ ହୋଇଥିଲା । ମୁଁ ତାଙ୍କୁ ପଚାରିଥିଲି ଯେ ସେ ସେପର୍ଯ୍ୟନ୍ତ ଶୀର୍ଷାସନ କରୁଛନ୍ତି କି ନା ? ସେ କୁଆଡ଼େ ଜୀବନସାରା ଶୀର୍ଷାସନ ନିୟମିତ ଭାବେ କରୁଥିଲେ । କିନ୍ତୁ ସେତେବେଳକୁ ଡାକ୍ତର ତାଙ୍କୁ ବାରଣ କରିଥିଲା ଶୀର୍ଷାସନ କରିବା ପାଇଁ । ମୁଁ ଯେତେବେଳେ ଏକଥା ପଚାରିଥିଲି, ସେ କହିଥିଲେ ଯେ, ଜଘନ୍ୟ ଡାକ୍ତରମାନେ କିଛି ନ ଜାଣି ତାଙ୍କୁ ମନା କରିଛନ୍ତି ଶୀର୍ଷାସନ କରିବା ପାଇଁ । ତେଣୁ ସେ ବାଧ ହୋଇ ବନ୍ଦ କରିଛନ୍ତି । କିନ୍ତୁ ଆଉ କେତେକ ଯୋଗାସନ ନିୟମିତ ଭାବେ କରି ଆସୁଥିବା କଥା କହିଲେ ।

**ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ** - ସେହିପରି ୧୯୭୭ରେ ଭୁବନେଶ୍ୱର ବିଜ୍ଞାନ କଂଗ୍ରେସରେ ମଧ୍ୟ ମୁଁ ସେକ୍ରେଟେରୀ ଥିଲି । ପେଣ୍ଡାଲରେ ସେ ବିରକ୍ତ ହୋଇ ମୋତେ ପଚାରିଲେ ଯେ ତାଙ୍କୁ କାହିଁକି ବିଜ୍ଞାନ କଂଗ୍ରେସର ପେଣ୍ଡାଲକୁ ଆସୁଥିବା ବିଜ୍ଞାନୀମାନଙ୍କର ଶୋଭାଯାତ୍ରାରେ ସାମିଲ୍ କରାଗଲା ନାହିଁ । ପେଣ୍ଡାଲର ପଛପଟେ ଆଉ ଗୋଟିଏ ବାଟ ଦେଇ ଅଣା ହେଲା । ତାଙ୍କର ନିରାପତ୍ତା ବାହିନୀ ଏଥିପାଇଁ ଦାୟୀ ବୋଲି ମୁଁ କହିଥିଲି । ସେ କିନ୍ତୁ ଏଥିରେ ଏପରି ବିରକ୍ତ ହୋଇଥିଲେ ଯେ ସଭା ପରେ ସ୍ଥାନୀୟ କର୍ମକର୍ତ୍ତାଙ୍କ ସହିତ ଗୋଟିଏ ସମବେତ ଫଟୋଗ୍ରାଫ୍ ପାଇଁ ମୁଁ ତାଙ୍କୁ ଯେତେବେଳେ ଅନୁରୋଧ କଲି ସେ ରାଜି ହୋଇନଥିଲେ ।

ତାପରେ ସଂଧ୍ୟା ରାଜଭବନ ଭୋଜିରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟ ମୋତେ ବିଶେଷ ଭାବରେ ତାଙ୍କ ସହିତ ପରିଚୟ କରାଇ ଦେଇଥିଲେ । ସେତିକିବେଳେ ତାଙ୍କୁ କିପରି ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ତାଙ୍କର ପ୍ରାୟ ଦୁଇବର୍ଷର ରାଜତ୍ୱ ସମୟରେ ଥରେ ମାତ୍ର ନିମନ୍ତ୍ରଣ କରିନଥିଲେ ଏବଂ ତାଙ୍କୁ ସେ ବରାବର କିପରି ଏଡ଼ାଇ ଯାଉଥିଲେ ସେ ବିଷୟରେ ବେଶ୍ ଦୁଃଖର ସହିତ ପ୍ରକାଶ କରିଥିଲେ । ତାଙ୍କର ସ୍ମରଣ ଶକ୍ତି ଏପରି ପ୍ରଖର ଥିଲା ଯେ ସେହି ଅବସରରେ ଅଳ୍ପଦିନ ତଳେ ମୋ ବିଷୟରେ ନନ୍ଦିନୀ ଦେବୀଙ୍କୁ ସେ ଫୋନ୍‌ରେ ପଚାରିଥିଲେ ଏବଂ ନନ୍ଦିନୀ ଦେବୀ ମୋତେ controversial ବୋଲି ମନ୍ତବ୍ୟ ଦେଇଥିବା କଥା ତାଙ୍କର ମନେଥିଲା । ଆମ ଆଗରେ ଏହା ପ୍ରକାଶ କରିଥିଲେ । ବିଶ୍ୱବିଦ୍ୟାଳୟ ଆୟୋଗ କମିଶନ ସଭ୍ୟ ହେବା ପାଇଁ ମୋ ନାମ ତତ୍କାଳୀନ ଶିକ୍ଷାମନ୍ତ୍ରୀ ନୁରୁଲ୍ ହାସାନ୍ ପ୍ରସ୍ତାବ ଦେଇଥିଲେ ଏବଂ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଯାହାକୁ ନିଜେ ଜାଣି ନଥିଲେ ତା ବିଷୟରେ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ପଚାରି ବୁଝିଥିଲେ ।

**ନୁରୁଲ୍ ହାସାନ୍** - ଅଧ୍ୟାପକ ନୁରୁଲ ହାସାନଙ୍କ ସହିତ ମୋର ୧୯୫୭ ମସିହାରୁ ପରିଚୟ ଥିଲା । ସେ ସେତେବେଳେ ଆଲିଗଡ଼ ବିଶ୍ୱବିଦ୍ୟାଳୟରେ ଇତିହାସ ଅଧ୍ୟାପକ ଥିଲେ । ୧୯୫୭ରେ ଭାରତ ସରକାରଙ୍କ ଦ୍ୱାରା ଗୋଟିଏ ଶିକ୍ଷା ପ୍ରତିନିଧିଦଳ ଆମେରିକା ଯିବା ପାଇଁ ମନୋନୀତ ହୋଇଥିଲା । ସେମାନଙ୍କ ଭିତରେ ମୁଁ ଏବଂ ଅଧ୍ୟାପକ ନୁରୁଲ୍ ହାସାନ ଥିଲୁ । ଏ ସଂକ୍ରାନ୍ତରେ ଆୟୋଜିତ ସେମିନାର ପ୍ରାୟ ସାତଦିନ ଯାଏ ଦିଲ୍ଲୀରେ ହୋଇଥିଲା ଆମେରିକା

ଯିବା ପୂର୍ବରୁ । ଏଥିରେ ଯୁକ୍ତରାଷ୍ଟ୍ର ଆମେରିକାର ବିଶିଷ୍ଟ ଶିକ୍ଷାବିତ୍, ଐତିହାସିକ ପ୍ରଭୃତି ବରିଷ୍ଠ ବକ୍ତାମାନେ ଆମମାନଙ୍କ ସହିତ ଆଲୋଚନା କରୁଥିଲେ ଆମେରିକାର ବିଭିନ୍ନ କ୍ଷେତ୍ରରେ ଆମକୁ ପରିଚିତ କରାଇବା ଲାଗି । ଏ ସଂପର୍କରେ ଆମେ ଦୁଇଜଣ ବହୁତ ସ୍ପଷ୍ଟ କଥା ପଚାରିବାରୁ ସେମାନେ ଏଥିରେ ଟିକିଏ ଅପ୍ରସ୍ତୁତ ହୋଇପଡ଼ନ୍ତି । ଏପରି ପରିସ୍ଥିତିରେ ଆମ ଭିତରେ ବନ୍ଧୁତା ଆରମ୍ଭ ହୋଇଥିଲା ଏବଂ ତାହା ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ବଳବତ୍ତର ରହିଥିଲା ।

ସେ ଶେଷରେ ଆମ ସହିତ ଆମେରିକା ଯାଇପାରିଲେ ନାହିଁ । ଶେଷଦିନ ତାଙ୍କୁ ଯିବା ପାଇଁ ଆମେରିକା ଦୂତାବାସରୁ ଅନୁମତି ମିଳିନଥିଲା । ସେ ଜଣେ ବାମପନ୍ଥୀ ଲୋକ ବୋଲି ଅନୁମତି ପାଇନଥିଲେ ବୋଲି ଆମର ଧାରଣା ଥିଲା । କିନ୍ତୁ ସେ ଯେତେବେଳେ ଓଡ଼ିଶାର ଗଭର୍ଣ୍ଣର ଥିଲେ ମୋତେ ବାରମ୍ବାର ନିମନ୍ତ୍ରଣ କରୁଥିଲେ । ସେତେବେଳେ ସେ ଏହାର ଗୁପ୍ତ ରହସ୍ୟ ମୋତେ ଖୋଲି କହିଥିଲେ । ତାଙ୍କୁ କୁଆଡ଼େ ଅନୁରୋଧ କରା ହୋଇଥିଲା ଯେ ସେ ଆମେରିକାରେ ପାକିସ୍ତାନ ସପକ୍ଷରେ କହିବେ, କିନ୍ତୁ ଏଥିରେ ସେ ରାଜି ହୋଇନଥିଲେ । ଫଳରେ ତାଙ୍କ ନାମ କାଟି ଦିଆହୋଇଥିଲା ।

ତାପରେ ତାଙ୍କ ସହିତ ମୋର ବନ୍ଧୁତା ଅତୁଟ ରହିଥିଲା । ସେ ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନରେ ଜଣେ ଟାଣୁଆ ସଭ୍ୟ ଥିଲେ । ସେ ହିଁ ମୋତେ ବିବାଦୀୟ ବିଶ୍ୱବିଦ୍ୟାଳୟମାନଙ୍କର ପରିଦର୍ଶକ ଭାବେ ଚେୟାରମ୍ୟାନଙ୍କୁ ପରାମର୍ଶ ଦିଅନ୍ତି । ସେ ଭାରତର ଶିକ୍ଷାମନ୍ତ୍ରୀ ଥିଲାବେଳେ ଆଉ ଜଣେ ବିଶିଷ୍ଟ ବାମପନ୍ଥୀ ଅଧ୍ୟାପକ ସତୀଶ୍ ଚନ୍ଦ୍ରଙ୍କୁ କମିଶନର ଚେୟାରମ୍ୟାନ୍ କରିଥିଲେ ଏବଂ ତାଙ୍କ ପରେ ମୋତେ ଚେୟାରମ୍ୟାନ୍ କରିବା ପାଇଁ ସିଦ୍ଧାନ୍ତ ନେଇଥିଲେ କିନ୍ତୁ ଓଡ଼ିଶା ସରକାର ଆଉ କେତେକ ଶିକ୍ଷାବିତ୍‌ଙ୍କର ଷଡ଼ଯନ୍ତ୍ର ଯୋଗୁ ଏହା ସଂଭବ ହୋଇପାରିନଥିଲା । ସେ ଏବଂ କମିଶନ ଚେୟାରମ୍ୟାନ୍ ଅଧ୍ୟାପକ ଶତୀଶ ଚନ୍ଦ୍ରଙ୍କ ଯୋଗୁ ମୋ ବିଭାଗ ଅଗ୍ରଗାମୀ କେନ୍ଦ୍ର ରୂପେ କମିଶନ ସ୍ୱୀକୃତି ପାଇଲା ଯଦିଚ ପ୍ରଥମ ଅବସ୍ଥାରେ ଏହାକୁ ଆଉ ପାଞ୍ଚବର୍ଷ ପାଇଁ ଘୁଂଚାଇ ଦେବା ପାଇଁ ନିଷ୍ପତ୍ତି ନିଆସାରିଥିଲା । ପରେ ମୁଁ ଶୁଣିବାକୁ ପାଇଲି ଯେ ଉତ୍କଳ ବିଶ୍ୱବିଦ୍ୟାଳୟର କେତେକ ଅଧ୍ୟାପକ ଓ କୁଳପତି ମଧ୍ୟ ଏହାକୁ କରାଇ ନଦେବା ପାଇଁ ବହୁତ ଉଦ୍ୟମ କରିଥିଲେ । ନୁରୁଲ୍ ହାସାନ ମୋତେ ନେହରୁ ବିଶ୍ୱବିଦ୍ୟାଳୟର କୁଳପତି ହୋଇଯିବା ପାଇଁ ଅନୁରୋଧ କରିଥିଲେ, କିନ୍ତୁ ମୁଁ ମୋର ବିଭାଗକୁ ଗୋଟିଏ ଅଗ୍ରଗାମୀ ଶିକ୍ଷା ଏବଂ ଗବେଷଣା କେନ୍ଦ୍ର କରିବା ପାଇଁ ବଦ୍ଧପରିକର ହୋଇଥିବାରୁ ସେଠାରେ କୁଳପତି ହେବା ପାଇଁ ରାଜି ହୋଇନଥିଲି ।

**ଭି.କେ. କ୍ରିଷ୍ଣମେନନ** - ମୁଁ ଇଂଲଣ୍ଡରେ ୧୯୪୬ ରୁ ୧୯୪୯ ଯାଏଁ ଥିଲି । ପ୍ରଥମ ଅବସ୍ଥାରେ ଭାରତ ସ୍ୱାଧୀନ ହୋଇନଥିଲା । ଭାରତର ସ୍ୱାଧୀନତା ପାଇଁ ନିରବଚ୍ଛିନ୍ନ ସଂଗ୍ରାମ ଇଂଲଣ୍ଡରେ କ୍ରିଷ୍ଣମେନନ କରି ଚାଲିଥିଲେ । ତେଣୁ ତାଙ୍କ ସହିତ ୧୯୪୭ରେ ମୋର ପରିଚୟ ହୋଇଥିଲା ଏବଂ କ୍ରମେ ଘନିଷ୍ଠତା ବଢ଼ିଥିଲା । ସେ ଲଣ୍ଡନରେ ଗୋଟିଏ ଛୋଟିଆ ଘରେ ରହୁଥିଲେ, ଦିନକୁ ବହୁତ ଥର କେବଳ ଚା' ପିଅନ୍ତି । ତାଙ୍କର ସ୍ୱାସ୍ଥ୍ୟ କେବେ ଭଲ ରହୁ ନଥିଲା ।

ତାପରେ ସେ ଭାରତର ରକ୍ଷାମନ୍ତ୍ରୀ ହିସାବରେ ଯୋଗ ଦେଇଥିଲେ । ମନ୍ତ୍ରୀ ଥିଲାବେଳେ ମୋର ତାଙ୍କ ସହିତ କେବେ ଦେଖା ହୋଇନଥିଲା । କାରଣ ମୁଁ ପ୍ରାୟ ମନ୍ତ୍ରୀମାନଙ୍କୁ ଦେଖା

କରିବା ପାଇଁ ଆଗ୍ରହୀ ନଥିଲି । ୧୯୬୨ ଚାଇନା ଆକ୍ରମଣ ପରେ ସେ ପ୍ରବଳ ବିରୋଧର ସମ୍ମୁଖୀନ ହେଲେ ଏବଂ ପରେ ପରେ ସେ ମନ୍ତ୍ରୀତ୍ୱରୁ ଅବ୍ୟାହତି ନେଲେ । ମନ୍ତ୍ରୀପଦରୁ ଗଲା ପରେ ମୋର ତାଙ୍କ ସହିତ କେତେଥର ଦେଖାହୋଇଛି । ସାଧାରଣତଃ ସକାଳ ଭୋଜନ ପାଇଁ ସେ ମୋତେ ନିମନ୍ତ୍ରଣ କରନ୍ତି ।

ଭାରତ ପାଇଁ ଜୀବନ ସାରା ଲଢ଼ି ଆସିଥିବା କ୍ରିଷ୍ଣମେନନ ମନ୍ତ୍ରୀ ପଦରୁ ଇସ୍ତଫା ଦେଲା ପରେ ଭାରତର ପ୍ରଚଳିତ କଳୁଷିତ ରାଜନୀତି ପ୍ରତି ତାଙ୍କର ତିକ୍ତ ବିତୃଷ୍ଣା ଦେଖା ଦେଇଥିଲା । ସେ ଶେଷ ପର୍ଯ୍ୟନ୍ତ ନେହେରୁଙ୍କର ପ୍ରିୟପାତ୍ର ଥିଲେ, କିନ୍ତୁ ଆଉ କେତେକ କଂଗ୍ରେସୀ ନେତାଙ୍କ ମେନନଙ୍କ ବିରୁଦ୍ଧରେ ଗଭୀର ଷଡ଼ଯନ୍ତ୍ର ଓ ବିକ୍ଷୋଦ୍‌ଗାର ଯୋଗୁ ତାଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା । ତାଙ୍କ ନାମରେ ନିରାପତ୍ତା ବିଭାଗ ପାଇଁ ଜୀପ କିଣା ନେଇ ବହୁ ବିଭ୍ରାନ୍ତିକର କଥାମାନ କୁହା ହେଉଥିଲା । ସେ ମୋତେ କହିଥିଲେ ଯେ ତାଙ୍କର ପୃଥିବୀର କୌଣସି ସ୍ଥାନରେ ମଧ୍ୟ ଘରଟିଏ ନାହିଁ - ସଂପତ୍ତି ନାହିଁ– ଅଥଚ ଦୁର୍ନୀତିଗତ ଅର୍ଥ ଉପାର୍ଜନ ଲାଗି ତାଙ୍କ ନାମରେ ବହୁ ବଦନାମ ହେଉଥିଲା । ତାର ଉପଯୁକ୍ତ ବିଚାର ପାଇଁ ସେ ବରାବର ଦାବି କରୁ ଆସୁଥିଲେ ।

ସେ ଜଣେ ବଳିଷ୍ଠ ବାମପନ୍ଥୀ ଲୋକ ଥିଲେ । କିନ୍ତୁ ଭାରତର ବାମପନ୍ଥୀ ଲୋକଙ୍କୁ ସେ ଅବିଶ୍ୱସନୀୟ ଓ ଆନ୍ତରିକତାହୀନ ରାଜନୀତିର ଲୋକ ବୋଲି କହୁଥିଲେ । ଏମାନଙ୍କର ବାମପନ୍ଥୀ ଦୃଷ୍ଟିଭଙ୍ଗୀ ପ୍ରତି ସେ କଠୋର ସମାଲୋଚକ ଥିଲେ । ଭାରତ ଛାଡ଼ ଆନ୍ଦୋଳନ ସମୟରେ ସେମାନଙ୍କର ବ୍ୟବହାର ସେ ପସନ୍ଦ କରୁନଥିଲେ । ମନ୍ତ୍ରୀତ୍ୱରୁ ଗଲା ପରେ ଅଳ୍ପଦିନ ଭିତରେ ହିଁ ତାଙ୍କର ଦେହାନ୍ତ ହୋଇଥିଲା ।

**ଡକ୍ଟର ସି.ଡି. ଦେଶମୁଖ** - ଡକ୍ଟର ଦେଶମୁଖ ଭାରତର ପୁରୁଣା ଆଇ.ସି.ଏସ୍. ଅଫିସର ଥିଲେ । କିନ୍ତୁ ନେହରୁଙ୍କ ମନ୍ତ୍ରୀମଣ୍ଡଳରେ ସେ ବିତ୍ତମନ୍ତ୍ରୀ ଥିଲେ– ରିଜର୍ଭ ବ୍ୟାଙ୍କର ଗଭର୍ଣ୍ଣର ବହୁ ବର୍ଷ ଯାଏଁ ଥିଲେ । ତାଙ୍କ ସହିତ ମୋର ଘନିଷ୍ଠ ବଂଧୁତା ହୋଇପାରିଥିଲା । ସେ ମନ୍ତ୍ରୀପଦ ଛାଡ଼ିଲା ପରେ କିଛିଦିନ ଦିଲ୍ଲୀ ବିଶ୍ୱବିଦ୍ୟାଳୟର କୁଳପତି ଏବଂ ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନର ଚେୟାରମ୍ୟାନ୍ ଥିଲେ । ଏସବୁ ପଦବୀ ପରେ ସେ ଗୋଟିଏ ଶକ୍ତିଶାଳୀ ସାମାଜିକ ଗବେଷଣା କେନ୍ଦ୍ର ଦିଲ୍ଲୀରେ ସ୍ଥାପନ କରିଥିଲେ Council of Social Research । ସେ India International Centre ର ସଭାପତି ଥିଲେ । ଏପରି ସମୟରେ ତାଙ୍କ ସହିତ ମୋର ପରିଚୟ । କେୟାର ସଂସ୍ଥାର ବିଦ୍ୟାଳୟମାନଙ୍କରେ ଖାଦ୍ୟ ବିତରଣ ପାଇଁ ପ୍ରତିବର୍ଷ ବହୁ କୋଟି ଟଙ୍କା ଖର୍ଚ୍ଚ ହୁଏ । ତାର ପ୍ରକୃତ ବିନିଯୋଗ ନେଇ ଯୁକ୍ତରାଷ୍ଟ୍ର ଆମେରିକା ସରକାରଙ୍କ ତରଫରୁ ଡକ୍ଟର ଦେଶମୁଖଙ୍କ ଗବେଷଣା କେନ୍ଦ୍ରକୁ ଗୋଟିଏ ବଡ଼ ଧରଣର ଗ୍ରାଣ୍ଟ ଯୋଗାଇ ଦେଇଥିଲେ । ଏହି ଗବେଷଣା ପରିଚାଳନା ଲାଗି ଡକ୍ଟର ଦେଶମୁଖ ମୋତେ ନିଯୁକ୍ତି ଦେଇଥିଲେ । ସେ ସଂପର୍କରେ ସେ ଦୁଇଥର ଓଡ଼ିଶାକୁ ଆସିଥିଲେ । ସେତେବେଳେ ଡକ୍ଟର ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ଏହି ଗବେଷଣାଟି ନିର୍ଦ୍ଦିଷ୍ଟ ସମୟ ଭିତରେ କଠୋର ଗବେଷଣା ପ୍ରଣାଳୀ ମାଧ୍ୟମରେ ସାଧିତ ହୋଇପାରିଥିଲା । ଏଥିରେ ଡକ୍ଟର ଦେଶମୁଖ ଏତେ ଖୁସି ହୋଇଯାଇଥିଲେ ଯେ ମୋତେ ତାଙ୍କର ଦିଲ୍ଲୀ ଅନୁଷ୍ଠାନର ଗବେଷଣା ଡିରେକ୍ଟର ହୋଇଯିବା ଲାଗି ଅନୁରୋଧ କରିଥିଲେ । ମୁଁ ପାଉଥିବା ଦରମାର ଦୁଇଗୁଣ ଏବଂ ମାଗଣା ଘର ଓ ଗାଡ଼ି ଦିଲ୍ଲୀରେ ଦେବାର ପ୍ରତିଶ୍ରୁତି ରହିଥିଲା । ମୁଁ କିନ୍ତୁ ମୋର ମନସ୍ତତ୍ତ୍ୱ ବିଭାଗର

ଉନ୍ନତି ପ୍ରତି ଏତେ ବେଶୀ ବଦ୍ଧ ପରିକର ଥିଲି ଯେ ଏ ପ୍ରକାର ଲୋଭନୀୟ ପଦବୀକୁ ଗ୍ରହଣ କରିପାରିଲି ନାହିଁ । ଏଥିରେ ଡକ୍ଟର ଦେଶମୁଖ ଆଶ୍ଚର୍ଯ୍ୟ ହୋଇଥିଲେ ଏବଂ ମୋର ଜଣେ ବଳିଷ୍ଠ ପ୍ରଶଂସକ ଭାବେ ଜୀବନ ସାରା ରହିଯାଇଥିଲେ । ସେ India International Centreର ସଭାପତି ହିସାବରେ ମୋତେ ସେହି କେନ୍ଦ୍ରର ଅତିଥି ଭବନରେ ଜଣେ ସ୍ଥାୟୀ ଅତିଥି ହିସାବରେ ପ୍ରଚଳିତ ଦୈନିକ ଭଡ଼ାର ଏକ ଚତୁର୍ଥାଂଶ ଅନୁପାତରେ ରହିବାର ବନ୍ଦୋବସ୍ତ କରିଦେଇଥିଲେ । ମୁଁ ପ୍ରତି ମାସରେ ଦୁଇ ତିନିଥର ଦିଲ୍ଲୀ ଯାଏ ଏବଂ ସେଥିରେ ଅତିଥି ହୁଏ ଏବଂ ତାଙ୍କ ସହିତ ସେହି ଅନୁଷ୍ଠାନର ଖାଇବା ହଲ୍‌ରେ ସକାଳ ଓ ମଧ୍ୟାହ୍ନ ଭୋଜନ କରେ ।

ତାଙ୍କ ସହିତ କଥାବାର୍ତ୍ତା କରିବାରେ ମୋତେ ପ୍ରଚୁର ଆନନ୍ଦ ମିଳେ । ଭାରତୀୟ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସେ ଜଣେ ପ୍ରଖ୍ୟାତ ଜ୍ଞାନୀ ଥିଲେ । ସଂସ୍କୃତ ଶ୍ଳୋକ ସବୁ ଅନର୍ଗଳ ଭାବରେ ତାଙ୍କ ମୁହଁରୁ ବାହାରି ଆସେ । ସେ ଦିଲ୍ଲୀରୁ ଅବସର ନେଇ ହାଇଦରାବାଦରେ ଯାଇ ରହିଲେ । ସେଠାକୁ ଗଲେ ତାଙ୍କ ଘରକୁ ମୁଁ ଯାଏ-ବହୁତ ସମୟ କଥାବାର୍ତ୍ତାରେ କଟେ । ହାଇଦରାବାଦରେ ତାଙ୍କର ଦେହାନ୍ତ ହେଲା ।

ଭାରତୀୟ ସ୍ତରରେ ଏହିପରି ଅନେକ ବିଶିଷ୍ଟ ଲୋକଙ୍କ ସହିତ ମୋର ଆଳାପ ପରିଚୟ ଥିଲା । ସେମାନଙ୍କ ଭିତରୁ ମାତ୍ର କେତେଜଣ ଉଲ୍ଲେଖନୀୟ ସ୍ମୃତିର ଅଳିଭା ଛାଇ ବିଷୟରେ ଲେଖିଲି ।

ଓଡ଼ିଶାର ବିଶିଷ୍ଟ ଲୋକଙ୍କ ବିଷୟରେ ଆଗରୁ ଲେଖିଛି । ରାଜନୀତି ଲୋକଙ୍କ ଭିତରୁ ନବକୃଷ୍ଣ ଚୌଧୁରୀ, ବିଜୁ ପଟ୍ଟନାୟକ ଓ ସମାଜ ସଂପାଦକ ରାଧାନାଥ ରଥଙ୍କ ବିଷୟରେ ଆଗରୁ ଲେଖିଛି । ରାଧାନାଥ ରଥଙ୍କର ମୃତ୍ୟୁର ଅଳ୍ପଦିନ ପୂର୍ବରୁ ସେ ମୋର ହାତକୁ ଆଉଁସି ଆଉଁସି କହିଥିଲେ, ''ଡକ୍ଟର ରଥ, ଆପଣଙ୍କୁ ଓଡ଼ିଶାରେ କେହି ଚିହ୍ନିପାରିଲେ ନାହିଁ । ଅନ୍ୟ ରାଜ୍ୟରେ ଥିଲେ ଆପଣ ବହୁତ ଉପରକୁ ଉଠି ପାରିଥାଆନ୍ତେ ।'' ଅଥଚ ଏହି ମହାନୁଭବ ବ୍ୟକ୍ତିଙ୍କ ସହିତ ବହୁ ବର୍ଷ ପୂର୍ବେ ମୋର ତୀବ୍ର ମନୋମାଳିନ୍ୟ ହୋଇଥିଲା ।

ଲେଖକମାନଙ୍କ ଭିତରୁ ମୋର ଆନ୍ତରିକ ସୌହାର୍ଦ୍ଦ୍ୟ ବଢ଼ି ଉଠିଥିଲା କାଳିନ୍ଦୀ ଚରଣ ପାଣିଗ୍ରାହୀ- ବୈକୁଣ୍ଠନାଥ ପଟ୍ଟନାୟକ, ବିଶ୍ୱନାଥ କର, ହରିହର ମହାପାତ୍ର, ରାଧାମୋହନ ଗଡ଼ନାୟକ, ମାୟାଧର ମାନସିଂହ ଏବଂ ଆହୁରି କେତେକ କନିଷ୍ଠ ଲେଖକଙ୍କ ସହିତ । ଅବସର ସମୟରେ ବେଳେ ବେଳେ ଏମାନଙ୍କର ସ୍ମୃତିଚାରଣ ବହୁତ ଆନନ୍ଦ ଦିଏ—ନାନା ବିଷୟରେ ପ୍ରେରଣା ଏବଂ ଉତ୍ସାହ ମନ ଭିତରେ ଆଣିଦିଏ ।

■ ■ ■

## ୭

# ମୋତେ ଲେଖା ମାଡ଼େ ତେଣୁ ଲେଖେ

ଓଡ଼ିଶାରେ ଲେଖକମାନେ ତ କୌଣସି ଆର୍ଥିକ ପ୍ରାପ୍ୟ ଆଶାରେ କିମ୍ବା ଜୀବିକା ନିର୍ବାହ ପାଇଁ ଲେଖନ୍ତି ନାହିଁ । ଲେଖାଲେଖି କରିବାର ସଉକି କେତେଜଣଙ୍କର ଥାଏ । ସେମାନଙ୍କ ପାଇଁ ଏହା ଗୋଟିଏ ପ୍ରକାରର ବୌଦ୍ଧିକ ବିଳାସିତା । ମୋର ମଧ୍ୟ ପିଲାଦିନୁ ଏପରି ସଉକି ଆରମ୍ଭ ହୋଇଥିଲା । ସ୍କୁଲରେ ପଢ଼ିଲାବେଳେ ଗୋଟିଏ ଦ୍ୱିମାସିକ ହାତ ଲେଖା ପତ୍ରିକା ଆରମ୍ଭ କଲୁ । ସେଥିରେ ଆମେ କେତେଜଣ ଲେଖୁ । ମଝି ମଝିରେ ସାହସ ବାନ୍ଧି ଛାତ୍ରବତ୍ସଳ ମୋର ଶିକ୍ଷକ ସ୍ୱର୍ଗୀୟ ବୈକୁଣ୍ଠନାଥ ପଟ୍ଟନାୟକଙ୍କଠାରୁ ଶୁଭେଚ୍ଛା ଆଣୁ । ତାପରେ ଆଇ.ଏ. ପଢ଼ିଲାବେଳେ ଆମେ କେତେଜଣ ମିଶି ଗୋଟିଏ ଉଚ୍ଚ ଧରଣର ସାହିତ୍ୟ ପତ୍ରିକା 'ଆରତି' ନାମରେ ଶ୍ରୀ ସଚ୍ଚି ରାଉତରାଙ୍କ ସଂପାଦନାରେ ପ୍ରାୟ ଛଅମାସ ଚଳାଇଲୁ । ତାପରେ ଆମେ ସମସ୍ତେ ଛିନିଛତ୍ର ହୋଇଥିଲୁ । ଆଇ.ଏ. ପରେ ୧୯୩୯ରେ ମୁଁ ପାଟନା ଚାଲିଗଲି । ତାପରେ ଏ କାଗଜ ବନ୍ଦ ହୋଇଗଲା । ଏ ପ୍ରକାର ପତ୍ରିକା ପ୍ରକାଶ କରିବା ସଉକ ୧୯୬୪ ମସିହାରେ ସାମ୍ମୁଖ୍ୟ ମାସିକ ପତ୍ରିକା ମାଧ୍ୟମରେ ଆତ୍ମପ୍ରକାଶ କଲା । ତାହା ପ୍ରାୟ ପାଞ୍ଚବର୍ଷ ଯାଏଁ ଚାଲିଥିଲା । ଏହା ଗୋଟିଏ ଉଚ୍ଚକୋଟୀର ମାସିକ ପତ୍ରିକା ହିସାବରେ ଖ୍ୟାତି ଲାଭ କରିଥିଲା ।

ଏହି ଲେଖାଲେଖି ସଉକି ଯୋଗୁ ମୁଁ ପାଟନା କଲେଜରେ ବି.ଏ., ଏମ୍.ଏ. ପଢୁଥିଲା ବେଳେ ପାଟନା କଲେଜ ମେଗାଜିନ୍‌ରେ ଇଂରେଜୀରେ ଲେଖୁଥିଲି-ମୋର ମନେ ପଡୁଛି Poet, lover and Insane ଏହାର ଶୀର୍ଷକ ଥିଲା । ଏଥିପାଇଁ ମୁଁ ଗୋଟିଏ ରୌପ୍ୟ ପଦକ ଏବଂ ପାଟନାର ଓଡ଼ିଆ ସମାଜ ତରଫରୁ ମଧ୍ୟ ଦୁଇଟି ରୌପ୍ୟ ପଦକ ପାଇଥିଲି । ୧୯୪୪ ମସିହା ପର୍ଯ୍ୟନ୍ତ ମୋର କବିତା ଲେଖିବାର ସଉକ ରହିଥିଲା ।

୧୯୪୮ ମସିହାରେ ପ୍ରଥମ ଲେଖା 'ଲଣ୍ଡନ ଚିଠି' ଶୀର୍ଷକ ପ୍ରବଂଧ ଗୋପବନ୍ଧୁ ଶ୍ରାଦ୍ଧ ବାର୍ଷିକୀ ସଂଖ୍ୟାରେ ପ୍ରକାଶ ପାଇଲା । ଏହା ମୋର ବିଲାତ ଡାଏରିର ପ୍ରଥମ ପ୍ରବନ୍ଧ ହିସାବରେ ରହିଛି । 'ନାନା ଦେଶ ନାନା' କଥା ଶୀର୍ଷକ ବିଶ୍ୱ ଭ୍ରମଣ ବହିରେ ଏହା ସ୍ଥାନ ପାଇଛି । ତାପରେ ପ୍ରତିବର୍ଷ ସମାଜ ଓ ବିଭିନ୍ନ ପତ୍ରପତ୍ରିକାରେ ଲେଖିବାରେ ଆଗ୍ରହ ହେଲା । 'ଆମର ଭୁଲ୍ କେଉଁଠି' ନାମରେ ବହୁ ଲେଖା ସମାଜରେ ପ୍ରକାଶିତ ହେଲା ପରେ ତାହା ବହି ଆକାରରେ

ଓଡ଼ିଶା ପବ୍ଲିସିଂ ହାଉସ୍ ପ୍ରକାଶ କଲା । ତାପରେ ସେ ପ୍ରେସ୍ ଉଠିଗଲା ଏବଂ ମୋ ବହିଟିର ମଧ କୌଣସି ଚିହ୍ନବର୍ଣ୍ଣ ରହିଲା ନାହିଁ । ତାପରେ ଖବର କାଗଜରେ 'ଆଗକୁ ନା ପଛକୁ' ବିଷୟରେ ଲେଖାମାନ ପ୍ରକାଶ ପାଇଲା ପରେ ଏସବୁ ବହି ଆକାରରେ ପ୍ରକାଶ ପାଇଲା । ତାହା ମଧ କିଛି ବର୍ଷ ପରେ ଲୀନ ହୋଇଗଲା ।

ସେହିପରି ବହୁ ଖବରକାଗଜରେ ଧାରାବାହିକ ଭାବରେ ଅନେକ ଲେଖା ବାହାରୁଛି । ବର୍ତ୍ତମାନ ସୁଦ୍ଧା ପ୍ରାୟ ତିନିଶହଯାଏ ଏପରି ଲେଖା ହେବ । କିନ୍ତୁ ତାର କୌଣସି ବିଧିବଦ୍ଧ ସଂଗ୍ରହ ହୋଇପାରିନାହିଁ ।

ଖବର କାଗଜରେ ବାହାରୁଥିବା ଲେଖାମାନ ସାଂପ୍ରତିକ ରାଜନୀତି, ଅର୍ଥନୀତି, ଶିକ୍ଷାନୀତି ପ୍ରଭୃତି ବିଷୟରେ ତୀବ୍ର ସମାଲୋଚନାପୂର୍ଣ୍ଣ ଲେଖା । ମୋର ଚାକିରି ଜୀବନର ଆରମ୍ଭରୁ ଯେତେବେଳେ ମୁଁ ସିଦ୍ଧାନ୍ତ ନେଲି ଯେ ସରକାରୀ ସ୍ତରରେ କୌଣସି ଉଚ୍ଚପଦସ୍ଥ ଅଧିକାରୀଙ୍କର କୃପାର ପାତ୍ର ହେବିନାହିଁ— ତେଣୁ ଲୋଚାକୋଚା ହୋଇ ଚଳିବାର ଆବଶ୍ୟକତା ମୋର ରହିଲା ନାହିଁ । ମୋର ଯାହା ମତ ତାକୁ ସ୍ପଷ୍ଟ ଭାବରେ ପ୍ରକାଶ କରେ । ଉଦାହରଣସ୍ୱରୂପ ମୁଁ ବରାବର କହିଆସୁଛି ଯେ ସ୍ୱାଧୀନତା ଭାରତବର୍ଷରେ ସଂପୂର୍ଣ୍ଣ ଭାବରେ ପ୍ରତାରିତ ହୋଇଯାଇଛି । ଗାନ୍ଧୀଜୀଙ୍କୁ କଂଗ୍ରେସୀ ସରକାର ନିରାପତ୍ତା ଯୋଗାଇ ନ ଦେଇ ଜୀବନରେ ଖାଲି ମାରିଦେଇଥିଲେ ତାହା ନୁହେଁ, ତାଙ୍କର ଗ୍ରାମାଂଚଳରେ ସ୍ୱରାଜ ସ୍ଥାପନ ସ୍ୱପ୍ନକୁ ମଧ ମାରିଦେଲେ । ସ୍ୱାଧୀନତାର ସୁଫଳ କେବଳ ଶତକରା କୋଡ଼ିଏ ଭାଗ ଲୋକହିଁ ଉପଭୋଗ କରୁଛନ୍ତି । ସେମାନେ ଅଧିକରୁ ଅଧିକ ଧନୀ ହେଉଛନ୍ତି ଏବଂ ଅଶୀଭାଗ ଲୋକ ଦରିଦ୍ର ହୋଇ ରହିଯାଇଛନ୍ତି । ରାଜନୀତିବାଲାଙ୍କର ଚକ୍ରାନ୍ତ ଯୋଗୁ ଜନତାକୁ ନିରକ୍ଷର କରି ରଖାହୋଇଛି । ଏଥିଯୋଗୁ ହିଁ ପ୍ରାଥମିକ ଶିକ୍ଷା ଓ ସ୍ୱାସ୍ଥ୍ୟ ସମସ୍ତଙ୍କ ପାଇଁ ସଂଭବ ହୋଇପାରୁନାହିଁ । ଏସବୁ ବିଷୟରେ ଆପୋଷହୀନ ମତାମତ ମୁଁ ବହୁବର୍ଷ ହେଲା କାଗଜମାନଙ୍କରେ ଲେଖୁଛି । ଫଳରେ ଶାସକ ଗୋଷ୍ଠୀ ଏବଂ ଅଧିକାଂଶ ରାଜନୀତି ଲୋକ ମୋ ବିରୁଦ୍ଧରେ । କିନ୍ତୁ ସବୁଠୁ ବେଶି ମୋର ଆନନ୍ଦ ଯେ ପ୍ରତ୍ୟେକ ଲେଖା ବାହାରିଲା ପରେ ଚାରିପାଞ୍ଚ ଖଣ୍ଡ ଚିଠି ଏବଂ କିଛି ଟେଲିଫୋନ୍ ମୋର ଭୂୟସୀ ପ୍ରଶଂସା କରନ୍ତି । ତାହା ମୋତେ ବହୁତ ଉତ୍ସାହିତ କରେ ।

ଅବସର ନେବା ପର୍ଯ୍ୟନ୍ତ ମୋର କେତେକ ଲେଖା ପ୍ରବଂଧ ଆକାରରେ ଏବଂ ଭ୍ରମଣ ବୃତ୍ତାନ୍ତସବୁ ଭ୍ରମଣାବଳୀ ହିସାବରେ ପ୍ରକାଶ ପାଇଛି । କେତେକ ପ୍ରବଂଧ ବହି 'ପ୍ରଗତି' ଏବଂ 'ଅଗ୍ରଦୃଷ୍ଟି' ନାମରେ ପ୍ରକାଶ ପାଇଛି । 'ବିଲାତ ଡାଏରି', 'ଆମେରିକା ଡାଏରି' ଏବଂ 'ନବ ସଭ୍ୟତାର' ଦେଶ ନାମରେ କେତେକ ଭ୍ରମଣ ବୃତ୍ତାନ୍ତ ବହି ପ୍ରକାଶ ପାଇଛି । ବର୍ତ୍ତମାନର ବିଶ୍ୱର ବହୁ ଦେଶର ଭ୍ରମଣ ବୃତ୍ତାନ୍ତକୁ ନେଇ ଗୋଟିଏ ବଡ଼ ଗ୍ରନ୍ଥ 'ନାନା ଦେଶ ନାନା କଥା' ଶୀର୍ଷକ ବହି ନିକଟରେ ପ୍ରକାଶ ପାଇଛି ।

ମନସ୍ତାତ୍ତ୍ୱିକ ବିଷୟ ନେଇ ଅନେକଗୁଡ଼ିଏ ବହି ବାହାରିଛି ଏବଂ ସେସବୁର ବହୁ ସଂସ୍କରଣ ହୋଇଯାଇଛି । ବର୍ତ୍ତମାନ କେବଳ ଦୁଇଖଣ୍ଡି ବହି 'ଆମେ ଆମ ପିଲା' ଓ 'ଆମେ ଆମ ମନ' ନାମରେ ପ୍ରଚଳିତ ରହିଛି । ଆମର ଖେଳ ମାଧମ ସ୍କୁଲର ଶିକ୍ଷିକା ତାଲିମ ପାଇଁ ଆସୁଥିବା

ଛାତ୍ରୀ ଏବଂ ବାପମାଙ୍କ ପାଇଁ ଏହାର ଆବଶ୍ୟକତା ରହିଛି । ଯାହାହେଉ, ଏହି ଦୁଇଟି ବହି ବହୁଳ ଭାବରେ ବିକ୍ରି ହେଉଛି ବୋଲି ଶୁଣିବାକୁ ମିଳେ । ବର୍ତ୍ତମାନ ମୋର ସବୁ ବହିର ପ୍ରକାଶକ ଶ୍ରୀ ଗିରିଜା କୁମାର ବଳୀୟାର ସିଂହ ।

ଭଲ ପାଇବା ବିଷୟ ନେଇ ଉପନ୍ୟାସ ଲେଖିବା ବିଷୟରେ ମୋର ଗୋଟିଏ ଅଦ୍ଭୁତ ଅନୁଭୂତି । ସାଧାରଣତଃ ଯୁବକ ବୟସରେ ପ୍ରାୟ ଉପନ୍ୟାସ ଲେଖାଯାଏ । କାରଣ ପ୍ରେମାବେଗର ଉଦ୍‌ବେଳନ ସମୟରେ ହିଁ ଉପନ୍ୟାସର ନାୟକ ନାୟିକାମାନଙ୍କ ବିଷୟରେ କଳ୍ପନା କରିହୁଏ । ପଞ୍ଚାନବେ ମସିହା ବେଳକୁ ଅକସ୍ମାତ୍ ଯୁବ ଲେଖକ ଓ ପ୍ରକାଶକ ଶ୍ରୀଯୁକ୍ତ ଗିରିଜା କୁମାର ବଳୀୟାର ସିଂହଙ୍କ ସହିତ ମୋର ପରିଚୟ ହୁଏ । ତାଙ୍କ କାବ୍ୟିକ ସ୍ୱପ୍ନ ଏବଂ ପ୍ରେରଣାର ଉତ୍ସ ମୋତେ ଅନୁପ୍ରାଣିତ କଲା । ମୁଁ ମୋ ଜୀବନୀରେ କେତୋଟି ଚରିତ୍ର ବିଷୟରେ ଉଲ୍ଲେଖ କରିଥିଲି । ଏପରି ବିଚିତ୍ର ଚରିତ୍ରଗୁଡ଼ିକୁ ବିସ୍ତାରିତ କରିବା ପାଇଁ ସେ ମୋତେ ବାରମ୍ବାର ଅନୁରୋଧ କଲେ । ମୁଁ ଉପନ୍ୟାସ ଲେଖା ଆରମ୍ଭ କଲି ଏବଂ ୧୯୯୫ ମସିହାରେ ଆରମ୍ଭ କରି ୧୯୯୯ ପର୍ଯ୍ୟନ୍ତ ପାଞ୍ଚଟି ଉପନ୍ୟାସ ଲେଖିଲି । ସେଗୁଡ଼ିକ ବିଶେଷ ଭାବରେ ଆଦୃତ ହେବା ଯୋଗୁ ମୋର ଏଥିରେ ଉତ୍ସାହ ବଢ଼ିଯାଇଥିଲା । ମୋର ପାଣ୍ଡୁଲିପି ପ୍ରସ୍ତୁତ ହେଲାକ୍ଷଣି ଗିରିଜା ବାବୁ ତାର ଛପାଇବା କାମ ସାଙ୍ଗେ ସାଙ୍ଗେ ଆରମ୍ଭ କରିଦେଉଥିଲେ । ମୋଟାମୋଟି ଭାବରେ କହିବାକୁ ଗଲେ ମୋର ଉପନ୍ୟାସ ଲେଖିବାରେ ଗିରିଜା ବାବୁଙ୍କର ପ୍ରେରଣା ଓ ଉତ୍ସାହ ଯେ ଅନବଦ୍ୟ ଆଦିଶକ୍ତି, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ତେଣୁ ମୋର ପରିଣତ ବୟସରେ ଉପନ୍ୟାସ ଲେଖା ପାଇଁ ସେ ସଂପୂର୍ଣ୍ଣ ଦାୟୀ କହିଲେ ଅତ୍ୟୁକ୍ତି ହେବନାହିଁ ।

ଉପନ୍ୟାସ ଲେଖିବାରେ ଆଉ ଗୋଟିଏ ଦୁଃଖଦାୟକ ଘଟଣା ଯେ ସାମାନ୍ୟ କେତେକ ପ୍ରତିଷ୍ଠିତ ଔପନ୍ୟାସିକ ଏବଂ କବିତା ଲେଖକ ହଠାତ୍ ମୋ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଦେଲେ ଯେ ପରିଣତ ବୟସରେ ମୋର ଉପନ୍ୟାସ ଲେଖିବା ଠିକ୍ ହେଉନାହିଁ । କିନ୍ତୁ ଆଉ କେତେକ ସମୀକ୍ଷକ ମୋ ବହି ଗୁଡ଼ିକର ଉଚ୍ଚ ପ୍ରଶଂସା କରି ସମୀକ୍ଷାମାନ କାଗଜରେ ପ୍ରକାଶ କରିଛନ୍ତି । ସମାଜ, ସମୟ, ପ୍ରଜାତନ୍ତ୍ର, ଅନୁପମ ଭାରତ, କଥା କଥା କବିତା କବିତା ଏବଂ ଏଷଣା ପରି ଗବେଷଣାତ୍ମକ ପତ୍ରିକାରେ ଏସବୁ ସମୀକ୍ଷା ପ୍ରକାଶ ପାଇଛି । ଏପ୍ରକାର ଉଚ୍ଛ୍ୱସିତ ସମୀକ୍ଷା ଏବଂ ବହୁ ପାଠକପାଠିକାଙ୍କର ଅକୁଣ୍ଠିତ ଶୁଭେଚ୍ଛା ମୋତେ ପାଞ୍ଚଟି ଉପନ୍ୟାସ ଲେଖିବାରେ ଉତ୍ସାହିତ କଲା । ଦୁଇ ଚାରିଜଣ କାହିଁକି ଯେ ମୋର ଉପନ୍ୟାସ ଲେଖିବା ନେଇ ଏତେ ବେଶି ବିବ୍ରତ, ମୁଁ ବୁଝିପାରୁନାହିଁ । ଜଣେ ବିଶିଷ୍ଟ ସମୀକ୍ଷକଙ୍କ ପାଖକୁ ମୋର ଚାରୋଟି ଉପନ୍ୟାସ ପଠାଇଥିଲି । ସେ ଭଦ୍ରଲୋକ ଫୋନ୍‌ରେ ମଧ୍ୟ ମୋତେ ଧନ୍ୟବାଦ ଜଣାଇଲେ ନାହିଁ, ସମୀକ୍ଷା କଥା ତ ଦୂରରେ । ଆଉ ଜଣେ ବିଶିଷ୍ଟ ଲେଖିକା ମୋର 'ସାଗର ସେପାରେ' ଉପନ୍ୟାସକୁ ଏପରି ଉଚ୍ଛ୍ୱସିତ ହୋଇ ପ୍ରଶଂସା କରି ଲେଖିଲେ ଯେ ତାଙ୍କୁ ଆଉ ଦୁଇଟି ଉପନ୍ୟାସ ଦେଲି ସମୀକ୍ଷା ପାଇଁ । ସେ ମୋତେ ଫୋନ୍‌ରେ କହିଲେ ଯେ, ମୋର ଉପନ୍ୟାସ ପଢ଼ିଲା ପରେ ସେ ଏତେ ବେଶୀ ଆବେଗାତ୍ମକ ସ୍ତରକୁ ଚାଲିଯାଇଛନ୍ତି ଯେ କିଛି ସମୟ ତାଙ୍କର ଦରକାର ସମୀକ୍ଷା ସ୍ତରକୁ ଆସିବା ଲାଗି । ଏ ସବୁ ବହିର ସମୀକ୍ଷା ମୋତେ ଅଧିକରୁ ଅଧିକ ଉତ୍ସାହିତ କରିଛି ।

ଆଶ୍ଚର୍ଯ୍ୟର କଥା ଯେ ଯେଉଁମାନେ ମୋର ଉପନ୍ୟାସ ବିରୁଦ୍ଧରେ ମତ ପ୍ରକାଶ କରୁଛନ୍ତି ସେମାନେ ଯଦି ଏହାର ତ୍ରୁଟି ଏବଂ ଦୁର୍ବଳତା ଦେଖାଇ ଆଲୋଚନା କରନ୍ତେ ମୁଁ ବେଶି ଖୁସି

ହୁଅନ୍ତି । କିନ୍ତୁ ସେ ସବୁ ପଢ଼ିଛନ୍ତି ବିନା ସଂଦେହ । କେତେକ ମଧ କହନ୍ତି ଯେ ପଢ଼ି ସମୟ ନଷ୍ଟ କରିବାରେ ଲାଭ କଅଣ । ତାଙ୍କର ଉପନ୍ୟାସ ଲେଖିବା ଅନୁଚିତ । କେତେକ ଓଡ଼ିଆ ଲେଖକଙ୍କର ଏପ୍ରକାରର ଯୁକ୍ତି ନିଶ୍ଚିତ ଭାବରେ ଅଦ୍ଭୁତ । ବୋଧହୁଏ ଏହି ଗୋଟିଏ ଜାତୀୟ ଦୁର୍ଗୁଣ ଯୋଗୁ ଓଡ଼ିଆ ଲେଖାମାନ ଭାରତୀୟ ଜାତୀୟ ସ୍ତରକୁ ଆସିପାରୁନାହିଁ ।

ମୋଟାମୋଟି ଭାବରେ ସାହିତ୍ୟିକ କିଂବା ଔପନ୍ୟାସିକ ହୋଇ ନାମ କରିବା ମୋର ଆଦୌ ଅଭିଳାଷ ନୁହେଁ । ମୋତେ ଲେଖା ମାଡ଼େ - ତେଣୁ ମୁଁ ଲେଖିଯାଉଛି । ଜାତୀୟ ସ୍ତରରେ ମୋର ପ୍ରଶଂସା ହେବା ଉଦ୍ଦେଶ୍ୟରେ ମୁଁ ଲେଖେ ନାହିଁ କି ସେ ବିଷୟରେ ନାନା ପ୍ରକାରର ଆୟୋଜନ ମଧ କରେନାହିଁ । ଯାହାହେଉ ମୋର ଆତ୍ମଜୀବନୀ 'ମୋ ସ୍ୱପ୍ନ ମୋ ଜୀବନ' ୧୯୯୩ରେ ଓଡ଼ିଶା ସାହିତ୍ୟ ଆକାଡେମୀ ପୁରସ୍କାର ପାଇଥିଲା । ମୋର ପ୍ରିୟ ଛାତ୍ର ସ୍ୱର୍ଗୀୟ କୃଷ୍ଣ ପ୍ରସାଦ ମିଶ୍ର ମୋର ଏ ବହିଟିକୁ ପ୍ରକାଶ କରିଥିଲେ । ସେ ମୋତେ ବାରମ୍ବାର ଅନୁରୋଧ କରି ଏହି ଆତ୍ମଜୀବନୀକୁ ଲେଖାଇଥିଲେ । ଯେଉଁଦିନ ଓଡ଼ିଶା ସାହିତ୍ୟ ଆକାଡେମୀ ପୁରସ୍କାର ଘୋଷଣା କଲେ ସେହିଦିନ ସନ୍ଧ୍ୟାରେ ସେ ମୋତେ ଫୋନ୍‌ରେ ଜଣାଇଥିଲେ; କିନ୍ତୁ ସାହିତ୍ୟ ଆକାଡେମୀରୁ ମୁଁ ଏହାକୁ ଗ୍ରହଣ କଲା ବେଳକୁ ସେ ଆଉ ଏ ଜଗତରେ ନଥିଲେ । ସେହି ଉତ୍ସବରେ ପ୍ରଥମେ ହିଁ ତାଙ୍କ କଥା ମୋର ମନେପଡ଼ିଥିଲା ।

ଏପ୍ରକାରର ଜାତୀୟ ପୁରସ୍କାର ମୋର ବିନା ଅଜାଣତରେ ବିନା ଧରାଧରିରେ କିପରି ହେଲା, ତାହା ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଏହାର ନିର୍ଣ୍ଣାୟକମାନଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ସେହିପରି ଭାବରେ ମୋର କୌଣସି ପ୍ରଭାବ ନ ଥାଇ ସୁଦ୍ଧା ମୋରା ଚାରୋଟି ଉପନ୍ୟାସ ରାଜା ରାମମୋହନ ରାୟ ଫାଉଣ୍ଡେସନ୍ ଆନୁକୂଲ୍ୟରେ ଓଡ଼ିଶାର ପାଠାଗାର ଉପଯୋଗୀ ପୁସ୍ତକ ହିସାବରେ ଗୃହୀତ ହୋଇଯାଇଥିବା ଯୋଗୁ ଏହାର ନିର୍ଣ୍ଣାୟକମାନଙ୍କଠାରେ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ମୋତେ ଲେଖା ମାଡୁଛି— ଲେଖିବା ପାଇଁ ଭଲ ଲାଗୁଛି— ତେଣୁ ମୁଁ ଲେଖୁଛି । ବାସ୍ ସେତିକିରେ ମୋର ପରମ ଆନନ୍ଦ । ମୋ ଲେଖା ପଢ଼ି ମୁଁ ନିଜେ ବିହ୍ୱଳିତ ହୁଏ । ଲେଖା ପାଇଁ କିମ୍ବା ବହି ପାଇଁ କୌଣସି ଆର୍ଥିକ ଫାଇଦାର ସଂଭାବନା ଓଡ଼ିଶାରେ ନଥିବାରୁ କେବଳ ଲେଖିବାକୁ ଭଲ ଲାଗେ ବୋଲି ଲେଖୁଛି । ବର୍ତ୍ତମାନ ମୋର ପରମ ବନ୍ଧୁ ଶ୍ରୀଯୁକ୍ତ ବଳୀୟାର ସିଂହ ମୋର ସମସ୍ତ ଲେଖାକୁ କେତେଖଣ୍ଡ ଗ୍ରନ୍ଥାବଳୀରେ ପ୍ରକାଶ କରିବା ପାଇଁ ଉଦ୍ୟମ କରୁଛନ୍ତି ।

ମୋର ଆତ୍ମଜୀବନୀ ଏବଂ ଉପନ୍ୟାସ ଗୁଡ଼ିକର ବିଶିଷ୍ଟ ସାହିତ୍ୟିକମାନଙ୍କ ଦ୍ୱାରା ସମୀକ୍ଷାର ଅଳ୍ପ କେତେକ ଅଂଶ ନିମ୍ନରେ ଦିଆହେଲା । ଉପନ୍ୟାସ ଗୁଡ଼ିକର ଉଚ୍ଛ୍ୱସିତ ସମୀକ୍ଷା ସତ୍ତ୍ୱେ ମୁଁ ଆଉ ଓଡ଼ିଶାର ଔପନ୍ୟାସିକ ଦଳଭୁକ୍ତ ହୋଇପାରିଲି ନାହିଁ । ଅବଶ୍ୟ ସେଥିପାଇଁ ମୁଁ ଆଦୌ ଦୁଃଖିତ ନୁହେଁ - ତଥାପି ଜୀବନରେ ଅନୁଭବ କରିଥିବା କେତେକ ଘଟଣା ଉପରେ ପର୍ଯ୍ୟବସିତ ଆହୁରି କେତୋଟି ଉପନ୍ୟାସ ଲେଖିବାର ଅଭିଳାଷ ରହିଛି । ସମସ୍ତ କଥାବସ୍ତୁ କିଛି ନା କିଛି ସତ୍ୟ ଘଟଣା ଉପରେ ଆଧାରିତ ଯଦିଚ ଏହାର ବିସ୍ତାରଣ କଳ୍ପନାପ୍ରସୂତ ଓ ଆବରଣ ସାହିତ୍ୟିକ ଆଭରଣରେ ରଂଜିତ ହେବା ସ୍ୱାଭାବିକ ।

## ମୋ ସ୍ୱପ୍ନ ମୋ ଜୀବନ

### ଆତ୍ମଜୀବନୀ

ଜୀବନରେ ଯେକୌଣସି କାର୍ଯ୍ୟ ହାସଲ କରିବାକୁ ହେଲେ ନିଷ୍ଠା ବା ଏକାଗ୍ରତା ହିଁ ବିଶେଷ ଭାବରେ ସାହାଯ୍ୟ କରେ । ଆଦର୍ଶଗତ ଦୃଢ଼ତା ବ୍ୟତୀତ କୌଣସି ଭଲ କାମରେ ସଫଳତା ଅର୍ଜନ କରିବା ସହଜ ନୁହେଁ । ଡଃ ରାଧାନାଥ ରଥ (୧୯୨୦) ସାଧୁ ସନ୍ଥ, ବିଶିଷ୍ଟ ଉଦ୍ଭାବକ କିମ୍ବା ରାଜନୀତିକ ନେତା ନୁହନ୍ତି । ଉପରୁ ଦେଖିଲେ ବୈଷୟିକ ଜଗତର ଜଣେ ସାଧାରଣ ସଂସାରୀ । ମାତ୍ର ବାଲ୍ୟକାଳରେ 'ଟକର ଛେଉଣ୍ଡ' ଭାବରେ ଅବହେଳିତ, ଉପହସିତ ହେଉଥିବା ଅଭାବୀ, ଗ୍ରାମ୍ୟ ବାଳକଟି ଭବିଷ୍ୟତରେ ବିଶିଷ୍ଟ ଶିକ୍ଷାବିତ୍ ଓ ମନୋବୈଜ୍ଞାନିକ ଭାବରେ ନିଜକୁ ପ୍ରତିଷ୍ଠିତ କରାଇପାରିବା ତଥା ବାଲ୍ୟକାଳର ସ୍ୱପ୍ନକୁ ଭବିଷ୍ୟତ ଜୀବନରେ ସାର୍ଥକ କରିପାରିବା ମୂଳରେ ଯେଉଁ ସୂତ୍ରଟି ନିହିତ, ତାହାର ସନ୍ଧାନ ତାଙ୍କ ଆତ୍ମଜୀବନୀରୁ ମିଳେ । ଜଣେ ବିଶିଷ୍ଟ ମନୋବୈଜ୍ଞାନିକ ଭାବରେ ସେ ଅନୁଭବ କରନ୍ତି ଯେ ହୀନମନ୍ୟତା ସବୁବେଳେ କ୍ଷତିକାରକ ନୁହେଁ । ହୀନମନ୍ୟତା ଭିତରେ ମଧ୍ୟ ବଡ଼ ହେବାର ସ୍ୱପ୍ନ ଲୁଚି ରହିଥାଏ । ତାଙ୍କର ଏହି ଇଚ୍ଛାଶକ୍ତି ହିଁ ତାଙ୍କୁ ବହୁ କ୍ଷେତ୍ରରେ ସଫଳ କରିପାରିଛି । ଲେଖକ କହନ୍ତି, "କେହି କାହାକୁ କ୍ଷମତା ଦିଏ ନାହିଁ । କ୍ଷମତା ହାସଲ କରିବାକୁ ହୁଏ ନିଜର ସାହସିକ ଓ ଫଳପ୍ରଦ କାର୍ଯ୍ୟକଳାପ ମାଧ୍ୟମରେ ।" (ପୃ-୧୭୦) ସାହସ କରି ଆଗକୁ ମାଡ଼ିଗଲେ କାମ କରିବା ଶକ୍ତି ଆପଣା ଛାଏଁ ଆସିଯାଏ । ଏଇ ବିଶେଷ ଗୁଣଟି ଯୋଗୁ ସେ ୧୯୫୩ ମସିହାରେ ଓଡ଼ିଶାରେ ମନୋବିଜ୍ଞାନ ବିଷୟର ସ୍ନାତକ ଶ୍ରେଣୀ ଖୋଲି ୧୯୮୦ ମସିହା ବେଳକୁ ସ୍ନାତକୋତ୍ତର ବିଭାଗ ଭାବରେ ଏହାକୁ ଭାରତର ସର୍ବବୃହତ୍ ଓ ଶ୍ରେଷ୍ଠ ଶିକ୍ଷା ଓ ଗବେଷଣା ବିଭାଗ ରୂପେ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ ଦ୍ୱାରା ସ୍ୱୀକୃତିପ୍ରାପ୍ତ କରାଇପାରିଥିଲେ ।

ଶିକ୍ଷା କ୍ଷେତ୍ରରେ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ବିକାଶ ନିମନ୍ତେ ଗଠିତ କମିଟିରେ ଲେଖକ ଜଣେ ସଭ୍ୟ ଭାବରେ ନିଯୁକ୍ତ ହେଲେ । ପାଠ୍ୟପୁସ୍ତକର ଜାତୀୟକରଣ ସହିତ ନୂତନ ଆଭିମୁଖ୍ୟ-ସମ୍ପନ୍ନ, ମୁଦ୍ରଣତ୍ରୁଟିଶୂନ୍ୟ, ପିଲାଙ୍କ ମନଲାଖି ଚିତ୍ତାକର୍ଷକ ରଙ୍ଗିନ୍ ଛବି ସମ୍ବଳିତ ଉନ୍ନତ ମାନର ପୁସ୍ତକ ପ୍ରଣୟନ ଓ ବିଶେଷ ଧରଣର ଆଧୁନିକ ଛାପାଖାନା ସ୍ଥାପନା ନିମନ୍ତେ ସେ ଦେଇଥିବା ପ୍ରସ୍ତାବ ଅନୁସାରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲେ ମଧ୍ୟ ବିଭିନ୍ନ ଲୋକଙ୍କ ସ୍ୱାର୍ଥରେ ବାଧା ଆସିବାରୁ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ ନ କରିବା ପାଇଁ କେତେକ ଚେଷ୍ଟା କରାଗଲା । କେବଳ ଲେଖକଙ୍କ ଅକ୍ଲାନ୍ତ ପରିଶ୍ରମ ତଥା ଉଦ୍‌ଯୋଗ ଯୋଗୁ ତାହା କାର୍ଯ୍ୟକାରୀ ହେବା ସହିତ ଭୁବନେଶ୍ୱରରେ ନୂତନ ପାଠ୍ୟପୁସ୍ତକ ଛାପାଖାନା ପ୍ରତିଷ୍ଠିତ ହୋଇପାରିଲା । ମାଧ୍ୟମିକ ଶିକ୍ଷା ପରିଷଦର ସଭ୍ୟ ଭାବରେ ଯୋଗ ଦେଇ ବିଶେଷ ଭାବରେ ତିନୋଟି କାର୍ଯ୍ୟ କରିବା ପାଇଁ ସେ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ସେଗୁଡ଼ିକ ହେଉଛି ପୁସ୍ତକ ଜାତୀୟକରଣ, ମାଧ୍ୟମିକ ଶିକ୍ଷା ପରିଷଦର ସ୍ଥାୟୀ ଗୃହ ନିର୍ମାଣ ଓ ବୋର୍ଡ଼ ସ୍କୁଲକୁ ଗୋଟିଏ ମଡ଼େଲ୍ ସ୍କୁଲ ଭାବରେ ପ୍ରତିଷ୍ଠିତ କରାଇବା । ଏହା ମଧ୍ୟରୁ କେବଳ ପୁସ୍ତକ ଜାତୀୟକରଣ କାର୍ଯ୍ୟଟି ବହୁ ବାଧାବିଘ୍ନ ସତ୍ତ୍ୱେ କାର୍ଯ୍ୟକାରୀ ହେଲା ।

ତାଙ୍କରି ଉଦ୍‌ଯୋଗରେ କଟକ ଓ ଭୁବନେଶ୍ୱରରେ ବିଜ୍ଞାନ କଂଗ୍ରେସ ଅଧିବେଶନ ସଫଳ ହେଲା । ମୋଟ କଥା, ନିଜର ସାଙ୍ଗଠନିକ ଦକ୍ଷତା ଯୋଗୁ ହିଁ ସେ ବହୁ କଷ୍ଟସାଧ୍ୟ କାର୍ଯ୍ୟ

ସାଧନ କରିପାରିଛନ୍ତି । ଖ୍ରୀ ୧୯୪୯ରେ ସେ ପ୍ରତିଷ୍ଠା କରିଥିବା 'ବିଜ୍ଞାନ ପ୍ରଚାର ସମିତି' ପରବର୍ତ୍ତୀ ସମୟରେ ଗୋଟିଏ ବିଶିଷ୍ଟ ଅନୁଷ୍ଠାନରେ ପରିଣତ ହୋଇଥିଲା ଓ ବହୁ ଜନପ୍ରିୟ ବିଜ୍ଞାନ ସାହିତ୍ୟ ସୃଷ୍ଟି କରିପାରିଥିଲା ।

ଖ୍ରୀ ୧୯୬୭ରେ ରାଜ୍ୟରେ ଆଉ ଦୁଇଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବା ପାଇଁ ଯେତେବେଳେ ମସୁଧା ହେଲା, ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ପରି ଗୋଟିଏ ଦରିଦ୍ର ଅନୁଷ୍ଠାନ ଭଳି ଆଉ ଦୁଇଟି ଗରିବ ବିଶ୍ୱବିଦ୍ୟାଳୟକୁ ଜନ୍ମ ଦେବା ଯେ ଏକ ବିରାଟ ଶିକ୍ଷାଗତ ବିଭ୍ରାଟ, ଏପରି ମତ ସେ ବ୍ୟକ୍ତ କରିଥିଲେ । କେବଳ ପରୀକ୍ଷା ପରିଚାଳନା ନ କରି ଯଦି ଆବାସିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇପାରିବ, ତେବେ ଓଡ଼ିଶାରେ ଆହୁରି ୩/୪ଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାରେ ତାଙ୍କର କୌଣସି ଆପତ୍ତି ନ ଥିଲା । ଲେଖକ କହନ୍ତି- ''ରାଜନୈତିକ ସିଦ୍ଧାନ୍ତ ଫଳରେ ଆଉ ଦୁଇଟି ରକ୍ତହୀନ ବିଶ୍ୱବିଦ୍ୟାଳୟ ଜନ୍ମ ଲାଭ କଲା । ସମସ୍ତେ ଅନୁଭବ କରୁଥିବେ ଯେ ବର୍ତ୍ତମାନ ମଧ୍ୟ ସେଗୁଡ଼ିକ କିପରି ଦୟନୀୟ ଅବସ୍ଥାରେ ବଞ୍ଚି ରହିଛି । ସେତେବେଳେ ଉଚ୍ଚ ଶିକ୍ଷାରେ ବହୁତ ଟଙ୍କା ମିଳୁଥିଲା । ଗୁଣାତ୍ମକ ଚାରୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇପାରିଥିଲେ ଭାରତରେ ଓଡ଼ିଶାର ଶିକ୍ଷାଗତ ମର୍ଯ୍ୟାଦା କେତେ ବେଶୀ ବଢ଼ି ଯାଇନଥାନ୍ତା ?''

ତାଙ୍କ ମତରେ ବ୍ୟକ୍ତି ନିଜର ଦକ୍ଷତା ଓ କର୍ମନିପୁଣତା ସହିତ ପାରିପାର୍ଶ୍ୱିକ ପରିବେଶକୁ ନିୟନ୍ତ୍ରଣ କରିବାର ଶକ୍ତି ହାସଲ କରିବା ଉଚିତ । ଏହାଦ୍ୱାରା ଉପରକୁ ଉଠିବା ପାଇଁ ନିଜର ବଳିଷ୍ଠ ସାଂଗଠନିକ ମୂଳଭିତ୍ତି ତିଆରି ହୁଏ । ସେହି ଅନ୍ତର୍ନିହିତ ଗୁଣଟି ତାଙ୍କର ବିଲାତ ଯାତ୍ରାଠାରୁ ଆରମ୍ଭ କରି ପିଏଚ୍.ଡି. ଡିଗ୍ରୀ ଲାଭ କରିବା ପର୍ଯ୍ୟନ୍ତ ପ୍ରତ୍ୟେକ କାର୍ଯ୍ୟରେ ସାହାଯ୍ୟ କରିଛି । ବିଲାତ ଯାତ୍ରାଠାରୁ ଆରମ୍ଭ କରି ପ୍ରତ୍ୟେକ କାର୍ଯ୍ୟରେ ଲେଖକଙ୍କର ପ୍ରବଳ ଇଚ୍ଛାଶକ୍ତି ତାଙ୍କୁ ଅଗ୍ରଗାମୀ କରିପାରିଛି । ବାଲ୍ୟକାଳରୁ ଭଗବତ୍ ବିଶ୍ୱାସରେ ଏହି ଇଚ୍ଛାଶକ୍ତି ଅର୍ଜନ କରିବା ପାଇଁସେ ସମର୍ଥ ହୋଇଥିଲେ । କିଶୋର ବୟସରେ ବିଭିନ୍ନ ଦେବଦେବୀଙ୍କର ନାମ ଜପ କରିବା ଅଭ୍ୟାସରୁ ତାଙ୍କର ଏକାଗ୍ରତା ବଢ଼ିଲା; ଯଦିଓ ପରବର୍ତ୍ତୀ ସମୟରେ ସେ ଈଶ୍ୱରଙ୍କ ସ୍ଥିତି ସମ୍ବନ୍ଧରେ ସନ୍ଦିହାନ ହୋଇ ଜପ କରିବା ପରିତ୍ୟାଗ କଲେ, ତଥାପି ଏହି ଅଭ୍ୟାସ ତାଙ୍କର ସମଗ୍ର ଜୀବନରେ ବିଶେଷ ଭାବରେ ପ୍ରଭାବ ପକାଇଥିଲା । ରାମ, କୃଷ୍ଣ, ଜଗନ୍ନାଥ ବା ରାମଚଣ୍ଡୀଙ୍କ ନାମ ନେଇ ଜପ କରିବା ଛାଡ଼ିଥିଲେ ମଧ୍ୟ ଦୀର୍ଘ ପ୍ରାୟ ଚାଳିଶି ବର୍ଷ ଧରି ଯୋଗ କରିଆସୁଥିବା ବିଷୟ ସେ ସ୍ୱୀକାର କରିଛନ୍ତି । ସେ ଉଲ୍ଲେଖ କରିଛନ୍ତି ''ମୋର ବାଲ୍ୟକାଳର ବଳିଷ୍ଠ ଭଗବତ୍ ବିଶ୍ୱାସ ନୂତନ ମାନବୀୟ ପ୍ରେମରେ ପରିଣତ ହେଲା । ଏହି ବିରାଟ ଦିଗ୍‌ଦର୍ଶନ ମୋ ଜୀବନରେ ଗୋଟିଏ ପ୍ରଧାନ ଆତ୍ମିକ ଅନୁଭୂତି, ଯାହାକି ଆଜି ପର୍ଯ୍ୟନ୍ତ ମୋତେ ଆତ୍ମବିଶ୍ୱାସୀ କରିପାରିଛି ଏବଂ ସାମଗ୍ରିକ ଜୀବନକୁ, ଏହି ସୁନ୍ଦର ପୃଥିବୀକୁ, ଧର୍ମ, ବର୍ଣ୍ଣ, ଜାତି ଓ ଦେଶର ବହୁ ଊର୍ଦ୍ଧ୍ୱରେ ଥିବା ଆଦିମାନବ ଆତ୍ମାକୁ ଭଲ ପାଇବାରେ ଅଫୁରନ୍ତ ଶକ୍ତି ଯୋଗାଇ ପାରିଛି ।'' (ପୃ ୧୧୯) ଲେଖକ ଏହି ପ୍ରକାର ମହାମାନବୀୟତାରେ ବିଶ୍ୱାସୀ ହେବାରୁ ସମାଜବାଦ, ବିଶ୍ୱଶାନ୍ତି ପ୍ରଭୃତିରେ ସ୍ୱାଭାବିକ ଭାବରେ ଉଦ୍‌ବେଳିତ ହୋଇଛନ୍ତି ।

ବିଶ୍ୱବିଦ୍ୟାଳୟ ମନସ୍ତତ୍ତ୍ୱ ବିଭାଗର ସର୍ବାଙ୍ଗୀନ ଉନ୍ନତି କରିବା ସହିତ ଛାତ୍ର ଓ ଅଧ୍ୟାପକମାନଙ୍କ ଉଦ୍ଦେଶ୍ୟରେ ମନସ୍ତତ୍ତ୍ୱଭିତ୍ତିକ ବହୁ ପୁସ୍ତକ ମଧ୍ୟ ସେ ରଚନା କଲେ । ସାରସ୍ୱତ

କ୍ଷେତ୍ରରେ ତାଙ୍କର ଅବଦାନ ନ୍ୟୂନ ନୁହେଁ । ସେ ସାତଖଣ୍ଡ ପ୍ରବନ୍ଧ, ଗଳ୍ପ ଓ ଭ୍ରମଣବୃତ୍ତାନ୍ତ ମଧ୍ୟ ରଚନା କରିଛନ୍ତି । ଏହି ସାହିତ୍ୟପ୍ରୀତି ଗୁଣଟି ବାଲ୍ୟକାଳରୁ ତାଙ୍କଠାରେ ଜାଗ୍ରତ ହୋଇଥିଲା । କିଶୋର ବୟସରୁ ସେ ଲାଇବ୍ରେରୀ ସ୍ଥାପନ କରିବା ଓ ପତ୍ରିକା ପ୍ରକାଶ କରିବା ଇତ୍ୟାଦି କାର୍ଯ୍ୟରେ ମନୋନିବେଶ କରିଥିଲେ । ପରବର୍ତ୍ତୀ ସମୟରେ 'ସାମ୍ମୁଖ୍ୟ' ପତ୍ରିକା ସମ୍ପାଦନା କରିବା, ଜରୁରୀକାଳୀନ ପରିସ୍ଥିତି ବେଳେ 'ଆଗକୁ ନା ପଛକୁ' ପୁସ୍ତକ ରଚନା କରିବା ଏବଂ ବିଭିନ୍ନ ଦେଶ ଭ୍ରମଣ କରିବା ପରେ ସେହି ଅନୁଭୂତିକୁ 'ବିଲାତ ଡାଏରି', 'ଆମେରିକା ଡାଏରି', 'ନବ୍ୟ ସଭ୍ୟତାର ଦେଶ' ପୁସ୍ତକରେ ସାରସ୍ୱତ ରୂପ ଦେବା ତାଙ୍କ ଲେଖକୀୟ ସତ୍ତାର ପରିଚୟ ଦିଏ ।

ଆଲୋଚ୍ୟ ଆତ୍ମଜୀବନୀରୁ ଲେଖକଙ୍କ ସମ୍ପର୍କରେ ଆସିଥିବା ବିଭିନ୍ନ ବ୍ୟକ୍ତି, ବିଭିନ୍ନ ଘଟଣା ବିଷୟରେ ତଥ୍ୟ ମିଳେ । ନିର୍ଭୀକ ବ୍ୟକ୍ତିତ୍ୱ ଯୋଗୁ ସେହି ବିଷୟଗୁଡ଼ିକୁ ଖୋଲାଖୋଲି ଭାବରେ ବ୍ୟକ୍ତ କରିବାରେ ସେ କୁଣ୍ଠାବୋଧ କରିନାହାନ୍ତି । ଜାପାନ ଓ ଜର୍ମାନୀରେ ଘଟୁଥିବା ବୀଭତ୍ସ ନାରକୀୟ କ୍ରିୟାକଳାପ ଯୋଗୁ ସୁବାଷ ବୋଷଙ୍କର ସେମାନଙ୍କଠାରେ ସାହାଯ୍ୟ ଭିକ୍ଷାକୁ ସେ ଉଦାର ଦୃଷ୍ଟିରେ ଗ୍ରହଣ କରିପାରିନାହାନ୍ତି । ଅହିଂସା ଉପାୟରେ ଭାରତ ସ୍ୱାଧୀନତା ଲାଭ କରିଛି ମତକୁ ମଧ୍ୟ ସେ ଅସ୍ୱୀକାର କରିଛନ୍ତି । ତାଙ୍କ ମତରେ ଯେଉଁମାନେ ଖ୍ରୀ ୧୯୪୨ର ରକ୍ତାକ୍ତ ବିପ୍ଳବ ଓ ବିହାର ବିପ୍ଳବ ଦେଖିଥିବେ, ସେମାନେ ଏପରି ମନ୍ତବ୍ୟ ଉପରେ ବିଶ୍ୱାସ କରିବେ ନାହିଁ । ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର କଂଗ୍ରେସ ନେତା ହୋଇ ମଧ୍ୟ ଭାରତର ସ୍ୱାଧୀନତା ସଂଗ୍ରାମ ବିରୁଦ୍ଧରେ ବିଶ୍ୱାସଘାତକତା କରି ମନ୍ତ୍ରୀ ହୋଇ ବ୍ରିଟିଶ ସରକାରଙ୍କ ସ୍ତବଗାନ କରିଛନ୍ତି ବୋଲି ସେ ମତବ୍ୟକ୍ତ କରିଛନ୍ତି । ତେଣୁ ପାଟଣା ଗସ୍ତବେଳେ ଗୋଦାବରୀଶ ମିଶ୍ରଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିବା ପ୍ରସ୍ତାବକୁ ସେ ଅସ୍ୱୀକାର କରିଥିଲେ ।

ରେଭେନ୍ସା କଲେଜର ଅଧ୍ୟାପକମାନେ ମଦ୍ୟପାନ କରନ୍ତି ବୋଲି 'ସମାଜ ସମ୍ପାଦକ ତଥା ତତ୍କାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥ ବିଧାନସଭାରେ କହିବା ଓ ସେ ସମ୍ବାଦ 'ସମାଜ'ରେ ପ୍ରକାଶିତ ହେବା ଘଟଣାରେ ବହୁ ଅଧ୍ୟାପକ କ୍ଷୁବ୍ଧ ହେଲେ ମଧ୍ୟ କେହି ତାହାର ବିରୋଧ କରିନଥିଲେ । ମାତ୍ର ଲେଖକ ମୁଖ୍ୟମନ୍ତ୍ରୀଙ୍କ ଉପସ୍ଥିତିରେ ଶ୍ରୀଯୁକ୍ତ ରଥଙ୍କୁ କହିଲେ 'କଟକ କ୍ଲବ୍‌ରେ ବଡ଼ ବଡ଼ ଅଫିସରମାନେ ମାଛ ପାଣି ପିଇଲା ପରି ମଦ ପିଇ ଗଡୁଛନ୍ତି । ସେ ବିଷୟରେ ତ କାହିଁକି ବିଧାନସଭାରେ କାହାରି ଦୃଷ୍ଟି ପଡ଼ିଲା ନାହିଁ ? ଆପଣମାନେ ସେମାନଙ୍କୁ ଡରନ୍ତି, ଅଥଚ ବିଚରା ଅଧ୍ୟାପକମାନଙ୍କ ଉପରେ ସବୁ କୋରଡ଼ା ମାଡ଼ ।' (ପୃ ୧୫୨) ଏହାପରେ ଉଭୟଙ୍କ ମଧ୍ୟରେ ତିକ୍ତ ସମ୍ପର୍କ ସୃଷ୍ଟି ହୋଇଥିଲା । ଲେଖକ ଏହାକୁ ସାମନ୍ତବାଦୀ ଅହମିକା ଓ ଅସହିଷ୍ଣୁତା କହି ତାଙ୍କୁ କଟୁ ସମାଲୋଚନା କରିଛନ୍ତି । ମାତ୍ର ପରବର୍ତ୍ତୀ ସମୟରେ ବନ୍ୟା ବାତ୍ୟା ପ୍ରପୀଡ଼ିତ ଜନତାଙ୍କ ସେବା କଲାବେଳେ ରାଧାନାଥ ବାବୁଙ୍କ ମହାନୁଭବତା, ଦୟାଭାବ ଓ ବିଶାଳ ହୃଦୟର ପରିଚୟ ପାଇ ଲେଖକଙ୍କର ତାଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ବଢ଼ିଯାଇଛି । ଏପରି ନିରପେକ୍ଷ ମନ୍ତବ୍ୟ ଆତ୍ମଜୀବନ ଚରିତରେ ସ୍ପୃହଣୀୟ ।

ଓଡ଼ିଶାରେ ଲୋକମାନଙ୍କର ପ୍ରିୟାପ୍ରୀତି ତୋଷଣ ଓ ଜନସ୍ୱାର୍ଥ ମାରଣର ବହୁ ଦୃଷ୍ଟାନ୍ତ ଗ୍ରନ୍ଥରେ ରହିଛି । ଓଡ଼ିଶାର ମନ୍ତ୍ରୀମାନଙ୍କୁ କେନ୍ଦ୍ରର ଅଧସ୍ତନ କର୍ମଚାରୀ ଓ ବୋଲକରା କହି ଲେଖକ କଟୁ ସମାଲୋଚନା କରିଛନ୍ତି । ଥରେ ଲେଖକଙ୍କ ନାମ ଇଉନିଭରସିଟି ମଞ୍ଜୁର କମିଶନର ସଭ୍ୟପଦ ପାଇଁ ଅନୁମୋଦିତ ହୋଇଥିଲା । ଓଡ଼ିଶାର ଜଣେ ଶିକ୍ଷାବିତ୍, ଏକଥା

ଜାଣିବା ପରେ ଜଣେ କେନ୍ଦ୍ରମନ୍ତ୍ରୀଙ୍କ ସାହାଯ୍ୟରେ ଲେଖକଙ୍କ ସ୍ଥାନରେ ତାଙ୍କ ନାମ ଭର୍ତ୍ତି କରିଦେଲେ । ଶେଷରେ ପ୍ରଧାନମନ୍ତ୍ରୀ ବିବାଦୀୟ ଦୁଇଟି ଯାକ ନାମକୁ ଉଠାଇଦେଇ ସେ ସ୍ଥାନରେ ନିଜର ଜଣେ ବନ୍ଧୁଙ୍କ ନାମ ରଖିଲେ । ଦୁଇଜଣଙ୍କ କଳିରେ ତୃତୀୟ ବ୍ୟକ୍ତି ଲାଭବାନ୍ ହେଲେ । ଏପରି ବହୁ ଘଟଣା ଅନେକ ବ୍ୟକ୍ତିଙ୍କ ଜୀବନରେ ଏବେ ଘଟୁଛି । ଏଗୁଡ଼ିକ ଆଜି ବିଶେଷ ଘଟଣା ନୁହେଁ ବରଂ ଏପରି ନ ଘଟିବାକୁ ବିଶେଷ ଘଟଣା ଭାବରେ ଗ୍ରହଣ କରାଯାଇପାରେ । ଲେଖକଙ୍କ ଜୀବନରେ ଏପରି ଅନେକ ଘଟଣା ଆତ୍ମଜୀବନୀର କଳେବର ବୃଦ୍ଧି କରିଛି ।

ନିଜ ରାଜ୍ୟରେ ତାଙ୍କୁ ବିଶେଷ ଖ୍ୟାତି ନ ମିଳିଥିଲେ ହେଁ ଆନ୍ତର୍ଜାତିକ କ୍ଷେତ୍ରରେ ସେ ବହୁ ସମ୍ମାନର ଅଧିକାରୀ ହୋଇପାରିଛନ୍ତି । ଭାରତୀୟ ପ୍ରୟୋଗାତ୍ମକ ମନୋବିଜ୍ଞାନର ସଭାପତି ରୂପେ ତାଙ୍କୁ ସାମାଜିକ ସମ୍ମାନ ଦିଆଯାଇଛି । ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦ ତାଙ୍କୁ ଅବସର ଗ୍ରହଣ ପରେ ପରେ ମର୍ଯ୍ୟାଦାବନ୍ତ ଜାତୀୟ ଫେଲୋ ପଦବୀରେ ଅଧିଷ୍ଠିତ କରିଥିଲେ । ସେ ଓଡ଼ିଶାରୁ ଯେଉଁ ସମ୍ମାନ, ସ୍ୱୀକୃତି ଆଦି ପାଇବା ପାଇଁ ଆଶା କରୁଥିଲେ, ତା'ଠାରୁ ଅଧିକ ବାହାରୁ ପାଇଲେ ।

ସେ ମନ୍ତ୍ରୀ ବା ନେତା ହେବାକୁ ପସନ୍ଦ କଲେନାହିଁ । କାରଣ ସେ ଦର୍ଶାଇଛନ୍ତି— "ଜେଲ୍ ଯାଇଥିଲେ ବର୍ତ୍ତମାନ ଭତ୍ତା ମିଳିଥାନ୍ତା, ପାଠପଢ଼ା ବନ୍ଦ ହେବା ଫଳରେ ରାଜନୀତିରେ ଯୋଗ ଦେଇ ନେତା ଓ ମନ୍ତ୍ରୀ ହୋଇ ମୋର ଆତ୍ମାକୁ ନିର୍ଲଜ୍ଜ ଭାବରେ ବଳି ଦେଇଥାନ୍ତି ।' (ପୃ ୭୭) ମନେହୁଏ କର୍ମନିଷ୍ଠ, ଉଦ୍‌ଯୋଗୀ ଡଃ ରଥ ଦେଶସେବାରେ ହାତ ଦେଇଥିଲେ ସେଥିରେ ମଧ୍ୟ ସେ କୃତକାର୍ଯ୍ୟ ହୋଇଥାନ୍ତେ । ତାଙ୍କର ନେତୃତ୍ୱ ନେବା ଓ ସଂଗଠନ କରିବାରେ ସାମର୍ଥ୍ୟ ଊଣା ନ ଥିଲା ।

ପ୍ରକାଶଭଙ୍ଗୀ ଦୃଷ୍ଟିରୁ ବିଚାରିଲେ, ପୁସ୍ତକଟିରେ ସମାନୁପାତିକତା ସଂରକ୍ଷିତ ହୋଇନାହିଁ । ଆତ୍ମଜୀବନୀର ପ୍ରଥମାର୍ଦ୍ଧରେ ପାରିବାରିକ ପ୍ରସଙ୍ଗ ଯେପରି ଭାବରେ ବର୍ଣ୍ଣିତ, ଦ୍ୱିତୀୟାର୍ଦ୍ଧ ବେଳକୁ ସେପରି ହୋଇପାରିନାହିଁ । ଲେଖକ ବୋଧହୁଏ ଏହା ଅନୁଭବ କରି ପୁସ୍ତକର ଶେଷାଂଶରେ ପରିବାର କଥା ତରବରିଆ ଲେଖିପକାଇଛନ୍ତି । ଆତ୍ମଜୀବନୀର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷା ଓ ଯୁକ୍ତିନିଷ୍ଠ ବିଶ୍ଳେଷଣ ପାଠକର ଦୃଷ୍ଟି ଆକର୍ଷଣ କରେ ।

**—ଡକ୍ଟର ଲାବଣ୍ୟ ନାୟକ** ■ ଏଷଣା— ଚତୁଃତ୍ରିଂଶ ଖଣ୍ଡ-ଜୁନ ୧୯୯୭

## ସାଗର ସେପାରେ

ଉପନ୍ୟାସ

ସମ୍ମାନନୀୟ ପ୍ରଫେସର ଡକ୍ଟର ଶ୍ରୀ ରାଧାନାଥ ରଥ ମହୋଦୟ,

ସାଦର ପ୍ରଣାମ । ଉତ୍କଳ ଭାରତୀଙ୍କ ଗନ୍ତାଘରକୁ 'ସାଗର ସେପାରେ' ଉପହାର ଦେଇଥିବାରୁ ହାର୍ଦ୍ଦିକ ଅଭିନନ୍ଦନ । ଆଜି ସାଗର ସେପାରେର ସ୍ୱନକ୍ଷତ୍ର ଦିବସର ଏହି ସ୍ମରଣୀୟ ସନ୍ଧ୍ୟାରେ ବ୍ୟକ୍ତିଗତ ଭାବେ ଉପସ୍ଥିତ ରହିପାରିଥିଲେ ଆନନ୍ଦିତା ହୋଇପାରିଥାନ୍ତି । ଅପରିହାର୍ଯ୍ୟ କାରଣବଶତଃ ନିଜେ ଉପସ୍ଥିତ ରହିନପାରି ଦୁଃଖିତା । ଆପଣଙ୍କ ନିକଟରୁ ଏବଂ ସୁଧୀବୃନ୍ଦଙ୍କ ନିକଟରୁ କ୍ଷମା ମାଗୁଛି । ଏହି ରସ ସ୍ନିଗ୍ଧ ଉପନ୍ୟାସଟି ପାଠକରି ମୁଁ ଯେଉଁ ଆନନ୍ଦ ଅନୁଭବ କଲି ତାହା ପ୍ରକାଶ ନକରି ରହିପାରୁନାହିଁ । ଦୟା କରି ମୋର ପ୍ରତିକ୍ରିୟା ସମସ୍ତଙ୍କୁ ଜଣାଇବେ ।

କୁହାଯାଏ ଜଣେ ଦାର୍ଶନିକ କବି ନହେଲେ ଚଳେ, ମାତ୍ର ଜଣେ କବି ଦାର୍ଶନିକ ହେବା ଚାହିଁ କଥାଟି ସତ୍ୟ । ଠିକ୍ ସେମିତି ଜଣେ ମନସ୍ତତ୍ତ୍ୱବିତ୍ ଔପନ୍ୟାସିକ ନ ହେଲେ ଚଳେ, ମାତ୍ର ଜଣେ ଔପନ୍ୟାସିକ ମନସ୍ତତ୍ତ୍ୱବିତ୍ ହେବା ଚାହି । ବାଗ୍‌ଦେବୀଙ୍କ କୃପାରୁ ଯେତେବେଳେ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ମନସ୍ତତ୍ତ୍ୱବିତ୍ ଉପନ୍ୟାସଟିଏ ସର୍ଜନା କରନ୍ତି ସେତେବେଳେ ଆଶା କରିବାର କଥା ଯେ, ଉପନ୍ୟାସଟି ପାଠକର ମନୋଭୂମିକୁ କେବଳ ସ୍ପର୍ଶ କରିବ ନାହିଁ, ମନ୍ଥିତ ଏବଂ ମନ୍ତ୍ରିତ ମଧ୍ୟ କରିବ । ପ୍ରଫେସର ରଥ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ମନସ୍ତତ୍ତ୍ୱବିତ୍ । ସେ ପୁଣି ଉପନ୍ୟାସ ରଚନାରେ ବ୍ରତୀ ହୋଇଛନ୍ତି । ସେ ଉପନ୍ୟାସଟି ପାଠକକୁ ଦରିଆ ସେପାରିକୁ ଡାକିନେଇଛି ଏବଂ ବିଦାୟ ମୁହୂର୍ତ୍ତର ଅଶ୍ରାନ୍ତ କ୍ରନ୍ଦନରେ ବିଦଗ୍ଧ ମଧ୍ୟ କରିଅଛି । ଉପନ୍ୟାସ ଏକ କାଳ୍ପନିକ ଗଦ୍ୟ କାବ୍ୟ ନୁହେଁ କିମ୍ବା କାହାଣୀ କିମ୍ବଦନ୍ତୀ ନୁହେଁ । ଉପନ୍ୟାସ ହେଉଛି ଜୀବନର ଗଦ୍ୟ ମହାକାବ୍ୟ ଏବଂ ସମାଜର ବିଶ୍ୱସ୍ତ ଦର୍ପଣ । ସମାଜ ଓ ସମୟର ଅନ୍ତର୍ଧ୍ୱନିରେ ଏହା ନିନାଦିତ । ତେଣୁ ଉପନ୍ୟାସ ରଚନା ଦିଗରେ କଳ୍ପନା ବିଳାସର ସ୍ଥାନ ନାହିଁ । ସାଗର ସେପାରେ ଉପନ୍ୟାସଟି ହେଉଛି ଲେଖକର ଆତ୍ମଜୀବନୀର ଅଭୁଲା କିୟଦଂଶ । ଲେଖକ ଉତ୍ସର୍ଗ ପୃଷ୍ଠାରେ ଏହି ଉପନ୍ୟାସ ରଚନା ପଛରେ ଦୁଇଟି ପ୍ରେରଣାର ଉତ୍ସ ସଂପର୍କରେ ଉଲ୍ଲେଖ କରିଛନ୍ତି । ପ୍ରଥମ ଉତ୍ସ ପ୍ରକାଶକ ବନ୍ଧୁ ଯୁବକବି ଶ୍ରୀ ଗିରିଜା କୁମାର ବଳୀୟାର ସିଂହ ଏବଂ ଦ୍ୱିତୀୟ ଉତ୍ସ ତାଙ୍କ ଅବିସ୍ମୃତ ଜୀବନବେଳାରେ ରାଗରଂଜିତ ପଦଚିହ୍ନ ଆଙ୍କିଥିବା ତିନୋଟି ଇଂରେଜ ରମଣୀ । କୌଣସି କାଳେ ପ୍ରକାଶକ ଲେଖକ ସୃଷ୍ଟି କରେ ନାହିଁ; ବରଂ ଲେଖକ ସୃଷ୍ଟି କରେ ପ୍ରକାଶକ । ଏ କଥା ସତ୍ୟ ଯେ, ଲେଖକ ଏବଂ ପାଠକ ମଧ୍ୟରେ ସମ୍ପର୍କ ସ୍ଥାପନ କରିବାରେ ଭୂମିକା ଅନନ୍ୟ । ସେହି ଦୃଷ୍ଟିରୁ ପ୍ରକାଶକ ବନ୍ଧୁ ଆଜି 'ସାଗର ସେପାରେ' ଉପନ୍ୟାସକୁ ପାଠକ ନିକଟରେ ପହଞ୍ଚାଇବାରୁ ଧନ୍ୟବାଦାର୍ହ ବାସ୍ତବରେ ପ୍ରଫେସର ରଥଙ୍କୁ ଉପନ୍ୟାସ ରଚନାର ପ୍ରେରଣା ଦେଇଛି ତାଙ୍କର ଗଭୀର ସମ୍ବେଦନଶୀଳ ଜୀବନାନୁଭୂତି । ଅନ୍ତର୍ଦୃଷ୍ଟି, ଦୂରଦୃଷ୍ଟି ଏବଂ ଉର୍ଦ୍ଧ ଦୃଷ୍ଟି ହେଉଛି ଜଣେ ସଫଳ ସ୍ରଷ୍ଟାର ସହଚର । ଅନୁଭୂତି ଯେତେ ଗଭୀର ହେଉନା କାହିଁକି ଅନ୍ତର୍ଦୃଷ୍ଟି ବିନା ନିଜର ତଥା ଅନ୍ୟର ଅନ୍ତର୍ମନରେ ଘଟିତ ହେଉଥିବା ଭାବ ତରଙ୍ଗକୁ ଭାଷାୟିତ କରାଯାଇପାରେନା, ସେହିପରି ଉର୍ଦ୍ଧ୍ୱଦୃଷ୍ଟି ନଥିଲେ ସାର୍ବଜନୀନତାର ଅନନ୍ତ ଆକାଶକୁ ସାହିତ୍ୟ ସ୍ପର୍ଶ କରିପାରେନା । ପୁଣି ଦୂରଦୃଷ୍ଟି ନଥିଲେ ମଣିଷ ଜାତିର ଭାଗ୍ୟାକାଶରେ ନୂଆ ଦିଗଟିଏ ଅଙ୍କିତ କରିବା ଲେଖକର ଭାଗ୍ୟଲିଖନ ନୁହେଁ । ପ୍ରଫେସର ରଥଙ୍କର ଉପନ୍ୟାସଟି ଆଜି ସୁଧୀ ପାଠକବର୍ଗଙ୍କର ବିଚାର ପ୍ରାର୍ଥନୀୟ । ମନସ୍ତତ୍ତ୍ୱବିତ୍ ଔପନାସିକଙ୍କର ସର୍ଜନାତ୍ମକ ଦୃଷ୍ଟିରେଖା କେତେଦୂର ପ୍ରସାରିତ, ତାହା ପାଠକହିଁ ବିଚାର କରିବେ । ଯଥାର୍ଥ ଚରିତ୍ର ଚିତ୍ରଣ ମାଧ୍ୟମରେ ଜଣେ ଔପନ୍ୟାସିକ ଏକ ସମାଜର ବାସ୍ତବ ଚିତ୍ର ଉପସ୍ଥାପନ କରିପାରେ । ଚରିତ୍ରମାନଙ୍କ ସୂକ୍ଷ୍ମାତିସୂକ୍ଷ୍ମ ମନୋବିଶ୍ଳେଷଣ ଫଳରେ ଚରିତ୍ରମାନେ ହୁଅନ୍ତି ସଦେହ, ସାକାର ଏବଂ ଜୀବନ୍ତ ଏବଂ ଉପନ୍ୟାସର ବ୍ୟକ୍ତିତ୍ୱ ହୋଇଯାଏ ଯୁଗର ବ୍ୟକ୍ତିତ୍ୱ । ଏହି ଦୃଷ୍ଟିରୁ ପ୍ରଫେସର ରଥ ଦରିଆ ସେପାରିର ଚରିତ୍ରମାନଙ୍କୁ ଏବଂ ସମାଜ ଚିତ୍ରକୁ ମନୋବୈଜ୍ଞାନିକ ଦୃଷ୍ଟିରେ ବିଚାର କରି ଚିତ୍ରିତ କରିବାରେ ସାର୍ଥକ ହୋଇଛନ୍ତି ବୋଲି ମନେହୁଏ ।

ପ୍ରଫେସର ରଥଙ୍କର ଏପରି ସାରସ୍ୱତ ପ୍ରୟାସ ଅବ୍ୟାହତ ରହୁ ଏବଂ ସେ ଉତ୍କଳ ବାଣୀ ଭଣ୍ଡାରକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରନ୍ତୁ ଏହାହିଁ ଆଜିର ଶୁଭକାମନା । ଲେଖକଙ୍କର ଦୀର୍ଘ, ନିରାମୟ, ଜୀବନ ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି । ଇତି ।

ତା ୨୦.୯.୯୬ 'ସାଗର ସେପାରେ'ର ପାଠିକା **ପ୍ରତିଭା ରାୟ**

## ଜୀବନାନୁଭୂତିର ସାର୍ଥକ କାରୁକର୍ମ

'ସତ୍ୟ ଘଟଣା ଯେ ଉପନ୍ୟାସଠାରୁ ଆହୁରି ରୋମାଞ୍ଚକର ଓ ରହସ୍ୟାବୃତ ହୋଇପାରେ' - ସେଇ ବ୍ୟକ୍ତିଗତ ପ୍ରତ୍ୟକ୍ଷ ଅନୁଭୂତିରୁ 'ସାଗର ସେପାରେ' ଉପନ୍ୟାସର ପରିକଳ୍ପନା। ଦ୍ୱିତୀୟ ଯୁଦ୍ଧୋତ୍ତର ଇଂରେଜ ସମାଜର ଚିତ୍ର ଏଇ ଆତ୍ମଜୀବନୀମୂଳକ ଉପନ୍ୟାସର ଆଧାର ଭୂମି। ନିଃସ୍ୱାର୍ଥପର ଭାବରେ ହିରଣ୍ମୟ ବେଦୀରେ ନିଜକୁ ଅଭିଷିକ୍ତ କରିପାରିଲେ ଜୀବନ କିପରି ସୁଖଦ ବରଦ ହୁଏ - ସେଇ ମହତ୍ ଭାବଟି ଏଥିରେ ଉତ୍ତୋଳିତ। ସମଗ୍ର ଉପନ୍ୟାସ କେନ୍ଦ୍ରୀଭୂତ ମାନବିକତାର ଜୟନାଦରେ- ଯାହା ପାଇଁ ଆଜିର ପୃଥିବୀର ବ୍ୟାକୁଳ ପ୍ରତୀକ୍ଷା। ମାନବୀୟ କରୁଣାରେ ସ୍ପର୍ଦ୍ଧିତ ହେଲେ ଜୀବନହୁଏ ସାର୍ଥକ-ସମଗ୍ର ମାନବ ସମାଜ ପାଇଁ ଲେଖକଙ୍କର ଏଇ ବାର୍ତ୍ତା ଅନାହତ ମୂର୍ଚ୍ଛନାରେ ଗୁଞ୍ଜରିତ। ଶିଳ୍ପୀର ଚେତନା ନେଇ ଏହି ଉପନ୍ୟାସ ଶିଳ୍ପ ସୌଧ ନିର୍ମିତ ହୋଇନାହିଁ। କିନ୍ତୁ ପ୍ରତ୍ୟେକ ଶବ୍ଦରେ ଗୁମ୍ଫିତ ହେଇ ରହିଛି ମାନବୀୟ ପ୍ରୀତିର ଅନାବିଳ ଭାବୋଚ୍ଛ୍ୱାସ, ଦୁର୍ଲଭ ଆଳାପନୀ, ଯାହା ଶିଳ୍ପୀ କରଣୀର କାରିଗରୀ।

ଇଂଲଣ୍ଡର ସଭ୍ୟତା, ସଂସ୍କୃତି ଓ ଲୋକଜୀବନ ସହିତ ନିବିଡ଼ ପରିଚିତ ପାଇଁ ଲେଖକ ଭାରତୀୟ ଛାତ୍ରାବାସ ଛାଡ଼ି ଇଂରେଜୀ ପରିବାରର ଆତିଥ୍ୟ ସ୍ୱୀକାର କରିଛନ୍ତି। ''ଶ୍ରୀମତୀ ହାର୍ଭେଙ୍କର ଚାଲିଚଳଣ, କଥାବାର୍ତ୍ତାରେ ମୁଁ ଯେପରି ଦେଖିବାକୁ ପାଇଲି- ବିଶ୍ୱଜନୀନ ମାଆର ଚେହେରା।' (ପୃ-୧୦) ସାର୍ବଜନୀନ ମାନବୀୟ ଆକର୍ଷଣର ପ୍ରକାଶ ବିନ୍ଦୁରେ ଲେଖକଙ୍କର ଭାବସତ୍ତା ତଲ୍ଲୀନ-ସେଥିପାଇଁ ବିଶ୍ୱମାନବୀୟ ସାଂସ୍କୃତିକ ଐକ୍ୟ ଓ ମାଧୁର୍ଯ୍ୟର ଅମୃତ ଅନୁଭବ। ଏଇ ଉପନ୍ୟାସର ନାୟିକା ନୀଟା ପ୍ରତିଭାଶାଳୀ- ପରସ୍ପର ବିରୋଧୀ ଶକ୍ତିର ଅଦ୍ଭୁତ ସମନ୍ୱୟ। ଲେଖକଙ୍କ ଭାଷାରେ- 'ଚନ୍ଦ୍ରର ଶୀତଳ ସୌମ୍ୟ କିରଣ ପୁଣି ଫୁଟନ୍ତ ଲାଭାର ଅଗ୍ନି ଉଦ୍‌ଗୀରଣ।' ଏଇ ଜଟିଳ ମଣିଷଟିର ମାନସିକ ରାଜ୍ୟର ଆବିଷ୍କାର ଏହି ଉପନ୍ୟାସର ପ୍ରତିଛତ୍ରରେ ବିଳସିତ। ମଣିଷର ସାହସ ଓ ସଚ୍ଚୋଟପଣ ସବୁ ଦେଶରେ ସବୁ କାଳରେ ବନ୍ଦନୀୟ। କିନ୍ତୁ ନିଜ ଭିତର ଭଲ ପଣ ନଥିଲେ ଅନ୍ୟର ଗୁଣର ଆଦର କରିବା, ଅନ୍ୟର ପ୍ରତିଭାକୁ ସ୍ୱୀକୃତି ଦେବା ସମ୍ଭବ ହୁଏ ନାହିଁ। ମାନସିକ ଦିଗ୍‌ବିଜୟର ବିସ୍ତୃତି ଥିଲା ଲେଖକଙ୍କର ଏକମାତ୍ର ଧ୍ୟାନ ଓ ଧାରଣା। ସେ ପାଠସର୍ବସ୍ୱ ନଥିଲେ, ଥିଲେ ଜୀବନ ସର୍ବସ୍ୱ। ଜୀବନଯାତ୍ରାର ପରିସର ବଢ଼ିଲେ ଜୀବନର ମୂଲ୍ୟବୋଧ ବଢ଼େ। ଲେଖକଙ୍କ ଭିତରେ ଥିବା ସ୍ପର୍ଶକାତର ପ୍ରାଣସତ୍ତା ଜୀବନଧର୍ମକୁ ସବୁବେଳେ ସମ୍ମାନ ଦେଇ ଆସିଛି। ସମାଜ ଧର୍ମ ଉପକ୍ଷେଣୀୟ ନୁହେଁ, କିନ୍ତୁ ଗୌଣ।

ଯୁଦ୍ଧୋତ୍ତର ଇଂରେଜ ସମାଜର ଚିତ୍ର ଏଇ ଉପନ୍ୟାସର ଆଧାର ଭୂମି। ଲେଖକଙ୍କ ଭାଷାରେ, 'ଏହି ଦୁଇଟି ନାରୀ ଦ୍ୱିତୀୟ ମହାଯୁଦ୍ଧ ପର ଇଂରେଜ ସାମାଜିକ ଜୀବନର ଦୁର୍ଦ୍ଦମନୀୟ ମହାସ୍ରୋତର ଦୁଇଟି ବିରାଟ ନାରୀ ଚରିତ୍ର ଯୁଦ୍ଧକାଳୀନ ବିଭୀଷିକାମୟ ଦୁର୍ଦ୍ଦିନ ଭିତରେ ଗଢ଼ି ଉଠିଥିବା ଦୁଇଟି ଅଶାନ୍ତ ଜୀବନ। ନୀଟା ଆଉ ନିନା- ଏହି ଦୁଇଟି ଚରିତ୍ର ସମ୍ପୂର୍ଣ୍ଣ ଭିନ୍ନଧର୍ମୀ। ରକ୍ଷଣଶୀଳା, କ୍ଷଣକୋପୀ, ଉତ୍ତପ୍ତ ଲାଭ ପରି ଅଗ୍ନିବର୍ଷୀ ନୀଟା ଆଉ ନିନା କ୍ଷଣିକ ଉଲ୍ଲାସରେ ମତ୍ତ ଭସାମେଘ। ହାରୀ କୁପର, ହାମିଲ, ମିଷ୍ଟର ରୟ- ପ୍ରତ୍ୟେକ ଚରିତ୍ରକୁ ଅଭିନିବେଶ ସହକାରେ ବିଚାର କରିଛନ୍ତି- କେଉଁଠି ଉଚ୍ଛ୍ୱାସର ଭାବାବେଗ ନାହିଁ କି ବିଦ୍ୱେଷର ବିଷାକ୍ତ ଦଂଶନ ନାହିଁ। ଚରିତ୍ରର ଅନୁଶୀଳନ ଓ ସର୍ବେକ୍ଷଣରେ ମୌଳିକ ଚିନ୍ତନର ପରିଚୟ ସୁସ୍ପଷ୍ଟ। ପ୍ରତ୍ୟେକ ବିଷୟକୁ ଏତେ ସଂଯତ ଶୃଙ୍ଖଳିତ ଶବ୍ଦ ବିନ୍ୟାସରେ ବର୍ଣ୍ଣନା କରଯାଇଛି, ଯାହା

ପ୍ରତ୍ୟେକ ଘଟଣା ଓ ଚରିତ୍ରର ବାସ୍ତବ ଭାବମୂର୍ତ୍ତି ଅଙ୍କନ କରିବାରେ ସମର୍ଥ । ଲେଖକଙ୍କ ଭାଷାରେ- 'ନୀଟା ଯେହେତୁ ନିଜେ ପ୍ରତିଭାଶାଳିନୀ- ପ୍ରତିଭା ଯେଉଁ ଅଳିଆଗଦାରେ ଥିଲେ ମଧ୍ୟ ସେ ତାକୁ ସମ୍ମାନ ଦେଇପାରୁଥିଲା । (ପୃ-୬୯) ଏଥିରେ ସ୍ରଷ୍ଟା ସୃଷ୍ଟି ଅନ୍ତଃସ୍ରୋତର ନିଭୃତ କନ୍ଦରରେ ନିର୍ଝରିତ ଭାବରସକୁ ଅନ୍ତରୀକ୍ଷର ଅନନ୍ତ ସତ୍ତାରେ ଯେପରି ବ୍ୟାପ୍ତ କରିପାରିଛନ୍ତି, ସେଥିପାଇଁ ସମ୍ମାନନୀୟ । ନିନାର ନୈତିକ ଶକ୍ତିର ଚାହାଣୀରେ ପୁରୁଷର କାମନାକୁ ହୀନବୀର୍ଯ୍ୟ କରିବାର ଶକ୍ତି ନିଶ୍ଚୟ ବନ୍ଦନୀୟ । ମଣିଷର ନିଷ୍କପଟ ଆନ୍ତରିକ ପ୍ରୀତିର ସ୍ପର୍ଶରେ କେମିତି ଅଭାବନୀୟ ଶକ୍ତି ରହିଛି, ତା'ର ଉଚ୍ଚାରଣ ଏଥିରେ ସୁସ୍ପଷ୍ଟ । ହିଂସା, ଈର୍ଷା, ସ୍ୱାର୍ଥପରତା- ଯାହା କିଛି ଉନ୍ନତ, ସଂଯତ, ବିଶ୍ୱଜନୀନ ଚିନ୍ତାଧାରାର ପ୍ରଧାନ ଅନ୍ତରାୟ, ଯାହା ବ୍ୟକ୍ତି ଜୀବନ ଓ ସମାଜ ଜୀବନକୁ ଉଦ୍‌ବେଳିତ କରୁଛି, ତା'ର ନିରାକରଣ ଓ ଶାଶ୍ୱତ ମୂଲ୍ୟବୋଧର ପ୍ରତିଷ୍ଠାରେ ଲେଖକଙ୍କର ସମସ୍ତ ଶକ୍ତି ଉତ୍ସର୍ଗୀକୃତ । ଜୀବନ ଯନ୍ତ୍ରଣାର ଜଟିଳ ଆବର୍ତ୍ତରୁ ମୁକ୍ତିର ପଥ ଦର୍ଶାଇଛନ୍ତି ନିଃସ୍ୱାର୍ଥସ୍ନେହକୁ ପୁଞ୍ଜି କରି । ନୀଟା ଚରିତ୍ର ଏହାର ଚମତ୍କାର ଦୃଷ୍ଟାନ୍ତ । କମ୍ୟୁନିଷ୍ଟମାନଙ୍କ ପ୍ରତି ବିତୃଷ୍ଣ ଭାବ ପ୍ରଚଣ୍ଡ ଘୃଣାକୁ ପରିବର୍ତ୍ତିତ କରି ନୀଟା ଭିତରେ ଅଙ୍କୁରିତ କରିଛନ୍ତି ସାର୍ବଜନୀନ ମାନବିକବାଦ ପ୍ରତି ଅନୁରାଗ । 'ସର୍ବେ ସୁଖୀନୋ ଭବନ୍ତୁ' ସ୍ତୋତ୍ରକୁ ଇଂରାଜୀରେ ଗାଇ ଅଭିନୟ କରି ସମଗ୍ର ଜନତାକୁ ସେହି ଭାବରେ ବିଗଳିତ କରିଦେଇଛି ନୀଟା । ନାରୀ ପୁରୁଷ ଭିତରେ ଅନାବିଳ ବନ୍ଧୁତ୍ୱର ଉଜ୍ଜ୍ୱଳ ସ୍ୱାକ୍ଷର ଏହି ଉପନ୍ୟାସକୁ ଦେଶକାଳର ଊର୍ଦ୍ଧ୍ୱକୁ ଉତ୍ତୀର୍ଣ୍ଣ କରିପାରିଛି । ସନ୍ଧ୍ୟାତାରାର ଚିତ୍ରକଳ୍ପ ଭିତରେ ଜୀବନ ଉଷ୍ମ ଉତ୍ତାପରେ ଉଚ୍ଛଳ ହୋଇ ଏହାକୁ କାବ୍ୟିକ ସୌନ୍ଦର୍ଯ୍ୟରେ ଅଭିଷିକ୍ତ କରିଛି ।

'ମାନବୀୟ ମାଧୁର୍ଯ୍ୟ, ଅଶ୍ଳୀଳ ଜୀବନ କାହାଣୀ ସୃଷ୍ଟି କରେ ଶାଶ୍ୱତ ମାନବିକ ମୂଲ୍ୟବୋଧ''- ଲେଖକଙ୍କର ଏହି ମନ୍ତବ୍ୟ ସମଗ୍ର ଉପନ୍ୟାସର ବେଦମନ୍ତ୍ର । ଜୀବନର ନିସଙ୍ଗତା ନୁହେଁ, ସଙ୍କୁଚିତ ଖର୍ବ ଚେତନା ନୁହେଁ, ବ୍ୟାପ୍ତି ହିଁ ଜୀବନ- ସର୍ବତ୍ର ଏଇ ସ୍ୱରର ଝଙ୍କାର । 'ଅଗଣିତ ମଧୁର କରୁଣ ସ୍ମୃତିର ଗୋଲାପୀ ଉତ୍ତରୀ ମୋର ମନ ପ୍ରାଣ ଆଚ୍ଛାଦି ରହିଛି'' । ଏହି ଅବିସ୍ମରଣୀୟ ସ୍ମୃତିର ସନ୍ତକ ହେଉଛି ପ୍ରଫେସର ଡକ୍ଟର ରାଧାନାଥ ରଥଙ୍କ 'ସାଗର ସେପାରେ' ଉପନ୍ୟାସ ।

—ଡକ୍ଟର ରେଖା ମହାନ୍ତି ■ ପ୍ରଜାତନ୍ତ୍ର ସାପ୍ତାହିକୀ, ଜାନୁୟାରୀ ୫-୧୧-୧୯୯୭

## ଶେଷକଥା

### ଉପନ୍ୟାସ

## ସମର୍ପିତ ପ୍ରେମର ସକରୁଣ ସ୍ୱୀକାରୋକ୍ତି

ଏକ ଅହେତୁକ ଅବସ୍ଥା ଆବେଗମୟ ଉତ୍ତର ଆଧୁନିକ ଜୀବନଧାରାରେ ବିରଳ ଓ ଅନୁଭବ୍ୟ । ପ୍ରେମାନୁଭୂତି ମାଧ୍ୟମରେ ଘନ ଅରଣ୍ୟର କରୁଣ ନିର୍ଜନତା, ନିରବଚ୍ଛିନ୍ନ, ଅନ୍ୱେଷଣ, ଗଭୀର ଅନୁରକ୍ତି ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଆତ୍ମଶକ୍ତିର ଶବ୍ଦହୀନ ବିଳପନ, ଅନନ୍ତ ଜିଜ୍ଞାସାର ପ୍ରହେଳିକାମୟ ରହସ୍ୟ, ଅବ୍ୟକ୍ତ ଭାଷାର ଉଦ୍‌ବେଳନ ଚକିତ କରିଛି ସାଂପ୍ରତିକ କାଳର ସ୍ରଷ୍ଟାମାନସକୁ । ଡକ୍ଟର ରଥ ଏ ଦିଗରୁ ଏକ ବ୍ୟତିକ୍ରମ ନୁହନ୍ତି । ପ୍ରେମର ଅନୁରାଗ, ପୁଲକ ଓ ରୋମାଞ୍ଚର ଉଚ୍ଛଳ ପ୍ରବାହ ମଧ୍ୟରେ ପରସ୍ପରକୁ ଭଲପାଇବାର ବାସନା ତଥା ନାୟକ ଓ ନାୟିକାଙ୍କ ମନରେ ଚାଳିଶବର୍ଷ ପୂର୍ବେ ଆଦ୍ୟ ଯୌବନରେ ସୃଷ୍ଟି ହୋଇଥିବା

ତରଙ୍ଗର ସୂଚନା ଉପନ୍ୟାସର ପୁରୋଭାଗରେ ଉପସ୍ଥାପନ କରଯାଇଥିଲେ ହେଁ ଗତ ସମୟର ପରମ ମୁହୂର୍ତ୍ତଗୁଡ଼ିକୁ ଚାରଣକରି ତାରି ଭିତରେ ବଞ୍ଚି ରହିବାର ସ୍ୱପ୍ନ ହେଉଛି ଶେଷକଥା- ମନଖୋଲା ଭଲ ପାଇବାର ଏକ ସୁନ୍ଦର ପରିବେଶ, ମନ ପ୍ରାଣ ଦିଆନିଆର ଆଦିମ ବାତାବରଣ, ଏକାତ୍ମୀୟତାର ଦ୍ୱିଧାହୀନ ସ୍ୱୀକୃତି ଓ ମହାମାନବୀୟ ନିଃସର୍ତ୍ତ ପ୍ରତିଶ୍ରୁତି; ନିଃସୀମ ପ୍ରେମର ସମୟହୀନ ପରିବ୍ୟାପ୍ତି ।

ଡକ୍ଟର ରାଧାନାଥ ରଥଙ୍କ ବାଙ୍ମୟ ପ୍ରକାଶ ବହୁମୁଖୀ । କେବଳ କଥାସାହିତ୍ୟ ସୃଷ୍ଟିରେ ଏହା ନିବଦ୍ଧ ନୁହେଁ । ଏହା ପୂର୍ବରୁ ଭ୍ରମଣ ବୃତ୍ତାନ୍ତ, ଆତ୍ମଜୀବନ ଚରିତ ତଥା ମନୋବୈଜ୍ଞାନିକ ନିବନ୍ଧ ରଚନା କ୍ଷେତ୍ରରେ ସେ ଥିଲେ କ୍ରିୟାଶୀଳ । ଆତ୍ମଜୀବନ ଚରିତ ନିମିତ୍ତ 'ଓଡ଼ିଶା ସାହିତ୍ୟ ଆକାଡେମୀ' ଲେଖକଙ୍କୁ ସମ୍ମାନିତ କରିଛି । ମନୋବିଜ୍ଞାନକୁ ଜୀବନର ଜୀବିକା ଭାବରେ ଗ୍ରହଣ କରି ଏହାର ଉପଯୋଗିତା ସଂପର୍କରେ ଡକ୍ଟର ରଥ ଯେଉଁ ତଥ୍ୟ ଲାଭ କରିଛନ୍ତି ସେ ସବୁର ସଫଳ ରୂପାୟନ ଘଟିଛି ଉପନ୍ୟାସର ଚରିତ୍ରଗୁଡ଼ିକରେ । ଚରିତ୍ରଗୁଡ଼ିକ ଅନୁଶୀଳନ କଲାବେଳେ ସେମାନଙ୍କ ମାନସିକ ସ୍ତରରେ ପ୍ରତିନିୟତ ଯେଉଁ କ୍ରିୟା ପ୍ରତିକ୍ରିୟାର ପରିପ୍ରକାଶ ଘଟିଛି ସେ ସବୁର ଏକ କାଳ୍ପନିକ ପ୍ରତିଚ୍ଛବି ପାଠକ ଲାଭ କରେ । ମଣିଷର ପ୍ରତ୍ୟେକ ଚେତନା ଓ କ୍ରିୟାକଳାପ ପଛରେ ଯୌନ ଚେତନାହିଁ ମୁଖ୍ୟତଃ କାର୍ଯ୍ୟ କରିଥାଏ । ସୃଷ୍ଟିର ପ୍ରାକ୍‌କାଳରୁ ମନୁଷ୍ୟ ଏହି ପ୍ରାଥମିକ ପ୍ରବୃତ୍ତି ମଧ୍ୟରୁ ନିଜକୁ ମୁକ୍ତ କରିପାରେ ନାହିଁ । ଫ୍ରୟଡ଼ୀୟ ମନଃ ସମୀକ୍ଷଣ ଅନୁସାରେ ଲେଖକ ଅବଚେତନ ମନର ବିଶ୍ଳେଷଣକୁ ପ୍ରାଧାନ୍ୟ ଦେଇ ମଣିଷ ପ୍ରାଣରେ ଲାଗି ରହିଥିବା ଯୌନ ଚେତନାର ସୂଚନା ପ୍ରଦାନ କରିଛନ୍ତି । ଅବଚେତନ ସ୍ତରରେ ବନ୍ଦୀ ରହିଥିବା ଦୁରଧିଗମ୍ୟ ସତ୍ତା, ଅସଂଯତ ଖଣ୍ଡିତ ରୂପ, ତରଙ୍ଗାୟିତ ଜୀବନର ରୂପ ଓ ଆକାରକୁ ପାଥେୟ କରି ଲେଖକ ଏହି ପରୀକ୍ଷାଧର୍ମୀ ଉପନ୍ୟାସଟିକୁ ମନୋଜ୍ଞ ଭାବରେ ଉପସ୍ଥାପନ କରିଛନ୍ତି । ଜୀବନର ଏକ ବିଶେଷ ମୁହୂର୍ତ୍ତରେ ନାୟିକା ଅନୀଷା ଅବିନାଶକୁ ଭଲ ପାଇଥିଲେ ହେଁ ଜୀବନସାଥୀ ଭାବରେ ଗ୍ରହଣ କରିଛି ଡାକ୍ତର ଅରବିନ୍ଦଙ୍କୁ । ବୈଷୟିକ ସୁଖ ସମ୍ଭୋଗ ଓ ଅର୍ଥଲାଳସାରୁ ତୃପ୍ତ ମୋହ ମଧ୍ୟରେ ଆବିଷ୍ଟ ରହି ବଞ୍ଚିବାର ଅର୍ଥ ଖୋଜିଲାବେଳେ ନାୟିକା ଅନୀଷା ମନରେ ସୃଷ୍ଟି ହୋଇଚି ବିଫଳତାର କରୁଣ ରାଗିଣୀ । ସାଧାରଣ ଦୃଷ୍ଟିରେ ଅନୀଷା ଦେବୀ ଜୀବନର ସକଳ ସୁଖଲାଭ କରିଛନ୍ତି ଏବଂ ପରିଣତ ବୟସରେ ସ୍ମୃତିଚାରଣ କଲାବେଳେ ଜୀବନର ଅର୍ଥ ଖୋଜିଛନ୍ତି । ଫଳତଃ ବିଫଳତାର କରୁଣ ମୂର୍ଚ୍ଛନା ମଧ୍ୟରେ ଚିନ୍ତାର ସଙ୍କଟ ଓ ବିରୋଧୀ ଚିନ୍ତାର ସଂଘର୍ଷ ଯୌନ ଚେତନାର ଉଦ୍ଦାମ ପ୍ରବାହରେ ଆତ୍ମପ୍ରକାଶ କରିଛି । ଅର୍ଥଙ୍କରୀ ଜୀବନର ମଧୁମୟ ସ୍ୱପ୍ନ ତିରୋହିତ ହୋଇ ଚିନ୍ତାଧାରାର ସବୁଜିମା କ୍ରମଶଃ ପାଟଳାଭ ହୋଇଛି । ବିଧିବଦ୍ଧ ଜୀବନରେ ଦିନେ ଯାହା ଅତ୍ୟନ୍ତ ଉଜ୍ଜ୍ୱଳ, ସ୍ୱଚ୍ଛ, ଶୁଭ୍ର, ସୁସ୍ଥ ଓ ସତ୍ୟ ରୂପେ ପ୍ରତିଭାତ ହୋଇଥିଲା ତାହା କ୍ରମଶଃ ଅସ୍ପଷ୍ଟ, ଧୂସର ଓ ଅସତ୍ୟ ହୋଇପଡ଼ିଛି । ଲେଖକ ଏଇ ଧୂସର ଦିଗନ୍ତର ଅନୁସରଣ କରି ଉପନ୍ୟାସର କଳାସୌଷ୍ଠବକୁ ପରିପୁଷ୍ଟ କରିଛନ୍ତି ।

ସିଗ୍‌ମଣ୍ଡ ଫ୍ରୟଡ଼ଙ୍କ ମତାନୁସାରେ ମଗ୍ନ-ଚୈତନ୍ୟ-ସାନ୍ନିଧ କାମ ପ୍ରବୃତ୍ତିର ଅଜ୍ଞାତ ପ୍ରେରଣାରେ ଅନେକ ପ୍ରଚେଷ୍ଟା ଅନୁଷ୍ଠିତ ହୁଏ । ମନୀଷା ଦେବୀ ନିଜର ସଚେତନ ଚିନ୍ତା ଓ କର୍ମ ସହିତ ଅବଚେତନ ମନର ଅସ୍ଫୁଟ ଅବୟବହୀନ ଆଶା ଆକାଂକ୍ଷା, ଚିନ୍ତା କଳ୍ପନା, ଅତୀତ ସ୍ମୃତିର ଖଣ୍ଡାଂଶ, ଆକସ୍ମିକ ଅନିୟନ୍ତ୍ରିତ ଭାବସଙ୍ଗ ମଧ୍ୟରେ ନିଜର ଏକ ସମ୍ପୂର୍ଣ୍ଣ ପରିଚୟ

ପ୍ରଦାନ କରିବାପାଇଁ ପ୍ରୟାସ କରିଛନ୍ତି । 'ନିବୁଜ ମନର ବ୍ୟଥା' ଶୀର୍ଷକରେ ଯେଉଁ ଆଠଗୋଟି ସମୟଲିପି ପ୍ରଦାନ କରାଯାଇଛି ଏହା ତାହାର ଏକ ଜ୍ୱଳନ୍ତ ନିଦର୍ଶନ । ଉପନ୍ୟାସର ଗଳ୍ପାଂଶ ଓ ଘଟଣା ସଂଗଠନରେ ଏହା ଏକ ପ୍ରାଚୀନ ପଦକ୍ଷେପ ହେଲେ ହେଁ ଉପସ୍ଥାପନାରେ ନବୀନତା ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ସମଗ୍ର ଉପନ୍ୟାସଟିକୁ ମୁଖ୍ୟତଃ ତିନିଗୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଛି- 'ବିଷଣ୍ଣ ଅଭିସାର', 'ନିବୁଜ ମନର ବ୍ୟଥା' ଏବଂ 'ଶେଷକଥା' । ଏହାକୁ ଘଟଣାର ଉପୋଦ୍‌ଘାତ, ପ୍ରବାହ ଓ ପରିଣତି ଭାବରେ ମଧ ଗ୍ରହଣ କରାଯାଇପାରେ । ମାନସିକ ସ୍ତରରେ ଚେତନ, ଅବଚେତନ ଓ ଅଧିଚେତନର ଭାବସତ୍ତା ମଧ ଏଥିରେ ଲକ୍ଷ୍ୟ କରାଯାଇଥାଏ । 'ଶେଷକଥା' ଉପନ୍ୟାସର ପ୍ରାରମ୍ଭରୁ ଲେଖକ ତାଙ୍କର ପୂର୍ବକୃତି 'ଭଲ ପାଇବାର ଆଦିକଥା'ର ଏହା ଉତ୍ତରାର୍ଦ୍ଧ ବୋଲି ଘୋଷଣା କରିବା ସଙ୍ଗେ ସଙ୍ଗେ ଚରିତ୍ରଗୁଡ଼ିକୁ ତଦନୁସାରେ ସଂଯୋଜନା କରିଛନ୍ତି । ମନୀଷା ଦେବୀଙ୍କୁ ଛନ୍ଦା ଓ ଅବିନାଶଙ୍କୁ ମଲ୍ଲାର ଭାବରେ ପ୍ରଦର୍ଶନ କରିଛନ୍ତି । 'ଶେଷକଥା' ଉପନ୍ୟାସରେ ବର୍ଣ୍ଣିତ ଘଟଣାପ୍ରବାହର ଅନିୟନ୍ତ୍ରିତ ଭାବସଙ୍ଗକୁ ଲକ୍ଷ୍ୟ କଲେ ସ୍ପଷ୍ଟ ଅନୁଭୂତ ହୁଏ ଯେ, ପ୍ରେମର ସ୍ୱପ୍ନ ସାକାର ନ ହେବା ଫଳରେ ସଂସାରର ସମସ୍ତ ମୂଲ୍ୟବାନ ବସ୍ତୁ ମଧ ଅତ୍ୟନ୍ତ ତୁଚ୍ଛ ମନେ ହୋଇଥାଏ । ମନୀଷା ଦେବୀ ଜୀବନରେ ସବୁକିଛି ପାଇଛନ୍ତି । କନ୍ଦର୍ପ ପରି ସୁନ୍ଦର ତଥା ରାଜନୈତିକ ବ୍ୟକ୍ତିଙ୍କ ଉପରେ ପ୍ରଚଣ୍ଡ ପ୍ରଭାବଶାଳୀ ଧନିକ ପତି, ସୁରମ୍ୟ ସୁଉଚ୍ଚ ପ୍ରାସାଦ, ମୋଟା ବ୍ୟାଙ୍କ ବାଲାନ୍ସ, ସାମାଜିକ ପ୍ରତିଷ୍ଠା, ଇଂରେଜୀ ସ୍କୁଲରେ ପଢୁଥିବା ଦିଓଟି ରାଜକୁମାର ସଦୃଶ ପୁଅ, ସଂସାର ଚଳାଇବା ପାଇଁ ସୁଯୋଗ୍ୟା ଆୟା ଇତ୍ୟାଦି । କିନ୍ତୁ ହଠାତ୍ ତାଙ୍କର ମନର ସରାଗ ଲିଭିଯାଇଛି, ଫୁଲର ସୌରଭ, ସଙ୍ଗୀତର ମଧୁର ମୂର୍ଚ୍ଛନା, ସ୍ୱପ୍ନର ବିହ୍ୱଳତା କ୍ରମଶଃ ଶେଷ ପଡ଼ିଯାଇଛି । ଆତ୍ମିକ ଅନୁରାଗର ନିଃସର୍ତ୍ତ ବିଶ୍ୱାସ ମଧରେ ସେ ବସ୍ତୁତଃ ଉବେଇ ଟୁବେଇ ହୋଇଛନ୍ତି । ଜୀବନକୁ ଖୋଜି ଖୋଜି ପୁଣି ଫେରି ଆସିଛନ୍ତି ଚାଳିଶବର୍ଷ ପୂର୍ବେ ଭେଟିଥିବା ମନର ମଣିଷ ଅଧାପକ ଅବିନାଶ ପାଖକୁ । ଜୀବନର ପ୍ରହେଳିକାପୂର୍ଣ୍ଣ ଅଜ୍ଞାତ ସ୍ୱପ୍ନକୁ ପ୍ରକାଶ କରିବାର ସଫଳ ପ୍ରୟାସ । ପ୍ରେମ ପୁଲକରେ ଏକଦା ପୁଲକିତ ହୋଇଥିବା ଦୁଇଟି ପ୍ରେମୀ ମଣିଷଙ୍କର ପ୍ରେମ ସୀମାହୀନ ସତ୍ତାରେ ପରିଣତ ହୋଇଯାଇଛି । ଫଳତଃ ସମସ୍ତ ପ୍ରକାର ପ୍ରଲୋଭନ, ମୋହ, ସ୍ୱାର୍ଥ, ସଂକୀର୍ଣ୍ଣତା ଅପସରି ଯାଇଛି । ଏହା ହୋଇଉଠିଛି ଅବ୍ୟୟ, ଅବିସ୍ମରଣୀୟ ଓ ସତ୍ୟନିଷ୍ଠ । ସତେ ଯେପରିକି ଜୀବନର ପୂର୍ଣ୍ଣତା । ଲେଖକଙ୍କ ଭାଷାରେ 'ଏପ୍ରକାର ଅତିନ୍ଦ୍ରିୟ ଅନୁଭୂତି ମୋର ବିଗତ ଜୀବନର ସମସ୍ତ ଗ୍ଲାନି, ଯନ୍ତ୍ରଣା, ଅନୁଶୋଚନାର ବହୁ ଉର୍ଦ୍ଧ୍ୱକୁ-ଗୋଟିଏ ନୂତନ ଦିଗମଣ୍ଡଳ ପରିବ୍ୟାପ୍ତ ମାନସିକତାରେ ମୋତେ ନେଇ ପହଞ୍ଚାଇ ଦେଇପାରିଲା- ମୋର ଜୀବନ ନୂତନ ରଙ୍ଗରେ ରଞ୍ଜିତ ହୋଇଉଠିଲା (ପୃ-୧୨୦) । ନାୟିକାର ଏହା କେବଳ ଏକ ଆତ୍ମଲିପି ନୁହେଁ ବରଂ ଏକ ନୂତନ ଆତ୍ମୋପଲବ୍‌ଧି ଏବଂ ଏହି ଉପଲବ୍‌ଧି ମଧରେ ପୁଅ, ସ୍ୱାମୀ, ବନ୍ଧୁବାନ୍ଧବମାନଙ୍କ ସହିତଦେବା, ପାଇବା, ଲାଭ, ଲୋକସାନ, ଭାଗ୍ୟ, ଦୁର୍ଭାଗ୍ୟର ଦୁଃଖଦ ଚିନ୍ତା ବିବର୍ଜିତ ମାନସିକତା ମୃତ୍ୟୁ ସଦୃଶ ମଧୁର ମନୋହର ବିଶ୍ରାମ ମାତ୍ର । ଏଥିରେ ଆତ୍ମପୀଡ଼ନ ନାହିଁ, ଅନୁଶୋଚନା ନାହିଁ, ଗ୍ଲାନି ନାହିଁ । ଏହି ଚିର ଶାନ୍ତ ବିଶ୍ରାମ ମଧରେ ପ୍ରେମାବେଗର ଉଷ୍ମତା ଟିକକ ଜୀବନର ଏକମାତ୍ର ସଞ୍ଚୟ ।

'ଶେଷକଥା' ଉପନ୍ୟାସର ଘଟଣାପ୍ରବାହ ଆଶ୍ୱିନ ଶୁକ୍ଳ ତୃତୀୟାଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ ମାତ୍ର ଦଶଟି ଦିନର ଜୀବନାନୁଭୂତିକୁ ସମ୍ବଳ କରି ଗତିଶୀଳ ପ୍ରଥମ ପର୍ଯ୍ୟାୟରେ ଘଟଣାପ୍ରବାହର

ସୂଚନା ଓ ଖଣ୍ଡ ଖଣ୍ଡ ଚିନ୍ତା ଚେତନାର ସକରୁଣ କାହାଣୀ ଲିପିବଦ୍ଧ । ଛନ୍ଦା ଓ ମଲ୍ଲାରର କାବ୍ୟିକ ଜନ୍ମ, ସନ୍ଧ୍ୟାତାରା ସହିତ ପୁରୀ ବେଳାଭୂମିରେ ଘନିଷ୍ଠ ପରିଚୟ - ଏହିଠାରୁ ଉପନ୍ୟାସର ଘଟଣାପ୍ରବାହର ଆରମ୍ଭ ଏବଂ ପରିସମାପ୍ତି ମଧ୍ୟ । ପୁରୀ ସମୁଦ୍ରର ଏହି ବେଳାଭୂମିରେ ଯନ୍ତ୍ରଣାମୟ ଜୀବନର ଜୀବନ୍ତ ସମାଧି ଏହାର ଲକ୍ଷ୍ୟ । ସନ୍ଧ୍ୟାତାରା ଏକ ପ୍ରତୀକ ଚରିତ୍ର ଭାବରେ ଉପନ୍ୟାସର ଘଟଣା ସଂଗଠନକୁ ନିୟନ୍ତ୍ରଣ କରୁଛି ।

ମନୁଷ୍ୟର ପ୍ରକୃତି ତା'ର ଭବିଷ୍ୟତ ଗଢ଼େ (Character is destiny) ଏବଂ ପରିବେଶ ଓ ପରିସ୍ଥିତିର ପ୍ରଭାବ ଜୀବନକୁ ନିୟନ୍ତ୍ରଣ କରେ । ବେଳାଭୂମିରେ ସନ୍ଧ୍ୟାତାରାର ଉପଭୋଗ ଏକ ଖିଆଲ ମନର ପରିଚାୟକ ହୋଇପାରେ, ସେଥିରେ କିନ୍ତୁ ଜୀବନର ସ୍ୱାଦ ଅଛି । ସମାଜରେ ପ୍ରତିଷ୍ଠିତ ନିଜର ଶ୍ୱଶୁର ଅଥବା ଦିଅରଙ୍କର ବିଧବା, ଅସହାୟା ବ୍ରାହ୍ମଣୀ ତରୁଣୀ ପ୍ରତି ଲୋଲୁପ ଦୃଷ୍ଟି ପରିବେଶ ଓ ପରିସ୍ଥିତିର ପ୍ରଭାବାନୁସାରୀ ହୋଇଥିଲେ ହେଁ ବିବାହର ଆଦ୍ୟ ଜୀବନରେ ମନୀଷାଙ୍କ ମନରେ ଏହା ସୃଷ୍ଟି କରିଛି ପ୍ରତିକ୍ରିୟା । ସ୍ନେହକାଙ୍ଗାଳ ମନ ନେଇ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ ମଧ୍ୟ ସ୍ମୃତିଚାରଣ ବେଳେ ଏହା ଅଧିକ ଜୀବନ୍ତ ଓ ବିରାଟ ହୋଇ ଦେଖାହୋଇଛି । ଅଧ୍ୟାପକ ବନ୍ଧୁଙ୍କର ଜୀବନାଦର୍ଶ, ବଡ଼ପୁଅର ସେଥିପ୍ରତି ଅନୁରକ୍ତି, ସାନପୁଅର ବେପରୁଆ ମନୋଭାବ, ସ୍ୱାମୀଙ୍କର ପମ୍ପା ଅହେତୁକ ଜୀବନ ପ୍ରତି ମମତ୍ୱବୋଧ ଓ ପରିବାର ପ୍ରତି ନିରାସକ୍ତ ମନୋଭାବ ଜୀବନଚକ୍ରର ଏକ ଏକ ଖଣ୍ଡାଂଶ । ଏହା ମଧ୍ୟରେ ଜୀବନର ପୂର୍ଣ୍ଣତା ଉପଲବ୍ଧ କରାଯାଇପାରେ । ଉପନ୍ୟାସର ପ୍ରତ୍ୟକ୍ଷ ଅପ୍ରତ୍ୟକ୍ଷ, ପ୍ରାସଙ୍ଗିକ ଅପ୍ରାସଙ୍ଗିକ ଚରିତ୍ରଗୁଡ଼ିକ ମନୋବିଶ୍ଲେଷଣରେ ଅଧିକ କ୍ରିୟାଶୀଳ ହୋଇଛନ୍ତି, ଏଥିରେ ସନ୍ଦେହ ନାହିଁ । ଉପନ୍ୟାସରେ ପ୍ରୟୋଗ କରାଯାଇଥିବା ବଂଗଳା ଶବ୍ଦ– ବେଶ୍ ନାମକରା ନାରୀନେତ୍ରୀ ନିରବଚ୍ଛିନ୍ନ ବେଦନାରେ ଯେପରି ଧୂଳେୟିତ, ଦୂର୍ ଦୂର୍ ଛାତି, ପ୍ରିୟହତେ ପ୍ରିୟତର କାବ୍ୟିକ ସ୍ୱପ୍ନର ଆତ୍ମୋପଲବ୍ଧ କିମ୍ବା ଏଖନ ଉଠିବେ ଚାନ୍ଦ ପ୍ରଭୃତି ଏବଂ ବିଶେଷଣର ବ୍ୟବହାର ସ୍ୱପ୍ନାୟିତ ମାଧୁରିମା, ଉଦ୍‌ବେଗିକ ଚିନ୍ତାଧାରା ପ୍ରଭୃତି କିୟତ୍ ପରିମାଣରେ ପାଠକକୁ ଖାପଛଡ଼ା ମନେ ହୋଇଥିଲେ ହେଁ ଏହାର ସଂଭ୍ରାନ୍ତ ଭାଷାଶୈଳୀ ରସବୋଧକୁ ଉଜ୍ଜୀବିତ କରେ, ଏଥିରେ ସନ୍ଦେହ ନାହିଁ ।

— ଶ୍ରୀ ବ୍ରହ୍ମାନନ୍ଦ ସିଂହ ■ ଅନୁପମ ଭାରତ, ୫-୭-୯୮

## କଥାସାହିତ୍ୟର ନବଜାତକ

ଓଡ଼ିଆ କଥା ସାହିତ୍ୟ - ବିଶେଷତଃ ଉପନ୍ୟାସ ସୃଷ୍ଟିରେ ସଂପ୍ରତି ଭଟ୍ଟା ପଡ଼ିଥିବା ବେଳେ ପ୍ରଫେସର ଡକ୍ଟର ରାଧାନାଥ ରଥଙ୍କର 'ସାଗର ସେପାରେ', 'ଭଲ ପାଇବାର ଆଦିକଥା' ଓ 'ଶେଷକଥା' ଉପନ୍ୟାସ ତ୍ରୟୀ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସ୍ୱାଗତଯୋଗ୍ୟ ।

ବ୍ୟାସକବି ଫକୀରମୋହନ ସେନାପତି ଓ ଡକ୍ଟର କୁଞ୍ଜବିହାରୀ ଦାଶ ଯେପରି ଜୀବନର ଅପରାହ୍ଣରେ ଉପନ୍ୟାସ ରଚନାରେ ବ୍ରତୀ ହୋଇଥିଲେ, ଠିକ୍ ସେହିପରି ଡକ୍ଟର ରାଧାନାଥ ରଥ ଜୀବନର ଅପରାହ୍ଣରେ ଉପନ୍ୟାସ ରଚନାରେ ମନୋନିବେଶ କରିଛନ୍ତି । କାବ୍ୟ କବିତା କବିମନର ସ୍ୱତଃସ୍ଫୂର୍ତ୍ତ ସୃଷ୍ଟି । ତେଣୁ ଅଳ୍ପ ବୟସରେ ଭାବପ୍ରବଣ ମନ ଉତ୍କୃଷ୍ଟ ଧରଣର କାବ୍ୟକବିତା ରଚନା କରିପାରେ । କିନ୍ତୁ ଉପନ୍ୟାସ ରଚନା ପାଇଁ ଜୀବନ ଓ ଜଗତ ସମ୍ବନ୍ଧରେ ଗଭୀର ଅନୁଭୂତି ଓ ଅଭିଜ୍ଞତା ଆବଶ୍ୟକ । ଫକୀରମୋହନ ଓ କୁଞ୍ଜବିହାରୀ ଦାଶଙ୍କ ଉପନ୍ୟାସ

ସେଇଥିପାଇଁ ପାଠକ ପ୍ରାଣକୁ ସ୍ପର୍ଶ କରିଥାଏ । ସେହି ଦୃଷ୍ଟିରୁ ଦେଖିଲେ ଡକ୍ଟର ରାଧାନାଥ ରଥଙ୍କ ଉପନ୍ୟାସଗୁଡ଼ିକ ପାଠକ ମନରେ ଗଭୀର ରେଖାପାତ କରିବ ।

ଡକ୍ଟର ରାଧାନାଥ ରଥଙ୍କ 'ସାଗର ସେପାରେ' ଉପନ୍ୟାସର ବିଷୟବସ୍ତୁ ଲେଖକଙ୍କର ଲଣ୍ଡନ-ରହଣିର ଅଢ଼େଇବର୍ଷର ଅନୁଭୂତିଗତ ଘଟଣା । ସତ୍ୟ ଘଟଣା ଘେନି ଆତ୍ମଜୀବନୀମୂଳକ ଗଳ୍ପ, ଉପନ୍ୟାସ ରଚନା ଆମ ସାହିତ୍ୟରେ ଊଣା ନୁହେଁ । 'ସାଗର ସେପାରେ' ଉପନ୍ୟାସଟି ସତ୍ୟ ଘଟଣା ଉପରେ ଆଧାରିତ । ସତ୍ୟ ଘଟଣା ଯେ ଉପନ୍ୟାସଠାରୁ ଆହୁରି ରୋମାଞ୍ଚକର ଓ ରହସ୍ୟମୟ ହୋଇପାରେ, ତାହା ଲେଖକ ସ୍ୱୀକାର କରିଛନ୍ତି । ମୋଟାମୋଟି ଭାବରେ ଉପନ୍ୟାସର ବିଷୟବସ୍ତୁ ଔପନ୍ୟାସିକ ମନୋବିଜ୍ଞାନରେ ଗବେଷଣା ଉଦ୍ଦେଶ୍ୟରେ ଲଣ୍ଡନରେ ଅବସ୍ଥିତି କାଳରେ ତିନୋଟି ନାରୀଙ୍କର ସଂସ୍ପର୍ଶରେ ଆସିଥିବା ଅନୁଭୂତିର ଘଟଣା ।

ସେହି ନାରୀତ୍ରୟୀ ହେଲେ ବର୍ଷୀୟସୀ ମହିଳା ଶ୍ରୀମତୀ ହାର୍ଭେ, ତାଙ୍କର ଯୁବତୀ କନ୍ୟା 'ନୀଟା' ଓ ନୀଟାର ବାନ୍ଧବୀ 'ନୀନା' । ଡକ୍ଟର ରଥ ଇଂରେଜମାନଙ୍କର ସାମାଜିକ ପାରିବାରିକ ଜୀବନ, ସେମାନଙ୍କର ସଂସ୍କୃତି, ଐତିହ୍ୟ ଆଦି ବିଷୟରେ ଜାଣିବା ପାଇଁ ନିଜର ଗବେଷଣା କାଳରେ କୌଣସି ହଷ୍ଟେଲରେ ନ ରହି ଏକ ସଂଭ୍ରାନ୍ତ ପରିବାର ଶ୍ରୀମତୀ ହାର୍ଭେଙ୍କ ଗୃହ ଅତିଥି (Paying guest) ଭାବରେ ରହିଥିଲେ । ଘଟଣାର ସମୟ ହେଉଛି - ୧୯୪୬ ଅଗଷ୍ଟ ମାସଠାରୁ ୧୯୪୯ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ।

ଲେଖକ ହାର୍ଭେ-ପରିବାର ସହିତ ନିବିଡ଼ ଭାବରେ ମିଳାମିଶା କରିଥିଲେ ଏବଂ ସେମାନଙ୍କର ପରିଚିତ ବନ୍ଧୁ ଓ ଆତ୍ମୀୟମାନଙ୍କ ସହିତ ବନ୍ଧୁତା କରି ପାଶ୍ଚାତ୍ୟ ସଭ୍ୟତା ସମ୍ବନ୍ଧରେ ଅନେକେ ତଥ୍ୟ ଜାଣିପାରିଥିଲେ ।

'ସାଗର ସେପାରେ' ଉପନ୍ୟାସରୁ ଆମେ ଇଂରେଜ ଜାତି ତଥା ଲଣ୍ଡନ ସହରର ଏକ ବାସ୍ତବ ଚିତ୍ର ପାଉଁ ଲଣ୍ଡନ ସହରର ବିଖ୍ୟାତ ଐତିହାସିକ ସ୍ଥାନ, ପ୍ରାକୃତିକ ଦୃଶ୍ୟ, ବହୁପ୍ରକାର ଯାଦୁଘର, ବଡ଼ ବଡ଼ ଫୁଲବଗିଚା ଆଦିର ବର୍ଣ୍ଣନା । ଇଂରେଜ ଜାତିର ପ୍ରକୃତ ସ୍ୱରୂପକୁ 'ନୀନା' ମୁଖରେ ଡକ୍ଟର ରଥ କହିଛନ୍ତି- "XX ଆମ ସମାଜରେ ସମସ୍ତ ସଂପର୍କ, ସବୁପ୍ରକାର ପରିଶ୍ରମ, ଏପରିକି ହୃଦୟଭରି ଢାଳି ଦେଇଥିବା ଆନ୍ତରିକ ସ୍ନେହ, ପ୍ରେମପରି ଅବଦାନର ମଧ ଅର୍ଥଗତ ବିନିମୟରେ ରୂପାନ୍ତରିତ ହୋଇଥାଏ ।'' (ପୃଷ୍ଠା ୧୩୬) ଇଂରେଜମାନଙ୍କର ବ୍ୟକ୍ତକୈନ୍ଦ୍ରିକ ଜୀବନ, ସେମାନଙ୍କର ଚାଲିଚଳଣି, ସାମାଜିକ ଜୀବନ, ସମ୍ବନ୍ଧରେ ସେ ବର୍ଣ୍ଣନା ଦେଇଛନ୍ତି । ସେମାନଙ୍କର ବ୍ୟକ୍ତିକୈନ୍ଦ୍ରିକ ଜୀବନ କଥା କହିବାକୁ ଯାଇ ଲେଖକ ଗୋଟିଏ ହାସ୍ୟକର ପ୍ରବାଦ ଉଲ୍ଲେଖ କରିଛନ୍ତି- ''ଥରେ ଗୋଟିଏ ନିର୍ଜନ ଦ୍ୱୀପରେ ଜାହାଜ ଭାଙ୍ଗିଯାଇଥିଲା । ସେଠାରେ କେତେଜଣ ଇଂରେଜ ଲୋକ ଅନ୍ୟ ଜାହାଜର ସାହାଯ୍ୟ ପାଇଁ ମାସେକାଳ ଅପେକ୍ଷା କରିଥିଲେ । କିନ୍ତୁ କେହି କାହା ସହିତ କଥାବାର୍ତ୍ତା କରି ନଥିଲେ । କାରଣ ସେମାନଙ୍କର ପରିଚୟ କରିଦେବା ପାଇଁ କେହି ନଥିଲେ ।'' (ପୃଷ୍ଠା ୨୮) ନୀଟା ଏକ ବ୍ୟକ୍ତିକୈନ୍ଦ୍ରିକ ଇଂରେଜ ମହିଳା । ସେହି ଚରିତ୍ରକୁ ଇଂରେଜ ଜାତିର ପ୍ରତୀକ ବୋଲି ଲେଖକ ଉଲ୍ଲେଖ କରିଛନ୍ତି ।

ଲେଖକ ଜଣେ ମନସ୍ତତ୍ତ୍ୱବିତ୍ ହୋଇଥିବାରୁ ଶ୍ରୀମତୀ ହାର୍ଭେ ଓ ନୀଟାର ମାନସିକ ଅବସ୍ଥା ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । ପାଶ୍ଚାତ୍ୟର ବ୍ୟକ୍ତିନିଷ୍ଠ ସମାଜରେ ମା, ଝିଅଙ୍କର ମାନସିକ ଦହନକୁ ପ୍ରଶମିତ କରିବା ପାଇଁ କୌଣସି ସାମାଜିକ ମାଧ୍ୟମ ନଥିଲା । ମା, ଝିଅ ମଧ୍ୟ ନିଜ ନିଜର ବ୍ୟଥା ପରସ୍ପର ପାଖରେ ପ୍ରକାଶ କରିବାର ସମ୍ଭାବନା ନଥିଲା, କାରଣ

''ଇଂରେଜ ସମାଜରେ ବ୍ୟକ୍ତିଗତ ଦୁଃଖମୟ ଅନୁଭୂତିକୁ ଅନ୍ୟ ଆଗରେ ବିଶଦ୍ ଭାବରେ ବର୍ଣ୍ଣନା କରିବା ଅସାମାଜିକ ଓ ଅସାଂସ୍କୃତିକ ବ୍ୟବହାର ବୋଲି ଗଣ୍ୟ ହୁଏ ।'' (ପୃଷ୍ଠା ୧୭) ।

ପ୍ରାଚ୍ୟ ହେଉ ବା ପାଶ୍ଚାତ୍ୟ ହେଉ, ମାନବିକତା, ହୃଦୟର ସ୍ନେହ, ପ୍ରେମ ଯେ ପରସ୍ପରକୁ ଅତି ନିକଟତର କରିଦେଇପାରେ, ତାହାହିଁ ଲେଖକ ଶ୍ରୀମତୀ ହାର୍ଭେ ଓ ଆପଣା ଚରିତ୍ର ମାଧ୍ୟମରେ ପ୍ରତିପାଦନ କରିଛନ୍ତି । ଲେଖକ ଶ୍ରୀମତୀ ହାର୍ଭେଙ୍କୁ ଚିରନ୍ତନୀ, ସାର୍ବଜନୀନ ଜନନୀ ରୂପେ ଚିତ୍ରଣ କରିଛନ୍ତି । ତାଙ୍କ ମତରେ ପୃଥିବୀର ସମସ୍ତ ସ୍ଥାନରେ ଜନନୀର ସେଇ ଗୋଟିଏ ରୂପ ଦେଖିବାକୁ ମିଳେ ।

ପାଶ୍ଚାତ୍ୟ ଦେଶର ଲୋକଙ୍କ ସମ୍ବନ୍ଧରେ ଆମ ଦେଶର ସାଧାରଣ ଜନସମାଜର ମତକୁ ଲେଖକ ଖଣ୍ଡନ କରିଛନ୍ତି । ପାଶ୍ଚାତ୍ୟ ଦେଶରେ ମଧ୍ୟ ଶ୍ରୀମତୀ ହାର୍ଭେଙ୍କ ପରି ଚିରନ୍ତନୀ ଜନନୀର ସ୍ୱରୂପ ଓ ନୀଟାର ଚରିତ୍ର ବିଶ୍ଳେଷଣ କରି ସେ ଦର୍ଶାଇଛନ୍ତି ନୀଟା ଆମ ଦେଶର ଯେକୌଣସି ରକ୍ଷଣଶୀଳା ନାରୀଙ୍କଠାରୁ ବ୍ୟତିକ୍ରମ ନୁହେଁ । ନୀଟା ଜୀବନର ତିନୋଟି ଘଟଣାରୁ ସ୍ପଷ୍ଟ ଜଣାଯାଏ ଯେ ଆମ ଦେଶପରି ପାଶ୍ଚାତ୍ୟରେ ମଧ୍ୟ ଅଗ୍ନିଶିଖା ସମ ନାରୀମାନେ ଅଛନ୍ତି । ପ୍ରଥମ ଘଟଣା- ସୌନ୍ଦର୍ଯ୍ୟ ପ୍ରତିଯୋଗିତାରେ କୃତକାର୍ଯ୍ୟ ହୋଇ ହଲିଉଡ୍‌ର ଚଳଚ୍ଚିତ୍ର ନାୟିକା ଭାବରେ ସେ ଧନ, ଯଶର ସମ୍ଭାବନାକୁ ସାମାନ୍ୟ ଅପମାନ ଯୋଗୁ ପାଦରେ ଠେଲିଦେଇଥିଲା । ଦ୍ୱିତୀୟ ଘଟଣାଟି ଧନଶାଳୀ, ସଂଭ୍ରାନ୍ତ ବଂଶୀୟ ସ୍ୱାମୀଙ୍କର ଚରିତ୍ରଗତ ଦୁର୍ବଳତାକୁ ସହ୍ୟ କରିନ ପାରି ତାଙ୍କୁ ଛାଡ଼ପତ୍ର ଦେଇଥିଲା । ତୃତୀୟ ଘଟଣା ହେଉଛି ପିଲାଦିନରୁ ଆଦର୍ଶ ଭାବରେ ପୂଜାକରି ଆସୁଥିବା ଆପଣା ପିତାଙ୍କୁ ଚରିତ୍ର ସ୍ଖଳନ ଯୋଗୁ ଘରୁ ବାହାର କରିଦେଇଥିଲା ।

ଅନ୍ୟ ଏକ ଚରିତ୍ର ହେଲା 'ନୀନା', ନୀଟାର ଦୂର ସଂପର୍କୀୟା ଭଉଣୀ । ନୀନାର ବାପ, ଭାଇ ଓ ପ୍ରେମିକ ଯୁଦ୍ଧରେ ପ୍ରାଣବଳୀ ଦେଇଥିଲେ । ନୀନା ଟାଇପିଷ୍ଟ କାମ କରି ଘର ଚଳାଏ । ସେ ଦେଖିବାକୁ ସୁନ୍ଦର, ନିଜକୁ ସବୁବେଳେ ସୁସଜ୍ଜିତା କରି ରଖିଥାଏ । ତା'ର ଅନେକ ପୁରୁଷ ବନ୍ଧୁ । ଡକ୍ଟର ରଥଙ୍କ ସହିତ ନୀନାର ଅଧିକ ମିଳାମିଶା ନୀଟା ଭଲପାଏ ନାହିଁ । ସେ ତାଙ୍କୁ ସତର୍କ କରିଦିଏ । ଏହାର ଉତ୍ତରରେ ଲେଖକ ପ୍ରାଚ୍ୟ ଓ ପାଶ୍ଚାତ୍ୟର ପାରିବାରିକ ଜୀବନର ପ୍ରଭେଦ କଥା ଉଲ୍ଲେଖ କରି କହିଛନ୍ତି- ''ଆମେ ଭବିଷ୍ୟତ ପାଇଁ ବଞ୍ଚୁ । X X X ତୁମ ଦେଶରେ ବର୍ତ୍ତମାନର ପରିସ୍ଥିତିର ମୂଲ୍ୟ ବହୁତ ବେଶୀ ।'' (ପୃଷ୍ଠା ୭୨) ନୀନା ସ୍ୱାଧୀନଚେତା, ଖୋଲାମେଲା, ନିଜ ସରକାରଙ୍କ ଦୋଷତ୍ରୁଟି କହିବାକୁ ମଧ୍ୟ ପଶ୍ଚାତପଦ ହେଉନଥିଲା ।

ଲେଖକ ଏହି ଉପନ୍ୟାସଟିର ଦ୍ୱିତୀୟ ମହାଯୁଦ୍ଧ-ପର ଇଂରେଜୀ ସାମାଜିକ ଜୀବନର ଚିତ୍ର ଅଙ୍କନ କରିଛନ୍ତି । ନୀଟା ଓ ନୀନା ଯୁଦ୍ଧକାଳୀନ ବିଭୀଷିକାମୟ ଦୁର୍ଦ୍ଦିନ ଭିତରେ ଗଢ଼ି ଉଠିଥିବା ଦୁଇଟି ଅଶାନ୍ତ ଚରିତ୍ର । ସେମାନଙ୍କର ଜୀବନ ହୋଇଉଠିଥିଲା ବିପର୍ଯ୍ୟସ୍ତ, ଉଦ୍‌ଭ୍ରାନ୍ତ । ଦ୍ୱିତୀୟ ମହାସମର ସମୟରେ ପରାଧୀନ ଭାରତବାସୀ ଯେ କଷ୍ଟ ସ୍ୱୀକାର କରିଥିଲେ ଓ ଯୁଦ୍ଧକାଳୀନ ଅଭାବ ଅସୁବିଧା ଭୋଗ କରିଥିଲେ- ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର କଟକଣା ଯେ ଭାରତରେ କେବଳ ହୋଇଥିଲା, ତା ନୁହେଁ । ଇଂଲଣ୍ଡବାସୀ ମଧ୍ୟ ବହୁ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ମାଂସ, କ୍ଷୀର, ଲହୁଣୀ ଆଦି ନିତ୍ୟ ବ୍ୟବହୃତ ଖାଦ୍ୟ ଉପରେ ସେଠାରେ ମଧ୍ୟ କଟକଣା ଜାରୀ ହୋଇଥିଲା । ପ୍ରତ୍ୟେକ ଗୃହରେ ଜଣେ ଜଣେ ସୈନିକଙ୍କୁ ଆଶ୍ରୟ ଦେବାକୁ

ସରକାର ସମସ୍ତଙ୍କୁ ବାଧ କରିଥିଲେ, ସେହି ଆଶ୍ରିତ ସୈନିକଙ୍କ ଦ୍ୱାରା ଧର୍ଷିତା ହୋଇ ନୀଟା, ନୀନା ପରି ଅସଂଖ୍ୟ ନାରୀ ସେମାନଙ୍କର ଜୀବନର ସୌରଭ ହରାଇ ବସିଥିଲେ ।

ନୀଟା ପରିବାରର ପାରିବାରିକ ବନ୍ଧୁ ହାରି କୁପରଙ୍କ ସହିତ ଡକ୍ଟର ରଥ ପରିଚିତ ଥିଲେ । ହାରି ନିଜର ବିଧବା ଭଉଣୀ ଓ ଭଣଜା, ଭାଣିଜୀ ସହ ଏକତ୍ର ରହୁଥିଲେ । ଭଣଜା, ଭାଣିଜୀ ସଂସାରରେ ପ୍ରତିଷ୍ଠିତ ହୋଇସାରିବା ପରେ କୁପର ନିଜର ବିବାହ କଥା ଚିନ୍ତା କରିବେ ବୋଲି କହୁଥିଲେ । ହାରିଥିଲେ ନାଟକ ଓ ଅପେରା ଲେଖକ । ବାମପନ୍ଥୀ ଲେଖକ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ହାରି କୁପରଙ୍କୁ ଜଣେ ମହାନ୍ ସାର୍ବଜନୀନ ଆଦର୍ଶ ଚରିତ୍ର ବୋଲି ଲେଖକ କହିଛନ୍ତି । ଗୌଣଚରିତ୍ର 'ରାୟ' ଚରିତ୍ରଟିକୁ ମଧ୍ୟ ଲେଖକ ଭଲ ଭାବରେ ଚିତ୍ରଣ କରିଛନ୍ତି । ଜମିଦାର ଘରର ଗେଲସର ପୁଅ ଭାବରେ ସାଧାରଣ ଜ୍ଞାନ, ବାସ୍ତବ ବୁଦ୍ଧି ତାଙ୍କର କିଛି ନଥିଲା । ତାଙ୍କର ପ୍ରତ୍ୟେକ ହାବଭାବ, ଖାଇବା ଢଙ୍ଗ, କପୋଳକଳ୍ପିତ କଥା କହିବା ଇତ୍ୟାଦିର ବର୍ଣ୍ଣନା ଅତି ଅଳ୍ପ ପରିସର ମଧ୍ୟରେ ଜୀବନ୍ତ ଭାବରେ ସେ ଚିତ୍ରଣ କରିଛନ୍ତି । ରାୟଙ୍କ ବିଦୁଷୀ, ବୁଦ୍ଧିମତୀ ପତ୍ନୀଙ୍କ ଚରିତ୍ର ସଂକ୍ଷେପରେ ବର୍ଣ୍ଣିତ ହେଲେ ମଧ୍ୟ ସେଇ ଚରିତ୍ରର ଏକ ପୂର୍ଣ୍ଣାଙ୍ଗ ଚିତ୍ର ଦେଇପାରିଛନ୍ତି ।

ଲେଖକ ଥିଲେ ନାସ୍ତିକ । ତେଣୁ ନୈରାଶ୍ୟବାଦୀ, କିନ୍ତୁ ସେ ସ୍ୱୀକାର କରିଛନ୍ତି ଯେ 'ମାର୍କ୍ସସ୍‌ବାଦ ମୋତେ ଜୀବନରେ ଗୋଟିଏ ବଳିଷ୍ଠ ଦିଗ୍‌ଦର୍ଶନ ଦେଇପାରିଛି । X X X କିନ୍ତୁ ଇଂଲଣ୍ଡର ମାର୍କ୍ସବାଦୀ ଦର୍ଶନ ପଢ଼ିଲା ପରେ ବିଶିଷ୍ଟ ମାର୍କ୍ସବାଦୀ ବୈଜ୍ଞାନିକ ଓ ଚିନ୍ତାଶୀଳ ଲୋକଙ୍କର ସଂସ୍ପର୍ଶରେ ଆସିଲା ପରେ ମୋଠାରେ ବଳିଷ୍ଠ ସାର୍ବଜନୀନ ମାନବିକବାଦୀ ଦର୍ଶନ ସୃଷ୍ଟି ହେଲା ।'' (ପୃଷ୍ଠା ୧୩୮) ।

ଯୁଦ୍ଧ ବିଧ୍ୱସ୍ତ, ମୃତ୍ୟୁ ସହିତ ସଂଗ୍ରାମଶୀଳ ଦୁଇଟି ନାରୀ ଜୀବନରେ ଲେଖକ ନିଜର ସାହଚର୍ଯ୍ୟ ଦ୍ୱାରା ଜଣକୁ କିଛିଟା ଶାନ୍ତି ଓ ଅନ୍ୟ ଜଣଙ୍କୁ କୁପରଙ୍କ ସହିତ ମିଳିତ କରାଇ ନିରାପତ୍ତା ଦେଇପାରିଥିବାରୁ ଆତ୍ମସନ୍ତୋଷ ଲାଭ କରିଛନ୍ତି । ''ନୀଟା, ହାରୀ କୁପର, ନୀନା ଓ ମାମୀ ପରି ସାଧାରଣ ଲୋକେ ମୋର ଜୀବନକୁ ଯେପରି ନୂତନ ମାନବୀୟ ମାଧୁର୍ଯ୍ୟରେ ଭରିଦେଇଛନ୍ତି, ମୋର ଡକ୍ଟରେଟ୍ ପ୍ରାପ୍ତି ତା ତୁଳନାରେ ବିଶେଷକିଛି ନୁହେଁ ବୋଲି ମୁଁ ଭାବେ ।'' (ପୃଷ୍ଠା ୯୫)

ଉପନ୍ୟାସର ଭାଷା ସରଳ, ସାବଲୀଳ ହୋଇଛି । ଥରେ ବହିଟିକୁ ପଢ଼ିବାକୁ ଆରମ୍ଭ କଲେ ଶେଷ ନକରି ରହିହୁଏ ନାହିଁ । ଏହି କଥାଗ୍ରନ୍ଥ ପାଠରୁ ଏକାବେଳକେ ଉପନ୍ୟାସ ଓ ଭ୍ରମଣବୃତ୍ତାନ୍ତର ସ୍ୱାଦ ମିଳିଥାଏ ।

ଡକ୍ଟର ରଥଙ୍କର 'ଭଲପାଇବାର ଆଦିକଥା' ଓ 'ଶେଷକଥା' ଉପନ୍ୟାସ ଦୁଇଟି ପ୍ରେମକୁ ଆଧାର କରି ଲିଖିତ । ଯୁଗେ ଯୁଗେ ପ୍ରେମ ହିଁ ସାହିତ୍ୟ ସୃଷ୍ଟିର ଉପଜୀବ୍ୟ ଉପାଦାନ ହୋଇଛି । କେତେବେଳେ ଐଶ୍ୱରିକ ପ୍ରେମ, କେତେବେଳେ ସ୍ୱଦେଶ ପ୍ରେମ, କେତେବେଳେ ପ୍ରକୃତି ପ୍ରେମ, ପୁଣି କେତେବେଳେ ମାନବୀୟ ପ୍ରେମ ସାହିତ୍ୟିକମାନଙ୍କର କୃତିରେ ବର୍ଣ୍ଣିତ ହୋଇଛି । ମାନବୀୟ ପ୍ରେମର ବର୍ଣ୍ଣନା ବ୍ୟାପକ ଭାବରେ ଏଯୁଗର ଉପନ୍ୟାସମାନଙ୍କରେ ସ୍ଥାନ ପାଇଛି । ଅର୍ଦ୍ଧ ଶତାବ୍ଦୀ ତଳର ଏକ ସତ୍ୟ ଘଟଣା ଉପରେ ଆଧାରିତ 'ଭଲପାଇବାର ଆଦିକଥା' ଉପନ୍ୟାସ । ଲେଖକଙ୍କ ଭାଷାରେ 'ସେ ଦୁହେଁ ଏବେ ବି ଜୀବିତ ।' ଏଥିରେ ଯେଉଁ ପ୍ରେମର ବର୍ଣ୍ଣନା ରହିଛି, ତାହା ଦୈହିକ ପ୍ରେମ ନୁହେଁ । ପ୍ରେମିକ ପ୍ରେମିକାଙ୍କର ବିବାହ ଓ ମିଳନ ହୋଇ

ନପାରିଲେ ମଧ୍ୟ କେହି କାହାରିକୁ ଦୋଷାରୋପ କରିନାହାନ୍ତି । 'ସଂଯୋଜକର ସଂଳାପ'ରେ ଲେଖକ ଲେଖିଛନ୍ତି- ''ଯାହାକୁ ଜଣେ ମନ ପ୍ରାଣ ଦେଇ ଭଲ ପାଉଥିବ, ତାକୁ ଘୃଣା କରିବା ଅସମ୍ଭବ ।'' ଏହି ଉପନ୍ୟାସର ମୌଳିକ ନିର୍ଣ୍ଣୟ ହେଲା ''ଭଲ ପାଇବାର ଗଭୀର ଅନୁଭୂତି ସାରାଜୀବନ ବ୍ୟାପୀ ପ୍ରସାରିତ ହୋଇରହିଥାଏ ।'' ହୁଏତ ଯଦି ବିବାହ ଓ ମିଳନ ହୋଇଥାଆନ୍ତା, କିଛିଦିନ ପରେ ତେଲ ଲୁଣର ସଂସାର ଭିତରେ ପ୍ରେମର ଆଲୋକ ନିଷ୍ପ୍ରଭ ହୋଇଯାଇଥାଆନ୍ତା । ଅର୍ଦ୍ଧଶତାବ୍ଦୀ ତଳର ଜଣେ ଆଦର୍ଶ ପ୍ରେମିକ ନିଜର ପ୍ରେମାନୁଭୂତିକୁ ସେ ସମୟର ପ୍ରଚଳିତ ଭାବ ଓ ଭାଷାରେ ଚିତ୍ରଣ କରିଛନ୍ତି । ପ୍ରେମ ସମ୍ପର୍କରେ ସେ ଯୁଗର ଧାରଣା କିପରି ଥିଲା, ଆଜିର ପାଠକ ତାହା ହୁଏତ ବିଶ୍ୱାସ କରି ପାରିବେ ନାହିଁ । ପ୍ରେମର ଯେ ଏକ ଗଭୀର ଆତ୍ମିକ ଦିଗ ରହିଛି, ଆଜିର ପ୍ରେମିକ ପ୍ରେମିକା ତାହା ମାନିନେଇ ପାରିବେ ନାହିଁ ।

ଚିଟାଉରୀତି ଉପନ୍ୟାସର ଅନ୍ୟତମ ଆଙ୍ଗିକ କୌଶଳ । ଏହି ରୀତିରେ ଚରିତ୍ରମାନଙ୍କର ଅନୁଭୂତି ଓ ଆତ୍ମକଥା ପତ୍ର ଆକାରରେ ଲିପିବଦ୍ଧ ହୋଇଥାଏ । ଚରିତ୍ର ନିଜର ବ୍ୟକ୍ତିଗତ ଅନୁଭୂତି ଓ ମାନସିକ ଅବସ୍ଥାକୁ ପତ୍ର ମାଧ୍ୟମରେ ପ୍ରକାଶ କରିଥାଏ । ପତ୍ର ଉପନ୍ୟାସରେ ପାଠକର ଉତ୍କଣ୍ଠା ସଂରକ୍ଷିତ ହୋଇଥାଏ । ଗୋଟିଏ ପତ୍ର ପାଠପରେ ଅନ୍ୟ ପକ୍ଷରୁ କି ଉତ୍ତର ଆସିବ, ସେ ବିଷୟରେ ଜାଣିବା ପାଇଁ ପାଠକ ଉତ୍କଣ୍ଠିତ ହୋଇପଡ଼େ । ଓଡ଼ିଆ ସାହିତ୍ୟରେ ପତ୍ର-ଉପନ୍ୟାସ ବିଶେଷ ରଚିତ ହୋଇନାହିଁ; ଗୋଦାବରୀଶ ମହାପାତ୍ରଙ୍କର 'ପ୍ରେମପଥେ', ରାଜକିଶୋର ପଟ୍ଟନାୟକଙ୍କର 'ପଞ୍ଜୁରୀପକ୍ଷୀ', ବିଭୂତି ପଟ୍ଟନାୟକଙ୍କର 'ଦିନଯାଏ ଚିହ୍ନ ରହେ', ରଘୁନାଥ ନାୟକଙ୍କର 'ଦଶଦୀପ', ନରସିଂହ ସାହୁଙ୍କର 'ମିନତୀ' ପ୍ରଭୃତି ଅଳ୍ପ କେତୋଟି ମାତ୍ର ରଚିତ ହୋଇଛି । ଡକ୍ଟର ରାଧାନାଥ ରଥଙ୍କର 'ଭଲ ପାଇବାର ଆଦିକଥା'ରେ ନାୟକ ନାୟିକାଙ୍କର ପତ୍ର ଯେ କେବଳ ରହିଛି, ତା ନୁହେଁ । ଉପନ୍ୟାସରେ ନାୟକର କବିତା କେତୋଟି ମଧ୍ୟ ସଂଯୋଜିତ ହୋଇଛି । ଲେଖକ ସଂଯୋଜକ ଭାବରେ ପ୍ରଥମେ ଚିଠିଗୁଡ଼ିକ ଓ ପରେ ନାୟକର ଚିଠିଗୁଡ଼ିକ ଉପସ୍ଥାପନ କରିଛନ୍ତି । ନାୟକର ପୁରୁଣା ଡାଇରୀର କିଛି ଅଂଶର ମଧ୍ୟ ବର୍ଣ୍ଣନା ରହିଛି । ଶେଷରେ 'ଛନ୍ଦା' ଉଦ୍ଦେଶ୍ୟରେ ରଚିତ 'ମହ୍ଲାର'ର କେତେଗୁଡ଼ିଏ ମର୍ମସ୍ପର୍ଶୀ କବିତା ରହିଛି । ତେଣୁ ଏହାକୁ ଚିଟାଉ ଉପନ୍ୟାସ ପର୍ଯ୍ୟାୟଭୁକ୍ତ କରାଯାଇପାରେ ।

ଆଲୋଚ୍ୟ ଉପନ୍ୟାସଟିକୁ ତିନି ଭାଗରେ ବିଭକ୍ତ କରାଯାଇଛି । ପ୍ରଥମ ଭାଗ ''ଛନ୍ଦାୟିତ ମହ୍ଲାର'', ଉଭୟଙ୍କର ଚିଠିରୁ ଏ ନାମ ଦୁଇଟି କିପରି ଆତ୍ମପ୍ରକାଶ କଲା, ତାର ବର୍ଣ୍ଣନା ରହିଛି । ଦ୍ୱିତୀୟ ଭାଗରେ ମହ୍ଲାରର ପୁରୁଣା ଡାଏରୀରୁ ସେମାନଙ୍କର ପରିଚୟ, ସମୟ ଓ ସ୍ଥାନର ବର୍ଣ୍ଣନା ରହିଛି । ଏହି ଅଂଶଟିର ନାମ 'ପରିଚୟ' । କବିତା ଅଂଶଟିର ନାମ ହେଉଛି 'ଗୈରିକ ଗୋଧୂଳୀ' ।

ପ୍ରେମିକା ସହିତ ମିଳନ ହୋଇପାରିବ ନାହିଁ ବୋଲି ପ୍ରେମିକ ଜାଣିପାରିଛି, ସେଇ ସମୟରେ ହିଁ ''ଛନ୍ଦା ଉଦ୍ଦେଶ୍ୟରେ ପ୍ରେମିକ ମହ୍ଲାରର ମର୍ମୋଚ୍ଛ୍ୱାସ'' । ମହ୍ଲାର ତା ଜୀବନର କଣ୍ଟକିତ ପ୍ରେମକୁ ଉଜ୍ଜୀବିତ କରିବାପାଇଁ ଏହି କବିତାଗୁଡ଼ିକ ରଚନା କରିଛି । ସେ ପବିତ୍ର ଅନୁରାଗକୁ ମନଭିତରୁ ପୋଛିଦେଇ ପାରିନାହିଁ । ବାସ୍ତବ ମିଳନ ନ ହେଲେ ମଧ୍ୟ ପ୍ରେମିକପ୍ରେମିକା ମନ ମଧ୍ୟରୁ କେହି କାହାକୁ ଦୂରକରି ପାରିନାହାନ୍ତି ।

''ଭଲପାଇବାର ଆଦି କଥା'' ଉପନ୍ୟାସର ଉତ୍ତରାର୍ଦ୍ଧ ହେଉଛି ''ଶେଷକଥା'' ଉପନ୍ୟାସ । ଏ ଉପନ୍ୟାସଟି ମଧ୍ୟ ତିନିଭାଗରେ ବିଭକ୍ତ— ''ବିଷର୍ଣ୍ଣ ଅଭିସାର'', ''ନିବୃତ୍ତ

ମନର ବ୍ୟଥା'' ଓ ''ଶେଷକଥା'' । ଉପନ୍ୟାସରେ ଡକ୍ଟର ରାଧାନାଥ ରଥ ମହ୍ଲାର/ଅବିନାଶ ଓ ଛନ୍ଦା/ମନୀଷାର ଅପାର୍ଥିବ ପ୍ରେମର ପରିଣତି ବିଷୟ ବର୍ଣ୍ଣନା କରିଛନ୍ତି । ଦୀର୍ଘ ଚାଳିଶ ବର୍ଷ ପରେ ପୁଣି ସେହି ଆଶ୍ୱିନ ଶୁକ୍ଳ ତୃତୀୟା ଦିନ ଭୋର୍‌ରେ ମନୀଷାର ଅବିନାଶଙ୍କ ସହିତ ଦେଖା । ଦୀର୍ଘ ଚାଳିଶବର୍ଷର ବିବାହିତ ଜୀବନର ଝଡ଼ଝଞ୍ଜା ସହି ମନୀଷାର ରୂପ ହୋଇଛି ଅତୀତର ଏକ ଦୀପ୍ତିହୀନ ଛାଇମାତ୍ର । ହୃଦ୍‌ରୋଗୀ ମନୀଷା କେବଳ ଅବିନାଶଙ୍କୁ କୁମାର ପୂର୍ଣ୍ଣମୀ ଦିନ ନୂଆ ଲୁଗା ପିନ୍ଧାଇ ମନ୍ଦିର ଦର୍ଶନ କରାଇବା ପାଇଁ ସୁଦୂର ଦିଲ୍ଲୀରୁ ଅସୀମ ସାହସ ଓ ମନୋବଳ ନେଇ ଆସିଛି । ଅଶ୍ୱିନ ଶୁକ୍ଳ ତୃତୀୟାଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ ସେ ବ୍ରତ ପାଳନ କରିଛି । କିନ୍ତୁ ତ୍ରୟୋଦଶୀ ଦିନ ସନ୍ଧ୍ୟାତାରାକୁ ଦେଖିଦେଖି ମନୀଷାର ଜୀବନ ଦୀପ ଲିଭିଯାଇଛି । ଅବିନାଶ ସାଙ୍ଗରେ ଆଉ ଦେଖା ହୋଇପାରିନାହିଁ ।

ମନୀଷା ତାର ଆତ୍ମଲିପିରେ ବିଗତ ଚାଳିଶବର୍ଷର ବିବାହିତ ଜୀବନର କାହାଣୀ ଅବିନାଶକୁ ପଢ଼ିବାକୁ ଦେଇଥିଲା । ଔପନ୍ୟାସିକ ନାୟିକା ମନୀଷାର ଆତ୍ମଲିପି ମାଧ୍ୟମରେ ତାର ଜୀବନ ଓ ପରିବାରର ଯେଉଁ ଚିତ୍ର ଅଙ୍କନ କରିଛନ୍ତି, ଆଜିର ଦୁନିଆରେ ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଅବଶ୍ୟ ନାୟକ ଅବିନାଶ ପରିବାରର ଯେଉଁ ଚିତ୍ର ସେ ଦେଇଛନ୍ତି, ତାହା ଯେ ନ ଘଟୁଛି ଏହା ମଧ୍ୟ କୁହାଯାଇନପାରେ । ଡକ୍ଟର ଅବିନାଶ ଓ ତାଙ୍କ ପୁଅ ଗୌତମ ଭଳି ଚରିତ୍ରବାନ୍ ଆଦର୍ଶ ମଣିଷ ସମାଜରେ ଅଛନ୍ତି ବୋଲି ହୁଏତ ଆଜି ପର୍ଯ୍ୟନ୍ତ ଭାରତୀୟ ସମାଜ ଏତେ ଝଡ଼, ଝଞ୍ଜା ସତ୍ତ୍ୱେ ମୁଣ୍ଡ ଟେକି ରହିପାରିଛି ।

ଆଜିର ଜନସେବକ, ନେତା ଜନସେବା ଅପେକ୍ଷା ନିଜର ପ୍ରତିପତ୍ତି, ଶକ୍ତି ଓ ଅର୍ଥ ଉପାର୍ଜନକୁ ହିଁ ଗୁରୁତ୍ୱ ଦେଉଛନ୍ତି । ଶିକ୍ଷକ ଚାହୁଁଛି ନିଜର ଯଶ, ଖ୍ୟାତି ଓ ଅର୍ଥ ଉପାର୍ଜନ । ପାଠ ପଢ଼େଇବା ଓ ଛାତ୍ରର ଚରିତ୍ରଗଠନ କରିବା ତା ପାଇଁ ଆଜି ଗୌଣ କାର୍ଯ୍ୟ ହୋଇଯାଇଛି । ଆଜିର ଶିକ୍ଷାନୁଷ୍ଠାନ ଆଉ 'ମଣିଷଗଢ଼ା କାରଖାନା' ହୋଇନାହିଁ । ଡାକ୍ତରାଣୀ ମନୀଷା ଆଖିରେ ରୋଗୀ ସେବା ବଡ଼ କଥା ନୁହେଁ, ଅର୍ଥ ଉପାର୍ଜନ ହିଁ ମୁଖ୍ୟ ଲକ୍ଷ୍ୟ; ଅବୈଧ ଗର୍ଭପାତ କରାଇ ରାଶି ରାଶି ଅର୍ଥ ଓ ଦାମୀକା ଆସବାବ ପତ୍ରରେ ଘର ପରିପୂର୍ଣ୍ଣ କରିବା । କିନ୍ତୁ ତାର ପରିଣତି ହୋଇଛି ଭୟଙ୍କର । ସ୍ୱାମୀ ଅରବିନ୍ଦ ସୁରା ଓ ସାକୀରେ ବୁଡ଼ିରହି ମନୀଷା ପାଖରୁ ଦୂରେଇ ଯାଇଛନ୍ତି । ପିଲାମାନେ ମଧ୍ୟ ତାଙ୍କୁ ଅଚିହ୍ନା ଦୃଷ୍ଟିରେ ଦେଖୁଛନ୍ତି । ବେଳେବେଳେ ଡାକ୍ତରାଣୀ ମନୀଷାଙ୍କର ମନେହେଉଛି ଯେପରି ସେ ମଣିମୁକ୍ତାର ଏକ ନିବୁଜ ଗୁମ୍ଫାରେ ଘୂରି ବୁଲୁଛନ୍ତି ନିଃସଙ୍ଗ ଭାବରେ । ସେ ଜୀବନରେ ଆନନ୍ଦ ନାହିଁ । ତାଙ୍କ ବଗିଚାରେ କେବଳ ଗନ୍ଧହୀନ କାଗଜଫୁଲ ଫୁଟୁଛି । ସ୍ୱାମୀ ସନ୍ତାନ ସମସ୍ତେ ଥାଇ ମଧ୍ୟ ସେ ନିଃସଙ୍ଗ । ଏହି ମାନସିକ ଅବସାଦ ଓ ଅର୍ଥ ଉପାର୍ଜନର ବିଶ୍ରାମହୀନ ଦୌଡ଼ ଭିତରେ ସେ ଅଣନିଃଶ୍ୱାସୀ ହୋଇପଡୁଛନ୍ତି ।

ପିଲାଦିନରୁ ବାପ ମା'ଙ୍କର ସ୍ନେହରୁ ବଞ୍ଚିତ-ଆୟା, ନର୍ସଙ୍କ ଦ୍ୱାରା ପାଳିତ ହୋଇ ସିଦ୍ଧାର୍ଥ ଓ ଅମିତାଭ ବୋର୍ଡ଼ିଙ୍ଗ୍ ସ୍କୁଲରେ ପାଠ ପଢ଼ିଲେ । ଘର ବା ବାପା ମା'ଙ୍କ ପ୍ରତି ସେମାନଙ୍କର ମମତା ରହିଲା ନାହିଁ । ଅବଶ୍ୟ ବଡ଼ପୁଅ ସିଦ୍ଧାର୍ଥ ମା'ର ଦୁଃଖରେ କିଞ୍ଚିତ୍ ସହାନୁଭୂତି ପ୍ରକାଶ କରିଛି । ଡାକ୍ତରୀ ପଢ଼ିଛି, ବିଦେଶ ଯାଇଛି । ଓଡ଼ିଶା ଓ ଓଡ଼ିଆ ଭାଷା ପ୍ରତି ତାର ମମତା ରହିଛି । ମାଙ୍କୁ ନେଇ ପ୍ରତିବର୍ଷ ପୁରୀଯାଏ । ଅବଶ୍ୟ, ଅବିନାଶଙ୍କର ପୁଅ ଗୌତମ ସହିତ ମିଳାମିଶା କଲାପରେ ତାର ଏ ପରିବର୍ତ୍ତନ ଆସିଛି । କିନ୍ତୁ ବିଦେଶ ଯାଇ ମଧ୍ୟ ଶାନ୍ତି ପାଇନାହିଁ । କିଛି ଡଲାର ଉପାର୍ଜନ କରି ଦକ୍ଷିଣ ଆମେରିକାରେ ଲକ୍ଷ୍ୟହୀନ ଭାବରେ

କିଛିଦିନ ବୁଲିଲା ପରେ ଗୋଟିଏ ଅଜ୍ଞାତ ଗ୍ରାମରେ ଏକ କୃଷକ ପରିବାରରେ ଆଶ୍ରୟ ନେଇଛି । ପରେ ତାଙ୍କ ଝିଅକୁ ବିବାହ କରି ସେଠାରେ ବସବାସ କରିଛି । ଦାର୍ଜିଲିଂ, ଦିଲ୍ଲୀ ଓ ଆମେରିକାର କୃତ୍ରିମ ଜୀବନ ଭିତରୁ ଚାଲି ଆସି ଦକ୍ଷିଣ ଆମେରିକାର ଗ୍ରାମରେ ରହିବା ମଧ୍ୟରେ 'ଗ୍ରାମକୁ ଫେରି ଚାଲ' ଆଦର୍ଶକୁ ଲେଖକ ପ୍ରତିପାଦନ କରିଛନ୍ତି ।

ସାନପୁଅ ଅମିତାଭ ନିଶାଗ୍ରସ୍ତ । ଘରୁ କେବଳ ପଇସା ନେବା ବ୍ୟତୀତ ଆଉ ଘର ସହିତ କିଛି ସମ୍ପର୍କ ତାର ନଥିଲା । ଶେଷରେ ନର୍ସର ଝିଅ 'ନଟିକା'କୁ ନେଇ ଦିଲ୍ଲୀ ଛାଡ଼ି ଚାଲିଗଲା । ମଟର ଦୁର୍ଘଟଣାରେ ଗୁରୁତର ଭାବରେ ଆହତ ହୋଇ ଦିଲ୍ଲୀ ଫେରିଲା । ସହଜ ଉପାୟରେ ସ୍ୱଳ୍ପ ସମୟ ମଧ୍ୟରେ ପ୍ରଚୁର ଅର୍ଥ ଉପାର୍ଜନ କରୁଥିବା ଅଧିକାଂଶ ବଂଶମର୍ଯ୍ୟାଦାହୀନ ବ୍ୟକ୍ତିଙ୍କର ବିଷମୟ ପରିଣତିର ଏହା ଏକ ପ୍ରତିଭୂ । ଅବିନାଶ ତାର ପିଲାମାନଙ୍କୁ ପାଖରେ ରଖି ସମସ୍ତ ସ୍ନେହ ଆଦର ଦେଇ ମଣିଷ କରି ଗଢ଼ି ତୋଳିଛି । ଲେଖକ ଅତି ଦକ୍ଷତାର ସହ ଅବିନାଶ ଓ ମନୀଷାର ପରିବାର, ଜୀବନ ଓ ଜୀବିକାର ବିପରୀତମୁଖୀ ଚିତ୍ର ଅଙ୍କନ କରି ପାଠକ ସମାଜକୁ ଯେପରି ଏକ ଚେତାବନୀ ଦେଇଛନ୍ତି ।

ଉପନ୍ୟାସ ଦୁଇଟିର ସାବଲୀଳ ଭାଷା ପାଠକଙ୍କୁ ସ୍ପର୍ଶ କରିବ ନିଶ୍ଚୟ । ଅନେକ ସ୍ଥାନରେ କାବ୍ୟିକ ଭାଷାର ପ୍ରୟୋଗ ଲେଖକ କରିଛନ୍ତି । ଉଦାହରଣ– ''ଆମ ଐଶ୍ୱର୍ଯ୍ୟର ତାଜମହଲ ଭିତରେ ସ୍ନେହ ମମତାହୀନ ସମାଧି ଚାରିପାଖେ କେବଳ ଅଶ୍ରାନ୍ତ ବିଳାପର ଅବ୍ୟକ୍ତ ବେଦନାହିଁ ଚିରଜୀବନ ମର୍ମରିତ ହୋଇ ଚାଲିଥିବେ ।'' (ପୃଷ୍ଠା ୯୩, ଶେଷକଥା) ''ଭଲ ପାଇବାର ଆଦିକଥା''ରେ ଚିଠିଗୁଡ଼ିକ ବେଶ୍ କାବ୍ୟିକ ହୋଇପଡ଼ିଛି । ଅନେକ ସ୍ଥାନରେ ଭାବ ଓ ବର୍ଣ୍ଣନାର ପୁନରାବୃତ୍ତି ମଧ୍ୟ ହୋଇଛି । କେତେକ ସ୍ଥାନରେ ତ୍ରୁଟିପୂର୍ଣ୍ଣ ଭାଷାର ପ୍ରୟୋଗ ଲକ୍ଷିତ ହୁଏ । ଔପନ୍ୟାସିକଙ୍କର ଅନନ୍ୟ ପର୍ଯ୍ୟବେକ୍ଷଣ ଶକ୍ତି ପ୍ରକାଶରେ, ଚରିତ୍ରମାନଙ୍କର ମାନସିକ ଦ୍ୱନ୍ଦ୍ୱ ଓ ମନସ୍ତାତ୍ତ୍ୱିକ ଚିତ୍ର ପ୍ରଦାନରେ ଯଥେଷ୍ଟ ଦକ୍ଷତା ରହିଛି । ଉପନ୍ୟାସଗୁଡ଼ିକ ପାଠକଙ୍କୁ ଆନନ୍ଦ ଦାନ କରିବା ସଂଗେ ସଂଗେ ଆମ ଉପନ୍ୟାସ- ସାହିତ୍ୟରେ ଉଚ୍ଚ ଆସନ ଲାଭ କରିବ ବୋଲି ବିଶ୍ୱାସ ।

— ଡକ୍ଟର ଶ୍ରୀମତୀ ଶରତ କୁମାରୀ ମିଶ୍ର ■ ଏଷଣା, ଷଡ଼ତ୍ରିଂଶ ଖଣ୍ଡ, ଜୁନ ୧୯୯୮

## ଭଲପାଇବାର ଜନ୍ମଲଗ୍ନ

ପୃଥିବୀ ବିଚିତ୍ର- କିନ୍ତୁ ତାଠୁ ବଳି ବିଚିତ୍ର ମଣିଷର ମନ । ମଣିଷ ମନର ସଂଗୁପ୍ତ ସତ୍ତାଟିକୁ ବିଶ୍ୱସ୍ତ ଭାବରେ ଆବିଷ୍କାର କରି ପାଠକ ମନରେ ସଞ୍ଚାରିତ କରି ପାରିଲେ ଲେଖକର ସୃଷ୍ଟି ହୁଏ ସଫଳ, ସାର୍ଥକ । 'ଭଲପାଇବାର ଆଦିକଥା' ଓ 'ଶେଷକଥା' ଉପନ୍ୟାସ ଦୁଇଟି ଡକ୍ଟର ରାଧାନାଥ ରଥଙ୍କର ଜୀବନ ସତ୍ୟର ବାସ୍ତବାନୁଗ ଶିଳ୍ପରୂପର ବିପୁଳ ଐଶ୍ୱର୍ଯ୍ୟ ଓ ନିରଙ୍କୁଶ ଆନ୍ତରିକତା ଓ ସତାର ଗଭୀର ଅନୁଭବ ନେଇ ପାଠକ ସମ୍ମୁଖରେ ଆବିର୍ଭୂତ । ପ୍ରେମ ଦର୍ଶନ ତଥା ଆଦର୍ଶର ଉଚ୍ଚାଙ୍ଗ ଅଭିବ୍ୟକ୍ତି ଏହାର ପ୍ରାଣବିନ୍ଦୁ । ଚିରନ୍ତନ ପ୍ରୀତିର ଆବେଗ ଅନୁଭୂତିର ସଂହତ, ସଂଯତ, ଅନ୍ତରଙ୍ଗ ରୂପଟିକୁ ପ୍ରକାଶ କରିବାରେ ଲେଖକଙ୍କ କାବ୍ୟିକ ସୌନ୍ଦର୍ଯ୍ୟ ଚେତନା ଓ ମାନବୀୟ ଉପଲବ୍ଧିର ମହନୀୟ ବୋଧଦୃଷ୍ଟି, ପ୍ରଜ୍ଞାଦୃଷ୍ଟି ଓ ରସଦୃଷ୍ଟିର ମନୋଜ୍ଞ ଅଭିବ୍ୟକ୍ତି କେବଳ ଉପଭୋଗ୍ୟ ନୁହେଁ, ବିଚାର ସାପେକ୍ଷ ।

ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଯେ ଆନନ୍ଦ ବା ସୁଖ ପ୍ରାପ୍ତି ହିଁ ଜୀବନର ଅନ୍ତିମ ଲକ୍ଷ୍ୟ । ଭୌତିକ ଜୀବନର ସୁଖ, ସ୍ୱାଚ୍ଛନ୍ଦ୍ୟ, ଧନ ସଂପଦ କେତେ ତୁଚ୍ଛ,

ଅପାଂକ୍ତେୟ, ଆଉ ସ୍ନେହ ମମତା, ପ୍ରେମ ପ୍ରୀତିର ପୃଥିବୀ ମଣିଷ ଜୀବନକୁ କେମିତି ସୁରଭିତ ଆନନ୍ଦ ମୁଖର କରିପାରେ, ତାର ଅନୁଭୂତିସିଦ୍ଧ ବାସ୍ତବ ରୂପ ଉପନ୍ୟାସର ଅଙ୍ଗରାଗ । ବୌଦ୍ଧିକ ପରିତୃପ୍ତି, ମାନବୀୟ ଉପଲବ୍ଧି ଆଉ ଆର୍ଥିକ ସମୃଦ୍ଧି ଭିତରେ ମଣିଷ କାହାକୁ ସାଉଁଟି ନେଲେ ମଣିଷ ପରି ବଞ୍ଚିବ, ମଣିଷ ମନର ଏଇ ବିଚିତ୍ର ଜଟିଳ ରୂପକୁ ଏକ ସରଳ ସହଜ ବାସ୍ତବ ରୂପ ଦେବା ହିଁ ଲେଖକଙ୍କର ସାରସ୍ୱତ ବୈଶିଷ୍ଟ୍ୟ ।

'ଭଲପାଇବାର ଆଦିକଥା' ଓ 'ଶେଷକଥା' ନାୟକ ମହ୍ଲାର ଓ ନାୟିକା ଛନ୍ଦା ଜୀବନର ଅନନ୍ୟ ଉପଲବ୍ଧିର ସ୍ମୃତିଲିପି । ଏହାକୁ ଚେତନାପ୍ରଣୟଧର୍ମୀ ଉପନ୍ୟାସ କହିଲେ ଭୁଲ ହେବନାହିଁ । ଏଥିରେ ନାୟକ ନାୟିକାଙ୍କର ମନସ୍ତାତ୍ତ୍ୱିକ ଭାବଧାରାର ନିର୍ଭୁଲ ପ୍ରତିଛବିଟି ଗଢ଼ିତୋଳିବା ଭିତରେ ଉପନ୍ୟାସ ଏକ ସାର୍ଥକ ସଫଳ ଶୈଳୀକୁ ଆଦରି ନେଇଛି । ସେମାନଙ୍କ ଚିନ୍ତା ଚେତନା ପ୍ରକାଶ ପାଇଛି ପତ୍ର ମାଧ୍ୟମରେ । କବିତାର ସ୍ୱପ୍ନ ମଧୁର ଉଚ୍ଛ୍ୱାସରେ, ସମୟ ଲିପିରେ—ଯାହା ସେମାନଙ୍କର ଆତ୍ମକଥନ । ସେମାନଙ୍କ ମାନସ ରାଜ୍ୟରେ ଅତୀତ ଜୀବନର ଅଭିଜ୍ଞିତ ମୁହୂର୍ତ୍ତଗୁଡ଼ିକ ଅନବଦ୍ୟ ଅବିନାଶୀ ରୂପ ପରିଗ୍ରହ କରିଛି । ଲେଖକ ଜୀବନରେ ବହୁକୋଣବିଶିଷ୍ଟ ବୈଚିତ୍ର୍ୟକୁ ଚିତ୍ରିତ କରିଛନ୍ତି ଶିଳ୍ପୀର ତିର୍ଯକ ଅଭିଜ୍ଞ ଦୃଷ୍ଟି ନେଇ । ଅତୀତ ଓ ବର୍ତ୍ତମାନ ଭିତରେ ନିରବଚ୍ଛିନ୍ନ ଘଟଣା ପ୍ରବାହ ଆଉ ତାର ମନସ୍ତାତ୍ତ୍ୱିକ ପ୍ରତିକ୍ରିୟାକୁ ଲେଖକ ଅତ୍ୟନ୍ତ ବୈଚିତ୍ର୍ୟପୂର୍ଣ୍ଣ ଭାବରେ ପ୍ରତିପାଦନ କରିଛନ୍ତି । ଅର୍ଥ ଓ ପ୍ରତିଷ୍ଠାର ପ୍ରଲୋଭନରେ ମନୀଷା ଆଦର୍ଶବାଦୀ ଅବିନାଶକୁ ପ୍ରତ୍ୟାଖ୍ୟାନ କରି ଅରବିନ୍ଦକୁ ଗ୍ରହଣ କରିଛି । ପିତାମାତାଙ୍କ ଅର୍ଥ ଉପାର୍ଜନର ନିଶାରେ ସନ୍ତାନମାନେ କିପରି ନିଜ ଜୀବନର କୋମଳ ମଧୁର ସ୍ମୃତି-ଧନ୍ୟ ମୁହୂର୍ତ୍ତ ହରାଇ ଉଦ୍‌ଭ୍ରାନ୍ତ, ଦିଗଭ୍ରାନ୍ତ ହୋଇ ପଡ଼ନ୍ତି, ତାର ଏକ ବାସ୍ତବ ଆଲେଖ୍ୟ ଏଇ ଉପନ୍ୟାସରେ ଉତ୍‌କୀର୍ଣ୍ଣ । ମନୀଷାର ବଡ଼ ପୁଅ ସିଦ୍ଧାର୍ଥ ଅବିନାଶଙ୍କ ବଡ଼ ପୁଅ ଗୌତମର ସଂସ୍ପର୍ଶରେ ଆସି ତା ପିତାଙ୍କ ଜୀବନ ଦର୍ଶନରେ ଉଦ୍‌ବୁଦ୍ଧ ହେଇ ନିଜ ପିତା ଅରବିନ୍ଦଙ୍କ ଜୀବନଚର୍ଯ୍ୟା ଓ ବିପୁଳ ଐଶ୍ୱର୍ଯ୍ୟ ପ୍ରତି ବୀତସ୍ପୃହ ହେଇ ସୁଦୂର ଦକ୍ଷିଣ ଆମେରିକାର ଚିଲ୍ଲୀରେ ଆଦିମ ଅଧିବାସୀଙ୍କ ନିଷ୍ପାପ ପବିତ୍ର ସ୍ନେହ ମମତାର ପ୍ରେମ ବନ୍ଧନରେ ବାନ୍ଧି ହେଇଛି । ସ୍ତ୍ରୀ ଆନୀୟା ଆଉ ପରୀ ପରି ସୁନ୍ଦର ଝିଅଟିଏ ପାଇ ତାର ଘଟିଛି ଜନ୍ମାନ୍ତର । ''ସୁରଭିତ ବାୟୁମଣ୍ଡଳ ଅଗଣିତ ପକ୍ଷୀଙ୍କର ଅଭିନବ ସ୍ୱର ଲହରୀର ସଦା ସର୍ବଦାନାନାଦରେ'' ସିଦ୍ଧାର୍ଥର କଣ୍ଠରୁ ସ୍ୱତଃ ଝରିଯାଏ ଅନାବିଳ ସଂଗୀତର ଧ୍ୱନି । ଆଉ କୃତ୍ରିମ ନିରାନନ୍ଦ ଜୀବନ ଭିତରେ ମନୀଷାର ଅପରୂପ ମଧୁର କଣ୍ଠଧ୍ୱନି ନିସ୍ତବ୍ଧ ହେଉଯାଏ ସିଦ୍ଧାର୍ଥ ଭିତରେ ଆତ୍ମିକ ଆନନ୍ଦର ଉପଲବ୍ଧି ହିଁ ମଣିଷ ଜୀବନର ସର୍ବଶ୍ରେଷ୍ଠ ସାଧନା ।

ଲେଖକ ଅବିନାଶର ଚରିତ୍ରକୁ ଏପରି ମାନବୀୟ ଉଷ୍ମତାରେ ଉତପ୍ତ, ପ୍ରଜ୍ଞା ପ୍ରଦୀପ୍ତ, ଜୀବନ ସମୃଦ୍ଧ କରି ଗଢ଼ି ତୋଳିଛନ୍ତି, ଯାହାକୁ ମନୀଷା ପ୍ରତ୍ୟାଖ୍ୟାନ କଲେ ବି କୌଣସି ଯୁଗର ପାଠକ ପ୍ରତ୍ୟାଖ୍ୟାନ କରି ପାରିବ ନାହିଁ । ଅବିନାଶଙ୍କ ଜୀବନାଦର୍ଶ ହେଲା- ପରସ୍ପର ଭାବ ବିନିମୟରେ, ତ୍ୟାଗ ଓ ପ୍ରୀତିର ଆନ୍ତରିକ ଉତ୍ସବରେ ପାରିବାରିକ ଜୀବନ ହୁଏ ସାର୍ଥକ, ସୁନ୍ଦର । ସେଥିପାଇଁ ସେ ନିଜର ପୁଅକୁ ନିଜ ପାଖରେ ରଖି ମଣିଷ କରିଛନ୍ତି । ଆଜିର ଭାଙ୍ଗି ପଡୁଥିବା ପାରିବାରିକ ଜୀବନରେ ଯେଉଁ ସାମାଜିକ ଆଶଙ୍କା ଦେଖା ଦେଇଛି, ତା' ପାଇଁ ସୁସ୍ଥ, ସଫଳ ନିର୍ଦ୍ଦେଶ ରହିଛି ଏହି ଉପନ୍ୟାସରେ । ଉପନ୍ୟାସ ଦୁଇଟିର କଳେବର କ୍ଷୁଦ୍ର, କିନ୍ତୁ ଭାବଚେତନାର ଉଦ୍‌ବେଳନ, ଉତ୍‌ପ୍ରେରଣ ଓ ସଂପ୍ରସାରଣ ଦିଗରୁ ଉପନ୍ୟାସର ସାର୍ଥକତା

ବିଚାର୍ଯ୍ୟ । ଏଇ ବିଷଣ୍ଣ ନୈରାଶ୍ୟ ଜର୍ଜରିତ ସାମାଜିକ ଜୀବନରୁ ମୁକ୍ତିର ପ୍ରଶସ୍ତ ପଥ ଏଥିରେ ଉତ୍‌କୀର୍ଣ୍ଣ । ପିତୃମାତୃ ସ୍ନେହ ସିକ୍ତ ସନ୍ତାନ ଭିତରେ ବଳିଷ୍ଠ ବ୍ୟକ୍ତିତ୍ୱର ଅଗ୍ରଧର୍ଷୀ ଅଭିବ୍ୟକ୍ତି ଆଉ ସ୍ନେହ ବଞ୍ଚିତ ସନ୍ତାନର ସଂକୁଚିତ, ଆତ୍ମପ୍ରତ୍ୟୟହୀନ, ବିଷଣ୍ଣ ମାନସିକ କ୍ଳାନ୍ତି ପାଠକୀୟ ଚେତନାକୁ ଗଭୀର ଭାବରେ ଆନ୍ଦୋଳିତ କରେ । ସ୍ନେହ ମମତା ଓ ପିତାମାତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ପିଲାଙ୍କ ଭିତରେ ଆଣିଦିଏ ଆତ୍ମବିଶ୍ୱାସ ଆଉ ସାମାଜିକ ଜୀବନରେ ଖରସ୍ରୋତା ନଦୀ ପରି ସହଜରେ ମିଶିଯିବାର ପ୍ରବଣତା । ଯାହାର ଅଭାବରେ ଆମ ପାରିବାରିକ ଓ ସାମାଜିକ ଜୀବନ ଆଜି ବିପର୍ଯ୍ୟସ୍ତ, ଭଗ୍ନସାର ।

ରାଷ୍ଟ୍ରଗୁରୁ ଡକ୍ଟର ରାଧାକୃଷ୍ଣନଙ୍କର Character is destinyର ଚିନ୍ତାଧାରା ହେଉଛି ନାୟକ ଅବିନାଶ ଜୀବନର ଭାବଭୂମି । ନାୟିକା ମନୀଷାର ଧନ, ଯଶ, ବିଳାସ, ସମ୍ଭୋଗ ପ୍ରତି ଆକର୍ଷଣ ତାକୁ ଘୋର ନୈରାଶ୍ୟର ମାନସିକ ଯନ୍ତ୍ରଣାର ଅନ୍ଧାରି ଗୁମ୍ଫା ଭିତରକୁ ଠେଲି ଦେଇଛି । ଜୀବନର ସୁଖ, ଶାନ୍ତି, ସୌଭାଗ୍ୟର ଶିଖରରୁ ସେ ଖସି ପଡ଼ିଛି ବିବର୍ଣ୍ଣ ଅଶ୍ରୁର ଅସହାୟ ଗର୍ଭକୁ । ଭ୍ରୂଣ ହତ୍ୟାରେ ଅର୍ଜିତ ଅଜସ୍ର ଧନରାଶି, ମାର୍ବଲର ବିରାଟ ପ୍ରାସାଦ ତାକୁ ଆନନ୍ଦର ରସକଣାଟିଏ ଦେଇ ପାରିନାହିଁ । ତା'ର ଦ୍ୱନ୍ଦ୍ୱ ସଂକୁଳ ଚରିତ୍ର ତାର ରିକ୍ତ ଭାଗ୍ୟଲିପିକୁ ଗଢ଼ିଛି । ଆଉ ତାରି ପୁଅ ସିଦ୍ଧାର୍ଥ ବିନା ମୂଲ୍ୟରେ ଦରିଦ୍ର ପାହାଡୀ ଲୋକଙ୍କୁ ଚିକିତ୍ସା କରୁଥିବା ଯୋଗୁଁ ସେମାନଙ୍କ ମୁହଁ ଆଖି ମାନବିକ କୃତଜ୍ଞତାରେ ବିକଶିତ ହୋଇ ଉଠିଛି । ଅବିନାଶ ପୁଅକୁ କହୁଥିଲେ– ''ତା ଛଡ଼ା ରୁଗ୍ଣ ଲୋକଙ୍କଠାରୁ ସେମାନଙ୍କ ଅସହାୟତାର ସୁଯୋଗ ନେଇ ଅଧିକରୁ ଅଧିକ ରୋଜଗାର କରିବା ମନୋବୃତ୍ତି ପରି ଅମାନବୀୟ ଅତ୍ୟାଚାର ଶିକ୍ଷିତ ମନୁଷ୍ୟ ପକ୍ଷରେ ଅକ୍ଷମଣୀୟ ଅପରାଧ ।'' ଗୌତମଠାରୁ ଶୁଣିଥିବା ଏଇ ମାନବୀୟ ଆଦର୍ଶରେ ଡାକ୍ତର ସିଦ୍ଧାର୍ଥ ନିଜକୁ ଗଢ଼ିଛି । ମାନବୀୟ ଆଦର୍ଶର ଯେଉଁ ସାର୍ବକାଳିକ ଉନ୍ନତ ଭାବନା ଏଥିରେ ପ୍ରକାଶ ପାଇଛି ତା' ଆତ୍ମ ସଚେତନ ସ୍ୱାଭିମାନୀ ମଣିଷର ନିଛକ ପ୍ରତିବିମ୍ବନ । ଏଇ ପରମ ସତ୍ୟକୁ ପ୍ରତିଷ୍ଠିତ କରି ଲେଖକ ଆଜିର ମାନବ ସମାଜକୁ ଉଦାର, ତ୍ୟାଗନିଷ୍ଠ, ନିର୍ଭୀକ ଓ ସଂକଳ୍ପନିଷ୍ଠ ହେବାକୁ ଆହ୍ୱାନ ଦେଇଛନ୍ତି । ନିଃସ୍ୱାର୍ଥ, ନିଷ୍ପାପର ଦେଶପ୍ରେମର ଉଦ୍‌ଗାତା ଭାବରେ ଦିନେ ରାଷ୍ଟ୍ରଗୁରୁ ଯାହା କହିଥିଲେ ତାକୁ ନିଜ ଜୀବନରେ ସ୍ୱୀକୃତି ଦେଇଛି ଅବିନାଶ । ଯାହା ମଣିଷ ଚରିତ୍ରର ବିକାଶ ପାଇଁ ଏକାନ୍ତ ଅପରିହାର୍ଯ୍ୟ । ଅବିନାଶ ଚରିତ୍ରରେ ସମ୍ଭବତଃ  ଲେଖକ ଆତ୍ମପ୍ରକାଶ କରିଛନ୍ତି ।

ପ୍ରେମକୁ ଏକ ସୀମିତ, ସଂକୁଚିତ, ସଂକୀର୍ଣ୍ଣ ଖର୍ବ ଚେତନା ଓ ପରିସର ମଧ୍ୟରୁ ମୁକ୍ତ କରି ଚିରନ୍ତନ ମାନବୀୟ ମୂଲ୍ୟବୋଧରେ ସର୍ବତ୍ର ଅନୁଭବ କରିବାର ପ୍ରସାରିତ ଚେତନାହିଁ ପ୍ରୀତିର ସାର୍ଥକ ରୂପ । ଛନ୍ଦାକୁ ହରାଇ ମହ୍ଲାର ଏଇ ଆଦର୍ଶରେ ନିଜକୁ ପଲ୍ଲବିତ କରିଛି । କିନ୍ତୁ ନିକିଟାକୁ ମଟର ଦୁର୍ଘଟଣାରେ ହରାଇ ମନୀଷାର ସାନପୁଅ ଅମିତାଭ ଜୀବନରୁ ସବୁ ସ୍ୱପ୍ନ ମିଳାଇ ଯାଇଛି । ମାନସିକ ଭାରସାମ୍ୟ ହରାଇ ସେ ହୋଇଛି ନିଶାଗ୍ରସ୍ତ । ଲେଖକ ପ୍ରେମକୁ ଗଭୀରତମ ଅନୁଭୂତିରେ ରସ ଜାରିତ କରି ତାର ପରିଶୀଳିତ ମୂଳ ସ୍ୱରୂପକୁ ପାଠକ ନିକଟରେ ଏପରି ସ୍ୱଚ୍ଛନ୍ଦ ସାବଲୀଳ ଭାବରେ ପରିବେଷଣ କରିଛନ୍ତି, ଯାହା ଅନନ୍ତ, ଅସୀମ ସୌନ୍ଦର୍ଯ୍ୟରେ ସ୍ନାତ, ସ୍ପର୍ଦ୍ଧିତ ଓ ଅନନ୍ୟ ଅନୁଭୂତିର ବିଶ୍ୱସ୍ତତାରେ ପ୍ରଖ୍ୟାପିତ । ମଣିଷର ମନସ୍ତତ୍ତ୍ୱକୁ ବିଶ୍ଳେଷଣ କଲାବେଳେ ତୁଚ୍ଛ ଘଟଣା ପ୍ରତି ଯେତିକି ମମତାନିଷ୍ଠ, ଗୁରୁଗମ୍ଭୀର ସମସ୍ୟା କଣ୍ଟକିତ ବିଷୟ

ପ୍ରତି ଯେମିତି ସମ୍ବେଦନଶୀଳ ଅବାସ୍ତବ ଜୀବନଚର୍ଯ୍ୟା ଭିତରେ ଜୀବନର ଉତ୍ତରଣର ମହିମା ମୂର୍ଚ୍ଛିତ । ଆଦର୍ଶବାଦୀ ଭାବମୂର୍ତ୍ତିକୁ ବଞ୍ଚାଇ ରଖିବାକୁ ହେଲେ ଅବିନାଶ ପରି ମଣିଷକୁ ଅନେକ ମୂଲ୍ୟ ଦେବାକୁ ପଡ଼େ । କିନ୍ତୁ ଏଇ ଦେବାରେ ହିଁ ଜୀବନର ପରମ ଆନନ୍ଦ ସନ୍ନିହିତ ।

ସିଦ୍ଧାର୍ଥର ଓଡ଼ିଆ ଭାଷାରେ ବିଦେଶରୁ ଚିଠି ଲେଖିବା ଓ ବିଦେଶରୁ ଗୌତମର ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ- ଲେଖକଙ୍କ ଓଡ଼ିଆ ଭାଷା ଓ ନିଜ ଦେଶ ପ୍ରତି କର୍ତ୍ତବ୍ୟବୋଧ ଶ୍ରଦ୍ଧା ସମ୍ମାନ ପ୍ରଦର୍ଶନର ନିଷ୍ଠାପର ଅଭିଳାଷ ଓ ନୈତିକ ଦାୟିତ୍ୱର ତଥା ପ୍ରସାରିତ ଅଗ୍ରଦୃଷ୍ଟିର ପରିଚାୟକ । କେବଳ ଆକାଶର ଉଚ୍ଚାଟନ ନୁହେଁ, କେବଳ ମାଟିର ଆଲିଙ୍ଗନ ନୁହେଁ– ମାଟି ଓ ଆକାଶ ଉଭୟର ବାସ୍ତବତାକୁ ସତ୍ୟତା ଭିତରେ ଅନୁଭବ କରିବାହିଁ ରହସ୍ୟବାଦୀ ଉପଲବ୍ଧି । ମନୀଷା ନିରାଶାର ମରୁବାଲିରେ ଖୋଜିଛି ଆଶାର ନିର୍ଝର । ସୁବର୍ଣ୍ଣ ଗୁମ୍ଫାର ଅନ୍ଧକାର ଭିତରୁ ନିଜକୁ ମୁକ୍ତ କରି ସେ ପହଞ୍ଚିଛି ଆଲୋକର, ଆନନ୍ଦର, ଶାଶ୍ୱତ ସଂଗୀତର ସୀମାହୀନ ପ୍ରାନ୍ତରରେ- ଅବିନାଶର ନିଜ ହାତରେ ଗଢ଼ା ବଗିଚା ଆଉ ସ୍ନେହ ସିଞ୍ଚିତ ଘରେ । ଦୀର୍ଘ ଚାଳିଶ ବର୍ଷର ବ୍ୟବଧାନ କିପରି ସଂଯତ, ସଂହତ, ସମ୍ଭ୍ରମ ପୂର୍ଣ୍ଣ ମିଳନ ରାଗିଣୀରେ ଉଦ୍ଭାବିତ, ପରିବ୍ୟାପ୍ତ ହୋଇପାରେ 'ଶେଷକଥା' ତାର ଏକ ଅଭ୍ରାନ୍ତ ସ୍ୱାକ୍ଷର । ପ୍ରେମ ଦେହରୁ ଦେହାତୀତ, ଜଡ଼ରୁ ଚେତନା, ରୂପରୁ ଅରୂପ ଓ ମୂହୂର୍ତ୍ତରୁ ଚିରନ୍ତନତ୍ୱ ଆଡ଼କୁ ସଞ୍ଚରଣଶୀଳ ଓ ଭଲପାଇବାର ସନାତନ ସାକ୍ଷୀ ସଂଧ୍ୟାତାରା ଭିତରେ ଛନ୍ଦା ଓ ମଲ୍ଲାରର ସମର୍ପିତ ପ୍ରେମ ସାରା ଜୀବନର ବିରହ ଜ୍ୱାଳା ଅନ୍ତରାଳରେ ଆନନ୍ଦର ସଂଧାନ ଲାଭ କରିଛି । ଆଶ୍ୱିନ ଶୁକ୍ଳ ଦ୍ୱିତୀୟା, ଆଶ୍ୱିନ ଶୁକ୍ଳ ତ୍ରୟୋଦଶୀର ଶୁଭ ମୁହୂର୍ତ୍ତ ଆଉ ଚିରନ୍ତନ ପ୍ରୀତିର ପ୍ରତୀକ ସଂଧ୍ୟାତାରା ସ୍ରଷ୍ଟାର କଳ୍ପନାର ସୁଦୂର ଅପରିଚିତ ଇଙ୍ଗିତ ପରିବର୍ତ୍ତେ ହୋଇଛି ନାୟକ ନାୟିକାଙ୍କ ଅନ୍ତରଙ୍ଗ ଭାବ ପ୍ରକାଶର ଆତ୍ମିକ ସାଥୀ । ସଂଧ୍ୟାତାରାରେ ଛନ୍ଦା ଆଉ ମଲ୍ଲାରର ଅନ୍ତିମ ମିଳନର ଅସରନ୍ତି ଆକୁତି ପାଠକୀୟ ଚେତନାକୁ ଅଭିଭୂତ କରେ । ସ୍ରଷ୍ଟାଙ୍କ ଶିଳ୍ପୀସତ୍ତା ସତେ ଯେମିତି ପ୍ରକୃତିର ଅପାସୋରା ସୌନ୍ଦର୍ଯ୍ୟ ପାଖରେ ନତଜାନୁ । ଚିରନ୍ତନ ପ୍ରେମର ପ୍ରୌଢ଼ ପତାକା ପାଠକର ମନ ମନ୍ଦିରରେ ପ୍ରୋଥିତ କରିବାରେ ଲେଖକଙ୍କ ଚିନ୍ତାଚେତନା ସଦା ଉନ୍ମୁଖ ।

ଲେଖକ ଭାଗ୍ୟବାଦୀ ନୁହନ୍ତି, କର୍ମବିଶ୍ୱାସୀ । ତେଣୁ ବୁଦ୍ଧଙ୍କ ନିରୀଶ୍ୱରବାଦ ଓ ଅଷ୍ଟବିଧ ସନ୍ମାର୍ଗ ପ୍ରତି ଲେଖକ ବିଶେଷ ଭାବରେ ଆକୃଷ୍ଟ ହୋଇଛନ୍ତି । ସତ୍‌କର୍ମ ଓ ଉନ୍ନତ ଉତ୍ତମ ଭାବ ଦ୍ୱାରା ମଣିଷ ଜୀବନ ଚର୍ଚ୍ଚିତ ହେଲେ ମଣିଷ ସ୍ୱତଃ ଦେବତ୍ୱ ଲାଭ କରିବ । ଅବିନାଶ ଓ ମନୀଷାର ସନ୍ତାନମାନଙ୍କ ନାମ ବୁଦ୍ଧଙ୍କ ନାମରେ ନାମିତ । ନାମ ବ୍ୟକ୍ତିର ବ୍ୟକ୍ତିତ୍ୱକୁ ପ୍ରଭାବିତ କରେ । ମନୀଷାର ପୁଅ ଅମିତାଭ ପୁରୀକୁ ଆସିଛି ମାଆର ଅନ୍ୱେଷଣରେ । ଜୀବନର ଐଶ୍ୱର୍ଯ୍ୟ ଦୀପିତ ରୂପକୁ ପ୍ରକାଶ କରିବାରେ ଦକ୍ଷ ଶିଳ୍ପୀର ସୃଜନଶୀଳ ସ୍ପର୍ଶ ସର୍ବତ୍ର ଅନୁଭୂତ ହୁଏ ।

ପ୍ରଣୟର ପରିସମାପ୍ତି ସର୍ବତ୍ର ପରିଣୟରେ ନୁହେଁ । ବିରହ ଭିତରେ ମିଳନ, ଅପ୍ରାପ୍ତିର ଶୂନ୍ୟତା ଭିତରେ ଜୀବନର ପୂର୍ଣ୍ଣତା ସଂଗୁପ୍ତ ଜୀବନକୁ ତିଳତି କରି ଅର୍ପଣ କରି ପ୍ରତିଟି ମୁହୂର୍ତ୍ତକୁ ସ୍ମୃତିସିକ୍ତ କରିବା ହିଁ ପ୍ରକୃତ ପ୍ରେମ ଏହାହିଁ 'ଶେଷକଥା'ର ଉପଲବ୍ଧ ସତ୍ୟ । ଯାହାର ଆରମ୍ଭ ଅଛି, ଶେଷ ନାହିଁ– ପ୍ରେମ କାଳଜୟୀ ଅକ୍ଷର ସତ୍ତାରେ ପ୍ରମୂର୍ତ୍ତ ।

– ଡ଼ଃ ରେଖା ମହାନ୍ତି, ଶେଖବଜାର, କଟକ-୮

# ସାର୍ଥକ ସାହିତ୍ୟକୃତି

'ଶେଷକଥା' ଉପନ୍ୟାସଟି ଜଣେ ପ୍ରତିଷ୍ଠିତ ମନସ୍ତତ୍ତ୍ୱବିଦ୍ କଥାକାରଙ୍କର ସାର୍ଥକ ସାହିତ୍ୟକୃତି । ଲେଖକଙ୍କର ଅନେକ ଅନବଦ୍ୟ ସାହିତ୍ୟ ସୃଷ୍ଟି ମଧ୍ୟରୁ ଏହା ଅନ୍ୟତମ । 'ଶେଷକଥା' 'ଭଲ ପାଇବାର ଆଦିକଥା' ଉପନ୍ୟାସର ଉତ୍ତରାର୍ଦ୍ଧ ।

ଉପନ୍ୟାସରେ ଦୁଇଟି ମୁଖ୍ୟ ଚରିତ୍ର– ମନୀଷା ଏବଂ ଅବିନାଶ- ଆଦ୍ୟ ଜୀବନର ପ୍ରଣୟୀ ଯୁଗଳ- ଛନ୍ଦା ଏବଂ ମହ୍ଲାର । ଜଣେ ଡାକ୍ତରାଣୀ ଏବଂ ଅନ୍ୟଜଣେ ଅଧ୍ୟାପକ । ପରିଣତ ବୟସରେ କ୍ଳାନ୍ତ-ଶ୍ରାନ୍ତ-ରୋଗାକ୍ରାନ୍ତ ଦେହକୁ ଏବଂ ପ୍ରଥମ ପ୍ରେମର ସ୍ମୃତିକୁ ନେଇ ମନୀଷା ଆସିଛନ୍ତି ଅବିନାଶଙ୍କର ସହରକୁ (ଏମିତି ବି ହୁଏ !!) । ମନୀଷାଙ୍କ ଜୀବନର କରୁଣ କାହାଣୀ ତାଙ୍କର ସମୟଲିପି ମାଧ୍ୟମରେ ଅବିନାଶଙ୍କ ଆଗରେ ଉନ୍ମୋଚିତ ହୋଇଛି । ଶେଷରେ ସବୁକିଛିରେ ଏକ କରୁଣ ପୂର୍ଣ୍ଣଚ୍ଛେଦ ପକାଇ ସନ୍ଧ୍ୟାତାରାର ଦେଶରେ ପ୍ରତୀକ୍ଷା କରିବାର ପ୍ରତିଶ୍ରୁତି ଦେଇ ମନୀଷା ମୃତ୍ୟୁ ବରଣ କରିଛନ୍ତି । ମୋଟାମୋଟି ଏଇତକ ହେଲା ଉପନ୍ୟାସର କଥାବସ୍ତୁ ।

ଉପନ୍ୟାସଟିକୁ ଜଣେ ମନସ୍ତତ୍ତ୍ୱବିଦ୍‌ଙ୍କର ସାହିତ୍ୟକୃତି ଭାବେ ବିଚାର କରିବା ସମୀଚୀନ ହେବ । ଉପନ୍ୟାସର ଛତ୍ରେ ଛତ୍ରେ ମନସ୍ତାତ୍ତ୍ୱିକ ତଥ୍ୟର ପୃଷ୍ଠଭୂମି କଥାବସ୍ତୁର ଆସ୍ତରଣ ତଳେ ସୁସ୍ପଷ୍ଟ ଦିଶେ । ରଚନାରେ ଲେଖକଙ୍କର ବ୍ୟକ୍ତିଗତ ବିଚାରଧାରା ପ୍ରଚ୍ଛନ୍ନ ଭାବେ ଫୁଟିଉଠିଛି; ଏବଂ ଲେଖାରେ ଭାଷାର ବଳିଷ୍ଠତା, ପରିପକ୍ୱତା ଏବଂ ପରିଚ୍ଛନ୍ନ କଥା କହିବା ଶୈଳୀ ଲକ୍ଷ୍ୟ କରିବାର କଥା ।

ପ୍ରଥମେ, ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କଲେ ଲେଖକ ନାରୀ ଚରିତ୍ରର ଦୁଇଟି ପରସ୍ପର ବିରୋଧୀ ଦିଗର ଉପସ୍ଥାପନା କରିଛନ୍ତି, ''ମନୀଷା'' ଚରିତ୍ରରେ ଦୁଇଟି ଦିଗ ରହିଛି– ଗୋଟିଏ ହେଲା- ସ୍ୱତଃସ୍ଫୁର୍ତ୍ତ- ସ୍ଫଟିକ ନିର୍ମଳ ଛଳଛଳ ମାନବୀୟ ସ୍ନେହ-ପ୍ରେମ-କରୁଣା ପ୍ରତି ଆକର୍ଷଣର ଦିଗ, ଏବଂ ଅନ୍ୟଟି ହେଲା ନାରୀମନର ପାର୍ଥିବ ଐଶ୍ୱର୍ଯ୍ୟ ପ୍ରତି ଦୁର୍ବାର ଆକର୍ଷଣର ଦିଗ । ଏ ଦୁଇଟି ଦିଗ ପରସ୍ପରର ସଂପୂର୍ଣ୍ଣ ବିପରୀତମୁଖୀ ଏବଂ ପ୍ରତି ମୁହୂର୍ତ୍ତରେ ଏ ଦୁଇଟି ଦିଗ ଭିତରେ ଘାତ-ସଂଘାତ ଘଟି ଚାଲିଥାଏ । ଯେତେବେଳେ ଯେଉଁ ଦିଗଟିର ବିଜୟ- ଚରିତ୍ର ସେହି ଦିଗରେ ମାଡ଼ି ଚାଲେ । ''ମନୀଷା'' ଜୀବନର ପ୍ରାତଃକାଳରେ ପ୍ରୀତି ଆହ୍ଲାଦିନୀ, ସ୍ନେହ ପାଗଳିନୀ, ପ୍ରେମ ପୂଜାରିଣୀ । କିନ୍ତୁ ପରବର୍ତ୍ତୀ ସମୟରେ ଐଶ୍ୱର୍ଯ୍ୟ ପ୍ରତି ଲାଳସା ହେତୁରୁ ତାଙ୍କ ବ୍ୟକ୍ତିତ୍ୱର ନରମ ଦିଗଟି ମୁଣ୍ଡ ନୁଆଁଏ । ''ମନୀଷା'' ପ୍ରଣୟୀକୁ ପ୍ରତ୍ୟାଖ୍ୟାନ କରି ବିବାହ କରନ୍ତି ପ୍ରଚୁର ଅର୍ଥ ଉପାର୍ଜନ କ୍ଷମତାଥିବା ଆଉ ଜଣେ ଡାକ୍ତରଙ୍କୁ । ଅର୍ଥ ଉପାର୍ଜନର ନିଶା ଏବଂ ଆବର୍ତ୍ତ ମଧ୍ୟରେ ''ମନୀଷା'' ମଧ୍ୟ ନିଜକୁ ବୁଡ଼େଇ ନିଅନ୍ତି । ପ୍ରଚୁର ଉପାର୍ଜନ ହୁଏ । ଏକଦା ମାନବୀୟ ମୂଲ୍ୟବୋଧରେ ଉଦ୍‌ବୁଦ୍ଧ ''ମନିଷା'' ମଧ୍ୟ ଭ୍ରୁଣହତ୍ୟା କରନ୍ତି ଅର୍ଥ ଲୋଭରେ । ''ଶିଶୁ ଭ୍ରୁଣହତ୍ୟା ଶ୍ମଶାନରେ'' ତିଆରି ହୁଏ ''ସ୍ୱର୍ଣ୍ଣ-ଗୁମ୍ଫା'' । ହେଲେ ପ୍ରକୃତିର ବିଚିତ୍ର କ୍ରୁରତା- ସେ ସ୍ୱର୍ଣ୍ଣ ଗୁମ୍ଫାରେ ''ମନୀଷା'' ହୁଅନ୍ତି ଏକାନ୍ତ ନିବାସୀ– ଏକାକୀ ପ୍ରହରୀ ।

ଉତ୍ତର ବୟସରେ ପ୍ରେମିକ, ସ୍ୱାମୀ, ପୁତ୍ର ସବୁକିଛିର ସ୍ନେହରୁ ବଂଚିତା ହେଲାପରେ ମନେପଡ଼େ ଜୀବନର ପ୍ରଥମାର୍ଦ୍ଧର ସ୍ନେହ, ଶ୍ରଦ୍ଧା ଏବଂ ପ୍ରେମର ପ୍ରାଚୁର୍ଯ୍ୟ କଥା– କଅଁଳ ଏବଂ

ନରମ ଦିଗମାନେ ପୁନଶ୍ଚ ଆକର୍ଷଣ କରନ୍ତି । ରୁଗ୍‌ଣ ଏବଂ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ନିଜ ଦେହକୁ ସମ୍ଭାଳି ଦଉଡ଼ି ଆସନ୍ତି "ଅବିନାଶ"ଙ୍କ ସହରକୁ । ଲେଖକ ନାରୀ ଚରିତ୍ରର ଏ ଦୁଇଟି ଦିଗକୁ ଅତି ଚମତ୍କାର ଭାବେ ଉପସ୍ଥାପନା କରିଛନ୍ତି "ଶେଷ କଥା"ରେ ।

ସେହିପରି ଅନ୍ୟଏକ ମନସ୍ତାତ୍ତ୍ୱିକ ଉପସ୍ଥାପନା ହେଲା ବଢ଼ନ୍ତା ପିଲାମାନଙ୍କର ଚରିତ୍ର ଗଠନକୁ ନେଇ । ମନସ୍ତତ୍ତ୍ୱ କହେ ଯେ- ଘର ହେଲା ପିଲାଙ୍କର ସବୁଠୁ ବଡ଼ ସ୍କୁଲ । ଘର ପରିବେଶରେ ଥାଏ ବାପା-ମା'ଙ୍କର ସ୍ନେହ-ଶ୍ରଦ୍ଧା, ଆଦର, ଯତ୍ନ ଏବଂ ଶାରୀରିକ, ମାନସିକ ଓ ଆବେଗିକ ନିରପତ୍ତାର ସନ୍ତୁଳିତ ପରିବେଶ ଏ ଭିତରେ ବଢ଼ନ୍ତା ପିଲାଟିଏ ବଢ଼େ- ବାପା-ମା'ଙ୍କର ବ୍ୟବହାର, ଜୀବନ-ଦର୍ଶନରୁ ନିଜ ଅଜାଣତରେ ଅନେକ କିଛି ଶିଖେ, ଆହରଣ କରେ । ଚରିତ୍ର ଶୃଙ୍ଖଳିତ ଭାବେ ସୁନ୍ଦର ଏବଂ ପରିପୂର୍ଣ୍ଣ ହୋଇ ଗଢ଼ିଉଠେ, ପିଲାଂକୁ ମଣିଷ କରି ଗଢ଼ିବାରେ ଘରର ବିକଳ୍ପ ନାହିଁ । ଆବାସିକ ବିଦ୍ୟାଳୟମାନେ ଯେତେ ବ୍ୟୟସାପେକ୍ଷ ହୁଅନ୍ତୁ ନାଁ କାହିଁକି ପିଲାଙ୍କର ଭାବଗତ ଆବଶ୍ୟକତା ପୂର୍ଣ୍ଣ କରିପାରନ୍ତିନି ଏବଂ ପିଲାଟିଏ ଭୁଲ କରିବସିଲେ ସ୍ନେହର ସହିତ ତାକୁ ସୁଧାରିବା ଜାଣନ୍ତିନି । "ଘର ସ୍କୁଲ"ଠାରୁ ବଡ଼ସ୍କୁଲ ଆଉ ନାହିଁ । ପିଲାଏ ଜୀବନ ଦର୍ଶନ ଏହି ସ୍ନେହ ସୁରକ୍ଷିତ ଘର ପରିବେଶରୁ ହିଁ ଶିଖିଥା'ନ୍ତି । ଅଧ୍ୟାପକ "ଅବିନାଶ"ଙ୍କର ପିଲାଏ ଘରେ ରହି ମଣିଷ ହୁଅନ୍ତି । ପିଲାଏ ପବ୍ଲିକ୍ ସ୍କୁଲ୍‌ରେ ପଢ଼ିବାକୁ ବୃତ୍ତି ପାଇଥିଲେ ମଧ୍ୟ "ଅବିନାଶ" ତାଙ୍କ ପିଲାଙ୍କୁ ସେଠାକୁ ଛାଡ଼ିନାହାନ୍ତି । ପିଲାଙ୍କ ଅଜ୍ଞାନ ସମୟ କଟେ ବାପା-ମା'ଙ୍କର ସ୍ନେହ-ମମତା ଭିତରେ, ଏବଂ ହେତୁ ହେଲା ପରେ ଘରର ଆଦର୍ଶରେ ସେମାନେ ଅନୁପ୍ରାଣିତ ହୁଅନ୍ତି । ଚରିତ୍ର-ଗଠନ ଦିଗ୍‌ଦର୍ଶନ ନିଏ– ବିକ୍ଷିପ୍ତ ମେଘ ପରି ଖଣ୍ଡ ଖଣ୍ଡ ହୋଇଯାଏନି । ଅନ୍ୟପକ୍ଷରେ "ମନୀଷା"ଙ୍କର ପିଲାଏ ନର୍ସ ହାତରେ ବଢ଼ନ୍ତି । ମା'କ୍ଷୀର ଖାଇନାହାନ୍ତି, ମା' କୋଳର ଉଷ୍ମତା, ନିବିଡ଼ତା ଏବଂ ନିରପତ୍ତା କ'ଣ ଜାଣନ୍ତିନି । ତେଣୁ ପ୍ରାଚୁର୍ଯ୍ୟର ଗୁମ୍ଫାରେ ଭାବାବେଗର ଦୁର୍ଭିକ୍ଷ ପଡ଼େ- ଅକାଳ ପଡ଼େ । କିଶୋର ବୟସର ପୁଅ ନର୍ସର ସମବୟସୀ ଝିଅ ପ୍ରତି ଆକର୍ଷିତ ହୁଏ, ନିଶାଗ୍ରସ୍ତ ହୁଏ, ଜୀବନଟା ବିକ୍ଷିପ୍ତ ଦୁର୍ବିଷହ ହୁଏ ।

ମନସ୍ତାତ୍ତ୍ୱିକ ତଥ୍ୟଭୂମି ଛଡ଼ା ଲେଖକଙ୍କର ବ୍ୟକ୍ତିଗତ ବିଚାରଧାରା ଉପନ୍ୟାସରେ ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ :- "Character is destiny"ମଣିଷର ଚରିତ୍ର ତା'ର ଭାଗ୍ୟ ନିର୍ଦ୍ଧାରଣ କରେ" ଲେଖକ ଏହି ଉକ୍ତିରେ ସଂପୂର୍ଣ୍ଣ ବିଶ୍ୱାସ କରନ୍ତି । ମଣିଷର ଅର୍ଥଲାଳସା ତାକୁ ଅନ୍ତଃସାରଶୂନ୍ୟ ଏକ ଫମ୍ପା ଖୋଳ କରିଦିଏ । କିଂତୁ ମଣିଷର ମାନବୋଚିତ ମୂଲ୍ୟବୋଧମାନେ ତା ଜୀବନକୁ ପରିପୂର୍ଣ୍ଣ ଏବଂ ସୁନ୍ଦର କରିଗଢ଼ନ୍ତି । ଏହି ଚିନ୍ତାଧାରା "ଶେଷ କଥା"ର କଥାନ୍ତର ।

ସବାଶେଷରେ ଏବଂ ସବୁଠୁ ବଡ଼ କଥା ହେଲା ଉପନ୍ୟାସର ଉନ୍ନତ, ମାର୍ଜିତ ଏବଂ ବଳିଷ୍ଠ ଭାଷା, ଏହା ସହିତ କଥାବସ୍ତୁର ଉପସ୍ଥାପନା କରିବାର ଅନନ୍ୟ ଶୈଳୀ । ଭାଷାମାନେ ଲେଖକଙ୍କର ଅନ୍ତରତମ ପ୍ରଦେଶରୁ ସ୍ୱତଃ ଫୁଟି ପ୍ରକାଶିତ ହେଉଛନ୍ତି, ତେଣୁ ସେମାନେ Perfectly exact ଏବଂ ନିଜେ ନିଜେ କଥାବସ୍ତୁ ମାନଙ୍କୁ ଆଗକୁ ଆଗକୁ ଥୋଇ ଥୋଇ

ଚାଲିଛନ୍ତି । ଭାଷା ବକ୍ଳିଷ୍ଟ ଏବଂ ପ୍ରକ୍ଷେପିତ ତୀର ପରି ଭାବକୁ ହିଁ ଭେଦ କରୁଛି– ଅତିରିକ୍ତତା ନାହିଁ, ବୁଲେଇ ବାଂକେଇ କହିବାର ନାହିଁ, ପାଠକ ମନରେ କେବଳ ଅର୍ଥ ହିଁ ପଡ଼େ ଅର୍ଥାନ୍ତର, ଦ୍ୱି-ଅର୍ଥର ଜାଲରେ ଛନ୍ଦି ହେବାର ପ୍ରଶ୍ନ ଉଠେନି । ଭାଷା ଏବଂ ଭାବ ପ୍ରକାଶ ଅଙ୍ଗାଙ୍ଗୀ ଭାବେ ଛନ୍ଦି ହୋଇ ରହିଛନ୍ତି । କଳ୍ପନା ଓ ଭାବଗତ ଧାରଣା ଅତିସୁନ୍ଦର ଭାବେ ପ୍ରତିଛବିମାନଙ୍କର ସହିତ ନିବଦ୍ଧ । ଅନ୍ତରରୁ ଉଦ୍‌ବୃତ୍ତ ଭାଷା ହେତୁ ପ୍ରତ୍ୟୟମାନେ ଯଥାଯଥ ପ୍ରତିଛବି ସହିତ ଅତି ସୁନ୍ଦର ଭାବେ ଜଡ଼ିତ ହୋଇ ଠିଆ ହୋଇଛନ୍ତି ଏବଂ କଥାବସ୍ତୁକୁ ନିଶ୍ଚିତ ଏବଂ ଦୃଢ଼, ଦୃପ୍ତ ଭାବେ ଆଗକୁ ଆଗକୁ ନେଇ ଚାଲିଛନ୍ତି ଲେଖକଙ୍କର ଭାଷା ଉପରେ ଦକ୍ଷତା ଅନସ୍ୱୀକାର୍ଯ୍ୟ । ଏହା ଉପନ୍ୟାସର ଏକ ବିଶେଷଭାବେ ନଜରକୁ ଆସୁଥିବା ଦିଗ । ଉଦାହରଣ ସ୍ୱରୂପ– ''ଶୂନ୍ୟତା ଭିତରୁ ଗୋଟିଏ ଛାୟାମୂର୍ତ୍ତି ହଠାତ୍ ଆବିର୍ଭାବ ହେଲାପରି ।'' ଇତ୍ୟାଦି– ଶୂନ୍ୟତାରୁ କିଛି ଗୋଟିଏ ଉତୁରି ଆସୁଛି. ଭଲା ହଉଛି– ସିଏ ହଉଛି ଗୋଟିଏ ''ଛାୟା ମୂର୍ତ୍ତି'' (ଏକ ଆଶ୍ଳେଷର ସମ୍ଭାଷଣ), ତାହା ଗୋଟିଏ ଭୂତ ନୁହେଁ (ଏକ ବିକର୍ଷଣ ଭାଷା) ଠିକ୍ ସେମିତି...'' ସୁନ୍ଦର ସତ୍ୟନିଷ୍ଠ ସ୍ୱୀକୃତିର ବିଚ୍ଛୁରିତ ଆଲୋକ''.... ଇତ୍ୟାଦି, ''ସ୍ୱୀକୃତି''ଯେତେବେଳେ ''ସତ୍ୟନିଷ୍ଠ'' ହୁଏ, ସେତେବେଳେ ଏହା ଏକ ''ସୁନ୍ଦରତା''ରେ ପରିଣତ ହୁଏ । ଏବଂ ସବୁ ''ସୁନ୍ଦର ମାନଙ୍କରୁ କିଛି ''ବିଚ୍ଛୁରଣ'' ଉପଲବ୍ଧି କରିହୁଏ, ଯାହାକି ଏକ ଆଲୋକର ବିଚ୍ଛୁରଣ ସହିତ ସମାନ । 'ସୁନ୍ଦରତା'ରୁ କଦାପି ''ଅନ୍ଧକାର'' କ୍ଷରିତ ହୁଏନି । ଭାଷାମାନେ, ଭାବର ପରିପ୍ରକାଶ ମାନେ ସୁନିର୍ବାଚିତ ପ୍ରତିଛବିମାନଙ୍କ ସହିତ ସମ୍ମିଶ୍ରିତ ହୋଇ ନିଜେ ନିଜକୁ ଉପସ୍ଥାପନା କରୁଛନ୍ତି । ଉପନ୍ୟାସର ଏଇ ଦିଗଟି ଅନନ୍ୟ ଏବଂ ଅତି ଆକର୍ଷଣୀୟ ।

ସର୍ବୋପରି ଉପନ୍ୟାସରେ ''ସନ୍ଧ୍ୟାତାରା'' କେବଳ ଏକ ପ୍ରତୀକ ହୋଇ ରହିନି– ''ସନ୍ଧ୍ୟାତାରା''ର ଅନ୍ୟ ଏକ ପୃଥିବୀ ମଧ୍ୟ ରହିଛି, ସନ୍ଧ୍ୟାତାରାର ସେ ପୃଥିବୀରେ ସାଗର ରହିଛି, ତାର ପୁଣି ବେଳାଭୂମି ବି ରହିଛି । ସେଇ ସନ୍ଧ୍ୟାତାରାର ଦେଶର ସାଗର ବେଳାରେ ଜଣେ ଅନ୍ୟଜଣକୁ ଜନ୍ମ ଜନ୍ମାନ୍ତର ଯାଏ ପ୍ରତୀକ୍ଷା କରିବ- ଏ ପୃଥିବୀ କଳ୍ପରୁ କଳ୍ପାନ୍ତର ବୁଲି ଆସିଲା ଯାଏ । ସୁନ୍ଦର କଳ୍ପନା ସୁନ୍ଦର ଏହାର ପ୍ରକାଶ କରିବାର ଢଙ୍ଗ, ଏବଂ ଖୁବ୍ ସୁନ୍ଦର ଏହାର ଅନୁଭୂତି ! ଲେଖିକଙ୍କର କଳ୍ପନା ବିଳାସ ଏବଂ ଭାଷା ବିନ୍ୟାସ ପ୍ରକୃତରେ ପ୍ରଶଂସାର୍ହ ।

ଏସବୁ ଛଡ଼ା ସାମାଜିକ କୁ-ସଂସ୍କାର- ଯଥା:- ପୁରୀର ଶାସନୀ ବ୍ରାହ୍ମଣ ପୁଅ ପଣ୍ଡା ବ୍ରାହ୍ମଣ ଘରର ଝିଅକୁ ବାହା ହେଇ ପାରିବନି– ବାହା ବେଦୀରେ ଶାସନୀ ବ୍ରାହ୍ମଣ ଙ୍କାଇଁ ପାଇଁ ପାଟଯୋଡ଼ ଦରକାର– ଏ ସବୁର ଉପସ୍ଥାପନା ମଧ୍ୟ ରହିଛି । ଏତଦ୍ ବ୍ୟତୀତ ଚିଲିର, ଆଣ୍ଡିଜ୍ ପର୍ବତମାଳାର ସୁବିସ୍ତୃତ ବିବରଣୀ, ଏକ ଶାନ୍ତ-ସ୍ନିଗ୍ଧ ଜୀବନଧାରାର ଛବି ଉପସ୍ଥାପନା ଉପନ୍ୟାସଟିକୁ ପୂର୍ଣ୍ଣତା ଆଣିଦେଇଛି ।

ମୋଟ ଉପରେ କହିଲେ, ''ଶେଷକଥା'' ଏକ ସଫଳ ଉପନ୍ୟାସ । ଆଶା କରେ ଏହା ପାଠକ ମହଲରେ ବିଶେଷ ଆଦୃତ ହେବ ।

—ଶାନ୍ତିଲତା ସାହୁ ■ ଅଧାପିକା, ମନସ୍ତତ୍ତ୍ୱବିଭାଗ ଉତ୍କଳ ବିଶ୍ୱବିଦାଳୟ

# ପାଇ ନ ପାଇବା ସ୍ୱପ୍ନ

ଉପନ୍ୟାସ

ପାଇ ନ ପାଇବା ସ୍ୱପ୍ନ ପ୍ରଚଳିତ ସାମାଜିକ ଚଳଣି, ଅପସଂସ୍କୃତି ମଧ୍ୟରେ ନିଜର ଅନିଚ୍ଛା ସତ୍ତ୍ୱେ ନିଷ୍ପେସିତ ହୋଇଯାଇଥିବା ଜଣେ ଉଚ୍ଚ ଶିକ୍ଷିତା ତରୁଣୀର କାହାଣୀ । ସାଗରିକା ! ଉଚ୍ଚଶିକ୍ଷିତା, ରୂପସୀ, ପଦାର୍ଥ ବିଜ୍ଞାନରେ ପ୍ରଥମଶ୍ରେଣୀ ପାଇଥିବା ମେଧାବୀ ଛାତ୍ରୀ । ଧର୍ମୀୟ ପ୍ରବଞ୍ଚନର ଶିକାର ହୋଇ ବାବାଙ୍କ ଶିଷ୍ୟ ବନିଥିବା ତାଙ୍କ ଆଇ.ଏ.ଏସ୍. ପିତାମାତାଙ୍କ ଅକାଟ୍ୟ ଅନ୍ଧବିଶ୍ୱାସର ପରିଣତିସ୍ୱରୂପ ସାଗରିକା ବାଧ୍ୟ ହୋଇ ବରିନିଏ ଭକ୍ତ ଠାକୁର ବାବାଙ୍କୁ ନିଜର ପତି ରୂପେ, କିନ୍ତୁ ସେ ଯେତେବେଳେ ଜାଣେଯେ ସେ ହିଁ ଭଣ୍ଡ ବାବାଙ୍କ ଦ୍ୱାଦଶ ସ୍ତ୍ରୀ ତାର ସ୍ୱପ୍ନ ଚୁରମାର ହୋଇଯାଏ ।  ହଜାର ହଜାର ଲୋକ ପୂଜା କରୁଥିବା ତଥାକଥିତ ଏହି ଭଣ୍ଡ ବାବାଙ୍କ ପ୍ରତି ତା ମନରେ ଜାତ ହୁଏ ଘୃଣାଭାବ । ସେ ସଂସାର ବନ୍ଧନରୁ ମୁକୁଳି ନିଜ କନ୍ୟାକୁ ମଣିଷ କରେ । ସାଗରିକା ନିଜେ ନିଜ ସହ ପ୍ରତ୍ୟେକ ମୁହୂର୍ତ୍ତରେ ମୁକାବିଲା କରୁଥିବା ସମସ୍ୟା, ଦୁର୍ଘଟଣାକୁ ଅତ୍ୟନ୍ତ ସୁନ୍ଦର ରୋମାଞ୍ଚକର ଭାଷାରେ ବର୍ଣ୍ଣନା କରିଛନ୍ତି ଲେଖକ । ବର୍ତ୍ତମାନର କଳୁଷିତ ସାମାଜିକ ପରମ୍ପରାକୁ, ଭକ୍ତବାବାଙ୍କ କାର୍ଯ୍ୟକଳାପକୁ ସେ ଲୋକଲୋଚନକୁ ଆଣି ସାମାଜିକ ଚଳଣିକୁ ପରିବର୍ତ୍ତନ କରିବା ସହ ଜନସଚେତନତା ସୃଷ୍ଟିର ଉଦ୍ୟମ କରିଛନ୍ତି ।

## ସ୍ୱପ୍ନର ଆବର୍ତ୍ତରେ ଜୀବନ

କାହାଣୀ ପ୍ରକାଶନ ଦ୍ୱାରା ସଦ୍ୟ ଆତ୍ମପ୍ରକାଶ କରିଥିବା ଡଃ ରାଧାନାଥ ରଥଙ୍କର ଉପନ୍ୟାସ 'ପାଇ ନ ପାଇବା ସ୍ୱପ୍ନ' ଯଥାର୍ଥରେ ଏକ ଚମତ୍କାର ସୃଷ୍ଟି । ଚମତ୍କାର ପ୍ରଚ୍ଛଦ ଓ ସୁନ୍ଦର ଛପାରେ ଉପନ୍ୟାସଟି ଏତେ ଆକର୍ଷଣୀୟ ହୋଇଛି ଯେ ପାଠକର ଆଗ୍ରହ ସ୍ୱାଭାବିକ ଭାବେ ବୃଦ୍ଧି କରେ ।

ଉପନ୍ୟାସର କାହାଣୀଟି ଏକ ସଂପୂର୍ଣ୍ଣ ନୂତନ ଢଙ୍ଗରେ ଆଗକୁ ଗତି କରିଛି । ପଢ଼ିଲେ ମନେହୁଏ ସାମ୍ପ୍ରତିକ ସାମାଜିକ ଅବସ୍ଥା ସବୁ ପ୍ରତି ଯେମିତି ପ୍ରଚ୍ଛନ୍ନରେ ଏହା ଏକ ଚ୍ୟାଲେଞ୍ଜ ।

ଶ୍ରୀ ଶ୍ରୀ ଭଗବାନ ଓଁକାର ନାଥଙ୍କର ଅଗଣିତ ଭକ୍ତମାନଙ୍କ ମଧ୍ୟରୁ ଗୁରୁଚରଣ ଦାସଙ୍କର ପରିବାର ଅନ୍ୟତମ । ଗୁରୁଚରଣ ଦାସ ଏବଂ ପତ୍ନୀ ରାଧାମଣି ଦେବୀ ଉଭୟ ଉଚ୍ଚ ଶିକ୍ଷିତ ଏବଂ ସାମାଜରେ ପ୍ରତିଷ୍ଠିତ । ସେମାନଙ୍କର ଏକମାତ୍ର କନ୍ୟା ସାଗରିକା ବିଶ୍ୱବିଦ୍ୟାଳୟରେ ପଦାର୍ଥ ବିଜ୍ଞାନର ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଛି । ଆଗରେ ତାର ଉଜ୍ଜ୍ୱଳ ଭବିଷ୍ୟତ । ଏକମାତ୍ର ପୁଅ ଅନିମେଷ ବାପା ମା'ଙ୍କର ଏ ଆଧ୍ୟାତ୍ମିକ ବିଶ୍ୱାସକୁ ପରୋକ୍ଷରେ ବିରୋଧ କରେ । ଅଥଚ ସାଗରିକାର ଗୁରୁଦେବଙ୍କର ଆଶ୍ରମ ପ୍ରତି ଅସମ୍ଭବ ଆକର୍ଷଣ । ଉପନ୍ୟାସର ଆରମ୍ଭରୁ ଆଶ୍ରମରେ ଦୋଳ ଉତ୍ସବର ଆୟୋଜନର କଥା ବର୍ଣ୍ଣନା ହେଉଛି । ସାଗରିକା ନିଜ ବାପା ମା'ଙ୍କ ସହ ଉତ୍ସବରେ ଯୋଗଦେବା ପାଇଁ ଆସିଛି । ଓଁକାର ନାଥଙ୍କର ଅଗଣିତ ଭକ୍ତ ତାଙ୍କୁ ନିଃସନ୍ଦେହରେ ଭଗବାନଙ୍କର ଅବତାର ଭାବେ ଗ୍ରହଣ କରି ନେଇଛନ୍ତି । ତେଣୁ ସାଗରିକା ତପୋବନରେ ବିମୁଗ୍ଧ ହୋଇ ମୋହାଚ୍ଛନ୍ନ ଭାବେ ସଂଗୀତର ସୁର୍ ଧରିଥିବା ବେଳେ କେବେ ସେ ନିକଟରେ ଆସି ସ୍ୱୟଂ ଆବିର୍ଭାବ ହୁଅନ୍ତି ତ ସେ ତନ୍ମୟ ହୋଇଯିବା କିଛି ଅସମ୍ଭବ ମନେହୁଏ ନି । ଗୁରୁ ଚରଣ ଦାସ ଅବସରପ୍ରାପ୍ତ ମୁଖ୍ୟ ସଚିବ, ଏକମାତ୍ର କନ୍ୟା

ସାଗରିକା ତେଣୁ ସବୁମତେ ଜଣେ ବିବାହଯୋଗ୍ୟା ସୁପାତ୍ରୀ । ଅକସ୍ମାତ୍ ଠାକୁର ଭଗବାନଙ୍କ ଇଚ୍ଛାକ୍ରମେ ସାଗରିକାର ବିବାହ ସଂପନ୍ନ ହୁଏ ତାଙ୍କ ସହ ଆଶ୍ରମର ଦୋଳ ଉତ୍ସବର ଆୟୋଜନ ଭିତରେ । ଭକ୍ତଗଣ ଅଭିଭୂତ ହୋଇପଡ଼ନ୍ତି । ଠାକୁର ପୁରୁଷୋତ୍ତମଙ୍କର ଲୀଳାମୟ ସଂସାର ଆରମ୍ଭ କରିବାର ଅଭିପ୍ରାୟରେ ମନ୍ତ୍ରମୁଗ୍ଧ ହୁଅନ୍ତି ସାଗରିକାର ବାପା ଓ ମା । ସେଇଠି ସାଗରିକାକୁ ପୁରୁଷୋତ୍ତମଙ୍କ ସହ ବିବାହ ଦେଇ ସେମାନେ ଫେରିଆସନ୍ତି ନିଜ ଘରକୁ । ଏଇଠି ଆରମ୍ଭ ହେଇଛି ସାଗରିକା ଜୀବନର ନୂଆ ଅଧ୍ୟାୟ ।

ରାଧାକୃଷ୍ଣଙ୍କର ଜୟ ଜୟ ଧ୍ୱନି ଭିତରେ ସାଗିରକାର ଜୀବନ ପାଲଟି ଯାଇଛି ଠାକୁରଙ୍କ ଦ୍ୱାରା ସୃଷ୍ଟି ହେଇଥିବା ଭୟଙ୍କର ଆବର୍ତ୍ତ ଭିତରେ ଅସହାୟ ବିନ୍ଦୁଟିଏ ମାତ୍ର । ଖୁବ୍‌ଶୀଘ୍ର ସେ ଆବିଷ୍କାର କରିଛି ଯେ ସେ ଠାକୁର ବାବାଙ୍କର ଦ୍ୱାଦଶତମ ଶଯ୍ୟା ସଙ୍ଗିନୀ । ଅବଶ୍ୟ ସେ ସର୍ବଶ୍ରେଷ୍ଠ ପାଟରାଣୀ ହେବାର ସ୍ୱୀକୃତି ପାଇଥିଲା । ତିନି ମାସର ଅସହ୍ୟ ମାନସିକ ଯନ୍ତ୍ରଣା ପରେ ସେ ଜାଣିପାରିଲା ଯେ ସେ ମା' ହେବାକୁ ଯାଉଛି । ବହୁ କଷ୍ଟରେ ନିଜ ଭିତରେ ସାହସ ସଂଚୟ କରି ସେ ଇନ୍ଦ୍ରଜାଲ ଭିତରୁ ନିଜକୁ ମୁକ୍ତ କରି ସେ ଫେରିଆସିଛି ନିଜ ପିତୃଗୃହକୁ ।

ଏତେ ସୁନ୍ଦର ଭାବେ ସାଗରିକାର ମନର ଅବସ୍ଥାଟି ବର୍ଣ୍ଣନା କରିବାରେ ଔପନ୍ୟାସିକଙ୍କର ମନସ୍ତତ୍ତ୍ୱର ଜ୍ଞାନ ସହାୟକ ହେଇଛି ନିଶ୍ଚୟ । ଗୋଟିଏ ଉଚ୍ଚ ଶିକ୍ଷିତା ଝିଅ ଏଭଳି ମାୟାଚ୍ଛନ୍ନ ପରିବେଶରେ ଜଣେ ଭଗବାନଙ୍କର ସ୍ୱରୂପ ଭାବେ ପରିଚିତ ବାବାଙ୍କୁ ବିବାହ କରିବା ଏବଂ ପରେ ପୁଣି ସେ ସବୁ ଭିତରୁ ନିଜକୁ ମୁକ୍ତ କରି ସଂପୂର୍ଣ୍ଣ ଭାବେ ନିଜ ପାଇଁ ନୂଆ ଜୀବନଟିଏ ଗଢ଼ିବାର ସାହସ କରିବା, ଏଭଳି ଚମତ୍କାର କାହାଣୀର କଳ୍ପନା ଓଡ଼ିଆରେ ସମ୍ଭବତଃ ଏ ଯାବତ୍ ବିରଳ । ସାଗରିକାର ଆଶ୍ରମରୁ ଫେରିଆସିବା ପରର ଜୀବନଟି ସଂପୂର୍ଣ୍ଣ ଭିନ୍ନ । ସେ ପୁଣି ଗବେଷଣାରେ ମନ ଦେଇଛି, ସେ କ୍ଷେତ୍ରରେ ତାର ପରିଚୟ ହେଇଛି ସୌରଭ ବାବୁଙ୍କ ସହ । ଛୋଟ ଝିଅ ନିକିର ମା' ଭାବରେ, ପୁଣି ବୟସ୍କ ବାପା ମା'ଙ୍କର ଦାୟିତ୍ୱ ସଂପନ୍ନା ଝିଅ ଭାବରେ ତା'ର ଭୂମିକାଟି ଚମତ୍କାର ଭାବେ ନିର୍ବାହ କରିବା ବେଳେ ନିଜ ଜୀବନର ସ୍ୱପ୍ନକୁ ସେ ଅବହେଳା କରିନି । ଶେଷରେ ନିକି ପାଇଁ ନିଜର ଦାୟିତ୍ୱ ସାରିବା ପରେ ସେ ପହଞ୍ଚି ଯାଇଛି ତାର ଆଜୀବନ ନ ପାଇଥିବା ସ୍ୱପ୍ନ ପାଖରେ ।

ଉପନ୍ୟାସର ଶେଷ ପୃଷ୍ଠାଟି ଏତେ ସୁନ୍ଦର ଶବ୍ଦ ସଂଯୋଜନାରେ ପରିପୁଷ୍ଟ ଯେ ପଢ଼ିସାରିବା ପରେ ମନେହୁଏ ଯେମିତି ୟାଠାରୁ ସଫଳ ଭାବେ ଏହାର ଶେଷକଥା କୁହାଯାଇ ନପାରେ । ବଳିଷ୍ଠ କାହାଣୀ, କାହାଣୀର ଗତିଶୀଳତା, ଚମତ୍କାର ଶବ୍ଦ ସଂଯୋଜନାରେ 'ପାଇ ନ ପାଇବା ସ୍ୱପ୍ନ' ରାଧାନାଥ ରଥଙ୍କର ଏକ ସଫଳ ସୃଷ୍ଟି । ଏକଶହ ଅଶୀ ପୃଷ୍ଠାର ଉପନ୍ୟାସଟିର ଦାମ୍ ଷାଠିଏ ଟଙ୍କା । ଏହା ଯେକୌଣସି ଅନୁଷ୍ଠାନ ବା ଆଗ୍ରହୀ ପାଠକଙ୍କ ପାଇଁ ନିଶ୍ଚିତ ଭାବରେ ସଂଗ୍ରହଣୀୟ ।

— **ହିରଣ୍ମୟୀ ମିଶ୍ର** ■ କଥା କଥା କବିତା କବିତା ୨ : ୧୧୧ ପୃଷ୍ଠା

■■■

## ୮

# ବିଚିତ୍ର ମନର ବିଚିତ୍ର ଅନୁରାଗ

ଭଲ ପାଇବା ବହୁ ବ୍ୟାପକ ଅର୍ଥରେ ବ୍ୟବହୃତ ହୁଏ । ଏହାର ପରିଭାଷା ମଧ୍ୟ ଅଲଗା । ଦୁଇଟି ପୁଅଝିଅଙ୍କ ଭିତରେ ଯେଉଁ ଭଲପାଇବା ଦେଖାଦିଏ, ତାହା ଶେଷ ପର୍ଯ୍ୟନ୍ତ ସ୍ୱାମୀ ସ୍ତ୍ରୀ ରୂପରେ ଦେଖାଦିଏ । ଏଥିରେ କେତେକ ନିର୍ଦ୍ଦିଷ୍ଟ ପ୍ରତ୍ୟାଶା କାମ କରୁଥାଏ । ବିଶେଷକରି ଦୈହିକ ଯୌନକ୍ଷୁଧା ଏହାର ପରିସର ଭିତରେ ପ୍ରବଳ ଭାବରେ ରହିଥାଏ । ପ୍ରେମ ବିବାହ ପୂର୍ବରୁ ଭଲ ପାଇବାର ପରିଭାଷା ଯାହା ଥାଏ ନାନା କାରଣରୁ ବିବାହ ପରେ ହୁଏତ ତାହା କେବଳ ଦୈହିକ କ୍ଷୁଧା ମେଣ୍ଟାଇବାର ହିଁ ଏକମାତ୍ର ଲକ୍ଷ୍ୟ ରହିଯାଏ । ପ୍ରଥମରୁ ଗଢ଼ି ଉଠିଥିବା ଭଲ ପାଇବାର ପରିସର ସୀମିତ ହୋଇଯାଏ ।

ଆହୁରି କେତେକ ଧରଣର ଭଲ ପାଇବା ସୃଷ୍ଟି ହୋଇପାରେ ଯେଉଁଥିରେ ଦୈହିକ କ୍ଷୁଧାର ସଂଭାବନା ନଥାଇ ମଧ୍ୟ ଦୁଇଜଣ ପୁରୁଷ ସ୍ତ୍ରୀଙ୍କ ଭିତରେ ଗଭୀର ଭଲ ପାଇବା ରହିଯାଇଥାଇପାରେ । ଯାହାକୁ ପ୍ରଥମ ପ୍ରେମ ବୋଲି କୁହାଯାଏ ତାହା କେତେକଙ୍କଠାରେ ଏପରି ଗଭୀର ଭାବରେ ପ୍ରଭାବ ବିସ୍ତାର କରିଥାଏ ଯେ ସାରା ଜୀବନ ପରସ୍ପରଙ୍କୁ ମନେ ମନେ ଝୁରୁଥାଆନ୍ତି । ସେମାନେ ସାଧାରଣ ଭାବରେ ପାରିବାରିକ ଜୀବନଯାପନ କରୁଥିଲେ ସୁଦ୍ଧା ସେମାନଙ୍କର ମନ ଗହୀରରେ ଏହା ଉବୁଟୁବୁ ହେଉଥାଏ । ଜଣଙ୍କର କିମ୍ବା ଦୁଇଜଣଙ୍କ ଭିତରେ ଏହା ପ୍ରଚ୍ଛନ୍ନ ଭାବରେ ମନ ଗହୀରରେ ଗୋଟିଏ ଗତିଶୀଳ ଦୁର୍ଦ୍ଦମନୀୟ ଅଭାବବୋଧ ଲାଗିରହିଥାଏ । ଏ ପ୍ରକାରର ଭଲ ପାଇବାରେ ଜଣଙ୍କ ତରଫରୁ ପ୍ରତାରଣା ଦେଖାଦେଇଥିଲେ ସୁଦ୍ଧା ଅନ୍ୟ ଜଣକ ତା ପ୍ରତି ପ୍ରତିଶୋଧ ପରାୟଣ ହୋଇପାରେନାହିଁ । ଅର୍ଥାତ୍ ଗଭୀର ଭାବରେ ଭଲ ପାଇବା ଏପରି ଏକ ଆତ୍ମିକ ଓ ଅତୀନ୍ଦ୍ରିୟ ଭାବନାରେ ପରିଣତ ହୋଇ ତାର ମନକୁ ଆବୋରି ରହିଥାଏ ଯେ ସେ କଦାପି ତାର ପ୍ରେୟସୀର କୌଣସି କ୍ଷତିସାଧନ କରିପାରେ ନାହିଁ । ବରଂ ପ୍ରେୟସୀ ଯଦି ତା ଜୀବନରେ ଅସୁଖୀ ହୁଏ ଏହା ତାର ସହ୍ୟ ହୁଏନାହିଁ । ତା'ର ଯନ୍ତ୍ରଣା ନିଜର ଯନ୍ତ୍ରଣାରେ ପରିଣତ ହୋଇଥାଏ ।

ଏଭଳି ଭଲ ପାଇବା ବ୍ୟକ୍ତିର ଜୀବନକୁ ଏପରି ଭାବରେ ନିୟନ୍ତ୍ରଣ କରି ରଖିଥାଏ ଯେ ପୃଥିବୀର ଯେକୌଣସି ସ୍ଥାନରେ ମଧ୍ୟ ତା'ର ନିର୍ଦ୍ଦିଷ୍ଟ ପଦକ୍ଷେପ ଶୁଣାଯାଉଥାଏ ।

ତାର ବ୍ୟକ୍ତିଗତ ରୁଚି ମଧ୍ୟ ବଦଳିଯାଏ-ତା'ର ଅନୁଭବ ଏବଂ ଉପଭୋଗର ପରିସର ଏହା ଦ୍ୱାରା ପ୍ରଭାବିତ ହୁଏ । ଏ ପ୍ରକାରର ପରିବର୍ତ୍ତିତ ରୁଚି ଏବଂ ଅନୁଭବ 'ଭଲ ପାଇବାର ଆଦିକଥା' ଏବଂ 'ଶେଷ କଥା'ରେ ବର୍ଣ୍ଣିତ ହୋଇଛି । ଉଦାହରଣସ୍ୱରୂପ ପ୍ରେମିକ ମଲ୍ଲାର ମତରେ–

''ପ୍ରେୟସୀ ଛନ୍ଦା ମୋ ଜୀବନରେ ରହିଗଲା ଦୂର ଦିଗନ୍ତର ବର୍ଣ୍ଣାଳୀ ମେଘପୁଞ୍ଜ– ଦୂର ଦେଶର ସୀମାହୀନ ହ୍ରଦ– ଭଲ ପାଇବାର ଉତ୍ତୁଙ୍ଗ ଶିଖରୀ ଗୌରୀ- ଶଙ୍କର ହୋଇ । ତାକୁ ଘରକୁ ଅଣାଯାଇ ପାରେନା– ପାଖରେ ଛୁଇଁ ହୁଏନା– ଦୂରାନ୍ତର ଜଳାଶୟକୁ ନିଜ ଅଗଣାରେ ସୃଷ୍ଟି କରାଯାଇ ପାରେନା ।

ବେଳେବେଳେ ମୋର ଜୀବନ-ଜାହାଜ ସମୟର ଉଜାଣି ସ୍ରୋତରେ ସୀମାହୀନ ଦିଗ୍‌ବଳୟର ଆରପାରିରେ ଥିବା ଗୋଟିଏ ନିରୋଳା ଦ୍ୱୀପରେ ଯାଇ ଅଟକିଯାଏ । ଧଳା ଜହ୍ନ ଆଲୁଅରେ, ସମୁଦ୍ର ବେଳାଭୂମିରେ ଛନ୍ଦାର ସେହି ଗଭୀର କଳା ଆଖିର କରୁଣ ମାଧୁରିମା ଜୀବନର ସବୁ କୋଳାହଳକୁ ଗଭୀର ଅନୁକମ୍ପାରେ ଆଚ୍ଛାଦିତ କରିପକାଏ । ଆମ ଜୀବନର ଏହି ଅମର କାହାଣୀ ସମୟ ସ୍ରୋତରେ ତିଳେମାତ୍ର ଝାପ୍‌ସା ହୁଏନାହିଁ– କାରଣ ଏହା ଜୀବନର ମନୋମୁଗ୍‌ଧକର ଅନନ୍ୟ ତଥା ଅନବଦ୍ୟ ଆବେଗାନୁଭୂତି । ଆମ ଅନୁଭୂତିଗୁଡ଼ିକର ମୂକସାକ୍ଷୀ ଚିର ପରିଚିତ ସନ୍ଧ୍ୟାତାରା ଆତ୍ମିକ ସାଥୀ ରୂପେ ଆଖିମିଟିକା ମାରୁଥାଏ । ସେହି ଭାବାବେଗାପ୍ଲୁତ ସନ୍ଧ୍ୟାତାରା ବକ୍ଷରେ ଆମ ସ୍ୱପ୍ନର ନୂତନ ନନ୍ଦନକାନନ ଗଢ଼ି ହୋଇଚାଲିଛି– ସେଠାରେ ହିଁ ଆମର ହେବ ଅନ୍ତିମ ମିଳନ– ଛନ୍ଦା ମଲ୍ଲାର ଗୀତିକାବ୍ୟର କାଳହୀନ ଉନ୍ମୀଳନ ।

ସେହି ପ୍ରାଣମର୍ମରିତ ମୂର୍ଚ୍ଛନା ଜୀବନର ବହୁ ମୁହୂର୍ତ୍ତକୁ ଅନୁରଣିତ କରି ଚାଲିଛି । ପ୍ରଶାନ୍ତ ମହାସାଗରର ତିରିଶ ହଜାର ଫୁଟ ଉପରେ ଯେତେବେଳେ ଉଡ଼ାଜାହାଜରେ ବସି ଜଳରାଶିର ସୀମାହୀନ ବିସ୍ତାରିତ ସ୍ଥିର ଜଳ ଆସ୍ତରଣକୁ ଚାହିଁଥାଏ, ସେଠାରେ ''ପ୍ରିୟ ହତେ ପ୍ରିୟତର'' ସଙ୍ଗୀତର ଛନ୍ଦାୟିତ ଆଲୋଡ଼ନ ମୋର ପ୍ରାଣକୁ ମର୍ମରିତ କରେ । ଜ୍ୟୋତ୍ସ୍ନା ପ୍ଲାବିତ ଘନ ଅରଣ୍ୟର ନିର୍ଜନତା ଭିତରେ ମୁଁ ବିଚରଣ କଲାବେଳେ ଏହି ଗୀତର ମୂର୍ଚ୍ଛନାଟି ମୋତେ ଉଦ୍‌ବେଳିତ କରେ, ବେବିଲୋନର ଅତୀତ ସଭ୍ୟତାର ସ୍ତୂପୀକୃତ ନିର୍ଜନ ଭଗ୍ନାବଶେଷ ମନ୍ଦିର ଭିତରୁ ମଧ୍ୟ ଏହି କରୁଣ ସ୍ୱରଟି ନିକ୍ୱଣିତ ହେଉଥାଏ । ହିମାଳୟର ଦିଗନ୍ତବ୍ୟାପୀ ସ୍ୱପ୍ନିଳ ପରିବେଶରେ ଅତୀତର ଏହି ଅନୁଭୂତି ମୋତେ ଅଭିଭୂତ କରେ । ଦେଶ ଦେଶାନ୍ତରର ନିର୍ଜନ ହ୍ରଦ ବକ୍ଷରେ ନିଃସଙ୍ଗ ଭାବରେ ହ୍ରଦ ବକ୍ଷରେ ଡଙ୍ଗାରେ ଭାସୁଥିବା ବେଳେ ଛନ୍ଦାର ଏହି ମଧୁର ସଂବୋଧନ ମନ ଭିତରେ ରୁଣୁଝୁଣୁ କରି ଚାଲିଯାଏ । ପ୍ରତି ଆଶ୍ୱିନ ମାସର ଜ୍ୟୋତ୍ସ୍ନାପ୍ଲାବିତ ଆକାଶରେ ଏହି ସ୍ୱରର ପୁଲକିତ ଅନୁଭୂତିର କଅଣ ଜୀବନରେ କୌଣସି ମୂଲ୍ୟ ନାହିଁ ? ସମୁଦ୍ରର ଫେନିୟିତ ଜଳରାଶିକୁ କଅଣ ଏହା କାବ୍ୟିକ ମାଧୁରିମାରେ ରସାୟିତ କରି ପାରେ ନାହିଁ ?? ତାର ଗଭୀର ଛଳ ଛଳ ଆଖିର କାରୁଣ୍ୟ ଓ ମଧୁର ଲୋତକ ବିନ୍ଦୁ ସିକ୍ତ ରକ୍ତ ଗୋଲାପର କରୁଣାୟିତ ସୁବାସର କ'ଣ ଜୀବନରେ କିଛି ମୂଲ୍ୟ ନାହିଁ ? ଭଲ ପାଇବାର ରକ୍ତ କରବୀରର ବିଲୟ ଘଟିଯିବାରେ କଅଣ ଏହି ଚିରନ୍ତନ ମାନବୀୟ ମୂଲ୍ୟବୋଧର ପରିସମାପ୍ତି ?

ଏହି ଅବିସ୍ମୃତ ସ୍ମୃତି ଜୀବନକୁ ନୂତନ ଅର୍ଥରେ, ନିରବଛିନ୍ନ ଅନ୍ୱେଷଣରେ, ଭଲ ପାଇବାର ଗଭୀର ଅନୁରକ୍ତିରେ, ଜୀବନକୁ ପରିପୂର୍ଣ୍ଣ କରିବାରେ ଅଜସ୍ର ଉନ୍ମାଦନା ଆଣିଦିଏ । ଭଲ ପାଇବାର ସାତ୍ତ୍ୱିକ ଉପଲବ୍ଧି ଜୀବନବ୍ୟାପୀ ଆତ୍ମାକୁ ଏକ ଦିଗନ୍ତଭରା ସବୁଜିମାରେ ରଞ୍ଜିତ କରି ଚାଲେ । ଏହାର ପ୍ରଭାବ ନିଶ୍ଚିତ ଭାବରେ ଚିରନ୍ତନ । ସେହି କାରଣରୁ ଜୀବନର ବହୁ ଆନନ୍ଦମୁଖର ତଥା କରୁଣ ମୁହୂର୍ତ୍ତରେ ତାର ଗଭୀର ଆଖିର ଉଚ୍ଛଳିତ ହସ, ତୃତୀୟା ଜହ୍ନର ମୋଲାୟମ ପରଶ ପରି ମନ ପ୍ରାଣକୁ ସ୍ନିଗ୍ଧତାରେ ଭରିଦିଏ । ଯେ କୌଣସି ସୁରମ୍ୟ ପରିବେଶରେ ନିରୋଳାରେ ବସି କଳ୍ପନା ଜଳ୍ପନା କଲାବେଳେ ସେ ଆସି ମୋ ଆଗରେ ବସି ପଡ଼େ । ତାର ମୁଗ୍ଧ ଛନ୍ଦାୟିତ ଆଖିରେ ମୋତେ ଚାହିଁ ରହିଥାଏ । ସୁନ୍ଦରୀ ସ୍ତ୍ରୀମାନଙ୍କର ମୁହଁ ଭିତରେ ତା ମୁହଁ ଭାସି ଉଠେ– ସେମାନଙ୍କ ଆଖି ସବୁ ତାର ଲମ୍ବା ଲମ୍ବା ଆଖିରେ ପରିଣତ ହୋଇ ଯାଆନ୍ତି– କୌଣସି ନାରୀକୁ ଭଲ ଲାଗିବାରେ ତାର ଛାଇ ଯେପରି ସଦାସର୍ବଦା ଆବୋରି ରହିଥାଏ । ଏହାହିଁ ଜୀବନର ସୌରଭ, ବଞ୍ଚିବାର ପରମ ସାର୍ଥକତା ।''

ସ୍ୱୀକୃତି ଓ ପ୍ରତିଶ୍ରୁତି ମଧ ଏହିପରି ଅତୀନ୍ଦ୍ରିୟ ଅର୍ଥରେ ପ୍ରକାଶିତ ହୋଇଛି–

''ମଲ୍ଲାର ! ମୋର କାହିଁକି ମନେହୁଏ ତୁମକୁ ମୁଁ ଏ ଜୀବନରେ ସଂପୂର୍ଣ୍ଣ ରୂପେ ପାଇ ପାରିବି ନାହିଁ । ମୋର ଏ ଦୁନିଆରେ ବେଶୀ ଦିନ ରହିବାର ସମ୍ଭାବନା ନାହିଁ । ମୋର ମୃତ୍ୟୁ ପରେ ଆମର ପରିଚିତ ସନ୍ଧ୍ୟାତାରାର ନିଃସଙ୍ଗ ସମୁଦ୍ର କୂଳରେ ତୁମକୁ ବର୍ଷ ବର୍ଷ ଧରି ପ୍ରତୀକ୍ଷା କରି ରହିଥିବି । ଆସିବ ତ ମଲ୍ଲାର ? କଥା ଦିଅ, ଆସିବ ତ ? ତା ନ ହେଲେ ଜନ୍ମଜନ୍ମାନ୍ତରର ପ୍ରତୀକ୍ଷାରେ ମୁଁ ତୁମ ପାଇଁ ଛଟପଟ ହେଉଥିବି ।''

ଏପ୍ରକାର ଅତୀନ୍ଦ୍ରିୟ ପ୍ରତିଶ୍ରୁତି ମନ ଗହୀରରେ ଏପରି ଅଦୃଶ୍ୟ ଓ ଅଶ୍ରୁତ ଭାବରେ ପ୍ରସାରିତ ହୋଇରହିଥିଲା ଯେ ହଠାତ୍ ତାହାର ଉଦ୍‌ଗୀରଣ ହେଲା ଛନ୍ଦାଠାରେ, ଯେତେବେଳେ ସେ ସ୍ୱାମୀ ପୁତ୍ରମାନଙ୍କର ସ୍ନେହ ଶ୍ରଦ୍ଧାରୁ ବଂଚିତ ହୋଇ ତାର ପ୍ରଚୁର ଧନ ସଂପତ୍ତିର ସୁବର୍ଣ୍ଣ ଗୁମ୍ଫାରେ ଜୀବନର କଣ୍ଟକିତ ପଥରେ ରକ୍ତାକ୍ତ ହୋଇ ମୂକ ହୋଇଯାଇଥିଲା । ତା'ର ପ୍ରଥମ ପ୍ରେମିକ ମଲ୍ଲାରର ବେଦନା ବିଗଳିତ 'ଭଲ ପାଇବାର ଆଦିକଥା' ବହି ପଢ଼ିଲା ପରେ ତାର ମନ ଗହୀର ଭିତରେ ପ୍ରଥମ ପ୍ରେମର ଅଭିନବ ଅନୁରାଗର ଉତପ୍ତ ଲାଭାର ଲୁକ୍କାୟିତ ଗହ୍ୱର ହଠାତ୍ ଉଦ୍‌ଗୀରଣ ସୃଷ୍ଟି କରିଥିଲା । ତା'ର ମୂକତା ହଠାତ୍ ଉଭେଇଗଲା- ତା'ର ଦୁର୍ବଳ ହୃଦ୍‌ଯନ୍ତ୍ର ପୁଣି ଥରେ ଉଜ୍ଜୀବିତ ହୋଇଉଠିଲା । ବହୁଦିନ ଧରି ଶଯ୍ୟାଶାୟୀ ଛନ୍ଦା ତାର ସମସ୍ତ ଶକ୍ତି ସଂଚୟ କରି ଦିଲ୍ଲୀଠାରୁ ପୁରୀ ଯାଏଁ ଦୌଡ଼ି ଆସିଲା । ତାର ପ୍ରଥମ ପ୍ରେମର ପ୍ରାଣସ୍ପର୍ଶୀ ଆହ୍ୱାନରେ ସେ ତାର ସଂଚିତ ଶକ୍ତି ନେଇ ପ୍ରେମିକ ମଲ୍ଲାର ପାଖରେ ଆସି ପହଞ୍ଚିଗଲା-''ହୃଦ୍‌ରୋଗ ବିଶେଷଜ୍ଞମାନେ ଯାହା କରିପାରିନଥିଲେ, ତୁମର ବହିଟି ମୋତେ ହଠାତ୍ ମୋର ବାକ୍‌ଶକ୍ତି ଫେରାଇ ଦେଇପାରିଲା !''

''ଏତକ କହି ଝର ଝର ବୋହିଯାଉଥିବା ଅଶ୍ରୁଳ ମୁହଁକୁ ତଳକୁ କଲା । ଅବିନାଶ ବାଷ୍ପାକୁଳ କରୁଣାୟିତ ଗଳାରେ ଖୁବ୍ ଅନୁଚ୍ଚ ସ୍ୱରରେ ଡାକିଲେ– 'ଛନ୍ଦା', ତୁମେ ଏପରି ଅଧୀର ହେବା କଅଣ ଉଚିତ୍ ହେଉଛି ? ଛନ୍ଦା ମଲ୍ଲାରର ରାଗିଣୀ ପରା ଆମ ପାଇଁ

ସନ୍ଧ୍ୟାତାରାର ବେଳାଭୂମିରେ ଚିରଦିନ ପାଇଁ ଅନୁରଣିତ ହୋଇ ଚାଲିଥିବ । ଭବିଷ୍ୟତରେ ସେଠାରେ ପୁଣି ଥରେ ଆମର ଦେଖାହେବ । ତୁମେ ପରା ତୁମର ଶେଷ ଚିଠିରେ ଲେଖିଛ ତୁମେ ଏହି ପରିଚିତ ସନ୍ଧ୍ୟାତାରାର... ସମୁଦ୍ର କୂଳରେ ବର୍ଷ ବର୍ଷ ଧରି ମୋ ପାଇଁ ସେଠାରେ ପ୍ରତୀକ୍ଷା କରିଥିବ ? ଆମ ଆଦ୍ୟ ଯୌବନର ସ୍ୱପ୍ନମୟ ପ୍ରତିଶ୍ରୁତି କଦାପି ମଳିନ ହୋଇପାରିବ ? ନିଃସହାୟ ଭାବରେ ନିଜକୁ ଦୋଷୀ ବୋଲି ତୁମେ ଏପରି କାହିଁକି ଭାବୁଛ ?''

ମନୀଷା ଅଶ୍ରୁସିକ୍ତ ମୁହଁ ଟେକି କହିଲା, ''ମଲ୍ଲାର, ତୁମେ ଦୀର୍ଘ ଚାଳିଶି ବର୍ଷ ପରେ ଏ ବହିଟି କାହିଁକି ଲେଖିଲ— ଆଗରୁ ଲେଖିଥିଲେ ତ ମୁଁ ମୂକ ହୋଇନଥାନ୍ତି । ମୋର ଦୁଃଖଦ ଜୀବନରେ ଏହା ପ୍ରେରଣାର ଉତ୍ସ ହୋଇ ରହିଥାଆନ୍ତା । ଯେ ଏ ବହିଟିକୁ ଏପରି ମର୍ମାନ୍ତିକ ଭାଷାରେ ଲେଖି ପାରିଲା, ତାର କି ଅସୀମ ଧୈର୍ଯ୍ୟ ଓ ମୋତେ ଭଲ ପାଇବାରେ କି ଅଟଳ ବିଶ୍ୱାସ ରହିଛି, ତାହାହିଁ ମୋତେ ପୁଣି ଥରେ ବାଚାଳ କରିଦେଲା— ଏହା ତ ମୁଁ କଳ୍ପନା କରି ପାରିନଥିଲି ଯେ ତୁମର ଆନ୍ତର୍ଜାତିକ ଖ୍ୟାତି, ପ୍ରଚଣ୍ଡ ଆତ୍ମବିକାଶ ଆଉ ତୁମର ପାରିବାରିକ ପରିପୂର୍ଣ୍ଣତା ଭିତରେ ମଧ ତୁମ ଛନ୍ଦାକୁ ତୁମେ ଭୁଲି ପାରିନାହଁ । ତୁମେ ବେବିଲୋନର ଭଗ୍ନାବଶେଷ ମନ୍ଦିରରେ ମଧ ଛନ୍ଦାର ଭଲ ପାଇବାର କରୁଣ ସ୍ୱରଟି ନିକ୍ୱଣିତ ହେଉଥିବାର ଶୁଣିପାରିଛ— ଘନ ଅରଣ୍ୟରେ କିମ୍ୱା ଯେକୌଣସି ସ୍ୱପ୍ନିଳ ପରିବେଶରେ ଛନ୍ଦାର ମଧୁର ସଂବୋଧନ ତମ ମନ ଭିତରେ ଗୁଣ୍‌ଗୁଣ କରେ— ଦେଖିଲ ତ ମଲ୍ଲାର, ତୁମ କଥା ଗୁଡ଼ିକ ମୋର କିପରି ମୁଖସ୍ଥ ହୋଇଯାଇଛି— ?''

ତା' ପରେ ଟିକିଏ ଅଟକି ଯାଇ ମନୀଷା ପୁଣି କହିବାକୁ ଆରମ୍ଭ କଲା— ''ମୋ ଜୀବନର ଦୁର୍ବିଷହ ଯନ୍ତ୍ରଣା ଭିତରେ ମୁଁ ଯେତେବେଳେ ବାକ୍‌ହୀନ ହୋଇଗଲି ଏବଂ ମୃତ୍ୟୁର ଶେଷ ମୁହୂର୍ତ୍ତକୁ ଅପେକ୍ଷା କରି ନିଜର ଜୀବନଦୀପର ଶେଷ ରଶ୍ମିକୁ ଗଭୀର ଉଦାସୀନତାର ସହ ଅପେକ୍ଷା କରୁଥିଲି, ତୁମେ ମୋତେ ଜଣାଇଦେଲ ଯେ ତୁମେ ସନ୍ଧ୍ୟାତାରାର ବେଳାଭୂମିରେ ମୋ ପାଇଁ ପ୍ରତୀକ୍ଷା କରିବାକୁ ପ୍ରତିଶ୍ରୁତିବଦ୍ଧ । ସେତେବେଳେ ମୋର ଏତେ ଦିନର ନିର୍ଜୀବତା ହଠାତ୍ ଡେଇଁ ଉଠିଲା— ମୁଁ ଚିତ୍କାର କରି ଉଠିଲି ମଲ୍ଲାର ମଲ୍ଲାର କହି । ଏହା କଅଣ ମୋ ପକ୍ଷରେ କମ ସୌଭାଗ୍ୟର କଥା ହେଲା ।'' ଏହା କହି ମନୀଷା ଅବିନାଶକୁ ଅର୍ଥପୂର୍ଣ୍ଣ ଆଖିରେ ଚାହିଁ ରହିଲା— ପୁଣି ଥରେ ଅନୁରୋଧ କଲା ''ମୋତେ ଛନ୍ଦା ବୋଲି ଆଉ ଥରେ ଡାକ ନା ! କେତେ ଭଲ ଶୁଣାଯାଉଛି ଏ ଦୁଇଟି ଅକ୍ଷର । ଜୀବନର କେତେ ବେଶୀ ପ୍ରାଣ ମତାଣିଆ ମୂର୍ଚ୍ଛନା ଏ ଶବ୍ଦରେ ଭରି ରହିଛି, ତୁମେ କଅଣ ଅନୁଭବ କରିପାରୁଛ ମଲ୍ଲାର ?''

ବୁଝିଲ ମଲ୍ଲାର, ମୋର ଏହି ଭଗ୍ନ ହୃଦୟ ଭିତରେ ତଥାପି ଆଶା ପକ୍ଷୀଟିଏ ଦୁକ୍ ଦୁକ୍ କରୁଛି— ତାହା ତୁମର ସ୍ୱପ୍ନାୟିତ ମଧୁର ସ୍ମୃତି ନେଇ ବିସ୍ତୀର୍ଣ୍ଣ ଛାୟାପଥ ଅତିକ୍ରମ କରି ସନ୍ଧ୍ୟାତାରାର ବେଳାଭୂମିରେ ପହଞ୍ଚିବ— ସେଠାରେ ପୁଣି ଜୀବନର ସମସ୍ତ ଅବ୍ୟକ୍ତ ସ୍ୱପ୍ନ ନେଇ ଗୋଟିଏ ନୂଆ ରାଜ୍ୟ ସୃଷ୍ଟି କରିବ । ତୁମ ପ୍ରତୀକ୍ଷାରେ ମୁଁ ବସି ରହିବି । ତୁମେ ସେଠାରେ ନିଶ୍ଚୟ ପହଞ୍ଚିବ— ଏହି ଅଟଳ ପ୍ରତିଶ୍ରୁତିର ସନ୍ଧାନ ତୁମ ବହିରେ ପାଇଲି ବୋଲି ତ ଏତେ ବାଟ ମୋର ଭଗ୍ନ ମନ, ଦୁର୍ବଳ ଦେହକୁ ଟାଣି ନେଇ ଆସିପାରିଛି ।

ତୁମର ମନେ ପଡୁଛି ତୁମ ବହିର ଭାଷା ? ''ସେହି ଭାବାବେଗାପ୍ଲୁତ ସନ୍ଧ୍ୟାତାରା ବକ୍ଷରେ ଆମ ସ୍ୱପ୍ନର ନୂତନ ନନ୍ଦନ କାନନ ଗଢ଼ି ହୋଇ ଚାଲିଛି– ସେଠାରେ ହିଁ ଆମର ଅନ୍ତିମ ମିଳନ– ଛନ୍ଦା ମଲ୍ଲାର ଗୀତିକାବ୍ୟର କାଳହୀନ ଉନ୍ମୀଳନ।'' ମୋର ''ପ୍ରିୟ ହତେ ପ୍ରିୟତର'' ସଙ୍ଗୀତର ଛନ୍ଦାୟିତ ଆଲୋଡ଼ନ ତୁମ ପ୍ରାଣକୁ ମର୍ମରିତ କରିଚାଲିଛି। xxx

''ଏହା ଜାଣିଲା ପରେ ମୋ ଠାରେ କିପରି ଆନନ୍ଦ ଓ ଉନ୍ମାଦନା ସୃଷ୍ଟି କରିପାରିଛି, ତାହା ତୁମେ ବିଶ୍ୱାସ କରି ପାରୁଛ ମଲ୍ଲାର ? ମୋର ମ୍ ହୁଏ, ଏ ପ୍ରକାର ପ୍ରେମାବେଗିକ ଉପଲବ୍ଧି ଆଧୁନିକ ସମାଜରେ ବିରଳ। ଏହାର ନାୟିକା ଭାବରେ ମୁଁ ଗୌରବାନ୍ୱିତ ହୋଇଯାଇଛି। ମୋର ଅବିସ୍ମୃତ ସ୍ମୃତି ତୁମ ଜୀବନକୁ ନୂତନ ଅର୍ଥରେ, ନିରବଚ୍ଛିନ୍ନ ଅନ୍ୱେଷଣରେ, ଭଲ ପାଇବାର ଗଭୀର ଅନୁରକ୍ତିରେ, ତୁମ ଜୀବନକୁ ପରିପୂର୍ଣ୍ଣ କରିବାରେ ଯଦି ଏତେ ଉନ୍ମାଦନା ଆଣି ଦେଇଛି, ସେଥିପାଇଁ ମୁଁ ଅମର ହୋଇଯାଇଛି ମଲ୍ଲାର– ବର୍ତ୍ତମାନ ପରିସ୍ଥିତିରେ ମୋ ଶାରୀରିକ ସ୍ଥିତି ଓ ଅନୁଭୂତିର କୌଣସି ମୂଲ୍ୟ ଅଛି ବୋଲି ମୁଁ ଭାବୁନାହିଁ। ତଥାପି ମୁଁ ଏହି ଜୀବନର ଶେଷ ସନ୍ଧ୍ୟାରେ ତୁମ ସହିତ ଏହି ଉପଲବ୍ଧିକୁ ହୃଦୟଙ୍ଗମ କରିବା ପାଇଁ ଦୌଡ଼ି ଆସିଛି ମଲ୍ଲାର !''

ପ୍ରେମର ଅତୀନ୍ଦ୍ରିୟତା ଓ ଆତ୍ମିକ ଗଭୀର ଅନୁଭୂତି ପ୍ରକାଶ ମାଇଛି ଅବିନାଶ ଭାଷାରେ–

''ଅତୃପ୍ତ ଅନୁଭୂତି ହିଁ କେବଳ ଆତ୍ମିକ– ଅନ୍ୟ ସବୁ ବାହ୍ୟ ଆବରଣଗତ ମାୟା। ଏହି ଅନିର୍ଦ୍ଦିଷ୍ଟ ସୀମାହୀନ ଅନୁଭୂତିକୁ ରୂପ ଦେବା ପାଇଁ ସେ କିଛିଟା ଭାଷାରେ ପ୍ରକାଶ କରିଛନ୍ତି; ସନ୍ଧ୍ୟାତାରା ଦେଶର ପ୍ରହେଳିକାପୂର୍ଣ୍ଣ ଅଜ୍ଞାତ ସ୍ୱପ୍ନକୁ ପ୍ରକାଶ କରିବାର ଏହା ସାମାନ୍ୟ ଉଦ୍ୟମ ମାତ୍ର। ଏକ ଦିଗରେ ଅତୃପ୍ତ ଆତ୍ମଶକ୍ତିର ଶବ୍ଦହୀନ ବିଳପନ, ଅନ୍ୟ ଦିଗରେ ଏକ ଚିରନ୍ତନ ଆନନ୍ଦ ଜିଜ୍ଞାସାର ପ୍ରହେଳିକାମୟ ରହସ୍ୟ, ଅଦୃଶ୍ୟ କାଳିରେ, ଅବ୍ୟକ୍ତ ଭାଷାରେ ଅଶ୍ରୁତ ସୃଷ୍ଟିର ଉଦ୍‌ବେଳନ ତାଙ୍କୁ ବିଚଳିତ କରୁଥିଲା। ସେହି ସାମାନ୍ୟ ଭାଷାର ଝଲକ ହିଁ ତାଙ୍କର ପ୍ରାଣପ୍ରିୟ ଛନ୍ଦାଠାରେ ଅପୂର୍ବ ପୁଲକ ସୃଷ୍ଟି କରିପାରିଛି– ପ୍ରେମର ନୂତନ ମାନବୀୟ ଆଲୋକରେ ସେ ଉଦ୍‌ଭାସିତ ହୋଇ ଯାଇଛି– ପ୍ରିୟ ଠାରୁ ଆହୁରି ପ୍ରିୟତମ ପ୍ରେମକୁ ସେ ଅନୁଭବ କରି ପାରିଛି– ତାର ସମସ୍ତ ପ୍ରକାରର ପ୍ରଲୋଭନ, ମୋହ, ସ୍ୱାର୍ଥ, ସଂକୀର୍ଣ୍ଣତା ଅପସରି ଯାଇଛି– ସେ ସମୟହୀନ ସତ୍ତାରେ ପରିଣତ ହୋଇଯାଇଛି– ଯାହାର ବୟସ ନାହିଁ, ଅତୀତ ଭବିଷ୍ୟତ ନାହିଁ; ପୃଥିବୀର ପରିବର୍ତ୍ତନରେ ଯାହା ଭାଗୀଦାର ନୁହେଁ। ଏହା ଅବ୍ୟୟ, ଅବିସ୍ମରଣୀୟ। ଏହା ସତ୍ୟନିଷ୍ଠ ଜୀବନର ପରିପୂର୍ଣ୍ଣତା– ଏହା ପରିପୂର୍ଣ୍ଣତାର ବେଦନାମଧୁର କାରୁଣ୍ୟରେ ଛନ୍ଦାୟିତ– ପ୍ରିୟହତେ ପ୍ରିୟତର କାବ୍ୟିକ ସ୍ୱପ୍ନର ଆତ୍ମୋପଲବ୍ଧି। ପ୍ରେମ ଆଲୋକରେ ଉଦ୍ଭାବିତ ଅସୀମ ସମ୍ଭାବନାର ଚିରନ୍ତନୀ ଅଭିଳାଷ। ସେହି ପ୍ରଥମ ପ୍ରେମାବେଗର ଉତ୍ତପ୍ତ ଉନ୍ମାଦନା, ଶିରା ପ୍ରଶିରାରେ ଧ୍ୱନିତ ନିକ୍ୱଣ– କଲ୍ଲୋଳିତ ସମୟ ସ୍ରୋତରେ ନିଶ୍ଚିହ୍ନ ହୋଇଯାଇଥିଲେ ସୁଦ୍ଧା ଜନ୍ମଜନ୍ମାନ୍ତରର ବିଚ୍ଛିନ୍ନତା ଭିତରେ ସେହି ଚିରନ୍ତନ କାରୁଣ୍ୟର ଅତୀନ୍ଦ୍ରିୟ ସ୍ୱର। ସତ୍ୟ ଅସତ୍ୟର ଦ୍ୱିଧାହୀନ ସମାଧାନ। ଆଦି ପ୍ରଣୟର ଆଦିମ ଚରଣ ଧ୍ୱନି।

ତାପରେ ଛନ୍ଦା ଭାଷାରେ–

''ଆଶ୍ୱିନ ଶୁକ୍ଳ ତ୍ରୟୋଦଶୀର ଜ୍ୟୋତ୍ସ୍ନା ବିଚ୍ଛୁରିତ ସନ୍ଧ୍ୟାରେ, ସନ୍ଧ୍ୟାତାରାର ମୋଲାୟମ ସ୍ପର୍ଶ ଭିତରେ ପୁରୀର ଏହି ବେଳାଭୂମିରେ ଆଖିରେ ଆଖି ମିଳାଇ ଓଠରେ ଓଠ ରଖି ଯେଉଁ ସ୍ୱପ୍ନାୟିତ ଉଦ୍ଦାମ ପ୍ରଣୟର ବିନିମୟ ହୋଇଥିଲା– ତାହା କଅଣ ଅବିନଶ୍ୱର ସତ୍ୟ ନୁହେଁ ? ତାହାର କଅଣ ମୃତ୍ୟୁ ଅଛି ନା ଶେଷ ଅଛି– ତାହାହିଁ ଆମର ଅନନ୍ତ ଜୀବନର ମୃତ୍ୟୁଞ୍ଜୟୀ ଅନୁଭୂତି– ତାର କଅଣ ସୀମା ଅଛି– ପରିବର୍ତ୍ତିତ ପୃଥିବୀର ଛାୟା କଅଣ ସେଠାରେ ପଡ଼ିପାରେ ? ସନ୍ଧ୍ୟାତାରା ସହିତ ସେ ତ ଚିରକାଳ ଜକ୍ ଜକ୍ କରି ଜଳୁଥିବ । ତେଣୁ ତୁମକୁ ନ ପାଇବାରେ ମୋର ଆଉ ଅବଶୋଷ ନାହିଁ– ଜୀବନମଞ୍ଚର କେତେକ ଗୌଣ ବିୟୋଗାତ୍ମକ ଦୃଶ୍ୟର ଅବସାନ ପରେ ସେହି ଅନନ୍ତ ପ୍ରଣୟର ଆତ୍ମସତ୍ତା ଭିତରେ ହଜି ଯିବାରେ ମୋର ମୁକ୍ତି । ମୁଁ ବର୍ତ୍ତମାନ ସେହି ଆଦିମ ପ୍ରେମସତ୍ତାରେ ବିଲୀନ ହୋଇଯିବାକୁ ଅପେକ୍ଷା କରୁଛି ମାତ୍ର । ବୁଝିଲ ମଲ୍ଲାର, ମୋ ପ୍ରତି ସମସ୍ତେ ନିଷ୍ଠୁର ବ୍ୟବହାର କରିଛନ୍ତି– କିନ୍ତୁ ସେହି ନିଷ୍ଠୁରତା ଭିତରେ ହିଁ ମୋର ମୁକ୍ତିର ମଶାଲ ଜଳି ଉଠିଛି– ସେହି ପ୍ରଜ୍ୱଳିତ ମଶାଲ ତୁମେ ମୋ ଆଗରେ ଧରି ଠିଆ ହୋଇଛ । ଏହା କଅଣ ମୋର ପରମ ସୌଭାଗ୍ୟ ନୁହେଁ ? ଏପରି ପରମ ଆତ୍ମୋପଲବ୍ଧି ବେଳେ ମୋର ପୁଅ ସ୍ୱାମୀ ବନ୍ଧୁ ବାନ୍ଧବମାନଙ୍କ ସହିତ ଦେବା, ପାଇବା, ଲାଭ, ଲୋକସାନ, ଭାଗ୍ୟ, ଦୁର୍ଭାଗ୍ୟର ଦୁଃଖର ଚିନ୍ତା ବିବର୍ଜିତ ମାନସିକତା ମୃତ୍ୟୁ ପରି ମଧୁର ମନୋହର ବିଶ୍ରାମ ଭଳି ମନେ ହେଉଛି । ଏଥିରେ ଆତ୍ମପୀଡ଼ନ ନାହିଁ– ଅନୁଶୋଚନା ନାହିଁ– ଗ୍ଲାନି ନାହିଁ– ଏହି ଚିର ଶାନ୍ତ ବିଶ୍ରାମ ଭିତରେ ତୁମର ପ୍ରେମାବେଗର ଉଷ୍ଣତା ଟିକକ ହିଁ ଶ୍ରେଷ୍ଠ ସଞ୍ଚୟ ହୋଇ ରହିବ ।''

ଭଲ ପାଇବାର ଏପ୍ରକାର ବ୍ୟାପକ ଆତ୍ମସତ୍ତାରେ ପରିଣତ ହୋଇଯାଇଥିବାର ଉଦାହରଣ 'ପାଇ ନ ପାଇବା ସ୍ୱପ୍ନ' ବହିରେ ରହିଛି ।

''ତାପରେ ସୌରଭ ବାବୁ କହିଲେ, ''ମୋର ଭଲ ପାଇବା ଗୋଟିଏ ବିରାଟ ପୁଷ୍ପ ଉଦ୍ୟାନର ସୌରଭ ପରି ଏପରି ମୋଲାୟମ, ଏପରି ବ୍ୟାପକ ଏବଂ ମନୋମୁଗ୍ଧକର ଯେ ମୁଁ ଏହି ସୁରଭିକୁ ସବୁ ସମୟରେ ଅନୁଭବ କରିପାରୁଥିବି । ଆପଣ ଗୋଟିଏ ଦୂରାନ୍ତ ହ୍ରଦ ପରି ମୋ ପାଇଁ ଆକର୍ଷଣୀୟ ହୋଇ ରହିଥିବେ- ମୋ ଅଗଣାରେ ଗୋଟିଏ କୂଅ ଖୋଳି ଠେକିଏ ପାଣି ପାଇବାରେ କି ଗୋଟିଏ ଫୁଲଗଛ ଲଗାଇ ତାର ସୌରଭରେ ମୁଁ କଦାପି ସନ୍ତୁଷ୍ଟ ହୋଇ ପାରିବି ନାହିଁ । ଭଲପାଇବା ଏପରି ଗୋଟିଏ ଅଦ୍ଭୁତ ଅନୁଭୂତି ଯେ ତାହା ମୋର ମନ ଗହୀରର କୋଣେ ଅନୁକୋଣେ ଆପଣଙ୍କର ସ୍ପନ୍ଦନ ଅହରହ ଲାଗି ରହିଛି । ଆଉ ଖାଲି ଜାଗା କାହିଁ ଅନ୍ୟକୁ ଭଲ ପାଇବା ପାଇଁ ? ତେଣୁ ମୋତେ ମୋର ଭବିଷ୍ୟତର ଘର ସଂସାର କଥା କେବେ କହିବେ ନାହିଁ ବୋଲି ମୋର ଆନ୍ତରିକ ଅନୁରୋଧ''

ସେହିପରି ଭଲ ପାଇବା ପରି ସାମଗ୍ରିକ ଆତ୍ମସତ୍ତାର ଉଦାହରଣ :

''ବଡ଼ ବିଚିତ୍ର ବସ୍ତୁ ଏ ଭଲ ପାଇବା । ତାହା ମୋର ନିୟନ୍ତ୍ରଣର ବାହାରେ ଥିଲା । ମୋର କୁମାରୀ କନ୍ୟାର ଅନ୍ତର୍ଲୋକରେ ଅନୁବାବୁଙ୍କର ଯେଉଁ ଚିତ୍ରଟି ଫୁଟି ଉଠିଲା ତାର ପ୍ରଥମେ କୌଣସି ପରିଚୟ ନଥିଲା- ଗ୍ରହଣ କରିବାର ପ୍ରସ୍ତୁତି ନଥିଲା- କିନ୍ତୁ ତାକୁ ହରେଇ ଦେବାର ଉପାୟ ମଧ୍ୟ ନଥିଲା । କିଂତୁ କ୍ରମେ ମୋର ପ୍ରତ୍ୟେକ ତନ୍ତ୍ରୀରେ ଏହା ଏପରି ସ୍ପନ୍ଦନ ସୃଷ୍ଟି କରିଚାଲିଲା ଯେ ମୋର ସମସ୍ତ ହୃଦୟର କୋଣେ କୋଣେ ଅପୂର୍ବ ପୁଲକ

ସଂଚରିଗଲା । ଏଥିପାଇଁ ବହୁ ଦୁଃଖ, ବହୁ ଆଘାତ ମନୁଷ୍ୟ ସହ୍ୟ କରିପାରେ, କିନ୍ତୁ ଏହାର ପ୍ରତ୍ୟାଖ୍ୟାନର ଦୁଃଖ ଜୀବନର ନିର୍ବାଣ ସହିତ ସମାନ । ଜୀବନଟା ଦେବା ନେବା, କିଣା ବିକାର ବଜାର ନୁହେଁ- ଯେ ଦେବ ସେ ଯେ ପାଇବ ଏପରି ନିୟମ ଏଠାରେ ଚଳେ ନାହିଁ- ନ ପାଇଲେ ମଧ୍ୟ ଦେବାରେ ଅପରିସୀମ ଆନନ୍ଦ ଅଛି । ତେଣୁ ତୁ ଭାଇଙ୍କୁ ମୋ କଥା କହିବା ଦରକାର ନାହିଁ । ସେ ନିଜେ ଯେତେବେଳେ ଅନୁଭବ କରି ପାରିବେ, ମୋର ପ୍ରତୀକ୍ଷାର ବେଦନା- ଦେଖିପାରିବେ, ନାରୀ ମନର ଆଲୋକଭରା ସ୍ୱଚ୍ଛ ନୀଳ ଆକାଶ, ସେତେବେଳେ ନିଶ୍ଚିତ ଭାବରେ ମୋର ସ୍ପନ୍ଦନ ତାଙ୍କ ଅନ୍ତରାତ୍ମାକୁ ବିକଳିତ କରି ଦେବ । ସେ ଦୁଇ ହାତ ବିସ୍ତାର କରି ମୋତେ ଉଠାଇ ନେବେ । ତାହା ହେବ ମୋର ପ୍ରତୀକ୍ଷାର ଚରମ ପୁରସ୍କାର ।''

ଭଲ ପାଇବାର ପ୍ରଚଣ୍ଡ ଆତ୍ମସତ୍ତାର ଆଉ ଗୋଟିଏ ଉଦାହରଣ :

''ସତରେ ମୋଠାରେ ଏହିପରି ଭାବରେ ସେହି ଅଶରୀରୀ ଆତ୍ମାର ପ୍ରଚଣ୍ଡ ଉଦ୍‌ବେଳନ ଦେଖା ଦେଇଥିଲା ଯେ ଜୀବନର ସମସ୍ତ ପ୍ରତିବଂଧନ, ସମାଜର ସମସ୍ତ ଅସ୍ୱାଭାବିକ ଅତ୍ୟାଚାର ବିରୁଦ୍ଧରେ ମୁଁ ଯେପରି ଶତମୁଖ, ଶତବାହୁଧାରିଣୀ ଜଗତ ସଂହାରୀ ଦୁର୍ଗା ହୋଇ ଠିଆ ହୋଇ ପାରିଛି । ମୋର ଏହି ଅପରିସୀମ ମନୋବଳ ସାହାଯ୍ୟରେ ମୁଁ ମୋର ଅଭୀଷ୍ଟ ଲକ୍ଷ୍ୟରେ ପହଞ୍ଚି ପାରିବି ।

ଟିକିଏ ରହି ଯାଇ କହିଲି: ବୁଝିଲୁ ସୁଶୀ- ନିକିର ସୀମାହୀନ ନୀଳ ଆକାଶରେ ମୁକ୍ତ ବିହଙ୍ଗ ପରି ତାର ଲକ୍ଷ୍ୟରେ ପହଞ୍ଚିବାର ଚିତ୍ର ହିଁ ମୋଠାରେ ନିଜ ଅତୀତର ସମସ୍ତ କୁସଂସ୍କାର, ଅମାନବୀୟ ସାମାଜିକ ବଂଧନକୁ ଭାଙ୍ଗି ନିଜକୁ ମୁକ୍ତ କରିବାର ଆତ୍ମବିଶ୍ୱାସ ବଳବତ୍ତର ହୋଇ ଉଠିଛି । ଜୀବନିକା ଶକ୍ତିର ଏହି ମହାସ୍ରୋତ ମୋତେ ଠିକ୍ ଲକ୍ଷ୍ୟ ସ୍ଥାନରେ ପହଞ୍ଚାଇ ଦେବ ବୋଲି ମୋର ମନେହେଉଛି ।''

X X X X X X

ଏସବୁ ହେଲା ପ୍ରେମିକ ପ୍ରେମିକା, ପ୍ରଣୟୀ ପ୍ରଣୟିନୀର ଭଲ ପାଇବାର ଆତ୍ମସତ୍ତା । ଏପରି ବିଚିତ୍ର ଭଲ ପାଇବାର ସ୍ୱାଦ ରହିଛି-ଅନ୍ୟ ଆଉ ଏକ ପ୍ରକାରର ଭଲ ପାଇବାରେ; ତାହା ହେଉଛି ମନୁଷ୍ୟ ମନୁଷ୍ୟକୁ ଭଲ ପାଇବାର ସାର୍ବଜନୀନ ଅନୁରାଗ । ଆମର ସାମାଜିକ ଶବ୍ଦକୋଷରେ ଏପରି ଅନାମିକା ଅନୁରାଗର ସ୍ୱୀକୃତି କ୍ୱଚିତ ପରିଲକ୍ଷିତ ହୋଇଥାଏ । ହୃଦୟର କେଉଁ ଅବଜ୍ଞାତ ଅନୁକୋଣରେ ଫୁଲ ହୋଇ ଫୁଟୁଛି ସେ ସଂପର୍କ- ଗହନ ମନର ଗହୀରରେ ଶାଖା ମେଲୁଛି ତା ସ୍ମୃତିସବୁ ।

''ବହୁ ବ୍ୟକ୍ତିଙ୍କର ପ୍ରଲମ୍ବିତ ଜୀବନ ଇତିହାସର ପୃଷ୍ଠାମାନଙ୍କରେ ଅଗଣିତ ଚରିତ୍ରଙ୍କ ହସ୍ତାକ୍ଷର ଭିତରେ ସାମାନ୍ୟ କେତୋଟି କାଳି ବିନ୍ଦୁ କ୍ରମେ ବିରାଟ ସ୍ୱପ୍ନରେ ରୂପାନ୍ତରିତ ହୋଇଯାଆନ୍ତି- ଛାଡ଼ି ଯାଆନ୍ତି କେବଳ ଅତୀତର ମଧୁର ସ୍ମୃତି ଓ ବର୍ତ୍ତମାନର ବେଦନା । ଏହିପରି ଭବିଷ୍ୟତହୀନ ସଂପର୍କମାନଙ୍କର ଅସୀମ ସଂଭାବନାର ସ୍ମୃତି ।''

ଏହା ହେଉଛି ଭବିଷ୍ୟତହୀନ ସଂପର୍କ ବହିର ଉତ୍ସର୍ଗ ।

ପ୍ରତ୍ୟେକ ବ୍ୟକ୍ତିର ଜୀବନର ଏପରି ଅନେକ ମୁହୂର୍ତ୍ତ ରହିଛି ଯେଉଁଠାରେ ସେ ନିଃସଙ୍ଗ - ସେ ଏକାକୀ । ସେତେବେଳେ ତାର ଗୋପନ ହୃଦୟରେ କେତେକ ସ୍ମୃତି ଜାଗରୂକ

ହୁଏ, ତାହାହିଁ ସେମାନଙ୍କର ସାଥୀ । ଏଥିରେ ଦୈହିକ ସଂପର୍କର ଆଶା ବା ସମ୍ଭାବନା ନଥାଏ- ତଥାପି ମନ ଚାହେଁ ସେମାନଙ୍କ ସହିତ କଥାବାର୍ତ୍ତା ହେବା ପାଇଁ - ସେମାନଙ୍କର ହସଖୁସି ସହିତ ସାମିଲ୍ ହେବା ପାଇଁ ।

''ମୋଠାରୁ ତ ସାମାନ୍ୟ କେତୋଟି ଗତାନୁଗତିକ ସ୍ନେହାନୁଗତିକ ବ୍ୟବହାର— ତାଙ୍କର ଦେହ ଖରାପ ହେଲେ ମୋର ସାମାନ୍ୟ କିଛି ଉଦ୍‌ବେଗ- ଖୁଆଇବାରେ ମାତୃତୁଲ୍ୟ ଆଦର ଯତ୍ନ, ମୋର ଗୀତ ଶୁଣିବାରେ ତାଙ୍କର ଅତୀନ୍ଦ୍ରିୟ ତନ୍ମୟତା-ବାସ୍ ସେତିକି- ତାପରେ ତ ମୁଁ ମୁକ୍ତ । କିନ୍ତୁ ମୁଁ କାହିଁକି ସେତକ ମଧ୍ୟ କଲାବେଳେ ମୋ ହୃଦୟର ଗଭୀରତମ ପ୍ରଦେଶରେ ଦେହର ପ୍ରତ୍ୟେକ ଅଣୁ ପରମାଣୁରେ ତାଙ୍କୁ ଆତ୍ମୀଭୂତ କରିଦେବାକୁ ଇଚ୍ଛା ହେଉଛି ?

ମୋତେ ସେ ମନ୍ତ୍ରମୁଗ୍ଧ ଆଖିରେ ଚାହାଁନ୍ତି- ମୋ ଗୀତ ଶୁଣି ତନ୍ମୟ ହୋଇଯାଆନ୍ତି- ମୋର ସାଥୀହୀନ ନିରୋଳା ମୁହୂର୍ତ୍ତମାନଙ୍କରେ କେବଳ ସେ ମୋ ମନ ଭିତରେ ରହିବାକୁ ଚାହାଁନ୍ତି- ସେ ମୋତେ ଦୂରରୁ ଚାହିଁ ରହିବାରେ ଅପରିସୀମ ଆନନ୍ଦ ଉପଲବ୍ଧିରେ ଆନମନା ହୋଇଯାଆନ୍ତି ।''

''ରେଖା, ମୋର ଗଭୀରତମ ଜୀବନର ନିଃସଙ୍ଗ ହାହାକାର ଭିତରେ ତୁମେ ମୋତେ ଏପରି ଭାବରେ କାହିଁକି ଦେଖାଦେଲ ତାର ଉତ୍ତର ବୋଧହୁଏ ମୋ ପାଖରେ ନାହିଁ । ଏ ପ୍ରକାର ଆତ୍ମବିଭୋରିତ ମନୋଭାବର ଯଥାର୍ଥତାର ଉତ୍ତର ଆଜିଯାଏଁ କୌଣସି କବି ବା ଦାର୍ଶନିକ ଦେଇପାରି ନାହାଁନ୍ତି । ସମସ୍ତେ କେବଳ ନାନା ଭାବରେ ଏପରି ମାନସିକତାକୁ ବର୍ଣ୍ଣନା କରି ଯାଇଛନ୍ତି । ସେଥିଲାଗି ତ କାଳଜୟୀ ସାହିତ୍ୟ ସୃଷ୍ଟି ହୋଇ ପାରିଛି- ଏହି ଚିର ଅନ୍ୱେଷଣା ଯୋଗୁହିଁ ମୀରାବାଈ କୃଷ୍ଣ ପାଗଳିନୀ ହୋଇଯାଇଛନ୍ତି- ତାର ଉତ୍ତର ସେ ପାଇନାହାଁନ୍ତି । ମନୁଷ୍ୟ ମନର ଚିରନ୍ତନ ଏ ଅନ୍ୱେଷଣା- ଅସୀମ ବେଦନାର ମର୍ମଭେଦୀ ବିଳପନ- ତାର ଶେଷ ନାହିଁ । ମୋ ମତରେ ସେଥିଯୋଗୁ ହିଁ ଏ ପୃଥିବୀରେ ସ୍ନେହ ମମତାର ଗଭୀରତମ ଆକର୍ଷଣରେ ହିଁ ମନ ଚଳଚଞ୍ଚଳ ହୁଏ । ତୁମେ ଯାହା ପାଇଁ ଏତେ ବ୍ୟଥିତ- ପ୍ରତେକ ଦିନ ଦେଣା ନେଣା ଦୁନିଆ ଭିତରେ ଏହା ଖୋଜି ପାଇବା ସଂଭବ ନୁହେଁ । ତୁମର ଏ ପ୍ରକାର ଉତ୍ତରହୀନ ଅନ୍ୱେଷଣାର ଉତ୍ତର ତୁମେ ହିଁ ତୁମର ଅନ୍ତର ଭିତରେ ପାଇପାରିବ । ତୁମେ ଯେତେବେଳେ ମଧ୍ୟରାତ୍ରିରେ ଛାତ ଉପରେ ବସି ମୋତେ ଗୀତ ଶୁଣାଇଲ, ତାହା କଅଣ ତୁମ ମନ ଭିତରୁ ଅନ୍ୟମାନଙ୍କ ଆଗରେ ଏପରି ସହଜ ଭାବରେ ଝରିପାରିବ ? ଏହାର କଅଣ ଜୀବନରେ ମୂଲ୍ୟ ନାହିଁ ? ତୁମ ସହିତ ଦେଖା ହେଲା ପରେ ମୋର ଭାଓଲିନର ସ୍ୱର ଯେପରି ଭାବରେ ନୂଆ ନୂଆ ଲୟରେ ଛନ୍ଦାୟିତ ହୋଇପାରୁଛି, ତାହା ଆଗରୁ କେବେ ସଂଭବ ହୋଇନଥିଲା । ଏପରି ପରିବେଶରେ ହିଁ ତୁମର ଓ ମୋର ହୃଦୟ ଭିତରେ ଯେଉଁ ସମସ୍ପନ୍ଦନ, ଚାଲିଛି ସେଥିରେ କଅଣ ଆତ୍ମିକ ଆନନ୍ଦ ନାହିଁ ? ବ୍ୟଥାୟିତ ଆନନ୍ଦ ଭିତରେ ଯେଉଁ ଉପଲବ୍ଧି, ତାହା କୌଣସି ଜାଗତିକ ସୁଖକର ପରିସ୍ଥିତିରେ ଆଦୌ ସଂଭବ ନୁହେଁ । ସେଥିଯୋଗୁ ତ ମୁଁ ତୁମ ପାଖକୁ ଚିଠିରେ ଲେଖିଥିଲି ଯେ ଏ ପ୍ରକାର ସମସ୍ପନ୍ଦନ ସୃଷ୍ଟିରେ ହିଁ ଆମମାନଙ୍କର ଗଭୀର ଉପଲବ୍ଧି ।

''ତୁମେ ଯେଉଁ ସାଂସାରିକ ଅର୍ଥରେ ଏ କଥାକୁ ଭାବୁଛ ତାହା ନିଶ୍ଚିତ ଭାବରେ ଅସ୍ୱସ୍ତିକର ହୋଇପାରେ, କିନ୍ତୁ ଗୋଟିଏ କଥା ମନେରଖିବ ଯେ ଭବିଷ୍ୟତରେ ତୁମ

ସାର୍ଥକ ଘର ସଂସାର ଭିତରେ ମଧ୍ୟ ଏପରି ବହୁ ନିଃସଙ୍ଗ ମୁହୂର୍ତ୍ତ ଆସିବ ଯେତେବେଳେ ମୋର ସ୍ମୃତି ତୁମଠାରେ ଜାଗରୂକ ହୋଇରହିବ । ଏହି ଦେଖନା ମୁଁ ଯେତେବେଳେ ଭାଓଲିନ୍ ବଜାଏ ତୁମର ମନ୍ତ୍ରମୁଗ୍ଧ ନିଶ୍ଚୁପ ଉପଲବ୍ଧିଗତ ତନ୍ମୟତା ମୋତେ ଅଭିଭୂତ କରେ । ଜୀବନରେ ଏପରି ଅନେକ ନିଃସଙ୍ଗ ମୁହୂର୍ତ୍ତମାନ ଆସିବ ଯେଉଁଠି ତୁମର ସ୍ୱାମୀ ପୁଅ ଝିଅ କେହି ସାଙ୍ଗରେ ରହିପାରିବେ ନାହିଁ । ତୁମେ 'ନୀରବ ନିଃସଙ୍ଗ' ହୋଇ ଯେତେବେଳେ ଗୀତର ଲହରୀ ଛୁଟାଇବ ସେତେବେଳେ ମୋତେ ନିଶ୍ଚୟ ମନେ ପକାଇବ । ତୁମର ଏହି ଅଦୃଶ୍ୟ, ଅଶ୍ରୁତ ଓ ଅବ୍ୟକ୍ତ ମାନସିକତା ଭିତରେ ହିଁ ମୋର ସ୍ମୃତି ଜାଗରୂକ। ରହିବ- ତୁମେ ଏଥିରେ ଆନନ୍ଦ ପାଇବ । ମୁଁ ଯେପରି ଭାଓଲିନ୍ ବଜାଇଲାବେଳେ ତୁମର ସ୍ମୃତି ମୋତେ ଆହୁରି ବେଶି ଉଦ୍‌ବେଳିତ ତଥା ଉତ୍‌ଫୁଲ୍ଲିତ କରି ଚାଲେ- ମୋ ଠାରେ ନୂତନ ନୂତନ ସ୍ୱର ସୃଷ୍ଟି ହୋଇଯାଏ କାରଣ ତୁମପରି ପ୍ରିୟଜନମାନଙ୍କର ସ୍ମୃତିର ତନ୍ମୟତା ଯୋଗୁ ହିଁ ଅଗଣିତ କାବ୍ୟିକ ଉଦ୍‌ବେଳନ ସଂଭବ ହୁଏ । ଦେଖନା, ମୀରାବାଈ ଭଜନ ତୁମେ ଯେତେବେଳେ ଗାଉଥିଲ, ଠିକ୍ ମୀରାବାଈଙ୍କର ତନ୍ମୟତା ତୁମ ମୁହଁରେ ମୁଁ ଲକ୍ଷ୍ୟ କରୁଥାଏ । ଏପରି ଏକ ଏକାତ୍ମୀଭୂତ ତନ୍ମୟତା ଭିତରେ ଆମେ ଦୁହେଁ ହଜି ଯାଉଥିଲେ- ସ୍ରଷ୍ଟା ଓ ଉପଭୋକ୍ତା ଦୁଇଜଣଙ୍କର ଅତୀନ୍ଦ୍ରିୟ ସ୍ତରରେ ଆତ୍ମିକ ମିଳନ ଘଟିଯାଉଥିଲା । ତେଣୁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ସାଥୀର ଆବଶ୍ୟକତା ରହିଛି । ତେଣୁ ତୁମେ ଭାବିବ ନାହିଁ ଯେ ସୀମିତ ସାଂସାରିକ ସଂପର୍କ ହିଁ ଜୀବନର ସବୁକିଛି । ତୁମ ଭାବୀ ସ୍ୱାମୀ ତୁମକୁ ବହୁତ ଭଲ ପାଉଥିବେ, ସମସ୍ତ ଧନ ସଂପତ୍ତି ଓ ସାଂସାରିକ ବିଭବରେ ତୁମକୁ ବୁଡ଼ାଇ ଦେଉଥିବେ- ତୁମର ପିଲାମାନେ ତୁମର ଗଳା ଜାବୁଡ଼ି ତୁମକୁ ନିଜସ୍ୱ କରିପାରୁଥିବେ; କିନ୍ତୁ ବେଳେ ବେଳେ ନିଛୁମ ଜହ୍ନରାତିର ସୌନ୍ଦର୍ଯ୍ୟ ବିସ୍ତାରିତ ବେଳାଭୂମିରେ ତୁମେ ହୁଏତ ନିଜକୁ ନିଃସଙ୍ଗ ମନେ କରିବ । ନିର୍ଜନ ରାତ୍ରିର ତନ୍ଦ୍ରା ବିଧୁରିତ ବିଳପନ ପରି ତୁମ ଆତ୍ମାର ଗଭୀରତମ କୋଣରୁ ସଂଗୀତର ମୂର୍ଚ୍ଛନା ଚାଏଁ ଛାଏଁ ଝରି ଆସିବ– ସେତେବେଳେ ମୋର ସ୍ମୃତି ହିଁ ତୁମର ଏକମାତ୍ର ସାଥୀ ହୋଇ ରହିବ- ତେଣୁ ମୋର ତୁମ ସହିତ ଆତ୍ମୀୟତା ବଢ଼ିଯିବାରେ ତୁମେ ଆତଙ୍କିତ ହେବା ଉଚିତ ନୁହେଁ । ମୁଁ ତୁମର ସାଂସାରିକ ସୁଖ ସ୍ୱାଚ୍ଛନ୍ଦ୍ୟର ବାଧକ ନୁହେଁ- ତୁମର ନିଃସଙ୍ଗ ନିରୋଳା ମୁହୂର୍ତ୍ତ ଗୁଡ଼ିକର ସାଥୀ ହୋଇ ମୁଁ ରହିବା ପାଇଁ ଚାହେଁ ।''

ସେହିପରି ଜଣେ ଇଂରେଜି ଝିଅ ଯାହା ସହିତ ଭବିଷ୍ୟତରେ କୌଣସି ସଂପର୍କ ସ୍ଥାପିତ ହେବାର ଆଶା ବି ନାହିଁ ସେ ଯେଉଁ ଭଲ ପାଇବା କଥା କହୁଛି ତାହା ମାନବୀୟ ପ୍ରେମର ନିଦର୍ଶନ ।

''ମୋ କଥା ଶୁଣି ଆପଣଙ୍କର ଧାରଣା ହେଉଥିବ ଯେ ମୁଁ ଆପଣଙ୍କର ପ୍ରେମରେ ପଡ଼ିଯାଇଛି !'' କହି ଆହୁରି ଜୋରରେ ହସିଲା, ''ଆପଣ କିଏ, ମୁଁ କିଏ-ଆମେ ପୃଥିବୀର ଏ ପାଖ ସେପାଖର ଲୋକ–ଆପଣଙ୍କର ସ୍ତ୍ରୀ ପୁଅ ଝିଅ ଆପଣଙ୍କୁ ଅନାଇ ବସିଛନ୍ତି । ବିଦ୍ୱାନ ବ୍ୟକ୍ତି ହିସାବରେ ଆପଣଙ୍କର ଉଜ୍ଜ୍ୱଳ ଭବିଷ୍ୟତ ରହିଛି । ଆପଣଙ୍କ ଦେଶ ଆପଣଙ୍କ ଲାଗି ଗର୍ବିତ- ଏପରି ଦିଗନ୍ତ ବିସ୍ତାରୀ ମାନଚିତ୍ର ଭିତରେ ଭାସନ୍ତା ମେଘର ସ୍ଥାନ କେଉଁଠି ? ତଥାପି ଭାସନ୍ତା ମେଘମାନଙ୍କର ବି କୋମଳ ହୃଦୟ ରହିଛି– ଅନ୍ୟକୁ ଭଲ ପାଇବାର

ସୌଖୀନ ଇଚ୍ଛା ରହିଛି—ତାହା କଅଣ ମୋ ପକ୍ଷରେ ଆନନ୍ଦଦାୟକ ନୁହେଁ—ଆମର ଦେଶରକ୍ଷାକାରୀ ଧର୍ଷଣକାରୀ ସୈନିକମାନଙ୍କ ଠାରୁ ଆପଣ କେତେ ଉଚ୍ଚରେ—କେତେ ମହାନ। ନରକ—ସ୍ୱର୍ଗର ବ୍ୟବଧାନ—ନରକର ବର୍ବରତା ଭୋଗିଥିବା ଝିଅଟିର କଅଣ ସ୍ୱର୍ଗର କଳ୍ପନା କରିବା ମଧ୍ୟ ଅନ୍ୟାୟ ? ଆପଣ ତ ମୋତେ ମନେ ରଖିବେ ବୋଲି କହିଲେ। ମୁଁ ଆଜିଠାରୁ ସିଗାରେଟ ଛାଡ଼ିଦେବି। କିଛିଟା ପ୍ରତିଦାନ ରହିବା ଦରକାର।''

ସେହିପରି ଆଉଜଣେ ଇଂରେଜି ନାରୀର ନିଃସ୍ୱାର୍ଥ ଭାବରେ ଅନେକ ଉପକାର କରିଥିବାବେଳେ ବର୍ଣ୍ଣିତ :

''ଏଇ ଧର ତୁମ ଆମର ବନ୍ଧୁତା ଚିରଦିନ ପାଇଁ ମନଗହୀରରେ ଉବୁଡୁବୁ ହେଉଥିବ—ନିରୋଳା ନିଃସଙ୍ଗ ମୁହୂର୍ତ୍ତରେ ଏହା ମର୍ମରିତ ହେଉଥିବ। ଏହାର କଅଣ ଆବେଗିକ ମୂଲ୍ୟ ନାହିଁ ? ଖାଲି ବସ୍ତୁନିଷ୍ଠ ଅନୁଭୂତି ଓ ଦୈହିକ କ୍ଷୁଧାମୋଚନ ହିଁ ଜୀବନର ସର୍ବଶ୍ରେଷ୍ଠ କାମନା ? ବନ୍ଧୁ ବିଚ୍ଛେଦର ଦୁଇ ବିନ୍ଦୁ ଅଶ୍ରୁ ଜୀବନରେ କେତେ ମୂଲ୍ୟବାନ, ତାହା ଆମ ଭାରତୀୟ ସାହିତ୍ୟର ଗୋଟିଏ ମୂଲ୍ୟବାନ ଅନୁଦାନ। ଆମମାନଙ୍କର ଦୈହିକ ସଂପର୍କ ଥିଲେ ତୁମେ ଓ ମୁଁ ଗୋଟିଏ ଗୋଟିଏ ବାସ୍ତବ ଦୁନିଆର ମୂଲ୍ୟହୀନ ବସ୍ତୁରେ ପରିଣତ ହୋଇଯାଇଥାଆନ୍ତେ—ସ୍ମୃତିପଟରେ ତାର ଛାଇ ପଡ଼ି ନଥାନ୍ତା। ରାସ୍ତାରେ ଗୋଡ଼ି ମାଟି ପରି ସାଧାରଣ ବସ୍ତୁରେ ଆମେ ପରିଣତ ହୋଇ ଯାଇ ଥାଆନ୍ତେ। ମୁଁ ଭାରତ ଆକାଶରେ ଯେବେ ଯେବେ ସନ୍ଧ୍ୟାତାରା ଦେଖିବି— ଏବଂ ଏହା ପ୍ରତି ସନ୍ଧ୍ୟାରେ ଆକାଶରେ ଦେଖିବାର ସୌଭାଗ୍ୟ ମୋର ଅଛି—ସେଥିରେ ତୁମେ ଦୁଇବିନ୍ଦୁ ଅଶ୍ରୁପରି ଚକ ଚକ କରି ମୋତେ ଚାହିଁଥିବ—ମୁଁ ମଧ୍ୟ ତୁମ ସହିତ ପୁଣି ଥରେ ଏ ଜୀବନରେ ନହେଲେ ବି ପର ଜନ୍ମରେ ଦେଖା ହେବାର କାବ୍ୟିକ ପ୍ରତିଶ୍ରୁତି ଦେଇ ଚାଲିଥିବି। ଏହାର ମୂଲ୍ୟ କେତେ କୁହ ତ।''

ଏହିପରି କୌଣସି ସାଂସାରିକ ବନ୍ଧନ ବା ସଂପର୍କ ନଥାଇ ମଧ୍ୟ ଯେଉଁ ଅତୀନ୍ଦ୍ରିୟ ମନୋଭାବ ସୃଷ୍ଟି ହୁଏ, ତାହାର ମୂଲ୍ୟ ଜୀବନରେ ବହୁତ ବେଶୀ।

ସାମାଜିକତା ସ୍ତରରେ ଦୁହେଁ ସଂପୂର୍ଣ୍ଣ ଭିନ୍ନ ଭିନ୍ନ ପରିସ୍ଥିତିରେ ଥିଲା ବେଳେ ଏବଂ ତାର କୌଣସି ଭବିଷ୍ୟତ ନଥିଲା ବେଳେ ମଧ୍ୟ—

''ବିଚିତ୍ର ଏ ମନ ! ତାର ଶତ ପ୍ରତ୍ୟାଖ୍ୟାନ ଓ ଉଦାସୀନତା ସତ୍ତ୍ୱେ ମନ ସେଇଆଡ଼େ ଧାଇଁଥାଏ କାହିଁକି, ତାର ଉତ୍ତର ମୋ ପାଖରେ ନଥାଏ। ଘୃଣା ବିଦ୍ୱେଷ ଥିବା ସଂପର୍କ ଛିନ୍ନ କରିବା ସହଜ, କିନ୍ତୁ ସ୍ନେହାନୁବନ୍ଧନ ଅନ୍ତରତମ ଗହ୍ୱରରେ ଏପରି ବୁଦ୍ ବୁଦ୍ ସୃଷ୍ଟି କରି ଚାଲିଥାଏ- ଏପରି ମାୟାଜାଲ ବୁଣି ବୁଣି ଚାଲିଥାଏ ଯେ ସେଥିରୁ ମୁକ୍ତି ଲାଭ କରିବା କଅଣ ଏତେ ସହଜ ?

''ସ୍ନେହ ପାଇବାର କୁହେଳିକା ବୁଢ଼ିଆଣୀ ଜାଲ ପରି ମୋ ମନ ଭିତରେ ଘେରିଯାଏ- ତାକୁ ଯେତେ ଛିଣ୍ଡାଇବା ପାଇଁ ଚେଷ୍ଟା କଲେ ମଧ୍ୟ ତାହା ଅଛିଣ୍ଡା ହିଁ ରହିଯାଏ। ଅନେକ ସମୟରେ ମନେହୁଏ ଯେ ଯାହାକୁ ବେଶି ଭଲ ପାଏ ତାକୁ ହିଁ ଆଘାତ ଦେବାର ଅଧିକାର ସେ ପାଇଥାଏ- ତେଣୁ ତାକୁ ଟାଣି ଓଟାରି ଛିଣ୍ଡାଇ ଦେବାକୁ ଚେଷ୍ଟା କଲେ ତାହା ରବର ଡୋରି ପରି ପୁଣି ଲେଉଟି ଆସେ, ଜଡ଼ାଇ ରହିଥିବା ବଂଧନକୁ ଛିଣ୍ଡାଇବାକୁ ଚେଷ୍ଟା କଲାମାତ୍ରେ ହିଁ ମର୍ମାନ୍ତିକ ବ୍ୟଥା ମନ ପ୍ରାଣକୁ ଉଦାସ କରିଦିଏ- ଜୀବନିକା ଶକ୍ତି ଶିଥିଳ

ହୋଇଯାଏ । ପର ମୁହୂର୍ତ୍ତରେ ପ୍ରଚଣ୍ଡ ବିଶ୍ୱାସ ସହିତ ଭବିଷ୍ୟତରେ ସ୍ନେହ ପାଇବାର ଆଶା ପ୍ରଖର ହୋଇଉଠେ । ପ୍ରତ୍ୟାଖ୍ୟାନର ଅପମାନ ବଦଳରେ ଅଭିମାନ ଜାଗି ଉଠେ । ଭଲ ପାଇବାର ବ୍ୟଥା ଅଭିମାନ ଛଳରେ ଫୁଟି ଉଠେ । ସ୍ନେହ ମମତା ଭିତର ଦେଇ ଗଢ଼ି ଉଠିଥିବା ଆକର୍ଷଣ କଅଣ ସହଜରେ ଲିଭି ପାରିବ ? ତାର ପରବର୍ତ୍ତୀ କଣ୍ଠ ସ୍ୱରରେ ସେ ସବୁ ମାନ ଅଭିମାନ କୁଆଡ଼େ ହଜିଯାଏ, ସେ ଯେତେବେଳେ ହସି ହସି ପଦେ ଦିପଦ କଥା କହେ । - ବିଶ୍ୱାସ ଆଶାରେ ଉଲ୍ଲସିତ ହୋଇଉଠେ । ମାନବୀୟ ଭଲ ପାଇବାର ଆଦିମ ଐକ୍ୟ ଓ ଅତୀତର ଅଭୁଲା ଅନୁଭୂତି ଫୁଲର ସୁଗନ୍ଧି ପରି ମୋ ମନ ଆକାଶରେ ସଂଚରିଯାଏ ।

ଫୁଲର ସୁରଭିର ମନମୁଗ୍ଧତା, ମଳୟର କୋମଳ ଶିହରଣ, ଜ୍ୟୋତ୍ସ୍ନା ପ୍ଲାବିତ ଆକାଶରେ ଜୀବନର ପରିପୂର୍ଣ୍ଣତା ଭିତରେ ସେ ଯେ ସଂପୂର୍ଣ୍ଣ ରୂପେ ମୋ ଭିତରେ ଜଡ଼ିତ ହୋଇ ରହିଯିବେ ଏଥିରେ ମୁଁ କିନ୍ତୁ ଆନନ୍ଦିତ । କାବ୍ୟ କବିତା ଉପନ୍ୟାସରେ ଏ ପ୍ରକାର ଯେଉଁ ବର୍ଣ୍ଣନା ତାହାର ପ୍ରକୃତ ମର୍ଯ୍ୟାଦା ସେ ମୋତେ ଶିଖାଇଛନ୍ତି । ମୋ ସଂଗୀତରେ ମୁଁ ଆନନ୍ଦ ପାଉଥିଲି ସତ, କିନ୍ତୁ ତାଙ୍କ ପରି ଭାବଗ୍ରାହୀ ଶ୍ରୋତା ମୋଠାରେ ବହୁ ନୂତନ ଭାବ ବର୍ଣ୍ଣାଳୀ ସୃଷ୍ଟି କରିପାରିଛନ୍ତି । ମୁଁ ବର୍ତ୍ତମାନ ମୋର ସଂଗୀତ ପାଇଁ ଶ୍ରୋତା ପାଇବା ପାଇଁ ଆଉ ଉଦ୍ୟମ କରିବି ନାହିଁ କାହିଁକି ନା ମୋର ଚିତ୍ତ ଉନ୍ମାଦିତ ଶ୍ରୋତା ହେଉଛନ୍ତି ସେ । ମୋ ସଂଗୀତରେ ଜୀବନ ସଂଚାର କରିଛନ୍ତି ସାର । ମୋର ନିରୋଳା ମୁହୂର୍ତ୍ତମାନଙ୍କରେ ମୋର ସ୍ୱର ଲହରୀ ଭିତରେ ମୁଁ ହଜିଯିବି । କାରଣ ତାଙ୍କର କବି ଓ ପ୍ରେମିକର ଆତ୍ମସତ୍ତା ଏହା ଭିତରେ ଚିରଦିନ ମର୍ମରିତ ହୋଇ ଚାଲିଥିବ । ସେ ଯେପରି ଅପରିସୀମ କଳ୍ପନା ମାଧ୍ୟମରେ ମୋତେ ଅନୁଭବ କରନ୍ତି ମୁଁ ମଧ୍ୟ ସେହିପରି ଭାବରେ ତାଙ୍କର ସ୍ନେହ ମଧୁର ସ୍ମୃତିକୁ ଚିରଦିନ ଝୁରୁଥିବି । ଏତିକିହିଁ ମୋର ପରି ଜଣେ ଦୁର୍ବଳ ନାରୀର ଗୁପ୍ତ ପ୍ରତିଦାନ ।

''ଏହିଠାରେ କିଛିଦିନ ତଳେ ଜ୍ୟୋତ୍ସ୍ନା ବିଧୌତ ରାତ୍ରିରେ ସାରଙ୍କ ପାଖରେ ବସି ଗୀତ ଗାଉଥିଲି । ସାର ମୁଗ୍ଧବିମୁଗ୍ଧ ମନରେ ଭାଓଲିନ ବଜାଉଥିଲେ । ଏହିଠାରେ ମୋ ଜୀବନର ଅମୂଲ୍ୟ ସଂପଦ ଉଷ୍ମତା ବର୍ତ୍ତମାନ ସୁଦ୍ଧା ଶିହରଣ ସୃଷ୍ଟି କରି ଚାଲିଛି । କିଏ କହିବ ଯେ ଏହା ଭବିଷ୍ୟତହୀନ ସଂପର୍କ ? ଭବିଷ୍ୟତର ବିପୁଳ ସଂଭାବନା ଯେ ଏଥିରେ ଭରି ରହିଛି ଏବଂ ସାରା ଜୀବନ ଏହା ମୋର ପ୍ରାଣ ଭିତରେ ଅନୁରଣିତ ହୋଇ ଚାଲିଥିବ ! ତାହା କଅଣ ଭବିଷ୍ୟତହୀନ ସଂପର୍କରେ ସଂଭବ ?''

ଏସବୁ ସହିତ ବାପମା, ପିଲାଙ୍କର ଭଲ ପାଇବାର ବୈଶିଷ୍ଟ୍ୟ । ଭଲ ପାଇବାର ଏପରି ନାନା ପରିସର ଭିତରେ ମାନବୀୟତାର ବିଭିନ୍ନ ଦିଗର ଉନ୍ମୀଳନ ଜୀବନକୁ ସରସ ସୁନ୍ଦର କରି ଗଢ଼େ । ଏହାକୁ ସ୍ୱୀକାର କରିବା ଏବଂ ପ୍ରତ୍ୟେକ ପରିସରକୁ ଉପଯୁକ୍ତ ସମ୍ମାନ ଦେଖାଇବା –ଅନୁଭବ କରିବା ହେଉଛି ଜୀବନର ପରମ ଉପଲବ୍ଧି ବୋଲି ମୋର ମନେହୁଏ ।

■■■

# ୯

# ଆମ ଭାଗ୍ୟ ଆମେ ଗଢୁ

ମୁଁ ନାସ୍ତିକ ହୋଇଗଲା ପରେ ଭାଗ୍ୟରେ ମୋର ବିଶ୍ୱାସ ତୁଟିଗଲା । ନାନା ଧରଣର ଅନୁଧ୍ୟାନ ପରେ ମୋର ହୃଦ୍‌ବୋଧ ହେଲା ଯେ ଭାଗ୍ୟ ମନୁଷ୍ୟ ହିଁ ନିଜେ ଗଢ଼େ । ଯେତେବେଳେ ଜଣେ ଯଥେଷ୍ଟ ପରିଶ୍ରମ କରିପାରେ ନାହିଁ ଓ ତାର କୌଣସି କାର୍ଯ୍ୟରେ ନିଷ୍ଠା ନଥାଏ କିମ୍ବା ଆନ୍ତରିକତା ସହ ସେଥିପାଇଁ ଯଥେଷ୍ଟ ଉଦ୍ୟମ କରେ ନାହିଁ, ସେପରି କାର୍ଯ୍ୟରେ ସେ ଅକୃତକାର୍ଯ୍ୟ ହେବାର ସଂଭାବନା ବଢ଼ିଯାଏ । ତେଣୁ ନିଜକୁ ଏଥିପାଇଁ ଦାୟୀ ନ କରି ନିଜର ଅନିର୍ଦ୍ଦିଷ୍ଟ ଭାଗ୍ୟ ଉପରେ ଛାଡ଼ିଦିଏ । ଏ ପ୍ରକାର ସାନ୍ତ୍ୱନାମୂଳକ ବିଶ୍ୱାସ ତାକୁ ବହୁତ ସାହାଯ୍ୟ କରେ । ସେ ନିଜର ଅକ୍ଷମତା ବା ଅସାମର୍ଥ୍ୟକୁ ଦୋଷ ଦେଇ ଅଯଥାରେ ମ୍ରିୟମାଣ ହୁଏ ନାହିଁ । ତେଣୁ ଭାଗ୍ୟ ବିଶ୍ୱାସ ମନୁଷ୍ୟ ପାଇଁ ଗୋଟିଏ ଆତ୍ମରକ୍ଷଣ କବଚ ରୂପେ କାମ କରେ । ଏ ପ୍ରକାର ଅନୁଭୂତି ଯୋଗୁ ମୁଁ ଭାଗ୍ୟବାଦୀ ହୋଇପାରିଲି ନାହିଁ । ମୋର କୌଣସି କାର୍ଯ୍ୟରେ ଅକୃତକାର୍ଯ୍ୟତା ମୋର ବ୍ୟକ୍ତିଗତ ଅସାମର୍ଥ୍ୟ କିଂବା ଅନାଗ୍ରହ ବୋଲି ମୁଁ ବିବେଚନା କରେ ।

ସେକ୍ସପିଅରଙ୍କର character is destiny ଦର୍ଶନରେ ମୋ ବିଶ୍ୱାସ ଦୃଢ଼ୀଭୂତ ହେଲା । ତୁମର ଚରିତ୍ରଗତ ବ୍ୟକ୍ତିତ୍ୱ ଉପରେ ତୁମର ଭଲ ମନ୍ଦ, ଦୁଃଖ ସୁଖ, ତୁମର ବନ୍ଧୁବାନ୍ଧବ ଏବଂ ଶତ୍ରୁ ନିର୍ଭର କରେ । ଏହି ଦାର୍ଶନିକ ବିଶ୍ୱାସ ଫଳରେ ବାହାରେ ଯେଉଁ ପ୍ରକାରର ବ୍ୟବହାର ମୁଁ ପାଏ, ସେଥିପାଇଁ ମୋ ନିଜର ବ୍ୟକ୍ତିତ୍ୱଗତ ତ୍ରୁଟି ବିଚ୍ୟୁତି ପ୍ରତି ନଜର ଦିଏ । ଅବଶ୍ୟ ସବୁବେଳେ ଯେ ଠିକ୍ ଗାଣିତିକ ସୂତ୍ରରେ ଏହା ଜୀବନରେ ପ୍ରତିଫଳିତ ହେବ ତାହା ନୁହେଁ, ତଥାପି ଜଣଙ୍କର ମୌଳିକ ବ୍ୟକ୍ତିତ୍ୱ ତାର କ୍ରମବର୍ଦ୍ଧିଷ୍ଣୁ ବ୍ୟାବହାରିକ କ୍ରିୟା ପ୍ରକ୍ରିୟା ଉପରେ ନିର୍ଭର କରେ ବୋଲି ମୋର ବିଶ୍ୱାସ । ଅନେକ କ୍ଷେତ୍ରରେ ତାର ବ୍ୟତିକ୍ରମ ଯେ ଦେଖା ନ ଦିଏ ତାହା ନୁହେଁ । ତୁମେ ଜଣକୁ ବହୁତ ସାହାଯ୍ୟ କରି କରି ଚାଲ, କିନ୍ତୁ ଶେଷରେ ସେ ତୁମର ଚରମ ଶତ୍ରୁରେ ପରିଣତ ହୋଇଯିବାର ଦେଖାଯାଏ । ଏହା ତାର ଚରିତ୍ରଗତ ନ୍ୟୂନମନ୍ୟତା ଯୋଗୁ, ତୁମର ସାହାଯ୍ୟରେ ସେ ଉନ୍ନତି କରିଥିବା କଥା ଭାବିଲେ ତାର ମାନସିକ ଯନ୍ତ୍ରଣା ବଢ଼ିଯାଏ । ତେଣୁ ସେ ପ୍ରମାଣ କରିବାକୁ ଚେଷ୍ଟା କରେ ଯେ ତାର ନିଜର ଯୋଗ୍ୟତା ଯୋଗୁହିଁ ସେ ଏପରି ଉନ୍ନତି କରିପାରିଛି- ଅନ୍ୟର

ସାହାଯ୍ୟରେ ନୁହେଁ । କିନ୍ତୁ ମୋ ମତରେ ଏପରି ଲୋକଙ୍କର ସଂଖ୍ୟା ସେତେ ବେଶି ନୁହେଁ । ତୁମେ ଯଦି ଅନ୍ୟକୁ ସାହାଯ୍ୟ କରିବାରେ ଆନନ୍ଦ ପାଇବା ପରି ସ୍ୱଭାବର ଲୋକ ତାହାହେଲେ ବହୁତ ଲୋକ ତୁମକୁ ସ୍ୱାଭାବିକ ଭାବରେ ଭଲ ପାଆନ୍ତି- ତୁମର ସାହାଯ୍ୟ ପାଇଁ କୃତଜ୍ଞ ରହନ୍ତି- ଦରକାର ସମୟରେ, ତୁମର ଅସୁବିଧା ବେଳେ ତୁମକୁ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି । କିନ୍ତୁ ଏପରି ଲୋକେ ସାଧାରଣତଃ ଏସବୁ କଥା ନେଇ କୋଳାହଳ ସୃଷ୍ଟି କରନ୍ତି ନାହିଁ; କିନ୍ତୁ ତୁମର ଶତ୍ରୁମାନେ ପ୍ରବଳ ଭାବରେ ତୁମର ନିନ୍ଦୁକ ହୋଇଥିବାରୁ ସେମାନଙ୍କର ଅପବାଦ, ଦୁର୍ବ୍ୟବହାର ତୁମ ନଜରରେ ପଡ଼େ । ତୁମ ନଜରକୁ ଆସିବା ପାଇଁ ହିଁ ସେମାନେ ଚେଷ୍ଟା କରନ୍ତି କାରଣ ସେଥିରେ ସେମାନେ ଆନନ୍ଦ ପାଆନ୍ତି ।

ମୋ ଉପନ୍ୟାସମାନଙ୍କରେ ଚରିତ୍ର ହିଁ ନିଜ ନିଜର ଭବିଷ୍ୟତ ସୃଷ୍ଟି କରି ଚାଲୁଥିବାର ନାୟକ ନାୟିକାମାନଙ୍କର ବିଶ୍ଳେଷଣ କରା ହୋଇଛି । ଗୋଟିଏ ଧରଣର ଚରିତ୍ର ଯେ ସାରାଜୀବନ ସମାନ ଭାବରେ କାର୍ଯ୍ୟ କରି ଚାଲିବ ତାହା ଅନେକଙ୍କଠାରେ ଦେଖାଯାଏ ନାହିଁ । ସେମାନଙ୍କଠାରେ ବହୁଧା ବିଭକ୍ତ ଚରିତ୍ର ଦେଖାଦେଇପାରେ । ଗୋଟିଏ ସମୟରେ ଗୋଟିଏ ଚରିତ୍ରର ପ୍ରବଳ ପ୍ରଭାବ ଯୋଗୁ ସେ ଅନୁସାରେ ସେ ନିଜ ଜୀବନକୁ ଗଢ଼ି ଚାଲେ ତ ପରବର୍ତ୍ତୀ ସମୟରେ ତାଠାରେ ଲୁକ୍କାୟିତ ଥିବା ଅନ୍ୟ ବ୍ୟକ୍ତିତ୍ୱଟି ଚେଇଁଉଠେ- ଫଳରେ ସେ ପ୍ରଥମ ଚରିତ୍ରଗତ ବ୍ୟବହାର ଯୋଗୁ ସେ ଅନୁତପ୍ତ ହୁଏ । ମୋର 'ଶେଷ କଥା' ଉପନ୍ୟାସରେ ମନୀଷାଠାରେ ଏହିପରି ଦୁଇଟି ଚରିତ୍ର ବିଭିନ୍ନ ସମୟରେ କାମ କରୁଥିବାର ଚିତ୍ର ବର୍ଣ୍ଣିତ ହୋଇଛି । କିନ୍ତୁ ଶେଷରେ ଅସଲ ଚରିତ୍ର ହିଁ ତାର ଭାଗ୍ୟ ନିର୍ଦ୍ଧାରଣ କରି ଚାଲିଛି, ଏଥିରେ ସନ୍ଦେହ ନାହିଁ ।

ଆମେ ଆମ ଭାଗ୍ୟ ଗଢୁର ଅର୍ଥ ନୁହେଁ ଯେ ଆମର ପାରିପାର୍ଶ୍ୱିକ ସମସ୍ତ ଘଟଣାବଳୀକୁ ଆମେ ସଂପୂର୍ଣ୍ଣ ରୂପେ ନିୟନ୍ତ୍ରଣ କରିପାରିବୁ । ରାସ୍ତାରେ ତୁମେ ଅତି ସାବଧାନତାର ସହିତ ଯାଉଥିବା ବେଳେ ଦୁର୍ଘଟଣାର ସମ୍ମୁଖୀନ ହୋଇ ତୁମର ହାତଗୋଡ଼ କଟିଯିବା କିମ୍ବା ମୃତ୍ୟୁମୁଖରେ ପଡ଼ିବା ତୁମ ଉପରେ ନିର୍ଭର କରୁନାହିଁ । ତୁମ ଛଡ଼ା ଆହୁରି ବହୁତ ସାମାଜିକ ଓ ଭୌତିକ ଘଟଣା ତୁମ ନିୟନ୍ତ୍ରଣ ବାହାରେ । ଯେହେତୁ ସେସବୁ ତୁମର ନିୟନ୍ତ୍ରଣାଧୀନ ନୁହେଁ, ତୁମେ ତାକୁ ଭାଗ୍ୟ ଆଖ୍ୟା ଦିଅ । କିନ୍ତୁ ଦୁର୍ଘଟଣା କଥା କହିବା ଯାହା ଭାଗ୍ୟ ବୋଲି କହିବା ସେଇଆ । ଏପରି ନାନା ଦୁର୍ଘଟଣାଗତ ଘଟଣାକୁ ଛାଡ଼ିଦେଲେ ସମାଜରେ ତୁମର ଚାରିତ୍ରିକ ଅଭ୍ୟାସ ଓ ବ୍ୟବହାର ଉପରେ ତୁମର ଫଳାଫଳ ବହୁତ ନିର୍ଭର କରେ । ଉଦାହରଣସ୍ୱରୂପ ତୁମେ ଜାଣୁଛ ଏବଂ ଦେଖୁଛ ଯେ ଧୂମ୍ରପାନ ଦ୍ୱାରା ବହୁତ ଲୋକ ନାନା ଜଟିଳ ରୋଗଗ୍ରସ୍ତ ହେଉଛନ୍ତି-ନାନା ଧରଣର କୁଖାଦ୍ୟ ଯୋଗୁଁ ଲୋକଙ୍କର ରୋଗ ବଇରାଗ ବଢ଼ି ଚାଲିଛି, ତଥାପି ତୁମେ ଯଦି ଏହାକୁ ବାଦ ଦେଇପାରିବ ନାହିଁ ଏବଂ ତାପରେ ତୁମେ ରୋଗଗ୍ରସ୍ତ ହୋଇପଡ଼- ତାକୁ ଭାଗ୍ୟ ଦୋଷ କହି ନିଜକୁ ଦୋଷମୁକ୍ତ କରିବା କେବଳ ନିଜ ପ୍ରତି ପ୍ରତାରଣା ଛଡ଼ା ଆଉ କଅଣ ହୋଇପାରେ ?

ଏହିପରି ପ୍ରତ୍ୟେକ ବ୍ୟକ୍ତି ନିଜ ନିଜର ବ୍ୟାବହାରିକ ଚରିତ୍ର ଅନୁସାରେ ଅଧିକାଂଶ ଫଳ ପାଇଥାଏ । ତୁମର ନିଜ ଲୋକ ଏହିପରି ଭାବରେ ରୋଗଗ୍ରସ୍ତ ହୋଇପଡ଼ିଲେ କିମ୍ବା ନାନା କାରଣରୁ ସେମାନଙ୍କର ଅକାଳ ମୃତ୍ୟୁ ହେଲେ ତୁମେ ନିଜର ଭାଗ୍ୟକୁ ନିନ୍ଦି ବସିଲେ କଅଣ ସତ୍ୟ ଉଦ୍‌ଘାଟିତ ହୋଇପାରିବ ? ଏହା କେବଳ ମନସ୍ତାତ୍ତ୍ୱିକ ସାନ୍ତ୍ୱନା ଦେଇପାରେ ।

ଏଥିଯୋଗୁ ବ୍ୟକ୍ତିଠାରେ ମାନସିକ ଯନ୍ତ୍ରଣା ହେବା ସ୍ୱାଭାବିକ, କିନ୍ତୁ ଭାଗ୍ୟରେ ଥିଲା ବୋଲି କହି ମୁଁ ଏଥିରେ ସାନ୍ତ୍ୱନା ଲାଭ କରେନାହିଁ। ଏ ସଂପର୍କରେ ଗୀତାରେ ଥିବା ବହୁ ବିଷୟରେ ମୋର ମତଦ୍ୱୈଧ ଥିଲେ ମଧ ଏଠାରେ ବର୍ଣ୍ଣିତ ସ୍ଥିତଧୀ ଧାରଣାଟି ବହୁତ ଉପାଦେୟ ବୋଲି ମନେହୁଏ।

ଦୈବ ଦୁର୍ବିପାକଜନିତ ଘଟଣାକୁ ଭାଗ୍ୟ ସହିତ ଯେଉଁମାନେ ଅନବରତ ଯୋଡ଼ୁଥାଆନ୍ତି, ସେମାନେ ମଧ ନିଜ ନିଜର ଚରିତ୍ରଗତ ଦୋଷ ଦୁର୍ବଳତାକୁ ଦେଖିପାରନ୍ତି ନାହିଁ। ସମସ୍ତ ଘଟଣାକୁ ଭାଗ୍ୟ ଦୋଷ କହି ତାଙ୍କର ଦାୟିତ୍ୱକୁ ଲାଘବ କରି ଦିଅନ୍ତି। ମୋର ଏଥିରେ ବିଶ୍ୱାସ ନଥିବାରୁ ମୋର ପ୍ରତ୍ୟେକ କାମର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ତାର ସମାଧାନ ପାଇଁ ଉଦ୍ୟମ କରେ। କାରଣ ପ୍ରତ୍ୟେକ ଘଟଣାର କାର୍ଯ୍ୟ କାରଣ ସଂପର୍କିତ ଜଟିଳତାକୁ ବିଶ୍ଳେଷଣ କଲେ ତାର ବହୁମୁଖୀ ସଂଭାବନା ବିଷୟରେ ହୃଦୟଙ୍ଗମ କରିହୁଏ। ଏବଂ ପ୍ରତ୍ୟେକ ଅଂଶର କାର୍ଯ୍ୟକାରୀ ଦିଗ ବିଷୟରେ ଧାରଣା ସ୍ପଷ୍ଟ ହୁଏ। ଏ ପ୍ରକାର ବିଶ୍ଳେଷଣ ଫଳରେ ପ୍ରତ୍ୟେକ ଅଂଶକୁ ନିୟନ୍ତ୍ରଣ କରାଯାଇପାରେ ଏବଂ ତାହା ଶେଷରେ ଫଳପ୍ରଦ ହୁଏ। କାର୍ଯ୍ୟ କ୍ଷେତ୍ରରେ ମୁଁ ଏ ପ୍ରକାର ବିଶ୍ଳେଷଣାତ୍ମକ କାର୍ଯ୍ୟପ୍ରଣାଳୀ ଗ୍ରହଣ କରିବାରୁ ଅଧିକାଂଶ କାମରେ ମୁଁ ଫଳପ୍ରଦ ହୁଏ। ଉଦାହରଣ ସ୍ୱରୂପ ମୋର ବହୁତ ଅଭାବ ଅସୁବିଧା ସତ୍ତ୍ୱେ କଟକର ଦୁର୍ଗମ ଅଂଚଳରେ ଘର କରିବା, ମନସ୍ତତ୍ତ୍ୱ ବିଭାଗକୁ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠିତ କରିବା, ବିନା ଖର୍ଚ୍ଚରେ ବିଶ୍ୱ ପରିଭ୍ରମଣ କରିବା, ପିଲାମାନଙ୍କର ଲାଳନ ପାଳନ ଓ ଶିକ୍ଷା ଦୀକ୍ଷା ଦିଗରେ ଉପଯୁକ୍ତ ପଦକ୍ଷେପ ନେବା ପ୍ରଭୃତିରେ ମୁଁ ମୋଟାମୋଟି ଭାବରେ ଫଳପ୍ରଦ ହୋଇପାରିଛି। ଅଥଚ ବହୁ ପ୍ରକାରର ଆର୍ଥିକ ଓ ପାରିବାରିକ ସୁବିଧା ସୁଯୋଗ ଥାଇ ମଧ୍ୟ ମୋପରି ଅନେକେ ଏ ଦିଗରେ ବିଶେଷ ଭାବରେ ଆଗେଇପାରିନଥିଲେ।

ସେହିପରି ଯାହା ମୁଁ ପାଇନାହିଁ ସେଥିପାଇଁ ମୁଁ ମଧ ଅନେକଟା ଦାୟୀ ବୋଲି ମୋର ବଦ୍ଧମୂଳ ଧାରଣା। ଉଦାହରଣସ୍ୱରୂପ ମୁଁ କୁଳପତି ହୋଇପାରିଲି ନାହିଁ, ଏଥିପାଇଁ ଅନେକେ ମୋତେ ଅପାରଗ ବୋଲି ଭାବି ପାରନ୍ତି, କିନ୍ତୁ କୁଳପତି ହେବା ପାଇଁ ମୁଁ ଆଦୌ ଚେଷ୍ଟା ମଧ କରିନାହିଁ। କୁଳପତି ହେବା ପାଇଁ ଆଧୁନିକ ସମାଜରେ ଜଣକୁ ଯେପରି ଲୋଚାକୋଚା ହୋଇ ଚଳିବା ଦରକାର, ତାହା ମୁଁ ଚାକିରି କଲାଦିନରୁ ହିଁ ଛାଡ଼ି ଦେଇଛି। ତେଣୁ ମୋର ଏ ଦିଗରେ ଚେଷ୍ଟା ହୋଇନାହିଁ। ଫଳରେ କାର୍ଯ୍ୟକାରଣ ସଂପର୍କ ନୀତି ଅନୁଯାୟୀ ମୋର କୁଳପତି ନ ହେବା ହିଁ ସ୍ୱାଭାବିକ। ହେବାଟା ଆକସ୍ମିକ ଘଟଣା ହୋଇ ରହିଯାଇଥାଆନ୍ତା। ସେହିପରି ଶାସକ ଗୋଷ୍ଠୀ ଆନୁଗତ୍ୟଜନିତ ବହୁ ପଦବୀ ମୋ ପକ୍ଷରେ ସଂଭବ ନୁହେଁ। କିନ୍ତୁ ଠିକ୍ ଏହି କାରଣରୁ ଓଡ଼ିଶାର ଦୁଇଜଣ ବରପୁତ୍ର ସ୍ୱର୍ଗୀୟ ବିଜୁ ପଟ୍ଟନାୟକ ଓ ସ୍ୱର୍ଗୀୟ ନବକୃଷ୍ଣ ଚୌଧୁରୀଙ୍କର ମୋ ପ୍ରତି ଆନ୍ତରିକ ସ୍ନେହ ଶ୍ରଦ୍ଧା ଓ ସମ୍ମାନ ଭୁଲିବାର ନୁହେଁ। ଏତିକି ହିଁ ମୋର ଶାସକ ଗୋଷ୍ଠୀ ଅନ୍ତର୍ଭୁକ୍ତ ଦୁଇଜଣଙ୍କଠାରୁ ମୋର ନ୍ୟାଯ୍ୟ ପ୍ରାପ୍ୟ ବୋଲି ମୁଁ ମନେ କରେ। ତେଣୁ ମୋ ଜୀବନରେ ଅନ୍ତତଃ ମୋ ଭାଗ୍ୟ ମୁଁ ଗଢ଼େ ଦର୍ଶନ କାର୍ଯ୍ୟକାରୀ ହୋଇପାରିଛି ବୋଲି ମୋର ହୃଦ୍‌ବୋଧ ହେଉଛି।

■ ■ ■

## ୧୦

# ଭୂତ ଓ ଭଗବାନ

ମୋ ମତରେ ଭୂତ ଯେପରି ଗୋଟିଏ କଳ୍ପନାପ୍ରସୂତ ଅବାସ୍ତବ ଚିତ୍ର, ଭଗବାନ ସେହିପରି ଦୁର୍ବଳ ମନୁଷ୍ୟର ଅନାଗତ ଭବିଷ୍ୟତର ଭୟ ଓ ଭ୍ରାନ୍ତିମୂଳକ ଆପଦ ବିପଦରୁ ନିଜକୁ ମୁକ୍ତ ରଖିବା ଲାଗି ନାନା ପ୍ରକାରର ଆଧିଭୌତିକ କଳ୍ପନାର କାରୁକାର୍ଯ୍ୟ । ସଭ୍ୟତାର ଆଦିମଯୁଗରେ ମନୁଷ୍ୟର ଜିଜ୍ଞାସୁ ମନ ପ୍ରତ୍ୟେକ ଘଟଣାର କାର୍ଯ୍ୟକାରଣ ସଂପର୍କ ବୁଝିବା ପାଇଁ ଅହରହ ଉଦ୍ୟମ କରିଆସୁଛି । ଯୁକ୍ତିଯୁକ୍ତ କାର୍ଯ୍ୟକାରଣ ସଂପର୍କ ପ୍ରତିଷ୍ଠା କରିବା ପ୍ରତ୍ୟେକ ମନୁଷ୍ୟର ସହଜାତ ମାନସିକ ଶକ୍ତି । ସେଥିଯୋଗୁ ପିଲାମାନେ ଅନବରତ ପ୍ରତ୍ୟେକ କଥାର କାରଣ ବିଷୟରେ ପଚାରି ଚାଲନ୍ତି । ଏହି ସହଜାତ ବୌଦ୍ଧିକ କୌତୂହଳ ଯୋଗୁ ବିଜ୍ଞାନର ଉତ୍ପତ୍ତି । ଆଦିମ ମଣିଷ ଆଗରେ ହଠାତ୍ ବର୍ଷା, ଖରା, ଘଡ଼ଘଡ଼ି, ବିଦ୍ୟୁତ୍ ପ୍ରବାହ ପ୍ରଭୃତି ପ୍ରାକୃତିକ ଘଟଣାବଳୀର ଉତ୍ପତ୍ତି ବିଷୟରେ ଏ ପ୍ରକାର କୌତୂହଳ ଯୋଗୁହିଁ ସୂର୍ଯ୍ୟ ଚନ୍ଦ୍ର ବରୁଣ ପ୍ରଭୃତି ଦେବତା ଭାବରେ ପ୍ରାକୃତିକ ଶକ୍ତିକୁ ପୂଜା କରିବାକୁ ଆରମ୍ଭ କଲା । ଏହା ପୃଥିବୀର ସମସ୍ତ ଆଦିମ ସଭ୍ୟତାର ରୂପରେଖ । କ୍ରମେ ଏକେଶ୍ୱରବାଦ ଆଡ଼କୁ ଆମର ଚିନ୍ତାଧାରା ଆଗେଇଗଲା । ତେଣୁ ସବୁ ଧର୍ମରେ ଭଗବାନଙ୍କୁ ପୃଥିବୀ ଏବଂ ସମସ୍ତ ଜିନିଷର ସୃଷ୍ଟିକର୍ତ୍ତା ହିସାବରେ କଳ୍ପନା କଲା; କିନ୍ତୁ ବିଜ୍ଞାନର ବିଭିନ୍ନ ସ୍ତରରେ ନାନା ଧରଣର କାର୍ଯ୍ୟକାରଣ ସଂପର୍କିତ ତଥ୍ୟାବଳୀ ଆବିଷ୍କୃତ ହୋଇ ଚାଲିଥିଲା ବେଳେ ଭଗବାନଙ୍କର ସ୍ୱରୂପ ଏବଂ ତାର ଜନକଲ୍ୟାଣକର ଶକ୍ତି ଏବଂ ପ୍ରଭାବ ବିଷୟରେ ବହୁ ସନ୍ଦେହ ସୃଷ୍ଟି ହୋଇ ଚାଲିଲା । ଭଗବାନଙ୍କର ସମସ୍ତ ଜୀବଜଗତ ତଥା ମାନବ ଶ୍ରେଣୀର ପରମ ହିତାକାଙ୍କ୍ଷୀ ଜଣେ ସର୍ବଶକ୍ତିମାନ, ଈଶ୍ୱର ବିଶ୍ୱାସରେ ବହୁ ଧରଣର ସଂଦେହ ଓ ପ୍ରଶ୍ନ ପ୍ରସ୍ଥାପିତ ହେବାକୁ ଲାଗିବା ଫଳରେ ନିରୀଶ୍ୱରବାଦ କ୍ରମେ କ୍ରମେ ପୃଥିବୀରେ ବିସ୍ତାରିତ ହୋଇ ଚାଲିଛି । ଏହି ଯୁକ୍ତିଯୁକ୍ତ ବୈଜ୍ଞାନିକ ଦୃଷ୍ଟିକୋଣ ମୋତେ ଅନୁପ୍ରାଣିତ କରିପାରିଛି ।

ଭୂତ ଭାବନା ମଧ୍ୟ ଏହିପରି କଳ୍ପନାପ୍ରସୂତ ଭୟ । ତୁମର ଅତି ଆପଣାର ଲୋକଟି ମରିଗଲା ପରେ ତା'ର ଭୂତକୁ ତୁମର ଭୟ—ତାର ସ୍ମୃତି ରକ୍ଷା ପାଇଁ ତୁମେ ବହୁ ଯୋଗାଡ଼ଯନ୍ତ୍ର କର, କାରଣ ତାର ଭୂତକୁ ତୁମର ପ୍ରାଣପଣ ଭୟ । ତୁମର ବିଶ୍ୱାସ ଯେ ତୁମଠାରୁ ସେ ବହୁତ

ଶକ୍ତିଶାଳୀ । ଶୂନ୍ୟରେ ସେ ବିଚରଣ କରିପାରେ । ସେହିପରି ଭଗବାନ । ଭଗବାନଙ୍କୁ ଅଧିକାଂଶ ଲୋକ ଭୟ କରନ୍ତି । ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ପୂଜାପୂଜି କରନ୍ତି - ନିଜର ଅଭୀଷ୍ଟ ସାଧନ ପାଇଁ ନାନାଧରଣର ଲାଂଚ ଯାଚନ୍ତି । ପୂଜାପୂଜି ଓ ଲାଂଚ କାମ ନ ଦେଲେ ମଧ୍ୟ ସେ ବିଷୟରେ କହିବା ପାଇଁ ଭୟ; କାଳେ ଭଗବାନ ଅସନ୍ତୁଷ୍ଟ ହୋଇ ତୁମର କ୍ଷତିସାଧନ କରିଦେବେ । ଅର୍ଥାତ୍ ମନୁଷ୍ୟ ଭଗବାନଙ୍କୁ ନିଜର ସମସ୍ତ ଗୁଣ ଦୁର୍ଗୁଣ ସହିତ ଆହୁରି ବେଶି ଶକ୍ତିଶାଳୀ ଶକ୍ତିରେ ପରିଣତ କରିଦେଇଛି । ଫଳରେ ଭୂତ ଭୟ ପରି ଭଗବାନ ଭୟ ମଧ୍ୟ ଅହରହ ମଣିଷକୁ ବ୍ୟସ୍ତ କରି ରଖିଛି ।

ଅତି ଅଳ୍ପ ଲୋକ ଭଗବାନଙ୍କୁ ଭଲ ପାଆନ୍ତି- ଭଗବାନ କଥା ଭାବି ଆତ୍ମବିଭୋର ହୋଇପଡ଼ନ୍ତି । ରାମକୃଷ୍ଣ ପରମହଂସ, ବିବେକାନନ୍ଦ, କବୀର, ମୀରାବାଈ, ଚୈତନ୍ୟ ପ୍ରଭୃତି ସାମାନ୍ୟ କେତେଜଣ ମାତ୍ର ଭକ୍ତିଭାବବିହ୍ୱଳ ମହାପୁରୁଷ ଅଛନ୍ତି । ପୃଥିବୀରେ ଭଗବାନ ଉପରେ ପର୍ଯ୍ୟବସିତ ବିଭିନ୍ନ ଧର୍ମ ସଂପ୍ରଦାୟ ମନୁଷ୍ୟ ଜାତିର ବହୁ କ୍ଷତି ସାଧନ କରିଆସିଛି । ବେଦବେଦାନ୍ତ, ଗୀତା, ବାଇବେଲ, କୋରାନ୍ ପ୍ରଭୃତି ମୂଳ ଧର୍ମ ଶାସ୍ତ୍ରମାନ ମାନବିକ ଐକ୍ୟ ଏବଂ ବିଶ୍ୱ ଜଗତର ସମସ୍ତ ପ୍ରାଣୀ ପାଇଁ ଉଦାର ସ୍ନେହ ଶ୍ରଦ୍ଧା ଜ୍ଞାପନ କରିଥିଲେ ମଧ୍ୟ ଏହାର ବ୍ୟାଖ୍ୟାକାରୀମାନେ ନାନା ଧରଣର ଧର୍ମଗତ ବିଭେଦ, ତିକ୍ତତା ଓ ପରସ୍ପର ପ୍ରତି ବିଦ୍ୱେଷହିଁ ପ୍ରଚାର କରି ଆସିଛନ୍ତି । ଏମାନଙ୍କର ସ୍ୱର୍ଗ ଅଲଗା ଅଲଗା; ତେଣୁ ସ୍ୱର୍ଗପ୍ରାପ୍ତି ଅଭିଳାଷ ନାନା ରଙ୍ଗରେ ରଂଜିତ । ଏଥିଲାଗି ହିନ୍ଦୁ ଭଗବାନ କୃଷ୍ଣ ଧର୍ମଯୁଦ୍ଧ ନାମରେ ଲକ୍ଷ ଲକ୍ଷ ନିରୀହ ଲୋକଙ୍କର ରକ୍ତନଦୀ ବୁହାଇଦେଇଥିଲେ ଏବଂ ଯୁଦ୍ଧ କ୍ଷେତ୍ରରେ ଜୀବନ ଦେଇଥିବା ଲୋକେ ସିଧା ସ୍ୱର୍ଗରେ ଯାଇ ପହଞ୍ଚୁଥିଲେ । ଅଥଚ ଧର୍ମଯୁଦ୍ଧରେ ଜୟ କରିଥିବା ପଞ୍ଚପାଣ୍ଡବମାନଙ୍କ ଭିତରୁ ଜଣେ ମାତ୍ର ଯୁଧିଷ୍ଠିର ତାଙ୍କର କୁକୁରଟିକୁ ଧରି ସ୍ୱର୍ଗରେ ପହଞ୍ଚି ପାରିଥିଲେ । ସେ ପୁଣି ନିଜ ସ୍ତ୍ରୀ ଦ୍ରୌପଦୀକୁ ପଶା ଖେଳରେ ହାରିଥିଲେ-ଦ୍ରୌପଦୀଙ୍କର ବିବସ୍ତ୍ରକରଣ କୁରୁସଭାରେ ହୋଇଥିଲା ବେଳେ ଅନ୍ୟ ଚାରିଜଣ ଭାଇଙ୍କ ସହିତ ଯୁଧିଷ୍ଠିର ଦେଖୁଥିଲେ । ସୁବିଧା ଅନୁସାରେ ମିଛ କହିଥିଲେ । ଜୀବନଯାକ ଭଗବାନ କୃଷ୍ଣଙ୍କୁ ସଖା ସଖା ବୋଲି ଆନନ୍ଦ ବିଭୋରିତ ହୋଇଯାଉଥିବା ଦ୍ରୌପଦୀ ପାଞ୍ଚଜଣ ପତିଙ୍କୁ ସନ୍ତୁଷ୍ଟ କରି ରଖିବା ପରେ ମଧ୍ୟ କୃଷ୍ଣଙ୍କର ସ୍ୱର୍ଗରେ ପହଞ୍ଚି ପାରିନଥିଲେ । ଏସବୁ ହେଲା ପରସ୍ପରବିରୋଧୀ ଅସଂଗତ ଚିନ୍ତାଧାରାର ସମଷ୍ଟି । ଏହା ହେଉଛି ସମାଜର ବିଭିନ୍ନ ଦୋଷ ଦୁର୍ବଳତା ଓ ଅନ୍ୟ ପ୍ରତି ପ୍ରତିହିଂସା ବିଦ୍ୱେଷଗତ ଚିନ୍ତାଧାରାର ମହାଜାଗତିକ ମାନସିକ ଉତ୍କ୍ଷେପଣ ମାତ୍ର ।

ସେହିପରି ମଧ୍ୟଯୁଗୀୟ କ୍ରୀତଦାସ ପ୍ରପୀଡ଼ିତ ଆଦିବାସୀ ସଂପ୍ରଦାୟ ଭିତରେ ଭ୍ରାତୃଭାବ, ମାନବୋଚିତ ସୌହାର୍ଦ୍ଦ୍ୟ ଉପରେ ପ୍ରତିଷ୍ଠିତ ଇସଲାମବାଦ ବର୍ତ୍ତମାନ ଅନ୍ୟ ଧର୍ମାବଲମ୍ବୀକୁ କାଫେର କହି ବା ଧର୍ମଯୁଦ୍ଧରେ ଲକ୍ଷ ଲକ୍ଷ ଲୋକଙ୍କୁ ମାରିବାରେ ସେମାନଙ୍କର ସ୍ୱର୍ଗପ୍ରାପ୍ତି ବୋଲି ଧରିନିଆଯାଉଛି । ତୁମ ସହିତ ଏକମତ ନ ହେଉଥିବା ଲୋକଙ୍କୁ ମାରିପାରିଲେ ତୁମର ସ୍ୱର୍ଗପ୍ରାପ୍ତି ନିଶ୍ଚିତ ବୋଲି ଧର୍ମୀୟ ବିଶ୍ୱାସ ଯୋଗୁ ବର୍ତ୍ତମାନ ପୃଥିବୀରେ ଯେତେକ ଆତଙ୍କବାଦୀ ଅଛନ୍ତି ସେମାନେ ସମସ୍ତେ ମୁସଲମାନ ସଂପ୍ରଦାୟର ଜିହାଦ୍ ମତାବଲମ୍ବୀ । ଅନ୍ୟ ଧର୍ମର ନିରୀହ ସ୍ତ୍ରୀ ପିଲାଙ୍କୁ ମାରିଦେବା ପରେ ମଧ୍ୟ ଏମାନଙ୍କର ସ୍ୱର୍ଗପ୍ରାପ୍ତି । ସ୍ତ୍ରୀମାନଙ୍କୁ ପର୍ଦ୍ଦା ଭିତରେ ରଖି ବହୁ ସ୍ତ୍ରୀ ବିବାହ କରିବା ହେଉଛି ଧର୍ମ ପରାୟଣତାର ଚରମ ଉପଲବ୍ଧି ।

ସେହିପରି ଖ୍ରୀଷ୍ଟିୟାନ୍ ଧର୍ମ ପରି ମାନବବାଦୀ ଧର୍ମ ମଧ୍ୟ ବିଶ୍ୱାସ କରେ ଯେ ଧର୍ମଯୁଦ୍ଧ ନାଁରେ ବିପରୀତମାର୍ଗୀ ଖ୍ରୀଷ୍ଟିୟାନମାନଙ୍କୁ ନିଧନ କରିବାରେ ଏମାନଙ୍କର ସ୍ୱର୍ଗପ୍ରାପ୍ତି । ଯେଉଁ ଧର୍ମଶାସ୍ତ୍ରରେ ଜଣେ ତୁମକୁ ଚାପଡ଼ାଏ ମାରିଲେ ତୁମେ ଅନ୍ୟ ଗାଲକୁ ଦେଖାଇ ଦେବାର ମାନବିକ କ୍ଷମାସୁନ୍ଦର ଦର୍ଶନ ପ୍ରତିପାଦିତ ହୋଇଛି– ସେହି ଧର୍ମାବଲମ୍ବୀମାନେ ପୃଥିବୀର ବିଭିନ୍ନ ଦେଶରେ ଗତ କେତେ ଶହ ବର୍ଷ ଧରି ଭୟଙ୍କର ଅତ୍ୟାଚାର କରି ଚାଲିଛନ୍ତି । ଏହି ଶତାବ୍ଦୀରେ ଦୁଇଟି ଭୟଙ୍କର ବିଶ୍ୱଯୁଦ୍ଧର ସୃଷ୍ଟିକାରୀ ହେଉଛନ୍ତି ଏହି ଖ୍ରୀଷ୍ଟ ଧର୍ମାବଲମ୍ବୀମାନେ । ରୋମାନ କାଥଲିକ୍ ଧର୍ମାବଲମ୍ବୀ ଥିଲେ ହିଟଲର । ସେ ପ୍ରତ୍ୟେକ ରବିବାର ଦିନ ଚର୍ଚ୍ଚ ଯାଉଥିଲେ; କିନ୍ତୁ ସେ ହିଁ ଷାଠିଏ ଲକ୍ଷ ଜୀଉମାନଙ୍କୁ ଅତି ନିଷ୍ଠୁର ଭାବରେ ଗ୍ୟାସ କୋଠି ଭିତରେ ପୂରାଇ ବଧ କରିଥିଲେ । ପୃଥିବୀର ଅନ୍ୟ ଖ୍ରୀଷ୍ଟିୟାନ ଦେଶମାନେ ଏହା ଦେଖୁଥିଲେ । ବର୍ତ୍ତମାନ ସଭ୍ୟତା ଓ ସଂସ୍କୃତିର ଶୀର୍ଷ ଦେଶରେ ଥିବା ଯୁକ୍ତରାଷ୍ଟ୍ର ଆମେରିକା ବିନା କାରଣରେ ଦ୍ୱିତୀୟ ମହାଯୁଦ୍ଧ ସରିଆସିଥିବା ବେଳେ, ଜାପାନ ସନ୍ଧି ପାଇଁ ପ୍ରସ୍ତାବ ଦେଇସାରିଥିଲା ବେଳେ କେବଳ ନିଜର ସାମରିକ ଶକ୍ତି ସାମର୍ଥ୍ୟ ଦେଖାଇ ପୃଥିବୀକୁ କବଳିତ କରିବା ପାଇଁ ହିରୋସୀମା ନାଗାସାକିରେ ଦୁଇଟି ପରମାଣୁ ବୋମା ନିକ୍ଷେପ କରି ଲକ୍ଷ ଲକ୍ଷ ଲୋକଙ୍କୁ ମୃତ୍ୟୁ ମୁଖରେ ପକାଇ ଦେଇଥିଲା । ବର୍ଷ ବର୍ଷ ଧରି ଅଗଣିତ ଲୋକ ଏହାର ତେଜସ୍କ୍ରିୟ ପ୍ରଭାବରୁ ରୋଗଗ୍ରସ୍ତ ହୋଇପଡ଼ିଲେ । ବର୍ତ୍ତମାନ ମଧ୍ୟ ଇରାକ୍ ପରି ଦେଶରେ କେବଳ ନିଜର ପ୍ରଭୁତ୍ୱ ଜାରି ପାଇଁ ଲକ୍ଷ ଲକ୍ଷ ପିଲାଙ୍କୁ ମୃତ୍ୟୁମୁଖରେ ଛାଡ଼ି ଦିଆଯାଉଛି- ଏମାନେ ସବୁ ଯୀଶୁ ଖ୍ରୀଷ୍ଟଙ୍କର ଭକ୍ତ । ରବିବାର ଦିନ ଚର୍ଚ୍ଚରେ ଯୀଶୁ ଖ୍ରୀଷ୍ଟଙ୍କୁ ଏମାନେ ପ୍ରାର୍ଥନା କରନ୍ତି, ଅଥଚ ସେହିଦିନ ହିଁ ଚର୍ଚ୍ଚରୁ ଯାଇ ପରମାଣୁ ବୋମା ପକାନ୍ତି ।

ଧର୍ମର ଏ ପ୍ରକାରର ଅମାନବୀୟ ବ୍ୟବହାର ଯୋଗୁ ମୋ ମତରେ ଯୁଗ ଯୁଗ ଧରି ଧର୍ମ ହିଁ ପୃଥିବୀର ନିରୀହ ଲୋକଙ୍କ ଉପରେ ଅତ୍ୟାଚାର କରି ଆସୁଛି । ଏହି ଧର୍ମାବଲମ୍ବୀମାନଙ୍କ ଅନୁସାରେ ଭଗବାନ ଏଥିରେ ସନ୍ତୁଷ୍ଟ ହେଉଛନ୍ତି ବୋଲି ଏ ପ୍ରକାର ଭୟଙ୍କର ଧାରଣା ଯୋଗୁ ଯେ କି ପ୍ରକାର ଭଗବାନ ପୃଥିବୀରେ ସୃଷ୍ଟି ହୋଇଚାଲିଛନ୍ତି, ତାହା ସହଜରେ ଅନୁମେୟ । ମୋ ମତରେ ଧର୍ମ ନାମରେ, ଭଗବାନ ନାମରେ ମନୁଷ୍ୟର ପାଶବିକ ପ୍ରବୃତ୍ତିକୁ କେବଳ ଏମାନେ ପବିତ୍ରୀକରଣ କରି ଚାଲିଛନ୍ତି । ନିଜ ବିବେକର ଧର୍ମୀୟ ଅନୁମୋଦନ ଲାଗି କେବଳ ଏ ପ୍ରକାର ଭାଣ୍ଡାମି ଯୁଗ ଯୁଗ ଧରି ଚାଲିଆସିଛି । ତେଣୁ ଧର୍ମ ବିରୁଦ୍ଧରେ ଆପୋଷହୀନ ଅଭିଯାନ କରିବା ମୋର ମାନବୀୟ ଦର୍ଶନର ଚରମ ଉପଲବ୍ଧି ବୋଲି ମୋର ଦୃଢ଼ ଧାରଣା ।

ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ନିର୍ବିଶେଷରେ ମନୁଷ୍ୟକୁ ଭଲ ପାଇବା ନୀତିଠାରୁ ଆଉ କୌଣସି ଧର୍ମ ଏହି ପରିପ୍ରେକ୍ଷୀରେ ଅନୁସରଣୀୟ ନୁହେଁ ବୋଲି ମୋର ବିଶ୍ୱାସ । ଏହି ଗୋଟିଏ ବଦ୍ଧମୂଳ ବିଶ୍ୱାସ ଯୋଗୁ ଅନେକ ଅବାନ୍ତର କୁସଂସ୍କାରରୁ ମୁଁ ମୁକ୍ତ । ଥରେ ତଥାକଥିତ ପ୍ରଚଳିତ ଧର୍ମଧାରାରୁ ବିଚ୍ୟୁତ ହେଲେ ଅନେକ ପ୍ରକାରର କୁସଂସ୍କାର ଆପେ ଆପେ ଅପସରିଯିବ । ଫଳରେ ମୋ ପ୍ରଭାବରେ ଆମ ଘରେ ପ୍ରାୟ ସମସ୍ତେ ଅଧିକାଂଶ କୁସଂସ୍କାରରୁ ମୁକ୍ତ ହୋଇପାରିଛନ୍ତି । ଦିନ, ବାର, ତିଥି ଅନୁସାରେ ଉପବାସ, ନିରାମିଷ ଖାଦ୍ୟ ଭକ୍ଷଣ ଇତ୍ୟାଦି କୁସଂସ୍କାର ଅତ୍ୟନ୍ତ ଅବାନ୍ତର ବୋଲି ଆମେମାନେ ଭାବୁ । ଜାତକ ମଧ୍ୟ ଏହିପରି ଗୋଟିଏ

କୁସଂସ୍କାର ବୋଲି ଆମର ଧାରଣା । ତେଣୁ ଆମ ପିଲାଙ୍କର ଜାତକ ନାହିଁ । ଏପରି ଅନ୍ଧବିଶ୍ୱାସ ନଥିବା ଲୋକଙ୍କ ସହିତ ଆମର ବନ୍ଧୁତା ଗଢ଼ି ଉଠିବା ସ୍ୱାଭାବିକ ।

ପିଲାଦିନେ ମୋର ପାରିବାରିକ ବିଶ୍ୱାସ ଅନୁସାରେ ମୁଁ ମଧ ଈଶ୍ୱର ବିଶ୍ୱାସୀ ଥିଲି । ଏ ବିଷୟରେ ବୌଦ୍ଧିକ ସନ୍ଦେହ ଯୋଗୁହିଁ ମୁଁ ବି.ଏ., ଏମ୍.ଏ.ରେ ଦର୍ଶନଶାସ୍ତ୍ର ପଢ଼ିଲି- ବହୁ ଧର୍ମୀୟ ଗ୍ରନ୍ଥ ଓ ଧର୍ମଗତ ଦର୍ଶନ ବିଷୟରେ ବହୁ ତର୍କବିତର୍କ ଓ ଆଲୋଚନା ମାଧମରେ ମୁଁ ନାସ୍ତିକ ହେଲି ଏବଂ କ୍ରମେ ବିଶ୍ୱ ମାନବିକତାରେ ମୋର ଆସ୍ଥା ବଳବତ୍ତର ହେବାକୁ ଲାଗିଲା । ଧର୍ମଗ୍ରନ୍ଥରେ ଥିବା ମୂଳ କଥାମାନ ମାନବବାଦୀ; କିନ୍ତୁ କେବଳ ମୌଳିକ ଧର୍ମଗ୍ରନ୍ଥ ଅନୁସାରେ କେହି ପ୍ରାୟ ଧର୍ମ ଆଚରଣ କରନ୍ତି ନାହିଁ । ପ୍ରକୃତ ଧର୍ମାଚରଣ କରୁଥିବା ଲୋକମାନଙ୍କଠାରେ ଯେ ପ୍ରକାର ବ୍ୟବହାର ଦେଖାଯାଏ, ତାହାହିଁ ମୋ ମତରେ ଧର୍ମ । ଯେକୌଣସି ଲୋକ ବହୁତ ବଡ଼ ବଡ଼ ଉପଦେଶବାଣୀ ଲେଖି ଦେଇପାରିବ, କିନ୍ତୁ ସେସବୁ ଆଚରଣରେ ଯଦି ପ୍ରତିଫଳିତ ନ ହେଲା, ତାହା ହେଲେ ତାକୁ ମାନବୀୟ ଧର୍ମ ବୋଲି କୁହାଯାଇପାରିବ ନାହିଁ ।

ଏହି ପରିପ୍ରେକ୍ଷୀରେ ମୋତେ ବୁଦ୍ଧଙ୍କର ଚରିତ୍ର ତଥା ତାଙ୍କର ମାନବୀୟ ଉପଦେଶାବଳୀ ବହୁତ ପ୍ରେରଣା ଦିଏ । ଅଧିକାଂଶ ଧର୍ମ ପ୍ରଚାରକମାନେ ରାଜା ମହାରାଜାଙ୍କ ଆଶ୍ରୟ ନେଇ ଥାଆନ୍ତି । କେବଳ ବୁଦ୍ଧ ହିଁ ରାଜପରିବାରକୁ ଛାଡ଼ି ଗ୍ରାମ ବା ସହରରେ ଧନୀ ଲୋକଙ୍କର ଆଶ୍ରୟ ନ ନେଇ ଗଛମୂଳେ ବସି ଯେଉଁ ମାନବବାଦୀ ଧର୍ମ ପ୍ରଚାର କରିଗଲେ, ତାହା ମୋତେ ଆକର୍ଷଣ କରେ । ଅନ୍ୟ ଧର୍ମାବଲମ୍ବୀମାନେ ତ ସିଧାସଳଖ ଭଗବାନଙ୍କ ପାଖକୁ ଯିବା ଏବଂ ତାଙ୍କ ସହିତ ଲୀନ ହୋଇଯିବା ଲାଗି ଅହରହ ତପସ୍ୟାରତ ହୋଇଥାଆନ୍ତି । ବୁଦ୍ଧ ଏକମାତ୍ର ଧର୍ମ ପ୍ରଚାରକ ଯେ କି ସେ ନିଜେ ବୋଧିସତ୍ତ୍ୱ ଅର୍ଥାତ୍ ପରମ ନିର୍ବାଣର ଅଧିକାରୀ ହୋଇ ମଧ ସେ ତାହା ଗ୍ରହଣ କଲେ ନାହିଁ । ସମସ୍ତ ମାନବ ସମାଜକୁ ଓ ସମସ୍ତ ଜୀବଜଗତକୁ ସେହି ନିର୍ବାଣ ସ୍ତରକୁ ନ ନେଲାଯାଏଁ ସେ ବାରମ୍ବାର ଜନ୍ମଗ୍ରହଣ କରି ସେମାନଙ୍କ ସେବାରେ ହିଁ ଲାଗି ରହିବେ ବୋଲି ଯେଉଁ ବିରାଟ କରୁଣାୟିତ ବାଣୀ ପ୍ରଚାର କଲେ, ତାହା ମାନବୀୟ ଦର୍ଶନର ଗୋଟିଏ ବଳିଷ୍ଠ ମାଇଲ ଖୁଣ୍ଟି ହୋଇ ମନୁଷ୍ୟ ସଭ୍ୟତାରେ ରହିଯାଇଛି ।

ବିଂଶ ଶତାବ୍ଦୀର ଅମାନୁଷିକ ଉପଭୋକ୍ତାବାଦୀ ମନୁଷ୍ୟ ସଭ୍ୟତାର ପାରମାଣବିକ ଧ୍ୱଂସମୁଖୀ ଅନ୍ତିମ ପର୍ଯ୍ୟାୟରେ ବୁଦ୍ଧଙ୍କର କରୁଣାୟିତ ବିଶ୍ୱ ମାନବୀୟତା ବିଷୟରେ ବର୍ତ୍ତମାନ ପୃଥିବୀର ଚିନ୍ତାଶୀଳ ବ୍ୟକ୍ତିମାନେ ଆଲୋଡ଼ନ ଆରମ୍ଭ କରିଛନ୍ତି । ପାଶ୍ଚାତ୍ୟ ଦେଶର ବହୁ ବିଶ୍ୱବିଦ୍ୟାଳୟରେ ଏହାର ଆଲୋଚନା ହେଉଛି । ଅବଶ୍ୟ ମଧ୍ୟଯୁଗୀୟ ସଭ୍ୟତା ଭିତରେ ଭାରତ ରହିଯାଇଥିବା ଯୋଗୁ ଏହାର ପାଞ୍ଚହଜାର ବର୍ଷର ଏ ପ୍ରକାର ବିରାଟ ମାନବୀୟ ଐତିହ୍ୟ ବିଷୟରେ ଲୋକେ ସଚେତନ ଥିଲା ପରି ମନେହୁଏ ନାହିଁ । ମହାତ୍ମା ଗାନ୍ଧୀ ଏ ପ୍ରକାର ଚିନ୍ତାଧାରାର ସୂତ୍ରପାତ କରିଥିବା ଯୋଗୁ ତାଙ୍କର ଦାୟାଦମାନେ ତାଙ୍କୁ ଜୀବନରେ ମାରିଦେଲେ । ଯେଉଁମାନେ ମାନବବାଦୀ ଯୀଶୁଙ୍କୁ କ୍ରୁଶବିଦ୍ଧ କରିଥିଲେ ସେହିପରି ଲୋକେ ହିଁ ମହାତ୍ମା ଗାନ୍ଧୀଙ୍କୁ ଗୁଳି କରି ମାରିଦେଲେ । ତେଣୁ ଏମାନଙ୍କର ବଂଶଧରମାନେ ହିଁ ମାନବ ବିରୋଧୀ ଧର୍ମମାନ ପ୍ରଚାର କରି ଚାଲିଛନ୍ତି ବୋଲି ମୋର ଦୃଢ଼ ବିଶ୍ୱାସ । ତେଣୁ ମୁଁ ନାସ୍ତିକ । ଭୂତରେ କିମ୍ବା ଭଗବାନରେ ମୋର ବିଶ୍ୱାସ ନାହିଁ ।

■■■

# ୧୧

# ଆଚରଣର ଫଳପ୍ରଦ ରୀତି

ଆଚରଣରେ ନାନାବିଧ ବୈଶିଷ୍ଟ୍ୟ ରହିଛି ଏବଂ ସେହି ଅନୁସାରେ କୌଣସି କାର୍ଯ୍ୟର ଫଳାଫଳ ନିର୍ଭର କରେ ବୋଲି ମୋର ବ୍ୟକ୍ତିଗତ ବିଶ୍ୱାସ ଏବଂ ଫଳପ୍ରଦ ଅନୁଭୂତି । ଆଚରଣର ଗୋଟିଏ ବିଶେଷ ଚରିତ୍ର ହେଲା ଆନ୍ତରିକତା । ଆନ୍ତରିକତା ନଥାଇ ଲୋକେ ବହୁତ କଥା କହନ୍ତି । କିନ୍ତୁ କ୍ରମେ ସେପରି କଥାରେ କୌଣସି ମୂଲ୍ୟ ନାହିଁ ବୋଲି ବହୁ ଲୋକଙ୍କର ଧାରଣା ହୁଏ ।

ଜଣେ ଯାହା କହେ, ତାହା ନ କଲେ ସେଥିରେ ତା'ର ଆନ୍ତରିକତାର ଅଭାବ ଥାଏ । ଆମ ଦେଶରେ ଅନେକେ ଅଛନ୍ତି ଯେଉଁମାନେ ତୁମକୁ ନାନା ଭାବରେ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦିଅନ୍ତି, କିନ୍ତୁ କାର୍ଯ୍ୟ କ୍ଷେତ୍ରରେ ତାହା କରନ୍ତି ନାହିଁ । ଏପରି ଲୋକଙ୍କର ସଂଖ୍ୟା ଆମ ଦେଶରେ ଅଧିକ । ତେଣୁ ସମାଜରେ ଏତେ ବିଭ୍ରାଟ ଏବଂ ଅବିଶ୍ୱାସର ବାତାବରଣ ଦେଖାଦେଇଛି ।

ମୁଁ ଯେଉଁମାନଙ୍କୁ ସାହାଯ୍ୟ କରିବା ପାଇଁ କହେ, ତାହା କରିବାରେ ଯଦି ମୋର ଅସାମର୍ଥ୍ୟ ଥାଏ ତାହାହେଲେ ମୁଁ କଥା ଦିଏ ନାହିଁ । ଯେତିକି କରିପାରିବି ସେତିକି ପାଇଁ କେବଳ ପ୍ରତିଶ୍ରୁତି ଦିଏ । କୌଣସି କଥା ମୋର ସାମର୍ଥ୍ୟର ବାହାରେ ଥିଲେ ମୁଁ ପ୍ରଥମରୁହିଁ ମନା କରିଦିଏ । ବଡ଼ ବଡ଼ ଲୋକଙ୍କୁ କହି କାମ କରାଇବା ମୋର ସାମର୍ଥ୍ୟ ବାହାରେ ବୋଲି ଲୋକେ ଜାଣନ୍ତି, ତେଣୁ ବହୁ ଲୋକ ଏପରି କଥା ନେଇ ମୋ ପାଖକୁ ଆସନ୍ତି ନାହିଁ ।

ଆଚରଣ ପ୍ରଣାଳୀର ଆଉ ଗୋଟିଏ ବିଶିଷ୍ଟ ଦିଗ ହେଲା ସମୟାନୁବର୍ତ୍ତିତା । ମୁଁ ଘଡ଼ି କଣ୍ଟା ଅନୁସାରେ ସଭା ସମିତିରେ ପହଞ୍ଚେ-ମୋର ବିଭାଗକୁ ଯାଏ ଏବଂ ଅନ୍ୟମାନଙ୍କୁ ମଧ୍ୟ ସେହି ଅନୁସାରେ ମୋତେ ଦେଖା କରିବାକୁ ସମୟ ଦେଇଥାଏ । ଆମ ଦେଶରେ ସମୟାନୁବର୍ତ୍ତିତାର ଏତେ ବେଶି ଅଭାବ ଯେ ସଭା ହେବା ପାଇଁ ଦିଆ ହୋଇଥିବା ସମୟର ଘଣ୍ଟାଏ ଦି'ଘଣ୍ଟା ପରେ ସଭା ହୁଏ । ଫଳରେ ଠିକ୍ ସମୟରେ କେହି ଆସନ୍ତି ନାହିଁ । ସମସ୍ତେ ଧୀରେ ସୁସ୍ଥେ ଘଣ୍ଟାଏ ଭିତରେ ଆସନ୍ତି । ଯେ ଯେତେ ଉଚ୍ଚ ପଦାଧିକାରୀ ସେ

ସେତେ ଡେରିରେ ଆସେ । କାରଣ ଅତୀତର ରାଜା ରାଜୁଡ଼ା ଶ୍ରେଣୀର ଲୋକେ ବହୁ ଲୋକଙ୍କୁ ଅପେକ୍ଷାରେ ରଖିବା ଥିଲା ସାମନ୍ତବାଦୀ ସମାଜର ଗୋଟିଏ ସଂଭ୍ରାନ୍ତୀୟ ଆଚରଣ । କିନ୍ତୁ ଆଧୁନିକ ସମାଜରେ ତାହା ଯେ କେତେ ବେଶି କ୍ଷତିକର ତାହା ଆମେ ଆଦୌ ହୃଦୟଙ୍ଗମ କରିପାରିନାହୁଁ । ମୋ ମତରେ ଜଣେ ଯଦି ଠିକ୍ ସମୟ ଅନୁଯାୟୀ କାମ କରିପାରିବ ତାହାହେଲେ ସେ ଅନେକ ବିଭିନ୍ନ ଧରଣର କାମ କରିପାରିବ । ଯେଉଁମାନେ କହନ୍ତି ଯେ ସମୟ ଅଭାବରୁ କେତେକ କାମ କରି ହେଉନାହିଁ– ମୋ ମତରେ ଏହା ଭୁଲ୍ ଧାରଣା । ସେମାନେ ସମୟର ସଦୁପଯୋଗ କରିପାରୁନାହାନ୍ତି । ଅଳ୍ପ କିଛି କାମରେ ସାରାଦିନ ବିତାଇ ଦିଅନ୍ତି । କଥା କଥାରେ ଖାଲି ସମୟର ଅଭାବ କଥା କହନ୍ତି । ସେମାନେ ଯେତିକି ସମୟରେ ଗୋଟିଏ କାମ କରିପାରନ୍ତେ ତାକୁ ବିସ୍ତାରିତ କରିଚାଲନ୍ତି । ଆଜିକାଲି ତ ଅନେକ ମହିଳା ଘର କାମ କରି ପିଲାଙ୍କ କଥା ବୁଝି ଚାକିରି କରିପାରୁଛନ୍ତି ଅଥଚ ଖାଲି ଘରେ ରହିଥିବା ମହିଳାମାନେ ସମୟର ଅଭାବ କଥା କହନ୍ତି । ତେଣୁ କଥାରେ ଅଛି ଯେ ତୁମେ ଯଦି କୌଣସି କାମ କରାଇବା ପାଇଁ ଚାହଁ ତାହାହେଲେ ସବୁଠୁ ବେଶୀ କାର୍ଯ୍ୟ ବ୍ୟସ୍ତ ଥିବା ଲୋକ ପାଖକୁ ଯାଅ । ସେ ତାର ବହୁ କାମ ଭିତରେ ତୁମ ପାଇଁ ସମୟ କରିପାରିବ । ସମୟର ଏପରି ଅପଚୟରେ ମୋର ବିଶ୍ୱାସ ନାହିଁ । ମୁଁ ଅଳ୍ପ ସମୟରେ ନିର୍ଦ୍ଧାରିତ କାମ ସାରି ତାପରେ ହସଖୁସିରେ ମଧ୍ୟ ଅନେକ ସମୟ କଟାଇ ଦେଇପାରେ । ତେଣୁ ସମୟାନୁବର୍ତ୍ତିତା ଯୋଗୁ ମୁଁ ଅନେକ କାମ କରିପାରେ ଏବଂ ଏହା ମୋର ଆଚରଣଗତ ସ୍ୱଭାବରେ ପରିଣତ ହୋଇଯାଇଛି ।

ମୋର ଫଳପ୍ରଦ କାର୍ଯ୍ୟ ସଂପାଦନାର ଆଉ ଗୋଟିଏ ବୈଶିଷ୍ଟ୍ୟ ହେଲା ଯେ କୌଣସି କାର୍ଯ୍ୟ ମୁଁ ହାତକୁ ନିଏ ତାକୁ ନିୟମାନୁଗତ ଓ ସୁସଂଗଠିତ ଭାବରେ ଆଗେଇ ନିଏ । ତତ୍ ସଂପର୍କୀୟ ସମସ୍ତ କାଗଜପତ୍ରକୁ ସଜାଇ ରଖେ । ସମୟାନୁଯାୟୀ ତାର ବିଧିବଦ୍ଧ ସଂପାଦନା କରିବା ପାଇଁ ଉଦ୍ୟମ ଅବ୍ୟାହତ ରଖେ । ଫଳରେ ବହୁ କଷ୍ଟସାଧ କାର୍ଯ୍ୟକୁ ଆୟତ୍ତ କରିବାରେ ସୁବିଧା ହୁଏ । ଏହି ସୁସଂଯତ ରୀତି ଯୋଗୁ ହିଁ ସାତବର୍ଷ ଯୋଜନାନୁଯାୟୀ କଟକର ଦୁର୍ଗମ ଅଂଚଳରେ ମୋର ଘର ଶେଷ କରି ସାତବର୍ଷ ପୂରିବାର ମାସେ ପୂର୍ବରୁ ଆମର ଗୃହ ପ୍ରବେଶ ସଂଭବ ହେଲା । ସେହିପରି ଅନ୍ୟାନ୍ୟ ବହୁ କାମ ଏ ପ୍ରକାର ଯୋଜନାବଦ୍ଧ ଭାବରେ ମୁଁ କରିପାରିଥିଲି । ଏ ପ୍ରକାର କାର୍ଯ୍ୟ ପ୍ରଣାଳୀରେ ନିଜର ଦକ୍ଷତା ତଥା ଆତ୍ମବିଶ୍ୱାସ ବଢ଼ିଯାଏ । ମୋ ମତରେ ଯଦି ଏପରି ସୁସଂଗଠିତ ନିୟମାନୁବର୍ତ୍ତିତା ଅନୁଯାୟୀ କାର୍ଯ୍ୟ ସଂପାଦନାର ରୀତି ଅନୁଶୀଳନ କରାଯାଏ, ତାହାହେଲେ କାମ କରିବାର ଦକ୍ଷତା ତଥା ଆତ୍ମବିଶ୍ୱାସ ବଢ଼ିଯାଏ ଏବଂ ତାହା କ୍ରମେ ଅଭ୍ୟାସଗତ ହୋଇଯାଏ ।

■■■

# ୧୨

# କଳ୍ପନା ଓ ସ୍ୱପ୍ନର ବାସ୍ତବାୟନ

ଆମ ଶାସ୍ତ୍ରମାନଙ୍କରେ ରହିଛି ଯେ ଭଗବାନଙ୍କର କଳ୍ପନା ଏବଂ ଇଚ୍ଛା ଶକ୍ତିରୁ ଏ ବିଶ୍ୱ ସୃଷ୍ଟି ହୋଇଛି । ସବୁଧର୍ମ ଏହି ମୌଳିକ ତଥ୍ୟ ଉପରେ ପର୍ଯ୍ୟବସିତ । ବ୍ରହ୍ମା ସୃଷ୍ଟି କଲେ ପ୍ରଥମେ ମଣିଷକୁ ତାପରେ ସେମାନଙ୍କର ଲାଳନ ପାଳନ କାର୍ଯ୍ୟ ସୁରୁଖୁରୁରେ ସମାଧାନ ହୋଇଆସୁଛି । ଖ୍ରୀଷ୍ଟିଆନଙ୍କ ମତରେ ଭଗବାନ ଚାହିଁଲାକ୍ଷଣି ଆଲୁଅ ସୃଷ୍ଟି ହେଲା- ସେହିପରି ପ୍ରଥମ ମଣିଷ ଆଦାମ ଏବଂ ଇଭ୍ । ଅର୍ଥାତ୍ ଭଗବାନଙ୍କର କଳ୍ପନା ଏବଂ ଇଚ୍ଛା ମତେ ଏ ଜଗତ ଆତଯାତ ହେଉଛି ।

ଏହାର ସତ୍ୟତା ବର୍ତ୍ତମାନର ପ୍ରଚଳିତ ବିବର୍ତ୍ତନଶୀଳ ବିଶ୍ୱ ଏବଂ ଜୀବଜଗତର କ୍ରମ ବିକାଶମୂଳକ ତଥ୍ୟର ସଂପୂର୍ଣ୍ଣ ପରିପନ୍ଥୀ ହେଲେ ମଧ୍ୟ କେବଳ ମନୁଷ୍ୟର କଳ୍ପନା ଏବଂ ସ୍ୱପ୍ନ ଅନୁସାରେ ପୃଥିବୀ ଯେ ଦ୍ରୁତ ବଦଳି ବଦଳି ଚାଲିଛି, ଏଥିରେ ସଂଦେହ ନାହିଁ । ମନୁଷ୍ୟର ଆବିର୍ଭାବ ଦିନଠାରୁ ବିଶ୍ୱଜଗତରେ ଅଭୂତପୂର୍ବ ପରିବର୍ତ୍ତନ ହୋଇଚାଲିଛି- ବଡ଼ ବଡ଼ ସହରମାନ ଗଢ଼ିଉଠିଛି ।  ନଦ ନଦୀ ମନୁଷ୍ୟ ଇଚ୍ଛାରେ ନିୟନ୍ତ୍ରିତ । ଏହିପରି ବର୍ତ୍ତମାନ ପୃଥିବୀର ସମସ୍ତ ପରିବର୍ତ୍ତନ ତା'ର କଳ୍ପନା ଏବଂ ସ୍ୱପ୍ନରୁ ହିଁ ଉଦ୍ଭୂତ ।

ପ୍ରଥମେ ମନୁଷ୍ୟ କଳ୍ପନା କରେ, ତାପରେ ସେହି ଅନୁସାରେ କାମ କରିଯାଏ । କେତେକ ସେମାନଙ୍କର ସମସ୍ତ କଳ୍ପିତ ସ୍ୱପ୍ନକୁ ବାସ୍ତବାୟିତ କରିପାରନ୍ତି ତ ଆଉ କେତେକ ହୁଏତ ଏଥିରେ ଆଂଶିକ ସଫଳ ହୁଅନ୍ତି । ପିଲାବେଳୁ ମଣିଷ କଳ୍ପନା କରେ— ସ୍ୱପ୍ନ ଦେଖେ । ବାଲିଘର ଗଢ଼େ, ଭାଙ୍ଗେ, ପୁଣି ତିଆରି କରେ । ପୁଅଝିଅମାନେ ପିଲାଦିନେ ସଂସାର କରିବାର କଳ୍ପନା କରନ୍ତି । ତେଣୁ କଳ୍ପନାକୁ ସବୁବେଳେ ଉତ୍ସାହିତ କରିବା ଉଚିତ ।

ପିଲାଦିନେ ମୋର ପରିବାର ଗରିବ ଥିଲେ । କିନ୍ତୁ କେଜାଣି କାହିଁକି ମୁଁ କଳ୍ପନା କରୁଥିଲି କିପରି ବଡ଼ ଘର କରିବି, ଗଛ ଲଗାଇବି, ବଗିଚା କରିବି । ଯେତିକି ବଡ଼ ହେଲି ସେତିକି ଏହି ସ୍ୱପ୍ନ ମାର୍ଜିତ ହୋଇଚାଲିଲା । ଭଲ ଘର ଏବଂ ତା ସହିତ ପୂର୍ବ କାଳର ତପୋବନ ପରି ବଗିଚା, ହଂସ ପହଁରୁଥିବା ପୋଖରୀ- ତା ଉପରେ ଡଙ୍ଗାରେ ମୁଁ ଭାସୁଥିବି ଇତ୍ୟାଦି ବହୁ କଳ୍ପନା । ଦେଶ ବିଦେଶ ବୁଲିବି- ନାନା ଲୋକଙ୍କ ସହିତ ମିଶିବି- ବହୁ ବହି

ପଢ଼ିବି । ଏସବୁ ସ୍ୱପ୍ନ ସେତେବେଳେ ଅବାନ୍ତର ବୋଲି ମନେ ହେଉଥିଲେ ମଧ୍ୟ କ୍ରମେ ଅଧିକାଂଶ ସ୍ୱପ୍ନ ବାସ୍ତବରେ ପରିଣତ ହୋଇପାରିଲା । କଟକର ଦୁର୍ଗମ ଅଂଚଳରେ ବଡ଼ ଯାଗା ନେଇ ଏହି ସ୍ୱପ୍ନକୁ ବାସ୍ତବରେ ପରିଣତ କଲି । ନାନା ଧରଣର ଉଦ୍ୟମ ଫଳରେ ନିଜକୁ ତିଆରି କରିବାର ଯୋଜନା କଲି । ବିଶ୍ୱ ଭ୍ରମଣର ନାନା ପ୍ରକାରର ସୁଯୋଗ ସୃଷ୍ଟି କଲି- ନିଜ ହାତରୁ କୌଣସି ଖର୍ଚ୍ଚ ନ କରି ମଧ୍ୟ ବହୁ ଦେଶ ଭ୍ରମଣର ସୁବିଧା ପାଇଲି ।

ଏସବୁ ଯଦି ମୋର କଳ୍ପନାରେ ପ୍ରଥମରୁ ନଥାନ୍ତା, ତାହାହେଲେ ତ ସେଥିପାଇଁ କୌଣସି ପ୍ରସ୍ତୁତି କିମ୍ବା ସେଥିପାଇଁ ଫଳପ୍ରଦ ଯୋଜନା ମଧ୍ୟ ସଂଭବ ହୋଇନଥାନ୍ତା । ଉଦାହରଣସ୍ୱରୂପ ମନସ୍ତତ୍ତ୍ୱ ପଢ଼ିବାର ଇଚ୍ଛା– ତେଣୁ ହାତରୁ ପଇସା ଖର୍ଚ୍ଚ କରି ଚାକିରିରୁ ଛୁଟି ନେଇ କଲିକତା ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗରେ ଯାଇ ଚାରିମାସ ସ୍ୱତନ୍ତ୍ର ଛାତ୍ର ହିସାବରେ ଯୋଗ ଦେଲି । ତାହା ଭବିଷ୍ୟତରେ ମୋତେ ଇଂଲଣ୍ଡ ଯିବା ପାଇଁ ସାହାଯ୍ୟ କଲା । ସେହିପରି ରାତିସାରା କାଠଯୋଡ଼ୀ ବାଲିରେ ବୁଲି ବୁଲି ସ୍ୱପ୍ନ ଦେଖେ-ସେହି ସ୍ୱପ୍ନ ଅନୁସାରେ ପାଟନା କଲେଜର ପ୍ରିନ୍ସିପାଲଙ୍କ ପାଖକୁ ବି.ଏ. ପଢ଼ିବା ପାଇଁ ଏବଂ ପରେ ଲଣ୍ଡନ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱ ବିଭାଗକୁ ଚିଠି ଲେଖିଲି ଡକ୍ଟରେଟ କରିବା ପାଇଁ । ତାର ଫଳ ମୋତେ ମିଳିଲା । ମନସ୍ତତ୍ତ୍ୱ ପାଇଁ କୌଣସି ବୃତ୍ତି ନ ଥାଇ କିମ୍ବା ଏଥିପାଇଁ କୌଣସି ବିଜ୍ଞାପନ ନ ଥାଇ ମଧ୍ୟ ମୁଁ ଏ ପ୍ରକାର ସ୍ୱପ୍ନର ବଶୀଭୂତ ହୋଇ ମନସ୍ତତ୍ତ୍ୱରେ ବିଲାତ ଯିବା ପାଇଁ ଦରଖାସ୍ତ କଲି । ତାହା ମଧ୍ୟ ଫଳବତୀ ହେଲା ।

ଏହିପରି ବହୁ ଉଦାହରଣ ମୋ ଜୀବନରୁ ଦିଆଯାଇପାରେ ଯାହାକି ପ୍ରଥମେ କଳ୍ପନା ରାଜ୍ୟରେ ସ୍ୱପ୍ନ ଦେଖୁଥିଲି ଏବଂ ପରେ ଅଧିକାଂଶ ଇଚ୍ଛା ମୋର ଫଳବତୀ ହୋଇପାରିଛି- ଏହା ମୋ ଜୀବନର ଯଥାଯଥ କୃତକାର୍ଯ୍ୟତାର ପ୍ରଧାନ ମୂଳଭିତ୍ତି । ଭାବନାହିଁ କ୍ରମେ ବସ୍ତୁରେ ପରିଣତ ହୁଏ । ବସ୍ତୁ ତା ମନକୁ ସୃଷ୍ଟି ହୁଏନାହିଁ । ବର୍ତ୍ତମାନ ପୃଥିବୀର ଯେ କୌଣସି ମନୁଷ୍ୟକୃତ କାର୍ଯ୍ୟ ସେସବୁ ପ୍ରଥମେ ଭାବନା ବା କଳ୍ପନାରେ ହିଁ ଦେଖାଦେଇଥାଏ ।

ସବୁ କଳ୍ପନା ବା ସ୍ୱପ୍ନ ଯେ ବାସ୍ତବରେ ପରିଣତ ହୋଇଯିବ, ଏହା ଭାବିବା ଭୁଲ୍ । ବାସ୍ତବରେ ପରିଣତ ହେବା ପୂର୍ବରୁ ଏହା ଭାବନାରେ ଆଗ ସୃଷ୍ଟି ହୁଏ ଏବଂ ସେହି ଭାବନାନୁଯାୟୀ ପର୍ଯ୍ୟାୟ କ୍ରମେ କାର୍ଯ୍ୟ କରି କରି ଚାଲିବା ଦରକାର । ଗୋଟିଏ ବିରାଟ ସ୍ୱପ୍ନର ସାମାନ୍ୟ କିଛି ଅଂଶକୁ ପ୍ରଥମେ ବାସ୍ତବରେ ପରିଣତ କରିବା ପାଇଁ ଉଦ୍ୟମ ହେବା ଉଚିତ । ତାହା କାର୍ଯ୍ୟକାରୀ ହେଲା ପରେ ଆଗକୁ ଆଗକୁ ଅନ୍ୟାନ୍ୟ ପଦକ୍ଷେପ ଆଖି ଆଗରେ ଦେଖା ଦେବ । କିନ୍ତୁ ସେଥିପାଇଁ ଅହରହ ଉଦ୍ୟମ ଲାଗି ରହିବା ଉଚିତ । କିଛି କିଛି ଫଳପ୍ରଦ ପରିଣତି ଆଗର ବିରାଟ ସ୍ୱପ୍ନକୁ ବାସ୍ତବତା ଆଡ଼କୁ ଆଗେଇ ନେଇଚାଲେ ।

ଉଦାହରଣସ୍ୱରୂପ ମୁଁ ଭାରତରେ ଏପରି ଏକ ବିଷୟବସ୍ତୁ ମନୋବୈଜ୍ଞାନିକ ଗବେଷଣା ପାଇଁ ବାଛିଲି ଯାହା ଭାରତରେ କାହିଁକି ପୃଥିବୀର ଅନ୍ୟ ସ୍ଥାନରେ ମଧ୍ୟ ମନସ୍ତତ୍ତ୍ୱବିତ୍‌ଙ୍କର ଦୃଷ୍ଟି ଆକର୍ଷଣ କରିପାରିବ । ଏ ସଂପର୍କରେ ଆଗରୁ କୌଣସି ଗବେଷଣାଗତ କାର୍ଯ୍ୟ ନ ଥିବାରୁ ଏହା ମୋପାଇଁ କଷ୍ଟସାଧ୍ୟ ହେଲେ ମଧ୍ୟ ସେହି ଗୋଟିଏ ଦିଗରେ ଅନବରତ ଉଦ୍ୟମ ଅବ୍ୟାହତ ରଖିଲି । ଫଳରେ ଏହା ବହୁ ଲୋକଙ୍କର ଦୃଷ୍ଟି ଆକର୍ଷଣ କଲା- ସେହି ବିଷୟରେ ଆଲୋଚନା ପାଇଁ ମୋତେ ହନୋଲୁଲୁ ଯିବା ପାଇଁ ନିମନ୍ତ୍ରଣ ମିଳିଲା । ସେଠାରେ

ଯୁକ୍ତିତର୍କ ମାଧ୍ୟମରେ ମୁଁ ଅନ୍ୟ ଦେଶର ମନସ୍ତତ୍ତ୍ୱବିତ୍‌ମାନଙ୍କୁ ଏ କ୍ଷେତ୍ରରେ ନୂତନ ଆହ୍ୱାନ ଜଣାଇଲି । ତେଣୁ ହନୋଲୁଲଠାରୁ ମୁଁ ବାର୍କେଲେ, ସିକାଗୋ, ନିଉୟର୍କ ପ୍ରଭୃତି ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରଣ ପାଇଲି । ମୋର ବିଶ୍ୱଭ୍ରମଣ ପୁଣି ଥରେ ସଂଭବ ହେଲା ।

ମୁଁ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ ସଭାମାନଙ୍କରେ ବଳିଷ୍ଠ ଭାବରେ ମୋର ମତାମତ ଉପସ୍ଥାପିତ କରେ । ସେଥିଲାଗି ମୋର ଖ୍ୟାତି ବଢ଼ିଲା । ତେଣୁ ସମସ୍ୟା ବହୁଳ ବିଶ୍ୱବିଦ୍ୟାଳୟମାନଙ୍କର ଅନୁଦାନ ପାଇଁ ନିଯୁକ୍ତ ପରିଦର୍ଶକ ମଣ୍ଡଳୀରେ ମୁଁ ଯିବା ପାଇଁ ଘନ ଘନ ନିମନ୍ତ୍ରଣ ପାଇଲି । ସେହି ଅବସରରେ ଭାରତର ଅଧିକାଂଶ ବଡ଼ ବଡ଼ ବିଶ୍ୱବିଦ୍ୟାଳୟ ସହିତ ମୋର ଘନିଷ୍ଠ ପରିଚୟ ହେଲା । କଲିକତା ବିଶ୍ୱବିଦ୍ୟାଳୟ ଗୋଟିଏ ଜାତୀୟ ବିଶ୍ୱବିଦ୍ୟାଳୟ ଭାବରେ ଅନୁଦାନ କମିଶନଙ୍କ ଦ୍ୱାରା ଚିହ୍ନଟ କରିବା ନେଇ ଗୋଟିଏ ଉଚ୍ଚ କମିଟିରେ ମୁଁ ନିଯୁକ୍ତି ପାଇଥିଲି । କଲିକତାର ଅଧିକାଂଶ କଲେଜକୁ ଏହି ଅବସରରେ ଯିବାର ସୌଭାଗ୍ୟ ମୋର ହୋଇଥିଲା । ଏପରି ଭାବରେ ଭାରତର ସବୁ ବିଶ୍ୱବିଦ୍ୟାଳୟରେ ମୋର ଖ୍ୟାତି ବଢ଼ି ଚାଲିଲା-ସମସ୍ତେ ମତେ ଜାଣିଲେ- ମୋର ବନ୍ଧୁତା ପାଇଁ ଉଦ୍ୟମ କଲେ । କାରଣ ମୋ ଦ୍ୱାରା ବହୁତ କାମ ଅନୁଦାନ କମିଶନ କିମ୍ବା ଅନ୍ୟାନ୍ୟ ସର୍ବ ଭାରତୀୟ ସାମାଜିକ ଓ ଶିକ୍ଷାଗତ ଗବେଷଣା ଅନୁଷ୍ଠାନ ମାଧ୍ୟମରେ ସାଧିତ ହୋଇପାରିଲା । ଏହିସବୁ କାରଣରୁ ମୋର ମନସ୍ତତ୍ତ୍ୱ ବିଭାଗ ଭାରତର ପ୍ରଥମ ମନସ୍ତତ୍ତ୍ୱ ବିଭାଗ ଏବଂ ଓଡ଼ିଶାର ପ୍ରଥମ ଏବଂ ଶେଷ ଆଡ଼ଭାନ୍ସ ଶିକ୍ଷା ଓ ଗବେଷଣା କେନ୍ଦ୍ର ରୂପେ ବିବେଚିତ ହୋଇପାରିଲା । ଫଳରେ ଭାରତର ବିଶ୍ୱବିଦ୍ୟାଳୟମାନଙ୍କରେ ମୁଁ ନାନା ଭାବରେ ପରିଚିତ ହେଲି । ଭାରତର ବିଭିନ୍ନ ସ୍ଥାନ ବହୁଦିନ ଧରି ବୁଲି ଦେଖିଲି । କିନ୍ତୁ ଦୁର୍ଭାଗ୍ୟର ବିଷୟ, ଓଡ଼ିଶାରେ ମୋର ସେପରି ଖ୍ୟାତି ସଂଭବ ହେଲାନାହିଁ । ଓଡ଼ିଶାର ଲୋକେ କେବଳ ପୂର୍ବତନ କୁଳପତିଙ୍କୁ ଆଦର କରନ୍ତି- ଆଡ଼ଭାନ୍ସ କେନ୍ଦ୍ରର ସ୍ଥାପୟିତାଙ୍କୁ ନୁହେଁ । ଅବଶ୍ୟ କୁଳପତି ହେବା ପାଇଁ ମୋର କେବେହେଲେ ସ୍ୱପ୍ନ ନଥିଲା-ତେଣୁ ତା'ର ବାସ୍ତବାୟନ ନ ହେବା ସ୍ୱାଭାବିକ ।

ମୋଟାମୋଟି ଭାବରେ ସ୍ୱପ୍ନକୁ ବାସ୍ତବାୟନ କରିବା ପାଇଁ ଅସୀମ ଧୈର୍ଯ୍ୟ ଏବଂ ଅଦମ୍ୟ ପରିଶ୍ରମ ଏବଂ ଧାରାବାହିକ ପ୍ରସ୍ତୁତିର ଆବଶ୍ୟକତା ରହିଛି । ତା ନ ହେଲେ ସ୍ୱପ୍ନ ସ୍ୱପ୍ନରେ ହିଁ ଚିରକାଳ ରହିଯିବ । ଅବଶ୍ୟ ବହୁଲୋକ ଅଛନ୍ତି ସେମାନଙ୍କର ବାସ୍ତବ ଜୀବନ ଏପରି ସୀମିତ ଏବଂ ସେଥିଯୋଗୁ ସ୍ୱପ୍ନ ମଧ୍ୟ ଏପରି ଦୁର୍ବଳ ଯେ ସେମାନେ ସେହିପରି ସାରାଜୀବନ ରହିଯାଆନ୍ତି । ଅନେକ ସମୟରେ ଆମର ସାମାଜିକ ପରିସ୍ଥିତି ମଧ୍ୟ ବହୁ ଲୋକମାନଙ୍କୁ ସ୍ୱପ୍ନ ଦେଖିବାକୁ କୌଣସି ସୁଯୋଗ ଦିଏନାହିଁ । ଫଳରେ ସେମାନଙ୍କର ବାସ୍ତବ ଜୀବନ ମଧ୍ୟ ଅପ୍ରଶସ୍ତ ଭିତ୍ତିଭୂମି ଉପରେ ଯନ୍ତ୍ରବତ୍ ପରିଚାଳିତ ହୋଇଥାଏ । ଉଦାହରଣସ୍ୱରୂପ ଆମ ଦେଶର ଗାଁ' ଗଣ୍ଡାର ଲୋକମାନଙ୍କର କିମ୍ବା ସବୁ ଶ୍ରେଣୀୟ ଝିଅମାନଙ୍କର ସ୍ୱପ୍ନ ବହୁତ ସଂକୀର୍ଣ୍ଣ ହେବା ସ୍ୱାଭାବିକ । ସେମାନେ ସେମାନଙ୍କର ଛୋଟିଆ ଦୁନିଆ ଭିତରେ ଯେତିକି ସ୍ୱପ୍ନ ଦେଖିପାରନ୍ତି ସେତକ ଦେଖନ୍ତି । ସବୁ ଅନୁନ୍ନତ ସମାଜରେ ହିଁ ଏହା ଦେଖାଯାଏ । ଓଡ଼ିଶା ପରି ଅନୁନ୍ନତ ଦେଶରେ ଉପରକୁ ଉଠୁଥିବା ଲୋକଙ୍କ ପ୍ରତି ତଳେ ରହିଥିବା ଲୋକଙ୍କର ଗଭୀର ଅସହିଷ୍ଣୁତା ଏବଂ ଈର୍ଷା ସେମାନଙ୍କୁ ଉପରକୁ ଉଠିବା ପାଇଁ ଦିଏନାହିଁ । ଏ ବିଷୟରେ ମୁଁ ସଚେତନ ଥିବା ଯୋଗୁ ଓଡ଼ିଶାର କର୍ତ୍ତୃପକ୍ଷଙ୍କ

ସାହାଯ୍ୟରେ ମୋ ସ୍ୱପ୍ନକୁ ବାସ୍ତବାୟନ କରିବାର ଅଭିଳାଷ ମୋର ପ୍ରଥମରୁହିଁ ନଥିଲା - ତଥାପି ମଝି ମଝିରେ ସେମାନେ ଯେତେବେଳେ ଜାଣିପାରନ୍ତି ମୋର କୌଣସି ନିର୍ଦ୍ଦିଷ୍ଟ ଅଭ୍ୟୁତ୍‌ଥାନ ବିଷୟରେ, ସେମାନେ ଚେଷ୍ଟା କରନ୍ତି ମୋତେ ତଳକୁ ଖସାଇବା ପାଇଁ । କେତେକ କ୍ଷେତ୍ରରେ ସେମାନେ ସମର୍ଥ ମଧ୍ୟ ହୋଇଛନ୍ତି । ମୋର ନାମ ଦୁଇଥର ବିଶ୍ୱବିଦ୍ୟାଳୟ ମଂଜୁରୀ କମିଶନର ସଭ୍ୟ ହେବା ପାଇଁ ଉଠିଥିଲା ବେଳେ ଓଡ଼ିଆମାନେ ତାକୁ ବନ୍ଦ କରାଇ ଦେଇପାରିଥିଲେ । ଥରେ ମଧ୍ୟ ଏହି କମିଶନର ଚେୟାରମ୍ୟାନ କଥା ଦିଲ୍ଲୀରେ ଉଠିଥିଲା; କିନ୍ତୁ ତାହା କଥା କଥାରେ ହିଁ ରହିଗଲା । ସେହିପରି ମୋର କୁଳପତି ନ ହେବା ପାଇଁ କେତେକଙ୍କର ଅଦମ୍ୟ ଉଦ୍ୟମ ହେଲା । ଅଥଚ ବିହାର ବିଶ୍ୱବିଦ୍ୟାଳୟ ଓ ସିଲଂରେ ଥିବା ନେହୁ ବିଶ୍ୱବିଦ୍ୟାଳୟର କୁଳପତି ପଦ ପାଇଁ ମୋର ସମ୍ମତି ମଗା ହୋଇଥିଲା । ନାନା କାରଣରୁ ମୁଁ ସେଥିରେ ରାଜି ହୋଇନଥିଲି ।

ମୋ ମତରେ ସ୍ୱପ୍ନ ଦେଖିବାର ବୟସ ନାହିଁ । ମୁଁ ମୋର ପରିଣତ ବୟସରେ ମଧ୍ୟ ସ୍ୱପ୍ନ ଦେଖୁଛି- ସ୍ୱପ୍ନ ଦେଖୁଥିବା ଯୁବକ ଯୁବତୀମାନଙ୍କ ସହିତ ମିଶୁଛି, ସେମାନଙ୍କର ସ୍ୱପ୍ନ ସହିତ ସାମିଲ ହେବାରେ ମୋର ଅପାର ଆନନ୍ଦ । ମୋ ବୟସର ଅଧିକାଂଶ ଲୋକଙ୍କର ସ୍ୱପ୍ନ ମରିଯାଏ- କେବଳ ଅତୀତର ଦୁଃସ୍ୱପ୍ନ କିମ୍ବା ବର୍ତ୍ତମାନର ଅତି ଛୋଟ ଛୋଟ କଥାରେ ସେମାନଙ୍କର ସମୟ କଟେ । ଫଳରେ ସେମାନଙ୍କ ସହିତ ମୋର ବଂଧୁତା ହୋଇପାରେ ନାହିଁ । ମୋର ଘନିଷ୍ଠ ବନ୍ଧୁତା କେବଳ ସ୍ୱପ୍ନବିଳାସୀ କମ୍ ବୟସର ଲୋକଙ୍କ ସହିତ ସଂଭବ ହୁଏ । ସେମାନଙ୍କର ସ୍ୱପ୍ନ ମୋର ସ୍ୱପ୍ନକୁ ଦୃଢ଼ୀଭୂତ କରେ, ପ୍ରସାରିତ କରେ । ତେଣୁ ମୁଁ ରୋମାଞ୍ଚକର ଉପନ୍ୟାସ ଏହି ପରିଣତ ବୟସରେ ଲେଖେ । ଗଂଜାମର ପାହାଡ଼ ତଳେ ଗୋଟିଏ ନିରୋଳା ସ୍ଥାନରେ ଘର ତିଆରି କରି ସେଠାରେ ସ୍ୱପ୍ନ ଦେଖେ- ସଂଧ୍ୟାତାରାକୁ ଅନାଇ ଆନନ୍ଦ ପାଏ । ସଂଧ୍ୟାତାରା ଦେଶରେ ମୋର ପ୍ରତ୍ୟକ୍ଷାମାଣା ମାନସୀ କଥା ଭାବେ । ମୋ ମତରେ କଳ୍ପନା ଜଳ୍ପନା ଚିନ୍ତନ ପ୍ରକ୍ରିୟାକୁ ମଧ୍ୟ ତ୍ୱରାନ୍ୱିତ କରେ । ବୟସ ହେଲେ ଚିନ୍ତନ ପ୍ରକ୍ରିୟା ସାଧାରଣତଃ କମିଯିବାର ଦେଖାଯାଏ । କାରଣ ବୟସ୍କ ଲୋକେ ଏହାକୁ କମ୍ ପ୍ରୟୋଗ କରନ୍ତି । ବୌଦ୍ଧିକ ମନ୍ଥନ ଏବଂ ତାର ବ୍ୟବହାର ନ ହେବା ଯୋଗୁ ଏହା କ୍ରମେ ଯଥାଯଥ ବ୍ୟବହାର ଅଭାବରୁ ମାନ୍ଦା ହୋଇଯାଏ । ତେଣୁ ବୟସ ସହିତ ସମସ୍ତ ପ୍ରକାରର ମାନସିକ ପ୍ରକ୍ରିୟାକୁ ବଳିଷ୍ଠ ଭାବରେ ବ୍ୟବହାର କରିପାରିଲେ ଏହା କମିଯିବାର ସଂଭାବନା ନାହିଁ । ଅତୀତରେ ଆମର ପଣ୍ଡିତମାନେ ବାନପ୍ରସ୍ଥ ପରିଣତ ବୟସରେ ହିଁ ଅଧିକାଂଶ ବିରାଟ ଗ୍ରନ୍ଥମାନ ରଚନା କରିଯାଇଛନ୍ତି ।

ଅଧିକାଂଶ ସ୍ୱପ୍ନ ସାର୍ଥକ ହେବା ଯୋଗୁ ଆଉ ଗୋଟିଏ ସାମାଜିକ ସଂକଟ ଦେଖାଦିଏ । ତୁମର ବହୁ ପୁରୁଣା ବନ୍ଧୁ ଓ ସହଯୋଗୀ ମିତ୍ରମାନେ ତୁମଠାରୁ କ୍ରମେ ଦୂରେଇ ଯାଆନ୍ତି । ତୁମ ସହିତ ସେମାନେ ଆଉ ସ୍ୱାଭାବିକ ଭାବରେ ମିଶି ପାରନ୍ତି ନାହିଁ । କେତେକ ତୁମର ଶତ୍ରୁତା ମଧ୍ୟ କରନ୍ତି- ତୁମକୁ କୌଣସି ସମ୍ମାନ ଦେଖାଇବା ପରିବର୍ତ୍ତେ ହତାଦର କରନ୍ତି-ଅପମାନ ଦିଅନ୍ତି । ଉଦାହରଣସ୍ୱରୂପ ଭାରତରେ ମୋ ବିଭାଗ ମନସ୍ତତ୍ତ୍ୱରେ ପ୍ରଥମ ଅଗ୍ରଗାମୀ କେନ୍ଦ୍ର ରୂପେ ଘୋଷିତ ହୋଇ ପ୍ରଚୁର ଅର୍ଥର ଅଧିକାରୀ ହେଲା ଏବଂ ବିଭାଗର ପ୍ରତ୍ୟେକ କାର୍ଯ୍ୟ ପାଇଁ ଯଥେଷ୍ଟ ଅନୁଦାନ ମୁଁ ଆଣିପାରିଲି । ବିଭାଗରେ ବହୁ ଅଧିକ

ଲୋକ ସ୍ଥାନ ପାଇଲେ- ସେମାନଙ୍କର ପଦୋନ୍ନତି ଖୁବ୍‌ଶୀଘ୍ର ଶୀଘ୍ର ହେଲା, ତଥାପି ଏପରି ସବୁ ସୁବିଧା ଭୋଗ କରୁଥିବା କେତେକ ଲୋକ ମୋ ବିରୁଦ୍ଧରେ ଅନବରତ କାମ କରି ଚାଲିଲେ । ଏପରିକି ଜାତୀୟ ଜରୁରୀ ଶାସନ ବେଳେ ମୋତେ ହଟାଇବା ପାଇଁ କେତେକଙ୍କ ଦ୍ୱାରା ଉଦ୍ୟମ ମଧ୍ୟ ହୋଇଥିଲା । ମୋର ଅବସର ପରେ ମୋ ଦ୍ୱାରା ସୃଷ୍ଟ ଖେଳ ମାଧ୍ୟମ ସ୍କୁଲର ନୂତନ ଗୃହ ଉନ୍ମୋଚନ ଗଭର୍ଣ୍ଣର ଦ୍ୱାରା କରାହେଲା ଏବଂ ମୋତେ ସ୍କୁଲ ପାଖରେ ଛାଡ଼ିଦେଇ ସମସ୍ତେ ଗଭର୍ଣ୍ଣରଙ୍କୁ ଧରି ସଭାଗୃହକୁ ଚାଲିଗଲେ । ମୁଁ ସେଠାରୁ ଚାଲି ଚାଲି ପନ୍ଦର ମିନିଟ୍ ପରେ ଯାଇ ପହଞ୍ଚିଲି । ସେତେବେଳକୁ ସଭା କାର୍ଯ୍ୟ ଆରମ୍ଭ ହୋଇଯାଇଥିଲା ।

ଉଚ୍ଚସ୍ତରକୁ ଉଠିପାରିଥିବା ଲୋକମାନଙ୍କ ପ୍ରତି ଏ ପ୍ରକାର ହତାଦର, ଅନାଦାର ଦେଖା ଦେବାର ସଂଭାବନା ବେଶି । ଏଥିରେ ମୁଁ କ୍ଷୁବ୍ଧ ହୋଇନାହିଁ । କାରଣ ତୁମର ପୁରୁଣା ସହକର୍ମୀଙ୍କ ଦ୍ୱାରା ତୁମେ ଅପମାନିତ ହେଲେ ମଧ ତୁମର ସ୍ୱପ୍ନ ଅନୁଯାୟୀ କେତେକ ନୂତନ ବନ୍ଧୁ ମିଳିବାର ସମ୍ଭାବନା ମଧ ରହିଛି । ଉଦାହରଣସ୍ୱରୂପ ବର୍ତ୍ତମାନ ମୋର ଅନ୍ତରଙ୍ଗ ବନ୍ଧୁ କେତେଜଣ ଯୁବକଯୁବତୀ । ସେମାନଙ୍କ ଭିତରୁ ତରୁଣ ଲେଖକ ଓ ପ୍ରଖ୍ୟାତ ପ୍ରକାଶନୀ ସଂସ୍ଥା 'ଅକ୍ଷର'ର ନିର୍ଦ୍ଦେଶକ ଏବଂ ମୋ ପରି ସ୍ୱପ୍ନଭୁକ୍ ଶ୍ରୀଯୁକ୍ତ ଗିରିଜା କୁମାର ବଳୀୟାର ସିଂହ ଜଣେ । ତାଙ୍କର ପ୍ରେରଣା, ସାହାଯ୍ୟ ଯୋଗୁହିଁ ମୁଁ ବର୍ତ୍ତମାନ ଉପନ୍ୟାସ ଲେଖୁଛି । ତାଙ୍କ ପାଇଁ ହିଁ ମୁଁ ପ୍ରତିଦିନ ଅନ୍ତତଃ ଦୁଇ-ତିନିଘଣ୍ଟା ବସି ଲେଖେ । ସେ ସାଙ୍ଗେ ସାଙ୍ଗେ ତାକୁ ଛପାନ୍ତି-ମୁଁ ସେହିପରି ଲେଖିଚାଲିଥାଏ ।

ଏହିପରି ଭାବରେ ଶ୍ରୀମତୀ ପ୍ରତିମା ବିଶ୍ୱାଳ ଓ ତାଙ୍କ ସ୍ୱାମୀ ଶ୍ରୀଯୁକ୍ତ ପ୍ରଦୀପ୍ତ ମହାନ୍ତିଙ୍କର ଅଦମ୍ୟ ପରିଶ୍ରମ ଓ ଗଭୀର ନିଷ୍ଠା ଯୋଗୁ ମୋର ଖେଳ ମାଧମ ଶିଶୁ ଶିକ୍ଷା ସ୍ୱପ୍ନ ସାର୍ଥକ ହୋଇଚାଲିଛି ଏବଂ ତାହା କ୍ରମେ ଲୋକପ୍ରିୟ ହୋଇପାରୁଛି । ଏଥିଲାଗି ଆଜି ପର୍ଯ୍ୟନ୍ତ ତାଲିମପ୍ରାପ୍ତ ପ୍ରାୟ ତିନିଶହ ମହିଳା ଗ୍ରାଜୁଏଟ୍ ଏହାର ପ୍ରଚାର ଓ ପ୍ରସାର କାର୍ଯ୍ୟରେ ସାମିଲ ହୋଇଛନ୍ତି । ସେମାନଙ୍କୁ ଘଣ୍ଟା ଘଣ୍ଟା ଧରି ପଢ଼ାଇବାରେ ମୋର ଶିକ୍ଷାଦାନ ସ୍ୱପ୍ନ ଚରିତାର୍ଥ ହୋଇଚାଲିଛି ।

ଥରେ ସ୍ୱପ୍ନ ଦେଖିବାର ଉନ୍ମାଦନାର ଉଷ୍ଣତା ତୁମେ ଅନୁଭବ କଲେ ଏବଂ ବହୁ କ୍ଷେତ୍ରରେ ଏଥିରେ ସଫଳକାମ ହେଲେ ତୁମର ସ୍ୱପ୍ନ ଦେଖିବାର ଅଭ୍ୟାସ ବଢ଼ି ବଢ଼ିଯିବ ସିନା ବୟସ ଅନୁସାରେ କମିଯିବାର ସଂଭାବନା ନାହିଁ ବୋଲି ମୋର ଦୃଢ଼ ବିଶ୍ୱାସ । ମୃତ୍ୟୁ ବେଳକୁ ମଧ ସୀମାହୀନ ନୀଳିମାର ଶୂନ୍ୟତାରେ ମିଶିଯିବାର ସ୍ୱପ୍ନ ମୁଁ ଦେଖୁଥିବି ବୋଲି ମୋର ଧାରଣା ।

■ ■ ■

(୧୩)

# ଯୋଗାଭ୍ୟାସ ଧ୍ୟାନ ଧାରଣା

ମନୁଷ୍ୟଠାରେ ଏପରି କିଛି ଆନନ୍ଦଦାୟକ ଅଭ୍ୟାସ ରହିବା ଦରକାର ଯାହା ନିୟମିତ ଭାବରେ କରିପାରିଲେ ନାନା ପ୍ରକାରର ଶାରୀରିକ ଓ ମାନସିକ ବିକାଶ ସଂଭବ ହୁଏ । ଅନେକ ଧର୍ମପରାୟଣ ଲୋକେ ନିୟମିତ ଭାବରେ ପୂଜା ଅର୍ଚ୍ଚନା କରନ୍ତି, କାରଣ ସେଥିରେ ସେମାନଙ୍କର ଆନନ୍ଦ ତଥା ସନ୍ତୋଷ ହୁଏ । ମୁଁ ଆଇ.ଏ. ପଢ଼ିଲା ଯାଏଁ ପ୍ରତିଦିନ ପ୍ରାର୍ଥନା କରୁଥିଲି କିନ୍ତୁ ନାସ୍ତିକ ହୋଇଗଲା ପରେ ଏହା ଅତ୍ୟନ୍ତ ଅବାସ୍ତବ ଓ ଅଯଥା ରହସ୍ୟମୟ ବୋଲି ମନେ ହେବାରୁ ତାହା ଆଉ ଆନନ୍ଦଦାୟକ ହେଲାନାହିଁ । କିନ୍ତୁ ଏପରି ଗୋଟିଏ ଧାରାବାହିକ ଅଭ୍ୟାସ ପିଲାଦିନରୁ ଥିବା ଯୋଗୁ ଯୋଗାସନ ଓ ପ୍ରାଣାୟାମ ସହିତ ଧ୍ୟାନ ଧାରଣା ଆରମ୍ଭ କଲି । ଯୋଗ ବିଷୟରେ ବହୁ ଧରଣର ବହି ପଢ଼ିଲି । ପାଶ୍ଚାତ୍ୟ ଓ ଭାରତୀୟ ଲେଖକମାନେ ଏ ବିଷୟରେ ଯେତେସବୁ ବହି ଲେଖିଥିଲେ ସେସବୁ ପାତଞ୍ଜଳୀଙ୍କ ଯୋଗ କ୍ରିୟା ଉପରେ ପ୍ରତିଷ୍ଠିତ ହୋଇଥିବାରୁ ପ୍ରାଣାୟାମ ପଦ୍ଧତିମାନଙ୍କର ମୌଳିକ ରୀତି ନୀତି ପ୍ରାୟ ସବୁ ବହିରେ ସମାନ ।

ପାଶ୍ଚାତ୍ୟ ଦେଶରେ ସ୍ୱାସ୍ଥ୍ୟ ପକ୍ଷରେ ଉପଯୋଗୀ ଅର୍ଥରେ ଯୋଗାସନ ଓ ପ୍ରାଣାୟାମ ପ୍ରକ୍ରିୟା ବହୁଳ ଭାବରେ ପ୍ରସାରିତ ହୋଇଚାଲିଛି- ବହୁ ଭାରତୀୟ ଯୋଗୀ ପାଶ୍ଚାତ୍ୟ ଦେଶରେ ଲୋକପ୍ରିୟ ହୋଇପାରିଛନ୍ତି । ବିଶେଷକରି ମହର୍ଷି ମହେଶ ଯୋଗୀଙ୍କୁ ଯୁକ୍ତରାଷ୍ଟ୍ର ଆମେରିକାରେ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଏବଂ ଆଧ୍ୟାତ୍ମିକ ଗୁରୁ ହିସାବରେ ଜନସାଧାରଣ ଗ୍ରହଣ କରିନେଇଛନ୍ତି । ତାଙ୍କର ପ୍ରସିଦ୍ଧ Transdental Meditation - ବା ଅତୀନ୍ଦ୍ରିୟ ଧ୍ୟାନ ଧାରଣା ପ୍ରଣାଳୀ ଏତେ ବେଶି ଲୋକପ୍ରିୟ ହୋଇଯାଇଛି ଯେ ଆମେରିକାର ସୈନ୍ୟବାହିନୀରେ ମଧ୍ୟ ଏହାର ପ୍ରଚଳନ ଦେଖାଯାଏ । ବହୁ ଆମେରିକାବାସୀ ତାଙ୍କର ଭକ୍ତ ଏବଂ ଆମେରିକାର ସହରମାନଙ୍କରେ ଏକାଧିକ ଯୋଗାସନ ଶିକ୍ଷା କେନ୍ଦ୍ରମାନ ପ୍ରତିଷ୍ଠିତ ହୋଇଯାଇଛି । କିନ୍ତୁ ଭାରତର ଏହା ଗୋଟିଏ ବିରାଟ ଐତିହାସିକ ଅବଦାନ ହୋଇ ସୁଦ୍ଧା ଭାରତରେ ଏହାର ପ୍ରସାର ସୀମିତ । କାରଣ ଭାରତରେ ଏହାକୁ ସ୍ୱାସ୍ଥ୍ୟ ଓ ମାନସିକ ଶାନ୍ତି ଉପରେ ପ୍ରତିଷ୍ଠିତ ନ କରି ଭଗବାନ ଓ ଅନ୍ୟାନ୍ୟ ବହୁ ଧରଣର ରହସ୍ୟମୟ ଲକ୍ଷ୍ୟସାଧନ ସହିତ ଅଯଥା ଯୋଡ଼ି ଦେଉଥିବାରୁ ଏବଂ ନାନା ଧରଣର ଔପଚାରିକ ପଦ୍ଧତି ମାଧ୍ୟମରେ ଏହାର ସାଧନା ବିଷୟରେ ପ୍ରଚାର ଯୋଗୁ ସାଧାରଣ

ଲୋକେ କେବଳ ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟ ପାଇଁ ଏହାକୁ ବ୍ୟବହାର କରିବାରେ କୁଣ୍ଠାବୋଧ କରନ୍ତି । ଉଦାହରଣ ସ୍ୱରୂପ ବ୍ରାହ୍ମ ମୁହୂର୍ତ୍ତରେ କେବଳ ନିରାମିଷ ଖାଦ୍ୟ ଖାଇ ବ୍ରହ୍ମଚର୍ଯ୍ୟ ପାଳନ କରି ଯୋଗାଭ୍ୟାସ କରିବା ପାଇଁ ଆମର ସାଧୁ ସନ୍ୟାସୀ ପ୍ରଚାରକମାନେ ଉପଦେଶ ଦେଉଥିବାରୁ ଏହା ଲୋକପ୍ରିୟ ହୋଇପାରୁନାହିଁ । କେବଳ ସ୍ୱାସ୍ଥ୍ୟ ପାଇଁ ସକାଳେ କିମ୍ବା ସନ୍ଧ୍ୟାରେ, ଯେ କୌଣସି ଧରଣର ଖାଦ୍ୟ ଖାଇ, ଗୃହସ୍ଥ ଜୀବନଯାପନ କରି ମଧ୍ୟ ଯୋଗାଭ୍ୟାସ କରାଯାଇପାରେ । ଏ ପ୍ରକାର ଧାରଣା ଅଧିକାଂଶ ଭାରତୀୟମାନଙ୍କ ମନରେ ନଥିବାରୁ ଯୋଗାଭ୍ୟାସ ପାଶ୍ଚାତ୍ୟ ଦେଶମାନଙ୍କରେ ଯେପରି ଭାବରେ ଲୋକପ୍ରିୟ ହୋଇପାରୁଛି, ଭାରତରେ ତାହା ସଂଭବ ହୋଇପାରୁନାହିଁ । ଏହା ମୋ ମତରେ ଆମ ପାଇଁ ଗୋଟିଏ ଦୁର୍ଭାଗ୍ୟଜନକ ଘଟଣା । ଶାରୀରିକ ସ୍ୱାସ୍ଥ୍ୟ ଏବଂ ମାନସିକ ସନ୍ତୁଳିତ ଅବସ୍ଥା ସୃଷ୍ଟି କରିବାରେ ଯୋଗାଭ୍ୟାସ ଓ ଧ୍ୟାନ ଧାରଣା ବହୁତ ଉପାଦେୟ ।

ମୁଁ ନାସ୍ତିକ ହୋଇଥିବାରୁ ଏବଂ ପରମାତ୍ମାଙ୍କ ସହିତ ମିଶିଯିବା ଲକ୍ଷ୍ୟ ନେଇ ମୁଁ ଯୋଗାଭ୍ୟାସ କରେ ନାହିଁ । ଏହାର ବୈଜ୍ଞାନିକ ଦୃଷ୍ଟିକୋଣ ଉପରେ ପ୍ରତିଷ୍ଠିତ ନାନା ଆଧୁନିକ ଗବେଷଣାଗତ ମତାମତ ଉପରେ ମୁଁ ଏହାକୁ ପର୍ଯ୍ୟବସିତ କରିଛି । ଉଦାହରଣସ୍ୱରୂପ ପ୍ରତିଦିନ କେତେ ସମୟ ଧରି ଯୋଗାସନ ପ୍ରାଣାୟାମ ଓ ଧ୍ୟାନ ଧାରଣା ମାଧ୍ୟମରେ ତୁମ ମନରେ କେତେଗୁଡ଼ିଏ ସ୍ୱାସ୍ଥ୍ୟଗତ ଓ ମାନସିକ ଚିନ୍ତା ଜାଗ୍ରତ କରାଇ ପାରିଲେ ତାହା କ୍ରମେ ଫଳବତୀ ହେବାର ସଂଭାବନା ବେଶି । ମନସ୍ତତ୍ତ୍ୱବିତ୍‌ଙ୍କ ମତରେ Bio-feed back ଏବଂ Auto suggestion ମାଧ୍ୟମରେ ତୁମେ ତୁମର ବହୁ ଚିନ୍ତା ଧାରାକୁ ଶରୀର ଓ ମନ ଭିତରେ ବାରମ୍ବାର ଉଚ୍ଚାରିତ କରି ତାକୁ ଫଳବତୀ କରାଯାଇପାରେ । ତୁମେ ଯଦି ପ୍ରତିଦିନ କିଛି ସମୟ ତୁମର ଦେହ ଭଲ, ସ୍ୱାସ୍ଥ୍ୟ ଭଲ ବୋଲି ସ୍ୱୀକାର କରିବା ସହିତ ଅସୂୟା, କ୍ରୋଧ, ଭୟ ପ୍ରଭୃତି ବହୁ ନକାରାତ୍ମକ ଭାବନାକୁ ମନରୁ ବାହାର କରିଦେବା କଥା ବାରମ୍ବାର ଉଚ୍ଚାରିତ କରିଚାଲିବ, ତାହାହେଲେ ଏ ପ୍ରକାରର ଚିନ୍ତାଧାରା ଆପେ ଆପେ ଦେହ ମନ ଭିତରେ ସଂଚରିଯାଏ । ସ୍ୱାସ୍ଥ୍ୟର ସାମାନ୍ୟ ଟିକିଏ ଉନ୍ନତି ହେଲେ ତାହା ନୂତନ ଉଦ୍ଦୀପକ ଭାବରେ ମନ ଭିତରେ ବାରମ୍ବାର ସଂଚରିଗଲେ ତାହା କ୍ରମେ ବାସ୍ତବରେ ରୂପାନ୍ତରିତ ହୁଏ । ଫଳରେ ତୁମଠାରେ ନକାରାତ୍ମକ ଭାବନା ସ୍ଥାନରେ ସକାରାତ୍ମକ ଚିନ୍ତା କ୍ରମେ କ୍ରମେ ଦେଖାଯାଏ ଏବଂ ସେସବୁ କ୍ରମବର୍ଦ୍ଧିଷ୍ଣୁ ଭାବରେ ଦୈହିକ ତଥା ମାନସିକ ସ୍ୱାସ୍ଥ୍ୟ ସୃଷ୍ଟି କରି କରି ଚାଲେ । ଏହି ପ୍ରକ୍ରିୟା ଏପରି କ୍ରମାଗତ ଭାବରେ ଶକ୍ତିଶାଳୀ ହୋଇ ଚାଲେ ଯେ ତୁମର ସ୍ୱାସ୍ଥ୍ୟରେ ଆଶାତୀତ ଉନ୍ନତି ହୋଇଯାଏ । ଏ ସଂପର୍କରେ ବହୁ ଗବେଷଣା ଭାରତରେ ତଥା ପାଶ୍ଚାତ୍ୟ ଦେଶମାନଙ୍କରେ ଚାଲିଛି ଏବଂ ସେଥିଯୋଗୁଁ କ୍ରମେ ଯୋଗାସନ ପୃଥିବୀରେ ଲୋକପ୍ରିୟ ହୋଇପାରୁଛି ।

ଏହି ପରିପ୍ରେକ୍ଷୀରେ ମୋର ଯୋଗାସନ ଅଭ୍ୟାସ ଓ ଧ୍ୟାନ ଧାରଣାକୁ ବିଚାର କରାଯାଇପାରେ । ଶୈଶବ ଏବଂ ପ୍ରଥମ ଯୌବନାବସ୍ଥାରେ ମୋର ସ୍ୱାସ୍ଥ୍ୟ ଅତ୍ୟନ୍ତ ଖରାପ ଥିଲା । ମୁଁ ପାଟନାରେ ବି.ଏ. ପଢ଼ିଲା ଦିନରୁ ମୋଠାରେ ଡିସେଣ୍ଟ୍ରି ଆରମ୍ଭ ହେଲା - ସେହି ଗୋଟିଏ ରୋଗ ଯୋଗୁ ଅନ୍ୟାନ୍ୟ ନାନା ଧରଣର ସ୍ୱାସ୍ଥ୍ୟଗତ ବିଭ୍ରାଟ ମୋଠାରେ ଲାଗିରହିଲା । ମୁଁ ଚାକିରି କଲା ପରେ କେବଳ ସ୍ୱାସ୍ଥ୍ୟ ପାଇଁ ଯୋଗାସନ ପ୍ରତିଦିନ କିଛି ସମୟ କରିବାକୁ ଆରମ୍ଭ କରିଥିଲି । ବିଲାତରେ ପହଞ୍ଚିଲା ପରେ ଆଉ ଟିକିଏ ଭଲ ଭାବରେ କରିପାରିଲି । ସେହିଦିନଠାରୁ ଆଜିଯାଏଁ ପ୍ରାୟ ପଚାଶବର୍ଷ ହେଲା ମୁଁ ପ୍ରତିଦିନ ଘଣ୍ଟାଏ ଯାଏଁ ଯୋଗାସନ

ଓ ଧ୍ୟାନ ଧାରଣା କରି ଚାଲିଛି । ଏ ସଂପର୍କରେ ଲଣ୍ଡନରେ ଥିବା ସମୟରେ ଏବଂ ପରେ ୧୯୫୭ରେ ଆମେରିକାର ସିକାଗୋର ସୁପ୍ତାବସ୍ଥା ଲାଗି ନିର୍ଦ୍ଦିଷ୍ଟ ଗବେଷଣା କେନ୍ଦ୍ରରେ ମୋ ଯୋଗାସନ ପ୍ରକ୍ରିୟା ଉପରେ କେତେକ ଅନୁସଂଧାନ କରା ହୋଇଥିଲା । ଉଦାହରଣ ସ୍ୱରୂପ ମୋତେ ଏହି କେନ୍ଦ୍ରରେ ସାଧାରଣ ଭାବରେ ଶିଥିଳ ହୋଇ ପଡ଼ିରହିବା ଅବସ୍ଥାରେ ମୋର ମସ୍ତିଷ୍କରେ ପ୍ରବାହିତ ତରଙ୍ଗର ମାପ ନିଆହେଲା- ତାପରେ ଅଙ୍କ କଷିବା ପରି ମାନସିକ ପରିଶ୍ରମ ସାପେକ୍ଷ କାର୍ଯ୍ୟ ବେଳେ ଏବଂ ତାପରେ ଯୋଗରେ ଥିବା ଶବାସନ ବା ସଂପୂର୍ଣ୍ଣ ଯୋଗନିଦ୍ରା ସମୟର ତରଙ୍ଗମାନଙ୍କର ମାପ ନିଆହେଲା । ଦେଖାଗଲା ଯେ ସାଧାରଣ ଭାବରେ ଶିଥିଳ ଥିବା ସମୟରେ ଆଲଫା ତରଙ୍ଗର ଗୋଟିଏ ପ୍ରକାର ଅଗଭୀର ସମତାଳିକ ଢେଉ ଦେଖାଯାଇଥିଲା । ଅଙ୍କ କଷିଲା ବେଳେ ଏହି ଢେଉଗୁଡ଼ିକ ଅସମତାଳିକ ଏବଂ ଉଚ୍ଚାନୀଚ୍ଚା ବକ୍ରରେଖାରେ ଦେଖାଯାଉଥିଲା । କିନ୍ତୁ ଯୋଗନିଦ୍ରା ବେଳେ ଏହି ଆଲଫା ଢେଉର ସମତାଳିକ ଗଭୀରତା ମନର ସ୍ଥିରତା ଯୋଗୁ ସଂଭବ ହେଉଥିଲା । ଏହି ମାନସିକ ସ୍ଥିରତା ହିଁ ଧ୍ୟାନର ପରମ ଲକ୍ଷ୍ୟ । ତା ଅର୍ଥ ଦିନଯାକର ନାନା ଧରଣର ମାନସିକ କ୍ରିୟାକଳାପର ସଂପୂର୍ଣ୍ଣ ଅବସାନ ହୋଇ ମନ ଭିତରେ ଗୋଟିଏ ପ୍ରକାରର ସ୍ଥିରତା ଆସିଯାଏ । ତାହା ମାନସିକ ସନ୍ତୁଳିତ ଅବସ୍ଥା ସୃଷ୍ଟି କରିବାରେ ସାହାଯ୍ୟ କରେ । ତା'ର ପ୍ରଭାବ ମଧ୍ୟ ପରୋକ୍ଷରେ ଶରୀର ଉପରେ ପଡ଼େ ।

ବହୁ ଧରଣର ଯୋଗାସନ ରହିଛି । ଯୋଗାସନମାନ ଶରୀରର କେତେକ ପ୍ରଧାନ ଗ୍ରନ୍ଥି, ମାସଂପେଶୀ ଓ ଅସ୍ଥି ସଂଯୋଗକାରୀ ତନ୍ତୁ ପ୍ରଭୃତିର ସୁଚାରୁ ରୂପେ ପରିଚାଳନା ତଥା ଇଣ୍ଡୋକ୍ରୀନ ଗ୍ରନ୍ଥିଗୁଡ଼ିକର ସମନ୍ୱିତ ପ୍ରକ୍ରିୟା ଉପରେ ପର୍ଯ୍ୟବସିତ । ବର୍ତ୍ତମାନ ଯୁଗରେ ଶରୀରରେ କାମ କରୁଥିବା ଥାଇରଏଡ୍ ଏବଂ ଏହିପରି ଆଉ ଆଠ-ଦଶଟି ଇଣ୍ଡୋକ୍ରୀନ ଗ୍ରନ୍ଥି ଉପରେ ମନୁଷ୍ୟର ଶାରୀରିକ ଓ ମାନସିକ ବିକାଶ ସଂପୂର୍ଣ୍ଣ ରୂପେ ନିର୍ଭର କରୁଥିବା କଥା ଗତ କେତେ ବର୍ଷ ହେଲା ସାବ୍ୟସ୍ତ ହୋଇଛି । କିନ୍ତୁ ଆମ ପୂର୍ବ ଯୁଗର ଯୋଗୀଋଷିମାନେ ଏହି ଗ୍ରନ୍ଥିମାନଙ୍କର ପ୍ରକ୍ରିୟା ଉପରେ ସେମାନଙ୍କର ଯୋଗାସନମାନ ପ୍ରତିଷ୍ଠିତ କରିଥିଲେ । ବିଶ୍ଳେଷଣାତ୍ମକ ବୈଜ୍ଞାନିକ ଗବେଷଣା ପୂର୍ବରୁ ଏହିପରି ଅନେକ ତାତ୍ତ୍ୱିକ ଦିଗ୍‌ଦର୍ଶନ ଆମମାନଙ୍କର ଅନ୍ତର୍ଦୃଷ୍ଟିଗତ ଜ୍ଞାନରୁ ମିଳିପାରେ । ତେଣୁ ଆଧୁନିକ ଯୁଗର ଯେଉଁସବୁ ଇଣ୍ଡୋକ୍ରୀନ ଗ୍ରନ୍ଥିଗତ ଜ୍ଞାନ, ତାହା ଯୋଗାସନର ବିଭିନ୍ନ ପ୍ରକ୍ରିୟାକୁ ଆହୁରି ବେଶୀ ଋଦ୍ଧିମନ୍ତ କରିପାରିଛି ।

ଅନେକ ସମୟରେ ଏହିସବୁ ଗ୍ରନ୍ଥିମାନଙ୍କର ସ୍ରବଣ ପ୍ରକ୍ରିୟାରେ ଅସନ୍ତୁଳିତ ଅବସ୍ଥା ଯୋଗୁ ଆମ ଦେହରେ ନାନା ଧରଣର ରୋଗ ଦେଖାଯାଏ । କିନ୍ତୁ ନିୟମିତ ଯୋଗାସନ ଫଳରେ ଏହି ଗ୍ରନ୍ଥିଗୁଡ଼ିକର ସମନ୍ୱିତ ପ୍ରକ୍ରିୟା ସଂଭବ ହୁଏ ଏବଂ ଏ ପ୍ରକାରର ରୋଗମାନଙ୍କୁ ସଂପୂର୍ଣ୍ଣ ରୂପେ ନିୟନ୍ତ୍ରଣ କରାଯାଇପାରେ । ତାଛଡ଼ା ଅସ୍ଥି ସଂଯୋଗକାରୀ ସନ୍ଧିସ୍ଥଳମାନ ପ୍ରତିଦିନ ନିୟମିତ ଭାବରେ ସଂଚାଳିତ ହେବା ଫଳରେ ଆଣ୍ଠୁଗଣ୍ଠି ବାତ ରୋଗ ବୟସ ହେଲେ ଆଦୌ ଦେଖାଯିବ ନାହିଁ । ତା ସହିତ ଦୈନନ୍ଦିନ କାର୍ଯ୍ୟ ଭିତରେ ଅନିୟମିତ ଶ୍ୱାସ ପ୍ରଶ୍ୱାସ ପ୍ରଣାଳୀକୁ ନିୟମିତ ଭାବରେ ଶିଥିଳୀକରଣ ଏବଂ ଯଥାଯଥ ଭାବରେ ନିୟନ୍ତ୍ରିତ ତଥା ସମନ୍ୱୀକରଣ ଫଳରେ ଶ୍ୱାସନଳୀ, ଫୁସ୍‌ଫୁସ୍ ଓ ହୃଦୟ ନିୟନ୍ତ୍ରିତ ଶିରା ପ୍ରଶିରାମାନଙ୍କର ସ୍ୱାସ୍ଥ୍ୟଗତ ଉନ୍ନତି ସାଧିତ ହୋଇଥାଏ ।

ମନୁଷ୍ୟର ନିଃଶ୍ୱାସ ପ୍ରଶ୍ୱାସ ଉପରେ ମାନସିକ ତଥା ଶାରୀରିକ ସ୍ୱାସ୍ଥ୍ୟ ସଂପୂର୍ଣ୍ଣ ରୂପେ ନିର୍ଭର କରିଥାଏ । ଉଦାହରଣସ୍ୱରୂପ ଯେତେବେଳେ ଜଣେ ରାଗିଯାଏ ବା ଦୁଃଖରେ ଅଭିଭୂତ ହୋଇଯାଏ, ତାର ଶ୍ୱାସପ୍ରଶ୍ୱାସ ପ୍ରକ୍ରିୟାରେ ଅସନ୍ତୁଳିତ ଅବସ୍ଥା ସୃଷ୍ଟି ହୁଏ- ଏହା ଅତିଶୟ ତ୍ୱରାନ୍ୱିତ ହୁଏ ଏବଂ ତାର ପ୍ରଭାବ ଜୀର୍ଣ୍ଣ କରିବା ପ୍ରକ୍ରିୟା ସହିତ ଅନ୍ୟାନ୍ୟ ବହୁ ଶାରୀରିକ ପ୍ରକ୍ରିୟାକୁ ଅସନ୍ତୁଳିତ କରିଦିଏ । ଫଳରେ ଦେହରେ ନାନାପ୍ରକାରର ରୋଗ ସୃଷ୍ଟି ହୁଏ । ଶ୍ୱାସପ୍ରଶ୍ୱାସକୁ ଯୋଗରେ ଜୀବନୀଶକ୍ତି ବୋଲି କୁହାଯାଏ । ତେଣୁ ପ୍ରାଣାୟାମ ମାଧ୍ୟମରେ ଏହି ଜୀବନୀଶକ୍ତିକୁ ଯଥାଯଥ ଭାବରେ ନିୟନ୍ତ୍ରଣ କରାଯାଇପାରେ ଏବଂ ଏହା ଫଳରେ ବହୁ ରୋଗରୁ ମୁକ୍ତି ମିଳେ । ମୋ ନିଜ ଅଭିଜ୍ଞତାରୁ ଗୋଟିଏ ଉଦାହରଣ ଦିଆଯାଇପାରେ । ଗତ ଚାଳିଶି ବର୍ଷ ଭିତରେ ଗୋଟିଏଥର ମାତ୍ର ମୁଁ ଇନ୍‌ଫ୍ଲୁଏଞ୍ଜା ଜ୍ୱରରେ ପଡ଼ିଥିଲି ଏବଂ ମୋର ପ୍ରାୟ କେବେହେଲେ ଥଣ୍ଡା ଶର୍ଦ୍ଦି ହୁଏନାହିଁ । ସାଧାରଣତଃ ବର୍ଷରେ ଥରେ ଦିଥର ଋତୁପରିବର୍ତ୍ତନ ବେଳେ ଆମ ଘରେ କେତେକଙ୍କୁ ଶର୍ଦ୍ଦିଥଣ୍ଡା ହୁଏ, କିନ୍ତୁ ମୋର ଆଦୌ ହୁଏ ନାହିଁ । ଥଣ୍ଡା ସର୍ଦ୍ଦି କିମ୍ବା ଫ୍ଲୁ ରୋଗର ଜୀବାଣୁ ସଂକ୍ରମଣ ହେବା ସମୟରେ ପ୍ରାଣାୟାମ ମାଧ୍ୟମରେ ଏହାକୁ ସଂପୂର୍ଣ୍ଣରୂପେ ଦୂରେଇ ଦିଆଯାଇପାରେ ।

ଧ୍ୟାନ ଧାରଣା ବେଳେ ଯେଉଁମାନେ ଭଗବାନ ବା ନାନା ଦେବଦେବୀରେ ବିଶ୍ୱାସ କରନ୍ତି, ସେମାନଙ୍କୁ ନେଇ ଧ୍ୟାନ କରନ୍ତି । କିନ୍ତୁ ମୋର ଏପରି ଦୈବଶକ୍ତିରେ ବିଶ୍ୱାସ ନଥିବା ଯୋଗୁ ମୁଁ ମନକୁ ସଂପୂର୍ଣ୍ଣ ରୂପେ ଶୂନ୍ୟ କରି ଶୂନ୍ୟ ବିଷୟରେ ଧ୍ୟାନ କରେ । ପ୍ରଥମେ ପ୍ରଥମେ ଏହା ବହୁତ କଷ୍ଟସାଧ୍ୟ । ତୁମେ ଆଖି ବୁଜିଲାକ୍ଷଣି ବହୁତ କଥା ଆଖି ଆଗରେ ନାଚିଯିବା ସ୍ୱାଭାବିକ । ସେଥିଯୋଗୁ କେବଳ ଗୋଟିଏ ରୂପ ଦେଖିବା ବା ଓଁ ପରି ଗୋଟିଏ ଶବ୍ଦ ଶୁଣିବାରେ ଅନେକେ ମନ ସ୍ଥିର କରନ୍ତି । ଓଁ କିମ୍ବା ଏହିପରି ଯେକୌଣସି ଗୋଟିଏ ସ୍ଥିର ଶବ୍ଦରେ ମନ ରଖି ମନକୁ ଅନ୍ୟଆଡୁ ଓହରାଇ ଅଣାଯାଇପାରେ । ଏ ସଂପର୍କରେ ଗୁରୁମାନେ ମନ୍ତ୍ର ମାଧ୍ୟମରେ ଲୋକମାନଙ୍କୁ ଏହିପରି ନାନା ମନ୍ତ୍ରରେ ଦୀକ୍ଷିତ କରାନ୍ତି । ଯେହେତୁ ମୁଁ ଗୁରୁରେ ବିଶ୍ୱାସ କରେ ନାହିଁ, ମୁଁ ନିଜେ ନିଜର ଧ୍ୟାନ ବିଷୟ ବସ୍ତୁକୁ ବାଛି ନେଇଛି । ମୁଁ ବାସ୍ତବବାଦୀ ଓ ବିବର୍ତ୍ତନଶୀଳ ଚେତନାରେ ବିଶ୍ୱାସୀ ଥିବାରୁ ଧ୍ୟାନ ବେଳେ ପ୍ରଥମେ ନିଜକୁ ପାହାଡ଼-ପର୍ବତ ପରି ସ୍ଥାଣୁ ଓ ନିଶ୍ଚଳ ଭାବେ -ତାପରେ ଆଖି ଆଗରେ ବିସ୍ତୃତ ପ୍ରଶାନ୍ତ ମହାସାଗରର ଛବି- ତାପରେ ଲକ୍ଷ ଲକ୍ଷ ଜୀବଜନ୍ତୁଙ୍କର ସମାରୋହ- ତାପରେ ପ୍ରାଣବାୟୁ-ତାପରେ ଆକାଶ, ଆଲୋକ ଶକ୍ତି ଏବଂ ସର୍ବଶେଷରେ ଶୂନ୍ୟ ମହାଶୂନ୍ୟ, ପ୍ରଜ୍ଞା ଏବଂ ଆନନ୍ଦ । ଅର୍ଥାତ୍ ମୋର ଶେଷ ଧ୍ୟାନକେନ୍ଦ୍ର ହେଲା ପ୍ରଜ୍ଞାୟିତ ଆନନ୍ଦ । ଏପ୍ରକାର ମାନସିକତା ସହିତ ଯୋଗାସନ ବହିରେ ଥିବା ସାତଟି ଯୌଗିକ ଚକ୍ରକୁ ଯୋଡ଼ି ଦିଆଯାଇପାରେ । ସ୍ଥାଣୁ ହିମାଳୟ ସହିତ ମୂଳାଧାର ଚକ୍ର ଯାହାକି ଆମର ମେରୁଦଣ୍ଡର ଆଦ୍ୟ ଭାଗରେ ରହିଛି । ତାପରେ ପ୍ରଶାନ୍ତ ମହାସାଗର ସହିତ ସ୍ୱାଧିଷ୍ଠାନ ଚକ୍ର- ତାହା ମୂଳାଧାର ଚକ୍ରର ଅଳ୍ପ ଉପରେ- ତାପରେ ଜୀବଜନ୍ତୁମାନଙ୍କ ସହିତ ମଣିପୂରୀ ଚକ୍ର ଯାହା ନାଭି କେନ୍ଦ୍ରରେ ଅବସ୍ଥିତ । ପ୍ରାଣ ସହିତ ଅନାହତ ଚକ୍ର ଯାହା ହୃତ୍‌ପିଣ୍ଡର ମଧ୍ୟ ଭାଗରେ । ତା ଉପରକୁ ବିଶୁଦ୍ଧିଚକ୍ର ଯେଉଁଠି ଶାରୀରିକ କେନ୍ଦ୍ରଗୁଡ଼ିକର କେନ୍ଦ୍ରୀଭୂତ ବିଶୁଦ୍ଧିକରଣ ପ୍ରକ୍ରିୟା ସାଧିତ ହୁଏ । ଉତ୍ତମ ସ୍ୱାସ୍ଥ୍ୟ ସହିତ ଏହା ସଂପୃକ୍ତ । ଜ୍ଞାନ ଚକ୍ର ଦୁଇ ଆଖି ମଝି କପାଳ ବିନ୍ଦୁ ଉପରେ ଏବଂ ତାକୁ ଆକାଶ ଏବଂ ଆଲୋକ ଶକ୍ତି ସହିତ ସଂପୃକ୍ତ କରାଯାଇପାରେ । ସବାଶେଷ କେନ୍ଦ୍ର ହେଲା ସହସ୍ରାର ଚକ୍ର ଯାହାକୁ ମସ୍ତିଷ୍କର ଶତଦଳ ପଦ୍ମ ହିସାବରେ ଧରାଯାଇଛି ।

ଏଠାରେ ଧ୍ୟାନ କେନ୍ଦ୍ରୀଭୂତ ହେଲାବେଳେ ଶୂନ୍ୟ, ମହାଶୂନ୍ୟ ସହିତ ପ୍ରଜ୍ଞା ଓ ଆନନ୍ଦକୁ ଯୋଗ କରାଯାଇପାରେ । ମୂଳାଧାର ଚକ୍ରଠାରୁ ସହସ୍ରାର ଚକ୍ର ପର୍ଯ୍ୟନ୍ତ ଏହି ସାତଟି ଶାରୀରିକ କେନ୍ଦ୍ରର କେତେକ ପ୍ରକୃତ ସ୍ନାୟୁବିକ ଜଟିଳଗ୍ରନ୍ଥି କେନ୍ଦ୍ର ସହିତ ଜଡ଼ିତ, ଆଉ କେତେକ ଭାବଗତ ଧାରଣା । ଏହି ସାତ ଚକ୍ର ଦେଇ ଧ୍ୟାନ କଲାବେଳେ ମନକୁ ସ୍ଥୂଳ ପଦାର୍ଥମାନଙ୍କ ସହିତ ବିବର୍ତ୍ତନର ସୃଷ୍ଟ ପ୍ରକ୍ରିୟାକୁ ସଂଯୋଗ କରି ଶେଷରେ ପ୍ରଜ୍ଞାୟିତ ଆନନ୍ଦ ଉପରେ ମନ ଓ ଚେତନାକୁ କେନ୍ଦ୍ରୀଭୂତ କରାଗଲେ ମୋ ମନରେ ଗୋଟିଏ ପ୍ରକାର ଶାନ୍ତ ଏବଂ ଆତ୍ମସନ୍ତୋଷର ବ୍ୟାପକ ଚେତନା ଉଦ୍ରେକ ହୁଏ । ଏହି ଅବସ୍ଥାରେ ମହାଶୂନ୍ୟ ଗୋଟିଏ ଗଭୀର ନୀଳରଙ୍ଗର ବଳୟ ଭାବରେ ମନକୁ ପ୍ରସାରିତ କରି ରଖେ । ସମୟ ସ୍ରୋତରେ ବିସ୍ତାରିତ ଆକାଶର ଦିଗନ୍ତହୀନ ପରିବ୍ୟାପକତା ଭିତରେ ନିଜର ଅସ୍ତିତ୍ୱ ମିଳାଇଯାଏ– ଦିନଯାକର ଯାବତୀୟ ଚିନ୍ତା, ଉଦ୍‌ବେଗ ଏହି ସମୟରେ ଏପରି ଦିଗନ୍ତହୀନ ନୀଳ ଶୂନ୍ୟତାରେ ଯେପରି ମିଳାଇଯାଏ । ମନୁଷ୍ୟର ଅବଦମିତ ମାନସିକତାର ଅଗଣିତ ଆଶା, ଆକାଂକ୍ଷା, ଲାଳସା ଉଦ୍‌ବେଳିତ ହୋଇଉଠେ ଯେ ତାର ଗଭୀରତା ଭିତରୁ ସୃଜନଶୀଳତାର ଅଭିନବ ଅଭ୍ୟୁଦୟ ସଂଭବ ହୁଏ । ଏହି ଭାବଗତ ଉନ୍ମୀଳନ ହିଁ ସମସ୍ତ ପ୍ରକାର ସୃଜନଶୀଳତାର ମୌଳିକ ଆଧାର ହୋଇଯାଏ । ଏପ୍ରକାର ଉଦ୍‌ବେଳନର କୌଣସି ବୟସ ନଥାଏ । ତେଣୁ ଯୁବାବସ୍ଥାରେ ଯେ ପ୍ରକାରର ଉଦ୍ଦୀପନାଗତ ଭାବଧାରା ମନରେ ସୃଷ୍ଟି ହୁଏ, ତାହା ଯେକୌଣସି ବୟସରେ ମଧ୍ୟ ସଂଭବ ବୋଲି ମୋର ଧାରଣା । ଅନେକେ ଏହି କାରଣରୁହିଁ ଶହେ ବର୍ଷ ବୟସରେ ମଧ୍ୟ ଅତ୍ୟନ୍ତ ସୃଜନଶୀଳ ସାହିତ୍ୟ ସୃଷ୍ଟି କରିପାରୁଛନ୍ତି । ଏହା କେତେକଙ୍କ ଠାରେ ସହଜାତ ବୈଶିଷ୍ଟ୍ୟ ହିସାବରେ ଥାଇପାରେ । କିନ୍ତୁ ଯେ କୌଣସି ଲୋକ ନିୟମିତ ଭାବରେ ଯୋଗାସନ ଏବଂ ଅଭ୍ୟାସଗତ ଅତୀନ୍ଦ୍ରିୟ ଧ୍ୟାନ ଧାରଣା କରିବା ଫଳରେ ତାଠାରେ ସୃଜନଶୀଳତା ନିତ୍ୟ ନୂତନ ଭାବରେ ପରିପ୍ରକାଶିତ ହୋଇପାରେ । ସେଥିଯୋଗୁ ବୋଧହୁଏ ମୁଁ ମୋର ପରିଣତ ବୟସରେ ମଧ୍ୟ ଯୌବନାବସ୍ଥାର ରୋମାଞ୍ଚକର ପ୍ରେମାନୁଭୂତିକ ଉପନ୍ୟାସ ଲେଖିପାରୁଛି । ଅତୀତର ଯୋଗୀଋଷିମାନେ ଯେ ପ୍ରକାର କାଳଜୟୀ ସାହିତ୍ୟ, ଦର୍ଶନ ପ୍ରଭୃତି ସୃଜନଶୀଳ ସୃଷ୍ଟିର ପରିଚୟ ଦେଇଛନ୍ତି ସେସବୁ ସେମାନଙ୍କର ଗଭୀର ଚିନ୍ତନଶୀଳତାର ନିଦର୍ଶନ । ତାହା ବାନପ୍ରସ୍ଥ ସମୟରେ ପରିଣତ ବୟସରେ ହିଁ ସଂଭବ ହୋଇପାରିଛି ।

ପ୍ରାଣାୟାମ କଲାବେଳେ ମନ ଭିତରେ ଦୈନନ୍ଦିନ ଜୀବନର ନାନା କଥା ଉଙ୍କି ମାରିବା ସ୍ୱାଭାବିକ । କିନ୍ତୁ ସେ ସବୁକୁ ମନରୁ ଦୂରେଇ ରଖିବାର ପ୍ରକୃଷ୍ଟ ଉପାୟ ହେଉଛି ଯେ କେତେକ ସାର୍ବଜନୀନ ବାସନାକୁ ମନ ଭିତରେ ଅନବରତ ଜାଗ୍ରତ କରିରଖିବା । ଉଦାହରଣସ୍ୱରୂପ ଅଖଣ୍ଡ ସ୍ୱାସ୍ଥ୍ୟ, ଶତାୟୁ ଯୌବନ, ଆନନ୍ଦମୟ ଜୀବନ ପ୍ରଭୃତି ସକାରାତ୍ମକ ଭାବନାମାନ ମନ ଭିତରେ ରଖିଲେ ଏ ପ୍ରକାର ବାରମ୍ବାର ଘୋଷିତ ଇଚ୍ଛାମାନଙ୍କର ପ୍ରଭାବ ଦେହ ଓ ମନ ଭିତରେ ପଡ଼ିବାର ସଂଭାବନା ବିଷୟରେ ମଧ୍ୟ ବହୁ ଗବେଷଣାସିଦ୍ଧ ତଥ୍ୟମାନ ରହିଛି । ଏହା ମଧ୍ୟ ପୁରାତନ ବୈଦିକ ଯୁଗର ଭାରତୀୟ ଚିନ୍ତାଧାରା । ଏ ସଂବଂଧରେ ଏ ମନ ଭାବୁଥାଏ ଯାହା କାଳେ ପ୍ରାପତ ହୁଏ ତାହା' ପରି ଭାଗବତ ବାଣୀ ଉଲ୍ଲେଖଯୋଗ୍ୟ । ଏ ବିଷୟରେ ବହୁ ଗବେଷଣାଗତ ତଥ୍ୟମାନ ଉଦ୍ଧାର କରି ଡକ୍ଟର ଦୀପକ ଚୋପ୍ରା ନାମକ ଜଣେ ଭାରତୀୟ ଡାକ୍ତର କେତେଖଣ୍ଡ ବହି ଲେଖି ଯୁକ୍ତରାଷ୍ଟ୍ର ଆମେରିକାରେ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଛନ୍ତି । ଏହି ବହିସବୁ ଏତେ ସଂଖ୍ୟାରେ ପୃଥିବୀରେ ବିକ୍ରି ହେଉଛି ଯେ ସେ ବହୁ ମିଲିୟାନ ଡଲାରର ଅଧିକାରୀ ହୋଇପାରିଛନ୍ତି । ମହର୍ଷି ମହେଶ ଯୋଗୀ ମଧ୍ୟ ଏ କ୍ଷେତ୍ରରେ

ପୃଥିବୀ ବିଖ୍ୟାତ । ବହୁ ଦେଶରେ ସକାରାତ୍ମକ ଓ ନକାରାତ୍ମକ ଭାବନାର ବିପରୀତମାର୍ଗୀ ପ୍ରଭାବ ବିଷୟରେ ପ୍ରମାଣସିଦ୍ଧ ତଥ୍ୟମାନ ଉପସ୍ଥାପିତ ହୋଇଛି । ସକାରାତ୍ମକ ଭାବନା ଯୋଗୁ ବହୁ ରୋଗ ଆପେ ଆପେ ଉପଶମ ହୋଇଯାଉଥିବା ସହିତ ନକାରାତ୍ମକ ଭାବନାର ରୋଗ ଉଦ୍ରେକ ପ୍ରଭାବ ବିଷୟ ସମ୍ବନ୍ଧରେ ଭାରତୀୟ ଯୋଗାସନ ଦର୍ଶନର ତଥ୍ୟାବଳୀ ପୃଥିବୀବ୍ୟାପୀ ପ୍ରସାରିତ ହୋଇଚାଲିଛି । ଦୁର୍ଭାଗ୍ୟବଶତଃ ଆମ ଦେଶରେ ଯୋଗାସନ, ଧ୍ୟାନ ଧାରଣା ପ୍ରଭୃତି ଅଦ୍ୟାବଧି ଗୋଟିଏ ରହସ୍ୟମୟ ବ୍ୟାପାର ଓ ଅନେକ ସମୟରେ ଏଥିଲାଗି ବିପଦର ସଂଭାବନା ବିଷୟରେ ଭୁଲ୍‌ଧାରଣା ପ୍ରଚାରିତ ହୋଇଚାଲିଛି ।

ପରିଶେଷରେ ଯୋଗାସନ, ପ୍ରାଣାୟାମ ଓ ଧ୍ୟାନ ଧାରଣା ବିଷୟରେ ତିନୋଟି ପ୍ରଧାନ ବୈଶିଷ୍ଟ୍ୟ ବିଷୟରେ କୁହାଯାଇପାରେ ।

(୧) ଯୋଗାସନମାନ ଶରୀରର ବିଭିନ୍ନ ସ୍ନାୟୁବିକ ଓ ଅସ୍ଥିଶଲ୍ୟଗତ ସଂଚାଳନ ଏବଂ ଇଣ୍ଡୋକ୍ରୀନ ଗ୍ରନ୍ଥି ସମୂହର ଉପଯୁକ୍ତ ସ୍ରବଣ ଫଳରେ ସ୍ୱାସ୍ଥ୍ୟଗତ ଭାରସାମ୍ୟ ରକ୍ଷା କରିବାରେ ସଂପୂର୍ଣ୍ଣରୂପେ ସକ୍ଷମ ହୋଇଥାଏ । ଫଳରେ ସ୍ୱାସ୍ଥ୍ୟଗତ ସମସ୍ତ ପ୍ରକ୍ରିୟା ସୁସ୍ଥ ଓ କାର୍ଯ୍ୟକ୍ଷମ ଅବସ୍ଥାରେ ରହିପାରେ ।

(୨) ପ୍ରାଣାୟାମ ଦ୍ୱାରା ଶ୍ୱାସପ୍ରଶ୍ୱାସ ପ୍ରଣାଳୀକୁ ଯଥାଯଥ ଭାବରେ ନିୟନ୍ତ୍ରଣ କରିବାରେ ରୋଗ ଉତ୍ପନ୍ନ କରୁଥିବା ଜୀବାଣୁ ଏବଂ ଅହେତୁକ ଭୟ, ଉଦ୍‌ବେଗ, ଆତଙ୍କ ପ୍ରଭୃତି ନକାରାତ୍ମକ ପ୍ରଭାବରୁ ବ୍ୟକ୍ତିକୁ ବହୁ ପରିମାଣରେ ମୁକ୍ତ କରିପାରେ । ତା ଫଳରେ ଶାରୀରିକ ଓ ମାନସିକ କ୍ରିୟା ପ୍ରକ୍ରିୟା ଭିତରେ ଯଥାଯଥ ଭାରସାମ୍ୟ ସଂଭବ ହୁଏ ।

(୩) ଧ୍ୟାନ ଧାରଣା ଫଳରେ ମନ ଭିତରେ ସକାରାତ୍ମକ ଓ ଆନନ୍ଦମୟ ଚେତନା ସୃଷ୍ଟି ହୁଏ ଏବଂ ଏହା ମଧ୍ୟ ମାନସିକ ଭାରସାମ୍ୟ ନିରବଚ୍ଛିନ୍ନ ଭାବରେ ସୃଷ୍ଟି କରିପାରୁଥିବା ଯୋଗୁ ନାନା ଧରଣର ସୃଜନଶୀଳ ଚିନ୍ତାଧାରା ଯେକୌଣସି ବୟସରେ ମଧ୍ୟ ସଂଭବ ହୁଏ । ଗଭୀର ଧ୍ୟାନ ମାଧ୍ୟମରେ ମନ ଓ ଶାରୀରିକ ପ୍ରକ୍ରିୟାଗୁଡ଼ିକୁ ବର୍ତ୍ତମାନର ସ୍ଥିତଧୀ ଅବସ୍ଥାରୁ ଭବିଷ୍ୟତର ଅନିର୍ଦ୍ଦିଷ୍ଟ ଦିଗକୁ ପ୍ରଶମିତ କରାଯାଇପାରେ– ଯୌବନକୁ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ପ୍ରସାରିତ କରାଯାଇ ପାରେ ଏବଂ ସମୟସ୍ରୋତର ଦିଗନ୍ତହୀନ ପରିବ୍ୟାପକତା ସହିତ ଜୀବନକୁ ସଂଯୋଜିତ କରାଯାଇପାରେ ।

ଏସବୁ ପ୍ରକ୍ରିୟାକୁ ନିୟମିତ ଭାବରେ ଅଭ୍ୟାସ କରିବାରେ ଯେକୌଣସି ବ୍ୟକ୍ତିଠାରେ ଗୋଟିଏ ପ୍ରକାରର ଆତ୍ମନିର୍ଭରଶୀଳ ବ୍ୟକ୍ତିତ୍ୱର ବିକାଶ ହୁଏ ଓ ସବୁ କ୍ଷେତ୍ରରେ ନିୟମାନୁଗତ ରୀତିରେ କାର୍ଯ୍ୟ ସଂପାଦନ ପାଇଁ ତାଠାରେ ଆଗ୍ରହ ପ୍ରକାଶ ପାଏ ।

ଯେଉଁମାନେ ଏସବୁ ପ୍ରକ୍ରିୟାକୁ ଭଗବାନ ସହିତ ସଂପୃକ୍ତ କରିବାକୁ ଚାହାଁନ୍ତି, ତାଙ୍କର ସେ ସ୍ୱାଧୀନତା ରହିଛି; କିନ୍ତୁ ନାସ୍ତିକମାନେ ମଧ୍ୟ ଭଗବତ୍ ବିଶ୍ୱାସ ବିନା ନିଜର ଭାବଗତ ଉଦ୍‌ବେଳନକୁ ବୈଦାନ୍ତିକ ବିଶ୍ୱମାନବିକତା ସହିତ ବିବର୍ତ୍ତନଶୀଳ କ୍ରମବର୍ଦ୍ଧିଷ୍ଣୁ ମାନସିକ ଚେତନାର ଯୋଗସୂତ୍ର ସ୍ଥାପନ କରିବାରେ ସୃଜନଶୀଳ ଆନନ୍ଦ ଉପଲବ୍ଧି କରିପାରିବେ । ରହସ୍ୟମୟ ଅବାସ୍ତବ କଳ୍ପନା ସ୍ଥାନରେ ଏ ପ୍ରକାର ଚେତନାଗତ ବାସ୍ତବତାରେ ମନୋନିବେଶ କରିବା ଉଚିତ ବୋଲି ମୋର ବ୍ୟକ୍ତିଗତ ବିଶ୍ୱାସ ।

■■■

## ୧୪

# ଏକେଲା ଚାଲ

ବିଶ୍ୱକବି ରବୀନ୍ଦ୍ରନାଥଙ୍କର ଅସଂଖ୍ୟ ପ୍ରଶଂସକ, ସଂଖ୍ୟାହୀନ ବନ୍ଧୁ - ଅଜସ୍ର ଛାତ୍ରଛାତ୍ରୀମାନଙ୍କର ତାଙ୍କର କାବ୍ୟକବିତା ସଂଗୀତ ଚର୍ଚ୍ଚାର ଅବିରାମ କୋଳାହଳ ମଧ୍ୟରେ ସେ କହିଥିଲେ ''ଏକେଲା ଚଲୋ'' । ପ୍ରତ୍ୟେକ ଚିନ୍ତାଶୀଳ ତଥା କଳ୍ପନା ବିଳାସୀ ବ୍ୟକ୍ତିଠାରେ ଏହିପରି ଏକେଲା ଚାଲର ଆନ୍ତରିକ ଆହ୍ୱାନ ଶୁଣାଯିବା ସ୍ୱାଭାବିକ । ଏପରି କେତେକ ଲୋକ ଅଛନ୍ତି ନିଜର ପରିବାର, ବନ୍ଧୁବାନ୍ଧବ, ସାଙ୍ଗସାଥୀ ମେଳରେ ହସଖୁସିରେ ଭାସିଯାଉଥିଲା ବେଳେ ମଝି ମଝିରେ ସଂପୂର୍ଣ୍ଣ ଏକେଲା ହୋଇପଡ଼ନ୍ତି । ନିଜ ସହିତ- ନିଜର ମନୋଭାବ ସହିତ, ନିଜର ଅତୀତ ସହିତ ନିରୋଳା ମୁହୂର୍ତ୍ତମାନଙ୍କରେ ଏକେଲା ଏକେଲା ନିମଜ୍ଜି ଯାଆନ୍ତି । ସେତେବେଳେ ସେମାନଙ୍କୁ ସେମାନଙ୍କର ଅତୀତ ଓ ଭବିଷ୍ୟତ ନୂଆ ରୂପରେ ଆସି ଦେଖାଦେଇଥାଏ । ଅଗଣିତ ଅଭୁଲା ସ୍ମୃତିମାନଙ୍କର ଭିଡ଼ ଜମିଯାଏ- ବାସ୍ତବତାର ଅମାବାସ୍ୟା ପରେ ଟୁକୁରା ଟୁକୁରା ଜହ୍ନର ଆଲୁଅ ମନ ପ୍ରାଣରେ ଝଲସି ଉଠେ । ସୁଦୂର ସୀମାହୀନ ମାନସିକ ଆକାଶରେ ଘୂରି ଘୂରି ମିଠା ତୃପ୍ତିର ସ୍ୱାଦ ଅନୁଭବ କରିହୁଏ । ବାସ୍ତବ ଜୀବନର କୋଳାହଳ ଭିତରେ ନିଃସଙ୍ଗତାର ଅଦୃଶ୍ୟ ଜ୍ୱଳନ ଭିତରୁ ଫୁଟି ଉଠେ ସ୍ମୃତିମାନଙ୍କର ଅପୂର୍ବ ମାଧୁରିମା- ଅନନ୍ନୁଭୂତିକ ଆତ୍ମିକ ଶିହରଣ । ସ୍ନେହ ଆଦର, ଭଲ ପାଇବାର, ହୃଦୟ ଦେବାନେବାର ପରମ ସୌଭାଗ୍ୟର ମଧୁର ଅନୁଭୂତି ଜନିତ ଜୀବନର ସାର୍ଥକ ଉପଲବ୍ଧିର ଶ୍ରୁତିମଧୁର ଗୁଂଜରଣ ବର୍ତ୍ତମାନର ବହୁ ଉର୍ଦ୍ଧ୍ୱରେ ଦିଗନ୍ତହୀନ ନୂତନ ମାନସିକ ପରିସର ଆଡ଼କୁ ପ୍ରସାରିତ ହୋଇଯାଏ । ସେଠାରେ ଦେଖାହୁଏ ମୋର ଉପନ୍ୟାସର ନାୟକ ନାୟିକା- ବିଶ୍ୱର ବିଭିନ୍ନ ମନୋରମ ପ୍ରାନ୍ତରରେ । କେତେବେଳେ ଇଂଲଣ୍ଡର ଚିତ୍ତାକର୍ଷକ ହ୍ରଦାଞ୍ଚଳରେ ଇଂରେଜ ରମଣୀର ସଂଗୀତ ଲହରୀ ମୂର୍ଚ୍ଛନାର ଉଦ୍‌ବେଳିତ ସ୍ମୃତି—ଆଉ କେତେବେଳେ ଆଣ୍ଡିଜ ପାହାଡ଼ର ସୁରମ୍ୟ ଉପତ୍ୟକାରେ ଆନୀୟା ହାତରୁ ଅଂଗୁର ଆସ୍ୱାଦନ- ବେବିଲୋନର ଭଗ୍ନ ସୂର୍ଯ୍ୟମନ୍ଦିର ଭିତରୁ, ସଂଧ୍ୟା ତାରାର ବେଳାଭୂମିରେ ପ୍ରତୀକ୍ଷମାଣା ଛନ୍ଦାର 'ପ୍ରିୟ ହତେ ପ୍ରିୟତର'ର କରୁଣାୟିତ ମଧୁର ବିଭୋରତା ଭିତରେ ନିମଗ୍ନ ତ ଆଉ କେବେ ଆମେରିକାର ୟୁସୋମିଟ ପାର୍କରେ ପ୍ରେମ ବିଧୁରା ଏକେଲା ନାରୀଟିର ନିଃସହାୟ କଣ୍ଠସ୍ୱରରେ ମନପ୍ରାଣ ଆନ୍ଦୋଳିତ ବିରହ ମୂର୍ଚ୍ଛନା । - ଏ ପ୍ରକାର ସ୍ମୃତିଗୁଡ଼ିକ ଏପରି ଭାବରେ ନିରୋଳା ମୁହୂର୍ତ୍ତମାନଙ୍କରେ

କଳରବ ସୃଷ୍ଟି କରିଯାଆନ୍ତି ଯେ ଜଗତର ଦୈନନ୍ଦିନ ଆନ୍ତରିକତାହୀନ ବହୁ କୋଳାହଳରୁ ଦୂରେଇ ଯିବାରେ ଅସୀମ ଆନନ୍ଦ ହୁଏ । ନିରୋଳା ମୁହୂର୍ତ୍ତମାନଙ୍କରେ ଏମାନଙ୍କର ସୁଖ ଦୁଃଖରେ ଭାଗୀଦାର ହେବାରେ ଅପାର ଆତ୍ମୋପଲବ୍ଧି ହୁଏ ।

ଏକେଲା ଚାଲର ମାନସିକତା ଭିତରେ ଏପରି ସ୍ମୃତି ମଧୁର ଟୁକୁରା ଟୁକୁରା ମେଘ ଜମି ଆସିବା ଏବଂ ଏହି ମେଘ ଭିତରେ ମେଘାଳୟର ନିଭୃତ ପ୍ରାସାଦ ଗଢ଼ି ଗଢ଼ି ଚାଲିବାରେ ଅନେକ ସମୟ ପର୍ଯ୍ୟନ୍ତ ବାସ୍ତବ ଜୀବନର ଅସହ୍ୟ ନିଃସଙ୍ଗତାର ଯବନିକା ପଡ଼ିଯାଏ । ବସ୍ତୁନିଷ୍ଠ ଓ ନିରବଚ୍ଛିନ୍ନ ଜାଗତିକ ସୁଖ ସମୃଦ୍ଧି ଅଭିଳାଷୀ ବ୍ୟକ୍ତିଠାରେ ଏହା ବୋଧହୁଏ ସମ୍ଭବ ହୁଏନାହିଁ ।

ମୋ ପରି ଚକର ଛେଉଣ୍ଡର ବାଲ୍ୟଜୀବନର ନିଃସଙ୍ଗତା କ୍ରମେ ଜୀବନ ଭରି ବିଭିନ୍ନ ସମୟରେ ନୂଆ ନୂଆ ପରିବେଶରେ ଏହାର ପରିସର ବଢ଼ାଇ ବଢ଼ାଇ ଚାଲିଛି । ମୋର ବର୍ତ୍ତମାନର ପାରିବାରିକ ଜୀବନ ସବୁ ଦୃଷ୍ଟିରୁ ପରିପୂର୍ଣ୍ଣ - କାହା ପାଇଁ ଉଦ୍‌ବିଗ୍ନ ହେବାର କୌଣସି ଆବଶ୍ୟକତା ନାହିଁ - ପ୍ରାୟତଃ ସମସ୍ତେ ନିଜ ନିଜ ଜୀବନରେ କୃତକାର୍ଯ୍ୟତା ହାସଲ କରିଛନ୍ତି– ଊଣା ଅଧିକେ ସମସ୍ତେ ସ୍ୱାସ୍ଥ୍ୟବାନ ଓ ସାଧାରଣ ଭାବରେ ବିତ୍ତଶାଳୀ ବୋଲି କୁହାଯାଇପାରେ । ସେମାନଙ୍କ ସହିତ ବସବାସ, ଭାବ ବିନିମୟ ଅତ୍ୟନ୍ତ ଆନନ୍ଦଦାୟକ । ଏହା ଯେ କୌଣସି ଲୋକର ଅବସର ଜୀବନରେ ନିଶ୍ଚିତ ଭାବରେ ଗଭୀର ଆଶ୍ୱାସନାଦାୟକ । ତଥାପି ମୋର ନିଃସଙ୍ଗ ଜୀବନର ପରିସର ବର୍ତ୍ତମାନ ସୁଦ୍ଧା ଖୁବ୍ ବ୍ୟାପକ ଏବଂ ଏଥିପାଇଁ ମୁଁ ଆଦୌ ଅସୁଖୀ ନୁହେଁ ।

ମୋ ଜୀବନଦର୍ଶନ ଅନେକଟା ଏଥିପାଇଁ ଦାୟୀ । ମୁଁ ସଂପୂର୍ଣ୍ଣ ଭାବେ ନାସ୍ତିକ ହୋଇଗଲା ପରେ ବିଶ୍ୱ ମହାମାନବୀୟତାରେ ମୁଁ ଏପରି ଭାବରେ ଅନୁପ୍ରାଣିତ ହୋଇଗଲି ଯେ ସ୍ୱାଭାବିକ ଭାବରେ ମୁଁ ଗୋଟିଏ କ୍ଷୁଦ୍ର ପାରିବାରିକ, ସାମାଜିକ ଓ ଐତିହ୍ୟିକ ଆଚରଣର ସୀମିତ ପରିସର ଭିତରୁ ମୁକ୍ତ ହୋଇଗଲି । ଫଳରେ ଯେଉଁ ଯେଉଁ ଦେଶକୁ ମୁଁ ଗଲି ମୋର ସଂକୀର୍ଣ୍ଣ ଗତାନୁଗତିକ ଆଚରଣକୁ ତ୍ୟାଗ କରି ସେମାନଙ୍କ ସହିତ ମିଶିଗଲି । ସେମାନଙ୍କର ଖାଦ୍ୟ, ସେମାନଙ୍କର ସଂସ୍କୃତି, ଚାଲିଚଳଣି ସହିତ ସଂପୂର୍ଣ୍ଣ ରୂପେ ସହଯୋଗ କଲି । ଅବଶ୍ୟ ତା ଅର୍ଥ ନୁହେଁ ଯେ ମୁଁ ଭାରତୀୟ ଦର୍ଶନର ସଂପୂର୍ଣ୍ଣରୂପେ ପରିପନ୍ଥୀ ହୋଇଗଲି । ଭାରତର ପାଞ୍ଚହଜାର ବର୍ଷର ସଂସ୍କୃତି । ମହାମାନବୀୟ ବେଦାନ୍ତିକ ସର୍ବେ ସୁଖୀନଃ ଭବନ୍ତୁ ଆଦର୍ଶର ମୂଳ ଭିତ୍ତିରେ ପାଦ ରଖି ଅନ୍ୟମାନଙ୍କର ସଂସ୍କୃତିର ମାନବୀୟ ଅବଦାନକୁ ଉପଭୋଗ କରିବା ପାଇଁ ଗଭୀର ଭାବରେ ଆଗ୍ରହୀ ହୋଇପଡ଼ିଲି । ଏପରି ହେଲା ଯେ ଶେଷରେ ମୋତେ ପ୍ରଥମରୁ ଅଜଣା ଭାରତୀୟ ହିସାବରେ ଘୃଣା କରୁଥିବା ଇଂଲଣ୍ଡର ଜଣେ ମହୀୟସୀ ନାରୀଙ୍କୁ ଏହି ବେଦାନ୍ତିକ ଆଦର୍ଶରେ ଦୀକ୍ଷିତ କରିପାରିଥିଲି । ଏହା ମୋର 'ସାଗର ସେପାରେ' ଉପନ୍ୟାସରେ ବିଶଦ୍ ଭାବରେ ବର୍ଣ୍ଣିତ ହୋଇଛି ।

ଏହିପରି ଭାବରେ ଗତାନୁଗତିକ ଚିନ୍ତାଧାରାରୁ ମୁକ୍ତ ହୋଇ ମୁଁ ପୃଥିବୀର ବିଭିନ୍ନ ଦେଶରେ ସେମାନଙ୍କ ସହିତ ଆତ୍ମୀଭୂତ ହୋଇଯାଇଥିବା ଯୋଗୁ ମୋଠାରେ ଅପାର ଆନନ୍ଦ ସହିତ ମୋର ପ୍ରଚଳିତ ସୀମିତ ପରିସର ଭିତରେ ନିଃସଙ୍ଗତା ବଢ଼ିଯିବା ମଧ୍ୟ ସ୍ୱାଭାବିକ । ମୋର ନିରୋଳା ମୁହୂର୍ତ୍ତମାନଙ୍କରେ ପୃଥିବୀର ବହୁ ଲୋକ ମୋ ଭିତରେ ଭିଡ଼ ଜମାନ୍ତି । ଫଳରେ ମୁଁ ମୋର ପରିପୂର୍ଣ୍ଣ ପରିବାର ତଥା ସମାଜ ଭିତରେ ମଧ୍ୟ ନିଃସଙ୍ଗ ହୋଇପଡ଼େ ।

ଏପରି ନିଃସଙ୍ଗତା ସହିତ ମୋର ଘନିଷ୍ଠ ସଂପର୍କ ଚକର ଛେଉଣ୍ଡ ଜୀବନ ବେଳୁ ହିଁ ଆରମ୍ଭ ହୋଇଛି । ଆଠ-ଦଶ ବର୍ଷର ପିଲାଏ ନାନା ରକମର କୋଳାହଳ ସୃଷ୍ଟି କରୁଥିଲା ବେଳେ ଅନେକ ସଂଧ୍ୟାରେ ବାରଣ୍ଡାର ଗୋଟିଏ ନିରୋଳା କୋଣରେ ବସି ମୁଁ ପ୍ରାର୍ଥନା କରୁଥାଏ ବା କଳ୍ପନା ଜଳ୍ପନାରେ ସମୟ କଟାଇଦିଏ । କଲେଜକୁ ଆସିଲା ପରେ ଦିନ ତମାମ, ନାନା କଥାରେ ବ୍ୟସ୍ତ ରହିଲା ପରେ ନିରୋଳା ରାତିରେ ମୁଁ ରେଭେନ୍ସା କଲେଜରେ ଥିବା ଡଙ୍ଗାକୁ ଧରି ରାତିସାରା କେନାଲରେ ବୁଲୁଥାଏ । ପରୀକ୍ଷା ପର ଛୁଟିରେ ସମସ୍ତେ ନାନା ଭାବରେ ମଉଜ ମଜଲିସ୍ କରୁଥିବା ବେଳେ ମୁଁ ରାତିସାରା କାଠଯୋଡ଼ୀ ନଦୀ ବାଲିରେ ବୁଲୁଥାଏ । ଏହିପରି ଅନେକ ରାତି ମୋର କଟିଯାଏ । ପାଟନାରେ ପଢ଼ିଲାବେଳେ ଗଙ୍ଗାକୂଳରେ ଘଣ୍ଟା ଘଣ୍ଟା ବସି ଗଙ୍ଗାର ଭିନ୍ନ ଭିନ୍ନ ଶୋଭା ଭିତରେ ବୁଡ଼ି ରହିବାକୁ ମୋତେ ଭଲ ଲାଗେ । ଏହି ଏକେଲା ଚାଲ ଦର୍ଶନ ଯୋଗୁ ଆମେରିକାରେ ଛଅମାସ କାଳ ମୁଁ ସାରା ଦେଶ ଏକେଲା ହିଁ ବୁଲିଲି । କାରଣ ଗତାନୁଗତିକ ରୀତିରେ ବନ୍ଧା ଅନ୍ୟ ଭାରତୀୟମାନଙ୍କ ସହିତ ସାଥୀ ହେବା ମୋ ପକ୍ଷରେ ଅସହ୍ୟ ହୋଇଯାଉଥିଲା । ସେମାନଙ୍କ ସହିତ ଯାଇଥିଲେ କଅଣ ମୋ ଭିତରେ ଆମେରିକାର ବହୁତ ସ୍ୱପ୍ନ ମଧୁର ସ୍ମୃତି ସଂଭବ ହୋଇପାରିଥାଆନ୍ତା ? ମୋ ନିଜର ଖିଆଲ ଅନୁସାରେ ସେଠାକାର ବହୁ ସ୍ଥାନ ବୁଲିବାରେ ମୋର ଆନ୍ତରିକ ଆନନ୍ଦ ହେଉଥିଲା । ମୋର ଭାରତୀୟ ସାଥୀମାନେ କଅଣ ମୋ ସହିତ ଭବଘୁରେ ଜୀବନ ସହିତ ଭାଗୀଦାର ହୋଇପାରିଥାନ୍ତେ ? ଦକ୍ଷିଣ ଆମେରିକାର କେଉଁ ଆଣ୍ଡିଜ୍ ପାହାଡ଼ ଦେଖିବାକୁ ଯାଇଥାଆନ୍ତେ, ନା ବେବିଲୋନରେ ଅତୀତ ସଭ୍ୟତାର କରୁଣାୟିତ ସଂଗୀତ ଶୁଣିବାକୁ ଭଗ୍ନ ମନ୍ଦିର ଭିତରେ ସାରାଦିନ କଟାଇପାରିଥାଆନ୍ତେ ? ଏକେଲା ଜୀବନର ଏହା ହେଉଛି ଚରମ ଉପଲବ୍ଧି । ଫଳରେ ଜୀବନଯାକ ନାନା କୋଳାହଳ ଭିତରେ ମଧ୍ୟ ନିରୋଳା ମୁହୂର୍ତ୍ତମାନ ଏପରି ଭାବରେ ଆନନ୍ଦଦାୟକ ଏବଂ ଏହାର ଲିତା ବିଲତାମାନଙ୍କୁ ନୂତନ ରଂଗ ଲଗାଇ ଚାଲିଥାଏ ।

ଅତୀତରେ ଏ ପ୍ରକାର ବନ୍ଧନମୁକ୍ତ ଜୀବନର ଆଉ ଗୋଟିଏ ଉପଲବ୍ଧି ହେଉଛି ଯେ ତୁମେ ସବୁ ବୟସର- ନାନା ଅଭିଜ୍ଞତାର ଲୋକଙ୍କ ସହିତ ଅବାଧ ଭାବରେ ମିଶିପାରିବ । ସେମାନଙ୍କର ଦୁଃଖ ସୁଖ ସହିତ ଭାଗୀଦାର ହେବାରେ ଆନନ୍ଦ ପାଇବ । ଏପରି ଅଗଣିତ ବନ୍ଧୁଙ୍କର ପ୍ରକୃତରେ ବୟସ ନାହିଁ - ଜାତି, ବର୍ଣ୍ଣ, ଧର୍ମ ଓ ଲିଙ୍ଗଗତ ପାର୍ଥକ୍ୟ ନାହିଁ - ଏମାନେ ସବୁ ବିରାଟ ମନୁଷ୍ୟଜାତିର ଅଂଶ ବିଶେଷ । ବିଭିନ୍ନ ସ୍ତରରେ ବିଭିନ୍ନ ପରିସ୍ଥିତିରେ ଜୀବନକୁ ଛୁଇଁବା, ପାଇବା, ଉପଭୋଗ କରିବା ମହାମାନବୀୟତାର ଆତ୍ମବିଭୋରିତ ସ୍ୱପ୍ନ ।

ଏପରି ଭାବରେ ବନ୍ଧୁତା ପ୍ରସାର କରିବାରେ ତୁମ ନିଜ ଲୋକଙ୍କର ସହଯୋଗ ସହଜ ନୁହେଁ । କାରଣ ସେମାନେ ରକ୍ତ ସଂପର୍କ ତଥା ସାମାଜିକ ବନ୍ଧନ ଭିତରେ ଏପରି ଆବଦ୍ଧ ହୋଇରହିଥାଆନ୍ତି ଯେ ସେମାନଙ୍କର ଏ ପ୍ରକାର ସୀମିତ ସଂପର୍କ ବାହାରେ ଅନ୍ୟମାନଙ୍କ ସହିତ ଆନ୍ତରିକ ବନ୍ଧୁତା ବାନ୍ଧିବାରେ ଅସମର୍ଥ ହେବା ସହିତ ତୁମର ଏପରି ବସୁଧୈବ କୁଟୁମ୍ବକମ୍ ନୀତି ବିରୁଦ୍ଧରେ ମତ ପ୍ରକାଶ କରିବା ସ୍ୱାଭାବିକ । ଫଳରେ ତୁମର ନିଃସଙ୍ଗତାର ପରିସର ବୃଦ୍ଧି ପାଇ ପାଇ ଯାଏ । ଅବଶ୍ୟ ଏପରି ନିଃସଙ୍ଗ ମୁହୂର୍ତ୍ତରେ ଯେଉଁମାନଙ୍କର ଭିଡ଼ ଜମିଯାଏ, ତାହା ପ୍ରକାରାନ୍ତରେ ବହୁତ ଆନନ୍ଦଦାୟକ ହୁଏ ।

ମୋ ନିଃସଙ୍ଗତାର ଆଉ ଗୋଟିଏ ପରିସର ହେଉଛି ଯେ ମୁଁ ଅତୀତକୁ ଫେରିଯିବାରେ ଆନନ୍ଦ ପାଏ । ନିଜ ଅତୀତକୁ ଏକେଲାହିଁ ଯିବାକୁ ହୁଏ । ବହୁ ଦେଶର ଏପରି ବ୍ୟାପକ

ଅନୁଭୂତିକୁ ନୂତନ ରଙ୍ଗରେ ଦେଖିବା ପାଇଁ ମୁଁ ପ୍ରାୟ ଷାଠିଏ ବର୍ଷ ପରେ ମୋର ଜନ୍ମସ୍ଥାନ ଗଂଜାମର ସୁରମ୍ୟ ଅଞ୍ଚଳ ଝାଡ଼େଶ୍ୱରଠାକୁ ଗଲି । ସେଠାରେ ମୋ ପିଲାଦିନର ଅତି ପରିଚିତ କୃଷ୍ଣଗିରି ପାହାଡ଼ ତଳେ ନିରୋଳା ସ୍ଥାନରେ ଗୋଟିଏ କ୍ଷୁଦ୍ର ନିଭୃତ ନିଳୟ ତିଆରି କଲି । ସେଠାରେ ଦିନ ରାତିର ନିରୋଳା ମୁହୂର୍ତ୍ତମାନଙ୍କରେ– ମୋର ପିଲାଦିନର ସ୍ମୃତିର ସମାରୋହ ଭିତରେ ଗତ ଜୀବନର ବିଶ୍ୱବ୍ୟାପୀ ବ୍ୟାପକ ସ୍ମୃତିଗୁଡ଼ିକୁ ନୂତନ ରଙ୍ଗରେ ରଞ୍ଜିତ କରି ଦେଖିବାରେ ଅପରିସୀମ ଆନନ୍ଦ ପାଇଲି । ଏହି ବିନ୍ଦୁଠାରୁ ବାହାରି ଜୀବନର ଅପରିସୀମ ଅନୁଭୂତି ଭିତର ଦେଇ ପୁଣି ସେହି ବିନ୍ଦୁଠାରେ ଆଖି ବୁଜି ବସିବା ଗୋଟିଏ ଅନନ୍ୟ ଉପଲବ୍ଧି ବୋଲି ମନେହୁଏ । ପିଲାଦିନର ଆମ ଘରର ସୁଖଦୁଃଖର ମୂକ ସାକ୍ଷୀ ରାମଚଣ୍ଡୀଙ୍କ ସହିତ ଆଖି ମିଳାଇବାରେ ଆନନ୍ଦ ହୁଏ । ଯାହା ହୃଦୟର ନିଭୃତ କଥା ତାହା ନୀରବରେ, ନିର୍ଜ୍ଜନତାରେ, ନିଃଶବ୍ଦ ଭାବରେ ହିଁ ବୋହିଯିବା ଉଚିତ ।

ଏହିପରି ଭାବରେ ପୃଥିବୀର ବିଭିନ୍ନ ପ୍ରାନ୍ତରେ, ବିଭିନ୍ନ ସ୍ତରରେ ଏବଂ ପ୍ରଲମ୍ବିତ ଜୀବନର ଇତିହାସରେ ବିଭିନ୍ନ ଲୋକଙ୍କର ହସ୍ତାକ୍ଷରକୁ ଖୋଜି ବାହାର କରିବା ତଥା ଅତୀତର ସ୍ମୃତିମାନଙ୍କ ସମାରୋହରେ ଘୂରିବାର ଭବଘୂର ମାନସିକତା ଭିତରେ ଚିରନ୍ତନ ଜିଜ୍ଞାସା ଓ ଅନିର୍ଦ୍ଦିଷ୍ଟ ଅନ୍ୱେଷଣାର ସୀମାହୀନ ଦିଗନ୍ତ ସହିତ ଅନ୍ୟମାନେ ଭାଗୀଦାର ନ ହୋଇପାରିବା ସ୍ୱାଭାବିକ । ଏହାହିଁ ନିଃସଙ୍ଗତାର ମୂଳଭିତ୍ତି । ଫଳରେ ଜୀବନର ଏହି ସୁଦୂର ପ୍ରସାରୀ ବେଳାଭୂମିରେ ଏକେଲା ହିଁ ଚାଲିବାରେ ଆନନ୍ଦ ।

ଏକେଲା ଚାଲିବା ରାସ୍ତାର ଦିଗ୍‌ବଳୟ ଭିତରେ ଭଗବାନର ଅସ୍ତିତ୍ୱ ବିଷୟରେ ସନ୍ଦିହାନ ମନ ଭିତରେ କେବଳ ନକାରାତ୍ମକ ପ୍ରଶ୍ନ ପରିବର୍ତ୍ତେ କୌଣସି ଗୋଟିଏ ସକାରାତ୍ମକ ଭାବୋଦ୍ଦୀପକ ଧାରଣାର ଆବଶ୍ୟକତା ରହିଛି । ମୋର ଏହି ଦର୍ଶନଟି ହେଉଛି ମାନବ ଆତ୍ମସତ୍ତାର ବିବର୍ତ୍ତିତ ରୂପାନ୍ତରୀକରଣ । ଏହାକୁ ଧ୍ୟାନ ଧାରଣା ମାଧ୍ୟମରେ ଉପଲବ୍ଧି କରିପାରିଲେ ବଳିଷ୍ଠ ଆତ୍ମବିଶ୍ୱାସ ସଂଭବ ହୁଏ । ଭଗବାନହୀନ ଅସୀମ ଶୂନ୍ୟତା ଗର୍ଭରୁ - ପ୍ରଜ୍ଞାୟିତ ଆଲୋଡ଼ନର ପ୍ରକ୍ରିୟା ଭିତରୁ–ଫେନାୟିତ ବିବର୍ତ୍ତନଶୀଳ ଚେତନା ପରିପ୍ରକାଶିତ ହୁଏ- ଏହାହିଁ ମନୁଷ୍ୟଠାରେ ସୃଜନଶୀଳ ଚିନ୍ତା ସୃଷ୍ଟି କରିପାରେ । ଏ ପ୍ରକାରର ଫେନାୟିତ ବୁଦ୍‌ବୁଦ୍ ହେଉଛନ୍ତି ମୋର ପରଜୀବନର ଉପନ୍ୟାସଗୁଡ଼ିକର ପ୍ରାଣବନ୍ତ ନାୟକ ନାୟିକାମାନେ । ମୋ ଅତୀତର ସ୍ମୃତି ଭିତରୁ ସେମାନେ ଛାଏଁ ଛାଏଁ ଭାସିଉଠନ୍ତି । ସେମାନଙ୍କର ଭଲ ମନ୍ଦରେ ମୁଁ ଗଭୀର ଭାବରେ ଭାଗୀଦାର ହୋଇପଡ଼େ । ଫଳରେ ମୋର ମାନସିକତା ଭିତରେ ଏମାନେ ଅନେକ ସମୟରେ ଭିଡ଼ ଜମାଇ ବସିଥାଆନ୍ତି । ମୁଁ ମୋର ସାମାଜିକ ପରିସର ସହିତ ସହଯୋଗ କରୁଥିଲା ବେଳେ ସେମାନେ ମଝି ମଝିରେ ଆସି ଉଙ୍କି ମାରି ଯାଆନ୍ତି । ମୋର ଏକେଲା ଚାଲିବା ପଥରେ ଏମାନେ ଅନବରତ ଦେଖାଯାଆନ୍ତି । ତେଣୁ ମୋର ଏକେଲା ଚାଲିବା ନିରର୍ଥକ କିମ୍ବା ଦୁଃଖଦାୟକ ନୁହେଁ ।

■ ■ ■

୧୪

# ମୃତ୍ୟୁର ଶୋଭାଯାତ୍ରା

ଜୀବନକାଳ ଭିତରେ ମୃତ୍ୟୁର ଶୋଭାଯାତ୍ରା ଯେପରି ଅହରହ ଚାଲିଛି ନୂତନ ଜୀବନର ସ୍ରୋତ ମଧ୍ୟ ସେହିପରି ଅବାରିତ ଭାବରେ ପ୍ରବାହିତ ହେଉଛି । ଜୀବନର ଏହା ଦୁଇଟି ଅବିଚ୍ଛିନ୍ନ ଅଂଗ । ଗୋଟିଏ ଜୀବନର ମୃତ୍ୟୁ ହେଲେ ଆଉ ଗୋଟିଏ ନୂତନ ଜୀବନର ଆର୍ବିଭାବ ସଂଭବ । ଗୋଟିଏ ନୂଆ ପତ୍ର କଅଁଳିଲେ ପୁରୁଣା ପତ୍ରଟିଏ ଝଡ଼ିପଡ଼ିବା ସ୍ୱାଭାବିକ । ଏ ବିଷୟରେ ସମସ୍ତଙ୍କର ଧାରଣା ଅତି ସ୍ୱଚ୍ଛ ଥିଲେ ମଧ୍ୟ ମୃତ୍ୟୁକୁ ଭୟ କରୁ ନ ଥିବା ବ୍ୟକ୍ତି ବହୁତ କମ୍ । କାରଣ ଜୀବନର ମୌଳିକ ଧର୍ମ ହେଲା ମୃତ୍ୟୁମୁଖରୁ ନିଜକୁ ଅହରହ ବଂଚାଇ ରଖିବାର ବଳିଷ୍ଠ ପ୍ରବଣତା- ତାହାହିଁ ଜୀବନରେ ମାଦକତା ଆଣିଦିଏ । ପ୍ରତ୍ୟେକ ପ୍ରାଣୀ ମୃତ୍ୟୁଠାରୁ ଦୂରରେ ରହିବାକୁ ଚାହେଁ । କିନ୍ତୁ ମଣିଷର ପ୍ରବଳ କଳ୍ପନା ଶକ୍ତି ଯୋଗୁ ତାଠାରେ ମୃତ୍ୟୁଭୟ ଏପରି ବ୍ୟାପକ ହୋଇଯାଏ ଯେ ସେହି ଚିନ୍ତାରେ ହିଁ ସେ ବହୁ ସମୟ ଧରି ମ୍ରିୟମାଣ ହୋଇରହେ । ଅତି ଦୁର୍ବଳ ପ୍ରକୃତିର ଲୋକମାନେ ଜୀବନର ଏହି ସତ୍ୟଟିକୁ ଉପଲବ୍ଧି କରିବାରେ ପ୍ରାୟ ଅକ୍ଷମ ହୋଇଥାଆନ୍ତି । ଫଳରେ ଜୀବନକାଳ ଭିତରେ ସେମାନେ ଅନେକ ସମୟ ଧରି ମୃତ୍ୟୁଭୟରେ ସମୟ କଟାନ୍ତି । ତେଣୁ କଥାରେ ଅଛି ଯେ ଥରେ ମରିବା ପୂର୍ବରୁ ଏମାନେ ବହୁବାର ମରିଥାଆନ୍ତି ଅର୍ଥାତ୍ ମୃତ୍ୟୁ ଭୟରେ ସଦାବେଳେ ସେମାନେ ମଲାପରି ଅନୁଭବ କରିଥାଆନ୍ତି । ଏ ସଂପର୍କରେ ଯେତେ ଉପଦେଶ ଦେଲେ ମଧ୍ୟ ପରିଣତ ବୟସ ପୂର୍ବରୁ ଯେ କୌଣସି ଲୋକ ମରିବାକୁ ନିଶ୍ଚିତ ଭାବରେ ଭୟ କରିବ । ଅବଶ୍ୟ ବହୁ ଲୋକ ଅଶୀ-ନବେ ବର୍ଷ ଯାଏଁ ବଞ୍ଚି ରହିଥିଲେ ମଧ୍ୟ ମୃତ୍ୟୁକୁ ଆଗ ପରି ଭୟ କରିଥାଆନ୍ତି । ଏହା ସେମାନଙ୍କର ଅଭ୍ୟାସଗତ ହୋଇଯାଇଥାଏ । ଏହା ଅସ୍ୱାଭାବିକ ନ ହେଲେ ମଧ୍ୟ ଜୀବନର ବହୁ କାମ ସାରିଲା ପରେ ଏବଂ ନାନା ଧରଣର ସୁଖଦୁଃଖ ଭିତର ଦେଇ ଘର ସଂସାର କରି ସାରିଥିଲା ପରେ ପରିଣତ ବୟସରେ ମୃତ୍ୟୁ ନେଇ ଭୟଭୀତ ହୋଇରହିବା ଗୋଟିଏ ଦୁଃଖଦାୟକ ଘଟଣା । ଯାହା ଅବଶ୍ୟମ୍ଭାବୀ, ସେଥିନେଇ ଚିନ୍ତିତ ରହିବା ମାନସିକ ତଥା ଶାରୀରିକ ସ୍ୱାସ୍ଥ୍ୟ ପକ୍ଷରେ ଆଦୌ ଅନୁକୂଳ ନୁହେଁ । ବାରମ୍ବାର ମୃତ୍ୟୁ କଥା ଭାବିଲେ ବରଂ ମୃତ୍ୟୁର ସଂଭାବନା ବଢ଼ି ବଢ଼ି ଚାଲେ

କାରଣ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହି ନକାରାତ୍ମକ ଭାବନା ଅତି ଶୀଘ୍ର ଫଳବତୀ ହୋଇଯିବାର ସଂଭାବନା ରହିଛି ।

ଏହି ଦୃଷ୍ଟିରୁ ମୋର ପରିଣତ ବୟସରେ, ମୋର ସମସ୍ତ ପାରିବାରିକ ଦାୟିତ୍ୱ ସରିଯାଇଥିଲା ବେଳେ ଏବଂ ସମସ୍ତେ ଭଲରେ ପ୍ରତିଷ୍ଠିତ ହୋଇସାରିଥିଲା ବେଳେ ମୋଠାରେ ମୃତ୍ୟୁଭୟ ପ୍ରାୟ ନାହିଁ କହିଲେ ଚଳେ । ଅବଶ୍ୟ ମୋର ବର୍ତ୍ତମାନର ଆନନ୍ଦମୟ ଜୀବନରୁ ସବୁଦିନ ଲାଗି ଅପସରିଯିବା, ମୋର ସୁନ୍ଦର ଫଳ ବୃକ୍ଷଭରା ପରିପୂର୍ଣ୍ଣ ପରିବେଶର ସବୁଜିମା, ମୋର ପ୍ରିୟଜନମାନଙ୍କୁ ଛାଡ଼ିଯିବାରେ ଦୁଃଖ ନିଶ୍ଚୟ ହେବ ସତ, କିନ୍ତୁ ମୁଁ ସେଥିପାଇଁ ବିବ୍ରତ କମ୍ୱା ଅଯଥା ଚିନ୍ତିତ ନୁହେଁ । ମୋର ପ୍ରଲମ୍ବିତ ଜୀବନର ଅଗଣିତ ମଧୁର ସ୍ମୃତିରୁ ଚିରଦିନ ବିଚ୍ୟୁତ ହୋଇଯିବାରେ ଦୁଃଖ ନିଶ୍ଚୟ ହେଉଛି, କିନ୍ତୁ ଯେ କୌଣସି ସମୟରେ ମୃତ୍ୟୁ ପାଇଁ ମୁଁ ପ୍ରସ୍ତୁତ ହୋଇରହିଛି ।

ଜୀବନ କାଳରେ ବହୁ ସ୍ଥାନ, ବହୁ ଦେଶ ଭ୍ରମଣ କରିବା ବେଳେ ଯେପରି ବ୍ୟାପକ ପ୍ରସ୍ତୁତିର ଦରକାର ହୁଏ - ବିଦେଶ ଯିବାରେ ପାସ୍‌ପୋର୍ଟ, ଭିସା, ଅଗ୍ରୀମ ଉଡ଼ାଜାହାଜ ଟିକେଟ, ସୁଟ୍‌କେଶ ସଜାଡ଼ିବାର ଆୟୋଜନ ଓ ଉଦ୍‌ବିଗ୍ନତା ମୃତ୍ୟୁ ଯାତ୍ରା ପାଇଁ ଦରକାର ନାହିଁ । ସାଙ୍ଗରେ କିଛି ଯିବାର ନାହିଁ- ଖାଲି ତୁମେ ଏକା ଏକା ଖାଲି ହାତରେ ମୃତ୍ୟୁ ପାଖରେ ପହଞ୍ଚିଯିବ । ସେତେବେଳେ ମୋ ଗଛପତ୍ର ମୋ ପାଇଁ ଥରେ ମାତ୍ର ଦୋହଲିଯିବେ ନାହିଁ କି ଡାଳରୁ ଖସିପଡୁଥିବା ପତ୍ରଟି ମୋ ପାଇଁ ଅପେକ୍ଷା କରିବ ନାହିଁ- ସେ ଖସିବ ହିଁ ଖସିବ- ଫୁଲ ସେହିପରି ହସୁଥିବ- ପାଚିଲା ଆମ୍ବ ସବୁ ସେହିପରି ଝୁଲୁଥିବେ- ମୁଁ ହିଁ ଏକେଲା ଏ ସ୍ଥାନ ଛାଡ଼ି ଚାଲିଯିବି । ମୋ ପିଲାମାନେ ଆସି ଦେଖିବେ ଯେ ସବୁ ସେହିପରି ଠିକ୍ ଠିକ୍ ରହିଛି— କେବଳ ମୋର ଖଟଟି ଖାଲି- ମୋର ଚୌକିରେ କେହି ବସି ନାହାନ୍ତି- ମୋର ବହିପତ୍ର ଠିକ୍ ସେହିପରି ରଖା ହୋଇଛି-ମୋର ଉପନ୍ୟାସଟିଏ ଅଧା ଲେଖା ହୋଇରହିଯାଇଛି-ମୋର ଆଉ କେତୋଟି ସ୍ୱପ୍ନ ସ୍ୱପ୍ନରେ ହିଁ ରହିଯାଇଛି- କାରଣ ସ୍ୱପ୍ନ ତ ସମଗ୍ର ଜୀବନବ୍ୟାପୀ- ଅଖଣ୍ଡ ଏହାର ସ୍ରୋତ । ଖାଲି ଏତିକି ହେଲା ଯେ ତାହା ହଠାତ୍ ଗୋଟିଏ ବିନ୍ଦୁରେ ଅଟକିଗଲା - ଏହି ସ୍ୱପ୍ନର ନିଜସ୍ୱ ରଙ୍ଗ ରହିଲା ନାହିଁ ଯଦିଚ ଏ ପ୍ରକାର ସ୍ୱପ୍ନ ଅନ୍ୟମାନଙ୍କଠାରେ ଅନ୍ୟ ରଂଗରେ, ଅନ୍ୟ ରୂପରେ, ପ୍ରକାଶ ପାଇପାରିବ- କାରଣ ଜୀବନ ସ୍ରୋତର ବ୍ୟାହତ ହେବା କଥା ନୁହେଁ - କେବଳ ଗୋଟିଏ ଢେଉର ଅବସାନ ହେବ- ତା ସ୍ଥାନରେ ଆଉ ଅନେକ ଢେଉ ସ୍ୱାଭାବିକ ଭାବରେ ଦେଖା ଦେବା ମଧ୍ୟ ସ୍ୱାଭାବିକ ।

ମୋ ମତରେ ଦୁଃଖ, ଅଶାନ୍ତି, ଅଭିଯୋଗ, ଅଭିମାନ, ଅସନ୍ତୋଷ ଓ ମୃତ୍ୟୁଭୟ ବୟସକୁ ବଢ଼ାଇ ଦିଏ । ମୃତ୍ୟୁକୁ ନିକଟତର କରାଏ- ମୃତ୍ୟୁକୁ ଭୟଙ୍କର ରୂପରେ ଦେଖାଏ । କିନ୍ତୁ ପରିଣତ ବୟସରେ ଏ ପ୍ରକାର ଜଞ୍ଜାଳରୁ ମନୁଷ୍ୟ ବହୁ ପରିମାଣରେ ଦୂରେଇ ରହିବା ଉଚିତ । ସଂପୂର୍ଣ୍ଣ ରୂପେ ମୁକ୍ତ ନ ହୋଇପାରିଲେ ମଧ୍ୟ ଏସବୁ ଜଂଜାଳରୁ ନିଜକୁ ଦୂରେଇ ରଖିବାର ଏକମାତ୍ର ଉପାୟ ହେଲା ଅସନ୍ତୋଷରହିତ ନିର୍ଲିପ୍ତତା । ପିଲାମାନେ ତୁମର ଆଦର ଯତ୍ନ କଲେ ଖୁସି, କିନ୍ତୁ ନ ପଚାରିଲେ ମଧ୍ୟ ଅସନ୍ତୁଷ୍ଟ ହେବା ଉଚିତ

ନୁହେଁ । ସେମାନଙ୍କର ସୁଖ ଦୁଃଖରେ ଭାଗୀଦାର ହେବା ଦରକାର, କିନ୍ତୁ ତାର ଅଭାବରେ ନିଜକୁ ଏକେଲା ମନେ କରିବା ଉଚିତ ନୁହେଁ ।

ଏ ସଂପର୍କରେ ମୁଁ ଆଗରୁ ଏପରି ଯୋଜନା କରିଛି ଯେ ମୋର ପରିଣତ ବୟସରେ ମଧ୍ୟ ମୁଁ କାହାରି ଉପରେ ଆର୍ଥିକ ବୋଝ ହୋଇ ଯେପରି ନ ରହେ । ମୋର ସଂଚିତ ଅର୍ଥରେ ଯେପରି ମୋର ସମସ୍ତ ବ୍ୟୟ ସଂଭବ ହୋଇପାରିବ । କାରଣ ପାରିବାରିକ ସ୍ନେହ ସଂପର୍କ ଯେତେ ଭଲ ଥିଲେ ମଧ୍ୟ ଆର୍ଥିକ ନିର୍ଭରଶୀଳତା ଅନେକ ସମୟରେ ମନୋମାଳିନ୍ୟ ସୃଷ୍ଟି କରେ । ଏପରିକି ସ୍ୱାମୀ ସ୍ତ୍ରୀ ମଧ୍ୟରେ ମଧ୍ୟ ଏ ପ୍ରକାର ବସ୍ତୁବାଦୀ ନିର୍ଭରଶୀଳତା ନାନାଧରଣର ଅସନ୍ତୋଷର ସୂତ୍ରପାତ କରେ । ତେଣୁ ତୁମର ବାର୍ଦ୍ଧକ୍ୟ ସମୟରେ ଯେପରି ତୁମେ ସଂପୂର୍ଣ୍ଣ ରୂପେ ଆର୍ଥିକ କ୍ଷେତ୍ରରେ ଆତ୍ମନିର୍ଭରଶୀଳ ହୋଇ ରହିପାରିବ । ତାହେଲେ ତୁମର ପୁଅ ଝିଅମାନଙ୍କର ସ୍ନେହ ଶ୍ରଦ୍ଧା ତୁମ ପ୍ରତି ଅତୁଟ ରହିପାରିବ । ତା ପରେ ସେମାନେ ଯେତିକି ସାହାଯ୍ୟ କରିବେ ତାହା ଦୁଇଜଣଙ୍କ ପକ୍ଷରେ ଆନନ୍ଦଦାୟକ ହେବ । ଏହା ସାହାଯ୍ୟ ରୂପରେ ପରିଗଣିତ ହେବ ନାହିଁ, ବରଂ ସ୍ନେହାନୁବଂଧନଗତ ପ୍ରୀତି ଉପହାର ରୂପରେ ପରସ୍ପର ପ୍ରତି ଆନନ୍ଦଦାୟକ ହେବ । ମୋର ଏହି ନୀତି ଯୋଗୁ ମୋର ପରିଣତ ବୟସରେ ଅନ୍ୟମାନଙ୍କର ସ୍ନେହ ଶ୍ରଦ୍ଧା ଛଡ଼ା କୌଣସି ପ୍ରକାରର ଅପ୍ରୀତିକର ଆର୍ଥିକ ନିର୍ଭରଶୀଳତାର ପ୍ରଶ୍ନ ଉଠେ ନାହିଁ ।

ବହୁବର୍ଷ ଧରି ନିୟମିତ ଭାବରେ ଯୋଗାସନ କରିବା ଏବଂ ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଯାହା କିଛି ଆବଶ୍ୟକ, ଯେପ୍ରକାର ସୁଷମ ଖାଦ୍ୟ, ଯେତିକି ପରିମାଣରେ ଖାଇବା– ସେଥିପ୍ରତି ମୁଁ ବରାବର ନଜର ରଖିଥିବା ଯୋଗୁ ମୋର ସ୍ୱାସ୍ଥ୍ୟ ଅତ୍ୟନ୍ତ ଭଲ- ମୁଁ ପ୍ରାୟ ନିରୋଗ ଏବଂ ସ୍ୱାସ୍ଥ୍ୟବାନ । ତେଣୁ ଶହେବର୍ଷ ଯାଏଁ ବଂଚିବାର ଅଭିପ୍ରାୟ ମୋର ରହିଛି ତଥାପି ଯେ କୌଣସି ମୁହୂର୍ତ୍ତରେ ମୁଁ ଚାଲିଯିବା ପାଇଁ ପ୍ରସ୍ତୁତ ଅଛି । ରୋଗଗ୍ରସ୍ତ ହୋଇ ବିଛଣାରେ ଅକ୍ଷମ ଅବସ୍ଥାରେ ପଡ଼ିରହିବା ଠାରୁ ମୃତ୍ୟୁ ବହୁଗୁଣରେ ଭଲ ବୋଲି ମୋର ବିଶ୍ୱାସ । ମୁଁ ମଲା ବେଳକୁ ଯେପରି ବଳିଷ୍ଠ ଭାବରେ ଚାଲି ଚାଲି ଶ୍ମଶାନରେ ପହଞ୍ଚିପାରିବାର ସାମର୍ଥ୍ୟ ମୋଠାରେ ରହିଥାଏ– ତାହା ହେଉଛି ମୋର ଏକାନ୍ତ କାମନା । ବର୍ତ୍ତମାନ ସୁଦ୍ଧା ମୋର ମନେହେଉଛି ମୁଁ ଏଥିପାଇଁ ସମର୍ଥ ହୋଇପାରିବି ।

ଯେହେତୁ ମୁଁ ନାସ୍ତିକ, ସ୍ୱର୍ଗ ନରକ ପରି କାଳ୍ପନିକ ମାନସିକ ବିଭ୍ରାନ୍ତି ମୋର ନାହିଁ କି ମୋର ଆତ୍ମା ପରମାତ୍ମା ସହିତ ମିଶିଯିବାର ବାସନା ନାହିଁ । ଅନ୍ୟାନ୍ୟ ଦେହଧାରୀ ଜନ୍ତୁମାନଙ୍କ ପରି ମୁଁ ପଞ୍ଚଭୂତରେ ହିଁ ବିଲୀନ ହୋଇଯିବି । ମୋର ପୁନର୍ଜନ୍ମରେ ବିଶ୍ୱାସ ନାହିଁ । ଠିକ୍ ମୋ ପରି ଆଉ ଜଣେ କେବେ ଜନ୍ମ ନେଇପାରେ, କିନ୍ତୁ ସେ ମୁଁ ନୁହେଁ । ମୋର ସମସ୍ତ ମାନସିକତା ଆଶା ଆକାଂକ୍ଷା ଆଦର୍ଶ ସ୍ୱପ୍ନ କେବଳ ସାମୟିକ ସମଷ୍ଟିଗତ ଜୈବିକ ପ୍ରକ୍ରିୟା-ଦେହର ଅବସାନ ପରେ ଏହି ପ୍ରକ୍ରିୟା ମଧ୍ୟ ଲିଭିଯିବା ସ୍ୱାଭାବିକ ବୋଲି ମୋର ଦୃଢ଼ ଧାରଣା । ଏ ସଂପର୍କରେ ଗୋଟିଏ ପ୍ରଶ୍ନ ଉଠିପାରେ ଯେ ମନୁଷ୍ୟର ଯଦି ସ୍ୱର୍ଗ ନରକ ନାହିଁ, ପୁନର୍ଜନ୍ମ ନାହିଁ, ଭଗବାନଙ୍କଠାରେ ସେ ଦାୟୀ ନୁହେଁ– ତାହାହେଲେ ତା ପାଇଁ ପାପପୁଣ୍ୟ ସବୁ ସମାନ । ତାହାହେଲେ ସେ ସହଜିଆ ପାପ କାମ ନ କରି ସବୁବେଳେ ଭଲ କାମ କାହିଁକି କରିବ ? ପାପ କଲେ ତାର ମାନସିକ ପ୍ରକ୍ରିୟାରେ ଯେତେ

ପ୍ରକାରର ବିବେକଗତ ଏବଂ ତାର ସାମାଜିକ ସଂପର୍କରେ ଅହରହ ତିକ୍ତତା ଲାଗିରହିବ, ସେଥିରୁ ସଂପୂର୍ଣ୍ଣରୂପେ ନିଜକୁ ମୁକ୍ତ ରଖିପାରିଲେ ଜଣେ ଜୀବନରେ ସୁଖୀ ରହିପାରିବ। ଜୀବନଯାକ ନାନାପ୍ରକାରର ଦୁଃଖଦାୟକ ଓ ଅନୁତାପ ଏବଂ ଗ୍ଲାନିଜନିତ ଦୁଶ୍ଚିନ୍ତା ଏବଂ ଅଶାନ୍ତି ଅପେକ୍ଷା ମାନସିକ ଶାନ୍ତି, ଅନ୍ୟମାନଙ୍କ ଦ୍ୱାରା ପ୍ରଶଂସିତ ଜୀବନ କଅଣ ଶ୍ରେୟ ନୁହେଁ ? ତାହାହିଁ ମୋଠାରେ ଜୀବନକାଳ ଭିତରେ ତଥାକଥିତ ସ୍ୱର୍ଗପ୍ରାପ୍ତିର ଆନନ୍ଦ। ଯେଉଁମାନେ ଏ ଜୀବନରେ ଆନନ୍ଦ ପାଇପାରନ୍ତି ନି  ସେମାନେ ସ୍ୱର୍ଗକୁ ଯିବା ଲାଗି ଉଦ୍‌ଗ୍ରୀବ ହୋଇ ରହିଥାନ୍ତି। ରାଜା ମହାରାଜ ଓ ଧନୀ ଲୋକମାନେ ହିଁ ନିଜର ଉତ୍‌ଫୁଲ୍ଲିତ ଅହଂକାରର ଚରିତାର୍ଥ ଲାଗି ସ୍ୱର୍ଗର କଳ୍ପନା କରିଛନ୍ତି। ସେଠାରେ ସେମାନେ ସବୁ ଜିନିଷ ଯେପରି ଚାହିଁଲାକ୍ଷଣି ପାଇପାରିବେ, ଏପରିକି ସୁନ୍ଦରୀ ଅପସରାମାନଙ୍କୁ ମଧ୍ୟ।

ମୋଟାମୋଟି ଭାବରେ ମୋର ଆଗରୁ ଯେ ମୃତ୍ୟୁଭୟ ନଥିଲା ତାହା ନୁହେଁ। ବହୁବର୍ଷ ତଳେ ମୋର ଥରେ ଜ୍ୱର ହୋଇଥିଲା ସେତେବେଳେ ମରିବାକୁ ମୁଁ ଭୟ କରୁଥିଲି କାରଣ ମୋର ଝିଅଟିଏ ସେତେବେଳକୁ ବାହା ହୋଇନଥିଲା। କିମ୍ବା ଜୀବନରେ ସେ ପ୍ରତିଷ୍ଠିତ ହୋଇନଥିଲା। କିନ୍ତୁ ସମସ୍ତ ପ୍ରକାରର ପାରିବାରିକ ଦାୟିତ୍ୱ ସରିଗଲା ପରେ ମୃତ୍ୟୁକୁ ଭୟ କରିବାର କୌଣସି କାରଣ ନାହିଁ। ଯେହେତୁ ଜୀବନ ସୁନ୍ଦର - ଜୀବନ ନାନା ଭାବରେ ଉପଭୋଗ୍ୟ ବୋଲି ଏହି ଜୀବନକୁ ମୁଁ ଭଲ ପାଉଛି - ମୋର ଅଗଣିତ ବନ୍ଧୁଙ୍କର ଅପରିସୀମ ସ୍ନେହ ଆଦର ଓ ଗଭୀର ଶ୍ରଦ୍ଧାର ପରିବେଶ ଭିତରେ ମୁଁ ସମୟ କଟାଉଛି ଦେଖି ଏହି ପରିପ୍ରେକ୍ଷୀରେ ମୃତ୍ୟୁର ସମ୍ମୁଖୀନ ହେବାକୁ ମୋର ଇଛା ନ ହେବା ସ୍ୱାଭାବିକ। କିନ୍ତୁ ମୃତ୍ୟୁ ପରି ଅପରିହାର୍ଯ୍ୟ ସତ୍ୟର ସମ୍ମୁଖୀନ ନ ହେବାରେ ମୋର ସେପରି ଭୟ ନାହିଁ- ଯଦିଚ ଛାଡ଼ିଯାଉଥିବା ଲୋକଙ୍କର ମୋର ଅନୁପସ୍ଥିତି ନେଇ ଯେଉଁ ଦୁଃଖ ହେବ ସେଥିପାଇଁ ମୁଁ ଦୁଃଖ ପାଏ - ମୋତେ ସେମାନେ ଓ ପରିବାରର ଲୋକେ କିପରି ଝୁରିବେ ସେଥିଯୋଗୁ ଦୁଃଖ ହୁଏ। କୌଣସି ସ୍ୱପ୍ନ ଅସଂପୂର୍ଣ୍ଣ ରହିଯାଏ ବୋଲି ଅନୁତାପ ହେବନାହିଁ। କାରଣ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଅବାରିତ ସ୍ୱପ୍ନଧାରା ଲାଗି ରହିବା ସ୍ୱାଭାବିକ, କାରଣ ଜୀବନ ହିଁ ସ୍ୱପ୍ନ - ସ୍ୱପ୍ନ ହିଁ ଜୀବନ।

ମୃତ୍ୟୁର ଶୋଭାଯାତ୍ରାରେ ସାମିଲ ନ ହେବା ପର୍ଯ୍ୟନ୍ତ ନୂଆ ନୂଆ ଲୋକଙ୍କର ନୂତନ ସ୍ୱପ୍ନ ଭିତରେ ଫୁଟି ଉଠିବାରେ ମୋର ଅସୀମ ଆନନ୍ଦ। ବିଭିନ୍ନ ସ୍ତରରେ ଜୀବନକୁ ଛୁଇଁବା-ପାଇବା-ଉପଭୋଗ କରିବା-ସ୍ନେହ ଓ ଭଲ ପାଇବା—ମନୁଷ୍ୟ ଜୀବନର ଚିରନ୍ତନ ଜିଜ୍ଞାସା ଓ ଅନ୍ୱେଷଣା ସହିତ ଭାଗୀଦାର ହୋଇ ବଂଚିବାରେ ସାର୍ଥକତା। ଜୀବନର ଏହି ଦିଗହୀନ ଅସୀମ ବେଳାଭୂମିରେ ନିଜର ପଦଚିହ୍ନ ରଖି ଯିବାରେ ଅପରିସୀମ ଆନନ୍ଦ। କେବଳ ସମୟର ଢେଉ ଗଣିବା ପାଇଁ ବଂଚିରହିବା ନିରର୍ଥକ ବୋଲି ମୋର ମନେହୁଏ। ଠିକ୍ ଏହି କାରଣରୁହିଁ ମୁଁ ବହୁ ସାମାଜିକ କାର୍ଯ୍ୟରେ ନିଜକୁ ନିୟୋଜିତ କରେ - ବ୍ୟକ୍ତିବିଶେଷଙ୍କୁ ମୋର ସାମର୍ଥ୍ୟ ଭିତରେ ସାହାଯ୍ୟ କରିବାକୁ ଆଗେଇଯାଏ। ମୋ ମତରେ ଏପ୍ରକାର ସକାରାତ୍ମକ କାର୍ଯ୍ୟରେ ଆନ୍ତରିକତା ଏବଂ ନିଷ୍ଠାର ସହ ସାମିଲ୍ ହେଲେ ହିଁ ସମୟର ଢେଉ ବିଚିତ୍ର ବର୍ଣ୍ଣାଳୀରେ ଉଦ୍‌ଭାସିତ ହୋଇଉଠେ। ଶହେବର୍ଷ ଯାଏଁ ବଂଚିବାର ସାର୍ଥକତା

ଉପଲବ୍ଧି କରିହୁଏ । ଏହାହିଁ ଥିଲା ଆମ ଭାରତୀୟ ଐତିହ୍ୟିକ ବାନପ୍ରସ୍ଥ ଜୀବନର ଶ୍ରେଷ୍ଠ ଉପଲବ୍ଧି ।

ନିଜ ଜୀବନର ସ୍ୱପ୍ନଧାରାରୁ ମୃତ୍ୟୁ ଯୋଗୁ ବିଚ୍ୟୁତ ହୋଇଯିବା ଦୁଃଖରେ ହିଁ ମଣିଷ ନିଜର ପରବର୍ତ୍ତୀ ଜନ୍ମକଥା କଳ୍ପନା କରି ଆନନ୍ଦ ପାଇଥାଏ ଯେ ତାର ଏହି ବିନ୍ଦୁରୁ ସେ ପୁଣି ଆର ଜନ୍ମରେ ଆରମ୍ଭ କରିବ; କିନ୍ତୁ ଏହା କେବଳ ତଥ୍ୟ ବହିର୍ଭୂତ ବ୍ୟକ୍ତିଗତ ଅଳୀକ କଳ୍ପନା ବୋଲି ମନେହୁଏ । ମାତ୍ର ମୋର ସ୍ୱପ୍ନଧାରାରୁ ମୁଁ ଜଣେ ବ୍ୟକ୍ତି ବିଶେଷ ଭାବରେ ଅର୍ନ୍ତହିତ ହୋଇଗଲା ପରେ ମୁଁ ଛାଡ଼ିଯାଇଥିବା ଧାରା ନେଇ ଭବିଷ୍ୟତ ପିଢ଼ିର ସ୍ୱପ୍ନ ତରଙ୍ଗାୟିତ ହେବ । ଆମର ପୂର୍ବ ସୂରୀମାନଙ୍କର ସ୍ୱପ୍ନରୁହିଁ ଆମମାନଙ୍କର ସ୍ୱପ୍ନର ଜନ୍ମ । ତେଣୁ ମାନବିକ ଚିନ୍ତାଧାରା ଅକ୍ଷତ, ନିରବଚ୍ଛିନ୍ନ- ବ୍ୟକ୍ତି ବିଶେଷ ଏହି ବିରାଟ ସ୍ୱପ୍ନ ରାଜ୍ୟର କେତୋଟି କ୍ଷଣସ୍ଥାୟୀ ବୁଦ୍‌ବୁଦ୍ ମାତ୍ର । ଏହି ଜୀବନ ଦର୍ଶନ ମୋତେ ଅହରହ ନୂତନ ଚିନ୍ତା, ନୂତନ ସ୍ୱପ୍ନ ଦେଖିବାରେ ଉତ୍ସାହିତ କରି ଆସିଛି ।

ଏହି ପରିପ୍ରେକ୍ଷୀରେ ମୋ ନିଜର ମୃତ୍ୟୁକାଳୀନ ଦୃଶ୍ୟକୁ ଆଖି ଆଗରେ କଳ୍ପନା କରୁଛି ।

ଜୀବନର ଅଶ୍ରୁତ କ୍ରନ୍ଦନର ଅବ୍ୟକ୍ତରାଗିଣୀ ଲିଭି ଲିଭି ଆସୁଛି- ବିଦାୟର ଅନ୍ତିମ ମୁହୂର୍ତ୍ତ ପହଞ୍ଚିଲା । ଚାରିଆଡ଼େ ଆକ୍ଷି ବୁଲାଇ ଦେଖିଲି– ସେଥିପାଇଁ ମର୍ମାହତ ହେବା ପରି ଜଣା ଗଲା ନାହିଁ । ମୋର ଝରକାକୁ ଲାଗି ଯେଉଁ କଦମ୍ବ ଗଛ ତାର ସୁରଭିରେ ମୋତେ ସ୍ୱପ୍ନ ଦେଖିବାର ମାଦକତା ଆଣି ଦେଉଥିଲା– ତା ଦେହରେ ଲଟେଇ ଥିବା ମାଳତୀର ବର୍ଷା ଭିଜା ବାସ୍ନା ମୋତେ ସ୍ୱପ୍ନାତୁର କରି ପକାଉ ଥିଲା– ସମସ୍ତେ ସେହିପରି ନିର୍ଲିପ୍ତ ଭାବରେ ଚାହିଁ ଥିଲେ– କଦମ୍ବ ଗଛର ପାଚିଲା ପତ୍ରଟି ଝଡ଼ି ପଡୁଥିଲା ବେଳେ ମଧ୍ୟ ମୋ ପାଇଁ ନିମିଷକ ଲାଗି ଅଟକି ଗଲା ନାହିଁ । କହିଲା : ମୁଁ ଝଡ଼ି ନଗଲେ ନୂଆ ପତ୍ର ଆସିବାରେ ଡେରି ହୋଇଯିବ– ତୁମର ତ ଯିବା ସମୟ ହେଲାଣି ତୁମ ପାଇଁ କିଏ କାହିଁକି ଅଟକିବ ?

ତା ପରେ ସ୍ତ୍ରୀଙ୍କୁ କହିଲି– ମୁଁ ଯାଉଛି ! ସେ କହିଲେ- ହଁ ବୟସ ହୋଇଯାଇଥିଲା ଭଲରେ ଭଲରେ ଚାଲିଯାଉଛ- ହେଲେ ମାସେ ଖଣ୍ଡେ ବିଛଣାରେ ପଡ଼ି ଥିଲେ ସିନା ମୁଁ ତୁମର ସେବା କରିବାର ସମ୍ମାନ ପାଇଥାଆନ୍ତି । ମୋର ଛାତ୍ରଛାତ୍ରୀମାନଙ୍କର ମନ ଦୁଃଖ ହେଲା ଯେ ଆଉ କେତେଟା ଦିନ ଆଗରୁ କିମ୍ବା ପରେ କଲେଜ ଛୁଟି ସରିଲା ପରେ ସିନା ଯାଇଥିଲେ ଆମେ ଆପଣଙ୍କୁ କଲେଜକୁ ନେଇ ଶୋଭାଯାତ୍ରା କରିଥାଆନ୍ତୁ– ଫଟୋ ଉଠାଇ ଥାଆନ୍ତୁ, ଆମର ଫଟୋ ସବୁ ଖବର କାଗଜରେ ବାହାରିଥାଆନ୍ତା, ବର୍ତ୍ତମାନ ଆମର କିଛି ଲାଭ ହେଲା ନାହିଁ । ଆପଣଙ୍କ କୃତିତ୍ୱ ବିଷୟରେ ଆମେ ବହୁତ ସଭା କରିବୁ- ଆପଣଙ୍କର ତୈଳଚିତ୍ର ନିଶ୍ଚୟ କଲେଜରେ ରଖିବୁ- ରାମଚନ୍ଦ୍ର ଭବନରେ ରଖିବୁ- ଆପଣଙ୍କର ବହି କେହି ପଢୁନଥିଲେ ସୁଦ୍ଧା ବର୍ତ୍ତମାନ ଲୋକେ ଆପଣଙ୍କ ବିଷୟରେ ବହୁତ କଥା ଜାଣି ପାରିବେ, ଯାଆନ୍ତୁ ଯେଉଁ ସମ୍ମାନ ଆପଣ ଓଡ଼ିଶାରେ ଜୀବିତ ଥିଲା ବେଳେ ପାଇ ନାହାଁନ୍ତି ତାଠୁ ବେଶୀ ସମ୍ମାନ ଆମେ ଦେଖାଇବୁ, ସମୟ ତ ହୋଇ ଯାଇଛି ।

ପୁଅ ଝିଅ ନାତି ନାତୁଣୀମାନେ କହିଲେ : ଆଉ କେତେବର୍ଷ ବଂଚି ଥିଲେ ଆମ ପୁଅ ଝିଅମାନଙ୍କର ବିବାହକୁ ଆସି ଥାଆନ୍ତ- ତୁମକୁ ନେଇ ଆମେ ଗର୍ବ କରିଥାଆନ୍ତୁ ।

ବେଶି ସମୟ ଯାଏଁ ଘରେ ବାସି ମଡ଼ା ରହିବା ଠିକ୍ ନୁହେଁ ବୋଲି କେତେକଙ୍କର ମତ, କିନ୍ତୁ ସାଇପଡ଼ିଶା ଓ କିଛି ଚାଟୁକାରଙ୍କ ମତ ଯେ ଏତେ ମହନୀୟ ବ୍ୟକ୍ତିଙ୍କର ଏପରି ଅଘୋଷିତ ଭାବରେ ଶବକୁ ଦାହ କରିବା ଠିକ୍ ନୁହେଁ । ଖବର କାଗଜ, ରେଡ଼ିଓ, ଟେଲିଭିଜନରେ ଘୋଷଣା ହେବା ଦରକାର- ଗୋଟିଏ ଦିନ ରଖିଲେ ସିନା ଲୋକେ ଫୁଲମାଳ ଧରି ଆସିବେ- ସେମାନଙ୍କର ନାମ ଖବର କାଗଜରେ ବାହାରିବ । ଗୋଟିଏ ବଡ଼ ଧରଣର ଶବ ଶୋଭାଯାତ୍ରା ହେବ । ଟେଲିଭିଜନ, ଭିଡ଼ିଓ, ଖବର କାଗଜ, ସାଂବାଦିକ ମାନଙ୍କର ଉପସ୍ଥିତି ବାଞ୍ଛନୀୟ । ତା ନହେଲେ ତ ସମାଜରେ ଏତେ ବଡ଼ ଲୋକ ପ୍ରତି ଅସମ୍ମାନ ହେବ । ଫୁଲବାଲାଙ୍କୁ ବରାଦ ଦେଇ ଫୁଲ ସବୁ ଆଣିବାକୁ ସମୟ ଲାଗିବ, ବାହାରେ ଥିବା ପୁଅଝିଅଙ୍କୁ ଖବର ଦିଆ ହୋଇଛି- ସେମାନେ ଆସନ୍ତୁ– କିନ୍ତୁ କେତେକଙ୍କର ମତ ଯେ ଘରେ ବାସିମଡ଼ା ରହିବା ବହୁତ ଅଶୁଭଙ୍କର ଘଟଣା । ତା ଛଡ଼ା ପିଲାମାନଙ୍କୁ ଏପରି ତରବରରେ ଆଣିବାରେ ସେମାନଙ୍କର ବହୁତ ଅସୁବିଧା ହେବ, ଅଯଥା ହାଲହୋଲା ସୃଷ୍ଟି କରିବା କଅଣ ଦରକାର । ବୟସ ହୋଇଥିଲା- ଗଲେ....

ଏ ବିଷୟରେ ଆଉ ଅଧିକା କଳ୍ପନା କରିବାରେ ମୋର ଆଦୌ ଆଗ୍ରହ ହେଲା ନାହିଁ । ଖାଲି ଏତିକି ବୁଝିଲି ଯେ ମୋ ପାଇଁ କେହି ସେପରି ବେଶୀ ବ୍ୟସ୍ତ ନୁହଁନ୍ତି । ମୋର ମୃତ୍ୟୁ ପର ଅନ୍ୟାନ୍ୟ କଥାରେ ସେମାନେ ଆଗ୍ରହୀ- ବୟସ ବଢ଼ିବା ସହିତ ତୁମେ କ୍ରମେ ଗୋଟିଏ ଅଦରକାରୀ ବସ୍ତୁରେ ପରିଣତ ହୋଇଯାଅ, ଯେତେ ଶୀଘ୍ର ବିଦାୟ ନେବ ସେତେ ଭଲ । ମୁଁ କଳ୍ପନା ଚକ୍ଷୁରେ ଦେଖି ପାରିଲି ଯେ ଦିନ ପରେ ଦିନ ମୋର ସ୍ମୃତି ଉପରେ ସ୍ତୁପୀକୃତ ହୋଇଗଲା ପରେ କ୍ରମେ ତାହା ସମୟର ସ୍ରୋତରେ ବିଲୀନ ହୋଇଯିବ ମିଲିୟାନ ବର୍ଷ ତଳର ବିରାଟକାୟ ଜୀବଜନ୍ତୁଙ୍କ ପରି ।

■■■

(୧୬)

# ବୁଦ୍ଧଙ୍କର ମାନବୀୟ କରୁଣା

ବୁଦ୍ଧଙ୍କର ଦର୍ଶନ ବିଷୟରେ ବିଶଦ୍ ଆଲୋଚନା କରୁନାହିଁ । ଯାହା ମୋର ଜୀବନ କାଳ ଭିତରେ ମୋତେ ପ୍ରଭାବିତ କରିଛି, କେବଳ ସେ ବିଷୟରେ ଲେଖୁଛି । ପିଲାଦିନରୁ ପାରିବାରିକ ପ୍ରଭାବ ଅନୁସାରେ ମୁଁ ବହୁତ ଧର୍ମପରାୟଣ ଥିଲି । ଧ୍ୟାନ ଧାରଣା, ପୂଜାପୂଜିରେ ଅନେକ ସମୟ କଟି ଯାଉଥିଲା । ଗତାନୁଗତିକ ଧର୍ମୀୟ ଉପଚାରରେ ମୋର ଗଭୀର ବିଶ୍ୱାସ ଓ ଶ୍ରଦ୍ଧା ରହିଥିଲା । କିନ୍ତୁ ଆଇ.ଏ. ପଢ଼ିଲାବେଳେ ଏ ସଂପର୍କରେ ବୌଦ୍ଧିକ ସଂଦେହ ଜାତ ହେଲା । ଏହାର ମୂଳଭିତ୍ତି ବିଷୟରେ ବହୁ ପ୍ରଶ୍ନ ମନ ଭିତରେ ଉଙ୍କି ମାରିଲା । ଫଳରେ ଏହି ଔପଚାରିକ ରୀତିରେ ବିଭ୍ରାଟ ଦେଖାଗଲା । ଏହାର ସମାଧାନ ଲାଗି ମୁଁ ବି.ଏ., ଏମ୍.ଏ.ରେ ଦର୍ଶନଶାସ୍ତ୍ର ନେଲି- ଦର୍ଶନର ସମସ୍ତ ପ୍ରକାରର ତତ୍ତ୍ୱ ଓ ଦିଗ୍‌ଦର୍ଶନ ଗଭୀର ଭାବରେ ଅନୁଧ୍ୟାନ ପରେ ବୁଦ୍ଧଙ୍କ ଦ୍ୱାରା ପ୍ରଚାରିତ ଦର୍ଶନ ପ୍ରତି ଆକର୍ଷଣ ବଢ଼ି ବଢ଼ି ଚାଲିଲା । କାରଣ ଏହି ଗୋଟିଏ ମାତ୍ର ଧର୍ମ ଯାହାକି ମନୁଷ୍ୟର ଦୈନନ୍ଦିନ ଆଚରଣ ଉପରେ ପ୍ରତିଷ୍ଠିତ- କୌଣସି ଅଦୃଶ୍ୟ ଆଧିଭୌତିକ ଶକ୍ତି ଦ୍ୱାରା ଏହା ନିୟନ୍ତ୍ରିତ ନୁହେଁ । ଅନ୍ୟ ଧର୍ମରେ ଯେପରି ଧର୍ମ ପ୍ରଚାରକମାନଙ୍କର କଥାହିଁ ପରମ ସତ୍ୟ ବୋଲି ନିର୍ଧାର୍ଯ୍ୟ ହୁଏ, ବୁଦ୍ଧଙ୍କର ପ୍ରଚାରିତ ଧର୍ମାଚରଣ ଏପରି କୌଣସି ଅଦୃଶ୍ୟ ଆଇନ ଦ୍ୱାରା ପରିଚାଳିତ ନୁହେଁ । ଏହା ଗୋଟିଏ ହେତୁବାଦୀ ଦର୍ଶନ ଏବଂ ଏଥିରେ ଯୁକ୍ତିଯୁକ୍ତତା ହିଁ ପ୍ରାଧାନ୍ୟ ଲାଭ କରିଛି ।

ଅଢ଼େଇ ହଜାର ବର୍ଷ ତଳେ ଭାରତର ଜନତା ଯେତେବେଳେ ବ୍ରାହ୍ମଣ୍ୟ ଔପଚାରିକ ଆଚରଣରେ ଅତିଷ୍ଠ ହୋଇପଡ଼ିଥିଲେ- ବେଦ ବେଦାନ୍ତର ସାର୍ବଜନୀନ ମାନବିକତା ସ୍ଥାନରେ କେବଳ ଔପଚାରିକ ପୂଜାପୂଜି, ହୋମ ଯଜ୍ଞରେ ଲୋକଙ୍କୁ ଅନବରତ ବାନ୍ଧି ରଖା ହୋଇଥିଲା ସେତେବେଳେ ବୁଦ୍ଧଙ୍କର ଆବିର୍ଭାବ ହୁଏ । ସେ ପୃଥିବୀରେ ପ୍ରଥମ ଧର୍ମପ୍ରଚାରକ, ଯେ କି ଏସବୁ ଔପଚାରିକ କାର୍ଯ୍ୟ ପ୍ରଣାଳୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ବ୍ରାହ୍ମଣମାନେ ଇନ୍ଦ୍ର ବରୁଣ ପ୍ରଭୃତି ନାନା କାଳ୍ପନିକ ଦେବଦେବୀଙ୍କୁ ନେଇ ବହୁ ସମୟ ବ୍ୟୟ କରୁଥିଲେ । ବୁଦ୍ଧ ସେମାନଙ୍କୁ ଏ ବିଷୟରେ ଗଭୀର ଭାବରେ ସମାଲୋଚନା କଲେ । ଗ୍ରାମ ବାହାରେ ଗଛ

ତଳେ ବସି ଲୋକମାନଙ୍କୁ ଯୁକ୍ତିତର୍କ ମାଧ୍ୟମରେ ବୁଝାଇବାକୁ ଅହରହ ଉଦ୍ୟମ କଲେ ଯେ ସେସବୁ କିପରି ନିରର୍ଥକ ଏବଂ ଆଧ୍ୟାତ୍ମିକ ଶୋଷଣ । ଅତୀତର ରାଜାନୁଗତ ଧର୍ମ ଏବଂ ରାଜା ଜଣେ ନରରୂପୀ ଦେବତା ବୋଲି ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ଷଡ଼ଯନ୍ତ୍ରମୂଳକ ଯେଉଁ ଚାଟୁକାର ଧର୍ମ ତାହା ବିରୁଦ୍ଧରେ ତୀବ୍ର ବୌଦ୍ଧିକ ଆନ୍ଦୋଳନ ଭାରତୀୟ ସମାଜରେ ଆରମ୍ଭ କଲେ । ନିଜେ ରାଜପୁତ୍ର ହୋଇ ରାଜନଅର ଛାଡ଼ି ବଣ ଜଙ୍ଗଲରେ ବୁଲି ବୁଲି ତପସ୍ୟା କରି ଶେଷରେ ଏପରି ଏକ ହେତୁବାଦୀ ଦର୍ଶନର ସୂତ୍ରପାତ କଲେ । ଧର୍ମ ଆଚରଣ ସଂବଂଧୀୟ ଆଲୋଚନା ରାଜଦରବାରରେ ନ ହୋଇ ସାଧାରଣ ଲୋକଙ୍କ ଭିତରେ ଆମ୍ବ ବଗିଚାରେ, ଭିକ୍ଷୁକଙ୍କର ପତ୍ରକୁଟୀରରେ ଚାଲିଲା । ଫଳରେ ଜନସାଧାରଣଙ୍କ ସ୍ତରକୁ ମନୁଷ୍ୟର ଶୁଦ୍ଧ ଆଚରଣର ବାର୍ତ୍ତା ବୁଦ୍ଧ ଆଣିପାରିଲେ ।

ଭାରତବର୍ଷରେ ଦେବତାରୂପୀ ରାଜାମାନେ ଏବଂ ତାଙ୍କର ସାମନ୍ତବର୍ଗ ଓ ବ୍ରାହ୍ମଣମାନେ ସାଧାରଣ ଲୋକଙ୍କ ଉପରେ ନାନା ଅତ୍ୟାଚାର କରୁଥିଲେ । ଯଜ୍ଞବେଦୀରେ ପଶୁ ଓ ନରବଳୀ ମଧ୍ୟ ପ୍ରଚଳିତ ଥିଲା । ବହୁ ଲୋକ କ୍ରୀତଦାସ ପରି ସାମନ୍ତବାଦୀ ଧନୀ ଲୋକଙ୍କର କାମ କରୁଥିଲେ । ରାଜ୍ୟମାନଙ୍କ ଭିତରେ ଅନବରତ ଯୁଦ୍ଧ ଚାଲୁଥିଲା । ଏପରି ସାମାଜିକ ବିଭ୍ରାଟ ବେଳେ ରାଜନଅର ଛାଡ଼ି ବୁଦ୍ଧ ଆମ୍ବ ବଗିଚାରେ ବସି ଜୀବେ ଦୟା, ଅହିଂସା ନୀତି ପ୍ରଚାର କରିଥିଲେ । ପୃଥିବୀର ବହୁ ଦେଶରେ ବର୍ତ୍ତମାନ ନରସଂହାର ଲାଗି ରହିଥିବା ବେଳେ ବୁଦ୍ଧଙ୍କର ଦର୍ଶନ କ୍ରମେ ଆଦୃତ ହେବାରେ ଲାଗିଛି । ଗାନ୍ଧୀଜୀ ପ୍ରକାରାନ୍ତରେ ବୁଦ୍ଧଙ୍କର ଅହିଂସ ମାର୍ଗକୁ ଜନପ୍ରିୟ କରିପାରିଥିଲେ । ଏହି ଗୋଟିଏ ବଳିଷ୍ଠ କାରଣରୁ ବୁଦ୍ଧଙ୍କ ପ୍ରତି ମୋର ଶ୍ରଦ୍ଧା ବହୁବର୍ଷ ଧରି ବଢ଼ି ବଢ଼ି ଚାଲିଛି ।

ବୁଦ୍ଧଙ୍କର ଆଉ ଗୋଟିଏ ବିଶେଷ ଅବଦାନ ଯେ ସେ ତାଙ୍କ କଥାକୁ ଅନ୍ୟମାନଙ୍କ ଉପରେ ନାନାପ୍ରକାରର ରହସ୍ୟ ମାଧ୍ୟମରେ ଲଦି ଦେଇନାହାନ୍ତି । ଯାହା ନିଜର ଯୁକ୍ତିଯୁକ୍ତ, ସାମାଜିକ ଜୀବନରେ ଯାହା ଉପଯୁକ୍ତ, ସେପରି ଆଚରଣକୁ ନିଜ ଇଚ୍ଛାରେ ଗ୍ରହଣ କରିବାର ଉପଦେଶ ସାଧାରଣ ବୁଦ୍ଧିର ମଧ୍ୟ ଗ୍ରହଣଯୋଗ୍ୟ । ଆଉ ଯେତେ ଧର୍ମ ଅଛି, ସେଥିରେ ଧର୍ମ ପ୍ରଚାରକର ବାଣୀ ହେଉଛି ଶ୍ରେଷ୍ଠ ସତ୍ୟ । ଜିସସ୍ କ୍ରାଇଷ୍ଟ, କୃଷ୍ଣ ବା ମହମ୍ମଦ ଯାହା କହିଛନ୍ତି– ତାହାହିଁ ଶେଷ କଥା । କାରଣ ସେମାନେ ଭଗବାନଙ୍କ ଅବତାର, କିମ୍ବା ତାଙ୍କର ଶ୍ରେଷ୍ଠ ପ୍ରତିନିଧି । ସେମାନଙ୍କ ମାଧ୍ୟମରେ ହିଁ ଭଗବାନ ନିଜକୁ ପ୍ରକଟିତ କରିଛନ୍ତି । ସେମାନେ ସିଧାସିଧି ଭଗବାନଙ୍କର ବାଣୀ ଶୁଣି ଲୋକଙ୍କ ପାଖରେ ପହଞ୍ଚାଇ ପାରିଛନ୍ତି । ଅତଏବ ସେମାନଙ୍କର ବାଣୀହିଁ ସର୍ବଶ୍ରେଷ୍ଠ ସତ୍ୟ ଏବଂ ଭଗବତ ରହସ୍ୟର ପରିପ୍ରକାଶ । ଏ ପ୍ରକାରର ଛଳନାପୂର୍ଣ୍ଣ ଉପଦେଶରେ ବୁଦ୍ଧଙ୍କର ବିଶ୍ୱାସ ନଥିଲା । ସେ କହୁଥିଲେ : ତୁମେ ନିଜେ ବିଶ୍ଳେଷଣ କର, ଚିନ୍ତା କର, ମୁଁ କହୁଛି ବୋଲି ତାହା ଗ୍ରହଣ କରନାହିଁ । ତାଙ୍କର ମୃତ୍ୟୁ ବେଳକୁ ତାଙ୍କର ପରମ ଶିଷ୍ୟ ଆନନ୍ଦ ହତାଶ ହୋଇପଡ଼ିଥିଲେ । କାରଣ ସେ କାହାଠୁ ଆଉ ପରାମର୍ଶ ନେବେ ? ବୁଦ୍ଧ କହିଥିଲେ ଯେ ଏତେଦିନ ଯାଏଁ ସେ ତାଙ୍କ ସାନ୍ନିଧରେ ଆସିଲା ପରେ ତାଙ୍କର ଯୌକ୍ତିକ ବିଶ୍ଳେଷଣ ସବୁ ଜାଣିଲା ପରେ ମଧ ସେ ଆହୁରି ବେଶି ଉପଦେଶ ପାଇବା ପାଇଁ ଏପରି ବ୍ୟାକୁଳ କାହିଁକି ହେଉଛନ୍ତି ?

ବୁଦ୍ଧଙ୍କର ଏପ୍ରକାର ଯୌକ୍ତିକ ବିଚାରଧାରା ମୋତେ ବହୁତ ବେଶି ଆକର୍ଷଣ କଲା । କାରଣ ବର୍ତ୍ତମାନର ବୈଜ୍ଞାନିକ ଯୁଗରେ ଏହାହିଁ ପ୍ରକୃଷ୍ଟ ବିଶ୍ଳେଷଣାତ୍ମକ ଚିନ୍ତାଧାରା । କାର୍ଯ୍ୟ କାରଣ ସଂପର୍କ ଜାଣିଲା ପରେ ହିଁ ମନୁଷ୍ୟ ନିଜ ବ୍ୟବହାରକୁ ସଂଶୋଧିତ କରିପାରେ । ବର୍ତ୍ତମାନର ମନୋବିଜ୍ଞାନ କହେ ଯେ କୌଣସି ବ୍ୟବହାର ରକ୍ତଗତ ନୁହେଁ କି ଦୈବକୃତ ନୁହେଁ, ଏହା କେବଳ ପାରସ୍ପରିକ କ୍ରିୟା ପ୍ରକ୍ରିୟାର ସମନ୍ୱିତ କର୍ମଫଳ । ବ୍ୟକ୍ତିତ୍ୱ ମଧ୍ୟ ଏ ପ୍ରକାର ବ୍ୟକ୍ତି ଏବଂ ସାମାଜିକ କ୍ରିୟା ପ୍ରକ୍ରିୟା ଅନୁସାରେ ଗଢ଼ି ଉଠେ । ତୁମେ ଯଦି କୌଣସି ବ୍ୟକ୍ତିତ୍ୱର ମନସ୍ତାତ୍ତ୍ୱିକ ପରିଚୟ ପାଇବାକୁ ଚେଷ୍ଟା କର, ତାହାହେଲେ ତାର ସମାଜକୁ ଅନୁଧାନ କରିବା ଉଚିତ । ତେଣୁ ବୁଦ୍ଧଙ୍କର କାର୍ଯ୍ୟ କାରଣ ସଂପର୍କିତ କ୍ରିୟା ପ୍ରକ୍ରିୟା ହିଁ ଆମର ସୁଖ ଦୁଃଖର ମୌଳିକ କାରଣ ବୋଲି ଧରାଯାଇପାରେ । ଏ ସଂପର୍କରେ ମୁଁ 'ଆମ ଭାଗ୍ୟ ଆମେ ଗଢୁ' ଆଲୋଚନାରେ ବିଶ୍ଳେଷଣ କରିଛି । ମୋର ଉପନ୍ୟାସ ମାନଙ୍କରେ ମଧ୍ୟ Character is destiny ତତ୍ତ୍ୱକୁ ଉପସ୍ଥାପିତ କରିଛି । ତେଣୁ ବୁଦ୍ଧଙ୍କର ବିଶ୍ଳେଷଣ ପ୍ରଣାଳୀକୁ ମୁଁ ବହୁତ ପସନ୍ଦ କରୁଛି ।

ବୁଦ୍ଧଙ୍କର ପ୍ରସିଦ୍ଧ କରୁଣା ନୀତିଶାସ୍ତ୍ର ମୋ ପାଇଁ ବହୁତ ପ୍ରେରଣାଦାୟକ ହୋଇଛି । ସମଗ୍ର ଜୀବଜଗତ ପ୍ରତି କରୁଣା ଗୋଟିଏ ବିରାଟ ମାନବୀୟ ଦର୍ଶନ । ବେଦାନ୍ତରେ ସର୍ବେସୁଖୀନଃ ଭବନ୍ତୁ ଦର୍ଶନ ଏଥିରେ ପ୍ରତିଫଳିତ ହୋଇଛି । ବୁଦ୍ଧଙ୍କଠାରେ କରୁଣା ଏପରି ଗଭୀର ଭାବରେ ଆତ୍ମପ୍ରକାଶ କରିଥିଲା ଯେ ସେ ସମସ୍ତ ଜୀବଜଗତ ଦୁଃଖ କଷ୍ଟ ଯାତନାରୁ ମୁକ୍ତି ନ ପାଇବା ପର୍ଯ୍ୟନ୍ତ ଅର୍ଥାତ୍ ସେମାନଙ୍କର ନିର୍ବାଣ ପ୍ରାପ୍ତି ନ ହେବା ଯାଏଁ ସେ ଜନ୍ମ ଜନ୍ମ ଧରି ଅନବରତ ସେମାନଙ୍କ ସେବାରେ ନିଜକୁ ନିୟୋଜିତ କରିବାର ସଂକଳ୍ପଗତ ଯେଉଁ ମହତବାଣୀ, ତାହା ନିଶ୍ଚିତ ଭାବରେ ବହୁ ଲୋକଙ୍କୁ ଅନୁପ୍ରାଣିତ କରିପାରିବ । ଅନ୍ୟ ଧର୍ମର ସାଧକମାନଙ୍କର ମୁଖ୍ୟ ତପସ୍ୟା ହେଲା ଯେ ସେମାନେ ନିଜେ କିପରି ମୋକ୍ଷପ୍ରାପ୍ତ ହେବେ– ସେମାନଙ୍କର ଆତ୍ମା ପରମାତ୍ମାରେ ଲୀନ ହେବ - କିମ୍ବା ବହୁ ତପସ୍ୟା ପରେ ନିଜର ସ୍ୱର୍ଗପ୍ରାପ୍ତି ହେବ - କିମ୍ବା ନିଜ ଧର୍ମର ବିପରୀତ ଆଚରଣ କରୁଥିବା ଲୋକଙ୍କୁ ମାରିପାରିଲେ ସ୍ୱର୍ଗପ୍ରାପ୍ତି ନିଶ୍ଚିତ । କାରଣ ଏପ୍ରକାର କାର୍ଯ୍ୟରେ ସେମାନଙ୍କର ଭଗବାନ ସନ୍ତୁଷ୍ଟ ହୁଅନ୍ତି । ଏପ୍ରକାର ଅଯୌକ୍ତିକ ଧର୍ମୀୟ କୁସଂସ୍କାର ଅପେକ୍ଷା ବୁଦ୍ଧଙ୍କର କରୁଣା କେତେ ଯେ ମହାନ୍, ତାହା ସହଜରେ ଅନୁମାନ କରିହୁଏ । ବୁଦ୍ଧ ଅନ୍ୟ ଯୋଗୀ ଋଷିମାନଙ୍କ ପରି ବୋଧିସତ୍ତ୍ୱ ଲାଭ କରି ନିର୍ବାଣ ପ୍ରାପ୍ତ ହୋଇଥିଲେ, କିନ୍ତୁ ତାହା ସେ ପ୍ରତ୍ୟାଖ୍ୟାନ କଲେ; କାରଣ ପୃଥିବୀର ସମସ୍ତ ଜୀବଜଗତ ସେମାନଙ୍କର ଦୁଃଖଯନ୍ତ୍ରଣାରୁ ମୁକ୍ତି ନ ପାଇଲା ଯାଏଁ ସେ ବାରମ୍ବାର ଜନ୍ମ ଗ୍ରହଣ କରି ସେମାନଙ୍କ ଦୁଃଖ ଯନ୍ତ୍ରଣାରେ ଭାଗୀଦାର ହୋଇ ସେମାନଙ୍କୁ ଉଦ୍ଧାର କଲା ପରେ ହିଁ ତାଙ୍କ ନିଜର ନିର୍ବାଣ ପ୍ରାପ୍ତି ସଂଭବ । ଏପ୍ରକାର ମହାନୁଭବ ଦର୍ଶନ କେବଳ ଏକମାତ୍ର ବୁଦ୍ଧ ହିଁ ପୃଥିବୀରେ ପ୍ରଚାର କରିଥିଲେ । ଏହି କରୁଣାର ସାମାନ୍ୟ ଅଂଶ ମାତ୍ର ଆମେ ଜୀବନରେ ପ୍ରୟୋଗ କରିପାରିଲେ ମୋ ମତରେ ଜୀବନ ସାର୍ଥକ ହେବ — ସମାଜର ପ୍ରଭୂତ ମଙ୍ଗଳ ହେବ । ସେଥିପାଇଁ ସମସ୍ତେ ଯଥାସାଧ୍ୟ ପରିଶ୍ରମ କରିବା ଉଚିତ । ଏହା ମଧ୍ୟ ନିଜ ପାଇଁ ଅତ୍ୟନ୍ତ ଆନନ୍ଦଦାୟକ । ତୁମେ ବିନା ସ୍ୱାର୍ଥରେ କାହାକୁ ଯଦି ସାମାନ୍ୟ ସାହାଯ୍ୟ କରିପାରିବ ସେଥିରେ ତୁମର

କରୁଣା କିଛି ମାତ୍ରାରେ ଉପଯୋଗ ହୋଇପାରିବ । ଏଥିରେ ଯେଉଁ ଆନନ୍ଦ ଉପଲବ୍ଧି ହେବ, ତାହା କେବଳ ତୁମର ପରିବାର ଏବଂ ବନ୍ଧୁବାନ୍ଧବଙ୍କୁ ସାହାଯ୍ୟ କରିବାରେ ସଂଭବ ନୁହେଁ । କାରଣ ଏଥିରେ ସ୍ୱାର୍ଥ ରହିଛି, ପ୍ରତ୍ୟାଶା ରହିଛି । ଏପରି ପ୍ରତ୍ୟାଶାର ଶେଷ ନଥାଏ । କିନ୍ତୁ ବିନା ପ୍ରତ୍ୟାଶାରେ ବିନା ସ୍ୱାର୍ଥରେ ସାହାଯ୍ୟରେ ହିଁ ମାନବୀୟ କରୁଣା ଚରିତାର୍ଥ ହୋଇପାରେ ।

ବୁଦ୍ଧଙ୍କର ସୁଦୀର୍ଘ ଜୀବନ କାଳରେ ସେ ଏହିପରି ବହୁତ କାମ କରିଛନ୍ତି ଯାହାକି ସମସ୍ତଙ୍କୁ ପ୍ରେରଣା ଯୋଗାଇପାରିବ । ଥରେ ଜଣେ ରାଜା ତାଙ୍କର ସଭାସଦ ଏବଂ ବିଶିଷ୍ଟ ପଣ୍ଡିତମାନଙ୍କ ସଭାକୁ ବୁଦ୍ଧଙ୍କୁ ନିମନ୍ତ୍ରଣ କରିଥିଲେ ତାଙ୍କର ପ୍ରବଚନ ଶୁଣିବା ପାଇଁ । ଠିକ୍ ସେହି ସମୟରେ ନଗର ବଧୂ ଆମ୍ୱାପାଲୀ (ଆମ୍ରପଲ୍ଲୀ) ନାମ୍ନୀ ନର୍ତ୍ତକୀ ବଡ଼ ଆତୁର ଭାବରେ ବୁଦ୍ଧଙ୍କୁ ତା ଘରକୁ ଯିବା ପାଇଁ ମିନତି କରିଥିଲା । ବୁଦ୍ଧ ଏହି ପତିତା ନାରୀଟିର ଆତୁରତାରେ ଏପରି ବିଚଳିତ ହୋଇପଡ଼ିଲେ ଯେ ସେ ପଣ୍ଡିତମାନଙ୍କର ସଭାକୁ ନ ଯାଇ ତା ଘରେ ଯାଇ ପହଞ୍ଚିଲେ- ତାଙ୍କର ପରାମର୍ଶ ଅନୁଯାୟୀ ଆମ୍ୱାପାଲୀ ଭିକ୍ଷୁଣୀ ହୋଇଥିଲେ । ଏହିପରି କରୁଣା ବିଗଳିତ ବହୁ ଉଦାହରଣ ତାଙ୍କ ଜୀବନକାଳ ଭିତରେ ରହିଛି ।

ଏହି ପରିପ୍ରେକ୍ଷୀରେ ଆଧୁନିକ ଯୁଗର ନିର୍ଦ୍ଦୟ କଠୋରତା ବିଷୟରେ ଉଲ୍ଲେଖ କରାଯାଇପାରେ । ଓଡ଼ିଶାର ଚକ୍ରବାତ ସମୟରେ ଖବରକାଗଜରେ ବାହାରିଥିଲା ଗୋଟିଏ କରୁଣ ଘଟଣା । ପାରାଦ୍ୱୀପଠାରେ ଯେତେବେଳେ ଝଡ଼ ବତାସର ପ୍ରକୋପ ବଢ଼ି ଥିଲା, ସମୁଦ୍ର ପାଣି ମାଡ଼ି ମାଡ଼ି ଆସୁଥିଲା, ସେତେବେଳେ ସେଠାରେ ଗୋଟିଏ ଚାଳ ଘରେ ବାସ କରୁଥିବା ଜଣେ ବେଶ୍ୟା ଦୌଡ଼ି ଦୌଡ଼ି ଜଣଙ୍କର କୋଠାଘରେ ଆଶ୍ରୟ ଚାହିଁଥିଲା । ଯାହାଙ୍କର କୋଠାଘର, ସେ ଭଦ୍ରଲୋକ କୁଆଡ଼େ ତାର ନିୟମିତ ଗ୍ରାହକ; କିନ୍ତୁ ତାକୁ ଦେଖି ଭଦ୍ରଲୋକ କବାଟ ବନ୍ଦ କରିଦେଲେ ଏବଂ ସେ ବେଶ୍ୟାଟି ପାଣିରେ ବୁଡ଼ିଗଲା । ବୁଦ୍ଧଙ୍କର କରୁଣାୟିତ ବ୍ୟବହାରଠାରୁ ଏହାର ଦୂରତ୍ୱ ହିଁ ଆଧୁନିକ ଯୁଗର ବର୍ବରତାର ଉଦାହରଣ ।

ମୋର ସୀମିତ ପରିବେଶ ଭିତରେ ମୁଁ କିଛି କିଛି କାମ ବିନା ସ୍ୱାର୍ଥରେ କରେ । ମୋରି ସାହାଯ୍ୟରେ ଯଦି କାହାର ଉପକାର ହୁଏ, ଏଥିରେ ମୁଁ ବହୁତ ଖୁସି ହୁଏ । ମୋ ମତରେ ଆମର ପ୍ରାଚୀନ ଭାରତର ବାନପ୍ରସ୍ଥ ଜୀବନର ବର୍ତ୍ତମାନ ମଧ୍ୟ ତାତ୍ପର୍ଯ୍ୟ ରହିଛି । ଅବସର ଗ୍ରହଣ ପରେ ଆଉ କୌଣସି ଅର୍ଥକରୀ ପନ୍ଥା ଅବଲମ୍ବନ ନ କରି ସମାଜ ପାଇଁ କିଛି କାମ ବିନା ସ୍ୱାର୍ଥରେ କରିବା ଉଚିତ । ଅବସର ପର୍ଯ୍ୟନ୍ତ ସମାଜ ତୁମକୁ ବହୁତ ଦାନ କରିଆସିଛି । ସମାଜ ଯୋଗୁ ତୁମେ ଯାହା ଉପାର୍ଜ୍ଜନ କରିଛ ତାହା ସଂଭବ ହୋଇଛି । କିନ୍ତୁ ଅବସର ପରେ ଅନ୍ତତଃ ତୁମର ସମାଜକୁ କିଛି ପ୍ରତିଦାନ ରହିବା ଉଚିତ । ତେଣୁ ମୁଁ ଅବସର ପରେ ଆମେରିକାରେ କିଛି ଦିନ ଅଧ୍ୟାପକ ହୋଇ ଅର୍ଥ ଉପାର୍ଜ୍ଜନର ସଂଭାବନା ରହିଥିଲେ ସୁଦ୍ଧା ତାକୁ ପ୍ରତ୍ୟାଖ୍ୟାନ କଲି । ତାପରେ ପ୍ରାଥମିକ ଶିକ୍ଷା ଆନ୍ଦୋଳନ ପ୍ରଭୃତି ବହୁ ସାମାଜିକ କାର୍ଯ୍ୟ ଆରମ୍ଭ କଲି । ଏସବୁ କ୍ଷେତ୍ରରେ ମୁଁ ସଂପୂର୍ଣ୍ଣ ରୂପେ କୃତକାର୍ଯ୍ୟ ହୋଇ ପାରିନଥିଲେ ସୁଦ୍ଧା ମୋର ଯତ୍ ସାମାନ୍ୟ ଉଦ୍ୟମର କିଛି ସୁଫଳ ମିଳିଛି । ଶେଷରେ

ଛୋଟ ପିଲାଙ୍କ ପାଇଁ ଖେଳ ମାଧମ ଶିକ୍ଷା ଏବଂ ସେଥିପାଇଁ ଗ୍ରାଜୁଏଟ୍ ଝିଅଙ୍କୁ ତାଲିମ୍ ଦେବାରେ ମୋର ପ୍ରଚୁର ଆନନ୍ଦ ହେଉଛି । ମନୋବୈଜ୍ଞାନିକ ବିଶ୍ଳେଷଣ ମାଧମରେ କେତେକ ବିଷାଦଗ୍ରସ୍ତ ଲୋକଙ୍କୁ ବିନା ପାରିଶ୍ରମିକରେ ସାହାଯ୍ୟ କରିବା ମଧ ମୋର ଆଉ ଗୋଟିଏ ଆନନ୍ଦଦାୟକ କାମ । ଏସବୁ ପଛରେ କୌଣସି ପ୍ରତ୍ୟାଶା ନାହିଁ । କେବଳ ଦେବାରେ ହିଁ ଆନନ୍ଦ । ଏସବୁ କ୍ଷେତ୍ରରେ ବୁଦ୍ଧଙ୍କର କରୁଣା ଦର୍ଶନ ହିଁ ମୋତେ ପ୍ରେରଣା ଯୋଗାଉଛି । ଏହି କରୁଣା ତତ୍ତ୍ୱଟି କ୍ରମେ ପୃଥିବୀରେ ଆଦୃତ ହେଉଛି । ବିବେକାନନ୍ଦଙ୍କ ମତରେ ଭାରତରେ ବେଦାନ୍ତିକ ବୋଧଶକ୍ତି ସହିତ ବୁଦ୍ଧଙ୍କର କରୁଣାୟିତ ହୃଦୟର ସନ୍ନିବେଶ ହିଁ ବ୍ୟକ୍ତି ଏବଂ ସମାଜର ପରମ ଲକ୍ଷ୍ୟ ହେବା ବାଞ୍ଛନୀୟ ।

ବୁଦ୍ଧଙ୍କର ନିରୀଶ୍ୱରବାଦ ମାନବବାଦ ଉପରେ ପ୍ରତିଷ୍ଠିତ । ତେଣୁ ମୁଁ ମାର୍କ୍ସୀୟ ଦର୍ଶନରେ ଉଦ୍‌ବୁଦ୍ଧ ହେଲା ପରେ ବୁଦ୍ଧଙ୍କର ମାନବବାଦ ମୋତେ ଗଭୀର ଭାବରେ ସ୍ପର୍ଶ କଲା । ଆବଶ୍ୟ ମାର୍କ୍ସବାଦ ଶ୍ରେଣୀ ସଂଘର୍ଷ ହିଂସାରେ ବିଶ୍ୱାସ କରେ; କିନ୍ତୁ ବୁଦ୍ଧଙ୍କର ମାନବବାଦ ଅହିଂସା ଏବଂ କରୁଣା ଉପରେ ପର୍ଯ୍ୟବସିତ । ତାର ପ୍ରକୃଷ୍ଟ ଉଦାହରଣ ହେଲା ସାମ୍ରାଜ୍ୟ ବିସ୍ତାର କରି ଚାଲିଥିବା ଚଣ୍ଡାଶୋକ ଅଶୋକଙ୍କଠାରେ ଏ ପ୍ରକାରର ବୈପ୍ଳବିକ ମାନସିକ ପରିବର୍ତ୍ତନ ଯୋଗୁ ସେ ଧର୍ମାଶୋକରେ ପରିଣତ ହୋଇଥିଲେ । ଏବଂ ନରସଂହାର ପରିବର୍ତ୍ତେ ବୁଦ୍ଧଙ୍କର ଏହି ମାନବବାଦୀ ଧର୍ମକୁ ପୃଥିବୀରେ ପ୍ରଚାର କରିଥିଲେ । ତେଣୁ ହିଂସାତ୍ମକ ମାର୍ଗ ଯେ ପୃଥିବୀ ପାଇଁ ବର୍ତ୍ତମାନ କେତେ ବେଶୀ ମାରାତ୍ମକ ହୋଇପଡ଼ିଛି, ତାହା କ୍ରମେ ବିଶ୍ୱବାସୀ ଅନୁଭବ କରିପାରୁଛନ୍ତି ।

ବୁଦ୍ଧ ଏକମାତ୍ର ଧର୍ମ ପ୍ରବର୍ତ୍ତକ ଯେ କି ନାସ୍ତିକ ଏବଂ ସେ କୌଣସି ବାସ୍ତବତାହୀନ ଅଦୃଶ୍ୟ ଆଧିଭୌତିକ ଈଶ୍ୱର ଉପରେ ବିଶ୍ୱାସ କରନ୍ତି ନାହିଁ । ଏପରି ଏକ ଈଶ୍ୱରଙ୍କର ଦ୍ୱାହି ଦେଇ ସବୁ ଧର୍ମ ମନୁଷ୍ୟ ଭିତରେ ଯୁଗ ଯୁଗ ଧରି ଜାତି ଓ ଧର୍ମଗତ ବିଭେଦ ସୃଷ୍ଟି କରିଚାଲିଛନ୍ତି । ଧର୍ମ ନେଇ ବହୁ ରକ୍ତାକ୍ତ ଯୁଦ୍ଧବିଗ୍ରହ ମଧ ଦେଖାଦେଇଛି । ଭାରତବର୍ଷରେ ହିନ୍ଦୁ ଧର୍ମର ପ୍ରବକ୍ତାମାନେ ହିଁ ଉଚ୍ଚନୀଚ ଜାତି ସୃଷ୍ଟି କରିଚାଲିଛନ୍ତି । କୋଟି କୋଟି ଲୋକଙ୍କୁ ହିନ୍ଦୁମାନେ ଅସ୍ପୃଶ୍ୟ କରି ରଖିଛନ୍ତି । ଏ ପ୍ରକାରର ଅତ୍ୟାଚାରରୁ ମୁକ୍ତିଲାଭ କରିବା ପାଇଁ ଏମାନେ ଖ୍ରୀଷ୍ଟିଆନ୍, ମୁସଲମାନ ଧର୍ମ ଗ୍ରହଣ କରୁଛନ୍ତି । ଶେଷରେ ଆମ୍ବେଦକରଙ୍କ ପରି ଜଣେ ସମାଜ ସଂସ୍କାରକ ହରିଜନମାନଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିଛନ୍ତି । ଭାରତର ଅସ୍ପୃଶ୍ୟମାନଙ୍କ ଭିତରେ ବୌଦ୍ଧ ଧର୍ମ ଗୋଟିଏ ପ୍ରକାରର ମାନବୋଚିତ ପ୍ରେରଣା ଯୋଗାଇ ପାରୁଛି ।

ମୁଁ ଯେତେବେଳେ ଆମ ଗାଁ'କୁ ଗଲି ସେଠାରେ ଯୁଗ ଯୁଗ ଧରି ହିନ୍ଦୁମାନଙ୍କର ଜମି ଚାଷ କରି ରହିଥିବା ଜମିହୀନ ନିରୀହ ହରିଜନଙ୍କ ଉପରେ ଉପର ଜାତିର ଲୋକଙ୍କର ଅତ୍ୟାଚାର ଦେଖି ମର୍ମାହତ ହେଲି । ସେମାନଙ୍କୁ ଏମାନେ ଏତେ ଘୃଣା କରନ୍ତି ଯେ ଗାଁ'ରେ ତିଆରି ହେଉଥିବା ମନ୍ଦିରରେ କୁଲି କାମ କରିବାର ଅଧିକାର ସୁଦ୍ଧା ସେମାନଙ୍କୁ ଦିଆ ହୋଇନଥିଲା । ମନ୍ଦିର ପାଇଁ ଥିବା ଇଟା ସିମେଣ୍ଟକୁ ଛୁଇଁବା ଏମାନଙ୍କ ପାଇଁ ମନା । ଗୋଟିଏ ପରିସ୍ଥିତିରେ ପାଣି ମଧ ଏମାନଙ୍କୁ ବନ୍ଦ କରିଦିଆଗଲା । ସେମାନେ ମୋ ଅଗଣାରେ ଥିବା କୂଅରୁ ପାଣି ବ୍ୟବହାର କଲେ । ମୁଁ ତ ମନେ ମନେ ଠିକ୍ କରିଛି ଯେ ମୋ

ବଗିଚାରେ ଗୋଟିଏ ବୁଦ୍ଧ ମୂର୍ତ୍ତି ଗଢ଼ିଦେଲେ ଏମାନେ ଆସି ପୂଜା ଅର୍ଚ୍ଚନା କରନ୍ତେ। ସେମାନଙ୍କର ଆତ୍ମସମ୍ମାନ ବଢ଼ନ୍ତା । ଏମାନେ ମୋ ପ୍ରସ୍ତାବରେ ବହୁତ ଆଗ୍ରହୀ । ନିକଟରେ ଏହାର ସଂଭାବନା ରହିଛି । ଏହି ଗୋଟିଏ ଅସାମାଜିକ କାରଣରୁ ମୁଁ ବର୍ତ୍ତମାନ ସେଠାକୁ ଗଲେ ଗାଆଁକୁ ବେଶି ଯାଏନା । ବାହାରେ ବଣ ଭିତରେ ଘର ତିଆରି କରିରହିଥିବା ହରିଜନ ସାହିକୁ ମୁଁ ଯାଏ । ସେମାନଙ୍କ ଘରେ ବସି ଭାତ, ତରକାରୀ ଖାଇବାରେ ଆଗ୍ରହ ଦେଖାଏ । ଏହା ନିଶ୍ଚିତ ଭାବରେ ମୋର ବୌଦ୍ଧ ଆଚରଣ ପ୍ରତି ଗଭୀର ଶ୍ରଦ୍ଧା ଯୋଗୁ ସଂଭବ ହୋଇଛି ।

ମୋର ନିରୀଶ୍ୱରବାଦରେ ଗଭୀର ଶ୍ରଦ୍ଧା ଯୋଗୁ ସ୍ୱାଭାବିକ ଭାବରେ ମୁଁ ବୁଦ୍ଧଦେବଙ୍କର ହେତୁବାଦୀ ଦର୍ଶନ ଏବଂ ଆଚରଣ ସହିତ କରୁଣାୟିତ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ହୋଇଯାଇଛି । ଫଳରେ କୌଣସି ହିଂସାତ୍ମକ ଆଚରଣ ମୋର ଆଦୌ ପସନ୍ଦ ହୁଏ ନାହିଁ। ଚଳଚ୍ଚିତ୍ରରେ ହିଂସାତ୍ମକ କ୍ରିୟାକଳାପ ଦେଖିଲେ ଆଖି ବନ୍ଦ କରେ କିମ୍ବା ସେପରି ଚଳଚ୍ଚିତ୍ର ବିଲକୁଲ ଦେଖେ ନାହିଁ । ମୋ ଉପନ୍ୟାସର ନାୟକ ନାୟିକାମାନଙ୍କଠାରେ ପରିପୂର୍ଣ୍ଣ ଆନ୍ତରିକ ଅନୁରାଗର ଚିତ୍ର ପ୍ରତିଫଳିତ ହୋଇଛି । ଏଠାରେ ଗଭୀର ଭଲ ପାଇବାରେ ମାନ ଅପମାନର ସ୍ଥାନ ନଥିବା ପ୍ରଭୃତି ନାନା ଧରଣର ବିଚିତ୍ର କରୁଣାୟିତ ଅନୁରାଗର ସ୍ପଷ୍ଟ ଚିତ୍ର ମିଳେ। ଦୁଇଜଣଙ୍କ ଭିତରେ ଆନ୍ତରିକତା କେବଳ ଗଭୀର କରୁଣାୟିତ ହୃଦୟର ପ୍ରତିଫଳନ ବୋଲି ମୋର ବିଶ୍ୱାସ । ଏସବୁ କଥା ବହିରେ ଆତ୍ମପ୍ରକାଶ କରିଛି ।

ମୋଟାମୋଟି ଭାବରେ ବୁଦ୍ଧଙ୍କର ମାନବବାଦୀ ଦର୍ଶନ ଏବଂ ସଂଘୀୟ ବା ସାମାଜିକ ସ୍ତରରେ ମାନବୀୟ ଆଚରଣ ମୋତେ ବହୁଳାଂଶରେ ଅନୁପ୍ରାଣିତ କରିଛି । ନିରୀଶ୍ୱରବାଦର ନକାରାତ୍ମକ ଶୂନ୍ୟତାକୁ କେତେବେଳେ ବିଶ୍ୱମାନବବାଦୀ ମାର୍କ୍ସୀୟ ନୀତି ମାଧ୍ୟମରେ ତ କେତେବେଳେ ଅହିଂସା ଓ ମାନବୀୟ ଦ୍ୱନ୍ଦ୍ୱହୀନ ଆନ୍ତରିକ ସ୍ନେହ ସମାନୁଭୂତିରେ ପରିପୂର୍ଣ୍ଣ କରିପାରିଛି । ଏହା ନିଶ୍ଚିତ ଭାବରେ ମୋ ଜୀବନକୁ ସରସ ଓ ସକାରାତ୍ମକ କରିପାରୁଛି ।

■■■

ବିଂଶ ଶତକର ସ୍ମରଣୀୟ ଓଡ଼ିଆ ସାହିତ୍ୟିକଙ୍କ ମଧ୍ୟରେ ଅନ୍ୟତମ ବରଣୀୟ ବ୍ୟକ୍ତିତ୍ୱ – ପ୍ରଫେସର ଡକ୍ଟର ରାଧାନାଥ ରଥ । ଅର୍ଦ୍ଧଶତାବ୍ଦୀର ଅତିକ୍ରାନ୍ତି ପରେ ସୁଦ୍ଧା ତାଙ୍କ ଅଙ୍ଗୀକାରବଦ୍ଧ ସାରସ୍ୱତ ସୃଜନୀଧାରା, ଅନାହତ ଓ ଅବ୍ୟାହତ ରହି ପାରିଛି ଅଦ୍ୟାବଧି । ଆଧୁନିକ ଓଡ଼ିଶାର ବୌଦ୍ଧିକ-ଚେତନାର ଚୌହଦିକୁ ବିସ୍ତୃତତର କରିବା ଦିଗରେ ତାଙ୍କ ଅବଦାନ ଅବିସମ୍ବାଦିତ ।

ତରୁଣ ବୟସରୁ ଯୁକ୍ତିବାଦୀ ଓ ବସ୍ତୁବାଦୀ ଦର୍ଶନର ପ୍ରଖର ପ୍ରଭାବରେ ବିବର୍ତ୍ତିତ ହୋଇ ଆସିଛି ତାଙ୍କର ଜୀବନଶୈଳୀ । ସେଥିପାଇଁ ଧର୍ମୀୟ ଧୂର୍ତ୍ତତା, ସାଂସ୍କୃତିକ ଶଠତା, ରାଜନୀତିକ ଭୁଗ୍ଣତା ଓ ସ୍ଥାଣୁ ସାମାଜିକ ସ୍ଥିତାବସ୍ଥା ବିରୋଧରେ ଏବେ ବି ଯୁଦ୍ଧ ଜାରି ରହିଛି ତାଙ୍କର । ସୁବିଧାବାଦର ଶିବିରରେ ଶରଣାର୍ଥୀ ହେବାକୁ ଚାହିଁ ନାହାଁନ୍ତି ସେ କେବେ, ନିଜ ବିବେକ ଓ ବିଚାରଶକ୍ତିକୁ ବନ୍ଧା ପକାଇ ନାହାନ୍ତି କେଉଁଠି ।

ଦର୍ଶନ ଓ ମନୋବିଜ୍ଞାନ – ଡକ୍ଟର ରଥଙ୍କ ଦୀର୍ଘ ବୌଦ୍ଧିକ ଅଭିଯାତ୍ରାର ଦୁଇ ଦିଗବାରେଣୀ । ତାଙ୍କର ଅନେକ ଛାତ୍ରଛାତ୍ରୀ ଆଜି ଦେଶବିଦେଶରେ ନିଜ ନିଜ କ୍ଷେତ୍ରରେ ସୁପରିଚିତ ଓ ସୁପ୍ରତିଷ୍ଠିତ ।

ମାର୍କ୍ସଙ୍କ 'କାରୁଣ୍ୟ'ରୁ ଆରମ୍ଭ ହୋଇଥିବା ଡକ୍ଟର ରଥଙ୍କ ଆତ୍ମିକ ଅନ୍ୱେଷଣର ଭଗ୍ନ ଅତୃପ୍ତି, ପରବର୍ତ୍ତୀ ପର୍ଯ୍ୟାୟରେ ଆଶ୍ୱସ୍ତି ତଥା ଆଶ୍ୱାସନାର ଶୀତଳ ସ୍ପର୍ଶ ଲାଭ କରିପାରିଛି ବୁଦ୍ଧଙ୍କ 'କରୁଣା' ମଧ୍ୟରେ !

ଏହି ପ୍ରବୁଦ୍ଧ ପୁରୁଷଙ୍କ ଜୀବନଗାଥା ହେଉଛି, ପ୍ରକୃତରେ, 'ନିଜ ଭାଗ୍ୟ ନିଜେ ଗଢ଼ିବା'ର ଅନନ୍ୟ ଆତ୍ମକଥା ! ଗଂଜାମର କେଉଁ ଅଖ୍ୟାତ ଗ୍ରାମର ସେଇ 'ଟକର ଛେଉଣ' ବା ଅନାଥ କିଶୋରଟି, ସହସ୍ର ସଂଘାତ ମଧ୍ୟରେ କିପରି ଶିର ଉନ୍ନତ କରି ବାଟ ଚାଲିବାର ବ୍ରତ ବରଣ କରି ନେଇଛି – ଅଜସ୍ର ଅନିଶ୍ଚିତତା ଓ ଅନିର୍ଦ୍ଦିଷ୍ଟତା ମଧ୍ୟରେ କିପରି କ୍ରମେ ଅର୍ଜନ କରିପାରିଛି ନିଜର ଏକ ସ୍ୱତନ୍ତ୍ର ପରିଚିତି – ଅତୁଳନୀୟ ମାନସିକ ଶକ୍ତି ଓ ଅଦମନୀୟ ସଂକଳ୍ପ ନେଇ ପରିକ୍ରମା କରିଛି ପୃଥିବୀର ପଥେପଥେ – ଭବଘୁରା ଜୀବନର ଶତ ସଂକଟ ଓ ସଂଘର୍ଷ ମଧ୍ୟରେ କିପରି ପୁଣି ଖୋଜି ପାଇଛି ନିର୍ଦ୍ଦିଷ୍ଟ ସ୍ୱପ୍ନର ଠିକଣା – ଏଇସବୁ ବିରଳ ଅନୁଭୂତିର ନିରୋଳ ଅଭିବ୍ୟକ୍ତି ହିଁ ହେଉଛି ଡକ୍ଟର ରଥଙ୍କ ନିଜସ୍ୱ ଜୀବନ-ଚରିତ ।

ସେଇ ଅନବଦ୍ୟ ଆତ୍ମଚରିତ 'ମୋ ସ୍ୱପ୍ନ ମୋ ଜୀବନ' ଓ 'ମୋ ଜୀବନ ମୋ ଦର୍ଶନ'କୁ ନେଇ ପ୍ରସ୍ତୁତ ହୋଇଛି ପ୍ରଫେସର ଡଃ ରାଧାନାଥ ରଥଙ୍କ ଗ୍ରନ୍ଥାବଳୀର ଏହି ପ୍ରଥମ ପର୍ବ । ଆଶା ଓ ବିଶ୍ୱାସ, ଆଧୁନିକ ଓଡ଼ିଶାର ସୁଧୀ ସମାଜ ଦ୍ୱାରା ଏହା ସମାଦୃତ ହେବ ନିଶ୍ଚୟ ।